ଜାତୀୟ ଜାଗୃତିର
ଆଦ୍ୟ ଉନ୍ମେଷ

# ଅଠରଶହ ସତାବନ

ଓଁ ବନ୍ଦେ ମାତରମ୍

ଜୟ ଜୟ ଭାରତବର୍ଷମ୍

ଦୀନବନ୍ଧୁ ମିଶ୍ର



ଜାତୀୟ ଜାଗୃତିର ଆଦ୍ୟ ଉନ୍ମେଷ

# ଅଠରଶହ ସତାବନ

ଲେଖକ :

ଦୀନବନ୍ଧୁ ମିଶ୍ର

ପ୍ରାଧ୍ୟାପକ

ବିଶ୍ୱବିଦ୍ୟାଳୟ ଆଇନ୍ ମହାବିଦ୍ୟାଳୟ,

ବାଣୀବିହାର, ଭୁବନେଶ୍ୱର

ପ୍ରକାଶକ :

କୀର୍ତ୍ତିମୟୀ ସାହିତ୍ୟ ମନ୍ଦିର

ଏଲ୍. ୩/୧୬୧

ଆଚାର୍ଯ୍ୟ ବିହାର

ଭୁବନେଶ୍ୱର - ୧୩

ପ୍ରଚ୍ଛଦ :

ଅସୀମ ବସୁ

ପ୍ରଥମ ପ୍ରକାଶନ :

ସ୍ୱାଧୀନତା ଦିବସ, ୧୯୯୭

ଅକ୍ଷର ଓ ମୁଦ୍ରଣ

ଓଁକାର

ଏମ୍-୫/୨, ଆଚାର୍ଯ୍ୟ ବିହାର

ଭୁବନେଶ୍ୱର-୧୩

ମୂଲ୍ୟ :

ଟ୧୨୫/-

Jateeya Jagrutira Adya Unmesa

ATHARASHAHA SATABAN

Written by:

Dinabandhu Mishra

Reader, University Law College,

Vanivihar, Bhubaneswar

Publisher & Copyright Holder:

Kirtimayee Sahitya Mandira

L3/161, Acharya Vihar

Bhubaneswar-13

Cover Design by:

ASIM BASU

Date of Publication:

INDEPENDENCE DAY

1997

Laser Typeset & Printed at:

OMKAR

M5/2, Acharya Vihar,

Bhubaneswar-13

Price:

Rs. 125. 00

# ଶ୍ରଦ୍ଧାଞ୍ଜଳି

୧୮୫୭ର ଆଦ୍ୟ ଜାତୀୟ ସଂଗ୍ରାମରେ
ଶହୀଦ୍ ହୋଇଥିବା ବୀର ଓ ବୀରାଙ୍ଗନାମାନଙ୍କୁ
ଏହି ବର୍ଣ୍ଣମାଳାର ଭକ୍ତିପୂତ ବିନମ୍ର ଶ୍ରଦ୍ଧାଞ୍ଜଳି ।



ଦୀନବନ୍ଧୁ

## ପ୍ରଫେସର ମନ୍ମଥନାଥ ଦାସ

ଏମ୍.ଏ (ଆଲ୍‌ହାବାଦ) ଡି.ଲିଟ୍ (ଉତ୍କଳ)
ଅବସରପ୍ରାପ୍ତ କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ

ଆଧୁନିକ ଭାରତ ଇତିହାସରେ ୧୮୫୭ ମସିହାର 'ପ୍ରଖ୍ୟାତ ଭାରତୀୟ ବିଦ୍ରୋହ' ହେଉଛି ଏକ ଅବିସ୍ମରଣୀୟ ଘଟଣା । ବ୍ୟାପକ ଓ ଭୟାବହ ସେହି ବିପ୍ଳବକୁ ସେ ସମୟର ଅନ୍ୟତମ ବରିଷ୍ଠ ଇଂରାଜ ଶାସନକର୍ତ୍ତା ସାର୍ ଜନ୍ ଲରେନ୍ସ 'ସୀପାହୀ ବିଦ୍ରୋହ' ନାମରେ ଆଖ୍ୟାତ କରିଥିଲା ବେଳେ, ସମସାମୟିକ ବିଶିଷ୍ଟ ଇଂରାଜୀ ଐତିହାସିକ ସାର୍ ଜନ୍ ଉଇଲିୟମ୍ କେୟ୍ ତାହାକୁ 'ସୀପାହୀ ଯୁଦ୍ଧ' ବୋଲି ବର୍ଣ୍ଣନା କରିଥିଲେ । ଅପରପକ୍ଷରେ, ଭାରତୀୟ ନବଜାଗରଣ ଯୁଗର ସେହି ମହାନ୍ ବିଦେଶୀ ବିରୋଧୀ ରକ୍ତମୁଖୀ ସଂଘାତକୁ ପରବର୍ତ୍ତୀ ଜାତୀୟ ଆନ୍ଦୋଳନ ଯୁଗର ଜାତୀୟତାବାଦୀମାନେ ଭିନ୍ନ ଦୃଷ୍ଟିରେ ଦେଖିଥିଲେ । ଉଦାହରଣ ସ୍ୱରୂପ ବିନାୟକ ଦାମୋଦର ସବରକର ସେହି ଘଟଣାକୁ ସ୍ୱାଧୀନତା ସଂଗ୍ରାମ' ଅଭିହିତ କରିବାକୁ ଯାଇ ଲେଖିଥିଲେ, ''ସ୍ୱଧର୍ମ ଓ ସ୍ୱରାଜ୍ୟ ଥିଲା ବିଦ୍ରୋହର ଦୁଇ ନୀତି ଏବଂ ସେହି ଦୁଇ ନୀତିରେ ନିହିତ ଥିଲା ବିପ୍ଳବାତ୍ମକ ଯୁଦ୍ଧର ମୂଳମନ୍ତ୍ର ।'' ସେହିପରି, ଐତିହାସିକ କେ.ଏମ୍. ପାନିକାର କହିଥିଲେ 'ଏହା ସତ୍ୟ ଯେ ବିଦ୍ରୋହର ପ୍ରାୟ ସମସ୍ତ ନେତା ଆସିଥିଲେ ପ୍ରମୁଖ ଅଧିକାରଚ୍ୟୁତ ମାନଙ୍କ ମଧ୍ୟରୁ, ଅଥଚ ସେମାନେ ସମସ୍ତେ ଗୋଟିଏ ଲକ୍ଷ୍ୟ ରଖି ଏକତାବଦ୍ଧ ହୋଇଥିଲେ, ଯାହାଥିଲା ବ୍ରିଟିଶ୍ ଶକ୍ତିକୁ ବିତାଡ଼ନ ପୂର୍ବକ ଜାତୀୟ ସ୍ୱାଧୀନତା ପୁନରୁଦ୍ଧାର କରିବା ।'

୧୮୫୭ ମସିହାର ଲୋମହର୍ଷଣକାରୀ ଘଟଣା ରାଜିକୁ କେନ୍ଦ୍ର କରି ଅନେକାନେକ ଗ୍ରନ୍ଥ ରଚିତ ହୋଇ ସାରିଛି । କିନ୍ତୁ, ଯେ କୌଣସି ବୃହତ୍ତର ଘଟଣା ସମ୍ପର୍କରେ ସନ୍ଧାନ ଅନୁସନ୍ଧାନରେ ସମାପ୍ତି ଘଟେ ନାହିଁ । ଦୀର୍ଘକାଳ ପରେ ସୁଦ୍ଧା ନୂତନ ନୂତନ ତଥ୍ୟ ଲୋକଲୋଚନକୁ ଆଣିବା ନିମନ୍ତେ ଐତିହାସିକ ଓ ଗବେଷକ ମାନଙ୍କ ପ୍ରଚେଷ୍ଟା ଅବ୍ୟାହତ ରହିଥାଏ ।

ଏହି ଆକର୍ଷଣୀୟ ପୁସ୍ତକର ପ୍ରଣେତା ପ୍ରାଧାପକ ଦୀନବନ୍ଧୁ ମିଶ୍ର ଯେତେ ପ୍ରକାର ନୂତନ ନୂତନ ରୋମାଞ୍ଚକର ତଥ୍ୟ ଉନ୍ମୋଚନ ପୂର୍ବକ ସେହି ଘଟଣା ବହୁଳ ବର୍ଷ ଉପରେ ଆଲୋକପାତ କରିବାକୁ ସମର୍ଥ ହୋଇଛନ୍ତି, ସେଥିରୁ ତାଙ୍କ ଏକନିଷ୍ଠ ଅଧ୍ୟବସାୟର ପରିଚୟ ମିଳେ । ବହୁବିଧ ଗୁପ୍ତ ଓ ପ୍ରଚ୍ଛନ୍ନ ବିଷୟ ଏତେଦିନ ପରେ ପ୍ରକାଶିତ ହେବା ଫଳରେ ''୧୮୫୭''ର ଚିତ୍ର ଅଧିକତର ସ୍ପଷ୍ଟ ରୂପ ଧାରଣ କରୁଛି । ଲେଖକଙ୍କ ରଚନାଶୈଳୀ ମନରାଜ୍ୟକୁ ଫେରାଇ ଆଣୁଛି ସେହି ଦୂର ଅତୀତର ବୀର ବୀରାଙ୍ଗନା ମାନଙ୍କର ମର୍ମାନ୍ତିକ ଆତ୍ମୋତ୍ସର୍ଗ ଗାଥା । ସମୟ ବିତିଯାଏ, ଇତିହାସ ଧରିରଖେ ତାର ସ୍ମୃତି । ୧୮୫୭ର ଶହୀଦମାନେ ଗଭୀର ଭାବେ ପ୍ରଭାବିତ କରିଥିଲେ ଭବିଷ୍ୟତ ଯୁଗର ସ୍ୱାଧୀନତା ସଂଗ୍ରାମୀ ମାନଙ୍କୁ । ବିଦ୍ରୋହର ଅର୍ଦ୍ଧ ଶତାବ୍ଦୀ ପରେ ଭାରତର ସଂତ୍ରାସବାଦୀମାନେ ରାଣୀ ଲକ୍ଷ୍ମୀବାଈ, ନାନା ସାହେବ ଓ ତାତ୍ୟାତୋପେ, ପ୍ରଭୃତିଙ୍କୁ ସ୍ମରଣ କରି ଗାଉଥିଲେ ଗୀତ

''ହେ. ଆମର ଅମର ଶହୀଦ,
ଆରଂଭ କରିଛ ଯେଉଁ ମୁକ୍ତି ପାଇଁ ଯୁଦ୍ଧ,
ସେ ସଂଗ୍ରାମ ହେବନାହିଁ ଶେଷ,
ପିତାଠାରୁ ପୁତ୍ର ଯେଣୁ ମୁକ୍ତି ମନ୍ତ୍ରେ ହୋଇବେ ଦୀକ୍ଷିତ,
ଘଟିପାରେ ପରାଜୟ ତଥାପି ତ ଦିନେ ଆମ ବିଜୟ ନିଶ୍ଚିତ ।''

ବିଦ୍ରୋହର ୧୪୦ ବର୍ଷ ପରେ ଏବଂ ସ୍ୱାଧୀନତା ପ୍ରାପ୍ତିର ଅର୍ଦ୍ଧ ଶତାବ୍ଦୀ ଶେଷରେ, ସେହି ବିଗତ ଯୁଗର ଅମର ଶହୀଦମାନଙ୍କ ଯଶ ବହନ କରୁଛି ଏହି ପୁସ୍ତକ ''ଜାତୀୟ ଜାଗୃତିର ଆଦ୍ୟ ଉନ୍ମେଷ ଅଠରଶହ ସତାବନ ।''

ମନ୍ମଥ ନାଥ ଦାସ

ଶ୍ରୀମତୀ ନନ୍ଦିନୀ ଶତପଥୀ
ଅଧ୍ୟକ୍ଷା
ରାଜ୍ୟ ଯୋଜନା ବୋର୍ଡ଼, ଓଡ଼ିଶା

ଶ୍ରୀ ଦୀନବନ୍ଧୁ ମିଶ୍ରଙ୍କ ଲିଖିତ .ଜାତୀୟ ଜାଗୃତିର ଆଦ୍ୟ ଉନ୍ମେଷ ଅଠରଶହ ସତାବନ.ପୁସ୍ତକର ପାଣ୍ଡୁଲିପିଟି ପଢି ବହୁତ ଖୁସି ହେଲି । ଭାରତୀୟ ସ୍ୱାଧୀନତାର ଇତିହାସରେ ୧୮୫୭ ସ୍ୱାଧୀନତା ସଂଗ୍ରାମ ଭାରତୀୟ ଜନତାଙ୍କର ଇଂରେଜ ଶାସନ ବିରୁଦ୍ଧରେ ପ୍ରଥମ ବିଦ୍ରୋହର ସ୍ୱର ବୋଲି ସମସ୍ତେ ଜାଣନ୍ତି । କିନ୍ତୁ ଶ୍ରୀ ମିଶ୍ରଙ୍କ ଲେଖାରେ ୧୮୫୭ର ପ୍ରତ୍ୟେକ ଦିନ ଓ ମୁହୂର୍ତ୍ତ ରୋମାଞ୍ଚକର ଓ ଘଟଣାବହୁଳ । ଏ କଥା ପାଠକମାନେ ସହଜରେ ଉପଲବ୍ଧି କରିପାରିବେ ।

ଭାରତର ଜାତୀୟ ଏକତା ଓ ଅଖଣ୍ଡତା କେତେ ମହାନ୍ ଓ ହୃଦୟସ୍ପର୍ଶୀ ତାହା ଏହି ପୁସ୍ତକରେ ବର୍ଣ୍ଣିତ ୧୮୫୭ର ଘଟଣାରୁ ସ୍ପଷ୍ଟ ବାରି ହେବ ।

ଏ ପୁସ୍ତକଟି କେବଳ ଇତିହାସର ଛାତ୍ରମାନଙ୍କ ପାଇଁ ଉଦ୍ଦିଷ୍ଟ କହିବା ଠିକ୍ ହେବ ନାହିଁ । ଭାରତବର୍ଷର ସ୍ୱାଧୀନତା ସଂଗ୍ରାମକୁ ଯେଉଁମାନେ ଅନୁଧ୍ୟାନ କରନ୍ତି, ସେମାନେ ଏ ବହି ପଢିଲେ ନିଶ୍ଚୟ ଆନନ୍ଦିତ ହେବେ ।

ଶ୍ରୀ ମିଶ୍ରଙ୍କ ଲେଖନୀ ଅଧିକରୁ ଅଧିକ ବଳିଷ୍ଠ ହେଉ, ଏହାହିଁ କାମନା ।

ନନ୍ଦିନୀ ଶତପଥୀ

**ପଦ୍ମଶ୍ରୀ ଶ୍ରୀ ସଚି ରାଉତରାୟ**
**କଟକ**

ମୁଁ ଅଧାପକ ଶ୍ରୀଯୁକ୍ତ ଦୀନବନ୍ଧୁ ମିଶ୍ରଙ୍କ ପ୍ରଣୀତ ଜାତୀୟ ଜାଗୃତିର ଆଦ୍ୟ ଉନ୍ମେଷ, ୧୮୫୭. ପଢି ଅତ୍ୟନ୍ତ ଆନନ୍ଦିତ ହେଲି । ଲେଖକ ଭାରତ ଇତିହାସର ଏକ ବୀରତ୍ୱପୂର୍ଣ୍ଣ ଅଧ୍ୟାୟକୁ ରୂପ ଦେଇଛନ୍ତି । ସିପାହୀ ବିଦ୍ରୋହ ଭାରତର ବ୍ରିଟିଶ ଶାସକମାନଙ୍କ ବିରୁଦ୍ଧରେ ଏକ ସଶସ୍ତ୍ର ବିଦ୍ରୋହ ରୂପେ ଇତିହାସରେ ବର୍ଣ୍ଣିତ ହୋଇଛି । ଏହା ପୂର୍ବରୁ ବହୁ ଆଂଚଳିକ ବିଦ୍ରୋହ ଦେଶର ବିଭିନ୍ନ ସ୍ଥାନରେ ଦେଖା ଦେଇଥିଲା, ଯଥା- ୧୮୧୭ ଖ୍ରୀଷ୍ଟାବ୍ଦରେ ଘଟିଥିବା ଖୋର୍ଦ୍ଧାର ପାଇକ ବିଦ୍ରୋହ । ମାତ୍ର ଜାତୀୟ ସ୍ତରରେ କୌଣସି ବିଦ୍ରୋହ ଦେଖା ଦେଇ ନ ଥିଲା । ତେଣୁ ସିପାହୀ ରୂପେ ସ୍ୱୀକୃତ ଦେଇଛନ୍ତି । ଏହା ଭାରତର ତତ୍‌କାଳୀନ ଶାସକ 'ଇଷ୍ଟ ଇଂଡିଆ କମ୍ପାନୀ' ବିରୁଦ୍ଧରେ ଏକ ସଶସ୍ତ୍ର ପ୍ରତିରୋଧ ବୋଲି କୁହାଯାଇପାରେ । ଏହାପରେ ଅବଶ୍ୟ ଇଷ୍ଟ ଇଂଡିଆ କଂପାନୀ ବଦଳରେ ବ୍ରିଟିଶ ଶାସନ କଳ ସିଧାସଳଖ ଭାରତର ଶାସନ ଭାର ନିଜ ହାତକୁ ନିଅନ୍ତି, କିନ୍ତୁ ଏହାଦ୍ୱାରା ଭାରତ ବାସୀଙ୍କର ବିଶେଷ କିଛି ଲାଭ ହୋଇନାହିଁ ।

ଯେ ଯାହାହେଉ ଭାରତପୂର୍ଣ୍ଣ ସ୍ୱାଧିନତା ଦାବୀକରି ବ୍ରିଟିଶ୍ ଶାସକ ବିରୁଦ୍ଧରେ ୧୯୪୭ ସାଲ ପର୍ଯ୍ୟନ୍ତ ଆପୋଷହୀନ ସଂଗ୍ରାମ ଚଳାଇ ଆସିଥିଲା ଏବଂ ସେଥିରେ ମଧ୍ୟ ଜୟଯୁକ୍ତ ହୋଇଥିଲା । ଏହି ଦୀର୍ଘ ଏକଶତ ବର୍ଷଧରି ସଂଗ୍ରାମରତ ଭାରତବର୍ଷକୁ ସିପାହୀ ବିଦ୍ରୋହ ଯଥେଷ୍ଟ ପ୍ରେରଣା ଯୋଗାଇଥିଲା ।

ଅଧାପକ ଶ୍ରୀ ଦୀନବନ୍ଧୁ ମିଶ୍ର ସିପାହୀ ବିଦ୍ରୋହର ଏକ ନିର୍ଭର ଯୋଗ୍ୟ ଉପାଖ୍ୟାନ ପ୍ରସ୍ତୁତ କରିଥିବାରୁ ସେ ଦେଶ ବାସୀଙ୍କର ଧନ୍ୟବାଦର ପାତ୍ର ।

ପୁସ୍ତକର ଭାଷା ସରଳ ଏବଂ ପ୍ରାଞ୍ଜଳ । ଲେଖକ ଏପରି ଖଣ୍ଡିଏ ପୁସ୍ତକ ଲେଖି ଜନ ସାଧାରଣଙ୍କର ବିଶେଷ ଉପକାର ସାଧନ କରିଛନ୍ତି ମୁଁ ଏ ପୁସ୍ତକର ବହୁଳ ପ୍ରଚାର କାମନା କରିବା ସଂଗେ ସଂଗେ ଲେଖକ ଅଧାପକ ଶ୍ରୀ ମିଶ୍ରଙ୍କ ସଫଳ ସାରସ୍ୱତ ସାଧନା ଓ ସଫଳତା କାମନା କରୁଛି ।

ସଚି ରାଉତରାୟ

# କୃତଜ୍ଞତା ଜ୍ଞାପନ

୧୯୯୩ ମସିହାରେ ଏହି ପୁସ୍ତକ ଲେଖିବା ଆରମ୍ଭ କରିଥିଲୁ । ନାନା ବାଧାବିଘ୍ନ ସତ୍ତ୍ୱେ ଏହା ୧୯୯୬ ମସିହା ଡିସେମ୍ବର ମାସରେ ସମାପ୍ତ ହେଲା ।

ମୂଳ ପାଣ୍ଡୁଲିପି ପଢ଼ି ତହିଁ ରେ ଅଭିମତ ପ୍ରଦାନ କରିଥିବାର ଆମେ କବିକୁଳ ଶିରୋମଣି ପଦ୍ମଶ୍ରୀ ସଚ୍ଚି ରାଉତରାୟ ତଥା ପ୍ରଖ୍ୟାତ ଲେଖିକା ଓ ରାଜନୀତିଜ୍ଞ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କଠାରେ ଅଶେଷ କୃତଜ୍ଞ । ସର୍ବୋପରି ପ୍ରଖ୍ୟାତ ଇତିହାସ ବିଶାରଦ ଡଃ ମନ୍ମଥ ନାଥ ଦାସ ପାଣ୍ଡୁଲିପିକୁ ସଂଶୋଧନ କରିବା ସଙ୍ଗେ ସଙ୍ଗେ ତାହାର ଯଥୋଚିତ ମୂଲ୍ୟାୟନ କରି ଓ ଗୁରୁତ୍ୱ ପୂର୍ଣ୍ଣ ପରାମର୍ଶ ଦେଇ ଉତ୍ସାହିତ କରିଥିବାରୁ ଆମେ ତାଙ୍କ ନିକଟରେ ଅନ୍ତରର କୃତଜ୍ଞତା ଜ୍ଞାପନ କରୁଛୁ ।

ଏତଦ୍‌ବ୍ୟତୀତ ଇତିହାସ ବିଭାଗର ବିଦ୍ୱାନ୍ ପ୍ରଧାପକ ଡଃ ହିଂମାଂଶୁ ପଟ୍ଟନାୟକଙ୍କର ପ୍ରେରଣା ଓ ପରାମର୍ଶ ହିଁ ଏ ଲେଖାକୁ ଆଗେଇ ନେବାରେ ବିଶେଷ ସହାୟକ ହୋଇ ଅଛି । ଏଣୁ ଆମେ ତାଙ୍କ ନିକଟରେ ମଧ୍ୟ କୃତଜ୍ଞ ।

ପୁରୀର ଚନ୍ଦନ ହଜୁରୀଙ୍କର ବଂଶଧର ବନ୍ଧୁ ଶ୍ରୀ ପ୍ରଫୁଲ୍ଲ ଖୁଣ୍ଟିଆଙ୍କ ସହିତ ବନ୍ଧୁ ଶ୍ରୀ ରମେଶ ଚନ୍ଦ୍ର ରାଜଗୁରୁ ଓ ବନ୍ଧୁ ଶ୍ରୀ କୃଷ୍ଣଚନ୍ଦ୍ର ମହାପାତ୍ର ଚନ୍ଦନ ହଜୁରୀ ଲେଖା ପାଇଁ ଉପାଦାନ ମିଳିବାରେ ସହାୟତା କରିଥିବାରୁ ସେମାନେ ଆମର ସଦାବେଳେ ଧନ୍ୟବାଦର ପାତ୍ର ।

ପରିଶେଷରେ ମୁଦ୍ରଣ ଜନିତ ସାମାନ୍ୟ ତୃଟି ଥିବାରୁ ଆମେ ପାଠକ ମାନଙ୍କୁ କ୍ଷମା ପ୍ରାର୍ଥନା କରିବା ସଂଗେ ସଂଗେ ୨୧ ପୃଷ୍ଠା ଶେଷ ପାରାର ୨ୟ ବାକ୍ୟରେ ୱାରେନ୍ ହେଷ୍ଟିଙ୍ଗ୍‌ସ ସ୍ଥାନରେ ଲର୍ଡ଼ ଉଇଲିୟମ ବେଣ୍ଟିକ୍ ବୋଲି ପଢ଼ିବାକୁ ଅନୁରୋଧ ।

ଲେଖକ

# ସୂଚୀପତ୍ର

# ପୂର୍ବାଭାସ

୧୮୫୭ର ସିପାହୀ ବିଦ୍ରୋହ, ଭାରତ ବର୍ଷର ଇତିହାସରେ ସର୍ବପ୍ରଥମ ସ୍ୱଧର୍ମ ଓ ସ୍ୱରାଜ୍ୟ ପାଇଁ, ସମଗ୍ର ଦେଶର ଜନତା ତଥା ସିପାହୀମାନଙ୍କର ଏକ ସମ୍ମିଳିତ ଗଣ ସଂଗ୍ରାମ । କିଛି ରାଜନ୍ୟ ବର୍ଗ ଓ କତିପୟ ଇଂରାଜି ଐତିହାସିକ, ଏହାକୁ ଆତ୍ମସ୍ୱାର୍ଥ ସାଧନ ନିମିତ୍ତ ସିପାହୀମାନଙ୍କର ସଂଗ୍ରାମ ବୋଲି ଅଭିହିତ କରୁଥିଲା ବେଳେ କିଛି ଭାରତୀୟ ଐତିହାସିକ ଏହାକୁ ସମଗ୍ର ଦେଶର ସର୍ବପ୍ରଥମ 'ସ୍ୱାଧୀନତା ସଂଗ୍ରାମ'' ନାମରେ ନାମିତ କରିଛନ୍ତି । ଇଂରାଜି ଐତିହାସିକମାନଙ୍କର ବକ୍ତବ୍ୟରେ ବହୁସମୟରେ ବାସ୍ତବ ଘଟଣାବଳୀ ଓ ବିଦ୍ରୋହୀ ମାନଙ୍କର କାର୍ଯ୍ୟକଳାପକୁ ବିକୃତ କରି ବର୍ଣ୍ଣନା କରିବା ମୂଳରେ ସେମାନଙ୍କର ଅଯଥା ସାମ୍ରାଜ୍ୟବାଦୀ ଅହଂକାର ଓ ଦାମ୍ଭିକତା ଏବଂ ଭାରତୀୟ ସଂସ୍କୃତି ଓ ଜୀବନଧାରା ତଥା ଭାରତୀୟ ଜନତାଙ୍କର ଭାବପ୍ରବଣତା ବିଷୟରେ ଅଜ୍ଞାନତାର ପ୍ରତିଫଳନ ଦେଖିବାକୁ ମିଳେ । ସେମାନେ କେତୋଟି ବାସ୍ତବ ପ୍ରଶ୍ନକୁ ଏଡ଼ାଇ ଯାଇଥିବା ପରି ମନେ ହୁଏ ।

ପ୍ରଥମତଃ, 'ଅବଧରେ ଦଶ ଦିନ ମଧ୍ୟରେ ଇଂରାଜି ଶାସନ ସ୍ୱପ୍ନବତ୍ ଅଦୃଶ୍ୟ ହୋଇଯିବା ମୂଳରେ ଜନସାଧାରଣଙ୍କର ଜାଗରଣ ଓ ସହଯୋଗକୁ ଅସ୍ୱୀକାର କରି ହେବ କି ? ଦ୍ୱିତୀୟତଃ, ସିପାହୀ ବିଦ୍ରୋହ କେବଳ ସିପାହୀ ମାନଙ୍କ ମଧ୍ୟରେ ସୀମିତ ହୋଇଥିଲେ ବହୁସ୍ଥାନରେ ସିପାହୀମାନେ ବିଦ୍ରୋହ କରିବା ପୂର୍ବରୁ ଜନସାଧାରଣ ବିଦ୍ରୋହ କରି ଉଠିଛନ୍ତି କିପରି ? ତୃତୀୟତଃ, ଏହା କେବଳ ସିପାହୀମାନଙ୍କର ନିଜ ସ୍ୱାର୍ଥ ସାଧନ ପାଇଁ ବିଦ୍ରୋହ ହୋଇଥିଲେ ଏଥିରେ ବହୁ ନିରୀହ ଜନସାଧାରଣଙ୍କୁ ଅଭିଯୁକ୍ତ କରି ଫାଶୀଦଣ୍ଡ ତଥା ଅର୍ଥଦଣ୍ଡ ଦିଆଗଲା କାହିଁକି ? ଚତୁର୍ଥତଃ, ଏହା ସ୍ୱଧର୍ମ ଓ ସ୍ୱରାଜ୍ୟର ପ୍ରତିଷ୍ଠା ପାଇଁ, ଭାରତବର୍ଷର ଏକ ସୁପରିକଳ୍ପିତ ଗଣ ସଂଗ୍ରାମ ନହୋଇଥିଲେ, ଅଳ୍ପ ସମୟ ମଧ୍ୟରେ ସାରାଦେଶକୁ ବ୍ୟାପିଯାଇପାରି ନଥାନ୍ତା । ଏତଦ୍ ବ୍ୟତୀତ ବିଦ୍ରୋହ ସମୟରେ ସ୍ୱଦେଶୀ ସେନା ଶତ୍ରୁଦ୍ୱାରା ଏକ ସ୍ଥାନରେ ପରାସ୍ତ ହୋଇ ଅନ୍ୟ ସ୍ଥାନରେ ବିଜୟ ଲାଭ କରି ଦଖଲ ନେବା ବା ଅଳ୍ପ ସମୟ ମଧ୍ୟରେ ପୁନର୍ବାର ଦ୍ୱିଗୁଣ ଶକ୍ତିରେ ପ୍ରସ୍ତୁତ ହୋଇ ଶତ୍ରୁକୁ ଆକ୍ରମଣ କରିବା ଆଦି କ୍ରିୟାକଳାପରୁ ମନେ ହୁଏ ଯେ, ଏହି ସଂଗ୍ରାମ ଏକ ଗଣଶକ୍ତି ସମନ୍ୱିତ ସୁଚିନ୍ତିତ ସ୍ୱାଧୀନତା ସଂଗ୍ରାମ ଥିଲା । ବ୍ରିଟିଶ୍ ଐତିହାସିକ 'ଚାର୍ଲସ୍ ବଲ' ଏହି ବିଦ୍ରୋହରେ ସହଯୋଗର ବର୍ଣ୍ଣନା କରି କହୁଛନ୍ତି:- In Oudh, the rebels could march without commissariat,

for the people would always feed them. They could leave their luagage without guard because the people would not attack it. They were always certain of their position and that of the British for the people brought them hourly information. And no design could possibly be kept from them while secret sympathizers stood a round every table and waited in almost every tent in the British camp."

(History of Indian Mutiny Vol II, P 572)

(''ଅବଧରେ ବିଦ୍ରୋହୀମାନେ ବିନା ରସଦ୍‌ଯୋଗାଣ ସହାୟକ କର୍ମଚାରୀମାନଙ୍କ ବିନା ଆଗେଇ ପାରୁଥିଲେ କାରଣ ଲୋକମାନେ ସଦାବେଳେ ସେମାନଙ୍କୁ ଖାଦ୍ୟ ଯୋଗାଉଥିଲେ । ସେମାନେ ସେମାନଙ୍କର ଆବଶ୍ୟକୀୟ ଦ୍ରବ୍ୟ ସାମଗ୍ରୀ ବିନା ପହରାରେ ରଖି ପାରୁଥିଲେ । କାରଣ ଲୋକମାନେ ତାହା ଆକ୍ରମଣ କରୁନଥିଲେ । ସେମାନେ ନିଜର ଓ ବ୍ରିଟିଶ୍‌ମାନଙ୍କର ସ୍ଥିତି ବିଷୟରେ ନିଃସନ୍ଦେହ ରହିପାରୁଥିଲେ । କାରଣ ଲୋକମାନେ ସେମାନଙ୍କୁ ଉପଯୁକ୍ତ ସମୟରେ ଖବର ପହଞ୍ଚାଉଥିଲେ । ସେମାନଙ୍କଠାରୁ କୌଣସି ଯୋଜନା ଗୁପ୍ତ ରଖି ହେଉନଥିଲା । କାରଣ ବ୍ରିଟିଶ୍ ଛାଉଣୀର ପ୍ରତିଟି ତମ୍ବୁରେ ପ୍ରତି ଟେବୁଲର କଡ଼ରେ ଗୁପ୍ତରେ ବିଦ୍ରୋହୀ ସହାନୁଭୂତିଶୀଳ ବ୍ୟକ୍ତିମାନଙ୍କର ଉପସ୍ଥିତି ଥିଲା ।)

(ସୀପାହୀ ବିଦ୍ରୋହର ଇତିହାସ, ୨ୟଭାଗ)

କେୟି (Kaye) ଙ୍କ ମତରେ :—

"There was scarcely a man of eitter faith who was not arrayed against us". (A History of Sepoy War in India Vol-II)

କେୟିଙ୍କ ମତରେ– ''ଉଭୟ ଧର୍ମରୁ ଏପରି କେହି ନଥିଲେ ଯେ କି ଆମ ବିରୁଦ୍ଧରେ ସଂଗଠିତ ନଥିଲେ ।'' (ଭାରତରେ ସିପାହୀ ଯୁଦ୍ଧର ଇତିହାସ, ୨ୟଭାଗ)

୧୮୫୭ର ବିଦ୍ରୋହ, 'ଇଷ୍ଟଇଣ୍ଡିଆ କମ୍ପାନୀ'ର କୂଟନୀତି, ଶାସନ ତଥା ବାଣିଜ୍ୟ ନୀତିର ଫଳ ସ୍ୱରୂପ ଉତ୍ପନ୍ନ ହୋଇଥିବା, ଭାରତବର୍ଷର ସମସ୍ତ ସମ୍ପ୍ରଦାୟର ରାଜା, ଜମିଦାର, ପ୍ରଜା ଓ ବିଭିନ୍ନ ଶ୍ରେଣୀର ବ୍ୟକ୍ତିମାନଙ୍କର ବହୁବର୍ଷର ପୁଞ୍ଜିଭୂତ ଅଶାନ୍ତିର, ଏକ ସୁପରିକଳ୍ପିତ ପ୍ରତିଫଳନ । ଏଣୁ, ଏହାର କାରଣ ରୂପେ କୌଣସି ନିର୍ଦ୍ଦିଷ୍ଟ ଘଟଣାକୁ ନିର୍ଦ୍ଦେଶ କରିବା ଯୁକ୍ତିଯୁକ୍ତ ହେବ ନାହିଁ । ଅପରପକ୍ଷରେ ଏହି ବିଦ୍ରୋହର କାରଣ ଅନୁଧାନ କରିବାକୁ ଗଲେ ଆମକୁ ଭାରତ ଆଗମନ ପରେ

'ଇଷ୍ଟଇଣ୍ଡିଆ କମ୍ପାନୀ'ର କ୍ରିୟାକଳାପ ଓ ଭାରତୀୟମାନଙ୍କ ଉପରେ ତାହାର ପ୍ରତିକ୍ରିୟାକୁ ଗଭୀର ଭାବରେ ବିଶ୍ଳେଷଣ କରିବାକୁ ପଡିବ । ଏହି କ୍ରିୟାକଳାପକୁ ଆମେ ମୁଖ୍ୟତଃ ରାଜନୈତିକ, ଅର୍ଥନୈତିକ ସାମାଜିକ ଓ ଧାର୍ମିକ ତଥା ସାମରିକ ଦୃଷ୍ଟି କୋଣରୁ ବିଚାର କରିବୁ ।

## ରାଜନୈତିକ ଦିଗ

ପର୍ତ୍ତୁଗୀଜ୍, ଡଚ୍, ଫରାସୀ ଆଦି ପାଶ୍ଚାତ୍ୟ ଦେଶର ବଣିକମାନେ ଭାରତ ସହିତ ବାଣିଜ୍ୟ କରି ବହୁ ଲାଭବାନ ହେବା ଫଳରେ, ତାହା ଇଂରାଜି ବଣିକମାନଙ୍କୁ ଭାରତ ଦିଗକୁ ଆକୃଷ୍ଟ କରିଥିଲା । ୧୬୦୦ ଖ୍ରୀଷ୍ଟାବ୍ଦରେ 'ରାଣୀ ପ୍ରଥମ ଏଲିଜାବେଥ୍'ଙ୍କ ଠାରୁ ପ୍ରାପ୍ତ ଏକ ଚାର୍ଟର (Charter) ବଳରେ, 'ଇଷ୍ଟ ଇଣ୍ଡିଆକମ୍ପାନୀ' ଭାରତ ଓ ଅନ୍ୟାନ୍ୟ ମସଲା ମିଳୁଥିବା ଦ୍ୱୀପ, ଉପଦ୍ୱୀପ ଗୁଡିକ ସହିତ ବାଣିଜ୍ୟ କରିବାର ଅଧିକାର ପ୍ରାପ୍ତ ହେଲା । ସେ ସମୟରେ ଭାରତ ସହିତ ବାଣିଜ୍ୟ କରିବା ଅର୍ଥ, ହସ୍ତ ଶିଳ୍ପଜାତ ଦ୍ରବ୍ୟ ତଥା ଅନ୍ୟାନ୍ୟ ମୂଲ୍ୟବାନ୍ ଉତ୍କୃଷ୍ଟ କଳାପ୍ରସୂତ ଦ୍ରବ୍ୟ ଆଦି କ୍ରୟ କରିବା । ସ୍ୱଦେଶୀ ଶିଳ୍ପୀ ମାନେ, ଅଜ୍ଞତା ବଶତଃ ଆନ୍ତର୍ଜାତିକ ବଜାରରେ ଏହାର ଉପଯୁକ୍ତ ମୂଲ୍ୟ ଜାଣି ନ ପାରି ଏହାକୁ ଶାଗମାଛ ଦରରେ ବିକୁଥିଲେ ଓ ଉପରୋକ୍ତ ଇଂରେଜି ବଣିକମାନେ, ତାହା ଆନ୍ତର୍ଜାତିକ ବଜାରରେ ବହୁ ମୂଲ୍ୟରେ ବିକ୍ରୟ କରି ପ୍ରଚୁର ଲାଭବାନ ହେଉଥିଲେ । ସେ ସମୟରେ, ଉକ୍ତ କମ୍ପାନୀର ଜଣେ ଜଣେ ସାଧାରଣ କର୍ମଚାରୀ ମଧ୍ୟ, ଅବସର ଗ୍ରହଣ ପରେ ତାଙ୍କ ଦେଶରେ ନବାବର ଜୀବନ ବିତାଉଥିଲେ ।

୧୭୬୫ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସ ବାର ତାରିଖରେ, 'ଇଷ୍ଟ ଇଣ୍ଡିଆ କମ୍ପାନୀ' 'ଶାହା ଆଲମ'ଙ୍କ ଠାରୁ ବଙ୍ଗ, ବିହାର ଓ ଓଡ଼ିଶାର ଦିୱାନୀ ହାସଲ କରିଥିଲା । ୧୬୦୦ ଖ୍ରୀଷ୍ଟାବ୍ଦ ଠାରୁ ୧୭୬୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ଏହି ଇଂରେଜିବଣିକ ମାନେ, ସେମାନଙ୍କର ଅନ୍ୟ ଇଉରୋପୀୟ ପ୍ରତିଦ୍ୱନ୍ଦୀମାନଙ୍କୁ ପ୍ରାୟତଃ ଉଚ୍ଛେଦ କରି, ବାଣିଜ୍ୟିକ କ୍ଷେତ୍ରରେ ଏକାଧିପତ୍ୟ ବିସ୍ତାର କରିସାରିଥିଲେ । ଦିୱାନୀ ହାସଲ କରିବା ଫଳରେ ସେମାନଙ୍କର ଏକଚାଟିଆ ବାଣିଜ୍ୟ କାରବାର ପାଇଁ ପଥ ସୁଗମ ହୋଇଗଲା । ଫଳତଃ, କମ୍ପାନୀ ଓ ତାର କର୍ମଚାରୀଗଣ ପ୍ରଚୁର ଲାଭବାନ ହେଲେ । ଆରମ୍ଭିକ ଅବସ୍ଥାରେ କମ୍ପାନୀର କ୍ରିୟାକଳାପ ମୁଖ୍ୟତଃ ବାଣିଜ୍ୟିକ ବ୍ୟାପାରରେ ସୀମିତ ଥିଲା । ଏହାର ସୈନ୍ୟବାହିନୀ ଆକାରରେ କ୍ଷୁଦ୍ର ହେଲେ ମଧ୍ୟ ଅତ୍ୟନ୍ତ

ଶକ୍ତିଶାଳୀ ଥିଲା । ସେତେବେଳେ ଏହା କୌଣସି ଦେଶୀୟ ଶାସକମାନଙ୍କ ପାଇଁ ବିପଦର କାରଣ ହୋଇନଥିଲା ଓ ଉଭୟ ଦେଶୀୟ ଓ ବିଦେଶୀୟ ଶାନ୍ତିରେ ବାଣିଜ୍ୟ କରୁଥିଲେ । କିନ୍ତୁ ୧୮୫୮ବେଳକୁ ଏହା 'ସିନ୍ଧୁ' ଠାରୁ 'ମଣିପୁର' ଓ କାଶ୍ମୀରଠାରୁ କୋଚିନ୍ ପର୍ଯ୍ୟନ୍ତ ନିଜର କ୍ଷମତା ବିସ୍ତାର କରିସାରିଥିଲା ।

୧୭୬୪ ମସିହାର 'ବକ୍ସାର ଯୁଦ୍ଧରେ', ଇଂରେଜମାନଙ୍କ ସହିତ 'ମୀର୍‌କାଶୀମ୍', 'ଶାହାଆଲମ୍' ଓ 'ଅବଧର ନବାବ ସୁଜାଉଦ୍ଦୌଲ୍ଲା'ଙ୍କ ସମ୍ମିଳିତ ଶକ୍ତି ଏକ ସଂଗ୍ରାମ କରିଥିଲା । ଇଂରାଜମାନେ ଏଥିରେ ବିଜୟ ଲାଭ କରି ବଙ୍ଗଳାର ଦିଓ୍ୱାନୀ ପାଇଥିଲେ । କିନ୍ତୁ, ଇଂରେଜିମାନଙ୍କର ଏହି ବିଜୟକୁ ସାମରିକ ବିଜୟ ବୋଲି କୁହାଯାଇ ନପାରେ, ଦେଖିବାକୁ ଗଲେ ଏହି ବିଜୟ ଇଂରେଜ ମାନଙ୍କର କୁଟନୈତିକ ଷଡଯନ୍ତ୍ରର ବିଜୟ ଥିଲା । କାରଣ ଇଂରାଜମାନେ ନବାବ ମାନଙ୍କର ପାଖଲୋକଙ୍କୁ ବିଭିନ୍ନ ଉପାୟରେ ବଶୀଭୂତ କରି, ସେମାନଙ୍କ ଦ୍ୱାରା ଷଡ଼ଯନ୍ତ୍ର ଜାଲ ରଚନା କରି ହିଁ ବିଜୟ ଲାଭ କରିଥିଲେ । ଇଂରାଜମାନଙ୍କର, ବଙ୍ଗଳାରେ ଏହି ପ୍ରଥମ ରାଜନୈତିକ ପଦକ୍ଷେପ, ସେମାନଙ୍କୁ ଆର୍ଥିକ ଦିଗରେ ବିଶେଷ ଶକ୍ତିଶାଳୀ କରିବା ଫଳରେ, ରାଜ୍ୟ ରକ୍ଷା ନାମରେ ସେମାନେ ସୈନ୍ୟବାହିନୀର ସଂଖ୍ୟା ବୃଦ୍ଧି କଲେ ଏବଂ ବଙ୍ଗଳାର ଶାସନକୁ ନିୟନ୍ତ୍ରଣ କଲେ ।

ଏ ଦିଗରେ ଇଂରାଜମାନଙ୍କର କ୍ଷମତା ବୃଦ୍ଧି, ଅନ୍ୟାନ୍ୟ ଦେଶୀୟ ରାଜାମାନଙ୍କର ଦୃଷ୍ଟି ଏଡ଼ାଇ ଯାଇନଥିଲା । ମହୀଶୂରର 'ହାଇଦର ଅଲ୍ଲୀ', ହାଇଦ୍ରାବାଦ ଓ ମରହଟ୍ଟା ଶକ୍ତିକୁ ଏକତ୍ରିତ କରି ଇଂରାଜମାନଙ୍କ ବିରୁଦ୍ଧରେ ପ୍ରୟୋଗ କଲେ । କିନ୍ତୁ 'ଓ୍ୱାରେନ୍ ହେଷ୍ଟିଙ୍ଗସ୍'ଙ୍କର କୁଟନୀତି ଫଳରେ ତାହା ସମ୍ଭବ ହୋଇପାରିଲା ନାହିଁ । ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ବ୍ରିଟିଶ୍ ବିରୁଦ୍ଧରେ କାବୁଲ୍‌ର 'ଜମନ ଶାହା', 'ଟିପୁସୁଲତାନ୍', 'ସିନ୍ଧିଆ' ଓ 'ଅବଧର ନବାବ'ଙ୍କର ଏକ ସମ୍ମିଳିତ ଶକ୍ତି ଛିଡା ହୋଇଥିଲା । କିନ୍ତୁ ଏହା ମୂଳ ଲକ୍ଷ୍ୟ ପୂରଣ କରିବାର ସମର୍ଥ ହେଲା ନାହିଁ ।

ଅପରପକ୍ଷରେ 'ଅବଧ', 'କର୍ଣ୍ଣାଟକ' ଓ 'ତ୍ରିବାଙ୍କୁର' ପ୍ରଭୃତି ଦେଶୀୟ ରାଜ୍ୟ ଗୁଡ଼ିକର ଆଭ୍ୟନ୍ତରୀଣ ବ୍ୟାପାରରେ ବ୍ରିଟିଶ୍ ମାନଙ୍କର ହସ୍ତକ୍ଷେପ ବୃଦ୍ଧି ପାଇଲା । 'ଲର୍ଡ ଓ୍ୱାରେନ୍ ହେଷ୍ଟିଙ୍ଗ୍‌ସ'ଙ୍କର କୂଟନୀତି ଫଳରେ ଭାରତରେ ଇଂରାଜମାନେ କ୍ରମେ ଶକ୍ତିଶାଳୀ ହୋଇ ଉଠୁଥିଲେ । ଦେଶୀୟ ରାଜାମାନଙ୍କ ସହିତ ଚୁକ୍ତିନାମାର ନକ୍ସା

'ହେଷ୍ଟିଙ୍ଗସ୍' ନିଜେ ପ୍ରସ୍ତୁତ କରୁଥିଲେ । ପ୍ରତି ଚୁକ୍ତିରେ ଦେଶୀୟ ରାଜାମାନଙ୍କ ଉପରେ କମ୍ପାନୀର ପ୍ରଭୁତ୍ୱ ଜାହିର କିଛି ପରିମାଣରେ ଥିଲା । ଚୁକ୍ତିନାମାରେ ଉକ୍ତ ରାଜ୍ୟର ରକ୍ଷାକର୍ତ୍ତା ହିସାବରେ 'କମ୍ପାନୀ' ଦାୟିତ୍ୱ ନେଉଥିଲା । ଏତଦ୍‌ବ୍ୟତୀତ ବ୍ୟାବହାରିକ କ୍ଷେତ୍ରରେ ଚୁକ୍ତିବହିର୍ଭୂତ ବିଷୟରେ ମଧ୍ୟ ସେମାନେ ହସ୍ତକ୍ଷେପ କରୁଥିଲେ । ଏହି 'ରକ୍ଷାକର୍ତ୍ତା'ର ଛଳନାମୟ ଭୂମିକା ହିଁ ସେମାନଙ୍କୁ ପ୍ରତି ସମସ୍ୟାରେ ହସ୍ତକ୍ଷେପ କରିବା ପାଇଁ ସୁବିଧା ଦେଉଥିଲା । 'ରକ୍ଷା କର୍ତ୍ତା' ହିସାବରେ ସେମାନେ ବିଶାଳ ସୈନ୍ୟବାହିନୀ ଗଠନ କରୁଥିଲେ ଓ ବାହିନୀର ରକ୍ଷଣାବେକ୍ଷଣର ଖର୍ଚ୍ଚ ଦେଶୀୟ ରାଜ୍ୟମାନଙ୍କୁ ଦେବାକୁ ପଡୁଥିଲା । ଚୁକ୍ତିନାମାର ସର୍ତ୍ତ ଖିଲାପ କଲେ ଦଣ୍ଡଦେବା ଅଧିକାର ମଧ୍ୟ କମ୍ପାନୀ ଚୁକ୍ତିବଳରେ ହାସଲ କରିଥିଲା । ଏଣୁ ଏହିପରି ଭାବରେ କମ୍ପାନୀର ସାମରିକ ଶକ୍ତି ବୃଦ୍ଧି ହେବା ଫଳରେ ସେମାନେ ସାଧାରଣ ଶାନ୍ତି ରକ୍ଷା ଆଳରେ ଏକ କେନ୍ଦ୍ର ଶକ୍ତି ରୂପେ ଶାନ୍ତିଚୁକ୍ତି ଅନ୍ତର୍ଭୁକ୍ତ ରାଜ୍ୟଗୁଡିକୁ ନିୟନ୍ତ୍ରଣ କରୁଥିଲେ ଓ ନିଜର ସ୍ଥିତି ଭାରତବର୍ଷରେ କ୍ରମଶଃ ଦୃଢ଼ କରୁଥିଲେ ।

'ସପ୍ତମଏଡଓ୍ୱାର୍ଡ', ସିଂହାସନ ଆରୋହଣ ଅବସରରେ, ଏକ ବାର୍ତ୍ତାରେ ଭାରତର ଦେଶୀୟ ରାଜାମାନଙ୍କର ଅବାଧ ଶାସନ କ୍ଷମତାକୁ ସ୍ୱୀକାର କରିଥିଲେ । 'କମ୍ପାନୀ' ସହିତ ଚୁକ୍ତିନାମା ଫଳରେ, ବାସ୍ତବ କ୍ଷେତ୍ରରେ ଦେଶୀୟ ରାଜ୍ୟ ଗୁଡିକର ସାର୍ବଭୌମ କ୍ଷମତାରେ, ବ୍ରିଟିଶ୍‌ମାନଙ୍କର କିଛି ମାତ୍ରାରେ କର୍ତ୍ତୃତ୍ୱ ରହୁଥିଲା । ଏହି ଦେଶୀୟ ରାଜ୍ୟଗୁଡିକର ଆଭ୍ୟନ୍ତରୀଣସ୍ୱୟଂଶାସନକୁ ସ୍ୱୀକାର କରାଯାଉଥିଲେ ମଧ୍ୟ ଚୁକ୍ତିନାମା ବଳରେ କମ୍ପାନୀ ବିଭିନ୍ନ ଆଳରେ ରାଜ୍ୟମାନଙ୍କର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କରିବାର ସୁଯୋଗ ସୃଷ୍ଟି କରୁଥିଲା ।

ବାସ୍ତବ କ୍ଷେତ୍ରରେ, ଏହି ପ୍ରକାର ଭାବରେ ସ୍ୱାଧିନତା ଓ ସାର୍ବଭୌମତ୍ୱର ଅପହରଣ କରାଯାଉଥିବା ବେଳେ, ବ୍ରିଟିଶ୍ ଆଇନ୍ ଓ କୋର୍ଟ ଦେଶୀୟ ରାଜ୍ୟର ସାର୍ବଭୌମତ୍ୱକୁ ସ୍ୱୀକାର କରୁଥିଲେ ।

'କର୍ଣ୍ଣାଟକର ନବାବ ବନାମ ଇଷ୍ଟଇଣ୍ଡିଆ କମ୍ପାନୀ' ମୋକଦ୍ଦମାରେ ରାୟ ଦେଇ 'ବ୍ରିଟିଶ କୋର୍ଟ ଅଫ୍ ଚାନସରୀ' ପ୍ରକାଶ କରିଥିଲେ, ''କମ୍ପାନୀ ଓ ନବାବଙ୍କ ମଧ୍ୟରେ ହୋଇଥିବା ଚୁକ୍ତି ଦୁଇଟି ସାର୍ବଭୌମ ଦେଶ ମଧ୍ୟରେ ଚୁକ୍ତି ବୋଲି ବୁଝିବାକୁ ପଡିବ ।''

ଆରମ୍ଭିକ ଅବସ୍ଥାରେ, ଦେଶୀୟ ରାଜ୍ୟ ଓ କମ୍ପାନୀ ମଧ୍ୟରେ ସମ୍ପର୍କ ଓ ବ୍ୟାପାର 'ଓକିଲ' ଜରିଆରେ ହେଉଥିଲା । କିନ୍ତୁ କ୍ରମେ ଇଂରାଜ ମାନଙ୍କର ରାଜନୈତିକ, ଅର୍ଥନୈତିକ ଓ ସାମରିକ କ୍ଷମତା ବୃଦ୍ଧି ସଙ୍ଗେ ସଙ୍ଗେ ସେମାନେ କ୍ରମଶଃ ନିଜକୁ ଏକ କେନ୍ଦ୍ର ଶକ୍ତିରୂପେ ପ୍ରତିଷ୍ଠିତ କରି, ସେମାନଙ୍କର ଚୁକ୍ତି ଅନ୍ତର୍ଗତ ଦେଶୀୟ ରାଜ୍ୟମାନଙ୍କରେ 'ରେସିଡେଣ୍ଟ' ମାନଙ୍କୁ, ସେମାନଙ୍କର ପ୍ରତିନିଧି ହିସାବରେ ନିଯୁକ୍ତ କଲେ । ଏହି 'ରେସିଡେଣ୍ଟ' ମାନଙ୍କର ଦ୍ୱୈତ କ୍ଷମତା ଥିଲା । ପ୍ରଥମତଃ, ଏମାନେ ବ୍ୟାପାର ସମ୍ପର୍କୀୟ କାର୍ଯ୍ୟ କରୁଥିଲେ । ଦ୍ୱିତୀୟତଃ, ଏମାନେ କ୍ଷମତାଶାଳୀ କେନ୍ଦ୍ରଶକ୍ତିର ପ୍ରତିନିଧି ହିସାବରେ, ଚୁକ୍ତିନାମାର ସର୍ତ୍ତ ପୂରଣ, ପର୍ଯ୍ୟବେକ୍ଷଣ କରୁଥିଲେ ଓ ଅନ୍ୟ ଭାବରେ ସାଧାରଣ ଶାନ୍ତି ଶୃଙ୍ଖଳା ଆଳରେ, ଏମାନେ ରାଜ୍ୟ ଶାସନକୁ ନିୟନ୍ତ୍ରଣ କରୁଥିଲେ । ଏମାନଙ୍କର ଅପମାନ ବା ଅସମ୍ମାନ କମ୍ପାନୀର ଅସମ୍ମାନ ରୂପେ ପରିଗଣିତ ହେଉଥିଲା । ଏଣୁ ସେ ସମୟରେ ଏମାନେ ଅତ୍ୟନ୍ତ କ୍ଷମତାଶାଳୀ ଥିଲେ । 'ନାଗପୁରର ପେଶବା' ଓ 'ଆପ୍ପା ସାହେବ' କମ୍ପାନୀର 'ରେସିଡେଣ୍ଟ'ଙ୍କୁ ମାଡ଼ ମାରିଥିବା ଅଭିଯୋଗରେ ଦଣ୍ଡିତ ହୋଇଥିଲେ ।

ଏତଦ୍‌ବ୍ୟତୀତ, ଦେଶୀୟ ରାଜାମାନେ ଚୁକ୍ତିନାମାର ସର୍ତ୍ତ ଅନୁସାରେ ଅନ୍ୟାନ୍ୟ ବିଦେଶୀ ରାଷ୍ଟ୍ରମାନଙ୍କ ସହିତ 'କମ୍ପାନୀ'ର ବିନା ଅନୁମତିରେ ସମ୍ପର୍କ ରଖିପାରୁନଥିଲେ, ଓ କେବଳ କମ୍ପାନି ମାଧ୍ୟମରେ ସମ୍ପର୍କ ରଖିପାରୁଥିଲେ । ଏହାଦ୍ୱାରା ସେମାନଙ୍କର କୂଟନୈତିକ ସମ୍ପର୍କ କମ୍ପାନୀର କବଳିତ ହୋଇଥିଲା । ୧୭୮୪ରେ 'କର୍ଣ୍ଣାଟକରନବାବ' ପ୍ରଥମେ କମ୍ପାନୀ ମାଧ୍ୟମରେ ଆନ୍ତର୍ଜାତିକ ସମ୍ପର୍କ ରଖିବାର ସର୍ତ୍ତକୁ, ଚୁକ୍ତିରେ ସ୍ୱୀକାର କରିଥିଲେ । ତାହାପରଠାରୁ ପ୍ରତିଚୁକ୍ତି କ୍ଷେତ୍ରରେ ଏହା 'କମ୍ପାନୀ'ର ଏକ 'ସ୍ଥିରନୀତି' ରୂପେ ଗ୍ରହଣ କରାଯାଇଥିଲା । ଦେଶୀୟ ରାଜ୍ୟମାନେ ଚୁକ୍ତିବଳରେ କେବଳ ବାହ୍ୟରାଷ୍ଟ୍ର ସହିତ ସମ୍ପର୍କ ରକ୍ଷାରୁ ବଞ୍ଚିତ ହୋଇନଥିଲେ, ପରନ୍ତୁ ସେମାନେ ସ୍ୱରାଷ୍ଟ୍ରରେ ମଧ୍ୟ ପରସ୍ପର ସହିତ ସମ୍ପର୍କ ରଖିପାରୁ ନଥିଲେ । ଏହି ପ୍ରକାରେ ଦେଶୀୟ ରାଜ୍ୟଗୁଡିକ କାଳକ୍ରମେ କମ୍ପାନୀ କବଳିତ ହୋଇ, 'ସ୍ୱତନ୍ତ୍ର ଏକକ'ରେ ପରିଣତ ହେଲେ । ଏହାଥିଲା ବିଦେଶୀ ଶକ୍ତିର ସ୍ୱଦେଶ ଐକ୍ୟ-ଶକ୍ତିକୁ ଏକ ଦାରୁଣ କୁଠାରାଘାତ ।

ଏପରିକି, କେତେକ ଚୁକ୍ତିନାମାରେ ଦେଶୀୟ ରାଜ୍ୟଗୁଡିକର ଆକ୍ରମଣ କରିବାର କ୍ଷମତା ମଧ୍ୟ ପ୍ରତ୍ୟାହାର କରିନିଆଗଲା । ୧୮୧୯ ମସିହା ଅକ୍ଟୋବର ତେର ତାରିଖ ଦିନ ହୋଇଥିବା କୁଚ ସନ୍ଧିରେ ଉଲ୍ଲେଖ ଥିଲା, ''ରାଓ ଏବଂ ତାଙ୍କର

ବଂଶଧରମାନେ କେଣସି ମୁଖିଆ ସର୍ଦ୍ଦାରଙ୍କୁ ଆକ୍ରମଣ କରିପାରିବେ ନାହିଁ । ବିବାଦ ହେଲେ କମ୍ପାନୀର ବିଚାରକୁ ସମସ୍ତେ ଗ୍ରହଣ କରିବାକୁ ବାଧ ରହିବେ ।'' କ୍ରମେ ଦେଶୀୟରାଜ୍ୟମାନଙ୍କୁ ପାରସ୍ପରିକ ସୀମା ବିବାଦରେ ମଧ୍ୟ, କମ୍ପାନୀର ନିଷ୍ପତ୍ତି ମାନିନେବାକୁ ଚୁକ୍ତିନାମା ବଳରେ ବାଧ୍ୟ କରାଗଲା ।

ଚୁକ୍ତିନାମାର ସର୍ତ୍ତାବଳୀରେ ଆବଦ୍ଧ ହୋଇ ଏହି ଦେଶୀୟ ଶାସକ ମାନଙ୍କର ପରସ୍ପରଠାରୁ ବା କୌଣସି ବାହ୍ୟ ଶକ୍ତିଠାରୁ ସାହାଯ୍ୟ ପ୍ରାପ୍ତିର ଆଶା ନଥିଲା । ଫଳରେ ସେମାନେ, ନିଜର ସ୍ଥିତିକୁ ବଞ୍ଚାଇ ରଖିବା ପାଇଁ, କମ୍ପାନୀ ପାଖରେ ମୁଣ୍ଡ ନୁଆଁଇବାକୁ ବାଧ୍ୟ ହେଉଥିଲେ । ଅପରପକ୍ଷରେ, ଏହି ରାଜ୍ୟଗୁଡ଼ିକର ପ୍ରତିରକ୍ଷା ଆଳରେ, କମ୍ପାନୀ ଅନ୍ୟାନ୍ୟ ସ୍ୱାଧୀନ ଦେଶୀୟ ରାଜ୍ୟଗୁଡ଼ିକୁ କବଳୀକୃତ କରୁଥିଲା । ଉଦାହରଣ ସ୍ୱରୂପ 'ଟିପୁସୁଲ୍‌ତାନ୍'ଙ୍କର ତ୍ରିବାଙ୍କୁର ଆକ୍ରମଣକୁ ଆଳ କରି 'କର୍ଣ୍ଣୱାଲିସ୍' 'ଟିପୁସୁଲତାନ୍'ଙ୍କ ସହିତ ଯୁଦ୍ଧ ଘୋଷଣା କରିଥିଲେ ।

୧୭୯୮ରେ 'ହାଇଦ୍ରାବାଦର ନିଜାମ', ୧୮୧୪-୧୫ ରେ 'ନେପାଳର ଗୁର୍ଖାରାଜ୍ୟ', ୧୮୧୭-୧୯ରେ 'ତୃତୀୟ ମରହଟ୍ଟା ଯୁଦ୍ଧ' ପରେ କାନପୁରରେ 'ପେଶବା', 'ନାଗପୁରର ଭୋନ୍‌ସଲା', 'ଗୋୱାଲିୟରର ସିନ୍ଧିଆ' ଓ 'ଇନ୍ଦୋରର ହୋଲକାର' ଆଦି ସମସ୍ତେ କମ୍ପାନୀର କୂଟନୀତିପୂର୍ଣ୍ଣ ଚୁକ୍ତିନାମାର କବଳିତ ହେବା ଫଳରେ ତା'ର ନିୟନ୍ତ୍ରଣ ମଧ୍ୟକୁ ଆସିଗଲେ । ରାଜପୁତ୍‌ମାନେ ମଧ୍ୟ ଏଥିରୁ ବାଦ୍ ଗଲେ ନାହିଁ । କମ୍ପାନୀର ଅଧିନସ୍ଥ ରାଜ୍ୟଗୁଡ଼ିକୁ ରକ୍ଷା କରିବା ବ୍ୟତୀତ ଅନ୍ୟ କୌଣସି ଦାୟିତ୍ୱ ନ ଥାଇ ପ୍ରକୃତ କ୍ଷମତା ଥିବା ସ୍ଥଳେ, ଦେଶୀୟ ରାଜ୍ୟର ଶାସକମାନଙ୍କର ଉପରେ ସଂକୁଚିତ କ୍ଷମତା ପରିସରରେ ଅନ୍ୟ ସମସ୍ତ ଦାୟିତ୍ୱ ଲଦି ଦିଆଗଲା । ଦେଶୀୟ ଶାସକମାନଙ୍କୁ, ଚୁକ୍ତିନାମା ବଳରେ କେବଳ କମ୍ପାନୀର ସ୍ୱାର୍ଥ ପାଇଁ ନିୟୋଜିତ କରାଗଲା । କାରଣ, ଏହି ନିୟନ୍ତ୍ରଣ ବ୍ୟତୀତ୍ କମ୍ପାନୀ ସେମାନଙ୍କୁ ଅବାଧ କ୍ଷମତା ଦେଇଥିଲା । ଯଦି କେହି ପ୍ରଜାଙ୍କର ହିତପାଇଁ ରାଜ୍ୟର କିଛି ବିକାଶ ସାଧନ କରିବାକୁ ଚେଷ୍ଟା କରି ରାଜ୍ୟକୁ ଶକ୍ତିଶାଳୀ କରିବାକୁ ଉଦ୍ୟୋଗ କରୁଥିଲେ, ସେମାନଙ୍କ ବିରୁଦ୍ଧରେ କମ୍ପାନୀ ଷଡ଼ଯନ୍ତ୍ର ରଚନା କରି ସେମାନଙ୍କୁ ବିଭ୍ରାନ୍ତ ବା ବିପଥଗାମୀ କରିବାକୁ ଚେଷ୍ଟା କରୁଥିଲା, ବିଫଳ ହେଲେ କଳେ ବଳେ କୌଶଳେ ସେମାନଙ୍କୁ କ୍ଷମତାଚ୍ୟୁତ କରୁଥିଲା । ଶାସକମାନଙ୍କର ଯଥେଚ୍ଛାରକୁ କମ୍ପାନୀ ଯଥେଷ୍ଟ ପ୍ରଶ୍ରୟ ଦେଉଥିଲା । କାରଣ ତଦ୍ୱାରା ଶାସକ ଓ ଶାସିତର ସମ୍ପର୍କ ବ୍ୟାହତ ହେବା ଫଳରେ, କମ୍ପାନୀର କ୍ଷମତା ପ୍ରସାରର ପଥ ସୁଗମ ହେଉଥିଲା ।

'ଲର୍ଡ ହେଷ୍ଟିଙ୍ଗସ୍'ଙ୍କ ଦ୍ୱାରା ପ୍ରସ୍ତୁତ ଚୁକ୍ତିନାମାଗୁଡିକରେ, ଅନାକ୍ରମଣ ସର୍ତ୍ତ ସହିତ ଦୁଇଟି କର୍ତ୍ତବ୍ୟ ଦେଶୀୟ ରାଜ୍ୟଗୁଡିକ ଉପରେ ଲଦି ଦିଆଯାଇଥିଲା । ପ୍ରଥମତଃ, ସେମାନେ ନିଜର ସୈନ୍ୟବାହିନୀକୁ କମ୍ପାନୀର ଡାକରା ମାତ୍ରକେ ପଠାଇବାକୁ ବାଧ ରହିବେ । ଦ୍ୱିତୀୟତଃ, ରାଜ୍ୟଗୁଡିକ ପାରସ୍ପରିକ ସୀମାବିବାଦରେ ଆକ୍ରମଣାତ୍ମକ ପନ୍ଥା ଅବଲମ୍ବନ ନ କରି, କମ୍ପାନୀ ସରକାରର ନିଷ୍ପତ୍ତିକୁ ମାନିନେବେ । ଚୁକ୍ତିନାମା ବଳରେ, ଏହି ଦେଶୀୟ ରାଜ୍ୟର ସାମରିକ ଶକ୍ତିକୁ ପ୍ରୟୋଗ କରି କମ୍ପାନୀ ଅନ୍ୟାନ୍ୟ ଦେଶୀୟ ରାଜ୍ୟ ଗୁଡିକ ଆକ୍ରମଣ କରି ପ୍ରଭୁତ୍ୱ ବିସ୍ତାର କରୁଥିଲେ । 'ନେପାଳ' ଆକ୍ରମଣ ସମୟରେ 'ଅବଧରାଜ୍ୟ', ଚୁକ୍ତିର ସର୍ତ୍ତ ଅନୁସାରେ କମ୍ପାନୀକୁ ସୈନ୍ୟବଳ ସାହାଯ୍ୟ ଦେଇଥିଲେ । ୧୮୦୪ ଫେବୃୟାରୀ ୨୧ ତାରିଖରେ ଗୋଆଲିଅର ସନ୍ଧିପତ୍ର ଓ ଇନ୍ଦୋରର ୧୮୧୮ ମସିହା ଜାନୁଆରୀ ଛଅ ତାରିଖର ସନ୍ଧିପତ୍ରରେ ରାଜ୍ୟମାନଙ୍କ ଉପରେ ମଧ୍ୟ ବହୁ ସାମରିକ ଦାୟିତ୍ୱ ଲଦି ଦିଆଯାଇଥିଲା ।

କ୍ରମେ ପ୍ରତିରକ୍ଷା ଆଳରେ ଓ ଚୁକ୍ତିନାମା ବଳରେ କମ୍ପାନୀ, ଦେଶୀୟ ସୈନ୍ୟ ବାହିନୀକୁ ନିଜ ସୈନ୍ୟ ବାହିନୀର ଅନ୍ତର୍ଭୁକ୍ତ କରି, ପ୍ରତିରାଜ୍ୟର ରାଜଧାନୀ ପାଖରେ ଅବସ୍ଥାପିତ କଲା । ଏମାନଙ୍କର ଦରମା କମ୍ପାନୀ ତରଫରୁ 'ରେସିଡେଣ୍ଟ' ଦେଉଥିଲେ ଓ ତାହା ଚୁକ୍ତିବଳରେ ଦିଆ ହୋଇଥିବା କିଛି ଜିଲ୍ଲାର ଖଜଣାରୁ ଆଦାୟ ହେଉଥିଲା । କାଳକ୍ରମେ ଏହି ଦେଶୀୟ ସୈନ୍ୟବାହିନୀ ସମ୍ପୂର୍ଣ୍ଣ ଭାବରେ 'ରେସିଡେଣ୍ଟ'ଙ୍କର ନିୟନ୍ତ୍ରଣରେ ରହିଲେ ଓ ସେମାନଙ୍କର ଦରମା ଓ ଚାକିରୀ ସର୍ତ୍ତ 'ରେସିଡେଣ୍ଟ'ଙ୍କର କ୍ଷମତାର ପରିସର ଭୁକ୍ତ ଥିଲା । 'ଦରବାର'ରୁ ସୈନ୍ୟମାନଙ୍କର ଦରମା ଆଦାୟରେ ବିଳମ୍ବ ହେଲେ, 'ରେସିଡେଣ୍ଟ' ମାନେ ତାହା କମ୍ପାନୀ ତରଫରୁ ଦେଉଥିଲେ ଓ ଚଢା ସୁଧ ସହ, ତାହା ଉକ୍ତ ରାଜାମାନଙ୍କଠାରୁ ଆଦାୟ କରାଯାଉଥିଲା । ଅନାଦାୟେ, ଶାସକଙ୍କୁ କ୍ଷମତାଚ୍ୟୁତ କରି ଅନ୍ୟକୁ ଶାସକ କରାଯାଉଥିଲା ବା ରାଜ୍ୟକୁ କମ୍ପାନୀର ପ୍ରତ୍ୟକ୍ଷ ଶାସନାଧିନ କରାଯାଉଥିଲା । ନିଃସନ୍ଦେହରେ କୁହାଯାଇପାରେ ଯେ ସମଗ୍ର ଭାରତବର୍ଷକୁ କରକବଳିତ କରି ଶାସନ କରିବା ପାଇଁ ଏହା ଏକ ସୁପରିକଳ୍ପିତ ଯୋଜନା ଥିଲା । ଦେଶୀୟ ରାଜ୍ୟମାନଙ୍କର 'ରକ୍ଷାକର୍ତ୍ତା' ହିସାବରେ ନିଜର ସାମରିକ ଶକ୍ତି ଧୀରେ ଧୀରେ ବୃଦ୍ଧି କରି କମ୍ପାନୀ, ବିଭିନ୍ନ ଚୁକ୍ତିବଳରେ ଦେଶୀୟ ରାଜ୍ୟ ଗୁଡିକର ସାମରିକ ଶକ୍ତି ସୀମିତ କରିବାକୁ ଲାଗିଲା । ୧୮୪୪ରେ, ଗୋୱାଲିୟର ସୈନ୍ୟବାହିନୀ ଓ ୧୮୪୬ରେ ପଞ୍ଜାବ ସୈନ୍ୟବାହିନୀ ଉପରେ ଆରୋପ କରାଯାଇଥିବା କଟକଣା ହିଁ ଏହାର ପ୍ରମାଣ । ଏପରିକି ଦେଶୀୟ ରାଜ୍ୟ ମାନଙ୍କର

ଅସ୍ତ୍ରଶସ୍ତ୍ର ଉତ୍ପାଦନ ଓ କ୍ରୟ ଆଦି ଉପରେ ମଧ୍ୟ କାଳକ୍ରମେ କମ୍ପାନୀ ତରଫରୁ କଟକଣା ଜାରୀ ହେଲା । କୁଚ ରାଜ୍ୟ ଉପରେ, ୧୮୧୯ର ସନ୍ଧିର ସର୍ତ୍ତ ଅନୁସାରେ, ବିଦେଶରୁ ଅସ୍ତ୍ରଶସ୍ତ୍ର ଆମଦାନୀ ଉପରେ ସମ୍ପୂର୍ଣ୍ଣ ନିଷେଧ କରାଗଲା । ଏହି ସର୍ତ୍ତବଳରେ, କୁଚ ରାଜ୍ୟର ଶାସକ କେବଳ କମ୍ପାନୀଠାରୁ ହିଁ ଅସ୍ତ୍ର ଶସ୍ତ୍ର କିଣିପାରିବେ । ପୁନଶ୍ଚ, ଦେଶୀୟ ରାଜ୍ୟମାନଙ୍କ ଉପରେ ବିଦେଶୀ ସୈନ୍ୟାଦି ନିଯୁକ୍ତିରେ କଟକଣା ଜାରି କରାଗଲା ।

ଚୁକ୍ତିନାମାପୂରଣର ଆରମ୍ଭିକ ଅବସ୍ଥାରେ, ଦେଶୀୟ ରାଜ୍ୟମାନଙ୍କର ଆଭ୍ୟନ୍ତରୀଣ ବ୍ୟାପାରରେ, କମ୍ପାନୀ ତରଫରୁ ଶାସକମାନଙ୍କ ଉପରେ ବିଭିନ୍ନ ପ୍ରକାର ଚାପ ପ୍ରୟୋଗ କରା ହେଉଥିଲା । ଶାସକ ଓ ଶାସିତଙ୍କ ମଧ୍ୟରେ ଭୁଲବୁଝାମଣାର ବୀଜ ବପନ କରା ହେଉଥିଲା । ପରେ ପରେ ଏହି ଆଭ୍ୟନ୍ତରୀଣ ଗଣ୍ଡଗୋଳ ଓ ବିଶୃଙ୍ଖଳାରେ କମ୍ପାନୀ ନୀରବ ଦ୍ରଷ୍ଟା ସାଜୁଥିଲା । ଭବିଷ୍ୟତରେ ଉକ୍ତ ରାଜ୍ୟ ଗୁଡିକୁ, ବିଶୃଙ୍ଖଳା ଆଳରେ ନିଜ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ କରିବା ହିଁ, ଏହି ପ୍ରତାରଣାପୂର୍ଣ୍ଣ ନିସ୍ପୃହତାର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ଥିଲା । ୧୮୧୮ ମସିହାରେ ହୋଇଥିବା ସିନ୍ଧିଆ ଓ ରାଜପୁତ୍ ରାଜ୍ୟ ମାନଙ୍କ ମଧ୍ୟରେ ଚୁକ୍ତିରେ, ଆଭ୍ୟନ୍ତରୀଣ ବ୍ୟାପାରରେ ଦେଶୀୟ ରାଜ୍ୟଗୁଡିକର ସାର୍ବଭୌମତ୍ୱକୁ କମ୍ପାନି ତରଫରୁ ସ୍ୱୀକାର କରାଯାଇଥିଲା ବେଳେ, ୧୮୪୮ ବେଳକୁ ଚୁକ୍ତିଗୁଡିକ କେବଳ କାଗଜ ପତ୍ରରେ ହିଁ ଥିଲା, କିନ୍ତୁ ବାସ୍ତବରେ ପ୍ରତ୍ୟେକ ଦେଶୀୟ ରାଜ୍ୟର ଆଭ୍ୟନ୍ତରୀଣ ବ୍ୟାପାରରେ କମ୍ପାନୀର ହସ୍ତକ୍ଷେପ ବଢିଚାଲିଥିଲା ଓ ବିଭିନ୍ନ ପ୍ରକାରେ ରାଜନୈତିକ ଚାପ ପ୍ରୟୋଗ କରି ପ୍ରଚ୍ଛନ୍ନ ଭାବରେ ପରସ୍ପର ମଧ୍ୟରେ ଭୁଲ ବୁଝାମଣା ଓ ବିଶୃଙ୍ଖଳାର ବାତାବରଣ ସୃଷ୍ଟି କରାଯାଉଥିଲା ।

ପ୍ରଥମ ଅବସ୍ଥାରେ ଶାସକ ମାନେ ନିଜର ଉତ୍ତରାଧିକାରୀ ବାଛିବାରେ କମ୍ପାନୀ ହସ୍ତକ୍ଷେପ କରୁନଥିଲା । କିନ୍ତୁ କାଳକ୍ରମେ କମ୍ପାନୀ ଏହି ଅଧିକାରରେ ହସ୍ତକ୍ଷେପ କରିବା ସହ ରାଜ୍ୟର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ନିଯୁକ୍ତିରେ ମଧ୍ୟ ହସ୍ତକ୍ଷେପ କରିବାକୁ ଲାଗିଲା । 'ଅବଧ', 'ହାଇଦ୍ରାବାଦ' ଓ 'ତ୍ରିବାଙ୍କୁର'ରେ ୧୮୪୮ ମସିହା ବେଳକୁ ରାଜ୍ୟର ଦିଓ୍ୱାନ ନିଯୁକ୍ତିରେ କମ୍ପାନୀର ପରାମର୍ଶ ନେବା ଏକ ପରମ୍ପରା ହୋଇଯାଇଥିଲା । 'ଲର୍ଡ ରିଡିଙ୍ଗ୍' ଙ୍କର ରାଜନୈତିକ ପ୍ରଭାବ ଓ ଚାପରେ କମ୍ପାନୀ ସ୍ୱରକ୍ଷିତ ଦେଶୀୟ ରାଜ୍ୟଗୁଡିକରେ ଉତ୍ତରାଧିକାରୀ ନିର୍ବାଚନର ସୁବିଧା ହାସଲ କଲା । ୧୭୭୫ ମସିହାରେ, 'ଆସଫଉଦ୍ଦୌଲ୍ଲାଙ୍କୁ ଅବଧର ନବାବ ପଦବୀ ବଳରେ ବନାରସର ରାଜାଙ୍କୁ ନିଜର ସମସ୍ତ କ୍ଷମତା ହସ୍ତାନ୍ତର କରିବା ପାଇଁ ନିର୍ଦ୍ଦେଶ ଦିଆଗଲା । 'ସାର୍‌ଜନ୍‌ଶୋର୍' ଲକ୍ଷ୍ନୌର ମସନଦ୍ ପାଇଁ 'ସାଦତ୍ ଅଲ୍ଲୀ'ଙ୍କୁ ସମର୍ଥନ ନ କରି

'ଓ୍ୟାଜିର ଅଲ୍ଲୀ'ଙ୍କୁ ନବାବ ବୋଲି ଘୋଷଣା କରିଥିଲେ । ଏହା ନବାବଙ୍କ ଅର୍ଥରେ କମ୍ପାନୀର ସୈନ୍ୟବୃଦ୍ଧି କରାଯିବା ପାଇଁ କରାହୋଇଥିଲା । କମ୍ପାନୀ, ଏହି ପ୍ରକାର ଉତ୍ତରାଧିକାରୀ ନିର୍ବାଚନ ସୂତ୍ରରେ ପ୍ରଭୂତ ସୁବିଧା ଓ ସୁଯୋଗ ଓ କ୍ଷମତା ହାସଲ କରୁଥିଲା । ମେଟ୍‌କାଫଙ୍କର ନୀତି ଥିଲା ଯେ କମ୍ପାନୀ କେନ୍ଦ୍ରଶକ୍ତି ରୂପେ ସାଧାରଣରେ ଶାନ୍ତିରକ୍ଷା କରିବ ଓ ଶାନ୍ତିଭଙ୍ଗକାରୀଙ୍କୁ ଦଣ୍ଡ ଦେବ । ଏହି ଆଳରେ କମ୍ପାନୀ, ସମସ୍ତ ରାଜ୍ୟ ଉପରେ ଆପଣାର ପ୍ରଭୁତ୍ୱ ଜାହିର କଲା । କୁର୍ଣ୍ଣୁଲ୍ ରାଜ୍ୟ ରେ ମସନଦ ପାଇଁ ଦୁଇଭାଇ ବି  କମ୍ପାନୀର ଦ୍ୱାରସ୍ଥ ହୋଇଥିଲେ ଓ କମ୍ପାନୀ 'ଦାଉଦଖାଁ'ଙ୍କୁ ସ୍ୱୀକାର କରିଥିଲା । ସେହିପରି 'ହୋଲକାର'ର ମହାରାଜା ଅପୁତ୍ରକ ହୋଇ ପ୍ରାଣ ତ୍ୟାଗ କରିବାରୁ କମ୍ପାନୀ 'ମହାରାଜାମାର୍ତ୍ତଣ୍ଡରାଓହୋଲ୍‌କାର'ଙ୍କୁ ୧୮୪୩ରେ ନିଯୁକ୍ତି ଦେଇଥିଲା । ଗୋୱାଲିୟରରେ 'ଏଲେନ୍‌ବରୋ', ରାଜାଙ୍କର ନାବାଳକତ୍ୱର ସୁଯୋଗ୍ୟ ନେଇ, ରାଜ୍ୟର ଆଭ୍ୟନ୍ତରୀଣ ବ୍ୟାପାରରେ ସମ୍ପୂର୍ଣ୍ଣ ଭାବରେ ହସ୍ତକ୍ଷେପ କଲେ । ଏହାପରେ ପରେ 'ଲାହୋର', 'ଇନ୍ଦୋର', 'ଜୟପୁର' ଓ ଅନ୍ୟାନ୍ୟ ନାବାଳକ ଶାସିତ ରାଜ୍ୟରେ କମ୍ପାନୀ କହିବାକୁଗଲେ ଏକ ପ୍ରକାର ଶାସନ କରିବାକୁ ଲାଗିଲା ।

ପର ପଦକ୍ଷେପ ସ୍ୱରୂପ, ଦେଶୀୟ ରାଜ୍ୟଗୁଡିକୁ ଧୀରେ ଧୀରେ କମ୍ପାନୀ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରାଗଲା । ୧୮୩୫ ମସିହାରେ କମ୍ପାନୀର ଦୂତକୁ ବନ୍ଦୀ କରିବା ଓ ଯୁଦ୍ଧ ଘୋଷଣା କରିଥିବାରୁ 'କୁର୍ଗ'ର ଶାସକଙ୍କୁ କ୍ଷମତାଚ୍ୟୁତ କରି ତାହା କମ୍ପାନୀ ସାମ୍ରାଜ୍ୟର ଅନ୍ତଭୂକ୍ତ କରାଗଲା ଓ ବିଶ୍ୱାସଭାଜନ ନ ହେବାରୁ 'କର୍ଣ୍ଣାଟକେ'କୁ ମଧ କମ୍ପାନୀ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରାଗଲା । ସେହିପରି ବ୍ରିଟିଶ ବିରୋଧି କାର୍ଯ୍ୟକଳାପ ଯୋଗୁଁ 'ନାଗପୁର'ର ରାଜା 'ଆପ୍ପା ସାହେବ'ଙ୍କୁ ଗାଦିଚ୍ୟୁତ କରାହୋଇ, ତାଙ୍କର 'ସାଗର' ଓ 'ନାର୍ବାଡ଼ା' ଜିଲ୍ଲାକୁ କମ୍ପାନୀ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରାଗଲା । ଏହି ନୀତି କାଳକ୍ରମେ ବିଭିନ୍ନ ଦେଶୀୟ ରାଜ୍ୟ ଉପରେ ପ୍ରୟୋଗ କରାଗଲା ।

ଦେଖିବାକୁ  ଗଲେ ମୁଖ୍ୟତ ଚାରୋଟି କାରଣରୁ ହିଁ କମ୍ପାନୀ ଦେଶୀୟ ରାଜ୍ୟଗୁଡିକୁ ନିଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରୁଥିଲା ।

ପ୍ରଥମତଃ, କମ୍ପାନୀର ବିଶ୍ୱାସଭାଜନ ନହେଲେ ବା ଚୁକ୍ତିର ଖିଲାଫ ହେଲେ ଦେଶୀୟ ରାଜ୍ୟଗୁଡିକୁ କମ୍ପାନୀର ସାମ୍ରାଜ୍ୟରେ ମିଶାଇଦିଆଯାଉଥିଲା । ୧୮୪୯ ମସିହା ୭ତାରିଖ ଏପ୍ରିଲରେ 'ଗଭର୍ଣ୍ଣରଜେନେରାଲ' ଏକ ଚିଠିରେ 'କୋର୍ଟ ଅଫ୍ ଡାଇରେକ୍ଟରସ୍'ଙ୍କର 'ସିକ୍ରେଟ୍ କମିଟି'କୁ (secret committee of the court

of Directors) ଜଣାଇଥିଲେ ଯେ, ଶିଖମାନେ ବ୍ରିଟଶମାନଙ୍କ ପ୍ରତି ଶତ୍ରୁ ଭାବାପନ୍ନ ଅଟନ୍ତି । ଏଣୁ, ପଞ୍ଜାବକୁ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରାଯିବା ଦରକାର । ଏହା ସପକ୍ଷରେ ଯୁକ୍ତି ନେଇ ସେ କହିଥିଲେ ଯେ ବ୍ରିଟିଶ୍ 'ଭୈରୋଁୱାଲ' ସନ୍ଧି ଅନୁସାରେ ସମସ୍ତ ସର୍ତ୍ତ ପୂରଣ କରୁଥିବା ବେଳେ 'ଲାହୋର' ବ୍ରିଟିଶ୍ କରଜ ବାବଦ ଗୋଟାଏ ହେଲେ ପଇସା ପଇଠ କରିନାହିଁ ଏବଂ ବାର୍ଷିକ ଖଜଣା ବାଇଶ ଲକ୍ଷ ଟଙ୍କା ମଧ ଦେଇନାହିଁ । କମ୍ପାନୀର ନିର୍ଦ୍ଦେଶ ସତ୍ତ୍ୱେ ପଞ୍ଜାବରେ ସୈନ୍ୟମାନେ 'ମୂଲରାଜ'ଙ୍କ ସହ ଯୁଦ୍ଧ କରିନଥିଲେ । ଏତଦ୍‌ବ୍ୟତୀତ, ଶିଖ୍ ସର୍ଦ୍ଦାରମାନେ ବ୍ରିଟିଶ୍‌ମାନଙ୍କୁ ବିଭିନ୍ନ ସମୟରେ ଆକ୍ରମଣ କରୁଛନ୍ତି ଓ ବ୍ରିଟିଶଙ୍କ ବିରୁଦ୍ଧରେ ଅନ୍ୟାନ୍ୟ ଶକ୍ତିଙ୍କୁ ମଧ ନିମନ୍ତ୍ରଣ କରୁଛନ୍ତି । ପରିଶେଷରେ 'ଦିଲୀପ୍ ସିଂହ'ଙ୍କର ନାବାଳକତ୍ୱ ଲାଗି, ପ୍ରଜାମାନଙ୍କ ଦୋଷ ପାଇଁ ତାଙ୍କୁ ଦାୟୀ କରିହେବ ନାହିଁ । ଏହି ସବୁ କାରଣରୁ ପଞ୍ଜାବକୁ କମ୍ପାନୀର ସାମ୍ରାଜ୍ୟରେ ମିଶାଇ ଦିଆଗଲା । 'ଲର୍ଡଡେଲହାଉସି' ଯୁକ୍ତି କରିଥିଲେ ଯେ, 'ଲାହୋର' ଶାନ୍ତିପୂର୍ଣ୍ଣ ନାହିଁ । ପୁନଶ୍ଚ, 'ଆଫ୍‌ଗାନ' ସହ କମ୍ପାନୀ ସରକାରର ସନ୍ଧି ହେବା ଫଳରେ ପଞ୍ଜାବର ଗୁରୁତ୍ୱ ହ୍ରାସ ପାଇଥିଲା ଓ କାବୁଲର ଅମୀରମାନେ, ପଞ୍ଜାବର ଶତ୍ରୁ ଥିବା ଦୃଷ୍ଟିରୁ ଏହାକୁ କମ୍ପାନୀ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରାଯିବା ଦରକାର ।

ଏହା ଫଳରେ ୨୯ ମାର୍ଚ୍ଚ ୧୮୪୮ ଦିନ ଏକ ଖୋଲା ଦରବାରରେ ପଞ୍ଜାବ ମିଶ୍ରଣ ଘୋଷଣା କରାଯାଇ 'ମହାରାଜା ଦଲୀପ ସିଂହ'ଙ୍କଠାରୁ ଦସ୍ତଖତ ନିଆଗଲା ଓ ଦରବାର ସବୁଦିନ ପାଇଁ ଭଙ୍ଗ କରାଗଲା । ପଞ୍ଜାବ, ଏକ ବ୍ରିଟିଶ୍ ଶାସିତ ପ୍ରଦେଶ ହେଲା । ବ୍ରିଟିଶ୍‌ମାନେ, ୧୮୪୯-୫୦ ବେଳକୁ, ସିନ୍ଧୁ ପ୍ରଦେଶର ଅମୀର ମାନଙ୍କୁ ଚଞ୍ଚକତା କ୍ରମେ ଜମିମାଲିକାନା ପାଇଥିବା ଅଭିଯୋଗ କରି, ସେମାନଙ୍କ ଅଧିନସ୍ଥ ଗ୍ରାମ ସମୂହ ଓ ୧୮୪୩ ମସିହା ପର୍ଯ୍ୟନ୍ତ ଖଜଣା ଦାବୀ କଲେ । ଫଳ ସ୍ୱରୂପ, ଧୀରେ ଧୀରେ ସିନ୍ଧୁ ପ୍ରଦେଶର ଉପର ଅଂଶର ଅମୀରମାନଙ୍କ ନିକଟକୁ ଦାବୀ ପୂରଣ ନିମିତ୍ତ ସୈନ୍ୟବାହିନୀ ପଠାଗଲା ଓ ଅମୀରମାନେ ବାଧ ହୋଇ ନିଜ ରାଜ୍ୟର ଏକ ତୃତୀୟାଂଶରୁ ଅଧିକ ବ୍ରିଟିଶଙ୍କୁ ସମର୍ପଣ କଲେ । ଓଡ଼ିଶାର 'ଅନୁଗୁଳ'ରେ ମଧ 'ଡେଲହାଉସୀ'ଙ୍କ ସମୟରେ ଅନୁଗୁଳର ରାଜାଙ୍କୁ ବନ୍ଦୀ କରି ଓ ତାଙ୍କର ପୁତ୍ରକୁ ଦଣ୍ଡିତ କରି, ଉକ୍ତ ରାଜ୍ୟକୁ କମ୍ପାନୀ ସାମ୍ରାଜ୍ୟରେ ମିଶାଇ ଦିଆଯାଇଥିଲା ।

ଦ୍ୱିତୀୟତଃ, ଇଂରାଜମାନେ ବିଭିନ୍ନ ଦେଶୀୟ ରାଜ୍ୟରେ ଅରାଜକତା ବ୍ୟାପିଥିବା ଆଳରେ ଉକ୍ତ ରାଜ୍ୟଗୁଡ଼ିକୁ ନିଜ ସାମ୍ରାଜ୍ୟରେ ମିଶାଇ ଦେଉଥିଲେ । 'ଅବଧ' ଶାସନ ବ୍ୟବସ୍ଥାରେ ଘୋର ବିଶୃଙ୍ଖଳା ଦେଖାଦେଇଥିଲା । କାରଣ 'ଦୀୱାନ'

ନିର୍ବାଚନରେ 'ରେସିଡେଣ୍ଟ'ଙ୍କର ଅବାଧକ୍ଷମତା ଥିବା ଯୋଗୁଁ ସେ, ପୂର୍ବରୁ ଥିବା ଉତ୍ତମଶାସକ ରୂପେ ବିବେଚିତ 'ଅନିଲି ମେହଦୀ'ଙ୍କୁ, ରାଜାଙ୍କର ଇଚ୍ଛା ବିରୁଦ୍ଧରେ ବହିଷ୍କାର କରି, 'ଅଲି ନକୀ ଖାଁ' ନାମକ ଜଣେ ଅତ୍ୟନ୍ତ ଦୁର୍ନୀତି ପରାୟଣ ବ୍ୟକ୍ତିଙ୍କୁ ଦୀୱାନ ରୂପେ ନିଯୁକ୍ତି ଦେଇଥିଲେ । ଫଳସ୍ୱରୂପ, ରାଜ୍ୟର ବାର୍ଷିକ ନିଅଣ୍ଟର ପରିମାଣ ଚାଳିଶଲକ୍ଷରେ ପହଞ୍ଚିଲା ଓ ସୈନ୍ୟମାନଙ୍କର ଦରମା ବାକି ରହିଲା । ଏ ଦିଗରେ 'ତାଲୁକଦାର' ମାନେ ମଧ୍ୟ ବିଦ୍ରୋହୀ ହୋଇଗଲେ ଓ ଅଭ୍ୟନ୍ତର ଅଞ୍ଚଳମାନଙ୍କରେ ସ୍ଥାନେ ସ୍ଥାନେ ଖଣ୍ଡ ଯୁଦ୍ଧ କଲେ । 'ଲର୍ଡ଼ ଡେଲାହାଉସୀ'ଙ୍କ ମନ ମଧ୍ୟରେ 'ଅବଧ' ରାଜ୍ୟକୁ କମ୍ପାନୀ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିବା ପାଇଁ ଯୋଜନା ଥିଲା । ଏଣୁ ୧୮୩୭ର ଚୁକ୍ତିକୁ ସେ ଅସିଦ୍ଧ ଘୋଷଣା କଲେ । ୧୮୦୧ରେ ଅବଧର ରାଜାଙ୍କ ସହିତ ହୋଇଥିବା ଚୁକ୍ତିରେ ଥିଲା ଯେ ରାଜା ରେସିଡେଣ୍ଟଙ୍କ ପରାମର୍ଶରେ ଶାସନ କାର୍ଯ୍ୟ ସୁଚାରୁରୂପେ ପରିଚାଳନା କରିବେ । କିନ୍ତୁ ରାଜା ଏହା ସମ୍ପୂର୍ଣ୍ଣ ରୂପେ ଲଘନ କରିଥିବା ହେତୁ ରାଜ୍ୟର ସମସ୍ତ ଶାସନ କମ୍ପାନୀଙ୍କ ହସ୍ତରେ ଦେଇ ପେନସନ୍ ମର୍ଯ୍ୟାଦା ନେଇ ତାଙ୍କୁ ରହିବାକୁ କୁହାଗଲା । ବହୁ ପ୍ରରୋଚନା ସତ୍ତ୍ୱେ ରାଜା ଚୁକ୍ତି ପତ୍ରରେ ସାକ୍ଷର ନ କରିବା ଫଳରେ ୧୮୫୬ ଜାନୁୟାରୀ ମାସ ୩୧ ତାରିଖରେ 'କାନପୁର'ରୁ କମ୍ପାନୀ ଫୌଜ 'ଅବଧ' ପାଇଁ ରମାନା ହେଲେ । ଫେବୃୟାରୀ ସାତ ତାରିଖ ଦିନ ସକାଳ ନଅଟା ବେଳେ କମ୍ପାନୀ ସୈନ୍ୟ 'ଅବଧ'କୁ କମ୍ପାନୀର ସାମ୍ରାଜ୍ୟରେ ମିଶାଇ ଦେଲେ ।

ତୃତୀୟତଃ, କରଜ ସୁଝି ନପାରିଲେ ରାଜ୍ୟଗୁଡ଼ିକୁ କମ୍ପାନୀ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରା ହେଉଥିଲା । ଚାଳିଶ ଲକ୍ଷ ଟଙ୍କା ବାକି ରଖିଥିବା ଅଭିଯୋଗରେ 'ହାଇଦ୍ରାବାଦ' ରାଜ୍ୟକୁ ମିଶାଇ ଦିଆଗଲା, ଛୟାଳିଶ ଲକ୍ଷ ଟଙ୍କା ବାକି ରଖିଥିବା ଅଭିଯୋଗରେ 'ବେରାର' ରାଜ୍ୟକୁ ମଧ୍ୟ ମିଶାଇ ଦିଆଗଲା ।

ଚତୁର୍ଥତଃ, ଉତ୍ତରାଧିକାରୀର ଅଭାବରେ ସେହି ରାଜ୍ୟକୁ କମ୍ପାନୀ ନିଜ ସାମ୍ରାଜ୍ୟ ସହିତ ମିଶାଇ ଦେଉଥିଲା । ଉତ୍ତରାଧିକାରୀ ଥିବା ବଡ଼ ବଡ଼ ରାଜ୍ୟଗୁଡ଼ିକରେ 'ଗାଦି ନସୀନ'ରେ, କମ୍ପାନୀ ହସ୍ତକ୍ଷେପ ନ କଲେ ମଧ୍ୟ ୧୮୫୨ରେ 'ଡେଲହାଉସୀ'ଙ୍କ ସମୟରେ 'ଝାଲାୱାର' ଓ 'ବସ୍ୱାହିର୍' ଆଦି ଛୋଟ ରାଜ୍ୟରେ ହସ୍ତକ୍ଷେପ କରାଯାଇଥିଲା ।

'ଗାଦୀ' ପାଇଁ କେହି ଉତ୍ତରାଧିକାରୀ ନଥିବା ବେଳେ ଶାସକ ନିଜର ଇଚ୍ଛାମତେ ପୋଷ୍ୟ ପୁତ୍ର ଗ୍ରହଣ କରି ପାରୁଥିଲେ ଓ ସେ ପରବର୍ତ୍ତୀ ଶାସକ ହେଉଥିଲେ । ଯେହେତୁ ପୋଷ୍ୟପୁତ୍ର ଗ୍ରହଣ କରିବା ଧର୍ମଶାସ୍ତ୍ର ଦ୍ୱାରା ସମର୍ଥିତ ଏଣୁ

ଏହା ଆରମ୍ଭିକ ଅବସ୍ଥାରେ କମ୍ପାନୀ ଦ୍ୱାରା ସ୍ୱୀକୃତ ହୋଇଥିଲା । "Hindu sovereign have a right to adopt, to the exclusion of collateral hcirs and the British Government is bound to acknowledge the adoption, provided it is regular and not in violation of Hindu law." (Parlimentary Papers15th Feb. 1850, p.14)

( ହିନ୍ଦୁ ସାର୍ବଭୌମ ଶାସକମାନଙ୍କର ନିଜର ସପିଣ୍ଡ ମାନଙ୍କୁ ବାଦଦେଇ ନିଜେ ପୋଷ୍ୟପୁତ୍ର ଗ୍ରହଣ କରିବାର ଅଧିକାର ଥିଲା ଓ ବ୍ରିଟିଶ୍ ସରକାର ଉକ୍ତ ପୋଷ୍ୟପୁତ୍ର ଗ୍ରହଣ ନିୟମିତ ଭାବରେ ଓ ଧର୍ମ ଲଙ୍ଘନ କରୁନଥିଲେ ତାହା ମାନିବାକୁ ବାଧ ଥିଲେ । (ପାର୍ଲିଆମେଣ୍ଟାରୀ ପେପର୍‌ସ, ୧୫ ତାରିଖ ଫେବ୍ରୁୟାରୀ ୧୮୫୦ ମସିହା))

କିନ୍ତୁ, ଗାଦୀନସୀନ ପୂର୍ବରୁ ପୋଷ୍ୟପୁତ୍ର ଓ ତା'ର ପ୍ରତିଦ୍ୱନ୍ଦୀମାନଙ୍କ ମଧ୍ୟରେ ବିବାଦ ସୃଷ୍ଟି କରାହୋଇ, କମ୍ପାନୀ ମଧ୍ୟସ୍ଥତା କରୁଥିଲା । ଏଥିରେ କମ୍ପାନୀର ବିଚାର ହିଁ କାର୍ଯ୍ୟକାରୀ ହେଉଥିଲା । କମ୍ପାନୀ, ସର୍ବୋପରି ବିଚାରକର୍ତ୍ତା ହେବା ଫଳରେ, କାଳକ୍ରମେ ପୋଷ୍ୟପୁତ୍ର ଗ୍ରହଣ କରିବାର ଧାର୍ମିକ ଓ ରାଜନୈତିକ ଗୁରୁତ୍ୱ ହ୍ରାସ ପାଇବାକୁ ଲାଗିଲା । ଉଦାହରଣ ସ୍ୱରୂପ, 'ଅହମଦନଗର'ରେ, ବହୁ ଦିନର ବିବାଦୀୟ ଗାଦୀ ପାଇଁ ଦୁଇ ଜଣ ଦାବୀଦାର ଥିଲେ । ଜଣେ 'ମହାରାଜ ପୃଥ୍ୱୀ ସିଂ'ଙ୍କର ବିଧବା ରାଣୀଙ୍କ ଦ୍ୱାରା ପୋଷ୍ୟପୁତ୍ର ରୂପେ ଗୃହୀତ ହୋଇଥିବା 'ଯଶବନ୍ତ ସିଂହ' ଓ ଅନ୍ୟ ଜଣେ ହେଲେ 'ଇଡାର'ର ମହାରାଜା 'ଯଓ୍ୱନ ସିଂହ' । ସରକାରଙ୍କ ବିଚାରରେ 'ଯଶବନ୍ତସିଂହ'ଙ୍କର ଦାବୀ ଅସିଦ୍ଧ ହୋଇ 'ଯଓ୍ୱନସିଂହ'ଙ୍କୁ ରାଜା ରୂପେ ସ୍ୱୀକାର କରାଯାଇଥିଲା । ଗାଦୀ ପାଇଁ ସମସ୍ତ ଆଇନଗତ ସ୍ୱୀକୃତି ଥାଇ ମଧ, କମ୍ପାନୀଙ୍କର ବିଭିନ୍ନ ସର୍ତ୍ତ ପୂରଣ ନକଲେ 'ଗାଦୀ' ମିଳୁନଥିଲା । 'କରାଉଲି'ର 'ନରସିଂହପାଳ'ଙ୍କର ସିଂହାସନ ଆରୋହଣକୁ, କରଜ ଶୁଝି ସାରିବା ପରେ ହିଁ ସ୍ୱୀକୃତି ଦିଆ ହୋଇଥିଲା । ଏହିପରି ଭାବରେ ଦେଖିବାକୁ ଗଲେ, ବାସ୍ତବକ୍ଷେତ୍ରରେ ପୋଷ୍ୟପୁତ୍ର ରାଜ୍ୟର ଉତ୍ତରାଧିକାରୀ ହେବାକୁ ହେଲେ, ଶାସକର ସ୍ୱୀକୃତି ଅପେକ୍ଷା କମ୍ପାନୀର ସ୍ୱୀକୃତିର ଆବଶ୍ୟକତା ଥିଲା । 'ଲର୍ଡ ଡେଲହାଉସୀ', ଏହି ସ୍ଥିତିକୁ ସୁବିଧାଜନକ ଓ ସ୍ପଷ୍ଟ କରି ଦେବା ପାଇଁ, 'Doctirne of Laps' ର ପ୍ରବର୍ତ୍ତନ କଲେ । ଏହି ନୀତିବଳରେ ପୋଷ୍ୟପୁତ୍ର, ଜଣଙ୍କର ବ୍ୟକ୍ତିଗତ ସମ୍ପତ୍ତିରେ ଉତ୍ତରାଧିକାରୀ ହେବାରେ କିଛି ବାଧା ନଥିଲା । କିନ୍ତୁ, ରାଜ୍ୟର ଉତ୍ତରାଧିକାରୀ ହେବାକୁ ଗଲେ, ସର୍ବୋଚ୍ଚ କ୍ଷମତାଧିକାରୀ କମ୍ପାନୀ ସରକାରର ସ୍ୱୀକୃତିର ଆବଶ୍ୟକତା ଥିଲା । ଏହି ପ୍ରକାର ପରମ୍ପରା ଭାରତବର୍ଷରେ ପୂର୍ବରୁ ନଥିଲା, କିମ୍ବା, ଏହି ନୀତି କୌଣସି

ଭାରତୀୟ ଶାସ୍ତ୍ର ଦ୍ୱାରା ସମର୍ଥିତ ନଥିଲା । ଏହା ପ୍ରଥମ ଥର ପାଇଁ, କମ୍ପାନୀ ସରକାରଙ୍କର ସାମ୍ରାଜ୍ୟବାଦୀ ନୀତି ହେତୁ ପ୍ରବର୍ତ୍ତନ କରାଗଲା । ଏହା ଫଳରେ, ବିଭିନ୍ନ ଥାନରେ ସିଂହାସନର ପ୍ରତିଦ୍ୱନ୍ଦୀ ମାନଙ୍କ ମଧ୍ୟରେ ପାରସ୍ପରିକ ବିବାଦ ଲଗାଇ ପରିଶେଷରେ ରାଜ୍ୟ ଗୁଡିକୁ କମ୍ପାନୀ ସାମ୍ରାଜ୍ୟରେ ମିଶାଇ ଦିଆଯାଉଥିଲା ।

ପ୍ରତି ମିଶ୍ରଣ କ୍ଷେତ୍ରରେ ଦୁଇଟି ବିଷୟ ବିଚାରର ବସ୍ତୁ ଥିଲା । ପ୍ରଥମତଃ, ଆଇନଗତ ଅଧିକାରର ବିଚାର ଦ୍ୱିତୀୟତଃ, ରାଜନୈତିକ ଦୃଷ୍ଟିକୋଣରୁ ବିଚାର । 'ସତାରା' ରାଜ୍ୟ ହିଁ ଲର୍ଡ଼ ଡେଲାହାଉସୀଙ୍କର ରାଜ୍ୟ ମିଶ୍ରଣ ନୀତିର ପ୍ରଥମ ଉଦାହରଣ । ୧୮୪୮ ମସିହା ଏପ୍ରିଲ ପାଞ୍ଚ ତାରିଖରେ 'ସତାରା'ର ରାଜା 'ଆପ୍ପା ସାହେବ୍', 'Dr. Murray' ନାମକ ଜଣେ 'ରେସିଡ଼େନ୍ସି' ଡାକ୍ତରଙ୍କ ସମ୍ମୁଖରେ ତାଙ୍କର ଦୂର ସମ୍ପର୍କୀୟ ବନ୍ଧୁଙ୍କର ପୁତ୍ରକୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରି ଦେହତ୍ୟାଗ କଲେ । ୧୮୧୯ ସେପ୍ଟେମ୍ବର ପଚିଶ ତାରିଖର ଚୁକ୍ତି ବଳରେ, 'ସତାରା'ର ରାଜା 'ପେଶବା'ଙ୍କ ଅଧିନରୁ ଆସି ବ୍ରିଟିଶ୍ ନିୟନ୍ତ୍ରଣରେ ଥିଲେ ଓ ଚୁକ୍ତିରେ ତାଙ୍କର ନିରଙ୍କୁଶ ଉତ୍ତରାଧିକାରୀ ନିର୍ଣ୍ଣୟକୁ ସ୍ୱୀକାର କରାଯାଇଥିଲା । କିନ୍ତୁ 'ଲର୍ଡ ଡେଲାହାଉସୀ'ଙ୍କ ନୂତନ ନୀତି ଫଳରେ, 'ସତାରା' ରାଜ୍ୟକୁ କମ୍ପାନୀସରକାରର ଅନ୍ତର୍ଗତ କରିଦିଆଗଲା । ଏହାଦ୍ୱାରା ସରକାର, ବାର୍ଷିକ ବାରଲକ୍ଷ ଟଙ୍କା ଖଜଣା ପାଇଲେ । 'ସତାରା'ର ରାଜା ବଞ୍ଚିଥିବା ସମୟରେ ତାଙ୍କର ସୁଶାସନ ପାଇଁ ସେ କମ୍ପାନୀସରକାରଠାରୁ ଅଠାବନଟି ପ୍ରଶଂସାପୂର୍ଣ୍ଣ ପତ୍ର ପାଇଥିଲେ । ତାଙ୍କର ରାଜ୍ୟ କମ୍ପାନୀ ସରକାରରେ ମିଶିଯିବା ଫଳରେ ଅନ୍ୟ ଦେଶୀୟ ରାଜ୍ୟମାନେ, ନିଜକୁ ନିରାପଦ ମନେ କଲେ ନାହିଁ, ଏବଂ ବିଭିନ୍ନ ଆଶଙ୍କାରେ କାଳ କାଟିବାକୁ ଲାଗିଲେ ।

ଝାନ୍ସୀ, ପୂର୍ବେ ପେଶବାଙ୍କ ଏକ ସୁବାଦାରୀ ଥିଲା ଓ ଏହାର ରାଜନୈତିକ କ୍ଷମତା ବୁନ୍ଦେଲଖଣ୍ଡ ସହିତ, ୧୮୧୭ ମସିହା ନଭେମ୍ବର ସତର ତାରିଖରେ କମ୍ପାନୀ ସରକାରକୁ ହସ୍ତାନ୍ତର କରା ହୋଇଥିଲା । ୧୮୪୨ ମସିହାରେ ଝାନ୍ସିର ମହାରାଜା 'ଗଙ୍ଗାଧରରାଓ ବାବାସାହେବ'ଙ୍କ ସହିତ 'ଲକ୍ଷ୍ମୀବାଈ'ଙ୍କର ବିବାହ ସମ୍ପନ୍ନ ହୋଇଥିଲା । ୧୮୫୩ ମସିହାରେ ମହାରାଜାଙ୍କର ଆକସ୍ମିକ ମୃତ୍ୟୁ ପରେ 'ମହାରାଣୀ ଲକ୍ଷ୍ମୀବାଈ' 'ଦାମୋଦର'ଙ୍କୁ ନିଜର ପୋଷ୍ୟପୁତ୍ର ରୂପେ ଗ୍ରହଣ କଲେ । କିନ୍ତୁ 'ଲର୍ଡ ଡ଼େଲାହାଉସୀ'ଙ୍କର ରାଜ୍ୟ ମିଶ୍ରଣ ନୀତି ଫଳରେ କମ୍ପାନୀ ସରକାର, 'ଝାନସୀ'କୁ ନିଜର ସାମ୍ରାଜ୍ୟ ସହିତ ସମ୍ପୂର୍ଣ୍ଣ ଭାବରେ ମିଶାଇଦେବାକୁ ବସିଲେ । ସ୍ୱାଧିନଚେତା, ସ୍ୱାଭିମାନୀ 'ଲକ୍ଷ୍ମୀବାଈ' ଏଥିରେ ଉତ୍‌କ୍ଷିପ୍ତା ହୋଇ ରହିଥିଲେ । ୧୮୫୩ ମସିହା

ଡିସେମ୍ବର ମାସ ଏଗାର ତାରିଖରେ ନାଗପୁରରେ ଭୋନ୍‌ସଲାଙ୍କର ମୃତ୍ୟୁ ହେଲା । ସେ ଅପୁତ୍ରିକ ଥିଲେ ଓ କୌଣସି ପୋଷ୍ୟପୁତ୍ର ଗ୍ରହଣ କରିନଥିଲେ । ବିଧବା ରାଣୀ ମଧ୍ୟ ନିଜର ଅଧିକାର ସମ୍ବନ୍ଧରେ ଜ୍ଞାନର ଅଭାବରୁ ଓ ରେସିଡେଣ୍ଟଙ୍କୁ ଭୟ କରି, କୌଣସି ପୋଷ୍ୟପୁତ୍ର ଗ୍ରହଣ କରିପାରିଲେ ନାହିଁ । ଫଳରେ ନାଗପୁର ରାଜ୍ୟ ସହଜରେ କମ୍ପାନୀ ସରକାରର ଅନ୍ତର୍ଭୁକ୍ତ ହେଲା । ଏହା କମ୍ପାନୀକୁ ପ୍ରଚୁର ତୁଳା ଉତ୍ପାଦନର କ୍ଷେତ୍ର ଦେବା ସଙ୍ଗେ ସଙ୍ଗେ ବର୍ଷକୁ ଆଠଲକ୍ଷ ଟଙ୍କାର ଖଜଣା ମଧ୍ୟ ଦେଲା । ଏହି ପ୍ରକାରେ 'ବୁନ୍ଦେଲଖଣ୍ଡ'ର 'ଜୟପୁର', 'ପଞ୍ଜାବ'ର 'ଭଗତ', 'ଉଦୟପୁର' ଓ 'ସମ୍ବଲପୁର' ଆଦି ବହୁ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ସମୂହକୁ ଧୀରେ ଧୀରେ କମ୍ପାନୀ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରାଗଲା ।

୧୮୧୮ ମସିହାରେ ସନ୍ଧି ଫଳରେ ପେଶବା 'ବାଜିରାଓ', ସିଂହାସନ ତ୍ୟାଗ କରି ପେନସନ୍ ନେଇ ଗଙ୍ଗା କୂଳରେ ଶେଷ ଜୀବନ ଅତିବାହିତ କରୁଥିଲେ । ସେ ବାର୍ଷିକ ଆଠଲକ୍ଷ ଟଙ୍କା ପେନ୍‌ସନ୍ ଆକାରରେ ପାଉଥିଲେ । ସେ ପ୍ରଜାବତ୍ସଳ ହୋଇ ଥିବାରୁ ତାଙ୍କର ଗୁଣମୁଗ୍ଧ ବହୁ ବିଶିଷ୍ଟ ପରିବାର ତାଙ୍କର ଆଶ୍ରାରେ ତାଙ୍କ ସହିତ ବାସ କରୁଥିଲେ । ସେ ମଧ୍ୟରେ ବେଣୁ ଗ୍ରାମର ଏକ ବିଶିଷ୍ଟ ପରିବାରର 'ମାଧବ ରାଓ' ନାମକ ଜଣେ ବ୍ରାହ୍ମଣ ଓ ତାଙ୍କର ସ୍ତ୍ରୀ 'ଗଙ୍ଗାବାଇ' ଥିଲେ । ସେମାନଙ୍କର 'ନାନା ସାହେବ' ପୁତ୍ର ରୂପେ ଜନ୍ମ ଗ୍ରହଣ କରିଥିଲେ । ତା'ଙ୍କୁ ଅଢ଼େଇ ବର୍ଷ ହୋଇଥିବାବେଳେ ୧୮୨୭ ମସିହା ଜୁନ୍ ସାତ ତାରିଖରେ 'ବାଜିରାଓ' ତାହାଙ୍କୁ ଯଥାବିଧି ନିଜର ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । ୧୮୫୫ ମସିହାରେ 'ବାଜିରାଓ'ଙ୍କର ମୃତ୍ୟୁ ହେଲା । ମୃତ୍ୟୁ ପୂର୍ବରୁ 'ବାଜିରାଓ' ଏକ ଉଇଲନାମାରେ 'ନାନା ସାହେବ'ଙ୍କୁ ତାଙ୍କର ମୃତ୍ୟୁ ଅନ୍ତେ ସମସ୍ତ ସମ୍ପତ୍ତି ଓ କ୍ଷମତାର ଅଧିକାରୀ କରିଥିଲେ । କିନ୍ତୁ 'ବାଜିରାଓ'ଙ୍କର ମୃତ୍ୟୁ ପରେ ପରେ, କମ୍ପାନୀ ସରକାର ଘୋଷଣା କଲେ ଯେ 'ନାନା ସାହେବ'ଙ୍କର, ବାଜିରାଓ ପାଉଥିବା ପେନସନ ଆଠଲକ୍ଷ ଟଙ୍କାରେ କୌଣସି ଅଧିକାର ନାହିଁ । ଏହିପରି ଭାବରେ କମ୍ପାନୀସରକାରଙ୍କର ସାମ୍ରାଜ୍ୟ କାଳକ୍ରମେ ସାରାଭାରତକୁ ଆଚ୍ଛନ୍ନ କରି ଦାସତ୍ୱର ଶୃଙ୍ଖଳରେ ବାନ୍ଧିବାକୁ ଲାଗିଲା ।

## ଅର୍ଥନୈତିକ ଦିଗ

ପୂର୍ବରୁ କମ୍ପାନୀ ଦେଶୀୟ ରାଜାମାନଙ୍କ ଉପରେ ଖଜଣା, ସୈନ୍ୟବାହିନୀର ଖର୍ଚ୍ଚ, ବିଭିନ୍ନ କରଜ, ଆଦି ନାନା ପ୍ରକାର ଅର୍ଥନୈତିକ ଚାପ ପକାଉଥିଲା । ଏହା

ଫଳରେ ଦେଶୀୟ ରାଜାମାନେ, ପ୍ରଜାଙ୍କ ଉପରେ ଯଥେଷ୍ଟ ଅତ୍ୟାଚାର କରି କର ଆଦାୟ କରି ନେଇ, ନିଜର ପଦବୀ ବଞ୍ଚାଇ ରଖୁଥିଲେ । କିନ୍ତୁ ରାଜ୍ୟ ସମୂହ, କମ୍ପାନୀ ପରିଚାଳିତ ଭାରତ ସରକାରର ପ୍ରତ୍ୟକ୍ଷ ଶାସନାଧିନ ହେବା ଫଳରେ ଉକ୍ତ ସରକାରର ସମସ୍ତ ନୀତି ମାନିବାକୁ ପ୍ରଜାମାନେ ବାଧ୍ୟ ରହିଲେ । 'ଇଷ୍ଟଇଣ୍ଡିଆକମ୍ପାନୀ'ର ଖଜଣା ଆଦାୟ ନୀତି ସର୍ବ ପ୍ରଥମେ ବଙ୍ଗଳାର ଜମିଦାର, ପ୍ରଜା ଓ ଚାଷୀଙ୍କର ଧ୍ୱଂସ ସାଧନ କରିବାକୁ ଲାଗିଲା । ପୂର୍ବରୁ, ଜମିଦାରମାନେ ପ୍ରଜାମାନଙ୍କଠାରୁ ଖଜଣା ଆଦାୟ କରି ରାଜାଙ୍କୁ ଦେବାକୁ ବାଧ୍ୟ ରହୁଥିଲେ । ଅନାଦାୟେ ରାଜାଙ୍କର ସୈନ୍ୟମାନେ ଜମିରେ ପଶି ଫସଲ କାଟି ଆଣୁଥିଲେ । ବନ୍ୟା, ମରୁଡ଼ି ଆଦି ଦୁର୍ବିପାକରେ ଫସଲ ହାନି ହେଲେ ବାସ୍ତବତା ଅନୁଧ୍ୟାନ କରି ଖଜଣା ଛାଡ କରାଯାଉଥିଲା । ଅର୍ଥ ଆକାରରେ ନ ହେଲେ ମଧ୍ୟ ଫସଲ ଆକାରରେ ଖଜଣା ଆଦାୟ ମଧ୍ୟ ହେଉଥିଲା । କିନ୍ତୁ କମ୍ପାନୀ ଶାସନ ଫଳରେ, ନିର୍ଦ୍ଧାରିତ ଅର୍ଥ ଆକାରରେ ଖଜଣା ଆଦାୟ କରାଯିବାକୁ ଲାଗିଲା । ଏହା ପରିମାଣରେ ବହୁତ ଥିଲା । ଅପର ପକ୍ଷରେ ଦେଶୀୟ ମୁଦ୍ରାଶାଳ ଗୁଡିକ ଧୀରେ ଧୀରେ ବନ୍ଦ କରି ଦିଆଯାଇ, କମ୍ପାନୀ ପ୍ରଚଳିତ ମୁଦ୍ରା ବ୍ୟବହାର ପାଇଁ ସମସ୍ତଙ୍କୁ ବାଧ୍ୟ କରାଯିବା ଫଳରେ, ଏହା ଏକ ପ୍ରକାର ଏକଚାଟିଆ ଅର୍ଥନୈତିକ ଶୋଷଣରେ ପରିଣତ ହେଲା । ପୂର୍ବରୁ ଜମିଦାର, ପ୍ରଜା ଓ ଚାଷୀର ଯଥାବିଧି ନିରଙ୍କୁଶ ସତ୍ୱ ପୁରୁଷାନୁକ୍ରମେ ରହିଆସିଥିଲା । କିନ୍ତୁ କମ୍ପାନୀର ନୂତନ ନୀତିରେ, ଖଜଣା ଅନାଦାୟେ ଜମିଦାରୀ ନିଲାମ କରି ଖଜଣା ଆଦାୟର ବ୍ୟବସ୍ଥା ହେବା ଫଳରେ, ବହୁ ବିଶିଷ୍ଟ ଜମିଦାର ସର୍ବସ୍ୱାନ୍ତ ହୋଇ ଦାଣ୍ଡର ଭିକାରୀ ହେଲେ । ରୟତମାନଙ୍କର ସତ୍ୱରେ ମଧ୍ୟ ନିରାପତ୍ତା ନଥିଲା । ସେମାନଙ୍କର ପଟ୍ଟା ଥିଲେ ମଧ୍ୟ ଖଜଣା ଆଦାୟ, କମ୍ପାନୀ ବା ଜମିଦାର କାହା ଦ୍ୱାରା ନିର୍ଦ୍ଦିଷ୍ଟ ଭାବରେ ନିୟନ୍ତ୍ରିତ ହେଉନଥିବାରୁ ସେମାନେ ଆଶଙ୍କିତ ଓ ଅସହାୟ ହୋଇପଡିଥିଲେ । ମାଡ୍ରାସରେ ମଧ୍ୟ ଇଂରାଜିମାନଙ୍କର ଏହି ନୀତି ଫଳରେ, ବଡ ବଡ ପରିବାରମାନ ଖଜଣା ଦେଇନପାରି ଏକ ଏକ ସାଧାରଣ ଚାଷୀରେ ପରିଣତ ହେଲେ । 'କର୍ଣ୍ଣାଟକ' ରାଜ୍ୟରେ ସ୍ଥାନୀୟ ସର୍ଦ୍ଦାରମାନଙ୍କ ଅଧିନରେ, ବିଭିନ୍ନ ସେବା ବିନିମୟରେ ବିରାଟ ବିରାଟ ଜାଗିରିମାନ ଥିଲା । ସେମାନେ ଉକ୍ତ ଜାଗିରିକୁ ସ୍ୱାଧିନ ଭାବରେ ପୁରୁଷାନୁକ୍ରମେ ଭୋଗ ଦଖଲ କରି ଆସୁଥିଲେ । କିନ୍ତୁ 'କର୍ଣ୍ଣାଟକ', କମ୍ପାନୀସରକାରର ପ୍ରତ୍ୟକ୍ଷଶାସନାଧିନ ହେବା ଫଳରେ ସେମାନଙ୍କର ସ୍ୱାଧିନତାରେ ବାଧା ପଡିଲା ଓ ସେମାନେ ବିଦ୍ରୋହ କରି ସେମାନଙ୍କର ଜାଗିରି ହରାଇଥିଲେ । ବମ୍ବେ ଆଦି ସ୍ଥାନରେ ପ୍ରତି ଗ୍ରାମ ଉପରେ ନିର୍ଦ୍ଦିଷ୍ଟ ଆକାରରେ

ଖଜଣା ଧାର୍ଯ୍ୟ ହେଉଥିଲା ଓ ତାହା ଗ୍ରାମର ମୁଖିଆ, ଯେ କୌଣସି ପ୍ରକାରେ ଗ୍ରାମବାସୀମାନଙ୍କଠାରୁ ଆଦାୟ କରି ଦେବାକୁ ବାଧ ରହୁଥିଲେ । ଏହା ଫଳରେ ବହୁ ଦରିଦ୍ର ଚାଷୀ ଜୀବନ ବିକଳରେ ସପରିବାରେ ଗ୍ରାମ ତ୍ୟାଗ କରୁଥିଲେ । ଉତ୍ତର-ପଶ୍ଚିମ ପ୍ରଦେଶ ଗୁଡିକରେ 'ମାହାଲୱାରି' ବନ୍ଦୋବସ୍ତରେ ନିର୍ଦ୍ଧାରିତ ଖଜଣାର ହାର ଅନୁମାନିକ ଫସଲ ଉତ୍ପାଦନରେ ଦୁଇ ତୃତୀୟାଂଶ ହୋଇଥିବାରୁ ଏହା ଦ୍ୱାରା ପ୍ରଜାକୂଳ ଯଥେଚ୍ଛା ଶୋଷିତ ହୋଇଥିଲେ ।

ଅପର ପକ୍ଷରେ ଇଂଲାଣ୍ଡରେ ଶିଳ୍ପ ବିପ୍ଳବ ହେବା ଫଳରେ, ଆମଦାନୀ ବୃଦ୍ଧି ନିମିତ୍ତ କଞ୍ଚାମାଲର ଆବଶ୍ୟକତା ବଢ଼ିଲା । ତତ୍ ସଙ୍ଗେ ସଙ୍ଗେ ଉତ୍ପାଦିତ ପଦାର୍ଥର, ଆନ୍ତର୍ଜାତିକ ବଜାରରେ ଚାହିଦା ବୃଦ୍ଧି କରିବାର ଆବଶ୍ୟକତା ପଡିଲା । ଏହି ଲକ୍ଷ୍ୟ ସାଧନ ନିମିତ୍ତ, ଇଂରାଜିମାନେ ଭାରତବର୍ଷକୁ ଯଥେଚ୍ଛା ଅର୍ଥନୈତିକ ଶୋଷଣ କରିବାକୁ ଲାଗିଲେ । ପ୍ରଥମତଃ ବାଣିଜ୍ୟକର, ପ୍ରତି ରାଜ୍ୟମାନଙ୍କର ଆୟର ଏକ ପନ୍ଥା ଥିଲା । କମ୍ପାନୀ, ଏହି କର ଆଦାୟ ନିଷେଧ କରିବା ଫଳରେ, ଦେଶୀୟ ରାଜ୍ୟ ଗୁଡିକର ଆର୍ଥିକ କ୍ଷତି ହେଲା । ବ୍ୟବସାୟୀମାନେ, କମ୍ପାନୀର ନୀତି ଅନୁସାରେ ଯାତ୍ରାର ଆରମ୍ଭ ସ୍ଥାନ ବା ଶେଷ ସ୍ଥାନରେ କମ୍ପାନୀସରକାରଙ୍କୁ ଥରେ ମାତ୍ର ଖଜଣା ଦେଉଥିଲେ । ଏହି ସ୍ଥଳପଥବାଣିଜ୍ୟାଦି କର ସ୍ୱଦେଶୀ ବଣିକମାନଙ୍କୁ ଲାଗୁ ହେଉଥିବା ସ୍ଥଳେ ଇଂରାଜମାନଙ୍କୁ ଲାଗୁ ହେଉନଥିଲା । ଏଣୁ ଭାରତରେ ଶିଳ୍ପଦ୍ରବ୍ୟାଦିର ମୂଲ୍ୟବୃଦ୍ଧି ହେବା ଫଳରେ ଚାହିଦା କମିବାକୁ ଲାଗିଲା । ଭାରତୀୟ ଶିଳ୍ପଦ୍ରବ୍ୟର ରପ୍ତାନୀ ଉପରେ କମ୍ପାନୀ ତରଫରୁ କଟକଣା ଜାରି ହେବା ଫଳରେ, ବହୁ ସମୃଦ୍ଧ ଶିଳ୍ପ ବ୍ୟବସାୟମାନ ବନ୍ଦ ହେବାକୁ ଲାଗିଲା । ଶିଳ୍ପୀ କୁଳ ଧ୍ୱଂସ ପାଇବାକୁ ଲାଗିଲେ । 'ନାଗପୁର', 'ବେରାର' ପରି ତୁଳା ଆମଦାନୀ ଓ ଅନ୍ୟାନ୍ୟ କଞ୍ଚାମାଲ ଆମଦାନୀ ସ୍ଥାନରେ କମ୍ପାନୀର ପ୍ରତ୍ୟକ୍ଷ ଶାସନ ପ୍ରତିଷ୍ଠିତ ହେବା ଫଳରେ ଚାଷୀମାନଙ୍କୁ ଶୋଷଣ କରାଯାଇ ସେଠାରୁ କଞ୍ଚାମାଲମାନ କମ୍ପାନୀ ନିଜର ଦେଶକୁ ବୋହି ନେଲା ଓ ସେଠାର ଉତ୍ପାଦିତ ଦ୍ରବ୍ୟ, ଚଢାଦାମରେ ଭାରତରେ ବିକିଲା । ଫଳରେ ଭାରତୀୟ ଜନତାର ଆର୍ଥିକ ମେରୁଦଣ୍ଡ ଭାଙ୍ଗିଯିବା ସଙ୍ଗେ ସଙ୍ଗେ, ଜାତୀୟ ଅର୍ଥନୀତି ସମ୍ପୂର୍ଣ୍ଣ ରୂପେ ଇଂରାଜ କବଳୀକୃତ ହେଲା । ସେ ସମୟରେ ଏହା ସମାଲୋଚନା କରି କାର୍ଲମାର୍କ୍ସ (Karl Marx) ତାଙ୍କର 'କାପିଟାଲ' ଗ୍ରନ୍ଥର ତୃତୀୟଖଣ୍ଡରେ ଲେଖିଥିଲେ :-

The obstacle presented by the internal solidity and articulation of pre-capitalistic, national models of production to the corrosive

influence of commerce is strikingly shown in the intercourse of the English with India and China. The broad basis of the mode of production is here formed by the .unity of small agriculture and domestic industry, to which is added in India the form of communes resting upon common ownership of land which, by the way, was likewise the original form in China. In India, the English exerted simultaneously their direct political and economic power as rulers and landlords for the purpose of disrupting these small organisations. The English commerce exerts a revolutionary influence on these organisations and tears them apart only to the extent that it destroyes by the low price of its goods, their spinning and weaving industries which are an archaic and integral part of their unit".

(''ଇଂରାଜମାନଙ୍କର ଭାରତ ଓ ଚୀନା ସହ ସମ୍ପର୍କର କ୍ଷୟକାରୀ ବାଣିଜ୍ୟିକ ପ୍ରଭାବ, ଆଭ୍ୟନ୍ତରୀଣ ସଂହତି ଓ ଜାତୀୟ ଉତ୍ପାଦନର ଧାରା ଦ୍ୱାରା ବାଧାପ୍ରାପ୍ତ ହୋଇଥିବା ଦେଖାଯାଇଛି । ଏଠାରେ ଉତ୍ପାଦନର ଧାରା ମୋଟାମୋଟି ଭାବରେ କ୍ଷୁଦ୍ର କୃଷିଜୀବି ତଥା କୁଟୀର ଶିଳ୍ପ ଉପରେ ଆଧାରିତ ଥିଲା । ଭାରତରେ ଗୋଷ୍ଠୀମାନଙ୍କ ଢାଞ୍ଚାରେ ଜମିଉପରେ ସମସ୍ତଙ୍କର ସମାନ ମାଲିକାନାର ସତ୍ୱ ଥିବା ସମୟରେ ଚୀନାରେ ମଧ ତାହା ମୂଳ ଢାଞ୍ଚା ଥିଲା । ଭାରତରେ ଏହି କ୍ଷୁଦ୍ର କ୍ଷୁଦ୍ର ଅନୁଷ୍ଠାନଗୁଡ଼ିକୁ ପ୍ରତିହତ କରିବା ପାଇଁ ଇଂରାଜିମାନେ ଏକ ସମୟରେ ସେମାନଙ୍କର ରାଜନୈତିକ ଓ ଅର୍ଥନୈତିକ କ୍ଷମତା ଓ ଜମିର ମାଲିକ ହିସାବରେ ସମସ୍ତ କ୍ଷମତା ପ୍ରୟୋଗ କରିବାକୁ ଲାଗିଲେ । ଇଂରାଜ ବାଣିଜ୍ୟ ଏହି ଅନୁଷ୍ଠାନମାନଙ୍କ ଉପରେ ବୈପ୍ଳବିକ ପ୍ରଭାବ ପକାଇ ଏହାକୁ ଖଣ୍ଡ ବିଖଣ୍ଡିତ କଲା ଏବଂ ଉତ୍ପାଦିତ ଦ୍ରବ୍ୟର ମୂଲ୍ୟର ସ୍ୱଳ୍ପତା ହିଁ ସେମାନଙ୍କର ଅର୍ଥନୀତିର ଅବିଚ୍ଛେଦ୍ୟ ଅଙ୍ଗ, ବସ୍ତ୍ର ଉତ୍ପାଦନକାରୀ ତନ୍ତ ଆଦି ଶିଳ୍ପକୁ ଧ୍ୱଂସ କଲା ।'')

ସେହି ପ୍ରକାରେ କମ୍ପାନୀ ସରକାରଙ୍କ ଜମିଜମା ସମ୍ବନ୍ଧୀୟ ନୀତିରେ ମାର୍କ୍ସ ଉକ୍ତ ପୁସ୍ତକରେ କହିଛନ୍ତି :—

If any nations history, then it is the history of the English management of India which in a string of unsucessful and really absurd (and inpractice infamous) experiments in economics, In Bengal, they created a caricature of English-landed property on a large scale; in the south-east India a caricature of small allotment of property; in the north-west, they transformed to the utmost of

their ability the Indian commune with commonownership of the soil into a caricature itself".

("ଯଦି କୌଣସି ଜାତିର ଇତିହାସ, ତେବେ ଭାରତବର୍ଷରେ ଇଂରାଜ ଶାସନର ଇତିହାସରେ ଅର୍ଥନୀତି ଉପରେ ଅସଙ୍ଗତ (ପ୍ରକୃତପକ୍ଷରେ କୁଖ୍ୟାତି ସମ୍ପନ୍ନ) ଓ ଅସଫଳ ପରୀକ୍ଷାର ଧାରା ଦେଖିବାକୁ ମିଳିବ । ବଙ୍ଗରେ ସେମାନେ ବହୁଳାଂଶରେ ଇଂରାଜ ଜମିଜମା ନୀତିର ଏକ ହାସ୍ୟାସ୍ପଦ ରୂପ ପ୍ରବର୍ତ୍ତନ କଲେ; ଦକ୍ଷିଣପୂର୍ବ ଭାରତରେ କ୍ଷୁଦ୍ର କ୍ଷୁଦ୍ର ଜମି ଗୁଡ଼ିକ ପଟ୍ଟା ଦିଆଯାଇ ଆଉ ଏକ ହାସ୍ୟାସ୍ପଦ ଧାରାର ପ୍ରବର୍ତ୍ତନ କରାଗଲା । ଉତ୍ତର-ପଶ୍ଚିମରେ ଭାରତର ମୂଳ ଅଧିବାସୀ ମାନଙ୍କର ସଂହତି ସମ୍ପନ୍ନ ଜୀବନଧାରା ଓ ଜମିରେ ସମସ୍ତଙ୍କର ସମାନ ସତ୍ତ୍ୱର ଧାରାକୁ ଏକ ହାସ୍ୟାସ୍ପଦ ରୂପ ଦିଆଗଲା ।)

## ଧାର୍ମିକ ଓ ସାମାଜିକ ଦିଗ

ଇଂରାଜିମାନଙ୍କର ନୂତନ ଶାସନ ବ୍ୟବସ୍ଥା ଫଳରେ ଦେଶୀୟ ରାଜାମାନଙ୍କ ଅଧିନରେ ଥିବା ସାମନ୍ତ, ସର୍ଦ୍ଦାର ଓ ଜମିଦାରମାନଙ୍କର ଇନାମ, ଜାଗିରି ଆଦି ଧିରେ ଧିରେ ଉଭେଇ ଯିବାକୁ ଲାଗିଲା । ତା ବଦଳରେ ଏକ ନୂତନ ଇଂରାଜ ଅନୁଗୃହୀତ ଜମିଦାର ଗୋଷ୍ଠୀ ସୃଷ୍ଟି ହେଲେ ।

ବଙ୍ଗଳାରେ ପ୍ରଥମେ କମ୍ପାନୀ ସାମ୍ରାଜ୍ୟ ପ୍ରତିଷ୍ଠିତ ହେବା ସମୟରେ, ଇଂରାଜମାନଙ୍କର ମନୋଭାବ, ବଙ୍ଗଳାର ଲୋକ ମାନଙ୍କ ପ୍ରତି ଶାସକର ଶାସିତ ପ୍ରତି ମନୋଭାବ ଥିଲା । ସେମାନେ ବଙ୍ଗୀୟମାନଙ୍କୁ ନିମ୍ନଶ୍ରେଣୀରେ ମନୁଷ୍ୟ ବା ପଶୁ ଶ୍ରେଣୀରେ ଅନ୍ତର୍ଭୁକ୍ତ କରିଥିଲେ ।

୧୭୯୨ ମସିହାରେ, 'ଚାର୍ଲସ ଗ୍ରାଣ୍ଟ'ନାମକ ଜଣେ ଇଷ୍ଟ ଇଣ୍ଡିଆ କମ୍ପାନୀର ଅଫିସର, ତାଙ୍କ ରଚିତ ଏକ ପୁସ୍ତକରେ ବର୍ଣ୍ଣନା କରିଥିଲେ, ଯେ ବଙ୍ଗାଳିମାନେ ଅସାଧୁ ପ୍ରକୃତିର ଓ ସେମାନେ ସେ ସମୟରେ ଇଉରୋପରେ ଥିବା ସମସ୍ତ ଅନୁନ୍ନତ ଓ ନିମ୍ନ ଶ୍ରେଣୀର ଲୋକଙ୍କ ସହିତ ସମାନ । ୧୮୫୫ ମସିହାରେ ମଧ ବଙ୍ଗାଳିଜାତିର ଚରିତ୍ର ସଂହାର ମୂଳକ, ଅତ୍ୟନ୍ତ ଅପମାନ ଜନକ ଭାଷା ପୂର୍ଣ୍ଣ ଲେଖା (Calcutta Review) 'କଲିକତାରିଭ୍ୟୁ'ରେ ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏହା ସ୍ୱଦେଶୀ ଲୋକମାନଙ୍କ ପ୍ରତି ଇଂରାଜିମାନଙ୍କର ଘୃଣା ଓ ତାସଲ୍ୟପୂର୍ଣ୍ଣ ମନୋଭାବର ପରିଚୟ ଦିଏ । ୧୮୧୩ ମସିହାର 'ଚାର୍ଟର (Charter) ଦ୍ୱାରା, ଖ୍ରୀଷ୍ଟିୟାନ ମିସନାରୀ ମାନଙ୍କୁ

ଭାରତବର୍ଷରେ ଅବାଧ ପ୍ରବେଶ ଓ ପ୍ରଚାରର କ୍ଷମତା ଦିଆଗଲା । ସେହି ସମୟରୁ ଚର୍ଚ୍ଚ ପ୍ରତିଷ୍ଠା, ମିସ୍‌ନାରୀ ସ୍କୁଲ ପ୍ରତିଷ୍ଠା, ଧର୍ମାନ୍ତରୀକରଣ ଆଦି କାର୍ଯ୍ୟକଳାପ ଜୋରସୋରରେ ଆରମ୍ଭ ହେଲା । ୧୮୩୬ ମସିହାର ଅକ୍ଟୋବର ବାର ତାରିଖରେ 'ଲର୍ଡ ମାକଲେ' (Lord Macaulay) ତାଙ୍କର ମା'ଙ୍କ ପାଖକୁ ଏକ ଚିଠିରେ ଜଣାଇଥିଲେ :-

"It is my firm belief that, if our plan of education is followed up, there would not be a single idolator in Bengal 30 years hence !"

(''ଏହା ମୋର ଦୃଢ ବିଶ୍ୱାସ ଯେ ଯଦି ଆମର ଶିକ୍ଷାଯୋଜନା କାର୍ଯ୍ୟକାରୀ କରାଯାଏ ତେବେ ବଙ୍ଗରେ ତିରିଶ ବର୍ଷ ମଧ୍ୟରେ କୌଣସି ମୂର୍ତ୍ତି ଉପାସକ ରହିବେ ନାହିଁ ।'')

୧୮୫୭ ମସିହାରେ 'ଡିରେକ୍ଟରସ ଅଫ୍ ଇଷ୍ଟଇଣ୍ଡିଆ କମ୍ପାନୀ'ର ଚେୟାରମାନ (Chairman of the Directors of East India Company) ମି: ମାଙ୍ଗ୍ଲାସ୍ (Mr. Manglas) ହାଉସ୍ ଅଫ୍ କମନ୍‌ସ (House of Commens) ରେ କହିଥିଲେ :—

"Providence has entrusted the extensive empire of Hindustan to England in order that the banner of Chirst should wave trumphant from one end of India to the other. Every one must exert all his strength that there may be no dilatoriness on any account in continuing in the country the grand work of making all Indian Chirstian." (ବିନାୟକ ଦାମୋଦର ସବରକର୍‌ଙ୍କରThe Indian war of Independance 1857, ପୁସ୍ତକରୁ ଉଦ୍ଧୃତ)

(''ଭାଗ୍ୟ ହିଁ ସୁବିଶାଳ ହିନ୍ଦୁସ୍ତାନର ଦାୟିତ୍ୱ ଇଂଲାଣ୍ଡକୁ ଦେଇଛି ଯାହା ଫଳରେ ଖ୍ରୀଷ୍ଟଙ୍କର ବିଜୟ ବାନା ଭାରତବର୍ଷର ଏକ ପାର୍ଶ୍ୱରୁ ଅପର ପାର୍ଶ୍ୱ ପର୍ଯ୍ୟନ୍ତ ଉଡ଼ିବ । ସମସ୍ତେ ସମସ୍ତ ଶକ୍ତି ବିନିଯୋଗ କରିବା ଉଚିତ୍ ଯଦ୍ୱାରା କେହି ମୂର୍ତ୍ତି ଉପାସକ ରହିବେ ନାହିଁ ଓ ସମସ୍ତ ଭାରତୀୟଙ୍କୁ ଖ୍ରୀଷ୍ଟିୟାନ୍ କରାଯିବାର ମହାନ୍ କାର୍ଯ୍ୟ ସାଧିତ ହେବ ।'')

ଉପରୋକ୍ତ ଉକ୍ତି ଓ ସମସାମୟିକ ଅନ୍ୟାନ୍ୟ ବହୁଉକ୍ତିରୁ ଇଂରାଜମାନଙ୍କର ମନୋଭାବର ପରିଚୟ ମିଳେ । ମିସ୍‌ନାରୀମାନଙ୍କର କାର୍ଯ୍ୟକଳାପ ମଧ୍ୟ ଅତ୍ୟନ୍ତ

ଆପତ୍ତିଜନକ ଥିଲା । ସେମାନେ ଖୋଲାଖୋଲି ଭାବରେ ହିନ୍ଦୁ ଓ ମୁସଲମାନଙ୍କର ଧର୍ମ ବିରୁଦ୍ଧରେ ପ୍ରଚାର କରୁଥିଲେ ଓ ଲୋକମାନଙ୍କୁ ଧର୍ମ, ସମ୍ମାନ, କ୍ଷମତା ଆଦିରେ ପ୍ରଲୋଭିତ କରି ଧର୍ମାନ୍ତରୀତ କରାଉଥିଲେ । ଏଥିରେ କୌଣସି ଧର୍ମୀୟ ଭାବପ୍ରବଣତା ନଥିଲା, ଅପରପକ୍ଷରେ, ଭାରତୀୟ ମାନଙ୍କର ବ୍ୟକ୍ତିଗତ ଜୀବନଧାରା ଓ ସାମାଜିକ କ୍ରିୟାକଳାପକୁ 'ସ୍ୱଦେଶ-ଧର୍ମ' ନିୟନ୍ତ୍ରିତ କରୁଥିଲା ଓ ଏହି ଧର୍ମାନୁମୋଦିତ ଜୀବନଧାରଣ, ସେମାନଙ୍କ ମଧ୍ୟରେ ଯୁଗ ଯୁଗ ଧରି ଐକ୍ୟ ଓ ଜାତୀୟତା ସୃଷ୍ଟି କରିଥିଲା । ଏପରିକି, ବ୍ୟକ୍ତିର ବ୍ୟକ୍ତିତ୍ୱ ଓ ସ୍ୱାଭିମାନରେ ମଧ୍ୟ ଏହା ଗଭୀର ଭାବରେ ନିହିତ ଥିଲା । ଇଂରାଜମାନେ, ଆଓରଙ୍ଗଜେବଙ୍କଠାରୁ ଶିକ୍ଷା ଲାଭ କରି ଭାରତବର୍ଷରେ ଧର୍ମ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ ନକରି କୂଟନୀତିର ଆଶ୍ରୟ ନେଲେ । ସେମାନଙ୍କ ଯୋଜନା ଅନୁସାରେ, ସାରା ଭାରତର ଜନସାଧାରଣଙ୍କୁ ନିଜର ଧର୍ମ ଓ ସଂସ୍କୃତି ପ୍ରତି ବିମୁଖ କରାଯାଇ କଳେ ବଳେ କୌଶଳେ ଖ୍ରୀଷ୍ଟିୟାନ କରାଯାଇ ଓ ସେମାନଙ୍କର ସ୍ୱାଭିମାନ ଓ ବ୍ୟକ୍ତିତ୍ୱକୁ ନଷ୍ଟ କରାଯାଇ, ସେମାନଙ୍କୁ ସବୁଦିନ ପାଇଁ ଇଂରାଜି ଜାତିର ଦାସ କରି ରଖିବାପାଇଁ ଉଦ୍ୟମ କରାଗଲା । ଏ ଦିଗରେ 'ମାକଲେ'ଙ୍କର ନୀତି ଫଳରେ ଇଂରାଜି ଶିକ୍ଷାର ପ୍ରଚଳନ ହେଲା ଓ ଭାରତୀୟ ମଧ୍ୟବିତ୍ତ ପରିବାରମାନଙ୍କ ମଧ୍ୟରୁ କିଛି ବ୍ୟକ୍ତି ଏଥିରେ ଶିକ୍ଷିତ ହୋଇ 'ଇଷ୍ଟଇଣ୍ଡିଆକମ୍ପାନୀ' ଅଧୀନରେ ଚାକିରି କରିଥିଲେ । ଏହା ଦ୍ୱାରା, ବ୍ରିଟିଶ ଅନୁଗୃହୀତ ଜମିଦାରମାନଙ୍କ ବ୍ୟତୀତ ଅନ୍ୟ ଏକ ନୂତନ କିରାଣୀ ଗୋଷ୍ଠୀର ସୃଷ୍ଟି ହେଲା । ସେତେବେଳେର ସମାଜରେ ଏହି ଦୁଇଗୋଷ୍ଠୀ ହିଁ ବ୍ରିଟିଶ ପରାମର୍ଶରେ ପରିଚାଳିତ ଦୁଇଟି ପ୍ରଭାବଶାଳୀ ଗୋଷ୍ଠୀ ଥିଲେ ।

କାଳକ୍ରମେ ଇଂରାଜିମାନେ, ଧର୍ମୀୟ ନିୟମ ଉପରେ ହସ୍ତକ୍ଷେପ କଲେ । 'ଲର୍ଡ ଓ୍ୟାରେନ୍‌ହେଷ୍ଟିଙ୍ଗସ୍', ସତୀଦାହ ପ୍ରଥା ନିଷେଧ କରି ବିଧବା ବିବାହର ପ୍ରଚଳନ କରିଥିଲେ । ତତ୍‌କାଳୀନ ଶିକ୍ଷିତ ଭାରତୀୟମାନଙ୍କ ମଧ୍ୟରେ ଏହାର ସପକ୍ଷ ଓ ବିପକ୍ଷରେ ମତ ପ୍ରକାଶ ପାଇଥିଲା । ଏହି ନୀତି, ସମାଜର ମଙ୍ଗଳ ବା ଅମଙ୍ଗଳ କାରକ, ତାହା ବର୍ତ୍ତମାନ ବିଚାରର ବିଷୟ ନୁହେଁ । ପରନ୍ତୁ, ଏଠାରେ ଲକ୍ଷ୍ୟ କରିବା କଥା ଯେ, ଏହି ସମସ୍ତ ହସ୍ତକ୍ଷେପ ସେ ସମୟରେ ଭାରତୀୟ ଜନସାଧାରଣଙ୍କ ମନ ମଧ୍ୟରେ ସେମାନଙ୍କର ଧର୍ମୀୟ ଓ ସାମାଜିକ ନିରାପତ୍ତା ସମ୍ପର୍କରେ ଭୟଙ୍କର ଆଶଙ୍କା, ସନ୍ଦେହ ଓ ଅବିଶ୍ୱାସ ସୃଷ୍ଟି କରିଥିଲା । ଉନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଏହିପରି ଦେଶୀୟ ଧାର୍ମିକ ରୀତି ବିରୁଦ୍ଧରେ ଆଇନ ପ୍ରଣୟନ କରାଯିବା ଫଳରେ

ଜନସାଧାରଣଙ୍କ ମନରେ, ସେମାନଙ୍କୁ ବଳପୂର୍ବକ ଧର୍ମାନ୍ତରୀତ କରାଯିବାର ଭୟ ବୃଦ୍ଧି ପାଇଲା । ୧୮୫୦ ମସିହାରେ ସରକାର ଆଇନ ପ୍ରଣୟନ କଲେ ଯେ, ଜଣେ ବ୍ୟକ୍ତି ଧର୍ମାନ୍ତର ଗ୍ରହଣ କଲେ ମଧ୍ୟ ନିଜର ପୈତୃକ ସମ୍ପତ୍ତିରୁ ବଞ୍ଚିତ ହୋଇପାରିବ ନାହିଁ । ଅପରପକ୍ଷରେ, ଦେଶରେ ଖ୍ରୀଷ୍ଟିୟାନ ସଂସ୍ଥାମାନ ପ୍ରତିଷ୍ଠା କରିବା ପାଇଁ ଉତ୍ସାହିତ କରାଗଲା ଓ ସେହି ସଂସ୍ଥାଗୁଡ଼ିକୁ ସରକାରଙ୍କ ତରଫରୁ ପ୍ରଚୁର ଅର୍ଥ ଯୋଗାଇ ଦିଆଗଲା । ଲର୍ଡ କ୍ୟାନିଂ ନିଜେ ପ୍ରତି ମିସନ୍‌କୁ ହଜାରେ ଲେଖାଏଁ ଟଙ୍କା ସାହାଯ୍ୟ ଦେଉଥିଲେ । ଧର୍ମାନ୍ତର ଗ୍ରହଣ କଲେ, ଭାରତୀୟମାନଙ୍କୁ ଉଚ୍ଚ ପଦବୀ, ଅର୍ଥ ଓ କ୍ଷମତା ଆଦି ଦିଆ ହେଉଥିଲା ଏବଂ ଦେଶୀୟ ଧର୍ମକୁ ବିକୃତ ଭାବରେ ସମାଲୋଚନା କରାଯାଇ, ଧର୍ମାନ୍ତର ଗ୍ରହଣକୁ ସର୍ବତୋ ଭାବରେ ଉତ୍ସାହିତ କରାଯାଉଥିଲା ।



# ସିପାହୀ ଅସନ୍ତୋଷ

୧୮୫୩ ମସିହାର ଭୟାବହ କ୍ରିମିଆ ଯୁଦ୍ଧରେ ବ୍ରିଟିଶ ଶକ୍ତି, ରୁଷିଆକୁ ପରାସ୍ତ କରିଥିଲେ ମଧ୍ୟ ନିଜର ବହୁ ସୈନ୍ୟ ଓ ଅର୍ଥ କ୍ଷୟ କରିଥିଲା । ତେଣୁ ଏହି ଶକ୍ତି ସମସ୍ତ କ୍ଷତିପୂରଣ ଭାରତବର୍ଷରୁ ହିଁ ଯଥେଚ୍ଛା ଭାବରେ ଭରଣା କରିବାକୁ ଲାଗିଲା, ଏ ମଧ୍ୟରେ ସିପାହୀମାନଙ୍କ ମଧ୍ୟରେ ଅସନ୍ତୋଷର ବହ୍ନି କୁହୁଳିବାକୁ ଲାଗିଲା । ଭାରତୀୟ ସିପାହୀମାନଙ୍କର ଅସନ୍ତୋଷ, କୌଣସି ନିର୍ଦ୍ଦିଷ୍ଟ କାରଣ ହେତୁ ହୋଇ ନଥିଲା । କିନ୍ତୁ, ବହୁ ଦିନର ଅତ୍ୟାଚାର, ବିଶ୍ୱାସ ଭଙ୍ଗ, ଇଂରାଜି ମାନଙ୍କର ପ୍ରଭୁତ୍ୱ, ସ୍ୱାଭିମାନ ଓ ସ୍ୱଧର୍ମରେ ଆଘାତ ହେତୁ ଏହା ଧୀରେ ଧୀରେ ବୃଦ୍ଧି ପାଇ ୧୮୫୭ ମସିହା ବେଳକୁ ବାଡବାଗ୍ନିର ରୂପ ନେଇ ସାରିଥିଲା । ଏ ସମ୍ବନ୍ଧରେ ସବିଶେଷ ଆଲୋଚନାର ଆବଶ୍ୟକତା ରହିଛି ।

'ଇଷ୍ଟଇଣ୍ଡିଆକମ୍ପାନୀ'ର ସୈନ୍ୟବାହିନୀକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମଟିରେ ଅଫିସର ଓ ସୈନ୍ୟମାନେ ସମସ୍ତେ ଇଂରାଜ, କିନ୍ତୁ ଦ୍ୱିତୀୟଟିରେ କେବଳ କମିଶନ୍ଡ ଅଫିସର ଇଂରାଜ ଓ ସୈନ୍ୟ ତଥା ଜୁନିୟର ଅଫିସରମାନେ ଭାରତୀୟ ଥିଲେ । ବମ୍ବେ, ମାଡ୍ରାସ ଓ ବଙ୍ଗଳା ସୈନ୍ୟବାହିନୀ ପ୍ରଥମାବସ୍ଥାରେ ପରସ୍ପରଠାରୁ ସ୍ୱାଧୀନ ଥିଲେ । କିନ୍ତୁ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ବଙ୍ଗ ସୈନ୍ୟବାହିନୀ କେନ୍ଦ୍ରଶକ୍ତିର ବାହିନୀ ହୋଇ ରହିଲେ, ଏବଂ ତାହାର ସେନାପତି ଇଷ୍ଟଇଣ୍ଡିଆକମ୍ପାନୀର ସୈନ୍ୟବାହିନୀର ସର୍ବୋଚ୍ଚ ସେନାପତି ରହିଲେ । କମ୍ପାନୀର ସାମ୍ରାଜ୍ୟ ଧୀରେ ଧୀରେ ବିସ୍ତାରିତ ହେବା ସଙ୍ଗେ ସଙ୍ଗେ ସହାୟକ ସେନାମାନଙ୍କର ଆବଶ୍ୟକତା ବୃଦ୍ଧି ପାଇଲା । ଫଳରେ ପୂର୍ବ ଯୁଦ୍ଧରେ କମ୍ପାନୀ ବିରୁଦ୍ଧରେ ଲଢ଼ିଥିବା ନିପୁଣ ଯୋଦ୍ଧାମାନଙ୍କୁ ବଛା ଯାଇ କମ୍ପାନୀ ଅଧିନରେ ଗୋର୍ଖା ଓ ଶିଖ ବାହିନୀ ଗଠିତ ହେଲା । ଦେଶୀୟ ରାଜ୍ୟମାନେ ନିଜ ନିଜର ସୈନବାହିନୀ ରଖିପାରୁଥିଲେ ମଧ୍ୟ ତହିଁର ଅଫିସରମାନେ କମ୍ପାନୀ ଦ୍ୱାରା ନିଯୁକ୍ତ ଇଂରାଜ ଥିଲେ । ସୈନ୍ୟମାନଙ୍କର ସମସ୍ତ ଦରମା ରାଜ୍ୟର ଶାସକ ନିଜେ ବହନ କରୁଥିଲେ ମଧ୍ୟ ସେମାନଙ୍କୁ କମ୍ପାନୀ ଇଚ୍ଛାମତେ ବ୍ୟବହାର କରୁଥିଲା ଓ ସେମାନେ ରାଜ୍ୟ ସ୍ୱାର୍ଥ ପାଇଁ କାର୍ଯ୍ୟ କରିବା ପରିବର୍ତ୍ତେ କମ୍ପାନୀସରକାର ପାଇଁ କାମ କରୁଥିଲେ ।

'କ୍ଲାଇବ', ପଲାଶୀଯୁଦ୍ଧ ସମୟରେ ପ୍ରଥମ ଥର ପାଇଁ ଦେଶୀ ସିପାହୀମାନଙ୍କର ବାଟାଲିୟନ୍ (Battalian) ଗଠନ କରିଥିଲେ । ଏହି ସିପାହୀମାନେ ପଲାସୀ ଯୁଦ୍ଧରେ ଭାଗ ନେଇଥିଲେ । ସେମାନେ ଯୁଦ୍ଧ କ୍ଷେତ୍ରରେ ଚମତ୍କାରିତା ଓ

ସମରନୈପୁଣ୍ୟର ପରିଚୟ ଦେଇ କମ୍ପାନୀର ଅଶେଷ ପ୍ରଶଂସାଭାଜନ ହୋଇଥିଲେ । ଏହି ସିପାହୀମାନେ ଦେଶୀ ଜୁନିୟର କମିଶନ ଅଫିସରମାନଙ୍କ ଅଧିନରେ ଥିଲେ । କିନ୍ତୁ ଏହି ଦେଶୀ ଅଫିସରମାନେ ସର୍ବନିମ୍ନଶ୍ରେଣୀର ଇଂରାଜି ଅଫିସର ମାନଙ୍କ ଅଧିନରେ ରହିଥିଲେ । କାଳକ୍ରମେ ଇଂରାଜି ଅଫିସରଙ୍କର ସଂଖ୍ୟା ବୃଦ୍ଧି ହେତୁ, ଦେଶୀ ଅଫିସର ମାନଙ୍କର ପ୍ରାଧାନ୍ୟ ହ୍ରାସ ପାଇଲା । ଏମାନଙ୍କର ପଦୋନ୍ନତି କେବଳ 'ହାବିଲଦାରମେଜର' ପର୍ଯ୍ୟନ୍ତ ସୀମିତ ଥିଲା । ପଦୋନ୍ନତି କାର୍ଯ୍ୟକୁଶଳତା ଉପରେ ନିର୍ଭର ନକରି ଅଭିଜ୍ଞତା ଉପରେ ନିର୍ଭର କରୁଥିଲା । ପଦୋନ୍ନତିର ଗତି ମଧ ଖୁବ୍ ମନ୍ଥର ଥିଲା । ସିପାହୀମାନେ ସାଧାରଣତଃ ଉଚ୍ଚବର୍ଣ୍ଣରୁ ଆସିଥିଲେ । ସେମାନଙ୍କ ମଧ୍ୟରେ ନିଷ୍ଠା, ଶୃଙ୍ଖଳା ଓ ପ୍ରଭୁଭକ୍ତି ଥିଲେ ମଧ ସ୍ୱାଭିମାନ ଥିଲା । ଇଂରାଜି ସୈନ୍ୟମାନଙ୍କୁ ଉଚ୍ଚ ବେତନ ଦିଆଯିବା ସ୍ଥଳେ, ଏମାନଙ୍କୁ ସ୍ୱଳ୍ପ ବେତନରେ ସନ୍ତୁଷ୍ଟ ରହିବାକୁ ପଡୁଥିଲା । ପୁନଶ୍ଚ, ସାଧାରଣ ଦୈନିକ କର୍ତ୍ତବ୍ୟରେ ଏମାନଙ୍କୁ ସଦାବେଳେ ଉପଯୋଗ କରାଯାଉଥିବା ବେଳେ, ଇଂରାଜି ସୈନ୍ୟମାନେ ସେମାନଙ୍କର ବ୍ୟାରାକ୍‌ରେ ଆରାମ ଓ ସୁଖ ସ୍ୱାଚ୍ଛନ୍ଦରେ କାଳାତିପାତ କରୁଥିଲେ । ଦେଶୀ ସିପାହୀମାନଙ୍କୁ ନିଯୁକ୍ତି ଲାଗି ଲାଞ୍ଚ ଦେବାକୁ ପଡୁଥିଲା । ପ୍ରଥମ ମାସର ଦରମା ଏହି ବାବଦ ପ୍ରାୟ ଖର୍ଚ୍ଚ ହେଉଥିଲା । ସୀତାରାମ ନାମକ ଜଣେ ସିପାହୀ (Drill Havildar) ତାଙ୍କର ଆତ୍ମଜୀବନୀରେ କହିଛନ୍ତି ଯେ, ସେ ଜଣେ ଇଂରାଜି ସର୍ଜେଣ୍ଟଙ୍କୁ ଷୋହଳ ଟଙ୍କା ଲାଞ୍ଚ ଦେଇ ନଥିବାରୁ ସେ ତାଙ୍କ ଉପରେ ଅସନ୍ତୁଷ୍ଟ ଥିଲେ । ସିପାହୀମାନେ ପାଉଥିବା ମାସିକ ସାତ ଟଙ୍କା ଦରମା ସେମାନଙ୍କୁ ଅଣ୍ଟୁ ନଥିଲା ।

୧୮୫୭ ମସିହାରେ 'ବରେଲି'ରେ ଅବସ୍ଥାପିତ କାଭାଲରି ରେଜିମେଣ୍ଟରେ ନିଯୁକ୍ତ ଜଣେ ବଙ୍ଗୀୟ କର୍ମଚାରୀଙ୍କ ବର୍ଣ୍ଣନା ଅନୁଯାୟୀ, ସେ ସମୟରେ ସିପାହୀମାନଙ୍କୁ ନିଜର ପୋଷାକ ପାଇଁ ଖର୍ଚ୍ଚ ଦେବାକୁ ପଡୁଥିଲା, ଏବଂ ସେମାନଙ୍କର ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ ରେଜିମେଣ୍ଟ କ୍ୟାଣ୍ଟିନର ବଣିଆଠାରୁ ଉଧାରରେ ଆଣିବାକୁ ପଡୁଥିଲା । ମାସର ଦରମା ପାଇବାବେଳେ, ଧାର ବାବଦ ସମସ୍ତ ଅର୍ଥ ରଖାଯାଇ ଅବଶିଷ୍ଟ ଦରମା ଦିଆ ଯାଉଥିଲା । ଫଳରେ ଜଣେ ସିପାହୀ ମାସକୁ ଅଳ୍ପ କିଛି ଅଣାମାତ୍ର ପାଉଥିଲା । ରୁଟି ଓ ଡାଲି ହିଁ ସେମାନଙ୍କର ଦୈନିକ ଆହାର ଥିଲା । ଏହା ବ୍ୟତୀତ ଅନ୍ୟ ବିଳାସପୂର୍ଣ୍ଣ ଖାଦ୍ୟ ପାଇଁ ସେମାନଙ୍କର ଅର୍ଥବଳ ନଥିଲା । ଦେଶୀ ସିପାହୀମାନଙ୍କ ମଧ୍ୟରେ ସର୍ବୋଚ୍ଚ ବେତନ ନଅଟଙ୍କା ମାତ୍ର ଥିଲା ।

ସିପାହୀମାନେ ଭାରତୀୟ ସମାଜର ଅନ୍ତର୍ଭୁକ୍ତ ଥିଲେ, ଏଣୁ ଛୁଟି ଦିନରେ ସମସ୍ତ ପ୍ରକାର ସାମାଜିକ ପ୍ରକିୟା ସହ ଜଡ଼ିତ ରହୁଥିଲେ । ଗଣ ଅସନ୍ତୋଷର

ପ୍ରତିଫଳନ ସେମାନଙ୍କ ମଧ୍ୟରେ ଧୀରେ ଧୀରେ ରୂପ ନେଉଥିଲା । ଏହା ପ୍ରଥମ ଥର ପାଇଁ ବାସ୍ତବ ରୂପ ନେଲା ୧୮୦୬ ମସିହାରେ ଭେଲୋରରେ । ମାଡ୍ରାସ ବାହିନୀରେ ନୂତନ ନିୟମ ପ୍ରବର୍ତ୍ତନ କରାଯାଇ, ଦେଶୀ ସିପାହୀମାନଙ୍କୁ ସେମାନଙ୍କର ଜାତିର ଚିହ୍ନ କପାଳରୁ ଉଠାଇ ଦେବା ପାଇଁ କୁହାଗଲା । ସେମାନଙ୍କୁ ଦାଢି ଖିଅର ହେବାକୁ କୁହାଗଲା ଓ ସେମାନଙ୍କର ପୁରୁଣା ପଗଡ଼ି ଛାଡି ଚମଡ଼ାରେ ନିର୍ମିତ ଟୋପି ପିନ୍ଧିବାକୁ ବାଧ୍ୟ କରାଗଲା । ଏଣୁ ପ୍ରତିବାଦ ସ୍ୱରୂପ ସେମାନେ ବିଦ୍ରୋହ କରିଥିଲେ । ଏହାର ଅନ୍ତରାଳରେ ସେଠାରେ ବାସ କରୁଥିବା ଟିପୁସୁଲତାନଙ୍କର ନିର୍ବାସିତ ପରିବାର ଥିଲେ । ଠିକ୍ ଏହାର ଅର୍ଦ୍ଧ ଶତାବ୍ଦୀ ପରେ ୧୮୫୭ର ବିଦ୍ରୋହ ସଂଘଟିତ ହୋଇଥିଲା ।

ଏହି ଦୁଇ ବିଦ୍ରୋହ ମଧ୍ୟରେ ଅନ୍ୟ ଏକ ବିଦ୍ରୋହ ୧୮୨୪ ମସିହାରେ, ପ୍ରଥମ ବର୍ମା ଯୁଦ୍ଧ ସମୟରେ, ବଙ୍ଗଳାର ବ୍ୟାରାକ୍‌ପୁରଠାରେ ହୋଇଥିଲା । ୧୮୨୪ ମସିହାର ମଧ୍ୟ ଭାଗରେ, ସତଚାଳିଶତମ ପଦାତିକ ବାହିନୀ, ବ୍ୟାରାକ୍‌ପୁରରେ ବର୍ମାଯୁଦ୍ଧରେ ଅଂଶ ଗ୍ରହଣ କରିବା ନିମିତ୍ତ ଆସି ପହଞ୍ଚିଲେ । ସିପାହୀମାନଙ୍କର ବ୍ୟବହାର୍ଯ୍ୟ ଦ୍ରବ୍ୟକୁ ବହନ କରିବା ବିଷୟରେ ସମସ୍ୟା ଦେଖା ଦେଲା । ସାଧାରଣତଃ ସିପାହୀମାନେ ବଳଦ ଭଡ଼ାରେ ନେଇ ନିଜ ଖର୍ଚ୍ଚରେ ନିଜର ମାଲ ବହନ କରିଥାନ୍ତି । କିନ୍ତୁ , ଏ କ୍ଷେତ୍ରରେ ବଳଦ ଭଡ଼ାରେ ନ ମିଳିବା ଫଳରେ, ତାହା ବହୁଦାମ ଦେଇ କିଣିବା ସେମାନଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । ସେମାନଙ୍କର ଆର୍ଥିକ ଅସ୍ୱଚ୍ଛଳତା ହେତୁ, ସେମାନେ କମ୍ପାନୀର ସାହାଯ୍ୟ ମାଗି ପ୍ରତ୍ୟାଖ୍ୟାତ ହେଲେ । ଏହାର ପ୍ରତିବାଦ ସ୍ୱରୂପ, ସେମାନେ ଅକ୍ଟୋବର ତିରିଶ ତାରିଖର ପ୍ୟାରେଡ଼ରେ ନ୍ୟାପ୍‌ସାକ୍ (knasack) ନ ଲଗାଇ ଆସିଲେ । ସେମାନଙ୍କୁ ତାହା ଲଗାଇ ଆସିବାକୁ ଆଦେଶ ଦିଆଗଲେ ମଧ୍ୟ, ସେମାନେ ଅମାନ୍ୟ କରି କହିଲେ ଯେ ସେଗୁଡିକ ବ୍ୟବହାର ଯୋଗ୍ୟ ନୁହେଁ । ରେଜିମେଣ୍ଟର ଏକ ଅଂଶ ଘୋଷଣା କଲେ ଯେ ଦୁଇଗୁଣ ଦରମା ଦିଆନଗଲେ ସେମାନେ ରେଙ୍ଗୁନ ଯିବେ ନାହିଁ । ରେଜିମେଣ୍ଟର କମାଣ୍ଡିଂ ଅଫିସର ସମଗ୍ର ରେଜିମେଣ୍ଟକୁ ବରଖାସ୍ତ କରି ଦେଇ, ମୁଖ୍ୟସେନାପତି (Commender-in-Chief)ଙ୍କ ଠାରୁ ପରାମର୍ଶ ଆଣିବାକୁ କଲିକତା ଗଲେ ।

ତାଙ୍କର ପ୍ରତ୍ୟାବର୍ତ୍ତନ ପରେ, ନଭେମ୍ବର ପହିଲା ଦିନ, ପ୍ୟାରେଡ଼ ଅନୁଷ୍ଠିତ ହେଲା । ଉକ୍ତ ପ୍ୟାରେଡ୍‌ରେ, ସିପାହୀମାନେ ହିଂସାକାଣ୍ଡ ସଂଘଟିତ କଲେ । ତାହା ଦେଖି ଅନ୍ୟ ରେଜିମେଣ୍ଟମାନେ ମଧ୍ୟ ଅନୁରୂପ ବିଦ୍ରୋହ ଭାବରେ ଉଦ୍‌ବୁଦ୍ଧ ହେଲେ । ଏଣୁ ମୁଖ୍ୟ ସେନାପତି, ତତ୍‌କ୍ଷଣାତ୍ ବ୍ରିଟିଶ ସୈନ୍ୟବାହିନୀକୁ କଲିକତାରୁ ଅଣାଇଲେ । ପୁନର୍ବାର ଦେଶୀ ସିପାହୀମାନଙ୍କର ପ୍ୟାରେଡ ଡକାଗଲା । ପ୍ୟାରେଡ୍‌ରେ ସେମାନେ ହୁକୁମ ଅମାନ୍ୟ କରିବା ଫଳରେ ଇଂରାଜ ସେନ୍ୟମାନେ ଗୁଳି ଚଳାଇଲେ ।

୧୮୨୪ ମସିହା ନଭେମ୍ବର ତିନି ତାରିଖରେ 'ଗ୍ଲାସଗୋହେରାଲ୍ଡ' (Glassgow herald)ର କଲିକତା ଚିଠିରେ ତାହାର ବର୍ଣ୍ଣନା କରାଯାଇ କୁହାଯାଇଥିଲା :—

"Sir Edward Paget gave orders to fire. In a moment after, grape shot and cannon bullets played upon the poor fellows from all quarters; they then threw down their arms and ran; some escaped by running into Hoogly-some were taken prisioners- upwards of 60 lay dead upon the field, and this afternoon about a dozen or two are neither hanged nor short."

(''ସାର୍ ଏଡ଼ୱାର୍ଡ ପାଗେଟ ଗୁଳି ଚଳାଇବାକୁ ଆଦେଶ ଦେଲେ । ପର ମୁହୂର୍ତ୍ତରେ ସେହି ଅସହାୟ ଲୋକମାନଙ୍କ ଉପରେ ସବୁଦିଗରୁ ଅବିଶ୍ରାନ୍ତ ଗୁଳିର ବର୍ଷା ଲାଗି ରହିଲା । ତାହାପରେ ସେମାନେ ଅସ୍ତ୍ର ଫୋପାଡ଼ି ଦେଇ ଦଉଡ଼ିବାକୁ ଲାଗିଲେ । କେତେକ ହୁଗୁଳି ଦିଗକୁ ପଳାଇଯାଇ ପ୍ରାଣ ରକ୍ଷା କଲେ । କେତେକଙ୍କୁ ବନ୍ଦୀ କରି ନିଆଗଲା । ଉପର ଦିଗରେ ଷାଠିଏଜଣଙ୍କର ମୃତ ଶରୀର ଭୂମିରେ ପଡ଼ି ରହିଲା, ଏବଂ ଏହି ଅପରାହ୍ନରେ ପ୍ରାୟ ଏକ ବା ଦୁଇ ଡ଼ଜନଙ୍କୁ ଫାଶୀ ଦିଆଗଲା ନାହିଁ କିମ୍ବା ଗୁଳି କରାଗଲା ନାହିଁ ।)

ଏହି ବନ୍ଦୀମାନଙ୍କର ବିଚାର ହୋଇ ପ୍ରାୟ ସମସ୍ତଙ୍କୁ ଫାଶୀ ଦଣ୍ଡ ଦିଆଯାଇଥିଲା ଓ କେତେକଙ୍କୁ ସଶ୍ରମ କାରାଦଣ୍ଡ ଦିଆହୋଇଥିଲା । ଦେଶୀୟ ଅଫିସର ମାନେ ବିଦ୍ରୋହରେ ସଂପୃକ୍ତ ନଥିଲେ ମଧ୍ୟ ସେମାନଙ୍କୁ ବରଖାସ୍ତ କରାଗଲା । କେତେଗୁଡ଼ିଏ ରେଜିମେଣ୍ଟ ଭାଙ୍ଗି ଦିଆଗଲା । ଉକ୍ତ ବିଦ୍ରୋହର ନେତା, ସତେଇଶତମ ଦେଶୀୟ ପଦାତିକ ବାହିନୀର ଜଣେ ବ୍ରାହ୍ମଣଙ୍କୁ ଟ୍ୟାଙ୍କ ସମ୍ମୁଖରେ ବାନ୍ଧି ଉଡ଼େଇ ଦିଆଗଲା । କିନ୍ତୁ ସେହି ସ୍ଥାନରେ, ତାଙ୍କର ସ୍ମୃତିରକ୍ଷା ପାଇଁ, ସିପାହୀମାନଙ୍କ ଦ୍ୱାରା ଏକ ବୃକ୍ଷରୋପଣ କରାଗଲା ଓ ତାଙ୍କର ନିତ୍ୟବ୍ୟବହାର୍ଯ୍ୟ ଦ୍ରବ୍ୟ ଗୁଡିକ ସିପାହୀମାନଙ୍କ ଦ୍ୱାରା ସାବଧାନତା ସହକାରେ ରକ୍ଷିତ ହୋଇ ତାଙ୍କର ସ୍ମୃତି ଉଦ୍ଦେଶ୍ୟରେ ପୂଜିତ ହେଲା ।

୧୮୨୫ ମସିହା ଅକ୍ଟୋବର ଚଉଦ ତାରିଖ ଦିନ ଆସାମରେ ଅବସ୍ଥାପିତ ଦେଶୀ ଗ୍ରିନେଡିୟର କମ୍ପାନୀ (Grenadier Company) ଖରାପ ପାଗର ଆଳ ଦେଖାଇ ପ୍ୟାରେଡ଼ରେ ଯୋଗ ଦେବା ପାଇଁ ରାଜି ହେଲେ ନାହିଁ । ସେମାନଙ୍କର

ନେତାଙ୍କୁ ବନ୍ଦୀ କରାଯିବାରୁ ସିପାହୀମାନେ ସେମାନଙ୍କୁ ମଧ ବନ୍ଦୀ କରାଯିବାକୁ ଦାବୀ କଲେ । ଫଳରେ ଉକ୍ତ ନେତାଙ୍କୁ ମୃତ୍ୟୁଦଣ୍ଡ ଦିଆଗଲା ଓ ଅନ୍ୟ ସମସ୍ତଙ୍କୁ ଦରମା ଦେଇ ବରଖାସ୍ତ କରାଗଲା । ୧୮୩୮ ମସିହାରେ ସୋଲାପୁରରେ ସିପାହୀମାନେ, ସେମାନଙ୍କୁ ପୂରା ଦରମା ଦିଆ ନଯିବା ଫଳରେ ବିଦ୍ରୋହ କରିଥିଲେ ଓ ପ୍ୟାରେଡ଼ରେ ଯୋଗ ଦେବାକୁ ମନା କରିଦେଇଥିଲେ । ଫଳରେ, ପ୍ରତି ଦଶ ଜଣଙ୍କ ମଧ୍ୟରେ ଜଣକୁ ଦଣ୍ଡିତ କରାଯାଇଥିଲା, ଓ ସେମାନଙ୍କୁ ଦୁଇ ବର୍ଷ ଜେଲଦଣ୍ଡ ପରେ ବରଖାସ୍ତ କରାଯାଇଥିଲା । ୧୮୪୨ ମସିହାରେ ମଧ ଅନୁରୂପ ବିଦ୍ରୋହ, 'ସିକନ୍ଦରାବାଦ', 'ହାଇଦ୍ରାବାଦ', 'ମାଲିଗାଓଁ' ଓ 'କୋଟହ'(Kotah) ରେ ହୋଇଥିଲା ।

୧୮୩୯ ମସିହାରେ ପ୍ରଥମ ଆଫଗାନ ଯୁଦ୍ଧ ସମୟରେ ସିପାହୀମାନଙ୍କୁ 'ଆଫଗାନ' ନେବା ସମୟରେ ସେମାନଙ୍କ ମଧ୍ୟରେ ପ୍ରବଳ ଅସନ୍ତୋଷ ପରିଲକ୍ଷିତ ହୋଇଥିଲା । ପୂର୍ବ ହିନ୍ଦୁ ସିପାହୀ ମାନଙ୍କର ବିଶ୍ୱାସ ଥିଲା ଯେ, ସିନ୍ଧୁ ନଦୀ ପାରିହୋଇଗଲେ ସେମାନଙ୍କର ଜାତି ଯିବ । ଦ୍ୱିତୀୟତଃ, ସେମାନେ ବିଧି ମୁତାବକ ନିତ୍ୟସ୍ନାନ କରିପାରିବେ ନାହିଁ ଓ ସେମାନଙ୍କୁ ମୁସଲମାନମାନଙ୍କଠାରୁ ରୁଟି ଖାଇବାକୁ ପଡିବ । ସେମାନଙ୍କୁ ମେଣ୍ଢା ଚମଡାର ପୋଷାକ ମଧ ପିନ୍ଧିବାକୁ ପଡିବ । ଏହି ସବୁ ସେମାନଙ୍କର ଧର୍ମ ବିରୋଧି ବୋଲି ସେମାନେ ମନେ କରୁଥିଲେ । ଫଳରେ ସେମାନେ ସିନ୍ଧୁ ନଦୀ ଅତିକ୍ରମ କରି ଆଫଗାନ ଯୁଦ୍ଧରେ ଯୋଗ ଦେବାକୁ ରାଜି ହେଲେ ନାହିଁ । ମୁସଲମାନ ସିପାହୀମାନେ ମଧ ସେମାନଙ୍କୁ ନିଜ ଧର୍ମର ସୈନ୍ୟମାନଙ୍କ ସହିତ ଯୁଦ୍ଧ କରିବାକୁ ପଡିବ ବୋଲି ଜାଣି ଯିବାକୁ ରାଜି ହେଲେ ନାହିଁ । ସିପାହୀମାନେ ଏହି ଧର୍ମୀୟ ଭାବପ୍ରବଣତା ପ୍ରକାଶ କରିଥିବାରୁ, ଏକ ମୁସଲିମ୍ ସୁବେଦାର ଓ ଏକ ହିନ୍ଦୁ ସୁବେଦାରଙ୍କୁ ଗୁଳି କରି ଉଡ଼ାଇ ଦିଆଗଲା । ଏଥିରେ ସିପାହୀମାନେ ମଧ୍ୟରେ ଅସନ୍ତୋଷ ବଢିଗଲା । ଜେନେରାଲ ପୋଲୋକ୍ (General Pollock) ସିପାହୀମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଦରମା ସହିତ ଏକ ସ୍ୱତନ୍ତ୍ର ଭତ୍ତାର ବ୍ୟବସ୍ଥା କଲେ । ଏଣୁ ସିପାହୀମାନଙ୍କ ମଧ୍ୟରେ ସେହିଦିନରୁ ସିନ୍ଧୁ ନଦୀ ଅତିକ୍ରମ କଲେ ସ୍ୱତନ୍ତ୍ର ଭତ୍ତା ମିଳିବ ବୋଲି ବିଶ୍ୱାସ ଆସିଯାଇଥିଲା । ୧୮୪୩ ମସିହାରେ ସିନ୍ଧୁ ପ୍ରଦେଶ କମ୍ପାନୀସରକାରଙ୍କର ଶାସନାଧିନ ହେଲା । ସେହି ରାଜ୍ୟର ସଂରକ୍ଷଣ ଦେଶୀସେନାଦ୍ୱାରା କରାଯିବାକୁ କମ୍ପାନୀସରକାର ସ୍ଥିର କଲେ । ଏଣୁ ୬୪ ତମ ବାହିନୀକୁ ସିନ୍ଧୁ ପ୍ରଦେଶ ଯିବାକୁ ଆଦେଶ ଦିଆଗଲା । କିନ୍ତୁ ୬୪ ତମ ବାହିନୀ ଯିବା ପୂର୍ବରୁ ସେମାନଙ୍କର ସ୍ୱତନ୍ତ୍ର ଭତ୍ତା ବିଷୟରେ ପ୍ରତିଶ୍ରୁତି ଚାହିଁଲେ । ସେମାନଙ୍କର

କମାଣ୍ଡିଂ ଅଫିସର ମଧ୍ୟ ସେ ବିଷୟରେ ପ୍ରତିଶ୍ରୁତି ଦେଲେ । କିନ୍ତୁ, ସିନ୍ଧୁ ପ୍ରଦେଶରେ ପହଞ୍ଚି ଦରମା ନେବା ଦିନ, ସେମାନଙ୍କୁ ସ୍ୱତନ୍ତ୍ର ଭତ୍ତା ଦିଆନ ଯିବା ଫଳରେ ସେମାନେ ହିଂସାଭିମୁଖୀ ହୋଇ, ଅଫିସରମାନଙ୍କୁ ଢେଲାପଥର ମାଡ କଲେ । ଫଳରେ ଉକ୍ତ ବାହିନୀକୁ ଲକ୍ଷ୍ନୌ ଫେରାଇ ନିଆଯାଇ ଅଣଚାଳିଶଜଣନେତାଙ୍କୁ ଠାବ କରାଗଲା ଓ ଦଣ୍ଡ ଦିଆଗଲା ।

ଏହି ପ୍ରକାରରେ ୩୪ ତମ ବାହିନୀକୁ ଆଦେଶ ଦିଆଯିବାରୁ ସେମାନେ ସ୍ୱତନ୍ତ୍ର ଭତ୍ତା ବିନା ଯିବାକୁ ରାଜି ହେଲେ ନାହିଁ । ଫଳରେ ସେମାନଙ୍କୁ ଦଣ୍ଡ ଦିଆଗଲା । କିନ୍ତୁ ତା ସତ୍ତ୍ୱେ, ସେମାନଙ୍କ ମଧ୍ୟରେ ବିଦ୍ରୋହ ଭାବ ଦେଖି ସେମାନଙ୍କୁ ମିରଟ୍ ଫେରାଇ ଅଣାଗଲା ଓ ସେଠାରେ ପ୍ୟାରେଡରେ ସେମାନଙ୍କର ଫୌଜି ପୋଷାକ କାଢି ନିଆଗଲା । ଦେଶୀ ଅଫିସରମାନଙ୍କୁ ଅପମାନ କରାଗଲା । ଅପରାଧୀ, ନିରପରାଧି ନିର୍ବିଶେଷରେ, ପ୍ରତି ଭାରତୀୟଙ୍କ ଉପରେ ଅତ୍ୟାଚାର କରାଗଲା । ଏହି ଇଂରାଜି ଅଫିସରମାନେ କେବଳ ସୈନିକ ଅନୁଶାସନ ହିଁ ପ୍ରୟୋଗ କରୁଥିଲେ କିନ୍ତୁ ସେମାନେ ସିପାହୀମାନଙ୍କର ଆତ୍ମସମ୍ମାନ ଓ ସ୍ୱାଭିମାନ ପ୍ରତି ଦୃଷ୍ଟି ଦେଉ ନଥିଲେ । ୩୪ ତମ ବାହିନୀକୁ ଭାଙ୍ଗି ଦିଆଗଲା । ଏହି ଘଟଣା ସମୂହ ସାରା ଭାରତରେ ସିପାହୀମାନଙ୍କ ମଧ୍ୟରେ ପ୍ରଥମତଃ, ଧର୍ମାନ୍ତରୀତ ହେବାର ବା ଧର୍ମ ନଷ୍ଟ ହେବାର ଆଶଙ୍କା ଓ ଦ୍ୱିତୀୟତଃ, ଅଫିସର ମାନଙ୍କର ବାରମ୍ବାର ବିଶ୍ୱାସ ଘାତକତା ଫଳରେ ସେମାନଙ୍କର ଇଂରାଜି ଅଫିସର ମାନଙ୍କ ଉପରେ ଅବିଶ୍ୱାସ ଘୃଣା ଓ କ୍ରୋଧ ବୃଦ୍ଧି ପାଇଥିଲା ଯାହାକି ପରବର୍ତ୍ତୀ କାଳରେ ଭୀଷଣ ରୂପ ନେଇଥିଲା ।

୩୪ତମ ବାହିନୀର ଜଣେ ସୁବେଦାର ଥିଲେ, ଯେ କି ବିଦ୍ରୋହର ନେତୃତ୍ୱ ନେଇଥିଲେ । ସେ ବାଲିଆ ଜିଲ୍ଲା ନିବାସୀ, ଜଣେ କାନ୍ୟକୁବ୍ଜୀୟ ବ୍ରାହ୍ମଣ ଥିଲେ । ସେ ସିପାହୀ ରୂପେ ନିଯୁକ୍ତି ପୂର୍ବରୁ, ପୁରୋହିତ ରୂପେ ଜୀବିକା ଅର୍ଜନ କରୁଥିଲେ । ତାହା ତାଙ୍କର ବଂଶର କୌଳିକ ବୃତ୍ତି ଥିଲା । ତାଙ୍କର ସଂସ୍କୃତ ଓ ପୁରାଣାଦିରେ ଜ୍ଞାନ ଥିଲା ଓ ସେ ମଧୁର ସ୍ୱରରେ ସ୍ତୋତ୍ର ଆଦି ପାଠ କରୁଥିଲେ । ତାହା, ସେ ତାଙ୍କର ପିତାଙ୍କ ଠାରୁ ଗ୍ରହଣ କରିଥିଲେ । କିଶୋର ଅବସ୍ଥାରେ ଘରୁ ପଳାଇ ଆସି ସେ ସିପାହୀ ହୋଇଥିଲେ ଏବଂ ନିଜର ପ୍ରତିଭା ବଳରେ ସୁବେଦାର ମେଜର ହୋଇଥିଲେ । ତାଙ୍କର ନାମ 'ଗୋବିନ୍ଦ ପାଣ୍ଡେ' ଥିଲା ଓ ସମସ୍ତେ ତାଙ୍କୁ 'ପାଣ୍ଡେଜି ମହାରାଜ' ବୋଲି ଡାକୁଥିଲେ । ସେ ସେନା ମଧ୍ୟରେ ମଧ୍ୟ ପୂର୍ଣ୍ଣ ବ୍ରାହ୍ମଣୋଚିତ ନିଷ୍ଠାରେ ରହୁଥିଲେ । ସେ ନିତ୍ୟ ସ୍ନାନ ଓ ସନ୍ଧ୍ୟା ଭଜନାଦି କରୁଥିଲେ ଓ ତିଳକ ଲଗାଉଥିଲେ ।

ଅବସର ସମୟରେ ସେ ସୈନିକମାନଙ୍କ ମନୋରଞ୍ଜନ ପାଇଁ ଧର୍ମ ପୁରାଣାଦି ଶୁଣାଉଥିଲେ ଓ କାହାରିଠାରୁ ଦାନ ଦକ୍ଷିଣାଦି ଗ୍ରହଣ କରୁନଥିଲେ । କାରଣ ସ୍ୱରୂପ ସେ କହୁଥିଲେ, ଯେ ବ୍ରାହ୍ମଣଧର୍ମ ତ୍ୟାଗ କରି ସେ କ୍ଷାତ୍ର ଧର୍ମ ଗ୍ରହଣ କରିଥିବାରୁ ଦାନ, ଦକ୍ଷିଣାର ଅଧିକାରୀ ନୁହଁନ୍ତି । କିନ୍ତୁ ତାଙ୍କୁ ମଧ୍ୟରେ ଉଗ୍ର ବ୍ରାହ୍ମଣତ୍ୱ ଥିଲା । ସେ ସଦା ସର୍ବଦା ସମସ୍ତଙ୍କୁ ଆର୍ଯ୍ୟ ସଂସ୍କାରରେ ଉଦ୍‌ବୁଦ୍ଧ କରୁଥିଲେ । ତାଙ୍କର ଉଗ୍ର ଜାତୀୟତାବୋଧ ପାଇଁ, ତାଙ୍କୁ ସବୁଠାରୁ ଅଧିକ ଦଣ୍ଡ ଦିଆଯାଇଥିଲା । କିନ୍ତୁ ଏହି ପ୍ରକାରେ ଅପମାନିତ ହୋଇ ସେ ଆଉ ଘରକୁ ଫେରିଲେ ନାହିଁ । ସେ ବ୍ରାହ୍ମଣପଣ୍ଡିତ ବେଶ ହୋଇ; ଗୀତ, ରାମାୟଣ, ମହାଭାରତ ଆଦି ଗ୍ରନ୍ଥମାନ ବହନ କରି, ପ୍ରତି ଦେଶୀ ସିପାହୀ ଛାଉଣୀରେ ବୁଲି ବୁଲି ସିପାହୀମାନଙ୍କ ମଧ୍ୟରେ ପୁରାଣ ଆଦିରୁ ବିଭିନ୍ନ ଉଦାହରଣ ବ୍ୟାଖ୍ୟା କରି, ଉଗ୍ର ଜାତୀୟତାବାଦ, ଆତ୍ମବିଶ୍ୱାସ ଓ ଆତ୍ମସମ୍ମାନବୋଧର ଜାଗ୍ରତ କରାଇବାକୁ ଲାଗିଲେ ।

ଏହି ପ୍ରକାରେ ସେ ଗୋପନରେ ଛାଉଣୀରୁ ଛାଉଣୀକୁ ଯାଇ ଜାତୀୟତାବାଦର ପ୍ରଚାର କଲେ । ୧୮୫୦ ମସିହାରେ ପଞ୍ଜାବର ଗୋବିନ୍ଦଗଡରେ ଦେଶୀ ସିପାହୀମାନେ, ସେମାନଙ୍କୁ ସେଠାରୁ ଉଠାଇ ନେବା ପାଇଁ ଜିଦି ଧରିଲେ । ସେମାନଙ୍କୁ କୌଣସି ଉପାୟରେ ଶାନ୍ତ କରାଗଲେ ମଧ୍ୟ, ଦେଖାଗଲା ଯେ ସେମାନେ ପରବର୍ତ୍ତୀ ସକାଳରେ ସଶସ୍ତ୍ର ଆକ୍ରମଣ ପାଇଁ ପ୍ରସ୍ତୁତ ହେଉଛନ୍ତି । ଏଣୁ, ତୁରନ୍ତ ଇଂରାଜି ବାହିନୀ ସେମାନଙ୍କୁ ଆକ୍ରମଣ କରି, ପଞ୍ଚାନବେ ଜଣ ସିପାହୀଙ୍କୁ ବନ୍ଦୀ କରି ଦଣ୍ଡ ବିଧାନ କଲେ ଓ ଶାନ୍ତି ପ୍ରତିଷ୍ଠିତ ହେଲା । ୧୮୫୧ ମସିହା ଶେଷ ପର୍ଯ୍ୟନ୍ତ 'ଗୋବିନ୍ଦ ପାଣ୍ଡେ' ପଞ୍ଜାବରେ ଲୁଚି ଲୁଚି ବୁଲିବା ଫଳରେ ଦେଶୀସିପାହୀ ଛାଉଣୀ ଗୁଡିକ ଅନୁଶାସନବିହୀନ ହୋଇଗଲା । ଫଳରେ ତାଙ୍କୁ ଧରିବା ପାଇଁ କମ୍ପାନୀ ସରକାରଙ୍କ ତରଫରୁ ବହୁ ଚେଷ୍ଟା କରାଗଲେ ମଧ୍ୟ କେହି ସଫଳ ହୋଇପାରିଲେ ନାହିଁ । ସେଠାରୁ ଆସି ସେ ଦୁଇ ବର୍ଷ ପର୍ଯ୍ୟନ୍ତ ଦିଲ୍ଲୀ, ଅମ୍ବାଲା, ମେରଠ, ସାହାରନପୁର ଆଦି ସୈନିକ-କେନ୍ଦ୍ର ମାନଙ୍କରେ ବୁଲି ବୁଲି ସିପାହୀମାନଙ୍କୁ ସାହସ ଦେଉଥିଲେ ଓ ଉତ୍ତେଜିତ କରୁଥିଲେ । ତାଙ୍କର ବ୍ୟକ୍ତିତ୍ୱ ଓ ଜାତୀୟତାବୋଧରେ ଇଂରାଜ ପ୍ରଭାବିତ ବ୍ୟକ୍ତିମାନେ ମଧ୍ୟ ଇଂରାଜ ଦ୍ରୋହୀ ହୋଇଯାଉଥିଲେ ।



# ଆଗ୍ନେୟଗିରି ଓ ଅଗ୍ନ୍ୟୁତ୍ପାତ

## ଆଗ୍ନେୟଗିରି

ପୂର୍ବ ଅଧ୍ୟାୟରେ ବର୍ଣ୍ଣନା କରାଯାଇଛି ଯେ 'ଦ୍ୱିତୀୟ ବାଜିରାଓ' 'ନାନା ସାହେବ'ଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । 'ବାଜିରାଓ'ଙ୍କର ମୃତ୍ୟୁ ପରେ 'ନାନା ସାହେବ' ସରକାରଙ୍କୁ, 'ବାଜିରାଓ'ଙ୍କର ପାଉଥିବା ପେନସନ୍ ପାଇବା ପାଇଁ ଦରଖାସ୍ତ କଲେ । ଉକ୍ତ ଦରଖାସ୍ତରେ କମିଶନର, 'ନାନା ସାହେବ'ଙ୍କୁ ପେନସନ୍‌ର କିଛି ଅଂଶ ଦେବାପାଇଁ, ମତାମତ ଜଣାଇ ପଠାଇଲେ । କିନ୍ତୁ 'ଲର୍ଡ ଡେଲାହାଉସୀ' ଏ ସମସ୍ତ କଥାରେ କର୍ଣ୍ଣପାତ କଲେ ନାହିଁ । 'ମୋରଲାଣ୍ଡ' (Morland), 'ବାଜିରାଓ'ଙ୍କର ମୃତ୍ୟୁ ପରେ ତାଙ୍କର ସମ୍ପତ୍ତିର ଏକ ତାଲିକା ଓ ତାଙ୍କର ମୃତ୍ୟୁ ପରେ ଯେଉଁ ଯେଉଁ ଭୃତ୍ୟ ମାନଙ୍କ ବହିଷ୍କାର କରାଯିବ ତାହାର ଏକ ତାଲିକା ପ୍ରସ୍ତୁତ କରିଥିଲେ । 'ବାଜିରାଓ'ଙ୍କର ୧୬ ଲକ୍ଷ ଟଙ୍କାର ନୋଟ ଓ ତହିଁର ସୁଧ, ବାର୍ଷିକ ଅଶୀ ହଜାର ଟଙ୍କାର ସ୍ୱର୍ଣ୍ଣ ଅଳଙ୍କାର, କୋଡିଏ ହଜାର ଟଙ୍କାର ରୂପାର ବାସନ ଅଳଙ୍କାର ଏବଂ ତିନିଲକ୍ଷ ଟଙ୍କାର ସୁନା ମୋହର ଥିଲା । ତାଙ୍କର ଜାଗିରୀରେ ପନ୍ଦର ହଜାର ଅନୁଗାମୀ ଆଶ୍ରୟ ଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରୁ ଅନେକ ବୃଦ୍ଧ ଓ ଅସହାୟ ଥିଲେ । 'ନାନା ସାହେବ', ଉତ୍ତରାଧିକାରୀ ସୂତ୍ରରେ ଅନେକ ଘୋଡା, ହାତୀ, ଓଟ ଓ ଅନ୍ୟାନ୍ୟ ଜନ୍ତୁ ପାଇଥିଲେ । ଅର୍ଥାଭାବରୁ ଏମାନଙ୍କୁ ତ୍ୟାଗ କରିବା ତାଙ୍କ ପକ୍ଷରେ ଭାରତୀୟ ପରମ୍ପରା ଅନୁଯାୟୀ ସମ୍ମାନହାନିକର ଥିଲା । ଏହି ପଶୁ ମାନଙ୍କର ରକ୍ଷଣାବେକ୍ଷଣ, ତଥା ସମସ୍ତ ଆଶ୍ରିତ ମାନଙ୍କର ରକ୍ଷଣାବେକ୍ଷଣ ପାଇଁ ପ୍ରଚୁର ଅର୍ଥ ଖର୍ଚ୍ଚ କରିବାକୁ ପଡୁଥିଲା । ଆୟଠାରୁ ତାଙ୍କର ମାସିକ ବ୍ୟୟ ଦୁଇଗୁଣ ଥିଲା । କମିଶନର ତାଙ୍କୁ ସବୁଦିଗରୁ ଖର୍ଚ୍ଚ କାଟ କରିବାକୁ ପରାମର୍ଶ ଦେଲେ । 'ନାନା ସାହେବ'ଙ୍କ ଜୀବନୀ ଅନୁଧ୍ୟାନ କଲେ ଜଣାପଡେ, ଯେ ସେ କୌଣସି କୁଅଭ୍ୟାସର ବଶବର୍ତ୍ତୀ ନଥିଲେ ବା ଅଯଥା ବିଳାସ ବ୍ୟସନରେ ଅର୍ଥ ଅପବ୍ୟୟ କରୁନଥିଲେ । କମିଶନର, ଉତ୍ତର ପଶ୍ଚିମ ପ୍ରଦେଶର ସରକାରଙ୍କୁ ନାନା ସାହେବ୍‌ଙ୍କର ଦରଖାସ୍ତ ପଠାଇଦେଲେ । 'କର୍ଣ୍ଣେଲ ମାନ୍‌ସନ' (Colonel Manson) ମଧ୍ୟ ନାନାସାହେବଙ୍କୁ ପେନସନ୍‌ର କିଛି ଅଂଶ ଦେବାକୁ ସୁପାରିଶ କଲେ । କିନ୍ତୁ ସେପ୍ଟେମ୍ବର ପନ୍ଦର ତାରିଖ ଦିନ 'ଗଭର୍ଣ୍ଣର ଜେନେରାଲ', କମିଶନରଙ୍କ ମତକୁ ବିରୋଧ କରି ପେନସନ୍ ଦେବାକୁ

ସମ୍ପୂର୍ଣ୍ଣ ଭାବରେ ବନ୍ଦ କରିଦେଲେ । ଏହି ଆଦେଶ ଅକ୍ଟୋବର ମାସରେ ନାନା ସାହେବଙ୍କୁ ଜଣାଇ ଦିଆଗଲା । ନାନା ସାହେବ ବିଚାର ପାଇଁ 'କୋର୍ଟ ଅଫ୍ ଡାଇରେକ୍ଟରସ୍' (court of Directors)ରେ ଆପତ୍ତି ଦରଖାସ୍ତ କଲେ । ୧୮୫୨ ମସିହାରେ 'କୋର୍ଟ ଅଫ୍ ଡାଇରେକ୍ଟରସ', 'ନାନା ସାହେବ'ଙ୍କ ବିରୁଦ୍ଧରେ ରାୟ ଦେଲେ । ୧୮୫୩ ମସିହା ଅଗଷ୍ଟ ୧୨ ତାରିଖ ଦିନ 'ନାନା ସାହେବ' କଲିକତାରେ ଥିବା ତାଙ୍କର ଏଜେଣ୍ଟ 'ଜ୍ୱାଳାପ୍ରସାଦ'ଙ୍କ ଦ୍ୱାରା ଦ୍ୱିତୀୟ ଥର ଆପତ୍ତି ଦରଖାସ୍ତ କଲେ । କୋର୍ଟ ତାଙ୍କର ପୂର୍ବ ବିଚାର ଅପରିବର୍ତ୍ତିତ ରଖିଲେ ଏବଂ ଏହା ବିଚାର ହୋଇ ସାରିଥିବା ଦୃଷ୍ଟିରୁ ତାଙ୍କର ଦରଖାସ୍ତ ପୁନର୍ବାର ଗ୍ରହଣ କରାଯିବ ନାହିଁ ବୋଲି ତାଙ୍କୁ ଜଣାଇ ଦିଆଗଲା ।

'ନାନା ସାହେବ' କିନ୍ତୁ ତାହା ମାନିବାକୁ ପ୍ରସ୍ତୁତ ନଥିଲେ । ଏଣୁ ସେ ଏହି ବିଷୟରେ ଇଂଲାଣ୍ଡର ମନ୍ତ୍ରୀ ଓ ଜନସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ବିଚାର କଲେ । ଏହା ପୂର୍ବରୁ 'ସତାରା ରାଜା', 'ଝାନ୍ସୀର ରାଣୀ' ଓ 'ଦିଲ୍ଲୀର ବାଦଶାହ', ସେମାନଙ୍କ ଆପତ୍ତି ଜଣାଇବାକୁ ନିଜ ନିଜର ପ୍ରତିନିଧିମାନଙ୍କୁ ଲଣ୍ଡନ ପଠାଇଥିଲେ । ଏଣୁ 'ନାନା ସାହେବ' ତାଙ୍କର ଆପତ୍ତି ଜଣାଇବାକୁ 'ଅଜିମୁଲ୍ଲା ଖାଁ'ଙ୍କୁ ଲଣ୍ଡନ ପଠାଇଲେ । 'ଅଜିମୁଲ୍ଲା ଖାଁ' ଶିକ୍ଷିତ ତଥା ଇଂରାଜି ଓ ଫରାସୀ ଭାଷାରେ ପ୍ରବୀଣ ଓ ତୀକ୍ଷ୍ଣ ଧୀ ସମ୍ପନ୍ନ ଥିଲେ । ସେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଇଚ୍ଛା ମନେ ମନେ ପୋଷଣ କରିଥିଲେ ଓ ପରେ ଏହାର ପ୍ରସାର କରିବାରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ।

'ଅଜିମୁଲ୍ଲା' ଅତ୍ୟନ୍ତ ଦରିଦ୍ର ପରିବାରରେ ଜନ୍ମ ଗ୍ରହଣ କରିଥିଲେ । କିନ୍ତୁ, ନିଜର ଯୋଗ୍ୟତା ଓ ପ୍ରତିଭା ବଳରେ ସେ 'ନାନା ସାହେବ'ଙ୍କର ବିଶ୍ୱସ୍ତ ଉପଦେଷ୍ଟା ହୋଇପାରିଥିଲେ । ତାଙ୍କର ଦାରିଦ୍ର୍ୟ କାରଣରୁ ସେ ପ୍ରଥମ ଅବସ୍ଥାରେ ଜଣେ ଇଂରାଜଙ୍କ ଗୃହରେ ବବୁର୍ଚ୍ଚି କାମ କରିଥିଲେ ଓ ଏହାର ସୁଯୋଗ ନେଇ ସେ ଇଂରାଜି ଓ ଫରାସୀ ଭାଷା ଶିଖିଗଲେ । ଏହି ଭାଷା ଶିଖିବାପରେ 'ଆଜିମୁଲ୍ଲା', ଚାକିରୀ ଛାଡି 'କାନପୁର' ସ୍କୁଲରେ ଉଚ୍ଚଶିକ୍ଷା ନିମିତ୍ତ ପ୍ରବେଶ କଲେ । ତାଙ୍କର ପ୍ରତିଭା ବଳରେ ସେ ସେହି ସ୍କୁଲର ଶିକ୍ଷକ ହୋଇପାରିଥିଲେ । ସେହି ସ୍କୁଲରେ ଶିକ୍ଷକତା କରିବା ସମୟରେ ତାଙ୍କର ପାଣ୍ଡିତ୍ୟର କଥା ନାନା ସାହେବଙ୍କର କର୍ଣ୍ଣଗୋଚର ହେଲା । ସେ ତାଙ୍କୁ ନିଜର ଦରବାରରେ ସ୍ଥାନ ଦେଲେ ।

୧୮୫୪ ମସିହାରେ ସେ ତାଙ୍କୁ ନିଜର ମୁଖ୍ୟ ପ୍ରତିନିଧି କରି ଲଣ୍ଡନ ପଠାଇଲେ । ତାଙ୍କର ଇଂରାଜି ଚଳଣି ଉପରେ ଜ୍ଞାନ, ସୁନ୍ଦର ଚେହେରା ସୁନ୍ଦର ବ୍ୟକ୍ତିତ୍ୱ ଓ ମଧୁର ବ୍ୟବହାର ତାଙ୍କୁ ଲଣ୍ଡନରେ ଜନପ୍ରିୟ କରିନେଲା । ଏପରିକି ବହୁ ଧନୀ ଓ ସମ୍ଭ୍ରାନ୍ତବଂଶୀୟା ମହିଳା ମାନେ ମଧ ତାଙ୍କ ପ୍ରତି ଆକର୍ଷଣ ଅନୁଭବ କଲେ । ପରବର୍ତ୍ତୀ କାଳରେ ହାଭଲକ୍‌ଙ୍କର ସୈନ୍ୟମାନେ ଜବତ୍ କରିଥିବା ଏକ ବାକ୍ସରୁ ବହୁ ଇଂରାଜି ତରୁଣୀଙ୍କର ପ୍ରେମସମ୍ଭାଷଣମୂଳକ ପତ୍ର ମିଳିଥିଲା । କିନ୍ତୁ ଏ ସମସ୍ତ ଜନପ୍ରିୟତା ସତ୍ୱେ ଇଷ୍ଟଇଣ୍ଡିଆକମ୍ପାନୀ, ଗଭର୍ଣ୍ଣର ଜେନେରାଲଙ୍କର ବିଚାରକୁ କାଏମ ରଖିଲା । ଲଣ୍ଡନରେ ଥିବା ସମୟରେ ଅଜିମୁଲ୍ଲା ସେଠାରେ ଥିବା ସତାରା ରାଜାଙ୍କ ପ୍ରତିନିଧି 'ରଙ୍ଗୋଜି ବାପୁ'ଙ୍କ ସହିତ ସମ୍ପର୍କ ରଖିଥିଲେ । ଲଣ୍ଡନରୁ ବିଫଳମନୋରଥ ହୋଇ ରଙ୍ଗୋଜି ବାପୁଜି 'ସତାରା' ପ୍ରତ୍ୟାବର୍ତ୍ତନ କଲେ । କିନ୍ତୁ 'ଅଜିମୁଲ୍ଲା', ଇଉରୋପ ଭ୍ରମଣ କରିବାପରେ ଭାରତ ଫେରିବାକୁ ସ୍ଥିର କଲେ । ଅଜିମୁଲ୍ଲା ଦେଖିଲେ ଯେ ଇଂରାଜିମାନଙ୍କ ବିରୁଦ୍ଧରେ ବିଦ୍ରୋହର ଯୋଜନା କରିବାକୁ ଗଲେ ତାହା କେବଳ ଭାରତରେ ସୀମାବଦ୍ଧ ରଖିବା ଉଚିତ ନୁହେଁ । ପରନ୍ତୁ, କୂଟନୈତିକ ଉପାୟରେ ଇଉରୋପ ତଥା ଇଂଲାଣ୍ଡର ଜନସାଧାରଣଙ୍କର ବିଦ୍ରୋହ ପ୍ରତି ସହାନୁଭୂତି ଆକର୍ଷଣ କରିବାର ମଧ ଆବଶ୍ୟକତା ରହିଛି ।

ସେ ସମୟରେ ଇଉରୋପୀୟ ରାଜ୍ୟଗୁଡିକ ଏସିଆ ମହାଦେଶରେ ନିଜର ସାମ୍ରାଜ୍ୟ ବିସ୍ତାର କରିବାକୁ ସତତଃ ଚେଷ୍ଟା କରୁଥିଲେ । ସେମାନଙ୍କ ମଧରେ ଋଷିଆ ଓ ବ୍ରିଟେନ ପ୍ରମୁଖ ଥିଲେ । ବ୍ରିଟେନ ଭାରତବର୍ଷ ଉପରେ ନିଜର ଅଧିକାର ଜାହିର କଲାବେଳକୁ ଋଷିଆ, ଏସିଆରେ ପ୍ରଶାନ୍ତ ମହାସାଗର ପର୍ଯ୍ୟନ୍ତ ନିଜର ଆଧିପତ୍ୟ ବିସ୍ତାର କରିଥିଲା । ବହୁ ସ୍ଥାନରେ ଉଭୟଙ୍କର ସୀମା ମିଶି ରହିଥିଲା । ଏହି ହେତୁ, ଉଭୟେ ଉଭୟଙ୍କୁ ଭୟ କରୁଥିଲେ । ବ୍ରିଟେନ ଭାରତବର୍ଷରେ ପହଞ୍ଚିବାକୁ ନିଷ୍କଣ୍ଟକ ମାର୍ଗ ଦରକାର କରୁଥିଲା । ସେଥିପାଇଁ ସୁଏଜର ଗୁରୁତ୍ୱ ବ୍ରିଟିଶ୍ ମାନଙ୍କ ପାଖରେ ଯଥେଷ୍ଟ ଅଧିକ ଥିଲା । ସେ ସମୟରେ ଜାହାଜମାନ ଭୂମଧ ସାଗର ମଧ ଦେଇ ଆସି, ସୁଏଜଠାରେ ମାଲଖଲାସ କରୁଥିଲେ ଓ ମାଲମତା ନେଇ ଲୋକମାନେ ସ୍ଥଳଭାଗଦେଇ ଆସି ସୁଏଜର ଅପରପାର୍ଶ୍ୱରେ ଲୋହିତ ସାଗରରେ ଥିବା ଅନ୍ୟ ଏକ ଜାହାଜ ଦ୍ୱାରା ଭାରତ ଆସୁଥିଲେ । ଏହିପରି ପରିସ୍ଥିତିରେ ଋଷିଆର ତୁର୍କ ଓ ବଲ୍‌କାନ୍ ଦ୍ୱୀପରେ ପ୍ରଭାବ ବିସ୍ତାର ବ୍ରିଟେନ ପାଇଁ ମାରାତ୍ମକ ଥିଲା । କାରଣ, ତଦ୍ୱାରା, ସୁଏଜର ନିରାପତ୍ତା ବ୍ୟାହତ ହେବାର ଆଶଙ୍କା ଥିଲା । ଏଣୁ ବଲ୍‌କାନ ଓ ତୁର୍କୀରେ

ନିଜର ପ୍ରଭାବ ବିସ୍ତାର ପାଇଁ ଋଷିଆ ଓ ବ୍ରିଟେନ୍ ମଧ୍ୟରେ ପାରସ୍ପରିକ ପ୍ରତିଦ୍ୱନ୍ଦ୍ୱୀତା ଥିଲା ଏବଂ ସେହି ସଂକ୍ରାନ୍ତରେ ସେମାନେ ପରସ୍ପର ବିରୋଧି ମତ ପୋଷଣ କରୁଥିଲେ । ୧୮୫୩ ମସିହାରେ ଋଷିଆକୁ ତୁର୍କୀ ସହିତ ଯୁଦ୍ଧ କରିବା ପାଇଁ ଏକ ବାହାନା ମିଳିଗଲା । ଜେରୁଜେଲମ୍ ତୁର୍କୀ ଅଧିନରେ ଥିଲା । ତାହା ଖ୍ରୀଷ୍ଟିଆନ୍ ମାନଙ୍କର ତୀର୍ଥ କ୍ଷେତ୍ର ହୋଇଥିବାରୁ ବହୁ ଖ୍ରୀଷ୍ଟିଆନ ଯାତ୍ରୀ ସେଠାକୁ ଆସୁଥିଲେ । ତୁର୍କୀରେ ଶାସକ ବର୍ଗ ଏହି ଯାତ୍ରୀମାନଙ୍କ ସହିତ ଓ ତୁର୍କରେ ରହୁଥିବା ଖ୍ରୀଷ୍ଟିଆନ ମାନଙ୍କ ସହିତ ଅତ୍ୟନ୍ତ ଘୃଣା ଓ ହୀନମନ୍ୟ ବ୍ୟବହାର କରୁଥିଲେ । ସେମାନଙ୍କୁ କାଫେର ବୋଲି କହୁଥିଲେ । ଏଣୁ ଋଷିଆର ସମ୍ରାଟ ପ୍ରସ୍ତାବ ଦେଲେ ଯେ ତୁର୍କୀର ସୁଲତାନ ଋଷିଆକୁ ଖ୍ରୀଷ୍ଟିଆନ ମାନଙ୍କର ସଂରକ୍ଷକ ରୂପେ ସ୍ୱୀକାର କରୁ । ସେ ସମୟରେ ତୁର୍କୀରେ ବ୍ରିଟିଶ ରାଜଦୂତ 'ଲର୍ଡ ଷ୍ଟ୍ରେଟଫୋର୍ଡ' 'କୁସ୍ତୁନ୍ତୁନିଆ'ରେ ଉପସ୍ଥିତ ଥିଲେ । ସେ ସୁଲତାନଙ୍କୁ ଋଷିଆର ପ୍ରସ୍ତାବ ଅସ୍ୱୀକାର କରିବାକୁ ପରାମର୍ଶ ଦେଲେ । ଋଷିଆର ରାଜଦୂତ 'କୁସ୍ତୁନ୍ତୁନିଆ'ରୁ ଫେରିଲେ ଓ ଋଷିଆର ସୈନ୍ୟ ତୁର୍କୀ ଆଡକୁ ଅଗ୍ରସର ହେଲେ । ବ୍ରିଟେନ ତତ୍‌କ୍ଷଣାତ ନିଜର ସୈନ୍ୟ ପ୍ରେରଣ କଲା । ଫ୍ରାନ୍ସ ମଧ୍ୟ ଇଂଲଣ୍ଡ ସହିତ ପୂର୍ବ ଶତ୍ରୁତା ଭୁଲି ସହାୟତା ପାଇଁ ନିଜର ସୈନ୍ୟବାହିନୀକୁ ପ୍ରେରଣ କଲା । କୃଷ୍ଣ ସାଗରର 'କ୍ରିମିଆ' ଅନ୍ତରୀପରେ ୧୮୫୪ ମସିହାରେ ଯୁଦ୍ଧର ଆରମ୍ଭ ହୋଇଗଲା ।

ଏହି ପରିସ୍ଥିତି ମଧ୍ୟରେ 'ଅଜିମୁଲ୍ଲା ଖାଁ' ମୁସଲମାନ ମାନଙ୍କର ଖଲିଫା ରୂପେ ପରିଚିତ ତୁର୍କୀର ସୁଲତାନଙ୍କ ରାଜଧାନୀରେ ଆସି ପହଞ୍ଚିଲେ । ଋଷ-ତୁର୍କୀ ଯୁଦ୍ଧ ଓ 'ସେବାଷ୍ଟୋପାଲ' (Sebastopal) ଯୁଦ୍ଧରେ ଇଂରାଜିମାନଙ୍କର ପରାଜୟ ଖବର ଶୁଣି ସେ ଋଷିଆ ଗଲେ । ଇଂରାଜି ଓ ଫ୍ରାନ୍ସ ମିଳିତ ବାହିନୀର ପରାଜୟର ଖବର ଶୁଣି ସେ ଜୁନ୍ ଅଠର ତାରିଖ ଦିନ ଇଂରାଜି ଛାଉଣୀ ମଧ୍ୟକୁ ଯିବାପାଇଁ ଅନୁମତି ପାଇଲେ । ସେହିଠାରେ ଲଣ୍ଡନ ଟାଇମସ୍ ପତ୍ରିକାର ପ୍ରତିନିଧି ରସେଲଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ସେ ରସେଲ୍‌କୁ କହିଲେ ଯେ ଯେଉଁ ଋଷୀୟ ରୁସ୍ତମ୍‌ମାନେ ସମ୍ମିଳିତବାହିନୀକୁ ହରାଇ ଦେଇପାରୁଛନ୍ତି, ମୁଁ ସେମାନଙ୍କୁ ଦେଖିବାକୁ ଚାହେଁ । ସେ ଛାଉଣୀରେ ରହି ଋଷୀୟ ମାନଙ୍କର ଯୁଦ୍ଧକମାଣ ଓ ତାର ପରିଚାଳନା ଦେଖୁଥିବା ବେଳେ ଋଷୀୟ କମାଣରୁ ଏକ ଗୋଳା ଆସି ତାଙ୍କ ଦକ୍ଷିଣପାଦର ପାଖରେ ପଡିଲେ ମଧ୍ୟ ସେ ଅବିଚଳିତ ଥିଲେ । ସେହି ରାତ୍ରି, ସେ 'ରସେଲ୍'ଙ୍କ ତମ୍ବୁରେ କଟାଇଲେ ଓ ପରଦିନ ପ୍ରଭାତରୁ ଯାତ୍ରା କଲେ । ଏହାପରେ ସେ କେଉଁଆଡେ ଗଲେ ତାହା

କହିବା କଠିନ । କିନ୍ତୁ, ପରବର୍ତ୍ତୀକାଳରେ କାନପୁର ଘୋଷଣାନାମାରୁ ଜଣାଯାଏ ଯେ ଇଜିପ୍ଟ ସହିତ ମଧ୍ୟ ତାଙ୍କର କୂଟନୈତିକ ବୁଝାମଣା ଥିଲା । ଲର୍ଡ ରବର୍ଟ (Lord Robert), 'ଅଜିମୁଲ୍ଲା ଖାଁ' ସୁଲତାନଙ୍କୁ ଦେଇଥିବା କେତେକ ଗୁରୁତ୍ୱପୂର୍ଣ୍ଣ ପତ୍ର ପାଇଥିଲେ । ସେ ସମ୍ବନ୍ଧରେ ସେ ତାଙ୍କର "Forty years in India' ପୁସ୍ତକରେ ଲେଖିଛନ୍ତି

"There are numerous letters from his English financies and two from a French man.

A portion of the correspondence was unopened and there were several letters in Azimullahs own handwriting. Two of these were to Omar Pasha of constantinle and told of the sepoy discontent and the troubled state of India generally".

(''ତାଙ୍କର ଇଂରାଜି ପ୍ରଶଂସିକାମାନଙ୍କଠାରୁ ବହୁ ପତ୍ର ଏବଂ ଜଣେ ଫରାସୀ ବ୍ୟକ୍ତିଙ୍କଠାରୁ ପାଇଥିବା ଦୁଇଟି ପତ୍ର ଥିଲା ।''-----''କିଛି ଚିଠି ଖୋଲାଯାଇନଥିଲା । ଏବଂ ଅଜିମୁଲ୍ଲାଙ୍କର ହସ୍ତାକ୍ଷର ଥିବାର ବହୁ ପତ୍ର ଥିଲା । ସେଥିମଧ୍ୟରୁ ଦୁଇଟି କନ୍‌ଷ୍ଟାଣ୍ଟିନୋପଲ୍‌ର ଓମରପାଶାଙ୍କ ପାଖକୁ ଲେଖାଯାଇ ସେଥିରେ ସିପାହୀମାନଙ୍କର ଅଶାନ୍ତି ଓ ଭାରତରେ ବିପଜ୍ଜନକ ପରିସ୍ଥିତିର ବର୍ଣ୍ଣନା କରାଯାଇଥିଲା ।'')

ପରିଶେଷରେ 'ଆଜିମୁଲ୍ଲା' ଭାରତରେ ଆସି ପହଞ୍ଚିଲେ । ସେ ଓ 'ନାନା ସାହେବ', ଦୁହେଁ ମିଳି ବିଚାର ବିମର୍ଶ କଲେ । ଅଳ୍ପ ସମୟ ମଧ୍ୟରେ ସେମାନଙ୍କର ନୀତି ସ୍ଥିର ହୋଇଗଲା । ସେହି ଅନୁସାରେ ହିନ୍ଦୁ ଓ ମୁସଲମାନମାନେ କାନ୍ଧକୁ କାନ୍ଧ ମିଳାଇ ବ୍ରିଟିଶ ସହିତ ଲଢେଇ କରି ସର୍ବ ପ୍ରଥମେ, ଦେଶକୁ ସ୍ୱାଧୀନ କରିବେ ଓ ତତ୍‌ପରେ ଦେଶୀୟଶାସକ ମାନଙ୍କୁ ନେଇ ଏକ ଭାରତୀୟ ରାଷ୍ଟ୍ର ସଂଘ ଗଠିତ ହେବ । ଏହି ଲକ୍ଷ୍ୟ ପୂରଣ ନିମିତ୍ତ ପ୍ରଥମ କାର୍ଯ୍ୟ ହେଲା ଭାରତୀୟ ମାନଙ୍କ ମନରେ ସ୍ୱାଧୀନତା ନିମନ୍ତେ ଦୃଢ ଇଚ୍ଛା ଶକ୍ତି ଜାଗ୍ରତ କରାଇବା ଓ ଦ୍ୱିତୀୟରେ ସେମାନଙ୍କୁ ସଶସ୍ତ୍ର ସଂଗ୍ରାମ ପାଇଁ ପ୍ରେରଣା ଓ ନେତୃତ୍ୱ ଦେବା । ଏତଦ୍‌ବ୍ୟତୀତ, ଏ ସମସ୍ତ କାର୍ଯ୍ୟକଳାପ ଅତ୍ୟନ୍ତ ଗୋପନରେ କରାଗଲେ ମଧ୍ୟ ବାହାରକୁ ଏପରି ଶାନ୍ତି ଶୃଙ୍ଖଳା ରକ୍ଷା କରାଯିବାର ଯୋଜନା କରାଗଲା, ଯେପରି କି କମ୍ପାନୀ ସରକାର ବିଦ୍ରୋହ ବିଷୟ ଘୁଣାକ୍ଷରରେ ମଧ୍ୟ ସନ୍ଦେହ କରିବେ ନାହିଁ । ଏହି ଯୋଜନା ତୁରନ୍ତ

କାର୍ଯ୍ୟକାରୀ କରାଗଲା । ୧୮୫୬ ମସିହାର କିଛି ପୂର୍ବରୁ, 'ନାନା ସାହେବ' ଭାରତବର୍ଷର ବିଭିନ୍ନ ସ୍ଥାନକୁ ନିଜର ଚରମାନଙ୍କୁ ପଠାଇଲେ । ସେମାନେ ବିଭିନ୍ନ ସ୍ଥାନରେ ପହଞ୍ଚି, ଲୋକମାନଙ୍କୁ ଭାରତୀୟ ରାଜନୈତିକ ଆଦର୍ଶ ଓ ଜାତୀୟତାରେ ଉଦ୍‌ବୁଦ୍ଧ କରୁଥିଲେ । 'ନାନାସାହେବ' ବହୁ ପରିକ୍ଷିତ ଓ ଯୋଗ୍ୟ ବ୍ୟକ୍ତିମାନଙ୍କୁ, ଦିଲ୍ଲୀଠାରୁ ମହୀଶୂର ପର୍ଯ୍ୟନ୍ତ ଥିବା ସମସ୍ତ ରାଜ୍ୟର ଶାସକ ମାନଙ୍କ ପାଖକୁ ପଠାଇଲେ । ସେମାନେ ଯାଇ ଉକ୍ତ ରାଜା ବା ନବାବମାନଙ୍କୁ ଭାରତର ସ୍ୱାଧୀନତା ଓ ଭାରତୀୟ-ରାଷ୍ଟ୍ର-ସଂଘ ବିଷୟରେ ବୁଝାଇଲେ । ପ୍ରତି ଦରବାରକୁ ଗୁପ୍ତ ପତ୍ର ଯାଉଥିଲା । ଏଥିରେ ଇଂରାଜୀମାନଙ୍କ ରାଜ୍ୟମିଶ୍ରଣ ନୀତି ଓ ଅନ୍ୟାନ୍ୟ ନୀତିର ସମାଲୋଚନା କରାଯାଇଥିଲା, ଓ ସ୍ୱାଧୀନତା ପାଇଁ ଆହ୍ୱାନ ଦିଆ ଯାଇଥିଲା । ଏହିପରି ଜଣେ ପତ୍ରବାହକକୁ ମହୀଶୂର ଦରବାରରେ ଇଂରାଜୀମାନେ ବନ୍ଦୀ କରିଥିଲେ । ଉକ୍ତ ବ୍ୟକ୍ତିଙ୍କଠାରୁ ଇଂରାଜି ମାନେ ଆଦାୟ କରିଥିବା ବିବରଣୀ ନିମ୍ନରେ ଦିଆଗଲା:-

"Two or three months before Oudh was annexed, Shrimat Nana Sahib had begun sending letters. First no one would reply, for no one hoped for any sucess. After Oudh was annexed, however, Nana began a regular Battery of letters and, then, the opinions of Nana began to appeal the Sirkars of Lucknow. Raja Mansingh, the leader of Purbhayas, was also won over. Then the Sepoys began to Organise amongst them. No replies to letters were received till Oudh was annexed, but as soon as that was accomplished, hundred of people came forward boldly and replied confidentially to Nana. Next came the affairs of catridges and, then, the dissaffection was so great that letters were showered to Nana."

("ଅବଧକୁ ମିଶାଇ ଦେବାର ଦୁଇତିନିମାସ ପୂର୍ବରୁ , ନାନାସାହେବ ଚିଠି ପଠାଇବା ଆରମ୍ଭ କରିଥିଲେ । ପ୍ରଥମେ କେହି ଉତ୍ତର ଦେଲେ ନାହିଁ । କାରଣ କେହିହେଲେ ସଫଳତାର ଆଶା ରଖୁନଥିଲେ । ଅବଧ ମିଶ୍ରଣ ପରେ ନାନା ନିୟମିତ ଭାବରେ ଗଦା ଗଦା ଚିଠି ପଠାଇବାକୁ ଲାଗିଲେ । ଏବଂ ଏହାପରେ ଲକ୍ଷ୍ନୌର ସରକାର ନାନାଙ୍କର ନିବେଦନରେ ପ୍ରଭାବିତ ହେଲେ । ପୂର୍ବୀୟଙ୍କର ନେତା ରାଜାମାନସିଂହ ମଧ୍ୟ ପ୍ରଭାବିତ ହେଲେ । ଏହାପରେ ସିପାହୀମାନେ ନିଜକୁ ସଂଗଠିତ କଲେ । ଅବଧ ମିଶ୍ରଣ ପୂର୍ବରୁ କୌଣସି ଚିଠିର ଉତ୍ତର ଆସୁନଥିଲା । କିନ୍ତୁ ତାହା

ହେବାପରେ ପରେ ଶହ ଶହ ଲୋକ ସାହସର ସହିତ ଆଗେଇ ଆସି ଦୃଢବିଶ୍ୱାସର ସହ ନାନାଙ୍କର ନିବେଦନର ଜବାବ ଦେଲେ । ଏହାପରେ ଗୁଳିର ସମସ୍ୟା ଦେଖାଗଲା ତାହାପରେ ଏତେଦୂର ଅଶାନ୍ତି ସୃଷ୍ଟି ହେଲା ଯେ ନାନାଙ୍କ ପାଖକୁ ଗଦା ଗଦା ଉତ୍ତର ଆସିବାକୁ ଲାଗିଲା ।'')

ଦିଲ୍ଲୀରେ ସେସମୟରେ ଇଂରାଜିମାନେ, ବାଦଶାହାଙ୍କର ବାଦଶାହୀ ନେବା ସହିତ ବାଦଶାହା ପଦ ମଧ ନିଶ୍ଚିହ୍ନ କରିବାକୁ ବସିଥିଲେ । ବାଦଶାହଙ୍କର ବୁଦ୍ଧିମତୀ ପତ୍ନୀ 'ବେଗମ୍ ଜିନତ ମହଲ' ତାହା ପ୍ରାଣ ପଣେ ରକ୍ଷାକରିବାକୁ ଚେଷ୍ଟାକରୁଥିଲେ । ସେ ସମୟରେ ଇଂରାଜି ମାନେ ପାରସ୍ୟ ସହିତ ଯୁଦ୍ଧରେ ରତ ଥିଲେ । ଭାରତବାସୀଙ୍କ ଗୁପ୍ତ ଜାଗରଣ ବିଷୟରେ ଖବର ପାଇ 'ପାରସ୍ୟର ଶାହା, 'ଦିଲ୍ଲୀର ବାଦଶାହ'ଙ୍କ ସହିତ କୂଟନୈତିକ ସମ୍ପର୍କ ରଖିବାକୁ ଆରମ୍ଭ କଲେ । ବାଦଶାହଙ୍କର ଘୋଷଣାନାମାରୁ ପ୍ରମାଣ ମିଳେ ଯେ ଦିଲ୍ଲୀରୁ ଦୂତ ପାରସ୍ୟର ଦରବରରକୁ ଯାଇଥିଲା । ଦିଲ୍ଲୀର ଜନସାଧାରଣଙ୍କ ମଧ୍ୟରେ, ବ୍ରିଟିଶ୍‌ଙ୍କ ବିରୁଦ୍ଧରେ ବିଭିନ୍ନ ସ୍ଥାନରେ ଗୁପ୍ତ ଆଲୋଚନା ଚାଲୁଥିଲା । ଦିଲ୍ଲୀରେ ବହୁ ପ୍ରାଚୀର ପତ୍ରରେ ଘୋଷଣା ନାମା ମଧ ପ୍ରକାଶ ପାଉଥିଲା । ୧୮୫୭ ମସିହା ପ୍ରଥମ ଭାଗରେ ଏହିପରି ଏକ ଘୋଷଣା ନାମା ପ୍ରକାଶ ପାଇଥିଲା । ଏଥିରେ ଲେଖା ହୋଇ ଥିଲା ଯେ, ପାରସ୍ୟର ସୈନ୍ୟବାହିନୀ ଇଂରାଜୀ ମାନଙ୍କ କବଳରୁ ଭାରତକୁ ମୁକ୍ତ କରିବେ । ଏଣୁ ଧନୀ, ଦରିଦ୍ର, ଶିକ୍ଷିତ, ଅଶିକ୍ଷିତ ନିର୍ବିଶେଷରେ ସମସ୍ତ ଜନସାଧାରଣ, ସ୍ୱାଧୀନତା ପାଇଁ ପ୍ରସ୍ତୁତ ରହିବା ଦରକାର । ଏହି ପ୍ରକାର ପ୍ରାଚୀରପତ୍ର କିଏ ଲଗାଉଥିଲା, ତାହାର ସଂନ୍ଧାନ ଇଂରାଜି ମାନେ ପାଇପାରୁନଥିଲେ । କିନ୍ତୁ, ପରେ ପରେ ଉକ୍ତ ଘୋଷଣାନାମା କିଛି ପତ୍ରିକାରେ ମଧ ଖବର ଆକାରରେ ପ୍ରକାଶିତ ହେଉଥିଲା । ବିଭିନ୍ନ ଶାହାଜାଦାମାନେ ମଧ ଦିଲ୍ଲୀର ରାଜପ୍ରସାଦ ମଧରେ ଇଂରାଜି ମାନଙ୍କ ପ୍ରତି ଘୃଣା ଓ ବିଦ୍ୱେଷ ଭାବ ସୃଷ୍ଟି କରୁଥିଲେ । ଗତ ଛଅବର୍ଷ ହେଲା କୁମାର ନବାବବକ୍ତଙ୍କ ପଡିଆରେ, ସର୍ଜେଣ୍ଟ ଫ୍ଲେମିଙ୍ଗ (Sergeant Fleming)ଙ୍କର ପୁତ୍ର ଘୋଡାଚଢା ଅଭ୍ୟାସ କରୁଥିଲା । କିନ୍ତୁ ୧୮୫୭ ମସିହା ଏପ୍ରିଲମାସ ଆରମ୍ଭରେ ସେହି ବାଳକ ଯେତେବେଳେ ବାଜିର ମେହେବୁବ ଅଲିଙ୍କ ଘରକୁ ଯାଇଥିଲା ନବାବ ବକ୍ତ ତାଙ୍କ ମୁହଁରେ ଛେପ ପକାଇ ତାଙ୍କୁ ତଡିଦେଇଥିଲେ । ସେ ସମୟରେ ସେଠାରେ ରହୁଥିବା ମିସେସ ଆଲ୍ଡୱେଲ (Mrs Aldwell) ପରେ ତାଙ୍କର ବୟାନରେ କହିଥିଲେ ଯେ ପ୍ରତି ମୁସଲମାନ ମା ମାନେ ତାଙ୍କ ପିଲାମାନଙ୍କୁ ବ୍ରିଟିଶ୍‌ମାନଙ୍କୁ ସମୂଳେ ଧ୍ୱଂସ କରିବା ପାଇଁ କହୁଥିବା କଥା ସେ

ନିଜେ ବହୁଥର ଶୁଣିଥିଲେ । ବାଦଶାହାଙ୍କର ଦିଲ୍ଲୀରେ ବିଚାରବେଳେ ତାଙ୍କର ପ୍ରାଇଭେଟ ସେକ୍ରେଟାରୀ(Private Secretary) ତାଙ୍କର ବୟାନରେ କହିଛନ୍ତି:-

"Sitting at the doors of the royal palace, Mogul and others within the palace used to discuss the revolution openly. The Sepoys would rebel soon; the army of Delhi would rise against the English; and then, all people, along with the army, would throw off the Feringi yoke and enjoy Swaraj- such definite opinions were current. All people were inspired with the hope that, when once Raj was won, all powers and all authorities would remain in their hands."

("ରାଜ ପ୍ରାସାଦର ଦରବାଜାରେ ବସି ପ୍ରାସାଦରେ ଥିବା ମୋଗଲ ଓ ଅନ୍ୟମାନେ ବିଦ୍ରୋହ ବିଷୟରେ ଖୋଲାଖୋଲି ଆଲୋଚନା କରୁଥିଲେ । ସିପାହୀମାନେ ଶୀଘ୍ର ବିଦ୍ରୋହ କରିବେ । ସୈନ୍ୟମାନଙ୍କ ସହିତ ସମସ୍ତ ଜନତା ଇଂରାଜରାଜକୁ ହଟାଇ ସ୍ୱରାଜ୍ୟ ଉପଭୋଗ କରିବେ— ଏହି ପ୍ରକାର ନିର୍ଦ୍ଦିଷ୍ଟ ମତାମତ ପ୍ରକାଶ ପାଉଥିଲା । ସମସ୍ତ ଜନତା, ଦିନେହେଲେ ନିଜ ରାଜ୍ୟ ଫେରିପାଇବେ ଓ ସମସ୍ତ ଶାସନ ଓ କ୍ଷମତା ସେମାନଙ୍କ ହାତରେ ରହିବ, ଏହି ଆଶାରେ ଉତ୍ତେଜିତ ରହିଥିଲେ ।")

ଅବଧର ରାଜଧାନୀ ଲକ୍ଷ୍ନୌ ପରିଶେଷରେ ଡେଲହାଉସୀଙ୍କନୀତିର ଶୀକାର ହୋଇ ଇଂରାଜିମାନଙ୍କ ହାତରେ ପଡିଥିଲା । ଲକ୍ଷ୍ନୌର ନବାବ ଓ ତାଙ୍କର ବାଜିର କଲିକତାରେ ରହୁଥିଲେ । ବାହାରେ ଲକ୍ଷ୍ନୌର 'ବାଜିର ଅଲି ନକି ଖାଁ' ବିଳାସ ବ୍ୟସନରେ ଦିନ କାଟିବା ପରି ଜଣାପଡୁଥିଲେ ମଧ, ଭିତରେ ଭିତରେ କଲିକତାରେ ରହି ସେ ଭୀଷଣ ଷଡଯନ୍ତ୍ର ରଚନା କରୁଥିଲେ । ବଙ୍ଗଳା ବାହିନୀର ସୈନ୍ୟମାନଙ୍କୁ ଉପଯୁକ୍ତ ସମୟରେ ଜବାବ୍ ଦେବାପାଇଁ ସେ ଉସ୍କାଉଥିଲେ । ତାଙ୍କର ଦୂତମାନେ, ଫକୀର ଓ ସୈନ୍ୟାସୀର ଛଦ୍ମ ବେଶରେ ବୁଲି ବୁଲି ବିଦ୍ରୋହର ବାର୍ତ୍ତା ପ୍ରଚାର କରୁଥିଲେ । ସେ ଦେଶୀ ଅଫିସର ମାନଙ୍କ ସହିତ ପତ୍ରଦ୍ୱାରା ସମ୍ପର୍କ ସ୍ଥାପନ କରି, ସେମାନଙ୍କୁ ସ୍ୱରାଜ୍ୟ ବିଷୟରେ ବୁଝାଉଥିଲେ । ବ୍ୟାରାକ୍‌ପୁରର ସିପାହୀମାନଙ୍କ ଠାରୁ ଜବତ୍ ହୋଇଥିବା ଚିଠିରୁ ଏହା ଜଣାପଡେ । ଏହି ଚିଠିଗୁଡିକ Kaye ତାଙ୍କର Indian Mutiry ନାମକ ଗ୍ରନ୍ଥ Vol-1 ରେ ପ୍ରକାଶ କରିଛନ୍ତି:-

"The second grenadier said that the whole regiment is ready to join the Nabob of Oudh."

Subadar said that they would join Nabob of Oudh."

Subadar Madar Khan, sirdar Khan and RamSahi Lal said,""that in treachery no one could come up to the level of "Beti-choot" Feringis. Though the Nabob of Oudh gave up his kingdom. he could not even get a pension."

(''ଦ୍ୱିତୀୟ ଗ୍ରିନେଡ଼ିଅର କହିଲା ଯେ ସମସ୍ତ ରେଜିମେଣ୍ଟ ଅବଧର ନବାବଙ୍କ ସହିତ ଯୋଗଦାନ କରିବାପାଇଁ ପ୍ରସ୍ତୁତ ରହିଛନ୍ତି । ସୁବାଦାର ମଦର ଖାଁ, ସର୍ଦ୍ଦାର ଖାଁ ଏବଂ ରାମଶାହୀ ଲାଲ କହିଲେ, ''ବିଶ୍ୱାସଘାତକତାରେ କେହିହେଲେ 'ବେଟୀଚୋଦ୍ ଫିରିଙ୍ଗି'ଙ୍କ ସହିତ ସମାନ ହୋଇପାରିବ ନାହିଁ । ଅବଧର ନବାବ ନିଜର ରାଜ୍ୟ ଛାଡ଼ିଦେଲେ ମଧ ତାଙ୍କୁ ପେନ୍‌ସନ୍ ଦିଆହୋଇପାରିଲା ନାହିଁ ।'')

ନାନା ସାହେବଙ୍କ ଆଦେଶରେ ବହୁ ଫକୀର, ସନ୍ୟାସୀ ଓ ପଣ୍ଡିତ ଏବଂ ଛଦ୍ମ ବେଶରେ ଅନ୍ୟାନ୍ୟ ଯୋଗ୍ୟ ବ୍ୟକ୍ତିମାନେ ହାତୀରେ ବସି ରକ୍ଷୀମାନଙ୍କ ସହିତ ବିଭିନ୍ନ ଛାଉଣୀକୁ ଯିବାକୁ ଲାଗିଲେ । ଏହି ଫକୀର, ସନ୍ୟାସୀ ଓ ପଣ୍ଡିତ ମାନଙ୍କୁ କମ୍ପାନୀ ସରକାରଙ୍କର ସନ୍ଦେହ କରିବାରେ କିଛି ନ ଥିଲା । ଏଣୁ ସେମାନେ ନିରଙ୍କୁଶ ଭାବରେ ଭାରତର ଏକ ପ୍ରାନ୍ତରୁ ଅନ୍ୟପ୍ରାନ୍ତ, ବିଭିନ୍ନ ଛାଉଣୀରେ, ସିପାହୀ ମାନଙ୍କ ମଧରେ ସ୍ୱଧର୍ମ ଓ ସ୍ୱରାଜ୍ୟର ବାର୍ତ୍ତା ପ୍ରଚାର କରିବାକୁ ଲାଗିଲେ । ଏହା ସହିତ ସ୍ୱେଚ୍ଛାସେବକ ମାନେ ମଧ, ଭିକାରୀ ବେଶରେ ଘରଘର ବୁଲି ବିଦ୍ରୋହର ବାର୍ତ୍ତା ପ୍ରଚାର କରିବାକୁ ଲାଗିଲେ । ଏହାର ପ୍ରଭାବରେ ଇଂରାଜିମାନଙ୍କ ଦ୍ୱାରା ନିଯୁକ୍ତ ଦେଶୀ ଭୃତ୍ୟ ମାନେ ବିଭିନ୍ନ ପ୍ରକାରେ ପ୍ରତିକ୍ରିୟା ପ୍ରକାଶ କରିବାକୁ ଲାଗିଲେ । ଫଳରେ ଇଂରାଜି ମାନେ, ବ୍ୟକ୍ତିଗତ ଜୀବନ ନିର୍ବାହରେ ସେମାନଙ୍କ ଠାରୁ ଘୃଣା ପୂର୍ଣ୍ଣ ସେବା ପାଇଲେ । ସିପାହୀମାନେ ଅତ୍ୟନ୍ତ ଧର୍ମପ୍ରାଣ ଥିବାରୁ ମୌଲବୀ, ପଣ୍ଡିତ ଓ ସୈନ୍ୟାସୀ ମାନେ ଛାଉଣୀକୁ ଯିବାରେ ଇଂରାଜୀମାନେ ଆପତ୍ତି କରିନଥିଲେ । କିନ୍ତୁ ମିରଟ୍‌ର ଏକ ଛାଉଣୀରେ, ଜଣେ ସୈନ୍ୟାସୀଙ୍କୁ ଛାଉଣୀ ଛାଡିବାକୁ କୁହାଯିବାରୁ, ସେ ମଧ କୌଣସି ପ୍ରତିକ୍ରିୟା ପ୍ରକାଶ ନ କରି ନିକଟସ୍ଥ ଗ୍ରାମକୁ ଯାଇ, ବିଦ୍ରୋହ ସଂଗଠନ କରିବାକୁ ଲାଗିଲେ । ଏହିପରି ଭାବରେ ସାଂଗଠନିକ କାର୍ଯ୍ୟକ୍ରମ ଜୋର୍ ସୋର୍‌ରେ ଚାଲୁ ରହିଲେ ମଧ ବାହାରକୁ ସବୁ କିଛି ଶାନ୍ତ ଓ ସ୍ୱାଭାବିକ ଜଣାପଡୁଥିଲା । ଢଗ, ଢମାଳୀ, ଶାୟରୀ, ଗଜଲ ଓ ବିଭିନ୍ନ ପ୍ରକାର ଦେଶୀଗୀତ, ନାଟକ, ତାମସା, ଆଦି ମାଧମରେ ଲୋକମାନଙ୍କ ମଧରେ ସ୍ୱଧର୍ମ ଓ 'ସ୍ୱରାଜ୍ୟ'

ଲାଭପାଇଁ ଇଚ୍ଛା ଶକ୍ତି ଜାଗ୍ରତ କରାଯାଉଥିଲା । ଲୋକମାନଙ୍କମଧ୍ୟରେ ସ୍ୱଦେଶର ଅତୀତର ବୀରତ୍ୱ ଓ ପରମ୍ପରାର ଓ ସଂସ୍କୃତିର ପ୍ରଚାର କରାଗଲା । ପଲାସୀ ଯୁଦ୍ଧର ଶହେ ବର୍ଷ ପରେ ଅର୍ଥାତ୍ ୧୮୫୭ ରେ 'ସ୍ୱରାଜ୍ୟ' ଆସିବ ବୋଲି ଭବିଷ୍ୟତ ବାଣୀମାନ ମଧ୍ୟ ପ୍ରଚାର ହେଲା । 'ମାଲେସନ୍'(Malleson) ତାଙ୍କର ଇତିହାସ ଗ୍ରନ୍ଥର ପଞ୍ଚମ ଖଣ୍ଡରେ କହିଛନ୍ତି:-

Of this conspiray, the Moulvi was undoubtedly a leader. It had its rampifications all over India- certalnly at Agra where the Moulive stayed sometime- and almost certainly at Delhi, at Meerut, at Patna, and at Calcutta where the ex-king of Oudh and a large following were residing,"

(''ଏହି ଷଡ଼ଯନ୍ତ୍ରରେ ମୌଲବୀ ନିଃସନ୍ଦେହ ଭାବରେ ଜଣେ ନେତା ଥିଲେ । ଏହାର ଶାଖା ପ୍ରଶାଖା ସାରାଭାରତରେ ବିସ୍ତାର ଲାଭ କରିଥିଲା– ନିଶ୍ଚିତ ଭାବରେ ମୌଲବୀ ସାମୟିକ ଭାବରେ ରହୁଥିବା ଆଗ୍ରାରେ ଥିଲା, ଦିଲ୍ଲୀ, ମିରଟ୍, ପାଟନାରେ ଥିଲା ଓ ଅବଧର ପୂର୍ବତନ ନବାବ ରହୁଥିବା ଓ ତାଙ୍କର ବହୁ ସଂଖ୍ୟକ ଅନୁଗାମୀମାନେ ରହୁଥିବା କଲିକତାରେ ଥିଲା ।'')

ଦୁଇ ମାସ ମଧ୍ୟର ବ୍ୟାରକପୁରରୁ 'ଅବଧର ନବାବ'ଙ୍କ ନାମରେ 'ପଞ୍ଜାବ', 'ମହାରାଷ୍ଟ୍ର', 'ମିରଟ୍' ଆଦି ରେଜିମେଣ୍ଟକୁ ଚିଠିମାନ ପଠାଗଲା । ବହୁ ସଂଖ୍ୟାରେ ଚିଠି ଦେଖି ଇଂରାଜୀମାନେ ସନ୍ଦେହ କରିବାକୁ ଲାଗିଲେ । 'ସାର୍ ଜନ ଲରେନ୍ସ' ଏ ଚିଠି ସମ୍ବନ୍ଧରେ ଅନୁସନ୍ଧାନ କଲେ ମଧ୍ୟ ନେତାମାନଙ୍କୁ ଠାବ କରିପାରିଲେ ନାହିଁ । 'କାଳିନଦୀ ଯୁଦ୍ଧ'ରେ ଆହତ ହୋଇଥିବା ଏକ ଦେଶୀ ସୈନ୍ୟକୁ ଜେରା କରାଯିବାରୁ ସେ କହିଲେ ଯେ, ଆମେ ଦେଶୀ ସିପାହୀ ମାନେ ଏକାଠି ହୋଇଗଲେ ଗୋରାମାନଙ୍କର ସଂଖ୍ୟା ସମୁଦ୍ରରେ ବିନ୍ଦୁଏ ଜଳ ପରି ହେବ । ସିପାହୀମାନଙ୍କ ମଧ୍ୟରେ ରାତ୍ରିରେ ଗୁପ୍ତ ବୈଠକ ଚାଲୁଥିଲା । ସାଧାରଣତଃ ଗୁପ୍ତ ବୈଠକରେ ସମସ୍ତ ଗୁପ୍ତ ଯୋଜନା ବିଷୟରେ ନିର୍ଦ୍ଦେଶ ଦିଆଯାଉଥିଲା ଓ ତାହା ତତ୍କ୍ଷଣାତ ସମସ୍ତଙ୍କ ଦ୍ୱାରାଗୃହୀତ ହେଉଥିଲା । ସିପାହୀ ମାନେ ଗୁପ୍ତ ବୈଠକରେ ଯୋଗଦେବାକୁ ଆସୁଥିବାବେଳେ ସେମାନଙ୍କର ପରିଚୟ ଗୁପ୍ତ ରଖିବା ପାଇଁ ସେମାନେ ଆଖିକୁ ଛାଡି ମୁହଁର ସମସ୍ତ ଅଂଶ ଆବୃତ କରୁଥିଲେ । ଉତ୍ସବ ସମୟରେ ବିଭିନ୍ନ ରେଜିମେଣ୍ଟ ପରସ୍ପରକୁ ନିମନ୍ତ୍ରଣ କରି ଗୁପ୍ତ ବୁଝାମଣା ରଖୁଥିଲେ । ସୁବେଦାରଙ୍କ ଘରେ, ବଚ୍ଛା

ହୋଇଥିବା ସିପାହୀ ମାନଙ୍କୁ ନେଇ ଗୁପ୍ତ ମନ୍ତ୍ରଣା ଚାଲୁଥିଲା । ବ୍ରିଟିଶ୍ ମାନଙ୍କର ପ୍ରତାରଣା ଓ ଅତ୍ୟାଚାର ବିଷୟ ପ୍ରତି ସିପାହୀମାନେ ଅବଗତ ଥିଲେ ମଧ୍ୟ, ସେମାନଙ୍କୁ ବିଶେଷ ସଚେତନ କରାଗଲା । ଗୁପ୍ତ ବୈଠକମାନଙ୍କରେ ସମସ୍ତେ ତୁଳସୀ ଓ କୋରାନ ଛୁଇଁ, ବଞ୍ଚିଥିବା ପର୍ଯ୍ୟନ୍ତ 'ସ୍ୱଧର୍ମ' ଓ 'ସ୍ୱରାଜ୍ୟ' ପାଇଁ ସଂଗ୍ରାମ କରିବେ ବୋଲି ପ୍ରତିଜ୍ଞା କରୁଥିଲେ । ଏହିପରି ପ୍ରତି ରେଜିମେଣ୍ଟରେ ସଂଗଠକ ମାନେ, ପ୍ରତି ସିପାହୀକୁ ପ୍ରତିଜ୍ଞା କରାଉଥିଲେ । 'ଉଇଲ୍‌ସନ' ତାଙ୍କ ସରକାରୀ ରିପୋର୍ଟରେ, 'Defnce of Lucknow' ପୁସ୍ତକରେ ଏହି ଗୁପ୍ତ ସଂଗଠନ ବିଷୟରେ ବର୍ଣ୍ଣନା କରି ଲେଖିଥିଲେ ଯେ, ମେ ଏକତିରିଶ ତାରିଖ ଦିନ ସମସ୍ତ ରେଜିମେଣ୍ଟ ମିଳିତ ଭାବେ ବିଦ୍ରୋହ କରିବେ ବୋଲି ଯୋଜନା ଥିଲା । ପ୍ରତି ରେଜିମେଣ୍ଟରେ ଏକ ଏକ କମିଟି ଥିଲା । ଏହି କମିଟି ବିଦ୍ରୋହ ସଂକ୍ରାନ୍ତ ସମସ୍ତ କାର୍ଯ୍ୟ ପରିଚାଳନା କରୁଥିଲା । କାର୍ଯ୍ୟ ପରିଚାଳନା ବିଷୟରେ ସେମାନଙ୍କର ଅନ୍ୟ ରେଜିମେଣ୍ଟ ସହିତ ବୁଝାମଣା ଥିଲା । ପ୍ରତି କମିଟିରେ ତିନିଜଣ ସଭ୍ୟ ଥିଲେ । ସମସ୍ତ ଯୋଜନା ସମ୍ବନ୍ଧରେ ଏହି କମିଟି ବିଚାର କରୁଥିଲା । ମେ ଏକତିରିଶ ତାରିଖ ରବିବାର ଥିବାରୁ ବିଦ୍ରୋହୀ ମାନଙ୍କର ଯୋଜନା ଥିଲା ଯେ ସମସ୍ତେ ଚର୍ଚ୍ଚକୁ ଯିବା ସମୟରେ ହିଁ ସମସ୍ତ ଇଂରାଜି ଅଫିସରମାନଙ୍କୁ ଏକ ସଙ୍ଗରେ ହତ୍ୟା କରାଯିବ, ଓ ଏହାପରେ ପରେ ମାଲଖାନା, ଖଜଣାଖାନା, ଆଦି ଲୁଟ୍ କରାଯାଇ, ପରେ ରବିଫସଲ ସବୁ ଲୁଟ କରାଯିବ । ସମସ୍ତ ବନ୍ଦୀଶାଳା ଭାଙ୍ଗିଦେଇ ବନ୍ଦୀମାନଙ୍କୁ ମୁକ୍ତ କରାଯିବ । ଉତ୍ତର ପଶ୍ଚିମ ରାଜ୍ୟ ଗୁଡିକରେ, ବନ୍ଦୀମାନଙ୍କ ମଧ୍ୟରୁ ପଚିଶି ହଜାର ଲୋକଙ୍କୁ ନେଇ ଏକ ସୈନ୍ୟବାହିନୀ ଗଢାଯିବ । ଏଥିପାଇଁ ଲକ୍ଷ୍ନୌର ସାହୁକାର ମାନେ, ନାନାସାହେବ ନଦ୍ଧି ଖାଁ ଓ ଦିଲ୍ଲୀର ବାଦଶା ସମସ୍ତ ପ୍ରକାର ସାହାଯ୍ୟ ଓ ସହଯୋଗ କରୁଥିଲେ । କୌଣସି ଏକ ରେଜିମେଣ୍ଟରେ ଗୁପ୍ତ ରହସ୍ୟ ଏକ ବିଶ୍ୱାସଘାତକ ଦ୍ୱାରା ଜଣାପଡିବାରୁ ବିନା ବିଚାରରେ ଉକ୍ତ ରେଜିମେଣ୍ଟକୁ ଭାଙ୍ଗି ଦିଆଯାଇଥିଲା । ଦରବାରୀ, ସାଧାରଣ ଲୋକ ଓ ସିପାହୀ ମାନେ ଏହି ସଂଗଠନରେ ବିଶେଷ ଭାବରେ ଜଡିତ ଥିଲେ । ପଟେଲ, କୁଳକର୍ଣ୍ଣି ଆଦି, ପ୍ରତି ଗ୍ରାମ ଓ ସହରର ବିଶିଷ୍ଟ ନାଗରିକ ମାନେ ମଧ୍ୟ, ଏହି ସଂଗଠନରେ ଗଭୀର ଭାବେ ଜଡିତ ଥିଲେ । ଫଳରେ ସବୁ ଶ୍ରେଣୀର ହିନ୍ଦୁ ଓ ମୁସଲମାନ ଅଫିସର , ଓକିଲ ଓ କିରାଣୀ ମାନେ ମଧ୍ୟ ଏହି ସଂଗଠନ ସହିତ ଜଡିତ ହୋଇପଡିଲେ । କମ୍ପାନୀ ସରକାର, ଏତେ ବଡ ସଂଗଠନ ବିଷୟ କୌଣସି ଖବର ନ ପାଇବାର କାରଣ ହେଉଛି ଯେ, ଭାଷା ଓ ସଂସ୍କୃତିଗତ ଜ୍ଞାନ ଅଭାବରୁ ଇଂରାଜିମାନେ ଦେଶୀ ଅଫିସର ମାନଙ୍କ ଉପରେ ନିର୍ଭର କରୁଥିଲେ ଓ ସେମାନେ ସଂଗଠନ ସହିତ ଜଡିତ ଥିବାରୁ ସମସ୍ତ ବିଷୟ ସାବଧାନତା ସହକାରେ ଗୁପ୍ତ

ରଖିଥିଲେ । ଯଦି କୌଣସି ବିଦ୍ରୋହୀକୁ ଠାବ କରାଯାଉଥିଲା, ଭାରତୀୟ ଅଫିସରମାନେ ସନ୍ଦେହ ଭାଜନ ନହେବା ପାଇଁ ଇଂରାଜିଙ୍କ ସାମନାରେ ତାହାକୁ କଠିନ ଦଣ୍ଡ ଦେଲେ ମଧ୍ୟ ଭିତରେ ଭିତରେ ସଂଗଠନ ସହିତ ଜଡ଼ିତ ରହୁଥିଲେ । ଇଂରାଜି ମାନଙ୍କ ବିରୁଦ୍ଧରେ ଘୋଷଣାନାମାମାନ ଲକ୍ଷ୍ନୌର ପ୍ରାଚୀରରେ ଦେଖିବାକୁ ମିଳୁଥିଲା । ଇଂରାଜିମାନେ, ଏହାକୁ ଛିଡ଼ାଇ ଦେବା ବ୍ୟତୀତ ଅନ୍ୟ କିଛି କରିବାର ଉପାୟ ନଥିଲା ଓ ପରେ ପରେ ପୁଣି ପ୍ରାଚୀର ପତ୍ର ମରାଯାଉଥିଲା । ପୁଲିସ ମଧ୍ୟ ପ୍ରାଚୀର ପତ୍ର ମାରିବା ବ୍ୟକ୍ତିକୁ ଧରିବରେ ନିଜର ଅକ୍ଷମତା ପ୍ରକାଶ କରୁଥିଲେ । ବିଦ୍ରୋହୀମାନଙ୍କ ପ୍ରତି ପୁଲିସମାନଙ୍କର ସମ୍ପୂର୍ଣ୍ଣ ସହାନୁଭୂତି ଥିଲା । ସେମାନେ ସଂଗଠନର ସଭ୍ୟ ମଧ୍ୟ ଥିଲେ । ସେମାନଙ୍କର ଯୋଜନା ଥିଲାଯେ ଚାକିରୀରେ ରହି ସେମାନେ ବିଦ୍ରୋହର ସଂଗଠନରେ ଗୁପ୍ତରେ ସାହାଯ୍ୟ କରିବେ ଓ ସ୍ୱାଧୀନ ସରକାର ପ୍ରତିଷ୍ଠିତ ହେଲେ ତାଙ୍କର ଅଧିନରେ ବର୍ତ୍ତମାନପରି କାମ କରିବେ । ବିଦ୍ରୋହର ଦିନ ପାଖେଇ ଆସିବା ସଙ୍ଗେ ସଙ୍ଗେ ଚପାତି ଓ ରକ୍ତ ପଦ୍ମ ମାଧମରେ ବିଦ୍ରୋହର ଯୋଜନା ମାନ ଗୁପ୍ତରେ ପ୍ରଚାର ହେଲା । ଏହିଠାରେ ଲକ୍ଷ୍ୟ କରିବାର କଥାଯେ, ଭାରତୀୟ ପରମ୍ପରାରେ ଯୁଦ୍ଧ ବା ବିଦ୍ରୋହ ବାର୍ତ୍ତା ଏହିପରି ଭାବରେ ପ୍ରଦାନ କରାଯାଇ ବିଦ୍ରୋହୀମାନଙ୍କ ମଧ୍ୟରେ ଐକ୍ୟ ପ୍ରଚାର କରାଯାଏ । ମାଲେସନ୍‌ଙ୍କ ମତରେ ୧୮୦୬ରେ ଉପକୂଳ ସୈନ୍ୟମାନଙ୍କର ବିଦ୍ରୋହ ପୂର୍ବରୁ ଚିନି ଏହି ପ୍ରକାରେ ବଣ୍ଟାଯାଇଥିଲା । ୧୮୦୩ ରେ ମରହଟ୍ଟାମାନେ ଉତ୍ତର ଭାରତ ଜୟ କରିବା ପୂର୍ବରୁ ଏହିପରି ଚପାତି ବଣ୍ଟନ କରାହୋଇଥିଲା । ୧୮୧୮ରେ ମଧ୍ୟ ଏହି ପରିସ୍ଥିତିରେ ନଡିଆ ବଣ୍ଟା ଯାଇଥିଲା । ସାନ୍ତାଳ ବିଦ୍ରୋହ ପୂର୍ବରୁ ଶାଳ ଗଛର ଡାଳ ଗାଁ କୁ ଗାଁ ବୁଲିଥିଲା । ଓଡିଶାରେ ବିଦ୍ରୋହ ପୂର୍ବରୁ ସାନ୍ତାଳ ପ୍ରତି ଗ୍ରାମରେ ଏକ ଲଇଧରି ବୁଲାଉଥିଲେ ଓ ଯେଉଁ ଗ୍ରାମ ଯୁଦ୍ଧରେ ଯୋଗ ଦେବ ସେହି ଗ୍ରାମର ମୁଖିଆ ଉକ୍ତ ଲଇରେ ଗୋଟାଏ ଗଣ୍ଠି ପକାଇ ଦେଉଥିଲେ । ଏହିପରି ପରିଶେଷରେ ଲଇରେ ପଡିଥିବା ଗଣ୍ଠିରୁ ସମର୍ଥକ ମାନଙ୍କର ସଂଖ୍ୟା ଜଣାଯାଉଥିଲା । ଭେଲୋରରେ ସିପାହୀ ବିଦ୍ରୋହ ପୂର୍ବରୁ ମଧ୍ୟ ଚପାତି ବଣ୍ଟନ କରାଯାଇଥିଲା । ସେହିପରି ୧୮୫୭ ବିଦ୍ରୋହରେ ରକ୍ତ ପଦ୍ମ ଓ ଚପାତିର ବଣ୍ଟନର ଆରମ୍ଭ ହେଲା ।

ଏହାର ଧାରାଥିଲା ଯେ କାନପୁରରୁ ଜଣେ ଚଉକିଦାର ଦୌଡି ଦୌଡି ଫତେଗଡର ଚୌକିଦାର ପାଖକୁ ଯାଉଥିଲା ଓ ତାକୁ ଦୁଇଟି ଚପାତି ନେଇ ଦଶଟି ଚପାତି କରି ପାଞ୍ଚଟି ଚୌକିଦାରଙ୍କୁ ଦୁଇଟି ଦୁଇଟି କରି ଚପାତି ଦେବାକୁ କହୁଥିଲା । ଏହି ପ୍ରଣାଳୀରେ ସାରା ଦେଶ ମଧ୍ୟରେ ଅଳ୍ପ ସମୟ ମଧ୍ୟରେ ସଂହତି ତଥା ବିଦ୍ରୋହର ବାର୍ତ୍ତା ପ୍ରସାରିତ ହୋଇ ପାରୁଥିଲା । ସେହିପରି ବଙ୍ଗଳାର ବାହିନୀ ମଧ୍ୟରେ ରକ୍ତ

ପଦ୍ମ ବୁଲିଥିଲା । ଏବଂ ଯେତେବେଳେ ଏହା ଶେଷ ବ୍ୟକ୍ତି ହାତରେ ପଡୁଥିଲା ସେ ତତ୍କ୍ଷଣାତ ଅଦୃଶ୍ୟ ହୋଇ ନିକଟ ତମ ରେଜିମେଣ୍ଟରେ ତାହା ପହଞ୍ଚାଉଥିଲା । ଅବଧ ରାଜ୍ୟର ମିଶ୍ରଣ ପରେ ପରେହିଁ, ଏହି ରକ୍ତ ପଦ୍ମ ବଙ୍ଗଳାର ବାହିନୀ ମଧ୍ୟରେ ବୁଲିଥିଲା । 'The Friend of India' ନାମକ ବଙ୍ଗଳାର ଶ୍ରୀରାମପୁରରୁ ବାହାରୁଥିବା ଏକ ପତ୍ରିକାରେ, ୧୮୫୭ ମାର୍ଚ୍ଚ ପାଞ୍ଚତାରିଖ ଦିନ ଏକ ରିପୋର୍ଟ ପ୍ରକାଶ ପାଇଥିଲା । ତାହାହେଲା:-

"One morning towards the end of the last month the official of Futtehgurh were in commotion. From thanna after thanna there arrived little chapatties about two inches in diameter. They were accmpanied by all kinds of reports by puzzled thanadars.—It appeared that a few evenings previous a chokeydar in Cawnpore ordered a chowkeydar in Futtehgurh to make and bake twelve chapatties— Two he was to retain. Two more were to be given to each of the five nearest chowkeydars. The order was obeyed and all nightlong there was running and baking of chapatties—— The five obeyed orders also and distributed their message to twenty-five, and so the affair went on, in geometrical ratio, the cakes sweeping over the district at a speed which no Indian post get travels.'"

(''ଗତମାସର ଶେଷ ଆଡ଼କୁ ଦିନେ ସକାଳେ ଫତେଗଡ଼ର ଅଫିସର ମାନଙ୍କ ମଧ୍ୟରେ କୋଳାହଳ ଦେଖାଗଲା । ଥାନା ପରେ ଥାନାରେ ଦୁଇଇଞ୍ଚ ବ୍ୟାସାର୍ଦ୍ଧବିଶିଷ୍ଟ ଛୋଟ ଛୋଟ ଚ଼ପାତି(ରୁଟି)ମାନ ପହଞ୍ଚିବାକୁ ଲାଗିଲା । ସେହି ଚ଼ପାତିଗୁଡ଼ିକ ସହିତ ବିବ୍ରତ ଥାନାଦାରମାନେ ବିଭିନ୍ନ ପ୍ରକାର ସମ୍ବାଦ ଦେବାକୁ ଲାଗିଲେ– ଦେଖାଗଲା ଯେ କିଛି ପୂର୍ବବର୍ତ୍ତୀ ଅପରାହ୍ନରେ କାନପୁରର ଜଣେ ଚୌକିଦାର ଫତେଗଡ଼ର ଚ଼ଉକିଦାରକୁ ବାରୋଟି ଚ଼ପାତି ତିଆରି କରିବାକୁ ଆଦେଶ ଦେଲା– ତନ୍ମଧ୍ୟରୁ ଦୁଇଟି ସେ ନିଜେ ରଖିବ ଓ ପାଞ୍ଚୋଟି ନିକଟବର୍ତ୍ତୀ ଚ଼ଉକିଦାରଙ୍କୁ ଦୁଇଟି ଲେଖାଏଁ ଦିଆଯିବ । ଏହି ଆଦେଶ ମାନି ସାରା ରାତି ଚ଼ପାତି ତିଆରି ଓ ବଣ୍ଟନରେ ବିତିଗଲା– ପାଞ୍ଚଜଣ ଆଦେଶମାନି ତାଙ୍କର ସମ୍ବାଦ ପଚ଼ିଶଜଣଙ୍କୁ ବିତରଣ କରେ । ଏହି ପ୍ରକାର ଜ୍ୟାମିତିକ ମାନରେ ଘଟଣାବଳୀ ଆଗେଇ ଚାଲିଲା । ଜିଲ୍ଲା ମଧ୍ୟରେ ଏତେ ଦୃଢ ଗତିରେ ଚ଼ପାତିଗୁଡ଼ିକ ବିତରିତ ହେଉଥିଲା ଯେ କୌଣସି ଭାରତୀୟ ଡ଼ାକସେବାଠାରୁ ତାହା ଦ୍ରୁତତର ବୋଲି ସ୍ୱୀକାର କରିବାକୁ ହେବ ।'')

ସେସମୟରେ 'Friend of India' ପତ୍ରିକା, ଏହାକୁ ଚଉକିଦାରଙ୍କର ଦରମା ବଢାଇବାପାଇଁ ଆନ୍ଦୋଳନ ବୋଲି ଭାବି ଗୁରୁତ୍ୱ ଦେଇନଥିଲା । ଏହି ସବୁ ଘଟଣାବଳୀ, ସେତେବେଳର କିଛି କର୍ତ୍ତବ୍ୟରତ ଇଂରାଜି ଅଫିସରମାନଙ୍କର ଦୃଷ୍ଟିଗୋଚର ହୋଇଥିଲା । ୧୮୫୭ ମସିହାରେ 'କ୍ୟାପ୍‌ଟେନ କିଟିଙ୍ଗ'(Captain Keating) 'ନିମାର' ଠାରେ ଗ୍ରାମକୁ ଚପାତି ବଣ୍ଟନ ହେଉଥିବା ଲକ୍ଷ୍ୟ କରିଥିଲେ । 'ଇନ୍ଦୋର' ପାଖରେ ଥିବା ତାହା ମଣ୍ଡଲେଶ୍ୱରରେ ବଣ୍ଟାହୋଇ ତିନି ସପ୍ତାହ ପରେ 'ବାଜନଗର'ରେ ପହଞ୍ଚିଥିଲା । 'ସଉଗୋର' ଓ ନର୍ମଦା ଅଞ୍ଚଳର କମିଶନର 'ମେଜର ଏର୍‌ସ୍କିନ୍' (Major Erskine) ସରକାରଙ୍କୁ ରିପୋର୍ଟ ଦେଇ ଲେଖି ଥିଲେ ଯେ, ଛୋଟ ଛୋଟ ଗହମପିଠା ରହସ୍ୟମୟ ଭାବରେ, ଏକ ଗ୍ରାମରୁ ଅନ୍ୟ ଗ୍ରାମକୁ ନିଆ ହେଉଅଛି । ମଥୁରାର କଲେକ୍ଟର ଥୋର୍ଣ୍ଣେହିଲ୍ (Thornehill), ଜାନୁୟାରୀ ମାସର ଶେଷ ଭାଗରେ ତାଙ୍କର ଟେବୁଲରେ ଏକ ଛୋଟିଆ ଚପାତି ଥିବାର ଦେଖିଲେ । 'କ୍ୟାପ୍‌ଟେନ ଲଏଡ୍' ତାଙ୍କର (Captain Lloyed) ରିପୋର୍ଟରେ ଫେବୃଆରୀ ଠାରୁ ମାର୍ଚ୍ଚ ମାସ ଆରମ୍ଭ ପର୍ଯ୍ୟନ୍ତ 'ନିମୁଚ୍' ଠାରେ (Nimuch) ଚପାତି ବଣ୍ଟନ ହେଉଥିବା ବିଷୟ ବର୍ଣ୍ଣନା କରିଥିଲେ । ତାହା ପୂର୍ବ ଓ ଦକ୍ଷିଣ ଦିଗରୁ ଆସିଥିବାର ସେ ବିଶ୍ୱାସ କରିଥିଲେ ।

ଏହିପରି ସମୟରେ 'ନାନାସାହେବ', ତାଙ୍କର ଭାଇ 'ବାଲାସାହେବ' ଓ ଉପଦେଷ୍ଟା ଆଜିମୁଲ୍ଲାଙ୍କୁ ସାଥିରେ, ବିଭିନ୍ନ କେନ୍ଦ୍ର ସହିତ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନ କରିବା ପାଇଁ ତୀର୍ଥ ଯାତ୍ରା ଆଳରେ, ଭ୍ରମଣରେ ବାହାରିଲେ । ସର୍ବ ପ୍ରଥମେ ସେମାନେ ଦିଲ୍ଲୀ ଗଲେ । ସେଠାରେ ଆଗ୍ରାର ଜଣେ ଜଜ 'ମୋରେଲ (Mr.Morel), 'ନାନାସାହେବ'ଙ୍କୁ ଦର୍ଶନ କରିବାକୁ ଆସିଥିଲେ । 'ନାନାସାହେବ' ତାଙ୍କୁ ଏପରି ବନ୍ଧୁତ୍ୱ ପୂର୍ଣ୍ଣ ଆତିଥେୟତା ପ୍ରଦାନ କଲେ ଯେ, କାହାରି ମନରେ ତାଙ୍କ ପ୍ରତି ତିଳେ ହେଲେ ସନ୍ଦେହ ରହିଲା ନାହିଁ । ଦିଲ୍ଲୀରେ ସମସ୍ତ ବ୍ୟବସ୍ଥା ପରିଦର୍ଶନ କରି 'ନାନାସାହେବ' 'ଅମ୍ବାଲା'କୁ ଗଲେ । ଏପ୍ରିଲ ଅଠର ତାରିଖରେ ସେ 'ଲକ୍ଷ୍ନୌ'ରେ ପହଞ୍ଚିଲେ । ସେହିଦିନହିଁ ଲକ୍ଷ୍ନୌର ଚିଫ କମିଶନର ସାର୍ ହେନେରୀ ଲରେନ୍ସ (Sir henerry Lawrence)ଙ୍କ ବଗି କୁ ଅନୁସରଣ କରି ଲୋକମାନେ ତାହା ଉପରକୁ କାଦୁଅ ଓ ଢେଲା ମାଡ କରିଥିଲେ । 'ନାନାସାହେବ' ସ୍ୱତଃ ପ୍ରବୃତ୍ତ ଭାବରେ, ଲରେନ୍ସଙ୍କୁ ଦେଖା କଲେ । 'ନାନାସାହେବ' ଲକ୍ଷ୍ନୌ ଆସିବା ଶୁଣି, ଜନତାଙ୍କ ମନରେ ଗଭୀର ଉତ୍ସାହ ଓ ଆନନ୍ଦ ଖେଳିଗଲା । 'ନାନାସାହେବ' ଏକ ବିରାଟ ପଟୁଆରରେ

ଲକ୍ଷ୍ନୌର ମୁଖ୍ୟ ମୁଖ୍ୟ ମାର୍ଗ ନେଇ 'ଲରେନ୍ସ'ଙ୍କ ନିକଟରେ ପହଞ୍ଚିଲେ । ସେ କିଛି ଦିନ ପାଇଁ ଲକ୍ଷ୍ନୌ ଭ୍ରମଣରେ ଆସିଥିବା କଥା ଲରେନ୍ସଙ୍କୁ ଜଣାଇଲେ । ଲକ୍ଷ୍ନୌରୁ ନାନାସାହେବ 'କାଲ୍ପୀ'କୁ ଗଲେ । ଏହି ସମୟରେ ତାଙ୍କର 'ଜଗଦୀଶପୁର'ର କୁନ୍‌ୱାର ସିଂହଙ୍କ ସହିତ କୁଟନୈତିକ ସମ୍ପର୍କ ସ୍ଥାପିତ ହୋଇଥିଲା । 'ରସେଲ୍' ତାଙ୍କର ଡାଏରୀରେ କହିଛନ୍ତି:-

"Afterwards the worthy couple (Nana and Azim), on the pretence of a piligrimage to the hills, visited the military stations all along the main trunkroad and went so far as Umballa."

("ପରେ ଏହି ସୁଯୋଗ୍ୟ ଯୋଡ଼ି (ନାନା ଓଅଜିମ୍) ପର୍ବତକୁ ତୀର୍ଥଯାତ୍ରା ଆଳରେ, ମୁଖ୍ୟ ସଡ଼କ ଦେଇ ପ୍ରତି ସାମରିକ ଛାଉଣୀ ପରିଦର୍ଶନ କଲେ ଓ ଅମ୍ବାଲା ପର୍ଯ୍ୟନ୍ତ ଗଲେ ।")

ଏହିପରି ଭାବରେ ରାଜନ୍ୟବର୍ଗ ପ୍ରଜା ଓ ସିପାହୀ ମାନଙ୍କର ବହୁଦିନର ପୁଞ୍ଜିଭୂତ ଅସନ୍ତୋଷ ଏକତ୍ର ସଂଗଠିତ ହେବଫଳରେ ଭରେତବର୍ଷ ଏକ ପ୍ରଳୟଗର୍ଭା ଆଗ୍ନେୟଗିରିର ରୂପ ନେଲା ।

## ଅଗ୍ନ୍ୟୁତ୍ପାତ

ପୂର୍ବ ଅଧ୍ୟାୟରେ ବର୍ଣ୍ଣନା କରାଯାଇଛି ଯେ ୩୪ତମ ବାହିନୀକୁ ଭାଙ୍ଗିଦିଆଯିବା ଫଳରେ, ସେଥିର ସୁବେଦାରମେଜର 'ଗୋବିନ୍ଦପାଣ୍ଡେ' ଦଣ୍ଡିତ ଓ ଅପମାନିତ ହୋଇ ଆଉ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରି ନଥିଲେ । ସେ ଇଂରାଜୀ ସରକାରଙ୍କ ବିରୁଦ୍ଧରେସଂକଳ୍ପବଦ୍ଧ ହୋଇ ବ୍ରାହ୍ମଣପଣ୍ଡିତ ବେଶରେ ଛାଉଣୀରୁ ଛାଉଣୀକୁ ଯାଇ ଧର୍ମଉପଦେଶ ଦେବା ନାମରେ ବିଦ୍ରୋହର ବାର୍ତ୍ତା ପ୍ରଚାର କରୁଥିଲେ । ସେ ଏ ମଧ୍ୟରେ 'ଦିଲ୍ଲୀ', 'ମିରଟ', 'ଆଗ୍ରା', 'ଅମ୍ବାଲା', ଓ 'ସାହାରନପୁର' ଆଦି ଛାଉଣୀରେ ବୁଲି ବୁଲି 'ବ୍ୟାରକ୍‌ପୁର'ରେ ଆସି ପହଞ୍ଚିଲେ । ପ୍ରତି ଛାଉଣୀରେ ତାଙ୍କର ବହୁ ପୁରାତନ ବନ୍ଧୁ ଥିବାରୁ, ସବୁ ସ୍ଥାନରେ ସେ ଭବ୍ୟ ଅଭ୍ୟର୍ଥନା ପାଇ, ଗୀତା, ରାମାୟଣ, ମହାଭାରତ ଆଦି ବହୁଶାସ୍ତ୍ର ପୁରାଣ ବ୍ୟାଖ୍ୟାକରି ସିପାହୀମାନଙ୍କ ମଧ୍ୟରେ ସ୍ୱଧର୍ମ ଓ ସ୍ୱରାଜ୍ୟର ଭାବ ଜାଗ୍ରତ କରୁଥିଲେ । 'ବ୍ୟାରକ୍‌ପୁର'ରେ ପହଞ୍ଚି ତାଙ୍କର 'ମଙ୍ଗଳପାଣ୍ଡେ'ଙ୍କ ସହିତ ବନ୍ଧୁତା ହେଲା ଓ ଉକ୍ତ ଛାଉଣୀରେ ତାଙ୍କ ସହାୟତାରେ ସେ ଶାସ୍ତ୍ରପୁରାଣାଦି ବଚନରେ ସିପାହୀମାନଙ୍କ

ମଧ୍ୟରେ ସ୍ୱଦେଶ ଓ ସ୍ୱରାଜ୍ୟ ପ୍ରୀତି ଓ ତନ୍ନିମିତ୍ତ ଆତ୍ମୋତ୍ସର୍ଗଭାବର ସୃଷ୍ଟି କରିବାକୁ ଲାଗିଲେ ।

୧୮୨୪ ମସିହାରେ 'ବ୍ୟାରକ୍‌ପୁର'ରେ ଯେଉଁ ନୃଶଂସ ହତ୍ୟାକାଣ୍ଡ ହୋଇଥିଲା, ସେଥିରୁ ବର୍ତ୍ତି ଯାଇଥିବା ଲୋକ ମାନେ ଗାଁକୁ ଗାଁ ଓ ଦୁଆର ଦୁଆର ବୁଲି ବୁଲି ଇଂରାଜିମାନଙ୍କ ପ୍ରତି ଘୃଣା ଓ ବିଦ୍ୱେଷର ପ୍ରଚାର କରୁଥିଲେ ।

'ବ୍ୟାରାକ୍‌ପୁର'ରେ ବର୍ତ୍ତମାନ ସେହି ୩୪ତମ ବାହିନୀ ଅବସ୍ଥାପିତ ହୋଇଥିଲା ଓ 'ମଙ୍ଗଳ ପାଣ୍ଡେ' ମଧ୍ୟ ତନ୍ମଧ୍ୟରେ ଥିଲେ । ଉକ୍ତ ବାହିନୀର ସିପାହୀମାନଙ୍କ ମନରେ ୧୮୨୪ର ଘଟଣାବଳୀ ଗଭୀର ରେଖାପାତ କରିଥିଲା । ଉକ୍ତ ବାହିନୀର ସିପାହୀମାନେ ଯୁଦ୍ଧ କ୍ଷେତ୍ରରେ ଇଂରାଜିମାନଙ୍କ ପାଇଁ ବହୁ ନିଷ୍ଠା ଓ ତ୍ୟାଗ କରିଥିଲେ । ଏମାନଙ୍କୁ ସ୍ୱଳ୍ପ ବେତନ ଦିଆଗଲେ ମଧ୍ୟ, ଏହି ସିପାହୀମାନେ ପ୍ରାୟ ସମସ୍ତେ ଉଚ୍ଚବଂଶଜ ଓ କୁଳୀନ ଥିଲେ । ଯୁଦ୍ଧ କ୍ଷେତ୍ରରେ ଖାଦ୍ୟାଭାବ ପଡିଲେ ଏମାନେ ପେଜ ପିଇ ଇଂରାଜି ମାନଙ୍କୁ ଭାତ ଖାଇବାକୁ ଦେଉଥିଲେ । ଏତେ ତ୍ୟାଗ ସତ୍ତ୍ୱେ, କେବଳ ଆର୍ଥିକ ଅସ୍ୱଚ୍ଛଳତା ହେତୁ, ଦରମା ବଢାଇବାକୁ ପ୍ରତିବାଦ କରିବାରେ, ସେମାନଙ୍କୁ ନିର୍ମମ ଭାବରେ ଗୁଳି କରାହୋଇଥିଲା । ଏହାର ଗଭୀର ପ୍ରତିକ୍ରିୟା ଅବସ୍ଥାପିତ ୩୪ତମ ବାହିନୀର ସିପାହୀମାନଙ୍କ ମଧ୍ୟରେ ପଡିଥିଲା । 'ଗୋବିନ୍ଦପାଣ୍ଡେ'ଙ୍କର ଅବସ୍ଥାନ ଫଳରେ ତାହା ଉଦ୍ଦୀପିତ ହେବାକୁ ଲାଗିଲା ଓ 'ବାଜିଦ୍ ଅଲି' ଓ 'ନଦ୍ଦୀ ଖାଁ'ଙ୍କର କଲିକତାରେ ଅବସ୍ଥାନ ହେତୁ, ତାହା 'ରକ୍ତ ପଦ୍ମ' ଓ 'ଚପାଟି' ମାଧ୍ୟମରେ ସଂଗଠିତ ହେବାକୁ ଲାଗିଲା । ସେଠାରେ ଅବସ୍ଥାପିତ ୧୯ତମ ବାହିନୀ ସହିତ ମଧ୍ୟ, ଏମାନଙ୍କର ଗୁପ୍ତ ଯୋଗାଯୋଗ ଓ ବୁଝାମଣା ପ୍ରତିଷ୍ଠିତ ହୋଇଥିଲା ।

ଏହି ସମୟରେ ଏକ ନୂତନ ଧରଣର ପ୍ରସ୍ତୁତ ଏନ୍‌ଫିଲ୍ଡ (Enfield) ରାଇଫଲ ବ୍ୟବହାର କରିବାର ଯୋଜନା ହେଲା । କାରଣ ପୂର୍ବରୁ କ୍ରିମିଆ ଯୁଦ୍ଧରେ ଉକ୍ତ ଅସ୍ତ୍ର ଖୁବ୍ ଉପଯୋଗୀ ହୋଇଥିଲା ।

ଏଣୁ, ଏହି ରାଇଫଲ ଭାରତୀୟ ସିପାହୀମାନଙ୍କ ମଧ୍ୟରେ ପ୍ରଚଳନ କରାଯିବାକୁ ସ୍ଥିର ହେଲା । ଏଥିରେ ବ୍ୟବହୃତ ଗୁଳିଗୁଡିକରେ ବିଭିନ୍ନ ପ୍ରକାର ଚର୍ବିର ମିଶ୍ରଣ ଥିଲା । ମିଲିଟାରୀ ବୋର୍ଡର ସେକ୍ରେଟାରୀ (The secretary of the Militirary Board) ଏହି ଗୁଳି ଗୁଡିକ ପରୀକ୍ଷା କରିବା ପାଇଁ ଆଦେଶ ଦେଲେ । ଏହି ଆଦେଶ

ବଳରେ ୧୮୫୪ ମସିହାରେ ଛତିଶ ପ୍ୟାକେଟ ଗୁଳି ଆସି ଭାରତରେ ପହଞ୍ଚିଲା । ଏହାର ପରୀକ୍ଷା ସନ୍ତୋଷ ଜନକ ହେବାରୁ ୧୮୫୬ ମସିହାରେ ଏନ୍‌ଫିଲଡ ରାଇଫଲ ସହିତ ଏହି ଗୁଳି ଗୁଡିକର ପ୍ରଚଳନ ଭାରତୀୟ ସିପାହୀ ମାନଙ୍କ ମଧ୍ୟରେ କରାଗଲା । ଏଥିପାଇଁ କଲିକତାର 'ଦମ୍ ଦମ୍', 'ସିଆଲକୋଟ', 'ଅମ୍ବାଲା' ଓ 'ପଞ୍ଜାବ'ରେ ଏହାର ବ୍ୟବହାର ଓ ଶିକ୍ଷା ପାଇଁ ତାଲିମ କେନ୍ଦ୍ର ମାନ ଖୋଲାଗଲା । 'ଦମ୍ ଦମ୍'ର ଟ୍ରେନିଂ ସ୍କୁଲ ପାଇଁ, ଗୁଳିଗୁଡିକ କଲିକତାର 'ଫୋର୍ଟଉଇଲିୟମ୍'ରେ ପ୍ରସ୍ତୁତ କରାଯାଉଥିଲା । ଏହି ଗୁଳିରେ ଘୁଷୁରୀ ଓ ଗାଈର ଚର୍ବି ବ୍ୟବହାର ହେଉଥିଲା ବୋଲି ସନ୍ଦେହ କରାଯାଉଥିଲା । ଶସ୍ତ୍ର କାରଖାନା (Ordance and Magazine)ର ଇନ୍‌ସପେକ୍ଟର ଜେନେରାଲ (Inspector General) 'କର୍ଣ୍ଣେଲ ଆବଟ୍' (Cornel Abbot) ଜାନୁଆରୀ ଅଣତିରିଶ ତାରିଖ ଦିନ ସରକାରଙ୍କୁ ଲେଖିଥିଲେ:-

No extraordinary precaution appears to have been taken to insure the absence of any. objectionable fat."(Parliamentary papers 1857-58)

(କୌଣସି ଆପତ୍ତିଜନକ ଚର୍ବି ବ୍ୟବହାର ନ କରିବା ପାଇଁ କୌଣସି ଅତିରିକ୍ତ ସାବଧାନତା ରକ୍ଷା କରା ହୋଇନଥିଲା ।")

ଦମ୍ ଦମ୍‌ରେ ଏହିପରି ସମୟରେ ଏକ ଘଟଣା ଘଟିଲା । ପ୍ରଶିକ୍ଷଣ ପାଇଁ ବ୍ୟାରକ୍‌ପୁରରୁ ଆସିଥିବା ଜଣେ ବ୍ରାହ୍ମଣ ସିପାହୀ, ନିକଟରେ ଥିବା ଏକ କୂପକୁ ସ୍ନାନ କରିବା ପାଇଁ ଯାଇଥିଲେ । ସେତେବେଳେ ଗୁଳି ତିଆରି କାରଖାନାର ଜଣେ ମେହେନ୍ତର ଜାତିର ଚାକର, ବ୍ରାହ୍ମଣ ସିପାହୀଙ୍କୁ ପାଣି ପିଇବାକୁ ମାଗିଲା । ସେତେବେଳର ପରମ୍ପରା ଅନୁସାରେ ସିପାହୀ ଜଣକ ଲୋଟା ଅଶୁଦ୍ଧ ହେବ ବୋଲି କହି ପାଣି ଦେବାକୁ ଅସ୍ୱୀକାର କଲେ । ଫଳରେ ମେହେନ୍ତର ଜଣକ ବ୍ୟଙ୍ଗ ସ୍ୱରରେ କହିଲା, ମହାରାଜ, ମୋତେ ପାଣି ଦେଲେ ଆପଣଙ୍କର ଲୋଟା ଯଦି ଅଶୁଦ୍ଧ ହୋଇଯାଉଛି, ତେବେ ଆପଣ ଦାନ୍ତରେ କାଟି ଭର୍ତ୍ତିକରୁଥିବା ଗୁଳିରେ ଘୁଷୁରୀ ଓ ଗାଈର ଚର୍ବି ଲାଗିଛି, ଏଣୁ ଆପଣଙ୍କର ଧର୍ମ କେଉଁଠି ରହିଲା? ମେହେନ୍ତର ଏଇ କଥା କହି ଚାଲିଗଲା । କିନ୍ତୁ ସେ ବ୍ରାହ୍ମଣ ସିପାହୀ ଜଣଙ୍କ ଏହା ଶୁଣି ସ୍ତମ୍ଭୀଭୂତ ହୋଇ ରହିଗଲେ । ସେ ଯେତେବେଳେ ଏ କଥା ଅନ୍ୟ ସିପାହୀମାନଙ୍କୁ କହିଲେ, ସମସ୍ତଙ୍କ ମଧ୍ୟରେ ଉତ୍ତେଜନା ଖେଳିଗଲା । ନିଆଁ ପରି ଏ ଖବର ପ୍ରଶିକ୍ଷଣ କେନ୍ଦ୍ରରେ

ବ୍ୟାପିଗଲା । ଏହି ଘଟଣା ଘଟିବା ପରଦିନ 'ଦମ୍ ଦମ୍ ମସ୍କେଟରୀ ଡିପୋ'ର ସଞ୍ଚାଳକ 'ମେଜର କ୍ୟାଣ୍ଟିନ୍', ସମସ୍ତ ସିପାହୀମାନଙ୍କର ପ୍ୟାରେଡ୍ କରାଇଲେ । ଏହି ପ୍ୟାରେଡ୍‌ରେ ନୂଆ ରାଇଫଲକୁ ଦାନ୍ତରେ କାଟି ଗୁଳି ଭର୍ତ୍ତି କରିବାକୁ ଓ ସେହି ଅଶୁଦ୍ଧ ଗୁଳି ଗୁଡିକ ଛୁଇଁବାକୁ ସିପାହୀମାନେ ମନାକଲେ । ମେଜର କାଣ୍ଟିନ୍ ଏହାର ରିପୋର୍ଟ ଉପରିସ୍ଥ ଅଫିସରକୁ ପଠାଇଦେଲେ । ଏହି ଘଟଣା ୧୮୫୭ ମସିହା ଜାନୁଆରୀ ମାସ ବାଇଶ ତାରିଖରେ ଘଟିଥିଲା ।'' ଏହି ଖବର ତୁରନ୍ତ କଲିକତା ଠାରୁ ୧୫ ମାଇଲ ଦୂରରେ ଥିବା 'ବ୍ୟାରକ୍‌ପୁର'ରେ ପହଞ୍ଚିଲା । ଜେନେରାଲ ହିଅରସ୍ ବ୍ୟାରକ୍‌ପୁର ଛାଉଣୀର କମଣ୍ଡାଣ୍ଟ ଅଫିସର (Commandant officer) ଥିଲେ । ସେ ଗୁଳିରେ ସୈନ୍ୟମାନେ ନିଜଇଚ୍ଛାଅନୁସାରେ ଚର୍ବି ଲଗାଇବା ପାଇଁ ପ୍ରସ୍ତାବ ଦେଲେ । ଜାନୁଆରୀ ୨୮ ତାରିଖ ପର୍ଯ୍ୟନ୍ତ ସରକାର ଏ ବିଷୟରେ ଧ୍ୟାନ ଦେଲେ ନାହିଁ । ଲେଫଟନାଣ୍ଟଙ୍କର ରିପୋର୍ଟ ଦେବା ଓ କଲିକତାରୁ ଉତ୍ତର ଆସିବାରେ ଛଅଦିନ ବିତିଗଲା । ଏମଧ୍ୟରେ ସିପାହୀମାନେ ଅତ୍ୟନ୍ତ କ୍ଷୁବ୍ଧ ହୋଇଗଲେ । ସେମାନେ ନିଶ୍ଚିତ ହେଲେ ଯେ ସେମାନଙ୍କର ଧର୍ମ ନଷ୍ଟ କରି ଖ୍ରୀଷ୍ଟିୟାନ କରିଦେବା ପାଇଁ ଇଂରାଜି ମାନଙ୍କର ଏହା ଏକ ଚକ୍ରାନ୍ତ । ହଠାତ୍ ଆଡ୍‌ଜୁଟାଣ୍ଟ ଜେନେରାଲ (Adjutant General)ଙ୍କୁ ଆଦେଶ ଆସିଲା ଯେ ସିପାହୀମାନଙ୍କୁ ସେମାନଙ୍କର ଇଚ୍ଛାଅନୁସାରେ ଚର୍ବି ଲଗାଇବାର ଅଧିକାର ଦିଆଯାଉ । କିନ୍ତୁ ଆଡଜୁଟାଣ୍ଟ ଜେନେରାଲ ଟେଲିଗ୍ରାମ ଦ୍ୱାରା ସରକାରଙ୍କୁ ଜଣାଇଲେ ଯେ ହଠାତ୍ ଏହି ପ୍ରକାର ପରିବର୍ତ୍ତନ କରିବାଫଳରେ ସିପାହୀମାନଙ୍କ ମଧ୍ୟରେ ସନ୍ଦେହ ବୃଦ୍ଧି ହେବାର ସମ୍ଭାବନା ରହିଛି । ଏଣୁ ଆଡଜୁଟାଣ୍ଟ ଜେନେରାଲଙ୍କ ମତକୁ ସରକାର ସ୍ୱୀକାର କରିଗଲେ । ଏହି ପ୍ରକାରେ ମାର୍ଚ୍ଚମାସ ଆସିଗଲା । ଏହି ସମୟ ମଧ୍ୟରେ କାଁ ଭାଁ ହିଂସାକାଣ୍ଡ ମାନ ଘଟୁଥିବା ଖବର ମଧ୍ୟ ସରକାର ପାଇଲେ । ଦିଲ୍ଲୀର ଏକ ପତ୍ରିକାରେ 'କଲିକତାରୁ ଚିଠି'ରେ ପ୍ରକାଶିତ ହୋଇଥିଲା,:-

"Queer reports about the burning down of bunglows of the officers of the 2nd Grenadiers at Raneeguange and attempts on the line of that corps. The Electric Telegraph at Barrackpore has been burned; and the Quatersmaster-Sergeant's bunglow ran risk of destruction. All these things taken in connection have caused so much alarm here"—(Delhi Gazette, 5 feb, 1857)

(''ରାଣୀଗଞ୍ଜରେ ଥିବା ଦ୍ୱିତୀୟ ଗ୍ରିନେଡ଼ିଅରର ଅଫିସର ମାନଙ୍କର ବଙ୍ଗଳାକୁ ଜାଳିଦେବା, ଛାଉଣୀରେ ମଧ୍ୟ ସେହିପରି ଚେଷ୍ଟା କରାଯିବା,

ବ୍ୟାରାକ୍‌ପୁରରେ ବିଦ୍ୟୁତ୍ ଟେଲିଗ୍ରାଫ୍ ପୋଡ଼ିଦିଆ ଯିବା, କ୍ୱାଟରମାଷ୍ଟର ଓ ସର୍ଜେଣ୍ଟ ମାନଙ୍କର ବଙ୍ଗଳାକୁ ଧ୍ୱଂସ କରାଯିବାର ସମ୍ଭାବନା, ଆଦି ସମ୍ବାଦମାନ ଏଠାରେ କୋକୁଆଭୟ ସୃଷ୍ଟି କରିଛି ।'')

ଏହି ପ୍ରକାର ଛୋଟ ବଡ ହିଂସାକାଣ୍ଡମାନ ଭାରତର ବିଭିନ୍ନ ସ୍ଥାନରେ ଘଟିବାକୁ ଲାଗିଲା । 'ଦିଲ୍ଲୀଗେଜେଟ୍'ରେ ମେ ସାତ ତାରିଖ ଦିନ ପ୍ରକାଶ ପାଇଥିଲା:-

"Epidemic chapatties' were replaced by "epidemic incendiarism'."

''ଚ଼ପାତିର ସଂକ୍ରମଣ ପରିବର୍ତ୍ତେ ଗୃହଦାହର ସଂକ୍ରମଣ ଦେଖାଗଲା ।'' (ଦିଲ୍ଲୀ ଗେଜେଟ୍ ୫ ଫେବୃଆରୀ ୧୮୫୭)

୧୮ ତାରିଖ ଓ ୨୫ ତାରିଖ ଫେବୃୟାରୀରେ ୩୪ତମ ପଦାତିକ ବାହିନୀର ଦୁଇଟି ଦଳ, ସେମାନଙ୍କର ନିୟମିତ କର୍ତ୍ତବ୍ୟରେ ଆସି କଲିକତା ଠାରୁ ୧୨୦ ମାଇଲ୍ ଦୂର 'ବରହମ୍‌ପୁର'ରେ ପହଞ୍ଚିଲେ । ସେଠାରେ ପୂର୍ବରୁ ୧୯ ତମ ପଦାତିକ ବାହିନୀକୁ ଅବସ୍ଥାପିତ କରାଯାଇଥିଲା । ୩୪ତମ ବାହିନୀଠାରୁ ୧୯ ତମ ବାହିନୀ, ଗୁଳିରେ ଗୋରୁ ଓ ଘୁଷୁରି ଚର୍ବି ମିଶିଥିବା କଥା ଜାଣିବାକୁ ପାଇଲେ । ଏଣୁ ୨୬ତାରିଖ ସନ୍ଧ୍ୟାବେଳେ ୧୯ତମ ବାହିନୀ, ପରଦିନ ସକାଳର ପ୍ୟାରେଡରେ ପ୍ରତିରକ୍ଷା ମୂଳକ କ୍ୟାପ୍ (Precussion Cup) ଗ୍ରହଣ କରିବାକୁ ମନା କରିଦେଲେ ଏବଂ ଗୁଳି ଉପରେ ସେମାନଙ୍କର ସନ୍ଦେହ ଥିବା ହେତୁ, ସେମାନେ ଏହି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରୁଛନ୍ତି ବୋଲି ଜଣାଇଲେ । ଏହି ଖବର କମାଣ୍ଡିଂ ଅଫିସର 'ମିଚେଲ୍' (Commanding Officer Mitchel)ଙ୍କ ପାଖରେ ପହଞ୍ଚିବା ଫଳରେ, ସେ ସିପାହୀମାନଙ୍କୁ ନାନା ଅକଥ୍ୟ ଭାଷାରେ ଗାଳିଗୁଲଜ କଲେ । ଏହା ସିପାହୀମାନଙ୍କର ସନ୍ଦେହକୁ ଦୃଢୀଭୂତ କଲା । ମଧ୍ୟରାତ୍ରିରେ ଏହି ସିପାହୀମାନେ ଏକଜୁଟ୍‌ହୋଇ ଗୁଳିଭରା ବନ୍ଧୁକ ଧରି ଚିତ୍କାର କରିବାକୁ ଲାଗିଲେ । ପରଦିନ ଭୋରରୁ ସିପାହୀମାନେ ଅସ୍ତ୍ରଶାଳା ଭାଙ୍ଗିଦେଲେ । ନିଜ ନିଜର ଅସ୍ତ୍ରମାନ ବଳପୂର୍ବକ ନେଇଗଲେ ଓ ବନ୍ଧୁକରେ ଗୁଳିଭର୍ତ୍ତି କଲେ । 'କର୍ଣ୍ଣେଲ ମିଚେଲ' ଶକ୍ତି ଦ୍ୱାରା ସେମାନଙ୍କର ମୁକାବିଲା କରିବାପାଇଁ ବିଚାରକଲେ । କିନ୍ତୁ ତାଙ୍କ ପାଖରେ ଇଂରାଜି ସେନା ନଥିଲେ । ସେ ଭାରତୀୟ ଘୋଡାସବାର ଓ ତୋପଖାନା ନେଇ ସିପାହୀମାନଙ୍କ ପାଖରେ ପହଞ୍ଚିଲେ । ସ୍ଥିତି ଅତ୍ୟନ୍ତ ଗମ୍ଭୀର ଥିଲା । କିନ୍ତୁ ଭାରତୀୟ ଅଫିସରମାନେ ତାଙ୍କୁ ବୁଝାଇ ସୁଝାଇ ଘୋଡାସବାର ଓ

ତୋପଖାନା ସହିତ ଲେଉଟାଇ ଦେଲେ ।ପରେ ସରକାରଙ୍କ ତରଫରୁ ଏକ 'କୋର୍ଟ ଅଫ୍ ଇନ୍‌କ୍ୱାରୀ' (Court of Inquiry) ଏହାର ଅନୁସନ୍ଧାନ କରି, ଏହା ଏକ ସ୍ଥାନୀୟ ଘଟଣା ଓ 'ମିଚେଲ'ଙ୍କର ଉତ୍ତେଜନାମୂଳକ ବ୍ୟବହାର ଏଥିପାଇଁ ଦାୟୀ, ବୋଲି କହିବା ଫଳରେ ୧୯ତମ ବାହିନୀକୁ 'ଗଭର୍ଣ୍ଣର ଜେନେରାଲ' ବରଖାସ୍ତ କଲେ ନାହିଁ ।

ଏ ମଧ୍ୟରେ 'ବ୍ୟାରକ୍‌ପୁର'ରେ ଘଟଣାମନେ ଦ୍ରୁତଗତିରେ ଘଟି ଚାଲିଥିଲା । ୧୯ତମ ବାହତନୀର ଗୁଳି ଗ୍ରହଣ କରିବାକୁ ଅସ୍ୱୀକାର କରିବା ଓ ତଜ୍ଜନିତ ଦଣ୍ଡ ଆଦି ପାଇଁ ୩୪ତମ ବାହିନୀ ନିଜକୁ ଦାୟୀ କଲେ ଓ ସେମାନଙ୍କ ମନରେ ମଧ୍ୟ ଉତ୍ତେଜନା ଖେଳିଗଲା । କିନ୍ତୁ ସରକାର ପ୍ରତିକାର ସ୍ୱରୂପ, ୮୪ତମ ଇଂରାଜି ବାହିନୀକୁ ରେଙ୍ଗୁନରୁ ଅଣାଇଲେ । ଏହାପରେ ୧୯ତମ ବାହିନୀକୁ 'ବ୍ୟାରକ୍‌ପୁର' ନିଆଗଲା । ସେମାନଙ୍କୁ ପରେଡକୁ ଡକାଗଲା ଏବଂ ସେମାନେ ମଧ୍ୟ ଶାନ୍ତଭାବରେ ଆଦେଶ ପାଳନ କଲେ । ସେମାନଙ୍କଠାରୁ ଅସ୍ତ୍ର କାଢି ନିଆଗଲା । ଧୋତି ପୋଷାକ ପିନ୍ଧିବାକୁ ଅନୁମତି ମିଳିଲା, ଓ ଘରକୁ ଯିବା ଖର୍ଚ୍ଚ ସହିତ ବିଦାୟ କରିଦିଆଗଲା ।

ଏହି ସମସ୍ତ ଘଟଣାବଳୀରେ 'ବ୍ୟାରକ୍‌ପୁର' ଛାଉଣୀମାନଙ୍କରେ ବାତାବରଣ ଅତ୍ୟନ୍ତ ଗମ୍ଭୀର ଥିଲା । ଇଂରାଜୀ ଓ ଦେଶୀ ଅଫିସର ମାନଙ୍କ ମଧ୍ୟରେ ପୂର୍ବରୁ ଯେଉଁ ବିଶ୍ୱାସ ଓ ଏକତା ଭାବଥିଲା ତାହା ଭୟ ଓ ଆଶଙ୍କାରେ ପରିଣତ ହେଲା, ଏହିପରି ସମୟରେ ଅନ୍ୟ ଗ୍ରୀନେଡିୟରସ୍ ବାହିନୀର ଦୁଇଜଣ ସିପାହୀଙ୍କୁ ରାଜଦ୍ରୋହ ଅପରାଧରେ ୧୪ବର୍ଷ କଠୋର ସଶ୍ରମ କାରାଦଣ୍ଡର ଆଦେଶ ମିଳିଲା । ଜମାଦାର 'ସାଳଗରାମସିଂ'ଙ୍କୁ, ଗୁଳି ନେଇ ଉତ୍ତେଜନା ସୃଷ୍ଟି କରୁଥିବା ଅପରାଧରେ ବର୍ଖାସ୍ତ କରିଦିଆଗଲା ।

୩୪ତମ ବାହିନୀର 'ମଙ୍ଗଳ ପାଣ୍ଡେ', ପୂର୍ବରୁ 'ଗୋବିନ୍ଦ ପାଣ୍ଡେ'ଙ୍କ ଦ୍ୱାରା ବହୁତ ପ୍ରଭାବିତ ହୋଇଥିଲେ । ସେ ଅବଧର ଜଣେ କୁଳୀନ ବ୍ରାହ୍ମଣ ଥିଲେ । ତାଙ୍କ ମଧ୍ୟରେ ନିଷ୍ଠା ତଥା ଉଗ୍ର ବ୍ରାହ୍ମଣତ୍ୱ ଥିଲା । ସେ, ଏ ସମସ୍ତ ଘଟଣାବଳୀରେ ଅତ୍ୟନ୍ତ ଉତ୍ତେଜିତ ହୋଇ, ରାତ୍ରିରେ ଗୁପ୍ତ ସଂଗଠନର ଆଲୋଚନା ଚକ୍ରରେ ସକାଳୁ ବିଦ୍ରୋହ ଆରମ୍ଭ କରିବାର ପ୍ରସ୍ତାବ ଦେଲେ, କିନ୍ତୁ ଅନ୍ୟମାନେ ସମ୍ମତି ପ୍ରକାଶ କଲେ ନାହିଁ । କାରଣ, ବିଦ୍ରୋହ ଆରମ୍ଭର ଦିନ ପୂର୍ବରୁ ନିର୍ଦ୍ଧାରିତ ଥିଲା । 'ମଙ୍ଗଳ ପାଣ୍ଡେ' କିନ୍ତୁ ଏତେଦୂର ଉତ୍ତେଜିତ ହୋଇଯାଇଥିଲେ ଯେ, ସେ କିଛି ଶୁଣିବା ଅବସ୍ଥାରେ ନଥିଲେ । ମାର୍ଚ୍ଚ ୨୯ତାରିଖ ରବିବାର ଥିଲା । ଇଂରେଜି ଅଫିସରମାନେ ସେମାନଙ୍କର

ମେମ୍‌ମାନଙ୍କ ସହ ଗାର୍ଡରେ ଥିଲେ । ପରେଡ ପାଇଁ ୩୪ତମ ବାହିନୀ ଛିଡା ହୋଇଥିଲେ । ମଙ୍ଗଳ ପାଣ୍ଡେ ହଠାତ୍ ଲାଇନ୍‌ରୁ ବାହାରିଆସି, ନିଜ ରାଇଫଲ୍ ଧରି, କ୍ୱାଟର୍ ଗାର୍ଡ (Quarter Guard) ସମ୍ମୁଖରେ ମାର୍ଚ୍ଚ କରିବାକୁ ଲାଗିଲେ । 'ମଙ୍ଗଳ ପାଣ୍ଡେ' ଚିତ୍କାର କରି, ସ୍ୱଧର୍ମ ଓ ସ୍ୱରାଜ୍ୟ ପାଇଁ ଆତ୍ମୋତ୍ସର୍ଗ କରିବା ପାଇଁ ନିଜର ସାଥୀ ମାନଙ୍କୁ ଆହ୍ୱାନ କଲେ ଏବଂ ପ୍ରଥମ ଇଂରାଜି ଦେଖିଲେ ଗୁଳି କରିବେ ବୋଲି ଆସ୍ଫାଳନ କଲେ । ସେ ବିଗୁଲବାଲାକୁ ବିଗୁଲ ବଜାଇ ସମସ୍ତଙ୍କୁ ଏକାଠି କରିବାକୁ କହିଲେ । କିନ୍ତୁ ବିଗୁଲ ବଜାଇବା ସିପାହୀ ଭାବିଲା, ଯେ ସେ ଭାଙ୍ଗ ନିଶାରେ ଏହିପରି କହୁଛନ୍ତି । ସେ ତାଙ୍କ କଥା ଶୁଣି ହସିବାକୁ ଲାଗିଲା । ସେହି କମ୍ପାନୀର 'ସର୍ଜେଣ୍ଟ ମେଜର ହ୍ୟୁସନ୍' ଚିତ୍କାର କରି ସିପାହୀ ମାନଙ୍କୁ ଆଜ୍ଞା ଦେଲେ, ''ଏହି ବଦ୍‌ମାସ୍‌କୁ ଗିରଫ କର ।'' କିନ୍ତୁ କୌଣସି ସିପାହୀ ନିଜ ନିଜ ସ୍ଥାନରୁ ଘୁଞ୍ଚିଲେ ନାହିଁ । 'ସର୍ଜେଣ୍ଟ ମେଜର ହ୍ୟୁସନ୍' (Sergent Major Hughson) ନିଜେ ଆଗକୁ ଗଲେ । 'ମଙ୍ଗଳ ପାଣ୍ଡେ' ଗୁଳି ମାରି ତାଙ୍କର ଖପୁରୀ ଉଡାଇଦେଲେ । ଛାଉଣୀରେ କୋଳାହଳ ପଡିଗଲା । ଖବର ପାଇ 'ଏଡ୍‌ଜୁଟାଣ୍ଟ(Adjutant) କର୍ଣ୍ଣେଲ ବଫ' (Cornel Bough) ଘୋଡାରେ ଚଢି ଘଟଣାସ୍ଥଳରେ ପହଞ୍ଚିଲେ । 'ମଙ୍ଗଳ ପାଣ୍ଡେ' ତତ୍‌କ୍ଷଣାତ୍ ଗୁଳି ଚଳାଇଲେ ଓ ତାହା ଘୋଡାରେ ବାଜି ଘୋଡା ପଡିଗଲା । କିନ୍ତୁ 'ବଫ' ଉଠିପଡି ସାଙ୍ଗେ ସାଙ୍ଗେ 'ମଙ୍ଗଳ ପାଣ୍ଡେ'ଙ୍କ ଉପରକୁ ଗୁଳି ଚଳାଇଲେ । ତାହା ଲକ୍ଷହୀନ ହେଲା । ମଙ୍ଗଳପାଣ୍ଡେଙ୍କର ରାଇଫଲରେ ଆଉ ଗୁଳି ନ ଥିଲା । ସେ ତଲବାର ନେଇ ବଫଙ୍କ ଉପରକୁ କୁଦିପଡିଲେ ଓ ତାଙ୍କର ବାମହାତ ଓ ବେକକୁ ଆଘାତ କଲେ । ଅନ୍ୟ ଜଣେ ଇଂରାଜି ମଙ୍ଗଳଙ୍କୁ ଆକ୍ରମଣ କରିବାକୁ ଯାଇ ଜଣେ ସିପାହୀଙ୍କର ବ୍ୟାରେଲର ମାଡରେ ମୁଣ୍ଡ ଫଟାଇଲେ ।  ଏହି ସମୟରେ 'କର୍ଣ୍ଣେଲ ହ୍ୱିଲର୍' ଗିରଫଦାର କରିବାକୁ ଚିତ୍କାର କରି ଆଦେଶ ଦେଲେ । 'ଶେଖ୍ ପଲଟୁ' ନାମକ ଜଣେ ସିପାହୀ ଆଗକୁ ଯାଇ 'ମଙ୍ଗଳ'ଙ୍କର ହାତକୁ ଧରିପକାଇଲା । ଅନ୍ୟାନ୍ୟ ସିପାହୀମାନେ ଛିଡାହୋଇ ତମାସା ଦେଖୁଥିଲେ । ସେମାନେ ଚିତ୍କାର କରି ମଙ୍ଗଳଙ୍କ ଦେହରେ ହାତ ନ ଲଗାଇବା ପାଇଁ ପଲଟୁକୁ ସାବଧାନ କରିଦେଲେ । 'ପଲଟୁ' ଡରିଯାଇ 'ମଙ୍ଗଳ'ଙ୍କୁ ଛାଡିଦେଲା । 'ମଙ୍ଗଳ' ପୁଣି ନିଜ ବନ୍ଧୁକରେ ଗୁଳି ଭର୍ତ୍ତିକଲେ । 'ଜେନେରାଲ ହିୟରସ୍'ଙ୍କୁ ଏହି ଘଟଣାର ଖବର ମିଳିଲା । ସେ ତୁରନ୍ତ ନିଜର ଦୁଇ ପୁଅ ଓ କିଛି ଇଂରାଜି ସୈନ୍ୟଙ୍କୁ ନେଇ ଘଟଣାସ୍ଥଳରେ ପହଞ୍ଚିଲେ । ଜେନେରାଲଙ୍କୁ ଓ ଇଂରାଜି ସୈନ୍ୟମାନଙ୍କୁ ଦେଖିକରି ଶତ୍ରୁ ହାତରେ ପଡିବା ଅପେକ୍ଷା

ମରଣ ଭଲ ବୋଲି ଭାବି 'ମଙ୍ଗଳ' ନିଜକୁ ଗୁଳି କଲେ । ଏହା ପରେ ପରେ ରକ୍ତାକ୍ତ ହୋଇ ସେ ଭୂମିରେ ପଡିଗଲେ । ତା'ଙ୍କୁ ହସ୍‌ପିଟାଲକୁ ନିଆଗଲା । ସେଠାରୁ ସୁସ୍ଥ ହେବା ପରେ କୋର୍ଟ ମାର୍ଶାଲରେ ବିଚାର ହୋଇ ତାଙ୍କୁ ଫାଶୀ ଦଣ୍ଡର ହୁକୁମ ହେଲା । ଏପ୍ରିଲ ୮ତାରିଖ ସକାଳରେ ଇଂରାଜି ସୈନ୍ୟ ପରିବେଷ୍ଟିତ କରି, ତାଙ୍କୁ ଫାଶୀ ଖୁଣ୍ଟକୁ ନିଆଗଲା, ଶତ ଚେଷ୍ଟା ସତ୍ତ୍ୱେ ସେ କୌଣସି ବିଦ୍ରୋହୀଙ୍କ ନାମ ପ୍ରକାଶ କଲେ ନାହିଁ । ଅବଶେଷରେ ସେ ଫାଶୀ ଖୁଣ୍ଟରେ ଆତ୍ମାହୂତି ଦେଇ ସ୍ୱାଧୀନତା ସଂଗ୍ରାମର ପ୍ରଥମ ଶହୀଦ ହେଲେ । 'ବ୍ୟାରକ୍‌ପୁର'ରେ ଏହି ଘଟଣାବଳୀ ଓ ତହିଁରୁ ଜାତ ତୀବ୍ର ଅସନ୍ତୋଷର ପ୍ରତିଫଳନ ମାର୍ଚ୍ଚମାସର ଶେଷଭାଗରେ 'ଅମ୍ୱାଲା'ରେ ହେଲା । ଏପ୍ରିଲ ମାସର ଶେଷଭାଗରେ ଜଣେ ଶିଖ, ଇଂରାଜି ଅଫିସରଙ୍କୁ ସାକ୍ଷ୍ୟରେ କହିଥିଲେ ଯେ ଚର୍ବି ମିଶ୍ରିତ ଗୁଳିର ପ୍ରତିଶୋଧ ସ୍ୱରୂପ, ଲୋକମାନେ ସମସ୍ତ ଇଂରାଜି ମାନଙ୍କର ଘରେ ନିଆଁ ଲଗାଇବାକୁ ସଂକଳ୍ପବଦ୍ଧ । ଲକ୍ଷ୍ନୌରେ ମଧ ଅନୁରୂପ ପ୍ରତିକ୍ରିୟା ପ୍ରକାଶ ପାଇଲା । ମେ ମାସ ଦୁଇ ତାରିଖ ଦିନ ଅବଧର ସପ୍ତମ ବାହିନୀ, ଗୁଳିକୁ ଦାନ୍ତରେ ଛିଣ୍ଡାଇବାକୁ ମନା କଲେ । ତିନି ତାରିଖ ଦିନ ରିପୋର୍ଟ ମିଳିଲା ଯେ ସିପାହୀ ମାନେ ସେମାନଙ୍କର ଅଫିସରଙ୍କୁ ହତ୍ୟା କରିବାକୁ ଧମକ ଦେଇଛନ୍ତି । 'ଅବଧ'ର 'ଚିଫକମିଶନର ହେନେରୀ ଲରେନ୍ସ', ତତ୍‌କ୍ଷଣାତ୍ କାର୍ଯାନୁଷ୍ଠାନ ଗ୍ରହଣ କଲେ ଓ ତାଙ୍କ ସହିତ ଅନ୍ୟ ରେଜିମେଣ୍ଟମାନେ ସହଯୋଗ କଲେ । ଅଧିକାଂଶ ବିଦ୍ରୋହୀ ଭାଗି ପଳାଇଲେ ଓ ଅନ୍ୟମାନେ ଆଦେଶ ମାତ୍ରକେ ଶସ୍ତ୍ରକୁ ଭୂମିରେ ରଖିଦେଇଥିଲେ । ଏହି ରେଜିମେଣ୍ଟକୁ ଭାଙ୍ଗି ଦିଆଗଲା, 'ବ୍ୟାରକ୍‌ପୁର'ରେ ଘଟଣାବଳୀର ପ୍ରଭାବ ସାରାଭାରତରେ ସିପାହୀମାନଙ୍କ ଉପରେ ଗଭୀର ଭାବରେ ପଡିଥିଲା । ସେ ସମୟରେ ଉତ୍ତରଭାରତରେ ପ୍ରାୟ ନବଦଶମାଂଶ ସିପାହୀମାନଙ୍କର ଦୃଢବିଶ୍ୱାସ ହୋଇଯାଇଥିଲା ଯେ ବଳପୂର୍ବକ ନିଷିଦ୍ଧ ଚର୍ବିଯୁକ୍ତ ଗୁଳିକୁ ଦାନ୍ତରେ ଛିଣ୍ଡାଇବାକୁ କହିବା ମୂଳରେ, ନିଶ୍ଚିତ ଭାବରେ ସେମାନଙ୍କର ଧର୍ମନଷ୍ଟ କରିବା ପାଇଁ, ଇଂରାଜମାନଙ୍କର ଏକ ସୁପରିଗଠିତ ଚକ୍ରାନ୍ତ ନିହିତ ଥିଲା ।



# ମିରଟ

'ମିରଟ'ରେ ଏପ୍ରିଲ ମାସ ତେଇଶ ତାରିଖ ରାତିରେ ଘୋଡସବାର ବାହିନୀର ନବେ ଜଣ ସିପାହୀଙ୍କ ମଧ୍ୟରୁ ପଞ୍ଚାଅଶୀ ଜଣ ସିପାହୀ ରାତିରେ ସେମାନଙ୍କର ଟ୍ରୁପ୍ କ୍ୟାପଟେନ (Troup Captain)ଙ୍କୁ ଆସନ୍ତା ସକାଳର ପାରେଡରେ ଗୁଳି ଚୁଇଁବେ ନାହିଁ ବୋଲି ଜଣାଇଦେଲେ । ଚବିଶ ତାରିଖ ଦିନ ସକାଳେ ଏମାନେ ଯଥାବିଧି ପାରେଡରେ ଯୋଗଦେଲେ । କିନ୍ତୁ ସେମାନଙ୍କୁ ବାରମ୍ବାର ଆଦେଶ ଦେବା ସତ୍ତ୍ୱେ ସେମାନେ ଗୁଳିକୁ ସ୍ପର୍ଶ କଲେ ନାହିଁ । ବହୁ ଧମକ ଚମକ ସତ୍ତ୍ୱେ ମଧ୍ୟ ସେମାନେ ଅଟଳ ରହିଲେ । ଫଳରେ ସେମାନଙ୍କର କୋର୍ଟ ମାର୍ଶାଲ (Court Martial)ରେ ବିଚାର ହେଲା । ବିଚାରରେ ସେମାନଙ୍କୁ ସଶ୍ରମ କାରାଦଣ୍ଡ ଦିଆଗଲା ଏବଂ ମେ ନଅ ତାରିଖରେ ଏହା କାର୍ଯ୍ୟକାରୀ କରିବାକୁ ଆଦେଶ ଦିଆଗଲା ।

ମେ ମାସ ନଅ ତାରିଖ ଦିନ ସକାଳ ସାଢେ ସାତଟା ସମୟରେ, ୩ୟ ଘୋଡାସବାର ବାହିନୀର 'କମାଣ୍ଡର କର୍ଣ୍ଣେଲ ସ୍ମିଥ୍', ନିଜର ପୋଷାକ ପିନ୍ଧି ଓ ଅଣ୍ଟାରେ ପିସ୍ତଲ ବାନ୍ଧି, ତଲବାର ଝୁଲାଇ, ଘୋଡାରେ ବସି, ପାରେଡ ଗ୍ରାଉଣ୍ଡରେ ପହଞ୍ଚିଲେ । ସେଠାରେ ପଞ୍ଚାଅଶୀ ଜଣ ଘୋଡସବାର ବାହିନୀର ସିପାହୀ ଲାଇନ୍ କରି ଛିଡାହୋଇଥିଲେ । ସେମାନଙ୍କର ସାମନାରେ ତୋପଖାନା ଥିଲା । ସବୁ ତୋପର ମୁହଁ ସିପାହୀ ମାନଙ୍କ ଆଡକୁ ହୋଇଥିଲା । ତା ପଛରେ ଗୋରା ଫଉଜ ରାଇଫଲ ଧରି ଛିଡା ହୋଇଥିଲେ । ଅନ୍ୟ ଛାଉଣୀରୁ ଛଅଟି ରେଜିମେଣ୍ଟର ସିପାହୀମାନଙ୍କୁ ଦଣ୍ଡ ବିଧାନ ଦେଖିବା ପାଇଁ ଡକାଇ ଅଣାଗଲା । ଏହି ଦଣ୍ଡ ପାଇଁ ଅପେକ୍ଷା କରିଥିବା ପଞ୍ଚାଅଶୀ ଜଣ ସିପାହୀ ମାନଙ୍କ ମଧ୍ୟରୁ ଛତିଶି ଜଣ ହିନ୍ଦୁ ଓ ଅଣଷଠି ଜଣ ମୁସଲମାନ ଥିଲେ ।

ଚତୁର୍ଦ୍ଦିଗରେ ଭୟଙ୍କର ନିସ୍ତବ୍ଧତା ଛାଇ ଯାଇଥିଲା । ସୂର୍ଯ୍ୟଙ୍କର କିରଣ ଏହି ପଞ୍ଚାଅଶୀ ଜଣ ସିପାହୀଙ୍କ ଉପରେ ପଡୁଥିଲା । ସେମାନଙ୍କର ଚେହେରାରେ ଦୃଢତା ଓ ଆଖିରୁ କ୍ରୋଧର ଅଗ୍ନି ସ୍ଫୁଲିଙ୍ଗ ବାହାରୁଥିଲା । ସେମାନେ ଇଂରାଜି ମାନଙ୍କ ସହିତ କାନ୍ଧ ମିଳାଇ ବହୁ ଭୟଙ୍କର ଯୁଦ୍ଧ ଲଢି ସେମାନଙ୍କୁ ବିଜୟୀ କରିଥିଲେ । ଯୁଦ୍ଧ ଭୂମିରେ ସେମାନେ ନିଜେ ଦୁଃଖ କଷ୍ଟ ସହି ଇଂରାଜି ମାନଙ୍କୁ ବହୁ ସାହାଯ୍ୟ କରିଥିଲେ । ସେହି ବୀରତ୍ୱର ମେଡାଲ ସବୁ, ସେମାନଙ୍କର ଛାତିରେ ଝୁଲୁଥିଲା । ଏମାନଙ୍କର

ଆୟୁର ଅଧିକାଂଶ ଭାଗ ବ୍ରିଟିଶ୍ ମାନଙ୍କ ସେବାରେ ହିଁ କଟିଯାଇଥିଲା । 'କର୍ଣ୍ଣେଲ ସ୍ମିଥ୍' ଘୋଡାଉପରେ ସବାର ହୋଇ, ପ୍ରଥମେ ସେମାନଙ୍କୁ ପରିଦର୍ଶନ କରି, ସମସ୍ତଙ୍କ ଚେହେରାକୁ ଧ୍ୟାନର ସହିତ ନିରୀକ୍ଷଣ କରିବାକୁ ଲାଗିଲେ । ସେତେବେଳେ ସେମାନଙ୍କର ମୁଖରୁ ଘୃଣା ଓ କ୍ରୋଧର ଭାବ ସ୍ପଷ୍ଟ ପରିଲକ୍ଷିତ ହେଉଥିଲା ।

'କର୍ଣ୍ଣେଲ ସ୍ମିଥ୍' ହଠାତ୍ ସେମାନଙ୍କ ଠାରୁ ଶହେଗଜ ଦୂରରେ ଛିଡାହୋଇ ରହିଲେ । ପୁନର୍ବାର ବିଗୁଲ ବାଜିଲା ଓ ଗୋରା ସୈନ୍ୟ ମାନେ ଆଗକୁ ଆସି ନିଜ ନିଜ ରାଇଫଲରେ ସଙ୍ଗୀନ୍ ଲଗାଇ ସାମନାରେ ଛିଡାହୋଇଗଲେ । ସିପାହୀମାନେ ପଥର ପରି ଛିଡା ହୋଇଥିଲେ । ଆଡଜୁଟାଣ୍ଟ ପଙ୍କ୍ତିର ସମ୍ମୁଖକୁ ଆସିଲେ । ସେ ହାତରେଧରିଥିବା ଏକ ତାଲିକା ଧରି ଉଚ୍ଚସ୍ୱରରେ ପଢିବାକୁ ଲାଗିଲେ । ସେଥିରେ ପ୍ରତ୍ୟେକଙ୍କ ନାମ ଓ ସୈନିକ ସଂଖ୍ୟା ଘୋଷିତ କରାଗଲା ଓ କୁହାଗଲା- ''ତୁମ ସମସ୍ତଙ୍କୁ ଅନୁଶାସନ ଭଙ୍ଗ କରିବା ଅପରାଧରେ ନୌକରୀରୁ ବରଖାସ୍ତ କରାଯାଉଛି'' । ସେମାନଙ୍କର ପୁନର୍ବାର ନାମ ଘୋଷଣା କରି, କାହାକୁ ୧୦ବର୍ଷ ସଶ୍ରମ କାରାଦଣ୍ଡ ଓ ଅନ୍ୟ କାହାକୁ କଳାପାଣିର ଦଣ୍ଡ, ଘୋଷଣା କରାଗଲା । ଏହାପରେ ସେ ତୁରନ୍ତ ତଲବାର ବାହାର କରି ସିପାହୀମାନଙ୍କୁ ସାବଧାନ ହୋଇ ଛିଡା ହେବାକୁ ଚିତ୍କାର କରି ଆଦେଶ ଦେଲେ । ତାହାଙ୍କର ପଛରେ ଗୋରା ସାର୍ଜେଣ୍ଟ ପିସ୍ତଲ ବାଗେଇ ଆସି ଛିଡା ହୋଇଗଲେ । ଏଡଜୁଟାଣ୍ଟ ସିପାହୀମାନଙ୍କ ପାଖକୁ ଗଲେ । ହାବିଲଦାର 'ମାତାବଦଳ'ଙ୍କର ପୋଷାକରେ ଚାରୋଟି ମେଡାଲ ଝୁଲୁଥିଲା । ତାହା ସେ କାବୁଲ ବର୍ମା ଓ ପଞ୍ଜାବ ଲଢେଇରେ ବୀରତ୍ୱ ପ୍ରଦର୍ଶନ କରି ପାଇଥିଲେ । ଏଡଜୁଟାଣ୍ଟ ଟାଣିକରି ସେହି ମେଡାଲ ଚାରୋଟି ଛିଣ୍ଡାଇ ଦେଲେ ଓ ଘୁଞ୍ଚି ଆସି ନିଜ ସ୍ଥାନରେ ଛିଡାହେଲେ । ତାହାପରେ ସେ ହୁକୁମ ଦେଲେ, ''ଅପରାଧୀଗଣ ! ନିଜ ନିଜର ଫୌଜି ପୋଷାକ ଖୋଲି ଦିଅ ଓ ଖାଲି ଯୋତା ପିନ୍ଧି ରହ । ପଞ୍ଚାଅଶୀ ଜଣ ଯବାନ ଯନ୍ତ୍ରଚାଳିତବତ୍ ପୋଷାକ କାଢି ତଳେ ରଖିଦେଲେ । ସେମାନଙ୍କର ଆଖିରୁ ଲୁହ ବୋହି ଯାଉଥିଲା ଓ ମୁହଁରେ କିଛି ଭାଷା ନଥିଲା । ତୃତୀୟଥର ବିଗୁଲ ବାଜିଲା ଓ ଏଡଜୁଟାଣ୍ଟ ଏକ ଆଦେଶନାମା ନେଇ ତାହାର କିଛି ଅଂଶ ପଢି ଶୁଣାଲେ ଓ ହୁକୁମ୍ ଦେଇ କହିଲେ- ''ଏହି ବନ୍ଦୀ ମାନଙ୍କୁ ହାତକଡି ଓ ବେଡିରେ ବାନ୍ଧି ଦିଆଯାଉ'' ।

ତୁରନ୍ତ ଦଳେ ବେଡି ଓ ହାତକଡି ଆଣି ସେମାନଙ୍କର ହାତ ଓ ପାଦ ବାନ୍ଧିପକାଇଲେ । ଅନ୍ୟ ସମସ୍ତ ସୈନ୍ୟ ପଥର ମୂର୍ତ୍ତି ପରି ଛିଡା ହୋଇ ଏ ସବୁ

ଭୟଙ୍କର ଦୃଶ୍ୟ ଦେଖୁଥିଲେ । ସମସ୍ତେ ଚୁପଚାପ ବେଡି ଓ ହାତକଡି ପିନ୍ଧିଲେ । କିନ୍ତୁ ହାବିଲଦାର ମାତାବଦଳ, ପାଦରୁ କାଢି ଦୁଇ ହାତରେ ଜୋତା ପିନ୍ଧିଲେ । ଏହାପରେ ସେ କହିଲେ, "ଭାଇମାନେ ଏହା ଆମର ଏକ ପୁରୁଣା ହତିଆର, ଏହାକୁ ହାତରେ ନେଇଥାଅ, ଦରକାର ବେଳେ କାମରେ ଲାଗିପାରେ ।" ସବୁ ବନ୍ଦୀମାନେ ମଧ୍ୟ ନିଜ ନିଜର ଜୋତା ଖୋଲି ହାତରେ ଧରିଲେ । ଯେତେବେଳେ ଜେଲଖାନା ଯିବାକୁ ଆଦେଶ ହେଲା, ଗୋରା ଫୌଜ ଏହି ବନ୍ଦୀମାନଙ୍କୁ ଘେରିଯାଇ ଜେଲକୁ ନେବାକୁ ବସିଲେ । ଏହି ସମୟରେ 'ମାତାବଦଳ', ହଠାତ୍ 'କର୍ଣ୍ଣେଲ ସ୍ମିଥ୍'ଙ୍କ ସାମନାକୁ ଆସିଗଲେ । ସେତେବେଳେ 'କର୍ଣ୍ଣେଲ ସ୍ମିଥ୍' ହାତରେ ପିସ୍ତଲ ନେଇ ଘୋଡାରେ ବସିଥିଲେ । ଲାଲ ଲାଲ ଆଖିରେ 'ମାତାବଦଳ' ତାଙ୍କୁ ଚାହିଁ କହିଲେ- "ହାରାମ ଜାଦା, କାପୁରୁଷ, କୁତ୍ତା," ଏହା କହି, ସେ କର୍ଣ୍ଣେଲଙ୍କ ଉପରକୁ ଜୋତା ଦୁଇଟି ଫୋପାଡିଲେ । ଏହି ସମୟରେ କିଛି ଇଂରାଜି ସୈନ୍ୟ ତାଙ୍କୁ ସଙ୍ଗୀନ ମୂନରେ ଭୂଷି ଲାଇନ ଭିତରକୁ ନେଇଆସିଲେ । ଧୀରେ ଧୀରେ ସିପାହୀମାନଙ୍କୁ ଜେଲ ଭିତରକୁ ନିଆଗଲା ଓ ସେମାନେ ଯିବା ସମୟରେ ଅନ୍ୟ ସିପାହୀମାନଙ୍କୁ ଦେଖି ଚିତ୍କାର କରି କହୁଥିଲେ "ଆମେ ଚାଲିଲୁ ଆମକୁ ମନେ ରଖିବ" । ଅନ୍ୟ ସିପାହୀମାନେ ରକ୍ତରେ ଲୁହ ଗଡାଇ ନିଜ ନିଜର ଛାଉଣୀକୁ ଫେରିଆସିଲେ ।

ସେ ଦିନ ଶନିବାର ଥିଲା । ଇଂରାଜିମାନେ, ଭାରତୀୟ ସିପାହୀମାନଙ୍କର ସଚ୍ଚୋଟ ପଣିଆ, ବୀରତ୍ୱ ଓ ନିଷ୍ଠାକୁ ନିଜର ସ୍ୱାର୍ଥ ହାସଲ ପାଇଁ ନିର୍ମମ ଭାବରେ ଉପଯୋଗ କରିବା ଜାଣିଥିଲେ କିନ୍ତୁ ସେମାନଙ୍କର ଭାବପ୍ରବଣତା ସହ ଜଡିତ ନଥିଲେ । ଏଣୁ ଇଂରାଜିମାନେ ତାଙ୍କର ବିଚାର ଅନୁସାରେ ଦିନଟି ସୁରୁଖୁରୁରେ କଟିଗଲା ବୋଲି ଭାବିନେଲେ । ତୃତୀୟ ଘୋଡସବାର ବାହିନୀର କ୍ୟାପଟେନ୍, କ୍ୟାଣ୍ଟନ୍‌ମେଣ୍ଟ ଠାରୁ ଦୂରରେଥିବା ବନ୍ଦୀଶାଳାକୁ ଥରେ ଯାଇ, ବନ୍ଦୀମାନଙ୍କୁ ଦେଖି ଆସିଲେ । ସେ ଯେତେବେଳେ ଘୋଡାରେ ଫେରିଲେ, ସେତେବେଳେ ବଜାର ଆଡୁ ବହୁତ ଖବର ପାଇଲେ । ବ୍ୟାରାକ୍‌ରେଥିବା ସିପାହୀମାନଙ୍କ ମଧ୍ୟରେ ମଧ୍ୟ ଏକ ପ୍ରକାର ଆଶଙ୍କା ଜାତ ହୋଇଥିଲା । ସେମାନଙ୍କ ମଧ୍ୟରେ ଧାରଣା ସୃଷ୍ଟି ହୋଇଥିଲା ଯେ ଇଂରାଜିମାନେ ଶସ୍ତ୍ରାଗାର ଦଖଲ କରିନେବେ । ଏହିପରି ନାନା ଭୟ ଓ ଆଶଙ୍କା ଭିତରେ ଦିବସ ଅତିବାହିତ ହୋଇ ଅପରାହ୍ନ ହେଲା । ସମୟ କ୍ରମେ ଗାଢ ହେଲା, ଇଂରାଜିମାନେ ରାତ୍ରିଭୋଜନରେ ମିଳିତ ହେଲେ । ରାତ୍ରିଭୋଜନରେ କମିଶନର, ତାଙ୍କର ସ୍ତ୍ରୀ ଓ ୧୧ତମ ବାହିନୀର କର୍ଣ୍ଣେଲ ବସିଥିବା ଅବସ୍ଥାରେ ଖବର ପହଞ୍ଚିଲା

ଯେ ପ୍ରାଚୀରମାନଙ୍କର ବହୁ ଘୋଷଣାପତ୍ର ମରାଯାଇଛି । ଏ ସମସ୍ତ ବ୍ୟାପାରକୁ କେହି ବିଶେଷ ଗୁରୁତ୍ୱ ନ ଦେଇ ନିଜ ନିଜ ଘରକୁ ଯାଇ ନିଦ୍ରାଗଲେ ।

ପାଠକଙ୍କର ଅବଗତି ନିମନ୍ତେ ବର୍ତ୍ତମାନ ମିରଟର ସୈନ୍ୟ ଛାଉଣୀର ବର୍ଣ୍ଣନା କରାଯାଉ । ସେ ସମୟରେ ଏହା ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ବୃହତ୍ ସେନା ଛାଉଣୀ ଥିଲା । ଏହାର ବ୍ୟାସ ପାଞ୍ଚ ମାଇଲ ଥିଲା, ଏହାର ମଧ ନେଇ ଏକ ନଳା ଯାଇ, ତାହାକୁ ଦୁଇ ଭାଗରେ ବିଭକ୍ତ କରୁଥିଲା । ଏକ ଭାଗରେ, ଇଂରାଜି ସେନା ଓ ଅନ୍ୟଟିରେ, ଦେଶୀସେନା ଥିଲେ । ଉତ୍ତର ଦିଗରେ ଇଂରାଜିମାନେ ରହୁଥିଲେ । ଦକ୍ଷିଣ ଦିଗରେ ଗୋଲନ୍ଦାଜ ବାହିନୀ ଅବସ୍ଥାପିତ ଥିଲା । ମଧ ଭାଗରେ ରାଇଫଲ ବାହିନୀ ଥିଲା । ଏହି ଉଭୟ ଛାଉଣୀ ଶେଷରେ ଛାଉଣୀର ଚର୍ଚ୍ଚଥିଲା । ଏହାର ଉତ୍ତରକୁ, ସମତଳ ଭୂମି ବିଶିଷ୍ଟ ପ୍ୟାରେଡ ପଡିଆ ଥିଲା । ଛାଉଣୀର ଦକ୍ଷିଣ ଦିଗରେ, ଦେଶୀ ସିପାହୀମାନଙ୍କର ଅବସ୍ଥାନ ଥିଲା । ଦେଶୀ ଓ ଇଂରାଜି କ୍ୱାଟର ଓ ଛାଉଣୀ ମଝିରେ, କିଛି ଦୋକାନ ବଜାର ଓ ବଡ ବଡ ଗଛ ଆଦି ଥିଲା । ଏହାର ଆହୁରି ଦକ୍ଷିଣ ଦିଗକୁ, ମିରଟ ସହର ଅବସ୍ଥିତ ଥିଲା । ଉତ୍ତର ଦିଗରେ, ଇଂରାଜୀ ରେଜିମେଣ୍ଟ ଓ ଗୋଲନ୍ଦାଜ ବାହିନୀର ଅଫିସରମାନେ ବଙ୍ଗଳାରେ ରହିଲା ବେଳକୁ, ଦେଶୀ ଅଫିସରମାନଙ୍କୁ ସିପାହୀମାନଙ୍କ ସହିତ ରହିବାକୁ ପଡୁଥିଲା । ଦକ୍ଷିଣରେ, ବ୍ରିଗେଡିଅରଙ୍କର ଘର ଥିଲା । ଏହା ଗୋଲନ୍ଦାଜ ବାହିନୀ ଛାଉଣୀ ଓ ମେସ୍ ଘରର ନିକଟରେ ଥିଲା । ଦେଶୀବାହିନୀର ପାଖାପାଖି ଜେନେରାଲଙ୍କର ଘର ଥିଲା । ଦେଶୀବାହିନୀ ଓ ଇଂରାଜୀ ବାହିନୀର ଦୂରତା ଓ ମଝିରେ ଥିବା ନଳା ହେତୁ ଦେଶୀ ବାହିନୀର କାର୍ଯ୍ୟ କଳାପ ବିଷୟରେ ଇଂରାଜି ଅଫିସର ମାନେ କିଛି ଜାଣିବା ବିଶେଷ ସମ୍ଭବ ନ ଥିଲା ।

ସେହିଦିନ ଅପରାହ୍ନରେ 'ଗଫ୍' ନିଜର କ୍ୱାଟରରେ ଥାଇ ସାରାଦିନର ଘଟଣାବଳୀ ବସି ଚିନ୍ତାକରୁଥିବା ସମୟରେ, ଜଣେ ଦେଶୀ ସୁବେଦାର ଆସି ତାଙ୍କୁ ଖବର ଦେଇ କହିଲା- ''ସାହେବ, ବଜାରରେ ଲୋକମାନଙ୍କର କଥାବାର୍ତ୍ତାରୁ ଜଣାଯାଉଛି ଯେ ୩ୟ ଘୋଡସବାର ବାହିନୀର ସିପାହୀମାନେ ଆଜିର ଘଟଣାବଳୀରେ ଅତ୍ୟନ୍ତ ଉତ୍ତେଜିତ ହୋଇପଡିଛନ୍ତି । ସମସ୍ତଙ୍କୁ ସେମାନେ ଏହି କଥା କହୁଥିଲେ ଓ ଆହୁରି ମଧ କହୁଥିଲେ ଯେ ସେମାନେ ଜେଲଖାନାର କଏଦୀମାନଙ୍କୁ ମୁକ୍ତ କରିବେ । ସେମାନେ ସମସ୍ତେ ଅତ୍ୟନ୍ତ ଗଣ୍ଡଗୋଳିଆ ମିଜାଜ୍‌ରେ ଅଛନ୍ତି ।'' 'ଗଫ୍' ପଚାରିଲେ, ''କେବେ ମୁକ୍ତ କରିବେ ବୋଲି କହୁଥିଲେ ?'' ଉତ୍ତରରେ

ସୁବେଦାର କହିଲେ, "କାଲି, ଯେଉଁ ସମୟରେ ବ୍ରିଟିଶ୍ ସୈନ୍ୟମାନେ ଚର୍ଚ୍ଚରେଥିବେ ।" 'ଗଫ୍'ଙ୍କୁ ସାମାନ୍ୟ ଆଶ୍ୱସ୍ତି ବୋଧ ହେଲା । ସେ ତୁରନ୍ତ 'କର୍ଣ୍ଣେଲ ସ୍ମିଥ୍'ଙ୍କ ପାଖକୁ ଗଲେ । କିନ୍ତୁ କର୍ଣ୍ଣେଲ ଏହାକୁ ଏକ ମନଗଢା କାହାଣୀ କହି ଉଡାଇ ଦେଲେ । ଏଣୁ 'ଗଫ୍', 'ବ୍ରିଗେଡିଅର ଉଇଲ୍ସନ୍' (Wilson)ଙ୍କ ପାଖକୁ ଗଲେ । କିନ୍ତୁ ବ୍ରିଗେଡିଅର ତାଙ୍କର ଦାଢିରେ ହାତମାରି କହିଲେ,"ଏହା ଅସମ୍ଭବ, ଏପରି କେବେହେଲେ ହୋଇ ନପାରେ" । ଜେନେରାଲ ମଧ୍ୟ ନିଶ୍ଚିନ୍ତରେ ଥିଲେ । ଏଣୁ 'ଗଫ'ଙ୍କର କ୍ୱାଟରକୁ ଫେରିଯିବା ବ୍ୟତୀତ ଆଉ କୌଣସି ଉପାୟ ନଥିଲା ।

ମେ ଦଶତାରିଖ ସକାଳର ସୂର୍ଯ୍ୟୋଦୟ ହେଲା । ଇଂରାଜିମାନେ ଚର୍ଚ୍ଚକୁ ଯିବାକୁ ପ୍ରସ୍ତୁତ ହେଉଥିଲେ । କିନ୍ତୁ ଚତୁର୍ଦ୍ଦିଗ ନିସ୍ତବ୍ଧଥିଲା ଓ କିଛି ପରିମାଣରେ ଅସ୍ୱାଭାବିକ ବୋଧ ହେଉଥିଲା । ଦେଶୀ ଭୃତ୍ୟମାନେ କେହି ହେଲେ କାମକୁ ଆସିନଥିଲେ । କିନ୍ତୁ ଏହିପରି ମଧ୍ୟ ବେଳେ ବେଳେ ହୋଇଥାଏ । ଏଣୁ ଏହା ଉପରେ କେହି ଗୁରୁତ୍ୱ ନେଇନଥିଲେ । 'ଗଫ୍' ସକାଳର ଚର୍ଚ୍ଚ ସର୍ଭିସ ପରେ ତାଙ୍କ ବାନ୍ଧବୀ ଓ କମିଶନରଙ୍କ ପତ୍ନୀ 'ମିସେସ୍ ଗ୍ରୀଥେଡ'(Mrs. Greathed)ଙ୍କ ସହିତ ବାର୍ତ୍ତାଳାପ କରିବାକୁ ଆସିଲେ । ଚର୍ଚ୍ଚର-ଦୁଆର ସାମନାରେ ଉଭୟେ ଛିଡା ହୋଇ କଥାବାର୍ତ୍ତା ହେବାକୁ ଲାଗିଲେ । 'ଗଫ୍' ତାଙ୍କୁ ପୂର୍ବ ଦିନର ସମସ୍ତ ଘଟଣାବଳୀ କହିଲେ । ସେ ଆଶା କରିଥିଲେ ଯେ 'ମିସେସ୍ ଗ୍ରୀଥେଡ' ଏବିଷୟ ତାଙ୍କ ସ୍ୱାମୀଙ୍କୁ କହିବେ । ମଧ୍ୟାନ୍ନ ଭୋଜନ ପରେ, 'ଗଫ'ଙ୍କର ସଙ୍ଗୀମାନେ ଖେଳରେ ମାତିଲା ବେଳକୁ ସେ ବିଛଣାକୁ ଗଲେ ।

ଏ ମଧ୍ୟରେ ସର୍ବତ୍ର ଏକ ପ୍ରକାର ଚାପା ଉତ୍ତେଜନା ଓ ଗୁମ୍‌ସୁମ୍ ଭାବ ବ୍ୟତୀତ କୌଣସି ବିଶେଷ ଘଟଣା ଘଟି ନଥାଏ । ଅପରାହ୍ନ ସମୟରେ ଦଳଦଳହୋଇ ଲୋକ ବଜାରରେ ଜମା ହେଲେ । ସିପାହୀମାନେ ମଧ୍ୟ ବଜାରକୁ ସଦାବେଳ ପରି ବୁଲିବାକୁ ଆସିଥିଲେ । ପ୍ରତି ଲୋକହାତରେ କିଛିନା କିଛି ଅସ୍ତ୍ର ଥିଲା । ଏହି ଲୋକମାନେ ସବୁ ଆଖ ପାଖ ବସ୍ତି ଅଞ୍ଚଳ ଓ ଗାଁ ମାନଙ୍କରୁ ଆସିଥିଲେ । ଏହି ସମସ୍ତେ ବଜାରରେ ଏକତ୍ରିତ ହେବା ଫଳରେ ଏକ ବିଚିତ୍ର ପ୍ରକାର ଉତ୍ତେଜନାର ପ୍ରକାଶ ହେଲା । ସମସ୍ତଙ୍କର ମୁହଁରେ ଇଂରାଜିମାନଙ୍କ ପ୍ରତି କ୍ରୋଧ ଓ ଘୃଣାର ଭାବ ପରିଲକ୍ଷିତ ହେଉଥିଲା ଓ ହୃଦୟରେ ପ୍ରତିଶୋଧପରାୟଣପ୍ରବୃତ୍ତିର ଉଦୟ ହେଉଥିଲା । ସେହିଠାରେ, ବଜାରରେ ବୁଲୁଥିବା ବେଶ୍ୟାମାନେ ସିପାହୀମାନଙ୍କୁ ଥଟ୍ଟାକରି

କହିଥିଲେ "ତୁମର ସାଥି ଭାଇମାନେ ଜେଲରେ ଥିବା ବେଳେ ତମେମାନେ ଏଠି କେମିତି? ଏଠାକୁ କଣ ମାଛି ହୁରୁଡେଇବାକୁ ଆସିଛ?" ଏହି ପରି ବହୁ ପ୍ରକାରେ ତାଚ୍ଛଲ୍ୟ ପୂର୍ଣ୍ଣ ବାକ୍ୟ ସିପାହୀମାନେ ଶୁଣିଗଲା ପରେ ସେମାନଙ୍କ ମଧ୍ୟରେ ଉତ୍ତେଜନା ଅଣଆୟତ୍ତ ଅବସ୍ଥାକୁ ଆସିଲା । ଏହି ସମୟରେ ହଠାତ୍ ହଲ୍ଲା ହୋଇଗଲା ଯେ, ଇଂରାଜି ସୈନ୍ୟମାନେ ଆସୁଛନ୍ତି । ଏହାର ତୁରନ୍ତ ପ୍ରଭାବ ସିପାହୀମାନଙ୍କ ଉପରେ ପଡିଲା ଓ ସେମାନେ ଆକ୍ରମଣ ଆଶଙ୍କାରେ ବ୍ୟାରାକ୍ ଆଡକୁ ଅସ୍ତ୍ରପାଇଁ ଦଉଡିଲେ । ବ୍ୟାରାକ୍‌ରେ ମଧ୍ୟ ଏ ଖବର ନିଆଁ ପରି ବ୍ୟାପିଗଲା । ଏଣୁ, ଘୋଡସବାର ବାହିନୀର ସିପାହୀମାନେ ନିଜ ନିଜ ଘୋଡାରେ ଅସ୍ତ୍ର ଧରି ବସି ଓ ପଦାତିକ ବାହିନୀ ନିଜ ନିଜ ରାଇଫଲ ଧରି ଏକତ୍ରିତ ହୋଇଗଲେ । ସେମାନଙ୍କର ପ୍ରଥମ ଲକ୍ଷ୍ୟ ହେଲା, ଯେଉଁ ହାସପାତାଲରେ ବନ୍ଦୀମାନଙ୍କୁ ରଖାଯାଇଥିଲା, ସେଠାରୁ ସେମାନଙ୍କୁ ମୁକ୍ତ କରିବା । ସେମାନଙ୍କୁ ରୋକିବା ପାଇଁ ସେଠାରେ କେହି ନଥିଲେ । ଏଣୁ ଶହେଜଣ ଘୋଡାସବାର ବାହିନୀ ସେମାନଙ୍କ ଘୋଡାରେ ଛୁଟି ଗଲେ । ହଠାତ୍ ଦୋକାନ ବଜାର ସବୁ ଧଡାଧଡ୍ ବନ୍ଦ ହୋଇଗଲା । ବିଂଶତମ ପଦାତିକ ବାହିନୀ ପ୍ୟାରେଡ୍ ପଡିଆରେ ଏକତ୍ରିତ ହେବା ପରେ, ସଙ୍ଗେ ସଙ୍ଗେ ଶସ୍ତ୍ରାଗାର ଲୁଣ୍ଠନ କଲେ ।

ଅପରାହ୍ଣରେ 'ଗଫ୍' ବିଛଣାରୁ ଉଠିଲେ । ସେଦିନ ଖୁବ୍ ଗରମ ପଡିଥାଏ । ଉତ୍ତର ଭାରତରେ ଅପରାହ୍ଣରେ ଶୀଘ୍ର ଅନ୍ଧାର ହୋଇ ଶୀଘ୍ର ଥଣ୍ଡା ମଧ୍ୟ ଅନୁଭୂତ ହୁଏ । ଗଫ ଉଠି ଛିଡା ହେଲେ, ଏହି ସମୟରେ ହଠାତ୍ କାହାର ପାଦଶବ୍ଦ ଶୁଣିବାକୁ ମିଳିଲା । ତାଙ୍କର ଅଡର୍ଲି ଅତ୍ୟନ୍ତ ଭୟ ବିହ୍ୱଳ ହୋଇ ଚକ୍ଷୁବିସ୍ଫାରିତ କରି ଆସି କହିଲା, "ସାହେବ୍, ଲାଇନ୍‌ରେ ଥିବା ସାହେବ ମାନଙ୍କର ଘର ଗୁଡିକରେ ନିଆଁ ଜଳୁଛି ।" 'ଗଫ୍' ପଚାରିଲେ, "କଣ ଅଘଟଣ ଘଟିଛି ସୁବେଦାର ସାହେବ?" ସୁବେଦାର କହିଲେ, "ସବୁ ଗଣ୍ଡଗୋଳ ହୋଇଯାଇଛି ସାହେବ ! ଦେଶୀ ବାହିନୀ ବିଦ୍ରୋହ ଆରମ୍ଭ କରିଛନ୍ତି । ସେମାନେ ଆମର ରେଜିମେଣ୍ଟର ଅଫିସରମାନଙ୍କୁ ହତ୍ୟା କରୁଛନ୍ତି । ସେମାନେ ସଶସ୍ତ୍ର ଓ ଘୋଡାରେ ସବାର ହୋଇଛନ୍ତି ।" ସେ ଏହିପରି ବର୍ଣ୍ଣନା କରିବା ସମୟରେ ଦୂରରେଥିବା ସିପାହୀ ଛାଉଣୀରୁ ବହୁ ଗୁଳି ଫୁଟିବାର ଶବ୍ଦ ଶୁଣାଗଲା । ପ୍ୟାରେଡ ପଡିଆ ସେପଟରେ ଥିବା ବଙ୍ଗଳା ପଛରୁ କଳାଧୂଆଁର ବାଦଲ ଉଠୁଥିଲା । 'ଗଫ' ତୁରନ୍ତ ପୋଷାକ ପିନ୍ଧି ବାହାରି ପଡିଲେ । ସଇଶ ଘୋଡା ଆଣି ଦୁଆର ମୁହଁରେ ଛିଡା କରାଇଲା, ତାହା ଅଧା ଆରବ ଓ ଅଧା ୱାଲର ଜାତୀୟ ଘୋଡାଥିଲା । ସେ ମୁହଁ ତଳକୁ କରି ଖୁରା ପିଟି ହେଉଥିଲା । ସଇସ ତାହାକୁ

ଶାନ୍ତ କରାଉଥିଲା । ସଇସ ତାହାର ମୁହଁକୁ ଏକ ମୁଥ ମାରି ପଛକୁ ବୁଲାଇ ଦେଲା ଓ 'ଗଫ୍' ସୁବିଧାରେ ଘୋଡା ଉପରେ ବସିଗଲେ । ଯେଉଁମାନେ 'ଗଫ'ଙ୍କୁ ସାବଧାନ କରାଇବାକୁ ଆସିଥିଲେ ସେମାନେ ତାଙ୍କ ସାଥିରେ ଯିବା ପାଇଁ ଆଗ୍ରହ ପ୍ରକାଶ ନକଲେ ମଧ ପରିଶେଷରେ ବିଶେଷ ଚାପ ପ୍ରୟୋଗରେ ଯାଇଥିଲେ ।

ଗଫ୍ ଛାଉଣୀ ପାଖରେ ପହଞ୍ଚି ଘରଗୁଡିକ ଜଳୁଥିବାର ଦେଖିଲେ । ସିପାହୀମାନେ ଗୋଳାବାରୁଦ ଉପରେ ନିଜର ଅଧିକାର ଜମାଇ ନିଜ ନିଜର ବନ୍ଧୁକକୁ ପବନରେ ହଲାଇ ନାଚୁଥିଲେ । ଆଉ ଦଳେ ନିଆଁହୁଳା ଧରି ଘର ଛାତ ଉପରକୁ, ଝରକା ଭିତରକୁ ଫିଙ୍ଗୁଥିଲେ ଓ ଚିତ୍କାର କରୁଥିଲେ । ଅନ୍ୟମାନେ ରାଇଫଲ ଓ କମରପଟି ଭରା ଗୁଳି ନେଇ ଧାଁ ଦଉଡ କରୁଥିଲେ । 'ଗଫ୍', ଏ ସମସ୍ତ ଅଭାବିତ ଘଟଣା ଦେଖି ହଠାତ୍ କିଂକର୍ତ୍ତବ୍ୟବିମୂଢ ହୋଇଗଲେ । 'ଗଫ୍'ଙ୍କୁ ଦେଖି ସିପାହୀମାନେ ତାଙ୍କ ଆଡକୁ ମାଡିଆସିଲେ ଓ ଚିତ୍କାର କରି ଗଫ୍‌ଙ୍କ ସାଥିରେ ଥିବା ସମସ୍ତଙ୍କୁ କହିଲେ, ''ତାକୁ ତୁରନ୍ତ ଛାଡିଦିଅ ନହେଲେ ଆମେ ତୁମକୁ ମଧ ହତ୍ୟା କରିବୁ ।'' ସାଥିରେ ଥିବା ସୁବେଦାର, 'ଗଫ୍'ଙ୍କ ଆଡକୁ ବୁଲିଗଲେ ଓ କହିଲେ,''ତୁରନ୍ତ ଏ ଜାଗାରୁ ପଳେଇବା ସାହେବ, ନହେଲେ ଏମାନେ ଆମ ସମସ୍ତଙ୍କୁ ମାରିଦେବେ ।'' 'ଗଫ୍'ଙ୍କୁ ମଧ ତାହାର ସତ୍ୟତା ଅନୁଭୂତ ହେଲା । ତତ୍‌କ୍ଷଣାତ୍ ସେ ଅନ୍ୟମାନଙ୍କ ସହ ସେ ସ୍ଥାନ ତ୍ୟାଗ କରିଲେ । କିଛି ଗୁଳି ତାଙ୍କ ମୁଣ୍ଡ ଉପର ଦେଇ ଚାଲିଗଲା । କିନ୍ତୁ ସେ ଆଘାତ ପ୍ରାପ୍ତ ହେଲେ ନାହିଁ ।

ଏହାପରେ ସେ ନିଜର ବାହିନୀର ବ୍ୟାରାକ୍‌କୁ ନେଲେ । ସେ ଭାବିଥିଲେ ସେଠାରୁ ସିପାହୀମାନଙ୍କୁ ଆଣି ଅନ୍ୟମାନଙ୍କୁ ଶାନ୍ତ କରାଇବାକୁ । କିନ୍ତୁ ସେଠାରେ ପହଞ୍ଚି ସେ କୋଳାହଳ ଓ ଅସ୍ତ୍ରାଗାର ଲୁଣ୍ଠନ ଦେଖିଲେ । ସିପାହୀମାନେ ରାଇଫଲ ସହ ମାଳ ମାଳ ଗୁଳି ଧରି ବୁଲୁଥିଲେ । ପ୍ରଥମେ ତାଙ୍କର କେହି କିଛି କ୍ଷତି କଲେ ନାହିଁ । କିନ୍ତୁ ''ମାରୋ ଫିରିଙ୍ଗିକୋ, ମାରୋ ଫିରିଙ୍ଗିକୋ !'' ଏହିପରି ଚିତ୍କାର କରୁଥିଲେ । 'ଗଫ୍' ଘୋଡାରେ ବସିରହି ଆଦେଶ ଦେଲେ ମଧ, କେହି ମାନିବା ଅବସ୍ଥାରେ ନ ଥିଲେ । ଏହି ସମୟରେ ଜଣେ କେହି ପିସ୍ତଲରୁ ଗୁଳି କଲା । ତାହା 'ଗଫ୍'ଙ୍କର ଘୋଡାର ରୋକାବିରେ ବାଜିଲେ ମଧ ତାଙ୍କର କିମ୍ବା ଘୋଡାର କିଛି କ୍ଷତି ହେଲା ନାହିଁ । ସେ ଅସହାୟ ଭାବରେ ଘୋଡା ପିଠିରେ ବସି ରହିଥିବା ସମୟରେ ଆଉଜଣେ ଇଂରାଜି 'କ୍ୱାଟର ମାଷ୍ଟର ସର୍ଜେଣ୍ଟ କନିଂହାମ'(Quarter master sergent Cunningham)ଙ୍କୁ ଦେଶୀ ଘୋଡାସବାର ସିପାହୀମାନେ ହାତରେ ତଲବାର

ଧରି ଘଉଡାଇ ଆଣୁଥିଲେ । ଜଣେ ଅର୍ଡର୍ଲି, 'ଗଫ୍'ଙ୍କ ଘୋଡାର ମୁହଁକୁ ଇଂରାଜି ଛାଉଣୀ ଆଡକୁ ବୁଲାଇଦେଲା । ଘୋଡା ଆଗକୁ ଛୁଟିଗଲା ଓ 'କନିଂହାମ' ମଧ୍ୟ ତାଙ୍କ ସହିତ ଘୋଡାରେ ଗଲେ । 'ଗଫ୍'ଙ୍କ ସହିତ ଆସିଥିବା ଦେଶୀ ଅନୁଚରମାନେ ସିପାହୀମାନଙ୍କ ସହିତ ମିଶିଗଲେ ।

ସବୁ ରାସ୍ତା ଅବରୋଧ କରାଯାଇଥିଲା ଓ ଘରଗୁଡିକ ଜଳୁଥିଲା । କେବଳ ବଜାର ବାଟେ ହିଁ ବାହାରିବାର ଏକ ମାତ୍ର ରାସ୍ତାଥିଲା । ଏଠାରେ ମଧ୍ୟ ରାସ୍ତାରେ ଖୁବ୍ ଲୋକଗହଳି ହୋଇଥିଲା । ଲୋକମାନେ ତଲବାର ଆଦି ବିଭିନ୍ନ ଅସ୍ତ୍ର ଧରିଥିଲେ । ସେମାନେ ପାନ ଚୋବାଇ ରକ୍ତ ବର୍ଣ୍ଣର ପିକ ପକାଉଥିଲେ । ସେମାନେ 'କନିଂହାମ' ଓ 'ଗଫ୍'ଙ୍କୁ ଦେଖି ଭୀଷଣ ଚିତ୍କାର କଲେ ଓ ଅସ୍ତ୍ରମାନ ଧରି ମାଡି ଆସିଲେ । 'ଗଫ୍' ଓ 'କନିଂହାମ' ସେମାନଙ୍କ ମଧ୍ୟକୁ ଖୁବ୍ ଜୋରରେ ଘୋଡା ଛୁଟାଇବା ଫଳରେ ସେମାନେ ଦୁଇଭାଗ ହୋଇଗଲେ ଓ ତନ୍ମଧ୍ୟରେ ଉଭୟେ ଆଗେଇବାକୁ ଲାଗିଲେ । ରାସ୍ତାରେ ଯେଉଁ ଦୋକାନୀ ଓ ଅନ୍ୟମାନେ ସାଧାରଣତଃ ଦେଖିଲେ ହାତ ଉଠାଇ ମୁଣ୍ଡ ନୁଆଇଁ ସଲାମ କରିଥାଆନ୍ତି, ସେହିମାନଙ୍କୁ ଉତ୍ତେଜିତ ଅବସ୍ଥାରେ ରହି ସେ ଦୁଇଜଣଙ୍କୁ ଅକଥ୍ୟ ଭାଷାରେ ଗାଳିଗୁଲଜ କରୁଥିବା ଦେଖି ସେମାନେ ବିମୂଢ ହୋଇଗଲେ । ପରିସ୍ଥିତି ସେମାନଙ୍କ ପାଇଁ ଖୁବ୍ ବିପଜ୍ଜନକ ଥିଲା । 'ଗଫ୍' ମନେକଲେ, ତାଙ୍କର ବନ୍ଧୁ ମାନେ ଏ ଅବସ୍ଥାରେ କିପରି ଅଛନ୍ତି ଦେଖି ଆସିବାଟା ଭଲ ହେବ । ଏଣୁ ସେ 'କନିଂହାମ'ଙ୍କ ସହିତ କମିଶନଙ୍କର ବଙ୍ଗଳାରେ ଯାଇ ପହଞ୍ଚିଲେ । ନିଜର ଆତ୍ମବିଶ୍ୱାସ ଜାଗ୍ରତ କରିବା ପାଇଁ ସେ କୌଣସି ଉପରିସ୍ଥ ଅଫିସରଙ୍କୁ ଦେଖାକରିବାକୁ ଚାହୁଁଥିଲେ । 'ଗଫ' ଓ 'କନିଂହାମ' ବଙ୍ଗଳାର ଫାଟକ ଡେଇଁ ଘୋଡା ଛୁଟାଇ ନେଲେ ଏବଂ ଘରର କବାଟ ପାଖରେ ଯାଇ ଶବ୍ଦ କଲେ । କମିଶନରଙ୍କର ଦୁଇଜଣ ଭୃତ୍ୟ ଆସିଲେ ଓ ସେମାନଙ୍କୁ ଭିତରକୁ ଯିବାକୁ ଦେଲେ ନାହିଁ । ସେମାନେ କହିଲେ,''ସେମାନେ ଏଠାରେ ନାହାନ୍ତି ସାହେବ, ସେମାନେ ଗାଡିରେ ଲୁଚି ପଳାଇଛନ୍ତି ।'' 'ଗଫ' ଦେଖିଲେ ବୃଥା ସମୟ ନଷ୍ଟ କରି ଲାଭ ନାହିଁ ଏଣୁ ସେ ଓ 'କନିଂହାମ' ନିଜ ରାସ୍ତାରେ ଘୋଡା ଛୁଟାଇ ଦେଲେ । ପ୍ରକୃତରେ ଭୃତ୍ୟ ଦୁଇଟି ବିଶ୍ୱସ୍ତ ଥିଲେ ଓ ସେମାନେ ପୋଡାଜଳା ଦେଖି ଗ୍ରିଥେଡ ପରିବାରକୁ ଛାତ ଉପରେ ରଖାଇଥିଲେ । ଫଳରେ ସେମାନେ ଦେଶୀ ସିପାହୀଙ୍କ ଦୃଷ୍ଟିର ଅନ୍ତରାଳରେ ଥିଲେ । ବିଦ୍ରୋହୀ ସିପାହୀମାନଙ୍କୁ ସେମାନେ ଏଣୁ ତେଣୁ କହି ବିଦା କରିଦେଉଥିଲେ । ଛାତ ଉପରୁ 'ଗ୍ରିଥେଡ' ଦେଖିଲେ ଯେ ଗଫ୍ ଆସି ଫେରିଗଲେ ।

କିଛିକ୍ଷଣ ପାଇଁ ତାଙ୍କର ଭୃତ୍ୟ ଦୁଇଜଣଙ୍କ ଉପରେ ସନ୍ଦେହ ହେଲା । କିନ୍ତୁ ଭୃତ୍ୟ ଦ୍ୱୟ ସେମାନଙ୍କ ଜୀବନ ରକ୍ଷା କରିବା ପାଇଁ ବାରମ୍ବାର ଶପଥ କରିବା ଫଳରେ ଓ ସେମାନଙ୍କୁ ବାସ୍ତବ ପରିସ୍ଥିତି ବୁଝାଇବା ଫଳରେ ସେମାନେ ଆଶ୍ୱସ୍ତ ହେଲେ । ଏହି ସମୟରେ ବିଦ୍ରୋହୀ ସିପାହୀ ମାନେ ଘର ଭିତରକୁ ପଶି କାହାକୁ ନ ଦେଖି ସମସ୍ତ ଜିନିଷ ଭଙ୍ଗାରୁଜା କରି ଓ ଘରେ ନିଆଁ ଲଗାଇ ପଳାଇଗଲେ ।ସେମାନେ ଚାଲିଗଲା ପରେ ଭୃତ୍ୟ ଦ୍ୱୟ ଗ୍ରୀଥେଡ ଦମ୍ପତିଙ୍କୁ ଛାତ ଉପରୁ ଆଣି ଉଦ୍ୟାନରେ ଲୁଚାଇ ରଖିଥିଲେ । ଏହି ଦମ୍ପତି ପରଦିନ ସକାଳୁ ଲୁଚି ପଳାଇଗଲେ ।

ସେହିଦିନ ସୂର୍ଯ୍ୟ ଅସ୍ତ ପରେ ପାଦ୍ରୀ ଓ ଅନ୍ୟମାନେ ଚର୍ଚ୍ଚକୁ ପ୍ରାର୍ଥନା କରିବାକୁ ଯାଇଥିଲେ । ସେଠାରେ ସେମାନେ ଗୁଳିଶବ୍ଦ ଓ ଦୂରରୁ ନିଆଁ ଓ ଧୂଆଁ ଦେଖିବାକୁ ପାଇଲେ । ପୂର୍ବରୁ କୁହାଯାଇଛି ଯେ ଇଂରାଜି ସିପାହୀମାନେ ଅସ୍ତ୍ରାଗାର ଦଖଲ କରି ସମସ୍ତ ଦେଶୀ ସିପାହୀମାନଙ୍କର ହାତ ଓ ଗୋଡରେ ବେଡି ପକାଇଦେବେ ବୋଲି ଖବର ପ୍ରଚାରିତ ହୋଇଥିଲା । ସିପାହୀମାନେ ଏହି ଉଡାଖବରର ସତ୍ୟତା ଜାଣିବାପାଇଁ ବଜାରରୁ ଫେରୁଥିଲେ । ଏହି ସମୟରେ ଷାଠିଏ ତମ ରାଇଫଲ ବାହିନୀ ଚର୍ଚ୍ଚପ୍ୟାରେଡ ପାଇଁ ପ୍ରସ୍ତୁତ ହେଉଥିଲେ । ୩ୟ ଘୋଡାସବାର ବାହିନୀ ପୂର୍ବରୁ ବହୁ ଉତ୍ତେଜିତ ହୋଇ ରହିଥିଲେ । ପଞ୍ଚାଅଶୀ ଜଣ ବନ୍ଦୀଙ୍କର ମର୍ମାନ୍ତିକ ସ୍ମୃତି ସେମାନଙ୍କ ଭିତରେ ଜୀବନ୍ତ ହୋଇଥିଲା । ଏଣୁ ସେମାନେ ତୁରନ୍ତ ନିଜ ନିଜର ଘୋଡାରେ ଅସ୍ତ୍ରସହ ସବାର ହୋଇଗଲେ । ସେମାନେ ନିଜର ବନ୍ଧୁ ମାନଙ୍କୁ ମୁକ୍ତ କରିବାପାଇଁ ବନ୍ଦୀଶାଳା ଆଡକୁ ମାଡିଚାଲିଲେ । ସେତେବେଳେ ସେଠାରେ କୌଣସି ଇଂରାଜି ରକ୍ଷୀ ପହରାରେ ନଥିଲେ । ତୃତୀୟ ଘୋଡାସବାର ବାହିନୀ ଜେଲ ଫାଟକ ପାଖରେ ପହଞ୍ଚିଲେ । ଜେଲର ୱାର୍ଡର ଓ ପୁଲିସମାନେ ସେମାନଙ୍କର ମୁହଁକୁ ଚାହିଁ ରହିଲେ । ସିପାହୀମାନେ ଉନ୍ମତ୍ତ ହୋଇ ଜେଲ ଭିତରେ ବଳପୂର୍ବକ ପଶି ନିଜ ସାଥିମାନଙ୍କର ହାତରୁ କଡି ଓ ପାଦରୁ ବେଡି କାଟିପକାଇଲେ ଓ ଚିତ୍କାର କରି କରି ବାହାରକୁ ଆସିଲେ । ଏହିପରି ସିପାହୀମାନଙ୍କ ସହିତ ଅନ୍ୟ ସମସ୍ତ ବନ୍ଦୀମାନେ ମଧ୍ୟ ମୁକ୍ତ ହୋଇଗଲେ । ଜେଲର ଓ ୱାର୍ଡର ମାନେ ମଧ୍ୟ ସେମାନଙ୍କ ସହିତ ଯୋଗଦେଲେ । ସମସ୍ତେ କ୍ରୋଧ ଓ ଘୃଣା ପୂର୍ଣ୍ଣ ଅଭିବ୍ୟକ୍ତି ସହ ବ୍ୟାରାକ୍ ଆଡକୁ ମୁହାଁଇଲେ ।

ସେତେବେଳେ ବ୍ୟାରାକ୍‌ରେ ଅନ୍ଧକାର ଛାଇ ହୋଇଯାଇଥିଲା । ଛାଉଣୀ ଓ ବଙ୍ଗଳା ସବୁ ଜଳୁଥିଲା । 'କ୍ରେଗୀ'ଙ୍କ ବଙ୍ଗଳା ପାଖରେ 'ମିସେସ୍ ଚାମ୍ବର୍ସ' ରହୁଥିଲେ । ସେ ଗର୍ଭବତୀ ଥିଲେ ଓ ଘରେ ଏକୁଟିଆ ଥିଲେ । ସେହି ଉତ୍ତେଜିତ

ସିପାହୀମାନେ ତାଙ୍କୁ ଚିକି ଚିକି କରି କାଟି ପକାଇଲେ । ଇଂରାଜି ମାନଙ୍କ ଭିତରେ ଆତଙ୍କ ଛାଇଗଲା । ଏହି ସମୟରେ 'ମିସେସ୍ କ୍ରେଗୀ' ଓ 'ମିସେସ୍ ମ୍ୟାକେନ୍‌ଜି' ଚର୍ଚ୍ଚରୁ ଫେରୁଥିଲେ । ତାଙ୍କୁ ବହୁ କଷ୍ଟରେ ତାଙ୍କ ସଇସ ବଞ୍ଚାଇକରି ବଙ୍ଗଳାରେ ପହଞ୍ଚାଇଲା । ଉତ୍ତେଜିତ ଲୋକମାନେ ସେହି ବଙ୍ଗଳାକୁ ଘେରି ଗଲେ । ଏହି ସମୟରେ 'ମିଷ୍ଟର ମ୍ୟାକେନ୍‌ଜି' ସେଠାରେ ଆସି ପହଞ୍ଚି ସମସ୍ତ ଘଟଣା ସ୍ୱଚକ୍ଷୁରେ ଦେଖିଲେ । ସେ ଏକ ଦୁଃସାହସ କରି ବସିଲେ । ସେ ବଙ୍ଗଳାର ଫାଟକ ପାଖକୁ ଆସିଲେ ଓ ସମସ୍ତ ସିପାହୀମାନଙ୍କୁ ଚିତ୍କାର କରି କହିଲେ,''ଯେଉଁ ସ୍ତ୍ରୀ ଲୋକମାନେ ତୁମ ଶରଣରେ ଅଛନ୍ତି ସେମାନେ ତୁମରି ହାତରେ ହିଁ ଅଛନ୍ତି'' । ଏହି କଥାର ପ୍ରଭାବ ଲୋକମାନଙ୍କ ଉପରେ ପଡିଲା ଓ ସେମାନେ ଭାବପ୍ରବଣ ହୋଇ କହି ଉଠିଲେ,''ଆମେ ସ୍ତ୍ରୀ ମାନଙ୍କର ରକ୍ଷା କରିବୁ'' ।

ଯେତେବେଳେ ୩ୟ ଘୋଡାସବାର ବାହିନୀ, ଜେଲରୁ ବନ୍ଦୀମାନଙ୍କୁ ମୁକ୍ତ କରିବାକୁ ଗଲେ, ସେତେବେଳେ ବିଂଶତମ ପଦାତିକ ବାହିନୀ ପ୍ୟାରେଡ ପଡିଆରେ ଥିଲେ । ଏହାପରେ ସେମାନଙ୍କ ସହିତ ଏକାଦଶ ତମ ପଦାତକ ବାହିନୀ ମଧ ଯୋଗ ଦେଲେ । ଏହି ସମୟରେ ପରିସ୍ଥିତିର ଗୁରୁତ୍ୱ ବୁଝି 'ଜେନେରାଲ ହେଓ୍ୱିଟ୍', (Hewitt) 'ବ୍ରିଗେଡିୟର ଉଇଲସନ୍'ଙ୍କ ହାତରେ ସେନାର ଭାର ଅର୍ପଣ କଲେ । ସେ ସମୟରେ ଉଇଲସନ୍ ସଦ୍ୟ ବସନ୍ତ ରୋଗରୁ ଆରୋଗ୍ୟ ଲାଭ କରିଥିଲେ ଓ ତାଙ୍କର ଦୁର୍ବଳତା ମଧ ସମ୍ପୂର୍ଣ୍ଣ ଭାବରେ ଯାଇନଥିଲା । ଅପର ପକ୍ଷରେ ସେନାବାହିନୀ ମଧ୍ୟରୁ ଦେଶୀସେନାମାନେ ବିଦ୍ରୋହୀ ହୋଇଯିବା ଫଳରେ ସେନାର ଅଧିକାଂଶ ଭାଗ ବିଦ୍ରୋହରେ ଯୋଗଦେଇଥିଲେ । କେବଳ ଏକ ଘୋଡାସବାର ବାହିନୀ, ଏକ ଗୋଲନ୍ଦାଜ ବାହିନୀ ଓ ୬୦ତମ ପଦାତିକ ବାହିନୀର ଏକ ବ୍ୟାଟାଲିୟନ୍ ମାତ୍ର ଥିଲେ । ଏ ସମସ୍ତେ ଇଂରାଜ ଥିଲେ । ବ୍ରିଗେଡିୟର, ପ୍ରଥମେ ଗୋଲନ୍ଦାଜ ବାହିନୀର ନେତୃତ୍ୱ ନେଇ ଶସ୍ତ୍ରାଗାରକୁ ଗଲେ, କିନ୍ତୁ ସେଠାରେ ଗୁଳି ଗୁଳାର ଚିହ୍ନ ବର୍ଣ୍ଣ ନଥିଲା । ତାହା, ପୂର୍ବରୁ ସିପାହୀମାନେ ଲୁଟି କରି ନେଇଯାଉଥିଲେ । ସେଠାରେ କେବଳ ଗୁଳି ବିହୀନ ରାଇଫଲ ଗୁଡିକ ମୂଲ୍ୟହୀନ ବୋଧ ହେଲା । ଇଂରାଜି ବାହିନୀର ପ୍ରତ୍ୟେକଙ୍କର କୋଡିଏଟି ଲେଖାଏଁ ଗୁଳି ଥିଲା ଓ ତାହାରି ସହାୟତାରେ ଭଗ୍ନ ହୃଦୟରେ ସେମାନେ ଶାନ୍ତି ରକ୍ଷା କରିବାକୁ ଚେଷ୍ଟାକରି ବ୍ୟାରକ୍ ଆଡ଼କୁ ଗଲାବେଳକୁ ତାହା ଶୂନ୍ୟ ଥିଲା । ସେମାନେ ବିଦ୍ରୋହୀ ସିପାହୀମାନଙ୍କୁ ଖୋଜିବାକୁ ଲାଗିଲେ କିନ୍ତୁ କେବଳ ଇଂରାଜିମାନଙ୍କର ଜଳନ୍ତା ବଙ୍ଗଳା ଆଦି ଦେଖିବାକୁ ପାଇଲେ ।

୧୧ତମ ବାହିନୀକୁ ଶାନ୍ତ ରଖିବାପାଇଁ, 'କମାଣ୍ଡର ଫିନିସ୍' (Finnis), ପ୍ୟାରେଡ୍ ପଡିଆରେ ଆସି ପହଞ୍ଚିଲେ । ଠିକ୍ ଏହି ସମୟରେ, ତୃତୀୟ ଘୋଡସବାର ବାହିନୀ ଆସି ପହଞ୍ଚି ଘୋଷଣା କଲେ, ଯେ ସେମାନେ ବନ୍ଦୀଶାଳା ଭାଙ୍ଗିକରି ବନ୍ଦୀମାନଙ୍କୁ ମୁକ୍ତ କରିସାରିଛନ୍ତି ଓ ଜେଲ ଅଫିସର ଓ ପୁଲିସ ମାନେ ମଧ୍ଯ ସେମାନଙ୍କର ସାଥିରେ ଅଛନ୍ତି । 'କମାଣ୍ଡର ଫିନିସ୍' ଅନ୍ୟ ପକ୍ଷରେ ନିଜ ବାହିନୀକୁ ପ୍ରଭୁଭକ୍ତି ବିଷୟରେ ଭାଷଣ ଦେଉଥିଲେ । ତାହାଙ୍କର କଥା ସରିବା ଆଗରୁ, ଗୋଟିଏ ଗୁଳି ଆସି ତାଙ୍କର ଶରୀର ବିଦ୍ଧ କଲା ଓ ସେ ସେହିଠାରେ ଟଳି ପଡିଲେ । ଏହାପରେ ବିଂଶତମ ଓ ଏକାଦଶ ତମ ପଦାତିକ ବାହିନୀ ଏକତ୍ର ହୋଇ ସମସ୍ତ ଇଂରାଜି ଘର ଓ ଅନୁଷ୍ଠାନ ଆଦିରେ ନିଆଁ ଲଗାଇବାକୁ ଲାଗିଲେ । ରାତ୍ରି ଗାଢହେବା ସଙ୍ଗେ ସଙ୍ଗେ ଆଲୋକର ଶିଖା ଉଚ୍ଚରୁ ଉଚ୍ଚତର ହେବାକୁ ଲାଗିଲା । ଏହିପରି ଛାଉଣୀ, ବଜାର ଓ ବଙ୍ଗଳା ସବୁ ଜଳିବାକୁ ଲାଗିଲା । ତହିଁ ମଧ୍ୟରେ ଥିବା ଇଂରାଜିମାନେ ଜୀବନ ବିକଳରେ ପ୍ରାଣରକ୍ଷା ପାଇଁ ଦୌଡିଲେ । ଯିଏ ସମ୍ମୁଖରେ ପଡିଲା ସେ ପ୍ରାଣ ଦେଲା । କେହି କେହି ଅନ୍ଧାରରେ, ଭଙ୍ଗାଘରରେ, ବୁଦା ମୂଳରେ ବା ଅନ୍ୟ ସେହିପରି ସ୍ଥାନରେ ଲୁଚି ରହି ପ୍ରାଣ ରକ୍ଷାକରିବାକୁ ଲାଗିଲେ ।

'ମାକେନ୍‌ଜି' ଦେଖିଲେ ସ୍ତ୍ରୀ ମାନଙ୍କର ପ୍ରାଣ କୌଣସି ପ୍ରକାରେ ବଞ୍ଚିଗଲା । ସେ ସେମାନଙ୍କୁ ଉପର ମହଲାକୁ ଯିବାକୁ କହି, ସେମାନଙ୍କର ହାତରେ ବନ୍ଧୁକ ଧରାଇଦେଲେ । ଏହାପରେ ମାକେନ୍‌ଜି ବାରଣ୍ଡା ଆଡକୁ ଯାଇ, ଖସି ପଳାଇବା ପାଇଁ କୌଣସି ନିରାପଦ ସୂତ୍ରର ସନ୍ଧାନ କଲେ । କାଠ ଓ ମଣିଷର ପୋଡାଗନ୍ଧ ରାତ୍ରି ପବନରେ, ବାତାବରଣକୁ ଭୟାବହ କରି ତୋଳୁଥିଲା । ବାଉଁଶ ଗୁଡିକର ଗଣ୍ଠି ଫାଟି ଠୋ ଠା ଶବ୍ଦ କରୁଥିଲା । କିଛି ଦେଶୀ ଲୋକ, ସେହି ନିଆଁରେ ମାକେନ୍‌ଜିଙ୍କୁ ଦେଖିପକାଇ ଚିତ୍କାର କଲେ, ''ଫିରିଙ୍ଗି ଫିରିଙ୍ଗି, ମାରୋ ଫିରିଙ୍ଗି କୋ!. ଏଇଟାକୁ ଘର ସାଙ୍ଗରେ ପୋଡିଦେବା !'' ଏହା କହି ଚିତ୍କାର କରି କରି ସେମାନେ ହାତରେ ମଶାଲ ଧରି ଆଗେଇ ଆସିଲେ । ମାକେନ୍‌ଜି ରାଇଫଲ ବାଗେଇ ଧରି ନିକଟତମ ଲୋକଙ୍କୁ ଲକ୍ଷ୍ୟ କଲେ । ସେହି ଲୋକର କେତେକ ସାଥି, ତାହା ଦେଖି, ତାକୁ ସାବଧାନ କରିଦେବା ଫଳରେ ସେମାନେ ସମସ୍ତେ ଅନ୍ଧାରରେ ପଳାଇଲେ । ତଥାପି ସେମାନେ ଦୂର ଅନ୍ଧାରରେ, ଫାଟକ ପାଖରେ ରହି, ବାରମ୍ବାର ଆସିବାକୁ ଚେଷ୍ଟା କରୁଥିଲେ ଓ ମାକେନ୍‌ଜି ରାଇଫଲ ଦେଖାଇ ଅଟକାଉଥିଲେ । ଏହି ସମୟରେ ତାଙ୍କର ବନ୍ଧୁ 'କ୍ରେଗୀ' ଆସି ପହଞ୍ଚଲେ । ତାଙ୍କର ମୁହଁ ଧୂଆଁରେ କଳା

ହୋଇଯାଇଥିଲା । ସେ, ନିକଟରେ କୌଣସି ଇଂରାଜୀ ସୈନ୍ୟବାହିନୀ ଅସିବାର ପ୍ରଶ୍ନ ନାହିଁ ବୋଲି, ସ୍ପଷ୍ଟ ଜଣାଇଦେଲେ । ଏଣୁ ସେମାନେ ନିଜକୁ ହିଁ ରକ୍ଷା କରିବା ଦାୟିତ୍ୱ ନେବା ବ୍ୟତୀତ, ସେତେବେଳେ ଅନ୍ୟ କୌଣସି ପନ୍ଥା ନଥିଲା । ପରିଶେଷରେ ସେମାନେ ବାଡିକବାଟ ବାଟେ ଯାଇ ଏକ ଛୋଟ ହିନ୍ଦୁ ମନ୍ଦିର ମଧ୍ୟରେ ଆଶ୍ରୟ ନେଲେ । ସେ ଯାଗାରେ ଧୂପକାଠି ଓ ଫୁଲର ସୁଗନ୍ଧ ଥିଲା ଓ ତାହା ଶାନ୍ତିପ୍ରଦ ଥିଲା । ସେମାନେ ଅଲୋକ ଜଳାଇଲେ ନାହିଁ ଓ ସେହି ଅନ୍ଧାରରେ ବସି ରହି ଦୁଆର ଦେଇଦେଲେ । ସାରାରାତି ସେହିପରି କଟିଗଲା । ସକାଳୁ ଜଣେ ଇଂରାଜି ସୈନ୍ୟ ଆସିବାର ଦେଖାଗଲା । ସେ ଆସି 'ମାକେନ୍‌ଜି'ଙ୍କୁ ରିପୋର୍ଟ କଲା ଯେ, ଜଣେ ଇଂରାଜି ମହିଳା, ଆୟାର ଛଦ୍ମବେଶରେ ଖସି ଚାଲିଯିବାକୁ ବସିଲାବେଳେ ତାଙ୍କୁ ଚିହ୍ନିପାରି ହତ୍ୟା କରାଯାଇଛି ।

ଏହାର କିଛି ମିନିଟ୍ ପରେ 'କେଗ୍ରୀ'ଙ୍କ ଦ୍ୱାରା ନିଯୁକ୍ତ ଜଣେ ହିନ୍ଦୁ ଭୃତ୍ୟ ହଠାତ୍ ମନ୍ଦିରର ଦୁଆର ବାଡେଇ ସାବଧାନ କରିଦେଲା ଯେ, କିଛି ଲୋକ ଏ ଆଡକୁ ଆସୁଅଛନ୍ତି । ତା'ର କିଛି ସମୟ ପରେ, ଏକ ଯନ୍ତ୍ରଣାମୟ ଚିତ୍କାର ଶୁଣାଗଲା ଓ ସେ ଭୃତ୍ୟ ଫେରିଆସି ବନ୍ଧୁକ ଫେରାଇଦେଇ କହିଲା, ''ଗୋଟାକୁ ଗୁଳି କରିବାକୁ ପଡିଲା ଓ ଅନ୍ୟମାନେ ପଳାଇଗଲେ ।'' 'କ୍ରେଗୀ' ଓ 'ମାକେନ୍‌ଜି' ସେହି ହିନ୍ଦୁ ମନ୍ଦିର ଭିତରେ ସାରା ରାତି ବିତେଇଦେଲେ । ଏହା ପରେ ସେମାନେ ଦୁଆର ଖୋଲି ଘୋଡାଶାଳକୁ ଦଉଡିଲେ । ଘୋଡାଗାଡି ସଜକରି 'ମାକେନ୍‌ଜି' ତାଙ୍କର ଭଉଣୀ, 'ମିସେସ୍ କ୍ରେଗୀ' ଓ ଜଣେ କାରବାଇନର୍‌କୁ ଗାଡି ଭିତରେ ବସାଇଲେ । ଏମାନଙ୍କ ସହିତ ଏକ ଦେଶୀ ବାଳକ ଭୃତ୍ୟ ମଧ୍ୟ ସାଥୀରେ ରହିଲା ।

'କ୍ରେଗୀ' ଓ 'କର୍ଣ୍ଣେଲ' ପାଖାପାଖି ହୋଇ ଘୋଡାରେ ବସି ମୁକ୍ତ ତଲବାର ହାତରେ ଗାଡ଼ି ଆଗରେ ଆଗେଇଲେ । ରାସ୍ତାରେ ବିଦ୍ରୋହୀମାନେ, ସେମାନଙ୍କର ରାସ୍ତା ଅବରୋଧ କଲେ । ଏଣୁ, ଗାଡିକୁ ବାମ ଦିଗରେ ଏକ ଧୂଳିପୂର୍ଣ୍ଣ ଖାଲି ପଡିଆ ମଧ୍ୟ ଦେଇ ଅଗେଇ ନିଆଗଲା । ଏମାନେ ଦୃତ ଗତିରେ ଅଗେଇ ଚାଲିଲେ । ହଠାତ୍ ସମ୍ମୁଖରେ କିଛି ଆଲୁଅ ଦେଖି ଅନୁମାନ କଲେ ଯେ, ଏହା ଏକ ଇଂରାଜି ଆଉଟ୍‌ପୋଷ୍ଟ ହୋଇଥିବ । ତାହା ମଧ୍ୟ ସତ୍ୟ ଥିଲା । ସେଠାକୁ ଯାଇ, ସେମାନେ ନିରାପଦରେ ଆଶ୍ରୟଗ୍ରହଣ କଲେ ।

ଉପଦ୍ରବ ଆରମ୍ଭ ହେବାମାତ୍ରେ ହିଁ 'ଜେନେରାଲ ହେୱିଟ୍' 'କର୍ଣ୍ଣେଲ ସ୍ମିଥ'ଙ୍କୁ ଭର୍ତ୍ସନା କରି ରାଇଫଲ ସେନାର ଏକ ଅଂଶ, କଲେକ୍ଟରଙ୍କର କଚେରୀ ଓ ଅନ୍ୟ ଏକ ଅଂଶ, ଟ୍ରେଜେରୀକୁ ରକ୍ଷା କରିବାକୁ ପଠାଇଦେଲେ । ଏହା ବ୍ୟତୀତ, ସେ

'ବ୍ରିଗେଡିୟର ଉଇଲସନ'ଙ୍କୁ, ତୋପଖାନା ଓ ଅବଶିଷ୍ଟ ଏକ ଇଂରାଜି ରାଇଫଲ ବାହିନୀର ଦାୟିତ୍ୱରେ ରଖିଲେ ।

ସେହି ଭୀଷଣ ରାତ୍ରିରେ ଅନେକ ଇଂରାଜିଙ୍କ ସହିତ ଜଣେ ଭେଟେନାରୀ ସର୍ଜନ 'ଫିଲିପ୍', 'ଡଃ ଖ୍ରୀଷ୍ଟି', 'କ୍ୟାପ୍‌ଟେନ ଟେଲର', 'କ୍ୟାପଟେନ ମ୍ୟାକ୍‌ଡୋନାଲ୍ଡ', 'ଲେଫଟ୍‌ନାଣ୍ଟ ହେଣ୍ଡରସନ୍' ଆଦି, ସିପାହୀମାନଙ୍କ ହାତରେ ବଳି ପଡିଲେ । ରାସ୍ତାଘାଟ ଇଂରାଜିମାନଙ୍କର ଶବରେ ଭର୍ତ୍ତି ହୋଇଥିଲା ଓ ରାସ୍ତାରେ ଯାଉଥିବା ଲୋକମାନେ ସେଥିରେ ପଦାଘାତ କରୁଥିଲେ । ଚତୁର୍ଦ୍ଦିଗ ଅଗ୍ନିରେ ଆଲୋକିତ ହୋଇଥିଲା ଓ ଚତୁର୍ଦ୍ଦିଗରୁ "ମାରୋ ଫିରିଙ୍ଗି କୋ" ଧ୍ୱନି ଶୁଣାଯାଉଥିଲା ।

ଇଂରେଜିସେନାମାନେ, ସେମାନଙ୍କର ଅଫିସରଙ୍କର ନେତୃତ୍ୱରେ ସବୁଆଡ ତଲାସ କରି ବିଦ୍ରୋହୀମାନଙ୍କୁ ଠାବ କରି ପାରିଲେ ନାହିଁ । ଏଣୁ ସେମାନେ ନିରାଶ ହୋଇ ଫେରିଲେ । 'ଜେନେରାଲ ହେୱିଟ୍'ଙ୍କର, ରାଜନୈତିକ ଘଟଣାବଳୀ ଓ ବିଦ୍ରୋହୀମାନଙ୍କର ଗୁପ୍ତ ସଂଗଠନ ଉପରେ କୌଣସି ଧାରଣା ନ ଥିଲା । ଏଣୁ ଏ ସମସ୍ତ ଘଟଣାବଳୀକୁ ସେ ନଅ ତାରିଖ ସକାଳର ଦଣ୍ଡବିଧାନର ପ୍ରତିକ୍ରିୟା ବୋଲି ମନେ କରିଥିଲେ । ଯଦି ସେହି ରାତ୍ରିରେ ଇଂରାଜି ଫୌଜ, ମିରଟ୍‌ରେ ନ ରହି ଦିଲ୍ଲୀ ଆଡକୁ ମୁହାଁଇ ଥାଆନ୍ତେ ତାହାଲେ ହୁଏତ ଇତିହାସର ଗତି ବଦଳି ଯାଇଥାନ୍ତା । କାରଣ, ଇଂରାଜିମାନଙ୍କର ସଶସ୍ତ୍ର ଫୌଜଥିବା ସହିତ ଗୋଲନ୍ଦାଜ ବାହିନୀ ଆଦି ଥିଲେ । କିନ୍ତୁ ପରିସ୍ଥିତିର ଉପଯୁକ୍ତ ବିଶ୍ଳେଷଣ ଅଭାବରୁ ଜେନେରାଲ ହେୱିଟ୍ ଦିଲ୍ଲୀ ଆଡକୁ କୌଣସି ଖବର ମଧ ନ ଦେଇ, ଏହାକୁ ଏକ ସାମୟିକ ବିଦ୍ରୋହ ଭାବି ନିଶ୍ଚିନ୍ତ ରହିଥିଲେ ।

ବିଦ୍ରୋହୀମାନେ ଟେଲିଗ୍ରାଫ ଅଫିସରେ ନିଆଁ ଲଗାଇଦେଲେ । ଅନୁରୂପ ଭାବେ, ବ୍ୟାରାକ୍‌ପୁର ବିଦ୍ରୋହ ସମୟରେ ଓ ପରବର୍ତ୍ତୀ କାଳରେ ଦିଲ୍ଲୀରେ ମଧ ଟେଲିଗ୍ରାଫ୍ ଅଫିସ୍‌ରେ ନିଆଁ ଲଗାଇ ଦିଆଯାଇଥିଲା । ସେ ସମୟରେ ଗୁପ୍ତ ସଂଗଠନର ଏହାହିଁ ବିଦ୍ରୋହର ରହସ୍ୟମୟ ସଂକେତ ଥିଲା । ମିରଟ୍‌ର ସମସ୍ତ ବିଦ୍ରୋହୀ ଏକତ୍ରିତ ହୋଇ, ଦିଲ୍ଲୀ ଆଡକୁ ଯାତ୍ରା କଲେ । ଦିଲ୍ଲୀ, ମିରଟ୍‌ରୁ ଚାଳିଶ ମାଇଲ ଦକ୍ଷିଣ ପଶ୍ଚିମରେ ଅବସ୍ଥିତ । ସକାଳର ସୂର୍ଯ୍ୟୋଦୟ ସମୟରେ ବିଦ୍ରୋହୀ ଫୌଜ୍ ଯମୁନା ନଦୀ କୂଳରେ ପହଞ୍ଚି ସାରିଥିଲେ ।



# ଦିଲ୍ଲୀ

ମୋଗଲ ସମ୍ରାଟ 'ଶାହାଜାହାନ', ଆଗ୍ରାରୁ ଦିଲ୍ଲୀକୁ ରାଜଧାନୀ ଉଠାଇ ଆଣିଥିଲେ ଓ ତାଙ୍କଦ୍ୱାରା ବିଶ୍ୱପ୍ରସିଦ୍ଧ 'ଲାଲକିଲ୍ଲା' ଖ୍ରୀ ୧୬୩୧ରେ ନିର୍ମିତ ହୋଇଥିଲା । ତାହା ଐଶ୍ୱର୍ଯ୍ୟର ଗନ୍ତାଘର ଥିଲା । ଏହି ମୋଗଲ ପ୍ରାସାଦରେ 'ମୟୁର ସିଂହାସନ' ମଧ୍ୟ ଥିଲା ଓ ଏହାର ଖାତି ବିଶ୍ୱବ୍ୟାପୀ ଥିଲା । ଏହା ଦେଢ ମାଇଲ ବ୍ୟାସ ଓ ୧୧୦ ଫୁଟ ଉଚ୍ଚତା ବିଶିଷ୍ଟ ଥିଲା ଓ ଦିଲ୍ଲୀ ସହର ସେ ସମୟରେ ଦଶ ମାଇଲ ବ୍ୟାସ ବିଶିଷ୍ଟଥିଲା । ଏହା ଯମୁନା ନଦୀର ପଶ୍ଚିମ ଦିଗରେ ଅବସ୍ଥିତ ଥିଲା । ସେତେବେଳେ(୧୮୫୭ ମସୟରେ) ଦିଲ୍ଲୀ ନଗରୀକୁ ପ୍ରବେଶ କରିବାପାଇଁ 'ଲାହୋର ଗେଟ','ଦିଲ୍ଲୀଗେଟ','ଆଜମୀର ଗେଟ', 'ତୁର୍କୋମାନ ଗେଟ', 'ମୁର ଗେଟ','କାବୁଲ ଗେଟ','କାଶ୍ମୀର ଗେଟ' ଏହିପରି ମୁଖ୍ୟତଃ ସାତଟି ଦ୍ୱାର ଥିଲା । ଏହା ସବୁ କାରୁକାର୍ଯ୍ୟ ସମନ୍ୱିତ ପଥରରେ ନିର୍ମିତ ହୋଇଥିଲା ଓ ସହରର ରକ୍ଷୀମାନଙ୍କ ଦ୍ୱାରା ରକ୍ଷିତ ଥିଲା । ସହର ଚାରିପାଖରେ କୋଡିଏ ମାଇଲ ବ୍ୟାପୀ, ଅସଂଖ୍ୟ କବରଖାନା ଏବଂ ବହୁ ଐତିହାସିକ ଭଗ୍ନପ୍ରାସାଦ ଓ ସ୍ମୃତିଚିହ୍ନ ଆଦି ଭରିରହିଥିଲା ।

ସହରଟି ଏହିପରି ସବୁଦିଗରୁ ଭଗ୍ନସ୍ତୁପ, ଝଣ, ଜଙ୍ଗଲ, ବୁଦା ଆଦି ଦ୍ୱାରା ପରିବେଷ୍ଟିତ ଥିଲା । ଏହାର ଉତ୍ତର ପଶ୍ଚିମ ଦିଗରେ ଖୁବ ବଡ ବଡ ଓ ଅତି ସୁନ୍ଦର ବଗିଚାମାନ ଥିଲା । ସେଠାରୁ ଦେଢ ମାଇଲ ଦୂରରେ ଆଜମିରର 'ରାଜା ଜୟସିଂହ'ଙ୍କ ଦ୍ୱାରା ୧୬୯୩ମସିହାରେ ନିର୍ମିତ 'ନିରୀକ୍ଷଣ ସ୍ତମ୍ଭ' ଥିଲା । ଏହାକୁ ସେତେବେଳେ 'ଯନ୍ତର ମନ୍ତର' ବୋଲି କୁହାଯାଉଥିଲା । ନଗରୀର ଉତ୍ତର ଦିଗରେ 'ସାଲିମାର ବଗିଚା' ଥିଲା । ଏହିଠାରୁ ଦିଲ୍ଲୀସହରର ଅସଂଖ୍ୟ ମସଜିଦ, ବଗିଚା, ସୁନ୍ଦର ସୁନ୍ଦର ଅଟ୍ଟାଳିକା ମାନ ଓ ମାର୍ବଲରେ ନିର୍ମିତ ସୌଖିନ ସ୍ନାନାଗାର, ରଙ୍ଗଶାଳା, ପାନଶାଳା ଆଦି ଦେଖାଯାଉଥିଲା । ଏହି ଅଟ୍ଟାଳିକା ମାନଙ୍କରେ ନିରାପତ୍ତା ପାଇଁ ଭୂତଳ ବାସଗୃହମାନ ଥିଲା । ଏହି ଭୂତଳଗୃହହିଁ ୧୮୫୭ର ବିଦ୍ରୋହ ସମୟରେ ବହୁ ଇଂରାଜି ମାନଙ୍କର ପ୍ରାଣରକ୍ଷା କରିପାରିଥିଲା । ସହରର ମଧ୍ୟ ଭାଗରେ 'ଜୁମାମସଜିଦ' ଥିଲା । ଏହା ୨୬୧ଫୁଟ ଲମ୍ବ ଓ ୧୩୦ଫୁଟ ଉଚ୍ଚତା ବିଶିଷ୍ଟ ଥିଲା । ଏହି ମସଜିଦ ଶାହାଜାହାନଙ୍କ ରାଜତ୍ୱର ଚତୁର୍ଥ ବର୍ଷରେ ଆରମ୍ଭ ହୋଇ ଦଶମ ବର୍ଷରେ ସମ୍ପୂର୍ଣ୍ଣ ହୋଇଥିଲା । ଏହାର ନିର୍ମାଣ ପାଇଁ ଦଶଲକ୍ଷ ଟଙ୍କା ଖର୍ଚ୍ଚକରାଯାଇଥିଲା । 'କାଶ୍ମୀର ଗେଟ' ଭିତରେ ଏକ ଚର୍ଚ୍ଚ ମଧ୍ୟ ଗଢା ହୋଇଥିଲା । 'କଲିକତା ଗେଟ' ପାଖରେ,

'ମିରଟ' ଆଡୁ ଆସିଲେ ସହରକୁ ପ୍ରବେଶ କରିବାପାଇଁ ଯମୁନା ନଦୀ ଉପରେ ଏକ ଡଙ୍ଗାରେ ନିର୍ମିତ ପୋଲଥିଲା ।

୧୭୩୯ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀ ନଗରୀ, 'ନାଦିରଶାହ'ଙ୍କ ଦ୍ୱାରା ନିର୍ଦ୍ଦୟ ଭାବେ ଲୁଣ୍ଠିତ ହୋଇଥିଲା । ତାହାର କୋଡିଏ ବର୍ଷ ପରେ ଏହା ମରହଟ୍ଟା 'ସିନ୍ଧିଆ'ଙ୍କ ଦ୍ୱାରା, ପରାଭୂତ ହୋଇ କର ଦେବାକୁ ଲାଗିଲା । ୧୮୦୩ରେ 'ଇଷ୍ଟଇଣ୍ଡିଆ କମ୍ପାନୀ', ସେତେବେଳର 'ବାଦଶାହ ୨ୟ ଆକବର'ଙ୍କ ସହିତ ଗୁପ୍ତ ବୁଝାମଣା କରିବା ଫଳରେ, ଦିଲ୍ଲୀକୁ ସିନ୍ଧିଆଙ୍କ କବଳରୁ ମୁକ୍ତ କରି ତାହାର ନିରାପତ୍ତା ରକ୍ଷାପାଇଁ ଚୁକ୍ତିବଦ୍ଧ ହୋଇ, ନିଜର ସୈନ୍ୟବାହିନୀ ସେଠାରେ ଅବସ୍ଥାପିତ କଲେ ଓ ତାହାର ପରିପୋଷଣ ବାବଦ କ୍ରମେ ଚଢା ହାରରେ ବାଦଶାହଙ୍କଠାରୁ ଅର୍ଥ ଆଦାୟ କରିବାକୁ ଲାଗିଲେ । 'ଶାହ ୨ୟ ଆକବର'ଙ୍କର ମୃତ୍ୟୁପରେ ତାଙ୍କର ପୁତ୍ର 'ବାହାଦୂର ଶାହ' ଇଂରାଜମାନଙ୍କୁ ସେମାନଙ୍କର ସୈନ୍ୟବାହିନୀ ପରିପୋଷଣ ବାବଦ, ଦାବୀ ମୁତାବକ ଅର୍ଥ ନେଇ ନପାରିବା ଫଳରେ ଇଂରାଜମାନେ ଶାନ୍ତି ଓ ନିରାପତ୍ତା ଆଳରେ ଶୃଙ୍ଖଳା ରକ୍ଷା ଓ ଖଜଣା ଆଦାୟର ଦାୟିତ୍ୱ ନିଜ ହାତକୁ ନେଲେ । ଶାସନର ସମସ୍ତ କାର୍ଯ୍ୟ ବାଦଶାହଙ୍କ ନାମରେ ହେଲେ ମଧ୍ୟ ବସ୍ତୁତଃ ଇଂରାଜିମାନଙ୍କ ଦ୍ୱାରା ହିଁ ସମ୍ପାଦିତ ହେଉଥିଲା । ସେହିମାନେହିଁ ହର୍ତ୍ତା କର୍ତ୍ତା, ଦୈବ ବିଧାତା ଥିଲେ । ଏହା ଫଳରେ ଅବଶ୍ୟ ରାଜ୍ୟର ରାଜସ୍ୱ ଆୟ ୪୧,୦୦୦ ପାଉଣ୍ଡରୁ ୧୪୫,୦୦୦ ପାଉଣ୍ଡକୁ ବୃଦ୍ଧି ପାଇଥିଲା ।

'ବାହାଦୂରଶାହ' କେବଳ ପେନ୍‌ସନ୍ ଭୋଗୀ ହୋଇ ଲାଲକିଲ୍ଲା ମଧ୍ୟରେ ଇଂରାଜିମାନଙ୍କର ଦୃଢ ନଜର ଉପରେ ଏକ ପ୍ରକାରର ବନ୍ଦୀ ଅବସ୍ଥାରେ ରହିଲେ । କିଲ୍ଲାର ଦାୟିତ୍ୱରେ ସଦାବେଳେ ଜଣେ ଇଂରାଜି ଅଫିସର ରହୁଥିଲେ । ତାଙ୍କ ଦ୍ୱାରା ଅସ୍ତ୍ରଶସ୍ତ୍ର ଆଦି ନିୟନ୍ତ୍ରିତ ହେଉଥିଲା । ୧୮୫୭ର ବିଦ୍ରୋହ ସମୟରେ କିଲ୍ଲାଦାର ଥିଲେ 'କ୍ୟାପ୍‌ଟେନ ଡଗଲାସ' । କିଲ୍ଲା ମଧ୍ୟରେ ରାଜକୁମାର ତଥା ହାରେମର ଅନୁଗୃହୀତା ସୁନ୍ଦରୀମାନେ ରହିବା ପାଇଁ ସୁନ୍ଦର ଓ ସୁସଜ୍ଜିତ ପ୍ରକୋଷ୍ଠମାନ ଥିଲା । ଏହାଛଡା, ମନ୍ତ୍ରଣା ଗୃହ, ଦର୍ଶକ ଗୃହ, ରଙ୍ଗମହଲ ଆଦି ଥିଲା । ରଙ୍ଗମହଲର ପାଞ୍ଚୋଟି ଝରକା ଯମୁନା ନଦୀ ଆଡକୁ ମୁହଁ କରି ଥିଲା । ଏହିଠାରୁ ବସି ବେଗମମାନେ ନଦୀର ଦୃଶ୍ୟ ଉପଭୋଗ କରୁଥିଲେ । ଏହାଛଡା, ଜନ୍ତୁ ମାନେ ରହିବାପାଇଁ ଏକ ଜନ୍ତୁଶାଳା ଓ ସେମାନଙ୍କର ଲଢେଇ ଉପଭୋଗ କରିବା ପାଇଁ ମଧ୍ୟ ବ୍ୟବସ୍ଥାମାନ ଥିଲା । କିଲ୍ଲାରେ ବିଭିନ୍ନ ଧରଣର ଲୋକମାନେ ରହିଥିଲେ । ସେମାନଙ୍କ ମଧ୍ୟରେ

ବେଶ୍ୟା ଥିଲେ, ନର୍ତ୍ତକୀ ଥିଲେ, ଗୁଣ୍ଡା ଶ୍ରେଣୀୟ ଲୋକଥିଲେ, କଳାକାର ଥିଲେ, ଅପରାଧୀ ମଧ୍ୟ ଥିଲେ । ଏହି ପରି ତାହା ଏକ ବହୁପ୍ରକାର ଓ ବହୁ ଶ୍ରେଣୀର ଲୋକଙ୍କର ଆଶ୍ରୟସ୍ଥଳୀ ଥିଲା । କିଲ୍ଲାବାସୀମାନେ ପରସ୍ପର ବିରୁଦ୍ଧରେ ଷଡଯନ୍ତ୍ର ହତ୍ୟା ଆଦିରେ ଲିପ୍ତ ଥିଲେ । 'ବାହାଦୂର ଶାହ'ଙ୍କର କନିଷ୍ଠା ପତ୍ନୀ 'ବେଗମ ଜୀନତ୍‌ମହଲ' ତାଙ୍କର ଆଠ ବର୍ଷର ପୁତ୍ରକୁ ଗାଦିର ଉତ୍ତରାଧିକାରୀ କରିବାକୁ ଚାହୁଁଥିଲେ । କିନ୍ତୁ ସେ ଜାଣିଥିଲେ ଯେ 'କମ୍ପାନୀ' ତରଫରୁ 'ଲର୍ଡ କ୍ୟାନିଂ'ଙ୍କୁ ଅନ୍ୟ ପ୍ରକାରେ ନିର୍ଦ୍ଦେଶ ଦିଆଯାଇଥିଲା । ସେଥିରେ ଥିଲା ଯେ 'ବାଦଶାହ'ଙ୍କ ମୃତ୍ୟୁ ପରେ ତାଙ୍କର ପରିବାର ବର୍ଗଙ୍କୁ କିଛି ମାଇଲ ଦୂରକୁ ପଠାଇ ଦିଆଯିବ । ଉତ୍ତରାଧିକାରୀର ପୂର୍ବବତ୍ ସମସ୍ତ ଅଧିକାର ରହିଲେ ମଧ୍ୟ ବାଦଶାହ ଉପାଧି ରହିବ ନାହିଁ ।

ଏହିକଥା, କିଲ୍ଲାରେ ସମସ୍ତଙ୍କ ମଧ୍ୟରେ ପ୍ରବଳ ଉତ୍ତେଜନା ତଥା ଇଂରାଜି ବିରୋଧୀ ଭାବ ସୃଷ୍ଟି କରିଥିଲା । ବାଦଶାହଙ୍କ ପ୍ରାସାଦର ତଳେ ହିଁ ଅଫିସ, ବଙ୍ଗଳା, ସ୍କୁଲ, କୋର୍ଟ ଓ ଦରିୟାଗଞ୍ଜରେ ଇଂରାଜି ବସତି ଥିଲା । ପ୍ରସାଦର ପଶ୍ଚିମ ଦିଗରେ ବ୍ୟାଙ୍କ ଓ ଉତ୍ତର ଦିଗରେ ସେଣ୍ଟଜେମ୍‌ସ ଚର୍ଚ୍ଚ ଥିଲା । ପ୍ରସାଦର ଉତ୍ତର ପୂର୍ବ ପ୍ରାଚୀର, ଯମୁନା ନଦୀ କୂଳରେ ଥିଲା । ସେ ସମୟରେ ଯମୁନା ନଦୀ ସ୍ରୋତସ୍ୱିନୀ ଥିଲା ଓ ତାହା ଚଉଡାରେ ଏକ ମାଇଲର ତିନି ଚତୁର୍ଥାଂଶ ଥିଲା । ଡଙ୍ଗାମାନଙ୍କରେ ନିର୍ମିତ ଏକ ପୋଲ ଦ୍ୱାରା ତାହା 'ମିରଟ ରୋଡ' ସହିତ ସଂଯୁକ୍ତ ଥିଲା ।

ରବିବାରର ଅପରାହ୍ନରେ ସାଧାରଣ ଭାରତୀୟ ପୋଷାକରେ ଦଳେ ସିପାହୀ 'ମିରଟ' ଆଡୁ ଏକ ଗାଡିରେ ଆସି ପହଞ୍ଚିଲେ । ସୋମବାର ସକାଳ ସୁଦ୍ଧା ଦିଲ୍ଲୀରେ ଥିବା ଦେଶୀ ସିପାହୀ ମାନେ 'ମିରଟ' ସିପାହୀଙ୍କର ଆଗମନ ବାର୍ତ୍ତା ପାଇସାରିଥିଲେ । ସିପାହୀମାନଙ୍କର ଆଗମନର ଉଦ୍ଦେଶ୍ୟ ମଧ୍ୟ ସେମାନଙ୍କୁ ଭଲ ଭାବେ ଜଣାଥିଲା ।

ଦିନ ହେବାକୁ ରାତି ଏକ ପ୍ରହର ବାକିଥାଏ , ପୂର୍ବ ଆକାଶ ସଫା ହେବାକୁ ବସୁଥାଏ, ସାରାରାତି 'ମିରଟ' ବିଦ୍ରୋହୀ ସିପାହୀମାନେ ଦିଲ୍ଲୀ ଅଭିମୁଖେ ଚାଲିଥାଆନ୍ତି । ସେମାନଙ୍କ ମଧ୍ୟରେ ଦୁଇହଜାର ପଦାତିକ ବାହିନୀ ଏତଦ୍ ବ୍ୟତୀତ ଘୋଡାସବାର ବାହିନୀ ଓ ଗୋଲନ୍ଦାଜ ବାହିନୀ ମଧ୍ୟ ଥିଲେ । ହଠାତ୍ ସେମାନଙ୍କ ମଧ୍ୟରୁ ଜଣେ 'ଲାଲକିଲ୍ଲା'ର ଛାଇ ଦେଖି ଓ ସମ୍ମୁଖରେ 'ଯମୁନା ନଦୀ'କୁ ଦେଖି ଚିତ୍କାର କରି ଉଠିଲା, ''ହାବିଲଦାର, ହୋସିଆର, ଦିଲ୍ଲୀ ଆସିଗଲା ।'' 'ହାବିଲଦାର

ଯୋଗୀରାମ' ଯେ କି ରୋହତକର ଜଣେ ଜାଠ ଥିଲେ ସେ ଆଖି ଖୋଲି ସମ୍ମୁଖରେ 'ଲାଇକିଲ୍ଲା'ର ଛାଇ ଦେଖିବାକୁ ପାଇଲେ ! ସେ ଘୋଡା ରଖି ବନ୍ଧୁକରେ ଗୁଳି ପୁରାଇବାକୁ ଆଦେଶ ଦେଲେ । ଏହାପରେ ଆଗକୁ ଯିବା ନଯିବାର ପ୍ରଶ୍ନ ଉଠିଲା । କେତେ ଜଣ ପରାମର୍ଶ ଦେଲେ ଯେ ପଛରେଥିବା ତୋପଖାନା ପହଞ୍ଚିଗଲା ପରେ ଆକ୍ରମଣ ଆରମ୍ଭ କରାଯିବ । ଅନ୍ୟ କେତେଜଣ ପରାମର୍ଶ ଦେଲେ ଯେ ତୋପଖାନା ପହଞ୍ଚିବା ପୂର୍ବରୁ ପ୍ରଥମେ ପୋଲକୁ ଅଧିକାର କରାଯାଉ । 'ନସୀର ମହମ୍ମଦ' ଓ 'ଝମ୍ମନ୍ ସିଂହ' ନାମକ ଦୁଇଜଣ ତରୁଣ ପ୍ରଥମେ ବନ୍ଧୁକ ବାଗେଇ ଧରି ପୋଲ ଉପରକୁ ଆଗେଇଲେ । ପଛରେ 'ହାବିଲଦାର ଯୋଗୀରାମ' ସେମାନଙ୍କୁ ରକ୍ଷା କରିବାପାଇଁ କୂଳରେ ଛିଡାହୋଇ ରହିଲେ । ତାପରେ ଚାରିଜଣ ସାଥି ଘୋଡାରେ ପୋଲକୁ ନିରାପଦରେ ଯିବା ପରେ ସେମାନଙ୍କ ପଛରେ ଯୋଗୀରାମ ଗଲେ । ଏହି ସମୟରେ ସେମାନେ ରକ୍ଷୀଦ୍ୱାରା ବାଧା ପାଇଲେ । ସେମାନେ ଅମାନ୍ୟ କରିବାରୁ, ଉକ୍ତ ରକ୍ଷୀ ଚିତ୍କାର କରି ଅନ୍ୟ ରକ୍ଷୀମାନଙ୍କୁ ଡାକିଲା ଓ ୫/୭ ଜଣ ରକ୍ଷୀ ତାଙ୍କୁ ସାହାଯ୍ୟ କରିବାପାଇଁ ଆଗେଇ ଆସିଲେ । 'ନସୀର ମହମ୍ମଦ' ଓ 'ଝମ୍ମନ୍ ସିଂହ' ତଲବାରରେ ସେ ରକ୍ଷୀର ମୁଣ୍ଡରୁ ଗଣ୍ଡିକୁ ଅଲଗା କରିଦେଲେ ଓ ତାହା ଦେଖି ଅନ୍ୟ ରକ୍ଷୀମାନେ ପ୍ରାଣଭୟରେ ପଳାୟନ କଲେ । ବିଦ୍ରୋହୀ ସିପାହୀମାନେ ଆଗକୁ ଯିବାକୁ ଲାଗିଲେ । ଏହି ସମୟରେ ଜଣେ ତେଲେଙ୍ଗା ରକ୍ଷୀର ଗୁଳିରେ 'ଝୁମ୍ମନ ସିଂହ'ଙ୍କୁ ପ୍ରାଣ ଦେବାକୁ ପଡିଲା । 'ନସୀର' ବାଘ ପରି ସେ ରକ୍ଷୀ ଉପରକୁ ଝାମ୍ପିପଡିଲା ଓ 'ହାବିଲଦାର ଯୋଗୀରାମ'ର ଗୁଳି ମାଡରେ ଉକ୍ତରକ୍ଷୀ ସେହିଠାରେ ମରି ପଡିଲା । ଏହାପରେ ସିପାହୀମାନେ କର ଓ ଅନୁମତି ନେବା ଅଫିସକୁ ସମ୍ପୂର୍ଣ୍ଣ କରଗତ କରି ନିଆଁ ଲଗାଇଦେଲେ । ସେମାନେ 'କଲିକତା ଗେଟ' ଆଡ଼କୁ ମୁହାଁଇଲେ । ସେମାନଙ୍କ ପଛରେ 'ମିରଟ'ରୁ ବିଦ୍ରୋହୀ ଫୌଜ ଓ ତୋପଖାନା ଆସି ପହଞ୍ଚିଗଲା । ପୋଲ ଦାୟିତ୍ୱରେ ଥିବା ଅଫିସର 'ବଳଦେଓ ସିଂହ' ପୋଲର ଚାବି ଖୋଲି ଦେଇ, ତୁରନ୍ତ କଲେକ୍ଟରଙ୍କୁ ଇତାଲା ଦେବାକୁ ଚାଲିଗଲେ ।

'ଜେନେରାଲ ହେଓ୍ୱିଟ'ଙ୍କଠାରୁ ମିରଟ ବିଦ୍ରୋହ ବିଷୟରେ କୌଣସି ଖବର ଦିଲ୍ଲୀକୁ ପଠାଯାଇ ନଥିଲା । କିନ୍ତୁ ଜଣେ ସାଧାରଣ ଘୋଡସବାର ନିଜେ ନିଜେ ଘୋଡାରେ ଦିଲ୍ଲୀରେ ବିଦ୍ରୋହର ଖବର ନେଇ ପହଞ୍ଚିଲା । ସେତେବେଳେ ଅପରାହ୍ନ ହୋଇଥିଲା । ଘୋଡସବାରଟି ଦିଲ୍ଲୀର କମିଶନର 'ସାଇମନ୍ ଫ୍ରାସର'(Simon Fraser) ଙ୍କର ବଙ୍ଗଳା ସମ୍ମୁଖରେ ଘୋଡାରୁ ଓହ୍ଲାଇ, ତାଙ୍କର ଭାରତୀୟ ଭୃତ୍ୟକୁ

କମିଶନର ସାହେବଙ୍କୁ ଚିଠିଟିଏ ଦେବାକୁ କହିଲା । ସେ ସମୟରେ କମିଶନର ସାହେବ କ୍ଲାନ୍ତ ହୋଇ ନିଦ୍ରାଯାଇଥିଲେ । ଏଣୁ ଭୃତ୍ୟ ଚିଠିଟି ତାଙ୍କୁ ଦେବା ପରେ ସେ ତାହା ରଖି ଦେଇ ପୁନର୍ବାର ନିଦ୍ରାଗଲେ । ସକାଳ ପର୍ଯ୍ୟନ୍ତ 'ଫ୍ରାସର' ଚିଠିର ବିଷୟବସ୍ତୁ କିଛି ଜାଣି ନଥିଲେ ।

ଅତ୍ୟଧିକ ଗରମ ହେତୁ ଦିଲ୍ଲୀରେ ଟେଲିଗ୍ରାଫ ଅଫିସକୁ ସେତେବେଳେ ସକାଳ ନଅଟାରୁ ଦିନ ଚାରିଟା ପର୍ଯ୍ୟନ୍ତ ବନ୍ଦ କରାହେଉଥିଲା । ଏଣୁ ଦିଲ୍ଲୀରେ ଥିବା ସିଗନାଲର (Signalor Brendish) 'ବ୍ରେଣ୍ଡିସ୍' ରବିବାର ଦିନ ସକାଳୁ ଟେଲିଗ୍ରାଫ ଅଫିସ ବନ୍ଦ କରିବା ସମୟରେ ମିରଟରେ ୩ୟ ଘୋଡସବାର ବାହିନୀର କିଛି ସିପାହୀଙ୍କୁ ଦଣ୍ଡ ଦିଆଯିବା ଓ କିଛି ଗଣ୍ଡଗୋଳ ହୋଇଥିବାର ବାର୍ତ୍ତା ପାଇଥିଲେ । ଏହାପରେ ସେ ବିଧିମୁତାବକ ଟେଲିଗ୍ରାଫ ଅଫିସ ବନ୍ଦ କରିଦେଇ ଯାଇଥିଲେ ଓ ଉକ୍ତ ସମ୍ବାଦକୁ ଏକ ସ୍ଥାନୀୟ ଘଟଣା ବୋଲି ଭାବି କୌଣସି ଗୁରୁତ୍ୱ ଦେଇ ନଥିଲେ । ଅପରାହ୍ଣରେ ସେ ଯେତେବେଳେ ଟେଲିଗ୍ରାଫ ଅଫିସ ଖୋଲିଲେ, ସେତେବେଳେ ଯେତେ ଚେଷ୍ଟା କଲେ ମଧ୍ୟ ସେ 'ମିରଟ'ରୁ କୌଣସି ସମ୍ବାଦ ପାଇପାରିଲେ ନାହିଁ । ସେ ସମୟରେ ସର୍ବ ପ୍ରଥମେ ଭାରତରେ ଲର୍ଡଡେଲହାଉସୀଙ୍କ ଦ୍ୱାରା ଟେଲିଗ୍ରାଫର ପ୍ରଚଳନ କରାଯାଇଥିଲା ଓ ଆରମ୍ଭିକଅବସ୍ଥାରେ ଏହା ଦେଶର ବିଭିନ୍ନ ସ୍ଥାନରେଥିବା ଗୁରୁତ୍ୱ ପୂର୍ଣ୍ଣ ସୈନ୍ୟଛାଉଣୀମାନଙ୍କରେ ଅବସ୍ଥାପିତ ହୋଇ ପାରସ୍ପରିକ ବାର୍ତ୍ତା ବିନିମୟ କରୁଥିଲା । ଏହି ଦୃଷ୍ଟିରୁ ହିଁ ବିଦ୍ରୋହୀ ସିପାହୀଙ୍କର ଗୁପ୍ତ ସଂଗଠନ, ଟେଲିଗ୍ରାଫ ଅଫିସ ପୋଡିବାକୁ ବିଦ୍ରୋହର ଏକ ରହସ୍ୟମୟ ସାଙ୍କେତିକ ଭାଷା ଭାବରେ ବ୍ୟବହାର କରୁଥିଲା । 'ମିରଟ'ରେ ମଧ୍ୟ ତଦନୁରୂପ ବିଦ୍ରୋହ ଆରମ୍ଭ ହେବା ମାତ୍ରକେ ଟେଲିଗ୍ରାଫ ଅଫିସ ପୋଡିଦିଆଯାଇଥିଲା । ଫଳରେ 'ବ୍ରେଣ୍ଡିସ' ଅପରାହ୍ଣରେ ଯେତେଚେଷ୍ଟା କଲେ ମଧ୍ୟ 'ମିରଟ' ସହିତ ଯୋଗାଯୋଗ ରକ୍ଷା କରିପାରିଲେ ନାହିଁ ।

ସେହି ଟେଲିଗ୍ରାଫ ତାର ଯମୁନା ନଦୀ ମଧ୍ୟରେ କେବୁଲ ଭିତରେ ଅପରପାର୍ଶ୍ୱକୁ ଯାଇଥିଲା । ଏଣୁ 'ବ୍ରେଣ୍ଡିସ' ଓ 'ପିଲ୍ କିଙ୍ଗଟନ୍' ଏହାର କାରଣ ଅନୁସନ୍ଧାନ କରିବାକୁ ଜଣେ ସହକର୍ମୀ ନେଇ ନଦୀ ଭିତରକୁ ଯାଇ କେବୁଲକୁ ପରୀକ୍ଷା କଲେ । ସେମାନେ ନିରାଶ ହୋଇ ଫେରିଆସିଲେ । ସେମାନେ ଅନୁମାନ କଲେ ଯେ ମିରଟର ପାଖରେ କୌଣସି ସ୍ଥାନରେ ଲାଇନ କ୍ଷତିଗ୍ରସ୍ତ ହୋଇଥିବାର ସମ୍ଭାବନା । ଏଣୁ ତା ପରଦିନ ସକାଳ ଆଠଟା ବେଳେ 'ଟୋଡ'(Mr.Todd) ଅନ୍ୟମାନଙ୍କ ସହିତ ମିରଟ୍ ଆଡ଼କୁ ଯାତ୍ରା ଆରମ୍ଭ କଲେ । ସେମାନେ ଦୁଇଟି ଘୋଡାଛୁଆ ପିଠିରେ

ବସି ବାହାରିଲେ ଏବଂ ତା'ପର ଠାରୁ ସେମାନଙ୍କର କୌଣସି ସନ୍ଧାନ ମିଳିଲା ନାହିଁ । 'ମିରଟ' ବିଦ୍ରୋହର ପ୍ରଥମ ଖବର 'ବ୍ରେଣ୍ଡିସ' ଓ 'ପିଲିକିଙ୍ଗଟନ୍' ପାଇଥିଲେ । ତେଣୁ ସେମାନେ ବ୍ୟକ୍ତିଗତ ଭାବରେ ତାହା 'ଅମ୍ବାଲା' ଛାଉଣୀକୁ ଜଣାଇଦେଲେ ଓ 'ଅମ୍ବାଲା' ଛାଉଣୀରୁ ଟେଲିଗ୍ରାଫ ଯୋଗେ 'ଲାହୋର'କୁ ଖବର ଚାଲିଗଲା । ତା ପର ଦିନ ସକାଳୁ କିଛି ବିଦ୍ରୋହୀ ଘୋଡାସବାରବାହିନୀ ପ୍ରଥମେ ମିରଟରୁ ଆସି ଯମୁନା କୂଳରେ ପହଞ୍ଚିଲେ ।

'ନବାବ ମଇନୁଦ୍ଦିନ୍ ହସନ୍ ଖାଁ' ସେ ସମୟରେ ଦିଲ୍ଲୀରେ ପୋଲିସ ଇନିସ୍ପେକ୍ଟର ଥିଲେ । ସେ ଉଚ୍ଚ କୂଳ ସମ୍ଭୂତ ଥିଲେ ଓ ତାଙ୍କର ପୂର୍ବ ପୁରୁଷ 'ସମରକନ୍ଦ'ରୁ ଆସିଥିଲେ । ସେ ବାଲ୍ୟକାଳରୁ ଦିଲ୍ଲୀରେ ଥିବା ଇଂରାଜି ରେସିଡେଣ୍ଟ 'ମେଟକାଫ'ଙ୍କର ସୁନଜରରେ ପଡିଥିଲେ । ଏଣୁ ପରବର୍ତ୍ତୀ କାଳରେ ସେ ନିଜର ଛୋଟ ଭାଇ ସହିତ ପୋଲିସଇନିସ୍‌ପେକ୍ଟର ଭାବରେ ନିଯୁକ୍ତି ପାଇଥିଲେ ।

ସବୁଦିନ ପରି ମେ ଏଗାର ତାରିଖ ସକାଳେ 'ମଇନୁଦ୍ଦିନ୍', କ୍ରିମିନାଲ କୋର୍ଟ ମାଜିଷ୍ଟ୍ରେଟ୍ ଓ କଲେକ୍ଟର 'ହଚିନ୍‌ସନ୍'(Hutchinson)ଙ୍କ ପାଖରେ କୌଣସି ମୋକଦ୍ଦମା କାମରେ ବ୍ୟସ୍ତ ଥିଲେ । ଏହି ସମୟରେ ଯମୁନା ପୋଲର ଦାୟିତ୍ୱରେ ଥିବା ଦାରେଗା ବଳଦେଓ ସିଂହ ଆସି, 'ମିରଟ'ରେ ଇଂରାଜି ସୈନ୍ୟ ଓ ଦେଶୀ ସୈନ୍ୟଙ୍କ ମଧ୍ୟରେ ହୋଇଥିବା ଗଣ୍ଡଗୋଳ ବିଷୟରେ ଜଣାଇଲା ଓ ମିରଟ୍‌ର ବିଦ୍ରୋହୀ ଦେଶୀସିପାହୀ ମାନେ ଇଂରାଜିମାନଙ୍କର ଘର ଜଳାଇ ସେମାନଙ୍କୁ ହତ୍ୟା କରି ଦିଲ୍ଲୀ ପାଖରେ ଆସି ପହଞ୍ଚି ଯିବା ବିଷୟ ମଧ୍ୟ ଜଣାଇଲା । ଏହାଂଶୁଣି କଲେକ୍ଟର, 'ବଳଦେଓ ସିଂହ'କୁ ତୁରନ୍ତ ନିଜର ପୋଷ୍ଟ କୁ ଯାଇ ପୋଲ ପରେ ପରେ ପଡୁଥିବା ନଗରୀର ଦ୍ୱାରକୁ ବନ୍ଦ କରି ଦେବାକୁ ଆଦେଶ ଦେଲେ । କଲେକ୍ଟର କମିଶନରଙ୍କ ଘର ଆଡକୁ ଚାଲିଗଲେ । କମିଶନର 'ଫ୍ରାସର', ସେତେବେଳକୁ ନିଦ୍ରା ଯାଇଥିଲେ । ତାଙ୍କୁ ଉଠାଇ ସମସ୍ତ ଘଟଣା ଅବଗତ କରାଗଲା । ଏହାପରେ କଲେକ୍ଟର, 'ମଇନୁଦ୍ଦିନ'ଙ୍କୁ ଦିଲ୍ଲୀର କଟୁଆଳକୁ ସାବଧାନ କରିଦେବା ପାଇଁ ଓ ନିଜର ଥାନା 'ପାହାଡ୍‌ଗଞ୍ଜ'ରେ ରହି ସବୁ ପ୍ରକାର ଶାନ୍ତି ଶୃଙ୍ଖଳା ରକ୍ଷା କରିବାପାଇଁ ଆଦେଶ ଦେଲେ । 'ମଇନୁଦ୍ଦିନ', କଟୁଆଳକୁ ମାଜିଷ୍ଟ୍ରେଟଙ୍କର ଆଦେଶ ଶୁଣାଇ ଦେଇ, 'ପାହାଡଗଞ୍ଜ' ଆଡେ ଘୋଡା ଛୁଟାଇଲେ । ସାରା ସହର ନୀରବ ନିସ୍ତବ୍ଧ ଥିଲା । ସେ ଯିବା ସମୟରେ 'ରାଜଘାଟ' ଦ୍ୱାରରୁ ଜଣେ ଚୌକିଦାର ଦୌଡି ଦୌଡି ଆସି ଖବର ଦେଲାଯେ, 'ମିରଟ'ରୁ ବହୁ ସଂଖ୍ୟକ ଦେଶୀ ଘୋଡାସବାର ବାହିନୀ ଆସି,

'ରାଜଘାଟ' ଦ୍ୱାର ପାଖରେ ଜମା ହୋଇ, ଦ୍ୱାର ଖୋଲିବା ପାଇଁ ଚିତ୍କାର କରୁଛନ୍ତି । 'ମଇନୁଦ୍ଦିନ' ତୁରନ୍ତ ତାହା କଲେକ୍ଟରଙ୍କୁ ଜଣାଇଦେଇ ନିଜର ପୋଷ୍ଟକୁ ଚାଲିଆସିଲେ ।

ବିଦ୍ରୋହୀ ସିପାହୀ ପାଞ୍ଚଜଣ ପୋଲଘରେ ନିଆଁ ଲଗାଇବା ପରେ ପୋଲଉପରେ ଆଗେଇବାକୁ ଲାଗିଲେ । ଏତିକି ବେଳେ 'ଟୋଡ' ଅପରଦିଗରୁ କେବୁଲ ତାର ଧରି କ୍ଷୟକ୍ଷତି ଅନୁସନ୍ଧାନ କରି ଆସୁଥିଲେ । ସେ ଅଚାନକ ସିପାହୀଙ୍କ ହାତରେ ପଡି ପ୍ରାଣ ଦେଲେ । ତାହା ଦିଲ୍ଲୀର ପ୍ରଥମ ଇଂରାଜି ହତ୍ୟା ଥିଲା ।ଏହାଙ୍କୁ ମାରି ସିପାହୀମାନେ ଉନ୍ମତ୍ତ ହୋଇ ତାଙ୍କ ମୁଣ୍ଡକୁ ଭାଲାରେ ଲଟକାଇ ଦେଲେ ଓ ତାହା ଧରି ଯାହା ପାଖରେ ପାଇଲେ ସେଥିରେ ଅଗ୍ନି ସଂଯୋଗ କରି କରି ଆଗେଇ ଚାଲିଲେ । ସେମାନେ କଲିକତା ଦ୍ୱାର ଦିଗକୁ ଆଗୋଉଥିଲେ । ଏହି ସମୟରେ 'ହଚିନ୍‌ସନ'ଙ୍କ ଆଦେଶ ବଳରେ 'କଲିକତା ଦ୍ୱାର' ବନ୍ଦ କରି ଦିଆଗଲା । 'ଫ୍ରାସର' ଦୂରବୀକ୍ଷଣ ଯନ୍ତ୍ରରେ ବିଦ୍ରୋହୀମାନଙ୍କର ଗତିବିଧି ଲକ୍ଷ୍ୟ କରୁଥିଲେ । ଯେତେବେଳେ ସିପାହୀମାନେ କଟାମୁଣ୍ଡ ଭାଲାରେ ଟଙ୍ଗାଇ ସେଠାରେ ପହଞ୍ଚିଲେ ସେତେବେଳେ କଲେକ୍ଟର ଓ କମିଶନର, ଉଭୟେ ସିପାହୀମାନଙ୍କର ସଂଖ୍ୟା ଦେଖି ପ୍ରାଣ ଭୟରେ ପଳାଇଲେ । ସିପାହୀମାନେ ବର୍ଷାରେ ନଦୀବେଗ ପରି ପ୍ରବେଶ କଲେ । ୩୮ତମ ସିପାହୀ ରେଜିମେଣ୍ଟ ସହରର ଶାନ୍ତି ଶୃଙ୍ଖଳା ଦାୟିତ୍ୱରେ ଥିଲେ । ପରିଶେଷରେ ସେମାନେ ବିଦ୍ରୋହୀମାନଙ୍କ ସହିତ ଯୋଗଦାନ କଲେ । 'କଲିକତା ଦ୍ୱାର' ବନ୍ଦହେବା ଦେଖି ବିଦ୍ରୋହୀଦଳ 'ଲାଲକିଲ୍ଲା' ଓ 'ଯମୁନା ନଦୀ'ର ମଧ୍ୟବର୍ତ୍ତୀ ସ୍ଥାନରେ ଆଗେଇ ଯାଇ 'ରାଜଘାଟ' ଦ୍ୱାର ଆଡକୁ ଗଲେ । ସେଠାରେ ଦୌବା ବଜାରର ମୁସଲମାନ ମାନେ ସେମାନଙ୍କର ପ୍ରବେଶ ପାଇଁ ଦ୍ୱାର ଖୋଲି ଦେଲେ ଓ ସିପାହୀମାନେ ବିଭିନ୍ନ ଧ୍ୱନି ଦେଇ ପ୍ରବଳବେଗରେ ଆଗେଇ ଯାଇ 'ଲାଲକିଲ୍ଲା'ର 'ବାଦଶାହ'ଙ୍କ ପ୍ରସାଦର ଝରକା ତଳେ ଏକଯୁଟ ହେଲେ । କ୍ରମେ ସେମାନଙ୍କର ସଂଖ୍ୟା ବଢିବାକୁ ଲାଗିଲା । ସେମାନେ 'ବାଦଶାହ'ଙ୍କର ଦର୍ଶନ ପାଇଁ ଚିତ୍କାର କରିବାକୁ ଲାଗିଲେ ।

'ବ୍ରେଣ୍ଡିସ' କରିଥିବା ଟେଲିଗ୍ରାମ ପାଇ 'ଲାହୋର' ଓ 'ପଞ୍ଜାବ'ରେ ଦେଶୀ ସିପାହୀମାନଙ୍କ ଠାରୁ ତୁରନ୍ତ ଅସ୍ତ୍ର ଛଡାଇ ନିଆଗଲା । ଫଳରେ ସେଠାରେ ଭବିଷ୍ୟତରେ ହେବାକୁ ଥିବା ବିଦ୍ରୋହକୁ ବନ୍ଦ କରିବା ସମ୍ଭବ ହୋଇଥିଲା ।ଦିଲ୍ଲୀର ଅବସ୍ଥା ଦେଖି 'ବ୍ରିଗେଡିଅର ଗ୍ରିଭସ୍'(Greaves), 'ମିରଟ'କୁ, 'ଜେନେରାଲ ହେୱିଟ'ଙ୍କ ପାଖକୁ, ସୈନ୍ୟ ପଠାଇବା ସକାଶେ ଖବର ଦେବାକୁ ଚାହିଁଲେ ।

ଟେଲିଗ୍ରାଫ ଅଫିସ ପୋଡିଯାଇଥିବାରୁ ସେ ୭୪ତମ ବାହିନୀର 'ଡାକ୍ତର ବାଷ୍ଟନ' (Dr. Baston) ଙ୍କ ହାତରେ ଚିଠି ନେଇ ମିରଟ ପଠାଇଲେ । 'ବାଷ୍ଟନ' ପରିସ୍ଥିତିର ଭୟାବହତା ଅନୁମାନ କରି, ନିଜକୁ ଜଣେ ଫକୀର ବେଶରେ ସଜାଇ, 'ଗ୍ରିଭସ'ଙ୍କଠାରୁ ଚିଠି ନେଇ 'ମିରଟ' ଯାତ୍ରା କଲେ । କିନ୍ତୁ ରାସ୍ତାରେ ତାଙ୍କର ନୀଳ ଚକ୍ଷୁ ହେତୁ, ବିଦ୍ରୋହୀମାନଙ୍କ ହାତରେ ଧରାପଡିଲେ ଓ ତାଙ୍କୁ ଲୁଟ୍ କରାଯାଇ ପରିଶେଷରେ ସମ୍ପୂର୍ଣ୍ଣ ଉଳଙ୍ଗ କରାଯାଇ ଛାଡିଦିଆଗଲା । ତା ପରେ ସେ କେଉଁଆଡେ ଗଲେ ତାହାର ସନ୍ଧାନ ଆଜି ପର୍ଯ୍ୟନ୍ତ ମିଳି ନାହିଁ । 'ବାଷ୍ଟନ' 'ମିରଟ' ଉଦ୍ଦେଶ୍ୟରେ ଯାତ୍ରା କରିବା ପରେ ଦିଲ୍ଲୀରେ ସବୁ ଇଂରାଜି ଅଫିସରମାନେ ଭାବିଥିଲେ ଯେ 'ବାଷ୍ଟନ' ସମାଚାର 'ମିରଟ୍'ରେ ଜେନେରାଲଙ୍କ ପାଖରେ ପହଞ୍ଚାଇ ଦେଲେ, ତୁରନ୍ତ ଇଂରାଜି ସେନା ଦିଲ୍ଲୀରେ ପହଞ୍ଚିଯିବେ । ଏହି ବିଶ୍ୱାସରେ ସମସ୍ତେ 'ଫ୍ଲାଗଷ୍ଟାଫ ଟାଓ୍ୱାର'(Flag Staff tower)ରେ ଏକତ୍ରିତ ହେଲେ । ଏହି ସମୟରେ ବିଦ୍ରୋହୀ ସିପାହୀମାନଙ୍କ ସହିତ ଦିଲ୍ଲୀର ସିପାହୀ ଓ ଜନତା ମିଶିଗଲେ ଓ ଇଂରାଜି ବଙ୍ଗଳା, ଅଫିସ ଓ ଅନୁଷ୍ଠାନ ମାନଙ୍କରେ ସେମାନେ ଅଗ୍ନି ସଂଯୋଗ କରି ଲୁଟ୍ କରିବାକୁ ଆରମ୍ଭ କଲେ ।

ଟାଓ୍ୱାର ଗୃହଟି ବହୁ ଲୋକଙ୍କର ରହିବା ପରି ହୋଇନଥିଲା । ତାହା ୪୦ର ଫୁଟ ବ୍ୟାସ ବିଶିଷ୍ଟ ଥିଲା, ଓ ସେଠାରେ ବହୁ ବୃଦ୍ଧ, ମହିଳା ଓ ଶିଶୁ ଓ ଅନ୍ୟମାନେ ଆଶ୍ରୟ ନେଇଥିବାରୁ, ତାହା ସମ୍ପୂର୍ଣ୍ଣ ଭାବରେ ସ୍ଥାନଶୂନ୍ୟ ହୋଇଥିଲା । ସେଠାରେ ସମସ୍ତେ ପ୍ରବଳ ଗରମରେ ଅତିଷ୍ଠ ହୋଇଉଠୁଥିଲେ । ସେମାନଙ୍କ ମଧ୍ୟରୁ ବିଧବା ନାରୀମାନେ ସ୍ୱାମୀ ହରାଇ କ୍ରନ୍ଦନ କରୁଥିଲେ ।

କିଲ୍ଲା ପ୍ରାଚୀରର ଘନତ୍ୱ ୧୨ଫୁଟ ଥିଲା । ତଥାପି ତାମଧ୍ୟରେ ଥିବା 'ବାଦଶାହ', ଝରକା ବାଟେ ସିପାହୀ ଓ ଜନତାର ଭିଡ ଦେଖି ଭୟ ଓ ଆଶଙ୍କାରେ ଉଦ୍‌ବେଳିତ ହୋଇଉଠୁଥିଲେ । ସେ ତତ୍‌କ୍ଷଣାତ କିଲ୍ଲାଦାର ଓ ଆସିଷ୍ଟାଣ୍ଟ ରେସିଡେଣ୍ଟ 'କ୍ୟାପଟେନ୍ ଡଗଲାସ'ଙ୍କୁ ଡକାଇ ପଠାଇଲେ । ''ବାଦଶା ଆମକୁ ସାହାଯ୍ୟ କରନ୍ତୁ,'' ଏହି ଚିତ୍କାର ସର୍ବପ୍ରଥମେ ଚାଳିଶଟି ଘୋଡସବାର ବାହିନୀଙ୍କ ସମବେତ କଣ୍ଠରୁ ଶୁଣାଯାଉଥିଲା । ପରେ ପରେ ସେହି କଣ୍ଠରେ ହଜାର ହଜାର କଣ୍ଠ ମିଶିଗଲା । କେତେକ ବିଦ୍ରୋହୀ ନେତା, ଲୌହ କବାଟକୁ ଆଘାତ କରୁଥିଲେ ଓ ଭିତରେ ଥିବା

ରକ୍ଷୀ ମାନେ ସେମାନଙ୍କୁ ଫେରିଯିବାକୁ କହୁଥିଲେ । ବାଦଶାହଙ୍କର ଜଣେ 'ଚୋବଦାର'* 'କ୍ୟାପ୍‌ଟେନ୍ ଡଗଲାସ'ଙ୍କ ସହ ଘଟଣା ଜାଣିବା ପାଇଁ ଗଲେ । ସେମାନେ ପାହାଚ ପାଖରେ ପହଞ୍ଚିଲା ବେଳକୁ ଜଣେ ରକ୍ଷୀ ସଲାମ କରି 'ମିରଟ'ର ଜଣେ ଘୋଡସବାର ବ୍ୟକ୍ତିଗତ ଭାବରେ 'ଡଗଲାସ'ଙ୍କୁ ଦେଖାକରିବାକୁ ଚାହୁଁଛି ବୋଲି ଖବର ଦେଲା । ଏହାପରେ ସବାର ଜଣକ କ୍ୟାପ୍‌ଟେନଙ୍କୁ ଦେଖା କରି 'ମିରଟ'ରେ ସିପାହୀମାନଙ୍କର ଧର୍ମ ଉପରେ ହୋଇଥିବା ଆଘାତ ଓ ତହିଁର ଅନ୍ୟାୟ ଦଣ୍ଡ ବିଷୟରେ ବାଦଶାଙ୍କୁ ଆପତ୍ତି ଜଣାଇବାକୁ ଦାବି କଲେ । ସେ ଇଂରାଜିମାନଙ୍କୁ ହତ୍ୟାକରି ଆସିଥିବା ବିଷୟ ମଧ କହିଲେ । 'ଡଗଲାସ'ଙ୍କର ବିଦ୍ରୋହ ବିଷୟରେ କୌଣସି ଧାରଣା ନଥିଲା । 'ମିରଟ'ର ଘଟଣାବଳୀକୁ ସେ ସ୍ଥାନୀୟ ବିଦ୍ରୋହ ବୋଲି ଭାବିଥିଲେ । ଏଣୁ ସେ ଏହାକୁ ଏକ ଅପରାଧ ବୋଲି କହି ଏଥିପାଇଁ ଉପଯୁକ୍ତ ଦଣ୍ଡ ଦିଆଯିବ ବୋଲି କହିଲେ । ଏହା କହି 'ଚୋବଦାର'ଙ୍କ ଅନୁରୋଧ କ୍ରମେ ସେ ପ୍ରସାଦ ମଧ୍ୟକୁ ଆସି ବାଦଶାଙ୍କୁ ସମସ୍ତ ଅବଗତ କରାଇଲେ । ବାଦଶା ଅତ୍ୟନ୍ତ ଆତଙ୍କିତ ହୋଇପଡିଲେ । କିନ୍ତୁ 'ଡଗଲାସ' ତାଙ୍କୁ ସାହସ ଦେଇ, ଇଂରାଜି ସେନା ଅଳ୍ପ ସମୟ ମଧ୍ୟରେ ପହଞ୍ଚିଯିବେ ବୋଲି କହି ଆଶ୍ୱାସନା ଦେଲେ । ଏହି ପରି କଥା ବାର୍ତ୍ତା ହେବା ସମୟରେ ବିଦ୍ରୋହୀମାନଙ୍କର ଚିତ୍କାର ସ୍ପଷ୍ଟ ଶୁଣାଗଲା । 'ଡଗଲାସ' ଦୁଇଜଣ ସିନିୟର ସୁବେଦାରଙ୍କୁ ଗଣ୍ଡଗୋଳର କାରଣ ବୁଝିବାପାଇଁ ପଠାଇଲେ । ସେମାନେ ଫେରି ଆସି କହିଲେ ଯେ ବିଦ୍ରୋହୀ ସିପାହୀ ମାନେ ଇଂରାଜିମାନେ ସେମାନଙ୍କର ଧର୍ମ ନଷ୍ଟ କରି ଖ୍ରୀଷ୍ଟିୟାନ କରିବାକୁ ଚେଷ୍ଟା କରୁଛନ୍ତି ବୋଲି ବାଦଶାଙ୍କ ପାଖରେ ଆପତ୍ତି ଜଣାଇବାକୁ ଚାହୁଁଛନ୍ତି । ଏହା 'ଡଗଲାସ'ଙ୍କୁ ଯୁକ୍ତି ଯୁକ୍ତ ବୋଧ ନହେବାରୁ ସେ କହିଲେ, ''ଏହା ବାଦଶାଙ୍କର ବ୍ୟକ୍ତିଗତ କକ୍ଷ, ଏଣୁ ଏଠାରେ କୌଣସି କଥା ଶୁଣାଯିବ ନାହିଁ । ଏଠାରେ ଗଣ୍ଡଗୋଳ କରିବା ଅପେକ୍ଷା ସେମାନେ ନଦୀ କୂଳରେ ଅପେକ୍ଷା କରି ରହିଥାନ୍ତୁ । ପରେ ବାଦଶା ସେମାନଙ୍କର କଥା ଶୁଣିବେ ।'' ସିପାହୀମାନେ ଏହି କଥାରେ ନଦୀକୂଳକୁ ଫେରିଯାଇ ଅପେକ୍ଷାରେ ରହିଲେ । 'ଡଗଲାସ' ପ୍ରାସାଦରୁ ସେମାନଙ୍କ ନିକଟକୁ ଯାଇ ସେମାନଙ୍କୁ ଶାନ୍ତ କରିବାକୁ ଭାବିଲେ । ସେ ଯିବାବେଳକୁ 'ବାଦଶା' ନିଜେ ତାଙ୍କର ହାତ ଧରି ପକାଇ ତାଙ୍କୁ ରୋକି ଦେଲେ । ଦରବାରର ବୈଦ୍ୟ 'ଆସନୁଲ୍ଲା' ହଠାତ୍ ପହଞ୍ଚି ଯାଇ କହିଲେ,ବର୍ତ୍ତମାନ ଆପଣ ସେମାନଙ୍କ ପାଖକୁ ଗଲେ, ସେମାନେ ଆପଣଙ୍କୁ କାଟି

---

* ବାଦଶାଙ୍କ ପାଖରେ ରୂପାର ବେତ ଧରି ମାଛି ହୁଡ଼ାଇବା ବ୍ୟକ୍ତି ।

ଚିକି ଚିକି କରିଦେବେ । 'ଡଗଲାସ' ଏହା ଶୁଣି ଝରକା ବାଟେ ଗହଳିକୁ ଲକ୍ଷ୍ୟ କଲେ । ସିପାହୀମାନେ ତଲଓ୍ୱାର ଓ ବନ୍ଧୁକ ମାନ ମୁଣ୍ଡ ଉପରେ ବୁଲାଇ ନାନା ପ୍ରକାର ଧ୍ୱନି ଦେଉଥିଲେ । 'ଡଗଲାସ' ପାରାପେଟ ଉପରକୁ ଯାଇ ସିପାହୀମାନଙ୍କୁ ଚିତ୍କାର କରି ବାରଣ କଲେ । ହଠାତ୍ ସେମାନଙ୍କ ମଧ୍ୟରୁ ଏକ ଗୁଳି ଆସି ପ୍ରାସାଦର କାଛକୁ ବିଦ୍ଧ କରି ଗ୍ରାନାଇଟ୍‌ର କିଛି ଛିଟା 'ଡଗଲାସ'ଙ୍କ ପାଖରେ ବିଛାଡି ଦେଲା । ସେ ତୁରନ୍ତ ଭିତରକୁ ଫେରିଆସିବା ସମୟରେ ଏକ ଜ୍ୱାଳାମୟୀ ନାରୀକଣ୍ଠ ଶୁଣିବାକୁ ପାଇଲେ । ତାହା ବାଦଶାଙ୍କର କନିଷ୍ଠା ପତ୍ନୀ 'ବେଗମ ଜିନତ୍‌ମହଲ'ଙ୍କର ସିପାହୀମାନଙ୍କୁ ପ୍ରାସାଦ ଉପରୁ ଉଦ୍‌ବୋଧନ ଥିଲା । କିଲ୍ଲାର ସମସ୍ତେ ଇଂରାଜି ବିରୋଧି ହୋଇଯିବା ଫଳରେ ଇଂରାଜିଙ୍କୁ ସନ୍ତୁଷ୍ଟ କରିବା ପାଇଁ 'ବାଦଶା'ଙ୍କର କୌଣସି ଆଦେଶ ପାଳନ କରିବା ପାଇଁ କେହି ପ୍ରସ୍ତୁତ ନଥିଲେ ।

ଏହି ସମୟରେ ବ୍ରିଟିଶ ସରକାର ଦେଉଥିବା ପେନସନର ହିସାବ ରକ୍ଷକ ଏବଂ ଇଂରାଜି ଓ ବାଦଶାଙ୍କ ମଧ୍ୟରେ ସଂଯୋଜକ 'ମୁନ୍‌ସୀ ଜୀବନଲାଲ', ନିଜର ପାଲିକିରେ ବିଧି ମୁତାବକ କୋର୍ଟକୁ ଯିବାକୁ ପ୍ରସ୍ତୁତ ହେଉଥିଲେ । ହଠାତ୍ ଭୃତ୍ୟ ଆସି ଜଣାଇଲା ଯେ କିଛି ଭାରତୀୟ ବିଦ୍ରୋହୀ ତାଙ୍କ ସହିତ ଦେଖା କରିବାକୁ ଚାହୁଁଛନ୍ତି । ସେମାନେ ମୁନ୍‌ସିଜୀଙ୍କୁ ଘରଛାଡି ବାହାରକୁ ନଯିବା ପାଇଁ ସତର୍କ କରାଇଦେଲେ । ସେମାନେ କହିଲେ ଯେ ରାସ୍ତାଘାଟରେ ଇଂରାଜି ମାନଙ୍କୁ ହତ୍ୟା କରାଯାଉଛି । ବଜାର ସବୁ ଲୁଟ କରାଯାଉଛି ଏବଂ ଇଂରାଜିମାନଙ୍କର ଘର ଓ ଅନୁଷ୍ଠାନ ମାନଙ୍କର ନିଆଁ ଲଗାଇଦିଆଯାଉଛି । 'ମୁନ୍‌ସିଜୀ', 'ଡଗଲାସ'ଙ୍କ ଘରକୁ, ଆଦେଶ ନିମିତ୍ତ ନିଜର ଭୃତ୍ୟକୁ ପଠାଇଦେଲେ । ପରିସ୍ଥିତି ଭୟାବହତା ଦେଖି 'ମୁନ୍‌ସିଜୀ' ଭୃତ୍ୟ ମାନଙ୍କୁ ଦୁଆର ସବୁ ତାଲା ଲଗାଇ ଦେବାକୁ କହିଲେ । ଏହି ଘରଟି 'ବାଦଶାହ ଫିରୋଜଶାହ'ଙ୍କ ଅମଳର ଥିଲା ।

'କମିଶନର ସାଇମନ ଫ୍ରାସର' ବିଦ୍ରୋହର ସମ୍ବାଦ ପାଇ 'ବାଦଶାହ'ଙ୍କୁ ଦେଖା କରିବାକୁ ପ୍ରସାଦ ଆଡକୁ ଆସୁଥିଲେ । ତାଙ୍କର ବାଟରେ 'ଡଗଲାସ'ଙ୍କ ସହ ଦେଖା ହେଲା । 'ଡଗଲାସ', କମିଶନରଙ୍କର ଟେଲିସ୍କୋପରେ ମାଇଲିଏ ଦୂରରେଥିବା ଛାଉଣୀରେ ନିଆଁ ଜଳୁଥିବାର ଦେଖିବାକୁ ପାଇଲେ । ସେ ସେହି ସ୍ଥାନରେ ଅନ୍ୟ ସାଥିମାନଙ୍କ ସହିତ ଛିଡା ହୋଇଥିବା ବେଳେ, ହଠାତ୍ ପାଞ୍ଚଜଣ ଘୋଡାସବାର ସିପାହୀ ଶୂନ୍ୟକୁ ଗୁଳି ଫୁଟାଇ ଆସିଲେ । ତନ୍ମଧ୍ୟରୁ ଜଣେ ସେମାନଙ୍କ ଆଡକୁ ଲକ୍ଷ୍ୟ କରି ଗୁଳି ଫୁଟାଇଲା । 'ଡଗଲାସ' ପ୍ରାସାଦର କାଛ ଡେଇଁଥିବା ଗାତକୁ

ଡେଇଁ ପଡିଲେ । କିନ୍ତୁ ଗୁଳିଟି ତାଙ୍କ ପାଦରେ ବାଜିଲା ଓ ସେ ଆହତ ହେଲେ । ତାଙ୍କର ସାଥିମାନେ ଆତ୍ମରକ୍ଷା ପାଇଁ କୋର୍ଟ ଆଡକୁ ଦଉଡି ପଳାଇଲେ । 'ଫ୍ରାସର' ଗୋଟିଏ ରକ୍ଷୀ ପ୍ରକୋଷ୍ଠ ମଧ୍ୟରେ ପଶିଗଲେ । ସେଠାରେ ଜଣେ ରକ୍ଷୀ ଛିଡା ହୋଇଥିଲା । 'ଫ୍ରାସର' ତାହାକୁ ଏକ ଗୋଇଠା ପକାଇ ତା'ଠାରୁ ରାଇଫଲ ଛଡାଇ ନେଇ ତାହାକୁ ଗୁଳି କଲେ ଓ ତାହା ଦେଖି ଅନ୍ୟମାନେ ଦୌଡି ପଳାଇଲେ । 'ଫ୍ରାସର', ବଗି ମଧ୍ୟରେ ପ୍ରବେଶ କରି ପ୍ରାସାଦ ଅଭିମୁଖେ ଯାତ୍ରାକଲେ । ଏହି ସମୟରେ ପଛରୁ କିଛି ଗୁଳି ତାଙ୍କର ମୁଣ୍ଡ ଉପର ଦେଇ ଚାଲିଗଲା । ତାଙ୍କର ବଗି ଖାଲ ଢିପ ନମାନି ପ୍ରବଳ ବେଗରେ ପ୍ରାସାଦ ଆଡକୁ ମୁହାଁଇଲା । 'ଫ୍ରାସର', 'କଲିକତା ଦ୍ୱାର'ରେ ପହଞ୍ଚିଲେ । ବାଦଶାଙ୍କର ଏଜେଣ୍ଟକୁ ଡକାଇ ସେ ଡଗଲାସଙ୍କ କୋଠିରେ ଥିବା 'ମିସେସ୍ ଜେନିଂ' ଓ 'ମିସେସ୍ କ୍ଲିଫୋର୍ଡ'ଙ୍କ ପାଇଁ ଦୁଇଟି ପାଲିଙ୍କିର ବ୍ୟବସ୍ଥା କରିବାକୁ କହିଲେ । ଏହାପରେ ସେ 'ବାଦଶା'ଙ୍କୁ, ସିପାହୀମାନଙ୍କୁ ଚାଲିଯିବାକୁ ଆଦେଶ ଦେବାପାଇଁ, ଅନୁରୋଧ କଲେ । ବାଦଶା ଉତ୍ତରରେ ଆଦେଶ ଦେଇ କହିଲେ,କମିଶନର ଯେପରି କହୁଛନ୍ତି ସେପରି ହେଉ । କିନ୍ତୁ ସିପାହୀମାନେ କମିଶନର ବା ବାଦଶା କାହାରି ହେଲେ କଥା ମାନିବା ଅବସ୍ଥାରେ ନଥିଲେ । ବାଦଶା କିଲ୍ଲାର ଫୌଜକୁ ଅବସ୍ଥା ଆୟତ୍ତ କରି ସେମାନଙ୍କର ବିଷୟରେ ବୁଝିବାକୁ ଆଦେଶ ଦେଲେ । 'ଫ୍ରାସର' ଦେଖିଲେ ସିପାହୀମାନଙ୍କର ଘୋଡାମାନ ବହୁତ କ୍ଲାନ୍ତ ଥିଲେ । କିନ୍ତୁ ସେମାନେ ସଂଖ୍ୟାରେ ବହୁତ ଅଧିକ ଥିଲେ ଓ ପ୍ରତ୍ୟେକଙ୍କ ହାତରେ କିଛି ନା କିଛି ଅସ୍ତ୍ର ଥିଲା । ସେମାନେ ଧୀରେ ଧୀରେ ପାଖେଇ ଆସୁଥିଲେ । 'ଫ୍ରାସର' ତୁରନ୍ତ ଉଠି ଠିଆ ହେଲେ ଓ ପ୍ରାସାଦର ଭାରତୀୟ ରକ୍ଷୀ ମାନଙ୍କୁ ବନ୍ଧୁକରେ ଗୁଳି ଭର୍ତ୍ତି କରି ଫାଟକ ପାଖକୁ ଯାଇ ସତର୍କରେ ଜଗି ରହିବାକୁ ଆଦେଶ ଦେଲେ । କିନ୍ତୁ କେହି ତାଙ୍କର ଆଦେଶ ପାଳନ କରିବାକୁ ରାଜିହେଲେ ନାହିଁ । ସେ ଅତ୍ୟନ୍ତ ବିରକ୍ତିର ସହିତ ଅକଥ୍ୟ ଭାଷାରେ ଗାଳି ଦେଇ ବାରମ୍ବାର ଆଦେଶ ଦେଲେ । କିନ୍ତୁ ସମସ୍ତେ ନୀରବରେ ଛିଡାହୋଇ ରହିଲେ । କାରଣ ସେମାନେ ଜାଣିଥିଲେ ଯେ 'ଫ୍ରାସର ସାହେବ' ଇଚ୍ଛାକଲେ ମଧ୍ୟ ସେମାନଙ୍କର କୌଣସି କ୍ଷତି କରିପାରିବନାହିଁ । 'ଫ୍ରାସର' ସେମାନଙ୍କ ଠାରୁ କୌଣସି ସାହାଯ୍ୟର ଆଶା-ନରଖି 'ଲାହୋର ଗେଟ' ଆଡେ ବଗିରେ ବସି ମୁହାଁଇଲେ । ସେ ବଗିରୁଁ ଓହ୍ଲାଇ 'ଡଗଲାସ'ଙ୍କ କୋଠିର ପାହାଚ ଚଢିବାକୁ ଯିବାବେଳକୁ ଦୁଇଜଣ ଲୋକଆସି ତାଙ୍କୁ ଦୁଇଗଡ କରି କାଟି ଦେଲେ । ଏହି ସମୟରେ 'ଡଗଲାସ' ପାହାଚ ପାଖରେ କିଛି

ଗଣ୍ଡଗୋଳ ଶୁଣିବାକୁ ପାଇଲେ । 'ଫ୍ରାସର' ଛାଡିଯିବା ପରେ ପରେ ଦୁଇଜଣ ଚପରାସି ତାଙ୍କୁ ଅର୍ଦ୍ଧ ଚୈତନ୍ୟ ଅବସ୍ଥାରେ ଘରେ ଆଣି ପହଞ୍ଚାଇ ଦେଇଥିଲେ । ଗଣ୍ଡଗୋଳ ସମୟରେ ସେ ଝରକା ବନ୍ଦ କରିବାକୁ ଯାଉଥିବାବେଳେ ଖଟ୍ ଖଟ୍ ଶବ୍ଦ ହେବାରୁ ଖୋଲିଦେବା ମାତ୍ରେ 'ପାଦ୍ରୀସାହେବ' ଓ ତାଙ୍କର ଝିଅ 'ମିସ୍ କ୍ଲିଫୋର୍ଡ' ସେହିବାଟେ ଭୟବିହ୍ୱଳିତ ଅବସ୍ଥାରେ କୋଠରୀ ମଧ୍ୟକୁ ପ୍ରବେଶ କଲେ । ଏହି ସମୟରେ ''ୟା ଆଲ୍ଲା, ୟା ଆଲ୍ଲା'' ଶବ୍ଦ କରି ଦ୍ୱାରରେ ପ୍ରବଳ ଜୋରରେ କରାଘାତ ହେବାକୁ ଲାଗିଲା । 'ଡଗଲାସ' ଦେଖିଲେ ଯେ ତାଙ୍କର ନିକଟରେ କୌଣସି ଅସ୍ତ୍ର ନାହିଁ । ତେବେ ସେ ନିଜର ତଲବାରଟି ଆଣିବାକୁ ଅର୍ଡର୍ଲିକୁ ପଠାଇଲେ ।

'ଡଗଲାସ', ତାଙ୍କ କୋଠିର ଉପର ମହଲାରେ ଥିଲେ । ତଳ ଭାଗ ବିଦ୍ରୋହୀମାନଙ୍କ ଦ୍ୱାରା ପୂରିଯାଇଥିଲା । ସେମାନେ ପାନଖାଇ ପିକ ପକାଉଥିଲେ ଓ ଉନ୍ମତ୍ତ ହୋଇ ନାନା ପ୍ରକାର ଚିତ୍କାର କରୁଥିଲେ । ଭୃତ୍ୟଟି ତଳକୁ ଆସିବା ମାତ୍ରେ ସେମାନେ ତାକୁ ଦ୍ୱାର ନ ଖୋଲିଲେ ଜୀବନରେ ମାରିଦେବେ ବୋଲି ଧମକ ଚମକ ଦେଲେ । ସେ ଫେରି ଆସୁଥିଲା । କିନ୍ତୁ ପାଦ୍ରୀ ସାହେବ ବିଶ୍ୱାସ କରିଥିଲେ ଯେ ଚାକରଟି ଲୋକମାନଙ୍କୁ ବୁଝାଇ ସୁଝାଇ ଫେରାଇଦେଇ ପାରିବ । ଏଣୁ ସେ ଚାକରଟିକୁ ଦ୍ୱାର ଖୋଲି ଦେବା ପାଇଁ କହିଲେ । ଚାକରଟି ଦ୍ୱାର ଖୋଲିଦେବା ସଙ୍ଗେ ସଙ୍ଗେ ବିଦ୍ରୋହୀମାନେ ତାକୁ ବାହାର କରି ଦେଇ 'ଡଗଲାସ'ଙ୍କୁ ହତ୍ୟା କଲେ । ଝିଅମାନେ ଏକ ମେହଗାନି ୱାର୍ଡରୋବର ପଛପଟେ ଲୁଚିଥିଲେ । କିନ୍ତୁ ସେମାନଙ୍କୁ ଠାବ କରାଯାଇ ହତ୍ୟା କରାଗଲା । 'ଜେନିଂ' ଗୋଟିଏ ତଲବାର ଧରି ସିପାହୀମାନଙ୍କ ସହିତ ଲଢିବାକୁ ଯିବା ସଙ୍ଗେ ସଙ୍ଗେ ବହୁ ସିପାହୀଙ୍କର ତଲବାରରେ କ୍ଷତବିକ୍ଷତ ହୋଇ ପ୍ରାଣତ୍ୟାଗ କଲେ । ଦୋକାନ ବଜାର ଘର ଦୁଆର ସବୁ ବନ୍ଦ ଥିଲା । ବିଦ୍ରୋହୀମାନେ ଏକ ହାତରେ ନିଆଁ ହୁଳା ଓ ଅନ୍ୟ ହାତରେ ଅସ୍ତ୍ର ଧରି, ଚିତ୍କାର କରି ରାସ୍ତାରେ ବୁଲୁଥିଲେ ଏବଂ ସ୍ଥାନେ ସ୍ଥାନେ ହତ୍ୟା ଓ ଲୁଟ କରୁଥିଲେ । କୌଣସିଠାରେ ଇଂରାଜି ଲେଖା ଦେଖିଲେ ଲୋକମାନେ ଦଳ ଦଳ ହୋଇଯାଇ ସେଥିରେ ନିଆଁ ଲଗାଇଦେଉଥିଲେ ।

ଦଳେ ସିପାହୀ ହଠାତ୍ ଦିଲ୍ଲୀ ବ୍ୟାଙ୍କ ଭିତରକୁ ପଶିଯାଇ ତାହାର କର୍ମଚାରୀମାନଙ୍କୁ ହତ୍ୟାକଲେ । ବ୍ୟାଙ୍କର ମ୍ୟାନେଜର ବେରେସ ଫୋର୍ଡ(Mr.Beres ford) ନିଜର ପରିବାର ସହ କୌଣସି ବହିଃ ପ୍ରକୋଷ୍ଠର ଛାତ ଉପରେ ଆଶ୍ରୟ ନେଲେ । ସେଠାରେ ସିପାହୀମାନେ ତାଙ୍କୁ ଦେଖି ପାହାଚରେ ବିପୁଳ ସଂଖ୍ୟାରେ ଚଢିବାକୁ

ଲାଗିଲେ । 'ବେରେସ'ଙ୍କ ପାଖରେ ତଲବାରଟିଏ ଥିଲା । ତାଙ୍କର ଉଚ୍ଚତା ହିଁ ତାଙ୍କ ପକ୍ଷରେ ସହାୟକ ହେଲା । କେହି ପାହାଚ ଚଢ଼ି ମୁଣ୍ଡ ଉଠାଇବା ମାତ୍ରେ ସେ ସହଜରେ ହାଣି ଦେଇ ପାରୁଥିଲେ । ଏହିପରି ଭାବରେ କିଛି ହତ୍ୟା କରିବା ପରେ ସିପାହୀମାନେ ପଛକୁ ହଟିଗଲେ । ଅଳ୍ପ କିଛି ସମୟ ପାଇଁ ଶାନ୍ତି ପ୍ରତିଷ୍ଠିତ ହେଲା । 'ବେରେସ' ନିଶ୍ଚିନ୍ତ ହୋଇ ନିଜର ପରିବାର ସହ ବିଶ୍ରାମ କରିବାକୁ ଗଲା ବେଳକୁ, ନିଃଶବ୍ଦରେ ଛାତର ଚତୁର୍ଦ୍ଦିଗରୁ ସିପାହୀମାନେ ଚଢ଼ି ଆସି ତାଙ୍କୁ ଘେରିଗଲେ ଓ ସମସ୍ତଙ୍କୁ ହାଣି ଦେଇଗଲେ । ସେଣ୍ଟ ଜେମ୍‌ସ ଚର୍ଚ୍ଚ ସ୍ତମ୍ଭର କିଛି ଅଂଶ ବିଦ୍ରୋହୀମାନେ ଭାଙ୍ଗିଦେଲେ । ଏହି ପରିସ୍ଥିତିରେ 'ବାଦଶାହ' ଲୋକଙ୍କୁ ଶାନ୍ତ କରିବାପାଇଁ ନିଜେ ହାତୀରେ ବସି ପଟୁଆର ସହ ନଗରୀ ପରିକ୍ରମା କଲେ । ବିଦ୍ରୋହୀ ସିପାହୀମାନେ ଘୋଡାରେ ବସି ଆସି 'ବାଦଶା'ଙ୍କୁ ଦେଖାକରି କହିଲେ, ''ଦିଲ୍ଲୀର ସିପାହୀମାନେ ଖଜଣାଖାନା ଲୁଟ୍ କରି ଓ ତାହାର ଅଂଶ ମିରଟର ସିପାହୀମାଙ୍କୁ ଦେଇନାହାନ୍ତି ।'' 'ବାଦଶା' ଏହାର ଉତ୍ତରରେ ବର୍ତ୍ତମାନ ହଠାତ୍ କିଛି କରିପାରିବେ ନାହିଁ ବୋଲି ମୁଣ୍ଡ ହଲାଇ ମନାକଲେ, ଓ ସେନାବାହିନୀର ଦାୟିତ୍ୱରେ ଥିବା ତାଙ୍କର ପୁଅକୁ ପରେ ଅଭିଯୋଗ ଶୁଣିବାକୁ କହି ଚାଲିଆସିଲେ ।

ସେଦିନ, ଦିଲ୍ଲୀରେ ଅବସ୍ଥାପିତ ରେସିଡେଣ୍ଟ୍ 'ସାର ଥିଓଫିଲସ୍ ମେଟକାଫ'(Sir Theophilips Metcalfe), ଟିକିଏ ବିଳମ୍ବରେ କୋର୍ଟରେ ପହଞ୍ଚଲେ । ସେଠରେ କେହି ନଥିଲେ । କେବଳ ଆସିଷ୍ଟାଣ୍ଟ ମାଜିଷ୍ଟ୍ରେଟ ଉପସ୍ଥିତ ଥିଲେ । ଏହି ସମୟରେ ନାଜିର 'ରାଣୀଚାନ୍ଦ ଦାସ' ଆସି ଖବର ଦେଲେ ଯେ ବ୍ରେଜେରୀ ଜଗିଥିବା ସିପାହୀ, ସରକାର ତାର ଧର୍ମ ନଷ୍ଟ କରୁଛନ୍ତି ବୋଲି ଅଭିଯୋଗ କରୁଛି । ଏହି ସମୟରେ ଯମୁନାନଦୀ ପୋଲର ଦାରୋଗା ମଧ୍ୟ ଆସି ବିଦ୍ରୋହୀମାନେ ନଗରୀ ଅଡକୁ ମାଡି ଆସୁଥିବାର ଜଣାଇଲା । 'ମେଟ୍‌କାଫ' ତୁରନ୍ତ ଆସିଷ୍ଟାଣ୍ଟ ମାଜିଷ୍ଟ୍ରେଟଙ୍କୁ ୨୪ଟି ରକ୍ଷୀ ସହିତ (ଗୋଳାବାରୁଦ ଓ ଅସ୍ତ୍ରର ଭଣ୍ଡାର) ମ୍ୟାଗଜିନ୍‌କୁ ରକ୍ଷା କରିବାକୁ ପଠାଇଦେଲେ ଓ ନିଜେ କଲିକତା ଦ୍ୱାର ଆଡକୁ ମୁହାଁଇଲେ । ରାସ୍ତାରେ ଦଳେ ଲୋକ ତାଙ୍କ ଆଡକୁ ଶୀଘ୍ର ଆସୁଥିବାର ସେ ଦେଖିବାକୁ ପଠାଇଲେ । ସେମାନଙ୍କଠାରୁ ସେ ଜାଣିଲେ ଯେ ବିଦ୍ରୋହୀମାନେ ନଗରୀ ଭିତରେ ପ୍ରବେଶ କରିସାରିଲେଣି । 'ମେଟକାଫ' କଟୁଆଳଙ୍କୁ ଶାନ୍ତି ରକ୍ଷା କରିବାକୁ ପଠାଇଦେଇ 'ଦରିଆଗଞ୍ଜ'ରେ ପହଞ୍ଚିଲେ । ସେଠାରେ ତିନିଜଣ ଘୋଡା ସବାର ତାଙ୍କର ବଗି ଉପରକୁ ପିସ୍ତଲରୁ ଗୁଳି ଚଳାଇଲେ । କିନ୍ତୁ 'ମେଟକାଫ' ଘୋଡାଚାବୁକ ବୁଲାଇ ସେମାନଙ୍କୁ ବାରମ୍ବାର ଲକ୍ଷ୍ୟ ଭ୍ରଷ୍ଟ କରିବା ସଙ୍ଗେ ସଙ୍ଗେ ବଗିକୁ ପ୍ରବଳ ବେଗରେ ଆଗକୁ ଚଳାଇଲେ । କିନ୍ତୁ ସମ୍ମୁଖ ଦିଗରୁ ଅନ୍ୟ ଏକ ଦଳ ବିଦ୍ରୋହୀ

ଆସି ତାଙ୍କର ପଥରୋଧ କଲେ । 'ମେଟକାଫ' ବିକଳରେ ବଗିରୁ ଡେଇଁ ପଡି ନିଜର କୋଟପ୍ୟାଣ୍ଟ ଫୋପାଡି ଦେଇ ଗଳିକନ୍ଦିରେ ଦଉଡି ଦଉଡି ଆସି 'ମାଧବ ଦାସ' ନାମକ ବ୍ୟକ୍ତିଙ୍କର ବଗିଚା ଭିତରେ ପଶିଗଲେ । ଏହି ସମୟରେ ସେ 'ଝଜ୍ଜାର' ରାଜାଙ୍କର ଘୋଡା ସବାର ବାହିନୀର ରିସାଲଦାର 'ମହମ୍ମଦ ଖାଁ'ଙ୍କୁ ଘୋଡାରେ ଯାଉଥିବା ଦେଖିଲେ । ସେ ପାଟିକରି ତାକୁ ଘୋଡାଟି ଦେବାକୁ କହିଲେ । ସେ ମନା କରିଦେବାରୁ 'ମେଟକାଫ' ତା'ର ପାଦଧରି ଟାଣି ତାକୁ ଘୋଡାରୁ ପକାଇ ଦେଇ ତତ୍କ୍ଷଣାତ୍ ସେହି ଘୋଡାରେ ଚଢି 'ଚୋରୀବଜାର' ଆଡେ ଗଲେ । ସେଠାରେ ମଧ ତାଙ୍କୁ ଘୋଡାସବାରଙ୍କୁ ସାମାନା କରିବାକୁ ପଡିଲା । ଅଗତ୍ୟା ସେ ଆଜମୀର ଦ୍ୱାର ଅତିକ୍ରମ କରି ପାହାଡଗଞ୍ଜରେ ପହଞ୍ଚିଲେ ।

'ମଇନୁଦ୍ଦିନ', ପାହାଡଗଞ୍ଜରେ କର୍ତ୍ତବ୍ୟରତ ଥାଇ ନିଜର ବରକନ୍ଦାଜମାନଙ୍କ ସହିତ କଥାବାର୍ତ୍ତା ହେଉଥିବା ଅବସ୍ଥାରେ 'ମେଟକାଫ' ଘୋଡାରେ ଆସି ପହଞ୍ଚିଲେ । 'ମଇନୁଦ୍ଦିନ', ଜଏଣ୍ଟମାଜିଷ୍ଟ୍ରେଟ 'ମେଟକାଫ'ଙ୍କୁ ଚିହ୍ନି ପାରିଲେ ଓ ଆସନରୁ ଉଠି ସଲାମକଲେ । ସେତେବେଳେ 'ମେଟକାଫ'ଙ୍କ ଶରୀରରେ ସାର୍ଟ ଓ ଅଣ୍ଡରୱେର ଛଡା କିଛି ନଥିଲା । ସେ କହିଲେ, ବିଦ୍ରୋହୀମାନେ ନଗରୀ ଭିତରେ ପଶି ଇଂରାଜିମାନଙ୍କୁ ହତ୍ୟା କରିବାରେ ଲାଗିଛନ୍ତି । ମୋତେ ଗୋଡାଉଥିଲେ । ମୁଁ ଏହି ଘୋଡାକୁ ଛଡାଇ ଏଥିରେ ପଳାଇଆସିଛି । ଏହାଶୁଣି 'ମଇନୁଦ୍ଦିନ' ତାଙ୍କୁ ଥାନାକୁ ନେଇ ପୋଷାକ ପିନ୍ଧିବାକୁ ଦେଲେ । 'ମେଟକାଫ' କିନ୍ତୁ ବାଛି ବାଛି ଦେଶୀ ପୋଷାକ ପିନ୍ଧିଲେ ଓ ହାତରେ ଏକ ଭଲ ତଲଓ୍ୱାର ନେଲେ । ସେ ଘୋଡାରେ ତାଙ୍କର ଘରକୁ ଯିବାକୁ ବାହାରିଲେ । କିନ୍ତୁ 'ମଇନୁଦ୍ଦିନ' ତାଙ୍କୁ ସେଥିରୁ ନିବର୍ତ୍ତାଇଲେ । ଏଣୁ 'ମେଟକାଫ' କହିଲେ, ମୋ ଶୋଇବା ଘରେ ଥିବା ଏକ ବାକ୍ସରେ ମୁଁ ୧୩୦୦୦ଟଙ୍କା ଓ କିଛି ସୁନା ମୋହର ରଖିଛି । କୌଣସି ବିଶ୍ୱସ୍ତ ଲୋକ ଯାଇ ତାହା ନେଇଆସୁ । ଏହା ଶୁଣି 'ମଇନୁଦ୍ଦିନ', 'କାଲୁଛ ସିଂହ ମୋହରିର' ଓ 'ଓମ୍‌ରାଓ ମିର୍ଜା'ଙ୍କୁ ସେଥିନିମନ୍ତେ ପଠାଇଲେ । ଏହି ସମୟରେ ଦୁଇଜଣ ପୋଲିସ ଆସି ପହଞ୍ଚିଲେ ଓ ଖବର ଦେଲେ ଯେ 'ମେଟକାଫ'ଙ୍କ ଘରକୁ ଯିବା ରାସ୍ତା ବିଦ୍ରୋହୀମାନଙ୍କ ଦ୍ୱାରା ଅବରୁଦ୍ଧ ହୋଇଛି । ନଗରୀରେ ଭୀଷଣ ହତ୍ୟାକାଣ୍ଡ ମାନ ସଂଘଟିତ ହେଉଛି । ଏହାଶୁଣି 'ମେଟକାଫ' ସେଠାରୁ 'ମଇନୁଦ୍ଦିନ'ଙ୍କ ସହିତ ଘୋଡାରେ 'ଫାରାଶଖାନା (Farashkhana) ପୋଲ' ଆଡକୁ ଗଲେ । ରାସ୍ତାରେ ବହୁ ବିଦ୍ରୋହୀ ଲାହୋର ଦ୍ୱାର ଦେଇ ସେମାନଙ୍କ ଆଡକୁ ଆସୁଥିବା ଦେଖାଗଲା । ରାସ୍ତାରେ 'ଓମ୍‌ରାଓ ମିର୍ଜା' ଓ 'କାଲିଆନ୍ ମୋହରୀ'ରଙ୍କ ସହ ମଧ ସେମାନଙ୍କର ଭେଟ ହେଲା । ସେ

ଦୁଇଜଣ ରାସ୍ତାରେ ଦେଖିଥିବା ଭୀଷଣ ଦୃଶ୍ୟମାନ ବର୍ଣ୍ଣନା କରି କହିଲେ ବର୍ତ୍ତମାନ ପରିସ୍ଥିତି ରେ ସେଠାକୁ ଯିବା ସମ୍ପୂର୍ଣ୍ଣ ଅସମ୍ଭବ । ଏହାପରେ 'ମଇନୁଦ୍ଦିନ', 'ମେଟ୍‌କୋଫ'ଙ୍କୁ ନେଇ ନଗରୀଠାରୁ ତିନି ମାଇଲ ଦୂରରେ 'ବାଗକୁତାପୀ' ରେ ଥିବା ତାଙ୍କର ନିଜର ଘରେ ପହଞ୍ଚାଇ, ଲୁଚାଇ ରଖିଲେ ଓ ନିଜେ ଆସି 'ପାହାଡ଼ଗଞ୍ଜ'ରେ ପହଞ୍ଚିଲେ । ସେଠାରେ ପହଞ୍ଚି ସେ ଦେଖିଲେ, ମାଜିଷ୍ଟ୍ରେଟ ନାହାନ୍ତ । ସେ ନିଜର ବେଶ ବଦଳାଇ ଦେଶୀ ପୋଷାକ ପିନ୍ଧିଲେ । ଏହାପରେ ଘୋଡାରେ ବସି ସେ କିଲ୍ଲା ଆଡ଼କୁ ଗଲେ । ରାସ୍ତାରେ ଦୋକାନ ବଜାର ସବୁ ବନ୍ଦହୋଇଥିଲା । ଇଂରାଜିମାନଙ୍କୁ ହତ୍ୟାକରାଯାଉଥିଲା ଓ ସେମାନଙ୍କର ଘରେ ନିଆଁଲଗାଇଦିଆଯାଉଥିଲା । 'ମଇନୁଦ୍ଦିନ', କେନ୍ଦ୍ରୀୟ ଥାନାରେ ଆସି ପହଞ୍ଚିଲେ । ତାହା ସମ୍ପୂର୍ଣ୍ଣ ଭସ୍ମ ହୋଇ ଯାଇଥିଲା । ଏପରିକି କବାଟଟିଏ ମଧ୍ୟ ନଥିଲା । ସେଠାରେ 'ମଇନୁଦ୍ଦିନ' ପାଟିକରି ଡାକିବା ଫଳରେ ଦୁଇଜଣ ପୁଲିସଙ୍କର ଶବ୍ଦ ଶୁଣିବାକୁ ମିଳିଲା, ସେମାନେ କହିଲେ ଯେ, ସକାଳୁ ଅପରାଧୀ ମାନଙ୍କୁ ଧରି କୋର୍ଟକୁ ନେବାବେଳେ ଘୋଡସବାରମାନେ ସେମାନଙ୍କ ହାତରୁ ଅପରାଧୀମାନଙ୍କୁ ଛଡାଇନେଇ ମୁକ୍ତ କରିଦେଇଛନ୍ତି । ଅପରାଧିମାନେ ମୁକ୍ତିପାଇ ଥାନାସବୁ ଲୁଟ୍ କରିଛନ୍ତି । କଟୁଆଳ, ଛାତରୁ ଡେଇଁପଡି ରକ୍ଷା ପାଇ ଯାଇଛନ୍ତି । 'ମଇନୁଦ୍ଦିନ' ସେହି ପୁଲିସମାନଙ୍କ ଠାରୁ ଖବର ପାଇଲେ ଯେ ବିଦ୍ରୋହୀମାନେ 'କାଶ୍ମୀର ଦ୍ୱାର' ଆଡକୁ ଇଂରାଜିମାନଙ୍କୁ ହତ୍ୟାକରିବାକୁ ଯାଇଛନ୍ତି । 'ମଇନୁଦ୍ଦିନ', 'ଲାହୋର ଦ୍ୱାର' ବାଟେ ଗଲାବେଳେ ଦଳେ ଦେଶୀ ପଦାତିକ ସିପାହୀଙ୍କୁ ଲାଇନ୍‌ରେ ଛିଡାହୋଇଥିବା ଦେଖିଲେ । ଘୋଡାକୁ ବାହାରେ ଛାଡି 'ମଇନୁଦ୍ଦିନ' ପ୍ରାସାଦଭିତରକୁ ଗଲେ ।

ଦିଲ୍ଲୀକଲେଜର ପ୍ରିନ୍ସପାଲ 'ଟେଲର' ଜଣେ କଠୋରପନ୍ଥୀ ଖ୍ରୀଷ୍ଟିଆନ ଥିଲେ । ସେ ବହୁ ଲୋକଙ୍କୁ ଖ୍ରୀଷ୍ଟିଆନ କରି ସାରିଥିଲେ । ସେ ଖୁବ୍ ଧନୀ ଥିଲେ ମଧ୍ୟ ଅତ୍ୟନ୍ତ କୃପଣ ସ୍ୱଭାବର ଥିଲେ । ସେ ପ୍ରାୟ ଦୁଇଲକ୍ଷଟଙ୍କା କଲିକତା ଓ ଦିଲ୍ଲୀ ବ୍ୟାଙ୍କରେ ଜମାଇଥିଲେ । ତାଙ୍କର ନଗରୀ ମଧ୍ୟରେ ନିଜର ଦୁଇଟି ବଙ୍ଗଳା ଥିଲା । ତାହାକୁ ଭଡାରେ ଲଗାଇ ସେ ପ୍ରଚୁର ଅର୍ଥ ଆୟ କରୁଥିଲେ । ପ୍ରତିଦିନ ନିଜଖାଇବା ବାବଦ ସେ ଅଣେ ଛଅପଇସା ଖର୍ଚ୍ଚ କରୁଥିଲେ ଓ ଅବଶିଷ୍ଟ ସମସ୍ତ ଅର୍ଥ ବ୍ୟାଙ୍କରେ ଜମାକରୁଥିଲେ । ଅବସର ସମୟରେ ବ୍ୟାଙ୍କରେ ବସି ସେ ତାହାର ହିସାବ କିତାବ ଯାଞ୍ଚ କରୁଥିଲେ । ସେଦିନ ଛଅଟାରୁ ସାଢେ ଆଠଟା ପର୍ଯ୍ୟନ୍ତ କଲେଜ ଖୋଲାଥିଲା । ବିଦ୍ୟାର୍ଥୀ ମାନେ ନିଜର ପୁସ୍ତକ ସହ ଶ୍ରେଣୀଗୃହ ପରିବର୍ତ୍ତନ କରୁଥିଲେ । ଏହି ସମୟରେ ୭/୮ ଜଣ ଅଭିଭାବକ ଦଉଡି ଦଉଡି ଆସି ସେମାନଙ୍କୁ ଘରକୁ ଫେରିଯିବାକୁ କହିଲେ । ସେମାନେ କହିଲେ

ଯେ ମିରଟର ଘୋଡସବାରମାନେ ସହରରେ ଇଂରାଜିମାନଙ୍କୁ ହତ୍ୟା ଓ ଲୁଟତରାଜ ଚଳାଇଛନ୍ତି । ଇଂରାଜି ଶାସନ ଚାଲିଗଲା । ଏ ଖବର ପାଇ କଲେଜରେ କୋଳାହଳ ଓ ଅବ୍ୟବସ୍ଥା ଦେଖାଗଲା । 'ପ୍ରିନ୍ସିପାଲ ଟେଲର' ଛାତ୍ରମାନଙ୍କର ହଲ୍ଲାଗୋଳ ଶୁଣି ବାହାରକୁ ଆସି ଶୃଙ୍ଖଳା ଅନୁଶାସନ ବ୍ୟବସ୍ଥା କରିବା ସମୟରେ କଲେଜର ଚପରାସି ଆସି 'ମେଗ୍‌ଜିନ'ରୁ ପଠାହୋଇଥିବା ଏକ ପତ୍ର ତାଙ୍କ ହାତରେ ଦେଲା । ସେଥିରେ ଲେଖାଥିଲା, ''ବିପଦ ଅଛି, ସମସ୍ତ ଇଂରାଜି ଅଧ୍ୟାପକଙ୍କୁ ଧରି 'ମେଗ୍‌ଜିନ'କୁ ତୁରନ୍ତ ଚାଲିଆସ !'' ପତ୍ରଟି ପଢି 'ଟେଲର' ତୁରନ୍ତ ନିଜର ପ୍ରକୋଷ୍ଠକୁ ଚାଲିଗଲେ ଓ ସେଠାରେ ଅନ୍ୟ ଅଧ୍ୟାପକମାନଙ୍କ ସହ ପରାମର୍ଶ କରିବାକୁ ଲାଗିଲେ । ତାପରେ ସେ 'ପ୍ରଫେସର ରାମଚନ୍ଦ୍ର'ଙ୍କୁ କିଛି ଆଦେଶ ଦେଇ କଲେଜ ଛୁଟି କରିଦେଲେ ଓ ଅନ୍ୟ ଇଂରାଜି ଅଧ୍ୟାପକମାନଙ୍କ ସହିତ 'ମେଗଜିନ୍'କୁ ଚାଲିଗଲେ ।

ମେଗଜିନ୍, ସହରର ଶାହୀମହଲ ନିକଟରେ ଥିଲା । ଲେଫଟ୍‌ନାଣ୍ଟ ଜର୍ଜ ଉଇଲୋବାଇ ତାହାର ଦାୟିତ୍ୱରେ ଥିଲେ । ତାଙ୍କ ସହିତ ୯ଜଣ ଇଂରାଜି ସୈନିକ ଓ କିଛି ହିନ୍ଦୁସ୍ଥାନୀ ସିପାହୀ ଓ କର୍ମଚାରୀ ଥିଲେ । 'ମିରଟ୍'ଠାରୁ ସୈନ୍ୟ ସହାୟତା ପାଇବା ଆଶାରଖି ସେମାନେ 'ମେଗଜିନ' ରକ୍ଷା, ତଥା ଆତ୍ମରକ୍ଷା ବ୍ୟବସ୍ଥା କରୁଥିଲେ । ସେନାର ପ୍ରଧାନକାର୍ଯ୍ୟାଳୟରୁ ସେମାନଙ୍କର ସମସ୍ତ ସଂଯୋଗ ତୁଟିଯାଇଥିଲା । ହଠାତ୍ ସେମାନଙ୍କ ନିକଟରେ ଥିବା ତେଲେଙ୍ଗା ସୈନ୍ୟମାନେ ସେମାନଙ୍କୁ ଛାଡିଯାଇ ବିଦ୍ରୋହୀ ମାନଙ୍କ ସହିତ ମିଶିଗଲେ । 'ମେଟକାଫ', 'ମେଗଜିନ'କୁ ଆସିଲେ । ସେ 'ଉଇଲୋବାଇ'ଙ୍କୁ ଆଦେଶ ଦେଇ ଯମୁନା ଉପରେଥିବା ପୋଲକୁ ଉଡାଇଦେବାକୁ କହିଲେ । ଏହାର ଉତ୍ତରରେ 'ଉଇଲୋବାଇ' କହିଲେ ଯେ ପ୍ରଥମତଃ, ବିଦ୍ରୋହୀମାନେ ପୋଲ ଉପର ଦେଇ ନଗରୀରେ ପ୍ରବେଶ କରି ସାରିଲେଣି । ଦ୍ୱିତୀୟତଃ, ତୋପର ଗୋଲନ୍ଦାଜ୍ ତେଲଙ୍ଗା ସିପାହୀମାନେ ପଳାୟନ କରି ବିଦ୍ରୋହୀମାନଙ୍କ ସହିତ ଯୋଗ ଦେଇଛନ୍ତି । 'ମେଟକାଫ', କିଛି ଉପାୟ ଗଭୀର ଭାବେ ଚିନ୍ତା କରିବା ସମୟରେ ଦଳେ ସିପାହୀ 'ଶାହୀଫର୍ମାନ୍' ଧରି ଆସି ପହଞ୍ଚିଗଲେ ଓ କହିଲେ, ''ବାଦଶାଙ୍କର ହୁକୁମ, ଏହି 'ମେଗଜିନ'କୁ ଆମ ହାତରେ ସମର୍ପଣ କର ।'' ତୁରନ୍ତ ଲେଫଟନାଣ୍ଟ ପ୍ରତିବାଦ କରି କହି ଉଠିଲେ, ''ଏହା କୌଣସି ପ୍ରକାରେ ସମ୍ଭବ ହୋଇ ପାରିବ ନାହିଁ ।'' ସିପାହିମାନେ କହିଲେ, ''ତେବେ ଆମେ ବାଧ ହୋଇ କିଲ୍ଲାରୁ ସିଡିରେ ଚଢ଼ି ଭିତରକୁ କୁଦି ପଡିବୁ ।'' ଲେଫଟନାଣ୍ଟ କହିଲେ, ''କିନ୍ତୁ ଏହାର ଫଳାଫଳ ବହୁତ ଖରାପ ହେବ ।'' ସିପାହୀମାନେ କହିଲେ, ''ତୁ କିନ୍ତୁ ବଞ୍ଚିକରି ରହିବୁ ନାହିଁ ।'' ଲେଫଟନାଣ୍ଟ ମଧ୍ୟ ଉତ୍ତେଜିତ ହୋଇ ଜବାବରେ

କହିଲେ, ''ମୁଁ ବଞ୍ଚିକରି ନରହିପାରେ, କିନ୍ତୁ ତୁମେ ମାନେ ମଧ କେହି ବଞ୍ଚିକରି ରହିବ ନାହିଁ । ମୁଁ ବଞ୍ଚିଥିବା ପର୍ଯନ୍ତ ଏହି ମେଗଜିନରେ କେହି ହାତ ରଖିପାରିବେ ନାହିଁ ।'' ଏହି ସମୟରେ କିଛି ସିପାହୀ ସିଡିମାନ ପକାଇ ବିଭିନ୍ନ ଦିଗରୁ ଚଢିଗଲେ । ଲେଫଟନାଣ୍ଟ ଉଇଲୋବାଇ ଜଣେ କର୍ତ୍ତବ୍ୟନିଷ୍ଠ ଓ ତେଜସ୍ୱୀ ପୁରୁଷ ଥିଲେ । ସେ ଦେଖିଲେ ଯେ 'ମିରଟ'ରୁ କୌଣସି ସାହାଯ୍ୟର ଆଶା ନାହିଁ । 'ସାର ମେଟକାଫ' ମଧ ଦିଲ୍ଲୀ ଛାଉଣୀରୁ ସୈନ୍ୟ ପଠାଇବା ପାଇଁ ଚାଲିଯାଇଛନ୍ତି । ହଠାତ୍ ଏ ପରିସ୍ଥିତିରେ ସେଠାରୁ କିଛି ସାହାଯ୍ୟ ଆଶା କରିବା ବୃଥା । 'ମେଗଜିନ'ର ସଦର ଦରଜା ବନ୍ଦଥିଲା ଓ ତା ମଧରେ 'ଉଇଲୋବାଇ' ଅନ୍ୟ ସିପାହୀମାନଙ୍କ ସହ କର୍ତ୍ତବ୍ୟରତ ଥିଲେ । 'ମେଗଜିନ'ରେ ସେମାନଙ୍କ ବ୍ୟତୀତ କିଛି ଇଂରାଜି ପରିବାର ମଧ ଆଶ୍ରୟ ନେଇଥିଲେ । ବାହାରୁ ଗୁଳିମାଡ ହେଉଥିଲା । ଜବାବ ଦେବାର କୌଣସି ଅର୍ଥ ନଥିଲା । ତିନି ପହର ବେଳକୁ 'ଉଇଲୋବାଇ' ଅନ୍ତିମ ଆଦେଶ ପ୍ରଦାନ କଲେ । ସମସ୍ତ ତୋପରେ ଅଗ୍ନି ସଂଯୋଗ କରାଗଲା । ଏକ ପ୍ରଚଣ୍ଡ ବିସ୍ଫୋରଣ ସହ ଦିଲ୍ଲୀ ନଗରୀକୁ ପ୍ରକମ୍ପିତ କରି 'ମେଗଜିନ୍'ଟି, ସେଥିରେ ଓ ଆଖପାଖରେ ଥିବା ଲୋକମାନଙ୍କ ସହ ଉଡିଯାଇ, ଇତସ୍ତତଃ ହୋଇ, ବିଚ୍ଛୁରିତ ହୋଇ ପଡି, ମୃତ୍ୟୁର କରାଳ ଧ୍ୱଂସ ଲୀଳା ସଂଘଟିତ କଲା । 'ମେଗଜିନ' ଉଡାଇଦିଆ ଯିବା ସମୟରେ 'ଟେଲର' କୌଣସି ପ୍ରକାରେ ସେଠାରୁ ପଡି ଉଠି ପଳାଇ ଆସିଥିଲେ । ସେ କଲେଜର ଖାନସାମାର ଘରେ ଯାଇ ପହଞ୍ଚିଲେ । ସେ ସମୟରେ ଆଦୌ ତାଙ୍କୁ ଚିହ୍ନି ହେଉ ନଥିଲା । ତାଙ୍କର ବାଳ ଫୁର୍ ଫୁର୍ ହୋଇ ଉଡୁଥିଲା । ଦେହରେ ଥିବା ସାର୍ଟ ପ୍ୟାଣ୍ଟ ସବୁ ଫଟା ଫଟା ହୋଇ ଫାଟି ଯାଇଥିଲା । ବୁଢା ଖାନସାମା ତାଙ୍କୁ 'ମୌଲବୀ ମହମ୍ମଦ' ନାମକ ଜଣେ ପୁରାତନ ମିତ୍ରଙ୍କ ଘରକୁ ନେଇ ସେଠାରେ ଲୁଚାଇ ରଖିଲା । ମୌଲବୀ ସାହେବ, 'ଟେଲର'ଙ୍କୁ ସାରାରାତି 'ଇମାମ ବାଡା'ରେ ଲୁଚାଇ ରଖିଲେ । ସମସ୍ତ ସତର୍କତା ସତ୍ୱେ; 'ଟେଲର'ଙ୍କର ସ୍ଥିତି ବିଷୟରେ ଲୋକଙ୍କୁ କୌଣସି ପ୍ରକାରେ ଖବର ମିଳିଗଲା । ଏଣୁ ମୌଲବୀ ସାହେବ, ତାଙ୍କୁ ଭାରତୀୟ ପୋଷାକରେ, ଛଦ୍ମବେଶରେ, ବାହାରକୁ ପଠାଇଦେଲେ । କିନ୍ତୁ ରାସ୍ତାରେ 'ଟେଲର' ଲୋକଙ୍କ ହାତରେ ଧରାପଡିଲେ ଓ ସେହିଠାରେ ଲୋକମାନେ ତାଙ୍କୁ ବାଡେଇ ବାଡେଇ ମାରି ଦେଲେ । ସାରା ଦିନ ତାଙ୍କର ଶବ ରାସ୍ତା ଉପରେ ପଡିରହିଲା । କେହି ଭୂଲରେ ସୁଦ୍ଧା ସେ ଆଡେ ଅନାଇଲେ ନାହିଁ ।

ସେହିଦିନ ସୂର୍ଯ୍ୟୋଦୟ ସମୟରେ କ୍ୟାଣ୍ଟନମେଣ୍ଟରେ, ପ୍ୟାରେଡ଼ରେ ସବୁ ସୈନ୍ୟମାନେ ଉପସ୍ଥିତ ଥିଲେ । ତହିଁ ମଧରେ, ୩୮ତମ ୪୪ତମ ଓ ୭୪ତମ ଦେଶୀ

ପଦାତିକ ବାହିନୀ ମଧ୍ୟ ଥିଲେ । ତତ୍ ସଙ୍ଗେସଙ୍ଗେ ଏକ ଦେଶୀ ଗୋଲନ୍ଦାଜ ବାହିନୀ ମଧ୍ୟ ଥିଲା । 'ଜମାଦାର ଈଶ୍ୱର ପାଣ୍ଡେ'ଙ୍କର କୋର୍ଟ ମାର୍ଶାଲ ହେଲା ଓ ତାଙ୍କୁ ସମସ୍ତଙ୍କ ସମ୍ମୁଖରେ ଦଣ୍ଡାଦେଶ ଶୁଣାଦିଆଗଲା । ହଠାତ୍ ଦେଶୀ ସିପାହୀମାନଙ୍କ ମଧ୍ୟରେ ଅସନ୍ତୋଷର ଏକ ଲହର ଖେଳିଗଲା ଓ ପାରସ୍ପାରିକ ଅଶାନ୍ତି ପ୍ରକାଶରେ ଅଶାନ୍ତ ମର୍ମର ଶବ୍ଦ ହେବାକୁ ଲାଗିଲା । କିଛି ଇଂରାଜି ଅଫିସରମାନେ ଏହାସବୁ ଲକ୍ଷ୍ୟ କରିଥିଲେ ମଧ୍ୟ ପ୍ୟାରେଡ୍ ପରେ ବ୍ରେକ୍‌ଫାଷ୍ଟ ଟେବୁଲରେ ତାହାକୁ ଏକ ସାମୟିକ ଅଶାନ୍ତି ବୋଲି ଧରିନେଇଥିଲେ ଓ ପରସ୍ପର ମଧ୍ୟରେ ହାଲୁକା କଥାବାର୍ତ୍ତା ଓ ହାସ୍ୟ ବିନୋଦରେ ମତ୍ତ ଥିଲେ । ହଠାତ୍ ଦେଶୀ ଭୃତ୍ୟ ଓ ଅର୍ଡର୍ଲିମାନେ ସମ୍ବାଦ ଦେଲେ ଯେ 'ମିରଟ୍'ର ଦେଶୀ ସିପାହୀମାନେ ନଗର ମଧ୍ୟରେ ପ୍ରବେଶ କରି ଇଂରାଜି ହତ୍ୟା ଲୁଟ୍ ଓ ଗୃହଦାହ ଚଳାଇଛନ୍ତି । ସଙ୍ଗେ ସଙ୍ଗେ ୫୪ତମ ବାହିନୀକୁ ଡକାଗଲା । ଏହାସହିତ ଏକ ଗୋଲନ୍ଦାଜ ବାହିନୀ, ଓ ଦୁଇଟି କମ୍ପାନୀ ପଦାତିକ ବାହିନୀ ଯିବା ସ୍ଥିର ହେଲା । ବାହିନୀ 'କାଶ୍ମୀରୀ ଦରଜା' ଆଡକୁ ଆଗେଇଗଲା । ଏହି ଦରବାଜାର ଅପରପାର୍ଶ୍ୱରେ 'ମେଗଜିନ' ଅବସ୍ଥିତ ଥିଲା ଓ ୩୮ତମ ବାହିନୀ ସେଠାରେ ପୂର୍ବରୁ କର୍ତ୍ତବ୍ୟରେ ଥିଲେ ମଧ୍ୟ ବର୍ତ୍ତମାନ ପରିସ୍ଥିତିରେ ପଳାଇଯାଇ ବିଦ୍ରୋହୀମାନଙ୍କ ସହ ଯୋଗଦାନ କରିଥିଲେ । 'କର୍ଣ୍ଣେଲ ରିପ୍ଲେ'(Cornel Ripley) ୫୪ତମ ବାହିନୀ ସହ 'କାଶ୍ମୀରୀଦରବାଜା'ରେ ପହଞ୍ଚିଲେ । ସେଠାରେ ସେ 'ମିରଟ୍'ରୁ ଆସିଥିବା ତୃତୀୟ ଘୋଡାସବାର ବାହିନୀର ମୁହାଁ ମୁହିଁ ହେଲେ । ତୃତୀୟ ଘୋଡାସବାର ବାହିନୀ ସେମାନଙ୍କ ଆଡକୁ ନିର୍ବିଘ୍ନରେ ଆଗେଇବାକୁ ଲାଗିଲେ । 'ରିପ୍ଲେ' ୫୪ତମ ବାହିନୀର ସିପାହୀମାନଙ୍କୁ ସେମାନଙ୍କର ବନ୍ଧୁକରେ ଗୁଳି ଭର୍ତ୍ତି କରିବାକୁ ଆଦେଶ ଦେଲେ ଓ ପରେ ପରେ ହଠାତ୍ ସେମାନେ ଇଂରାଜି ଅଫିସରମାନଙ୍କୁ ଗୁଳି କରିବାକୁ ଲାଗିଲେ । ଏହାପରେ 'ରିପ୍ଲେ'ଙ୍କୁ କାଟି ଦିଆଗଲା । ତାଙ୍କର ଶବ ପାଖରେ 'ସ୍ମିଥ୍', 'ବରୋଜ୍', 'ଏଡୱାର୍ଡ', 'ୱାଟରଫିଲ୍ଡ' ଆଦିଙ୍କର ପ୍ରାଣଶୂନ୍ୟ ଶରୀର ବିଛାଡିହୋଇ ପଡିଥିଲା ।

ଏହି ଇଂରାଜି ସଂହାର ପର୍ବ ଚାଲିଥିଲାବେଳେ ଯେଉଁ ଇଂରାଜି ମାନେ କୌଣସି ପ୍ରକାରେ ବଞ୍ଚିଗଲେ ସେମାନେ, ଗାଡିରେ, ଜଙ୍ଗଲରେ, ନଈଭିତରେ, ଛଦ୍ମବେଶରେ ଓ ବିଭିନ୍ନ ଉପାୟରେ ମିରଟ, ଅମ୍ବାଲା ଓ କର୍ଣ୍ଣାଲକୁ ପ୍ରାଣ ରକ୍ଷା କରି ପଳାଇଗଲେ । ସେ ମଧ୍ୟରୁ ଥୋକେ ରାସ୍ତାରେ ବିଦ୍ରୋହୀ ମାନଙ୍କହାତରେ ହଣା ଖାଇଲେ ଓ ଗ୍ରାମବାସୀ ମାନଙ୍କ ଦ୍ୱାରା ଲୁଟ୍ ହେଲେ । ଅଳ୍ପ କିଛି କୌଣସି ପ୍ରକାରେ ପ୍ରାଣ ନେଇ ପଳାଇଆସିଲେ ।

'ବାଦଶା', ନିଜର 'ହାକୀମ ଅହସାନୁଲ୍ଲା'ଙ୍କ ସହିତ ଧୀରେ ଧୀରେ କଥା କହୁଥିଲେ । ଏହି ସମୟରେ ଖବର ଆସିଲା ଯେ 'କ୍ୟାପଟେନ୍ ଡଗଲାସ', 'କମିଶନର

ଫ୍ରେଜର’ ଓ ‘କଲେକ୍ଟର ହଚିନସନ’କୁ ହତ୍ୟା କରାଯାଇଛି । ‘ବାଦଶା’ ଏହା ଶୁଣି କାହାକୁ କିଛି ନକହି ପ୍ରକୋଷ୍ଠ ଭିତରକୁ ଚାଲିଗଲେ । ଏହି ସମୟରେ ହୋଇହଲ୍ଲା କରି କିଲ୍ଲାଭିତରକୁ ବିଦ୍ରୋହୀମାନେ ପଶିଆସିଲେ । ସେମାନେ ଶୂନ୍ୟକୁ ପିସ୍ତଲ ଓ ବନ୍ଧୁକରୁ ଗୁଳିଚାଳନା କରୁଥିଲେ । ପ୍ରାସାଦର ଆଦବ କାଇଦା ଭଙ୍ଗ ହୋଇଥିଲା । ସେତେବେଳେ ସନ୍ଧ୍ୟା ହୋଇଆସୁଥିଲା । ‘ବାଦଶା’ଙ୍କପାଖରେ ତାଙ୍କର ଶାହାଜାଦାଗଣ, ‘ମିର୍ଜାମୋଗଲ’, ‘ମିର୍ଜାଖିଜିର’, ‘ମିର୍ଜା ଓ ସୁଲତାନ ଅବୁବେକର’ ଆଦି ସମସ୍ତେ ଉପସ୍ଥିତ ଥିଲେ । ସେମାନେ ସବୁ ନିଜ ନିଜ କଳ୍ପନା ଜଳ୍ପନାରେ ଥିଲେ । ସେମାନଙ୍କର ସମ୍ମୁଖରେ ପୁରାତନ ସମ୍ମାନର ପ୍ରତିଷ୍ଠାର ସୁଯୋଗ ଆସିଥିଲା ବୋଲି ସେମାନେ ଭାବୁଥିଲେ । ସେମାନଙ୍କର ମନରେ ଆଦମ୍ୟ ଉତ୍ସାହ ଥିଲା । କିନ୍ତୁ ତତ୍ ସଙ୍ଗେ ସଙ୍ଗେ ସେମାନଙ୍କର ଦୂରଦର୍ଶୀତାର ମଧ୍ୟ ଅଭାବ ଥିଲା । ସୂର୍ଯ୍ୟ ଅସ୍ତ ହେବାକୁ ଯାଉଥିଲେ । ତାଙ୍କର ନାଲି କିରଣ ସମସ୍ତଙ୍କ ଉପରେ ପଡୁଥିଲା । ସେମାନେ ବିଦ୍ରୋହୀଙ୍କ ସହିତ ଯୋଗ ଦେବେ କି ନାହିଁ ଏଥିନେଇ ଦ୍ୱିଧାରେ ପଡିଥିଲେ । ବାଦଶା ପଗଡି ପିନ୍ଧିଲେ, କମରରେ ତଲବାର ଲଗାଇଲେ ଓ ଧୀରେ ଧୀରେ ଚାଲି ଚାଲି ଦୀଓ୍ୱାନିଖାସକୁ ଆସିଲେ । ସବୁ ‘ଶାହାଜାଦା’,‘ହକୀମ ଅହସାନୁଲ୍ଲାହ ଖାଁ’, ‘ଖ୍ୱାଜା ଅବ୍ବାସ’ ଆଦି ତାଙ୍କର ସେବାରେ ଥିଲେ । ‘ଦିଓ୍ୱାନିଖାସ’ ର ଦରବାରରେ ଛିଡା ହୋଇ ‘ବାଦଶା’, ‘ଅହସାନୁଲ୍ଲାହ ଖାଁ’କୁ ହୁକୁମ ଦେଇ କହିଲେ,ସିପାହୀମାନେ ଶାନ୍ତ ରହନ୍ତୁ ଓ ଘୋଡାରୁ ଓହ୍ଲାଇ ପଡନ୍ତୁ । ସେମାନଙ୍କର ସର୍ଦ୍ଦାର ମୋର ସମ୍ମୁଖରେ ହାଜିର ହୁଅନ୍ତୁ । ତତ୍‌କ୍ଷଣାତ୍ ସିପାହୀମାନେ ଚୁପ୍‌ଚାପ୍ ଘୋଡାରୁ ଓହ୍ଲାଇ ଲାଇନ କରି ଛିଡା ହୋଇଗଲେ । ଦୁଇ ଜଣ ସୁବେଦାର ଆଗକୁ ଆସି ‘ବାଦଶା’ଙ୍କ ସମ୍ମୁଖରେ ଛିଡାହୋଇ କାଇଦା ମୁତାବକ ଭୂମିକୁ ଚୁମ୍ୱନ କଲେ । ବାଦଶା, ‘ହକୀମ ଅହସାନୁଲ୍ଲା’ଙ୍କ ମାଧ୍ୟମରେ ସେମାନଙ୍କ ସହିତ କଥାବାର୍ତ୍ତା ହେଲେ । ‘ଅସନୁଲ୍ଲା’, ‘ବାଦଶା’ଙ୍କ ଦ୍ୱାରା ନିର୍ଦ୍ଦେଶିତ ହୋଇ ସେହି ସୁବେଦାର ଦୁଇଜଣଙ୍କୁ ପଚାରିଲେ, ‘‘ତୁମେମାନେ କିଏ ଓ ହଜୁରଙ୍କଠାରୁ କଣ ଚାହୁଁଛ’’ ଉତ୍ତରରେ ସେମାନେ କହିଲେ, ‘‘ଅମେ ମିରଟ୍‌ର ସିପାହୀ । ଆମର ଧର୍ମ ଉପରେ ଆଘାତ କରାହୋଇଛି । ଆମେ ଇଂରାଜି ଅଫିସର ମାନଙ୍କୁ ହତ୍ୟା କରି ଆପଣଙ୍କ ସମ୍ମୁଖରେ ହାଜିର ହୋଇଛୁ । ଆପଣ ଆମର ‘ବାଦଶା’, ଆପଣ ଆମର ଧର୍ମ ରକ୍ଷା କରନ୍ତୁ । ଆମକୁ ନ୍ୟାୟ ଦିଅନ୍ତୁ ।’’ ବାଦଶା କହିଲେ, ‘‘ମୋତେ ‘ବାଦଶା’ ବୋଲି କିଏ କହୁଛି । ମୁଁ ତ ଜଣେ ଏକାନ୍ତବାସୀ ଫକୀର । ମୋତେ କଷ୍ଟ ଦେବାକୁ ତୁମେମାନେ କାହିଁକି ଆସିଲ ?’’ ସେମାନେ କହିଲେ, ‘‘ହଜୁର ଆମ ସାଥିରେ ନ ରହିଲେ ଆମେମାନେ

ମୁର୍ଦ୍ଧର ହୋଇଯିବୁ । ଆମେ କିଛି କରିପାରିବୁ ନାହିଁ ।'' କିନ୍ତୁ 'ବାଦଶା' ଦ୍ୱିଧାକରି କହିଲେ, ''ତୁମେମାନେ ତ ଇଂରାଜିଙ୍କ ଠାରୁ ନିୟମିତ ଦରମା ପାଇଆସିଛ । ତୁମକୁ ଏତେ ଦରମା ନିୟମିତ ଭାବରେ ଦେବାପାଇଁ ମୋର ଏତେ ଖଜଣା ଥବା କାହିଁ? ନା ଫୌଜ ଅଛି ନା ରାଜ୍ୟ ଅଛି ଯେ ତୁମକୁ ସାହାଯ୍ୟ କରିବି ।'' ସେମାନେ କହିଲେ, ''ହଜୁର ଖାଲି ମୁଣ୍ଡ ଉପରେ ହାତ ରଖିଦିଅନ୍ତୁ । ଆମେ ସାରାଦେଶରୁ ଇଂରାଜି ଖଜଣାଖାନା ଲୁଟ କରି ଆଣି ହଜୁରଙ୍କର ପାଦତଳେ ଢାଳିଦେବୁ । ଆମେ ମିରଟ୍‌ରେ ଇଂରାଜିମାନଙ୍କୁ ଧ୍ୱଂସ କରିଛୁ । ଦିଲ୍ଲୀ ତ ଆପଣଙ୍କର, ଆପଣଙ୍କର ହୁକୁମ ଅପେକ୍ଷାରେ ପେଶବାର ଠାରୁ ଦିଲ୍ଲୀ ପର୍ଯ୍ୟନ୍ତ ପ୍ରତ୍ୟେକ ସିପାହୀ ଅନାଇ ବସିଛନ୍ତି ।'' 'ବାଦଶା' ଏହାର କୌଣସି ଜବାବ ଦେଲେ ନାହିଁ । ସେ କମ୍ପିତ ପଦକ୍ଷେପରେ ଅସନ ଉପରେ ଆସି ବସିଗଲେ । ସୁବେଦାର ଦୁଇଜଣ ଆଣ୍ଠୋଇ ବସି ମୁଣ୍ଡ ନୁଆଁଇଲେ । 'ବାଦଶା' ନିଜର ଆଶୀର୍ବାଦ ତାଙ୍କ ମୁଣ୍ଡ ଉପରେ ରଖିଦେଲେ । ସେମାନେ ପ୍ରସନ୍ନ ହୋଇ ପଛକୁ ଘୁଞ୍ଚିଗଲେ । ଏହି ପ୍ରକାରେ ଜଣ ଜଣ କରି ସିପାହୀ, 'ବାଦଶା'ଙ୍କର ଆଶୀର୍ବାଦ ନେବାକୁ ଲାଗିଲେ । ଏହି ସମୟରେ ବାହାରେ ତୋପ ଗର୍ଜି ଉଠିଲା । ତାହା ବିଦ୍ରୋହୀ ନେତାମାନଙ୍କର 'ଶାହନଶାହେ ହିନ୍ଦ୍' କୁ ସଲାମୀ ଥିଲା ।

କ୍ରମେ ରାତ୍ରି ଗଭୀର ହେବାକୁ ଲାଗିଲା ସବୁ କିଛି ଶାନ୍ତ ଥିଲା । କିନ୍ତୁ ହଠାତ୍ ୨୧ ଥର ତୋପ ଗର୍ଜିଉଠିଲା । 'ମଇଉଦ୍ଦିନ' ମନେ କଲେ ଯେ 'ମିରଟ୍'ରୁ ଇଂରାଜି ବାହିନୀ ଆସି ସମ୍ଭବତଃ ଦିଲ୍ଲୀ ଅଧିକାର କରିସାରିଲେଣି । କିନ୍ତୁ ସକାଳୁ, ତାଙ୍କର ଧାରଣା ଭୁଲ୍ ବୋଲି ପ୍ରମାଣିତ ହେଲା । ରାଜପୁରରେ ଅବସ୍ଥାପିତ ଚାରୋଟି ରେଜିମେଣ୍ଟ, ବିଦ୍ରୋହୀମାନଙ୍କ ସହିତ ମିଳି ଯିବାର ଆନନ୍ଦରେ ସେହି ତୋପ ଫୁଟା ଯାଇଥିଲା ।

## ମେ ୧୨ ତାରିଖ

ମେ ବାର ତାରିଖ ଦିନ ସକାଳେ, ଦେଶୀ ଅଫିସରମାନେ 'ବାଦଶା'ଙ୍କର ଦର୍ଶନ ଦାବୀ କଲେ ଓ ନଜର ପେଶକଲେ, ଏବଂ ଆପଣାକୁ ବିଶ୍ୱସ୍ତ ଭୃତ୍ୟ ଓ ହଜୁରଙ୍କର ଆଦେଶ ପାଳନ ପାଇଁ ସେମାନେ ସଦାବେଳେ ପ୍ରସ୍ତୁତ ଅଛନ୍ତି ବୋଲି ମଧ୍ୟ ପ୍ରକାଶ କଲେ । 'ହାକୀମ ଅସନୁଲ୍ଲହ ଖାଁ' 'ବାଦଶା'ଙ୍କୁ ଗୁପ୍ତରେ କହିଲେ ଯେ ଏମାନଙ୍କ ଉପରେ ବିଶ୍ୱାସ କରିବା ଉଚିତ ନୁହେଁ । ପରେ 'ଅସନୁଲ୍ଲାହ' ନଗରୀର ନେତୃ ସ୍ଥାନୀୟ ବ୍ୟକ୍ତି, ଯଥା:- 'ଅମିନୁଦ୍ଦିନ ଖାଁ', 'ମିର୍ଜା ଦେରାଉଦ୍ଦିନ୍ ଖାଁ', 'ହସନ ଅଲ୍ଲି ଖାଁ', 'ଜାଜାରର ରାଜାଙ୍କର ଉକେଲ' ଇତ୍ୟାଦିଙ୍କୁ ଡକାଇ ପରାମର୍ଶ କଲେ । ନଗରୀରେ ଶାନ୍ତି ଶୃଙ୍ଖଳା

ରକ୍ଷା କରିବା ଓ ସିପାହୀମାନଙ୍କୁ ଖାଦ୍ୟ ଯୋଗାଇଦେବା ପାଇଁ ଏକ ପରିଷଦ ଗଠନ କରାଗଲା । 'ହସନଅଲ୍ଲୀ' ଏଥିରେ ଯୋଗଦେବା ପାଇଁ ନିଜର ଅକ୍ଷମତା ପ୍ରକାଶ କରି ଓହରିଗଲେ । ଏହି ଦାୟିତ୍ୱ ମେହବୁବ 'ଅଲ୍ଲି ଖାଁ'ଙ୍କ ଉପରେ ନ୍ୟସ୍ତ କରାଗଲା । ସିଭିଲକୋର୍ଟର ପ୍ଲିଡର 'ତରଫଗୁଲହୋସେନ'ଙ୍କର ପୁତ୍ର 'ମହମ୍ମଦ ମୀର ନବାବ'ଙ୍କୁ, ଦିଲ୍ଲୀର ଗଭର୍ଣ୍ଣର କରାଗଲା । 'ନବାବ ହମୀଦଅଲ୍ଲି ଖାଁ'ଙ୍କୁ, ଇଂରାଜିମାନଙ୍କୁ ଲୁଚାଇ ରଖିଥିବା ଅପରାଧରେ ଅଭିଯୁକ୍ତ କରାଗଲା । ତାଙ୍କୁ ବନ୍ଦୀ କରି ଅଣାଗଲା ଓ ବାଦଶାଙ୍କ ୱାଜିରଙ୍କର ଆଦେଶ ବଳରେ ମୁକ୍ତ କରାଗଲା । ସିପାହୀମାନେ ସର୍ତ୍ତ ରଖିଲେ ଯେ ତାଙ୍କର ଗୃହର ସମ୍ପୂର୍ଣ୍ଣ ତଲାସୀ ନିଆଯିବ ଓ ଯଦି କୌଣସି ଇଂରାଜି ଦେଖା ଯିବେ ତେବେ ସିପାହୀମାନେ ଯଥେଚ୍ଛା ବ୍ୟବହାର କରିପାରିବେ ନଚେତ ଛାଡିଦିଆଯିବ ।

'ପାଟିଆଲା', 'ଜାଜ୍ଜାର', 'ବୁଲୁକ ଗଡ', 'ବାହାଦୂର ଗଡ' ଓ 'ଏଲୋର' ଆଦି ରାଜ୍ୟର ରାଜାମାନଙ୍କ ପାଖକୁ ସେମାନଙ୍କ ସୈନ୍ୟ ସହ ଦିଲ୍ଲୀକୁ ଆସିବାର ସନ୍ଦେଶ ନେଇ 'ବାଦଶା'ଙ୍କର ଦୂତମାନେ ଛୁଟି ଚାଲିଲେ । ସାରା ଅପରାହ୍ନ ପ୍ରାସାଦଟି ସିପାହୀମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇଥିଲା ଓ ସେମାନେ ଦୋକାନ ସବୁ ବନ୍ଦ ଅଛି ଏଣୁ ପ୍ରଭୁଙ୍କର ଭୃତ୍ୟମାନେ ଓପାସ ରହିଅଛନ୍ତି ବୋଲି ଉଚ୍ଚସ୍ୱରରେ ଚିତ୍କାର କରୁଥିଲେ । ସେମାନେ ଦାବୀ କଲେ ଯେ, 'ବାଦଶା' ନିଜେ ନଗରୀ ପରିକ୍ରମା କରି ଦୋକାନ ବଜାର ଆଦି ଖୋଲି ସ୍ୱାଭାବିକ ଅବସ୍ଥା ଫେରାଇ ଆଣିବା ପାଇଁ ନାଗରିକ ମାନଙ୍କୁ ଆଦେଶ ଦିଅନ୍ତୁ । ଫଳରେ 'ବାଦଶା', ଏକ ହାତୀରେ ଚଢି ପ୍ରତି ଦୋକାନରେ ବ୍ୟକ୍ତିଗତ ଭାବରେ ଦୋକାନ ବଜାର ଖୋଲିବା ପାଇଁ ହୁକୁମ ଜଲେ ମଧ ତାଙ୍କ କଥା କେହି ଶୁଣିଲେ ନାହିଁ । ଯେତେବେଳେ 'ବାଦଶା' ପ୍ରାସାଦକୁ ଫେରିଆସିଲେ, ସେତେବେଳେ 'ଦେଓ୍ୱାନିଖାସ'ର ପରିସର, ସିପାହୀମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇଥିବାର ଦେଖିଲେ । ସେମାନେ 'ବାଦଶା'ଙ୍କୁ ଦେଖି ଉଚ୍ଚସ୍ୱରରେ ଅଭିଯୋଗ କଲେ, .ଦିଲ୍ଲୀ ସିପାହୀମାନେ ବ୍ୟାଙ୍କ ଖଜଣାଖାନା ଲୁଟ୍ କରି ସମସ୍ତ ଅର୍ଥ ନେଇଛନ୍ତି ଓ ସେମାନଙ୍କୁ ତାହାର କୌଣସି ଅଂଶ ଦେଇ ନାହାନ୍ତି । 'ବାଦଶା' ଏହି ପ୍ରକାର ଅବ୍ୟବସ୍ଥା ଦେଖି ସେନା ବାହିନୀର ଦାୟିତ୍ୱରେ ଥିବା 'ଶାହାଜାଦା'ଙ୍କୁ ସବୁ ସିପାହୀଙ୍କୁ ସହର ବାହାରକୁ ଚାଲିଯିବା ପାଇଁ ଆଦେଶ ଦେବାକୁ କହିଲେ । ସେ ଗୋଟିଏ ରେଜିମେଣ୍ଟକୁ ପ୍ରାସାଦରେ ନଗରୀର ସୁରକ୍ଷା ପାଇଁ ମୁତୟନ କରି ଅନ୍ୟସବୁ ରେଜିମେଣ୍ଟକୁ ବିଭିନ୍ନ ସ୍ଥାନରେ ଅବସ୍ଥାପିତ କରିବା ପାଇଁ କହିଲେ । ଅନ୍ୟ ଏକ ରେଜିମେଣ୍ଟ କିଲ୍ଲା ଓ ଯମୁନା ନଦୀର ମଧ୍ୟବର୍ତ୍ତୀ ସ୍ଥାନରେ ଅବସ୍ଥାପିତ କରିବା ପାଇଁ କହିଲେ । 'ବାଦଶା' ଏହା ସହିତ ଦୁଇଜଣ ସୁବେଦାରଙ୍କୁ ସେମାନଙ୍କର ସେନା

ସହ ଦିଓ୍ୱାନୀଖାସ୍‌କୁ ରକ୍ଷା କରିବା ପାଇଁ ଆଦେଶ ଦେଲେ । ଆଉ ଏକ ରେଜିମେଣ୍ଟକୁ 'ଆଜମୀର ଦରବାଜା'ରେ ଅବସ୍ଥାପିତ କରାଗଲା । ଏହିପରି ୪ର୍ଥ ରେଜିମେଣ୍ଟକୁ 'ଦିଲ୍ଲୀ ଦରବାଜା' ଓ ୫ମ ରେଜିମେଣ୍ଟକୁ 'କାଶ୍ମୀର ଦରବାଜା'ରେ ଅବସ୍ଥାପିତ କରାଗଲା । 'ବାଦଶା'ଙ୍କର ଏହି ଆଦେଶ ଆଂଶିକ ଭାବରେ କାର୍ଯ୍ୟକାରୀ ହେଲା । ଏହାପରେ 'ବାଦଶା'ଙ୍କ ପାଖରେ ସବୁ ପ୍ରକାର ଅଭିଯୋଗ ସ୍ତୁପୀକୃତ ହେବାକୁ ଲାଗିଲା । ଇଂରାଜି ଭୃତ୍ୟମାନଙ୍କର ରକ୍ଷାର ପ୍ରାର୍ଥନା, ଦୋକାନୀମାନଙ୍କର ଲୁଟ୍ ତରାଜରୁ ବଞ୍ଚିବା ପାଇଁ ପ୍ରାର୍ଥନା, ସିପାହୀମାନଙ୍କର ଦୋକାନମାନ ଆଦେଶ ଦେଇ ଖୋଲିବା ପାଇଁ ପ୍ରାର୍ଥନା, ଇତ୍ୟାଦି ବହୁ ଅଭିଯୋଗର ଉତ୍ତର ଦେବାକୁ ଯାଇ 'ବାଦଶା', ସୁବେଦାର ମାନଙ୍କୁ ମୋଗଲଶାସନର ଗୌରବ ବିଷୟରେ ଆଭିଜାତ୍ୟ ପୂର୍ଣ୍ଣ ଢଙ୍ଗରେ ସୁନ୍ଦର ଭାଷାପୂର୍ଣ୍ଣ ରାଜକୀୟ ଶୈଳୀରେ, ମର୍ଯ୍ୟାଦା ସମ୍ପନ୍ନ ଭାଷଣ ଦେଉଥିବା ସମୟରେ, ସିପାହୀମାନେ ତାଙ୍କୁ, ଆରେ ବଦମାସ, ଆରେ ବୁଢା, ଆଦି ଅଶାଳୀନ ଭାଷାରେ ଗାଳିଗୁଲଜ କରୁଥିଲେ ଓ କେହି କେହି ତାଙ୍କର ଦାଢୀରେ ମଧ୍ୟ ହାତମାରୁଥିଲେ । ନିଜର ଭୃତ୍ୟମାନଙ୍କ ସମ୍ମୁଖରେ ନିଜର ଭାଗ୍ୟହୀନତାକୁ ଧିକ୍କାର କରିବା ଛଡା 'ବାଦଶା'ଙ୍କର କିଛି ଉପାୟ ନ ଥିଲା । ଏହି ପରିସ୍ଥିତି ମଧ୍ୟରେ ପ୍ରାସାଦର ଦ୍ୱାର ଦେଶରୁ ସିପାହୀମାନଙ୍କର ପ୍ରବଳ ଚିତ୍କାର ଭାସିଆସିଲା । ସେମାନେ 'ବାଦଶା'ଙ୍କୁ ଦ୍ୱିତୀୟ ଥର ପାଇଁ ନଗର ପରିକ୍ରମା କରି ଦୋକାନ ବଜାର ଖୋଲିବା ପାଇଁ ଆଦେଶ ଦେବାକୁ ଦାବୀ କଲେ । ଏଣୁ 'ବାଦଶା' ପୁନର୍ବାର ନଗରୀ ପରିକ୍ରମା କରି, ଦୋକାନ ବଜାର ଆଦି ଖୋଲା ରଖିବାକୁ ବଣିକ ବେପାରୀମାନଙ୍କୁ ଆଦେଶ ଦେଲେ । କିନ୍ତୁ ଯେଉଁମାନେ ତାଙ୍କର ଆଦେଶକୁ ଦିନେ ଅମ୍ଳାନ ବଦନରେ ପାଳନ କରି ଆସିଥିଲେ । ସେମାନେ ବର୍ତ୍ତମାନର ପରିସ୍ଥିତିରେ କିଛି ଶୁଣିବାକୁ ପ୍ରସ୍ତୁତ ନଥିଲେ । ଏହି ପ୍ରକାରେ ବାଦଶା ସାରାଦିନ ସିପାହୀମାନଙ୍କ ହାତରେ କ୍ରୀଡନକ ହୋଇରହି ଅବଶେଷରେ ପ୍ରାସାଦକୁ ଫେରିଆସିଲେ ।

## ମେ ୧୩ ତାରିଖ

ପ୍ରାସାଦରେ ଖବର ପହଞ୍ଚିଲା ଯେ 'କିଶାନଗଞ୍ଜ'ର ରାଜାଙ୍କ ପାଖରେ କିଛି ଇଂରାଜି ଥିବାର ସନ୍ଦେହ କରି, ତାଙ୍କର ପ୍ରାସାଦକୁ ସିପାହୀମାନେ ଘେରିଯାଇଛନ୍ତି । ସେଠାରେ ପ୍ରାୟ ତିରିଶ ଜଣ ଇଂରାଜି ଓ ସେମାନଙ୍କର ଅନୁଗତମାନେ ଥିଲେ । ଦୁଇ ଦିନ କାଳ କୌଣସି ପ୍ରକାରେ ସେମାନେ କ୍ଷୁଧା ଓ ତୃଷାରେ କାଳ କାଟିଦେଲେ । କିନ୍ତୁ ତୃତୀୟଦିନ ଅବସ୍ଥା ଅସମ୍ଭାଳ ହେବାରୁ, ସେମାନେ ରାସ୍ତାରେ ଯାଉଥିବା ପାଣିବାଲା

ଠାରୁ ପାଣିପିଇବା ପରେପରେ, ସେହି ପାଣିବାଲା ଯାଇ ରାସ୍ତାରେ ଭେଟିଥିବା ସିପାହୀଦଳକୁ ଏଇ ବିଷୟରେ କହିଲା । ଫଳରେ ତତ୍‌କ୍ଷଣାତ୍ ଏହି ଇଂରାଜିମାନଙ୍କୁ ଆକ୍ରମଣ କରିବାକୁ ସିପାହୀମାନେ ଆସିଲେ । କିନ୍ତୁ ପ୍ରାସାଦଟି ଖୁବ୍ ସୁଦୃଢଥିଲା ଓ ତନ୍ମଧ୍ୟରେ ଥିବା ଇଂରାଜିମାନେ ସେମାନଙ୍କ ପାଖରେ ଥିବା ବନ୍ଧୁକରୁ ବିଦ୍ରୋହୀମାନଙ୍କ ଉପରେ ଗୁଳିଚାଳନା କରିବା ଫଳରେ ସେମାନେ ଭିତରକୁ ପଶି ପାରିନଥିଲେ । ଏହି ସମୟରେ 'ସୟଦ୍ ଗୋଲାମ ଆବ୍‌ବାସ', ଏ ଖବର 'ବାଦଶା'ଙ୍କୁ ଜଣାଇଲେ ଓ ଏକଥା ମଧ୍ୟ ପରାମର୍ଶ ଦେଲେ ଯେ, ବର୍ତ୍ତମାନ ଇଂରାଜିମାନଙ୍କୁ ରକ୍ଷା କରିଥିଲେ ଭବିଷ୍ୟତରେ 'ବାଦଶା', ସେମାନଙ୍କର ସୁନଜରରେ ରହିପାରିବେ । 'ବାଦଶା' ମଧ୍ୟ ଦେଖିଲେ, ଆଶ୍ରୟ ପ୍ରାର୍ଥୀମାନଙ୍କ ମଧ୍ୟରେ 'ଡେଭିସ୍'(kM.r.Davis),'ବେଲି'(Baile)ପ୍ରଭୃତି ଏଜେଣ୍ଟ ଅଫିସର, ଓ କ୍ଷମତାଶାଳୀ ଇଂରାଜି କିରାଣୀମାନେ ଅଛନ୍ତି । 'ଡେଭିସ୍' ବାଦଶାଙ୍କର ପେନସନ୍ ଦାୟିତ୍ୱରେ ଥିଲେ । ଏହିସବୁ ଦୃଷ୍ଟି କୋଣରୁ ବିଚାର କରି ସେ ତାଙ୍କର ଜ୍ୟେଷ୍ଠ ପୁତ୍ର 'ମିର୍ଜା କୋବାସ'ଙ୍କ ହାତରେ ଅଦେଶନାମା ଦେଇ ପଠାଇଦେଲେ । ନିର୍ଦ୍ଦେଶମତେ 'ମିର୍ଜାକୋବାସ' ସେଠାରେ ପହଞ୍ଚି ଆଶ୍ରୟ ନେଉଥିବା ଇଂରାଜି ମାନଙ୍କୁ କ୍ଷୁଧା, ତୃଷାରେ ଥିବାର ଦେଖି ସେମାନଙ୍କୁ ଆଶ୍ୱାସନା ଦେଇ କହିଥିଲେ ଯେ ସେ, ସେମାନଙ୍କୁ ବାଦଶାଙ୍କ ପାଖକୁ ନେଇଯିବେ । କିନ୍ତୁ ପରକ୍ଷଣରେ ଏହି ଇଂରାଜମାନେ ସିପାହୀମାନଙ୍କ ହାତରେ ପଡି ମୃତ୍ୟୁ ବରଣ କରିଥିଲେ ଓ 'ମିର୍ଜା' ଏକାକୀ ପ୍ରାସାଦକୁ ଫେରିଯାଇଥିଲେ ।

ମିର୍ଜା ମଇନୁଦ୍ଦିନ୍ ହାସନ୍ ଖାଁଙ୍କୁ ନଗରୀର ମୁଖ୍ୟ କଟୁଆଳ ରୂପେ ନିଯୁକ୍ତି ଦିଆଯାଇ ସିପାହୀମାନଙ୍କୁ ଖାଦ୍ୟପଦାର୍ଥ ଆଦି ଯୋଗାଇବା ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ କରାଗଲା । 'ମିର୍ଜା ମଇନୁଦ୍ଦିନ୍', 'ମିର୍ଜା କଇର୍ ସୁଲତାନ୍' ଓ 'ମିର୍ଜା ଅବଦୁଲ୍ଲା'ଙ୍କୁ ପଦାତିକ ବାହିନୀର କର୍ଣ୍ଣେଲରୂପେ ନିଯୁକ୍ତି ଦିଆଗଲା । ଦୁଇଶହ ବିଦ୍ରୋହୀ ସିପାହୀ କେନାଲର ରେଭିନ୍ୟୁ ଅଫିସର 'ନାରାୟଣ ଦାସ'ଙ୍କ ଘର ଲୁଟ୍ କଲେ ଓ ସେଠରେ ଲୁଚିଥିବା ଇଂରାଜିମାନଙ୍କୁ ହତ୍ୟା କଲେ । 'ବାଦଶା', ଜୟପୁରରୁ ସୈନ୍ୟ ପଠାଇବା ପାଇଁ ଆଦେଶ ଦେଇ ଦୂତ ପଠାଇଲେ ।

## ମେ ବାର ତାରିଖ

'ବାଦଶା' ଦୁଆର କିଳି ସାରାଦିନ ନିଜର ପ୍ରକୋଷ୍ଠ ମଧ୍ୟରେ ରହିଲେ ଓ କାହାକୁ ଦେଖାଦେଲେ ନାହିଁ । ପରେ ସେ 'ମୌଲବୀ ସୁଜେନଉଦ୍ଦିନ୍ ଖାଁ ବାହାଦୂର'ଙ୍କୁ ନଗରୀର ମାଜିଷ୍ଟ୍ରେଟ୍ ରୂପେ ନିଯୁକ୍ତି ଦେବା ଖବର ପଠାଇଲେ । କିନ୍ତୁ ମୌଲବୀ ସାହେବ ନିଜର ଖରାପସ୍ୱାସ୍ଥ୍ୟର ଆଳ ଦେଖାଇ ବିରତ ରହିଲେ । 'ବାଦଶା', କଲେକ୍ଟରିଏଟ୍‌ରେ

କୋଷାଧକ୍ଷଙ୍କୁ ଡକାଇ, ମେ ଏଗାର ତାରିଖର ହିସାବ୍ ମଗାଇଲେ ମଧ୍ୟ, କିଛି ସଠିକ ହିସାବ ପାଇପାରିଲେ ନାହିଁ। 'ଜୟପୁର', 'ଯୋଧପୁର', 'ବିକାନୀର' ଆଦି ରାଜାମାନଙ୍କୁ ସୈନ୍ୟସହ ଆସିବାପାଇଁ ଆଦେଶ ପଠାଗଲା । ଖବର ଆସିଲା ଯେ, 'ଚନ୍ଦ୍ରୋଲି'ର ଗୁଜ୍ଜରମାନେ 'ଦାମରରାମ'ଙ୍କର ନେତୃତ୍ୱରେ ବହୁ ସଂଖ୍ୟାରେ ବିଦ୍ରୋହୀ ହୋଇଉଠୁଛନ୍ତି । ମିର୍ଜା ଆବୁ ବକ୍‌ଙ୍କର ଅଧିନରେ ଏକ ସେନା ପଠାଯାଇ ଗୁଜ୍ଜର ଗ୍ରାମକୁ ଗୁଳିକରିଦିଆଗଲା । ଏହି ସମୟରେ 'ମିରଟ୍'ରୁ ଇଂରାଜିସେନା ଆସିଗଲେଣି ବୋଲି, ଅପପ୍ରଚାର ଆରମ୍ଭ ହୋଇଗଲା । ଯିଏ ଏଖବର ଦେଇଥିଲା ତାହାକୁଇଂରାଜି ଗୁପ୍ତଚର ବୋଲି ସନ୍ଦେହ କରି ବନ୍ଦୀ କରାଗଲା । 'ବାଦଶା' ଖବର ପାଇଲେଯେ ରାସ୍ତାରେ ବହୁ ଇଂରାଜିଙ୍କର ମୃତ ଦେହ ପଡିରହିଛି । ସେ କେବଳ 'ଡଗଲାସ' ଓ 'ଫ୍ରାସର'ଙ୍କର ଶବକୁ ଆଣି ଖ୍ରୀଷ୍ଟିଆନ୍ ରୀତିରେ କବର ଦେବାଛଡା ଅନ୍ୟ ସମସ୍ତ ଶବକୁ ନଦୀଗର୍ଭକୁ ଫୋପାଡି ଦେବା ପାଇଁ ଆଦେଶ ଦେଲେ । ଦେଶୀ ଅଫିସରମାନେ ଏହି ସମୟରେ ଆସି, ପୁନର୍ବାର ଖାଦ୍ୟ ଯୋଗାଣରେ ଅବ୍ୟବସ୍ଥା ବିଷୟରେ ଆପତ୍ତି ଜଣାଇଲେ । ଯୋଗାଣର ଅଭାବ ହେଲେ, ସିପାହୀମାନଙ୍କର ଲୁଟ୍‌କୁ ରୋକିବା କଷ୍ଟକର ହୋଇପଡିବ ବୋଲି ମଧ୍ୟ ଜଣାଇଲେ । 'ବାଦଶା', 'ହାକିମ ଅସନୁଲ୍ଲାହା ଖାଁ' ଓ 'ନବାବ ମେହେବୁବ ଅଲ୍ଲି ଖାଁ'ଙ୍କୁ ଖାଦ୍ୟଶସ୍ୟ ଯୋଗାଣର ବ୍ୟବସ୍ଥା କରି ନଗରୀକୁ ଲୁଟ୍‌ରୁ ବଞ୍ଚାଇବା ପାଇଁ ଆଦେଶ ଦେଲେ ।

## ମେ ପନ୍ଦର ତାରିଖ

ନଗରୀର ସୁରକ୍ଷା ପାଇଁ ଶହେ ସଂଖ୍ୟା ବିଶିଷ୍ଟ ଏକ ପୋଲିସ ବାହିନୀର ନିଯୁକ୍ତି ପାଇଁ ଆଦେଶ ପ୍ରଦାନ କରାଗଲା । 'ଅବଦୁଲ କାଜିର', ନୂତନ ଶାସନ ବ୍ୟବସ୍ଥା ପାଇଁ ଅଫିସରମାନଙ୍କର ଏକ ତାଲିକା ପ୍ରସ୍ତୁତ କଲେ । 'ମେହବୁବ ଅଲ୍ଲି ଖାଁ', 'ଅବଦୁଲ କାଜିର'ଙ୍କୁ ଦୁଇଟି ଘୋଡା ସବାର ବାହିନୀର ଅଧିନାୟକତ୍ୱ ପ୍ରଦାନ କଲେ । ଖବର ପହଞ୍ଚିଲା ଯେ, ମାଜିଷ୍ଟ୍ରେଟ ଓ କଲେକ୍ଟର ଗୋଟିଏ ପଦାତିକ ବାହିନୀ ଓ ଗୋଟିଏ ଘୋଡାସବାର ବାହିନୀ ସହ ଖଜଣାଖାନା ରକ୍ଷା କରିବାକୁ 'ରୋହତକ'ରେ ଆସି ପହଞ୍ଚିଛନ୍ତି । 'ଅବଦୁଲ କରିମ୍ ଖାଁ'ଙ୍କୁ ୪୦୦ ପଦାତିକ ଓ ୧୦୦୦ ଘୋଡାସବାର ବିଶିଷ୍ଟ ଏକ ବାହିନୀ ଗଠନ କରିବାକୁ ଆଦେଶ ପ୍ରଦାନ କରାଗଲା । ପଦାତିକ ବାହିନୀ ଓ ଘୋଡାସବାର ବାହିନୀ ସିପାହୀଙ୍କର ଦରମା ଯଥାକ୍ରମେ ପାଞ୍ଚ ଟଙ୍କା ଓ ତିରିଶ ଟଙ୍କା ରହିଲା । ଚାରିଟଙ୍କା ନଜରାନା ପେଶ କରିବା ପରେ 'ମହମ୍ମଦ ପର୍ଜୁଲିଆ'ଙ୍କୁ ନଗରୀର

କଟୁଆଳ ରୂପେ ନିଯୁକ୍ତି ଦିଆଗଲା । 'ଅବଦୁଲ ହାକିମ'ଙ୍କୁ ନାଏବ କାଜି ରୂପେ ନିଯୁକ୍ତି ଦିଆଗଲା ।

## ମେ ଷୋହଳ ତାରିଖ

ସିପାହୀମାନେ, ପ୍ରାସାଦର ସମ୍ମୁଖରେ ସକାଳୁ ଜମାହୋଇ 'ବାଦଶା' ଓ ତାଙ୍କର ଅଫିସରମାନଙ୍କୁ, ଇଂରାଜିମାନଙ୍କୁ ରକ୍ଷା କରିବା ଅଭିଯୋଗରେ ଅଭିଯୁକ୍ତ କରି, ଧମକ ଚମକ ଦେବାକୁ ଲାଗିଲେ ଓ ସେହିମାନଙ୍କ ସାହାଯ୍ୟରେ ମିରଟ୍ ସହିତ ସମ୍ପର୍କ ରକ୍ଷା ଯାଉଛି, ସେମାନଙ୍କୁ କିଲ୍ଲା ଭିତରେ ଲୁଚାଇ ରଖାଯାଇଛି ବୋଲି ସେମାନେ ଦାବୀ କଲେ । ଚାଳିଶଜଣ ଇଂରାଜିଙ୍କୁ କିଲ୍ଲା ଭିତରେ ଲୁଚାଇ ରଖାଯାଇଥିଲା । ଏହି ସମୟରେ 'ଅସନୁଲ୍ଲା ଖାଁ' ଓ 'ମେହବୁବ ଖାଁ'ଙ୍କ ନାମରେ ଥିବା ଲେଫଟନାଣ୍ଟ ଗର୍ଭର୍ଣ୍ଣରଙ୍କର ଦିଆଯାଇଥିବା ଚିଠି ବିଦ୍ରୋହୀ ସିପାହୀ ମାନଙ୍କ ହାତରେ ପଡିଲା । 'ମେହବୁବ ଅଲ୍ଲି ଖାଁ' ସିପାହୀଙ୍କହାତରେ ପଡିଲେ ଓ 'ଅସନୁଲ୍ଲା' ଖସି ପଳାଇଲେ । 'ବାଦଶା' 'ମେହବୁବ ଅଲି ଖାଁ'ଙ୍କର ବିଚାର କରି ତାଙ୍କୁ ମୁକ୍ତ କଲେ । ବିଦ୍ରୋହୀମାନେ, ଜବରଦସ୍ତ ପ୍ରାସାଦ ଭିତରକୁ ପଶି, ସେଠାରେ ଲୁଚିଥିବା ଇଂରାଜିମାନଙ୍କୁ ଦିଓ୍ୱାନୀଆମକୁ ଆଣିଲେ । ସେମାନଙ୍କୁ ଏକତ୍ର ଦଉଡିରେ ବାନ୍ଧି ଦିଆଗଲା ଓ ଚାରିଆଡୁ ଗୁଳିକରି ନିର୍ମମ ଭାବରେ ହତ୍ୟାକରାହେଲା ।

## ମେ ସତର ତାରିଖ

ଶାହାଦାରା ଠାରୁ ଲୁଟ୍ କରି ସିପାହୀମାନେ କିଛି ଦ୍ରବ୍ୟ ଆଣି ବାଦଶାଙ୍କ ପାଖରେ ହାଜର କରିଥିଲେ । ଜଣେ ସିପାହୀ ହାଜର ହୋଇ ସମାଚାର ଦେଲା ଯେ 'ଗୁର୍ଗାଓ୍ୱନ୍' ଠାରୁ 'ଦିଲ୍ଲୀ'କୁ କିଛି ଲକ୍ଷ ଟଙ୍କା ନେଇ ଆସିବା ସମୟରେ ରାସ୍ତାରେ ତାହା ମେଓ୍ୱାତି ମାନଙ୍କ ଦ୍ୱାରା ଆକ୍ରମିତ ହୋଇଅଛି । 'ମୌଲବୀ ବକର୍'ଙ୍କୁ ଦୁଇଟି କମ୍ପାନୀ ପଦାତିକ ବାହିନୀ ଧରି ତୁରନ୍ତ ଉକ୍ତ ଖଜଣା ନେଇ ଆସିବାକୁ ଆଦେଶ ପ୍ରଦାନ କରାଗଲା ।

## ମେ ଅଠର ତାରିଖ

ନିମ୍ନଲିଖିତ ଶାହାଜାଦା ମାନଙ୍କୁ ବିଦ୍ରୋହୀମାନଙ୍କର ମୁଖ୍ୟ ସେନାପତି ଭାବରେ ଘୋଷଣା କରାଗଲା । ସେମାନେ ହେଲେ:-

୧ - ମିର୍ଜା ମୋଗଲ

୨- ମିର୍ଜା କିଜର୍ ସୁଲତାନ

୩- ମିର୍ଜା ଅବୁବକର୍

୪-ମିର୍ଜା ଅବଦୁଲ୍ଲା

ବହୁତ ବ୍ୟାଙ୍କର ମାଲିକ,'ମେହବୁବ ଅଲିଖାଁ'ଙ୍କ ପାଖକୁ ଯାଇ, ଫୌଜର ଖର୍ଚ୍ଚା ଯୋଗାଇବା ପାଇଁ ନିଜର ଅକ୍ଷମତା ପ୍ରକାଶ କଲେ । ସେମାନଙ୍କୁ ଉତ୍ତରରେ କୁହାଗଲା ଯେ, ସେମାନେ ଖର୍ଚ୍ଚା ଯୋଗାଇ ନ ପାରିଲେ ସେମାନଙ୍କୁ ଲୁଟ୍ କରାଯାଇ ବଳପୂର୍ବକ ଖର୍ଚ୍ଚା ଆଦାୟ କରାଯିବ । 'ମିରଟ୍'ରୁ ଇଂରାଜିଙ୍କ ହାତରୁ ସଦ୍ୟ ରକ୍ଷା ପାଇ ପଳାଇ ଆସିଥିବା ଦୁଇଶହ ସିପାହୀଙ୍କୁ, 'ସଲିମଗଡ' କିଲ୍ଲାରେ ଅବସ୍ଥାନ କରିବା ପାଇଁ କୁହାଗଲା ।

## ମେ ଉଣେଇଶ ତାରିଖ

'ବାଦଶା' 'ମିର୍ଜାଯବାନବକ୍ସ'ଙ୍କୁ ଖିଲାତ ଦେଇ ନିଜର ମନ୍ତ୍ରୀ ରୂପେ ନିଯୁକ୍ତ କଲେ । ଏହା ପରେ 'ବାଦଶା' ବିଦ୍ରୋହୀ ସିପାହୀମାନଙ୍କୁ ଦର୍ଶନଦେଇ ସେମାନଙ୍କଠାରୁ ଖବର ବୁଝିଲେ । ସେ ସେମାନଙ୍କଠାରୁ ଜାଣିବାକୁ ପାଇଲେ ଯେ, 'ଆଲ୍ଲହାବାଦ'ର ସିପାହୀମାନେ, ଇଂରାଜିମାନଙ୍କୁ ଛାଡି ପଳାଇ ଆସିଛନ୍ତି । ଏଥିନିମିତ୍ତ ଲେଫଟନାଣ୍ଟ ଗଭର୍ଣ୍ଣର, 'ଅଲ୍ଲାହାବାଦ' କିଲ୍ଲାର ସମସ୍ତ ଦ୍ୱାର ବନ୍ଦ ରଖିବାକୁ ଆଦେଶ ଦେଇଛନ୍ତି । 'ଗୁରୁଗାଓଁ' ଖଜଣାଖାନାରୁ କିଛି ଖଜଣା ମିଳିଛି ଓ ତାହା ଦିଲ୍ଲୀକୁ ଆସିଛି । 'ବାଦଶା' ଉକ୍ତ ଖଜଣାକୁ ବ୍ୟକ୍ତିଗତ ଖଜଣାଖାନାରେ ରଖାଯିବାକୁ ଆଦେଶ ଦେଲେ । ଖବର ମିଳିଲାଯେ 'ପାତିଆଲା'ର ମହାରାଜ ଇଂରାଜିମାନଙ୍କ ସହିତ ମିଶିଯାଇଛନ୍ତି । ଅମ୍ବାଲାରୁ ବିଦ୍ରୋହୀ ସିପାହୀମାନେ ଦିଲ୍ଲୀକୁ ଆସୁଥିବାବେଳେ ମହାରାଜାଙ୍କର ସୈନ୍ୟମାନେ ସେମାନଙ୍କଠାରୁ ହତିଆର ଛଡାଇ ନେଇଛନ୍ତି ଓ ସେମାନେ ପ୍ରତିଶୋଧ ପରାୟଣ ହୋଇ ମହାରାଜାଙ୍କର ଭାଇ 'ଉଦିତ୍ ସିଂହ'ଙ୍କ ଘରକୁ ଆକ୍ରମଣ କରି ତାଙ୍କୁ ବନ୍ଦୀକରି ଆଣିଛନ୍ତି । 'ଉଦିତ୍ ସିଂହ', ତାଙ୍କର ଭୃତ୍ୟମାନଙ୍କ ସହ ପ୍ରାସାଦକୁ ଆସିଛନ୍ତି । ଏହାଶୁଣି 'ବାଦଶା' ଯାଇ ତାଙ୍କୁ ଉପଯୁକ୍ତ ସମ୍ମାନର ସହ ଆଣି କିଛି କଥାବାର୍ତ୍ତା ହେଲେ ଓ ସିପାହୀମାନଙ୍କୁ ସାନ୍ତ୍ୱନା ଦେଇ କହିଲେ ଯେ ମହାରାଜାଙ୍କ ସହିତ ତାଙ୍କ ଭାଇଙ୍କର ମନୋମାଳିନ୍ୟ ରହିଛି । 'ବାଦଶା', କୁମାରଙ୍କର ରହିବାପାଇଁ ପ୍ରକୋଷ୍ଠର ମଧ୍ୟ ବ୍ୟବସ୍ଥା କରିଦେଲେ । ଦୁଇଟି ଇଂରାଜି ବ୍ୟକ୍ତି, ଏକ ଶିଶୁ ଓ ତିନୋଟି ମହିଳା, ଗୋଟିଏ ଦରଜୀର ଘରେ ଲୁଚିରହିଥିବାର ଖବର ମିଳିଲା । ସେମାନଙ୍କୁ ବନ୍ଦୀ କରାଯାଇ ଦରଜୀର ଘରକୁ ଭାଙ୍ଗିଦିଆଗଲା । ଏହିଦିନ, ଦଳେ ମୁସଲମାନ ଜୁମା ମସଜିଦ୍‌ରେ ଧର୍ମଯୁଦ୍ଧ (ଜେହାଦ)ର ଡାକରା ଦେଲେ । ଏ

ଖବର ପାଇ 'ବାଦଶା' ବହୁତ କ୍ରୋଧାନ୍ୱିତ ହେଲେ, କାରଣ ଏହା ହିନ୍ଦୁ ଓ ମୁସଲମାନ ଐକ୍ୟକୁ ନଷ୍ଟ କରିଦେବ ଓ ହିନ୍ଦୁ ମାନଙ୍କ ମଧ୍ୟରେ ଅଯଥା ଭୟ, ଆଶଙ୍କା ଓ ସନ୍ଦେହ ସୃଷ୍ଟି ହେବ ।

## ମେ କୋଡିଏ ତାରିଖ

ଇଂରାଜି ସୈନ୍ୟ ମାନେ ଦିଲ୍ଲୀକୁ ଆସୁଥିବାର ଖବର ପହଞ୍ଚିଲା । 'ମୌଲବୀ ମହମ୍ମଦ ସୟଦ' ଧର୍ମଯୁଦ୍ଧର ଡାକରାପାଇଁ 'ବାଦଶା'ଙ୍କ ପାଖରେ ଦାବୀ ଜଣାଇଲେ । ମୁସଲମାନମାନଙ୍କୁ ହିନ୍ଦୁମାନଙ୍କ ବିରୁଦ୍ଧରେ ମତାଇବା ପାଇଁ ମଧ୍ୟ ସେ ପରାମର୍ଶ ଦେଲେ । ବାଦଶା ଏଥିରେ ଅମତ ହୋଇକହିଲେ ଯେ, ହିନ୍ଦୁମାନଙ୍କର ସଂଖ୍ୟା ଅଧିକ ଓ ପୂର୍ବାଞ୍ଚଳର ଅଧିକାଂଶ ଫୌଜ ହିନ୍ଦୁ ଏଣୁ ସେମାନଙ୍କ ବିରୁଦ୍ଧରେ ଗଲେ ଆମେ ବିପଦରେ ପଡିବା । ସବୁ ଶ୍ରେଣୀ ମଧ୍ୟରେ ପାରସ୍ପରିକ ସହାନୁଭୂତିର ଆବଶ୍ୟକତା ରହିଛି । ଏହି ସମୟରେ ହିନ୍ଦୁ ଅଫିସର ମାନଙ୍କର ପ୍ରତିନିଧି ଦଳ, 'ବାଦଶା'ଙ୍କୁ ଦେଖାକରି କହିଲେ ଯେ ହିନ୍ଦୁଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ପ୍ରଚାର କରାଯାଉଛି । 'ବାଦଶା', ଏହାର ଉତ୍ତରରେ କହିଲେ, ଧର୍ମଯୁଦ୍ଧର ଡାକରା କେବଳ ଇଂରାଜିମାନଙ୍କର ବିରୁଦ୍ଧରେ ଦିଆଯାଉଛି ଏବଂ ହିନ୍ଦୁମାନଙ୍କୁ ବିରୋଧ ନକରିବା ପାଇଁ ମୁଁ ଆଦେଶ ଦେଇଅଛି । ପ୍ରାୟ ଦିନ ତିନିଟା ବେଳେ 'ଅସନୁଲ୍ଲା ଖାଁ' ଜଣାଇଲେ ଯେ ସିପାହୀମାନେ ନଗରୀକୁ ଲୁଟ୍ କରୁଛନ୍ତି । ଏଣୁ ସେହି ଦିନ 'ମିର୍ଜା ମୋଗଲ'ଙ୍କୁ ଆଦେଶ ଦିଆଗଲା ଯେ ସେ ଏକ ଟାଣୁଆ ବାହିନୀ ଧରି 'ମିରଟ୍' ଆଡକୁ ଅଗ୍ରସର ହୁଅନ୍ତୁ ଓ ସମସ୍ତ ଇଂରାଜି ମାନଙ୍କୁ ଆକ୍ରମଣ କରନ୍ତୁ । ଏହି ଆଦେଶ ସିପାହୀମାନଙ୍କୁ ନଗର ବାହାରକୁ ପଠାଇବା ପାଇଁ 'ଅସନୁଲ୍ଲା'ଙ୍କ ପରାମର୍ଶରେ ହିଁ ଦିଆ ଯାଇଥିଲା । ଦୁଇଜଣ ଇଂରାଜିଙ୍କୁ ଠାବ କରି ବିଦ୍ରୋହୀମାନେ ହତ୍ୟା କଲେ ।

## ମେ ଏକୋଇଶ ତାରିଖ

'ବାଦଶା'ଙ୍କ ଚାପ ଫଳରେ, ନବ ନିଯୁକ୍ତ ଅଫିସର ଓ ବ୍ୟାଙ୍କ ମାଲିକ ମାନେ ଆଦାୟ କରି ଏକ ଲକ୍ଷ ଟଙ୍କା ଫୌଜ ଖର୍ଚ୍ଚା ବାବଦ ଦେଲେ । ପ୍ରାସାଦରେ ଦରମା ପାଇବାକୁ ଦାବି କରି ସିପାହୀମାନେ ଭିଡ ଜମାଇଲେ । ଆସନ୍ତା କାଲି ରମଜାନ ପଡୁଥିବାରୁ, ହିନ୍ଦୁଙ୍କ ବିରୁଦ୍ଧରେ ଯୁଦ୍ଧ ଡାକରା ପାଇଁ ପୁନର୍ବାର 'ବାଦଶା'ଙ୍କୁ ପରାମର୍ଶ ଦିଆଗଲା । 'ବାଦଶା' ନିଜର ପରିଷଦ ସହିତ ବସି ଘୋଷଣା କଲେ ଯେ ହିନ୍ଦୁମାନେ ସଶସ୍ତ୍ର ଓ ସଂଖ୍ୟାରେ ଅଧିକ ଥିବାରୁ ସେମାନଙ୍କ ସହିତ ସଂଗ୍ରାମ କଲେ ଜେହାଦୀମାନେ

ମୃତ୍ୟୁମୁଖରେ ପଡିବେ । ଏତଦ୍ ବ୍ୟତୀତ, ସେ ଢେଙ୍କୁରା ପିଟାଇ ଘୋଷଣା କରାଇଲେ ଯେ ହିନ୍ଦୁ ଓ ମୁସଲମାନମାନେ ପରସ୍ପର ବିବାଦ କରିପାରିବେନାହିଁ । 'ବୁବୁଲ୍ଲ ଗଡ'ର ରାଜା 'ନହେନ ସିଂହ' ଜଣାଇଲେ ଯେ, ଇଂରାଜି ମାନେ ତାଙ୍କ ରାଜ୍ୟ ଛାଡି ପଳାଇଛନ୍ତି ସେ ନିଜ ରାଜ୍ୟର ଶାସକ ହୋଇଛନ୍ତି । 'ଜଳନ୍ଧର'ରୁ ବହୁ ବିଦ୍ରୋହୀ ସୈନ୍ୟ ଆସି ପହଞ୍ଚିଲେ । ଅପରାହ୍ନର ପ୍ୟାରେଡରେ ଦୁଇଶହ ସିପାହୀଙ୍କର ପରାମିଳିଲା ନାହିଁ । ଖବର ମିଳିଲାଯେ ସିପାହୀମାନେ ବହୁ ସୁନା ଲୁଟ୍ କରି ପଳାଇଛନ୍ତି । ଅପରାହ୍ନ ତିନିଟା ସମୟରେ 'ଜାଜାର ନବାବ'ଙ୍କର ଶ୍ୱଶୁର 'ଅବଦୁଲ୍ଲ ସମଦ ଖାଁ', ଶହେ ଘୋଡସବାର ସୈନ୍ୟଙ୍କ ସହ ଆସି ପହଞ୍ଚିଲେ ।

## ମେ ତେଇଶ ତାରିଖ

'ଜଳନ୍ଧର'ରୁ ଆସିଥିବା ସିପାହୀମାନେ, ସେମାନଙ୍କର ଲୁଟ୍‌କରି ଆଣିଥିବା ଖଜଣାକୁ ନିଜ ଭିତରେ ଆପୋଷ ବଣ୍ଟନ କରିବା ପରେ, ବଳିଥିବା ଅଶୀ ହଜାର ଟଙ୍କା 'ବାଦଶା'ଙ୍କର ଖଜଣାଖାନାକୁ ଦେଲେ । 'ବାଦଶା'ଙ୍କ ଦ୍ୱାରା ନିର୍ଦ୍ଦେଶିତ ହୋଇ, 'ନବାବ ମୀର ଅହମ୍ମଦ ଅଲି ଖାଁ', ସମସ୍ତ ବ୍ୟାଙ୍କ ମାଲିକ, ଧନୀ ବ୍ୟକ୍ତି, ବିଶେଷ କରି ଇଂରାଜିମାନଙ୍କ ସହିତ ସମ୍ବନ୍ଧ ରଖିଥିବା ବ୍ୟକ୍ତିମାନଙ୍କଠାରୁ, ସିପାହୀମାନଙ୍କର ଖର୍ଚ୍ଚପାଇଁ ବଳପୂର୍ବକ ଅର୍ଥ ଆଦାୟ କରାଯିବା ପାଇଁ ଆଦେଶ ଦେଲେ । 'ମୁନ୍‌ସୀ ଜୀବନ ଲାଲ'ଙ୍କ ଘରୁ ଇଂରାଜିଙ୍କ ସହିତ ସମ୍ବନ୍ଧ ଥିବା ଅଭିଯୋଗରେ ବଳପୂର୍ବକ ଦୁଇହଜାର ଟଙ୍କା ଆଦାୟ କରାଗଲା ।

## ମେ ଚବିଶ ତାରିଖ

ଶହାଜାଦାମାନେ, 'ବାଦଶା'ଙ୍କ ପାଖରେ ହାଜର ହୋଇ ନଜରାନା ପେଶ୍ କଲେ । ଅପରାହ୍ନରେ ନୂଆ ଜହ୍ନର ଆବିର୍ଭାବରେ ଓ ରମଜାନର ୨୯ତମ ଦିବସ ଉପଲକ୍ଷେ ତୋପ ଫୁଟାଗଲା । 'ସାର୍ ଜନ ମେଟକାଫ' ଖସିଯାଇ ଜାଜାରରେ ପହଞ୍ଚିବା ଖବର ମଧ୍ୟ ମିଳିଲା ।

## ମେ ପଚିଶ ତାରିଖ

ଇଦ୍ ପର୍ବ ଉପଲକ୍ଷେ 'ବାଦଶା' ପ୍ରାସାଦ ଛାଡି 'ଜୁମାମସଜିଦ୍'କୁ ଗଲେ । ସମସ୍ତ ଶାହାଜାଦାମାନେ ମଧ୍ୟ ସାଙ୍ଗରେ ଥିଲେ । ପ୍ରାର୍ଥନା ସମୟରେ 'ବୁବୁଲଗଡ'ର ରାଜା, ଓଟ ସବାର ମାନଙ୍କ ସହ ହାଜର ହୋଇ ଖବର ଦେଲେ ଯେ, ସେ ଇଂରାଜି ସୈନ୍ୟମାନଙ୍କୁ

'ଦିଲ୍ଲୀ' ଆଡକୁ ଆସୁଥିବାର ଦେଖିଛନ୍ତି । ସମସ୍ତେ ଅତ୍ୟନ୍ତ ଭୟଭୀତ ହୋଇଗଲେ । କିନ୍ତୁ ପରେ ଏହା ତାଙ୍କର ଭ୍ରମ ବୋଲି ଜଣାପଡିଥିଲା । ସେ ଇଦ୍ ଉପଲକ୍ଷେ ଏକ ବିଶାଳ ଶୋଭାଯାତ୍ରାକୁ ଦୂରରୁ ଦେଖି ତାହାକୁ ଇଂରାଜି ବାହିନୀ ବୋଲି ଭାବିଥିଲେ ।

## ମେ ଛବିଶ ତାରିଖ

'ଇସଲାମ୍ ଗଡ'ରେ ତୋପଭିତରେ କେହି କଙ୍କରିଳ ପଥରମାନ ପୂରାଇଥିବାର ଅଭିଯୋଗ ହେଲା । 'ବାଦଶା', କୌଣସି ପ୍ରକାରେ ସିପାହୀମାନଙ୍କର କ୍ରୋଧ ଶାନ୍ତ କରାଇଲେ । କିଛି ଗୁଜରଙ୍କୁ ବାରୁଦ ଚୋରିକରୁଥିବା ଅଭିଯୋଗରେ ଗିରଫ କରାଗଲା । 'ରୋହତକ' ସରକାରୀ ଖଜଣାଖାନାରୁ ଏକ ଲକ୍ଷରୁ ଅଧିକ ଟଙ୍କା ଆସି ପହଞ୍ଚିଲା ।

## ମେ ସତେଇଶ ତାରିଖ

ଦୁଇ ରେଜିମେଣ୍ଟ ପଞ୍ଜାବୀ ସିପାହୀ ଆସି 'ବାଦଶା'ଙ୍କ ପାଖରେ ଆପତ୍ତି ଜଣାଇଲେ ଯେ, 'ଫିରୋଜପୁର'ରେ ସେମାନଙ୍କର ରେଜିମେଣ୍ଟର ସିପାହୀଙ୍କୁ ଇଂରାଜିମାନେ ହତ୍ୟା କରିଛନ୍ତି । ସେମାନେ 'ବାଦଶା'ଙ୍କ ଠାରୁ ସେମାନଙ୍କର ପ୍ରତିରକ୍ଷାର ପ୍ରତିଶ୍ରୁତି ଦାବୀକଲେ ଓ 'ବାଦଶା' ମଧ୍ୟ ନିଜର ସମ୍ମତି ପ୍ରକାଶ କଲେ । 'ରୋହତକ'ରୁ ବାହୁଡିଥିବା ସିପାହୀମାନେ ସମ୍ବାଦ ଦେଲେ ଯେ, ରୋହତକର ମାଜିଷ୍ଟ୍ରେଟ ଓ କଲେକ୍ଟର ରକ୍ଷାପାଇଯାଇଛନ୍ତି । ପୁନର୍ବାର ଦେଖାଗଲାଯେ ତୋପମାନଙ୍କ ମଧ୍ୟରେ କେହି ପଥର ଲୁହାକଣ୍ଟା ଆଦି ପୂରାଇଛି । ସିପାହୀମାନେ 'ବାଦଶା'ଙ୍କର ଭୃତ୍ୟମାନଙ୍କୁ ଦୋଷାରୋପ କଲେ । ଦୁଇଘଣ୍ଟା କାଳ ଏହାକୁ ନେଇ ହୋହଲ୍ଲା ହେଲା । ତିନିଟା ବେଳକୁ ଜଣେ ହାବିଲଦାରଙ୍କୁ ସନ୍ଦେହରେ ଗିରଫ କରାଯାଇ ତୋପ ଆଗରେ ବାନ୍ଧିଦିଆଗଲା ।

## ମେ ଅଠେଇଶ ତାରିଖ

'ରୋହତକ'ର ଖଜଣାଖାନାରୁ ଆସିଥିବା ଟ୧,୭୫,୦୦୦ଙ୍କା 'ବାଦଶା'ଙ୍କ ସମ୍ମୁଖରେ ପେଶ୍‌କରାଗଲା । ବିଦ୍ରୋହୀ ସିପାହୀମାନଙ୍କ ତରଫରୁ, 'ଅସନୁଲ୍ଲା ଖାଁ' ଇଂରାଜିମାନଙ୍କ ସହିତ ସମ୍ବନ୍ଧ ରଖିଥିବା ଅଭିଯୋଗ ଆଗତ କରାଗଲା ଓ ତାଙ୍କୁ ରକ୍ଷୀର ପହରା ଭିତରେ ରଖାଗଲା । ସେ ବିନା ପହରାଦାରରେ 'ବାଦଶା'ଙ୍କ ସହିତ ଦେଖାକରିପାରିବେ ନାହିଁ ବୋଲି ନିଷେଧାଦେଶ ଜାରୀ କରାଗଲା । 'ନବାବ ମହମ୍ମଦ ଅଲ୍ଲୀ ଖାଁ' ଙ୍କର ଘରେ ମଧ୍ୟ, ଏକ ପହରାଦାର ମୁତୟନ କରାଗଲା । ସାରା ରାତି ହୋହଲ୍ଲା ଓ ଆଶଙ୍କା ଭିତରେ କଟିଲା । ରାତିରେ 'ହାକିମ ଅସନୁଲ୍ଲା ଖାଁ' ଓ 'ମେହବୁବ

ଅଲି ଖାଁ', 'ବାଦଶା'ଙ୍କ ପାଖରେ ରହିଲେ । 'ମେହବୁବ ଅଲ୍ଲି ଖାଁ'ଙ୍କ ଅନୁରୋଧରେ, ସିପାହୀମାନଙ୍କୁ ଦରମାଦେବାପାଇଁ ହୁକୁମ ଜାରୀ କରାଗଲା । ଦରମାରୁ ପୂର୍ବରୁ ଦିଆଯାଇଥିବା ପରିମାଣର ଉଚ୍ଛେଦ ପାଇଁ ଆଦେଶ ରହିଲା । ଘୋଡାସବାର ସିପାହୀଙ୍କର ନଅଟଙ୍କା ଓ ପଦାତିକ ସିପାହୀମାନଙ୍କର ସାତଟଙ୍କାର ବେତନ ଧାର୍ଯ୍ୟ କରାଗଲା । ଏଥିରେ ଖୁବ୍ ପାଟି ତୁଣ୍ଡ ହେଲା । ଘୋଡାସବାର ସିପାହୀମାନେ ତିରିଶ ଟଙ୍କା ନବାପାଇଁ ଦାବିକଲେ । କିନ୍ତୁ ରେଜିମେଣ୍ଟର ସୁବେଦାରମାନେ ସାତଟଙ୍କା ବେତନ ଗ୍ରହଣ କଲେ । ଏଥି ନେଇ 'ମିରଟ'ର ଘୋଡାସବାର ବାହିନୀ ଓ ଦିଲ୍ଲୀ ରେଜିମେଣ୍ଟର ସିପାହୀମାନଙ୍କ ମଧ୍ୟରେ ଉଚ୍ଚବାଚ ହେଲା । 'ମିରଟ'ର ଘୋଡାସବାରମାନେ ଅଭିଯୋଗ କରି କହିଲେ, ଦିଲ୍ଲୀ ସିପାହୀମାନେ ଲୁଟ୍ କରି ବହୁ ଧନ ପାଇଥିବା ବେଳେ ସେମାନେ ଶୃଙ୍ଖଳା ରକ୍ଷା କରି ଲୁଟ ତରାଜ କରିନାହାନ୍ତି । ଏହି ଦୃଷ୍ଟିରୁ ସ୍ୱଳ୍ପ ବେତନ ଗ୍ରହଣ କରିବାକୁ ସେମାନେ ସମ୍ମତ ହେଲେ ନାହିଁ । ଉଭୟ ବାହିନୀ ମଧ୍ୟରେ ବିଶେଷ ଉତ୍ତେଜନା ପ୍ରକାଶ ପାଇବା ଫଳରେ, 'ବାଦଶା'ଙ୍କର କର୍ମଚାରୀ ମାନେ ହସ୍ତକ୍ଷେପ କଲେ ଓ ବହୁ କଷ୍ଟରେ ଉଭୟ ପକ୍ଷକୁ ଶାନ୍ତ କରାଇଲେ । ଘୋଡାସବାର ସିପାହୀମାନଙ୍କୁ କୋଡିଏ ଟଙ୍କା ବେତନ ଦିଆଯିବ ବୋଲି ଘୋଷଣା କରାଯିବା ଫଳରେ ସମସ୍ୟାର ଯବନିକାପାତ ହେଲା । 'ଲାହୋର' ଓ 'ଫିରୋଜପୁର'ରୁ, ଦୁଇଶହ ସିପାହୀଆସି 'ଦିଲ୍ଲୀ'ରେ ଯୋଗଦାନ କଲେ । ସେମାନେ ଅସ୍ତ୍ରହୀନ ଓ କ୍ଷତବିକ୍ଷତ ହୋଇଥିଲେ । ସେମାନେ ଅଭିଯୋଗ କଲେ ଯେ ବାଟରେ ଅସ୍ତ୍ରହୀନ ହୋଇ ସାଦା ପୋଷାକରେ ସେମାନେ ବସିଥିବା ବେଳେ, 'ପାଟିଆଲା' ମହାରାଜାଙ୍କର ସୈନ୍ୟମାନେ ସେମାନଙ୍କୁ ଆକ୍ରମଣ କଲେ । 'ଗୋୱାଲିଅର'ରୁ ଦୁଇଶହ ସିପାହୀ ଆସି ପହଞ୍ଚିଲେ । ସେମାନଙ୍କୁ ସେନାରେ ଅନ୍ତର୍ଭୁକ୍ତ କରାଗଲେ ମଧ୍ୟ ପରେ ସେମାନଙ୍କୁ ଇଂରାଜି ବାହିନୀର ଆଗୁଆ ପଲଟନ୍ ଓ ଯୁଦ୍ଧ ସମୟରେ ଇଂରାଜିଙ୍କ ସହିତ ମିଶିଯିବେ ବୋଲି ସନ୍ଦେହ କରାଗଲା । 'ବାଦଶା'ଙ୍କୁ ଖବର ଦିଆଗଲାଯେ 'ମୋଗଲପୁରା'ରେ କିଛି ଇଂରାଜି ଲୁଚି ରହିଛନ୍ତି । ସେମାନଙ୍କୁ ଧରି ଆଣିବା ପାଇ କିଛି ଲୋକ ପଠାଗଲା । ସିପାହୀମାନଙ୍କୁ ଲୁଟ୍ କରିବାକୁ ଏକ ସୁଯୋଗ ଜୁଟିଗଲା । ଅପରାହ୍ନ ତିନିଟା ବେଳେ ଫୌଜର ପ୍ୟାରେଡରେ ସଂଖ୍ୟାର ଉପସ୍ଥାନ ଥିଲା:-

୧- ମିରଟରୁ ଆସିଥିବା ଘୋଡାସବାର ବାହିନୀ
୨- ମିରଟରୁ ଆସିଥିବା ପଦାତିକ ବାହିନୀ
୩- ଦୁଇଶହ ସ୍ୱେଚ୍ଛାସେବୀ ପଦାତିକ
୪- ଦୁଇଶହ ଫିରୋଜପୁରର ରେଜିମେଣ୍ଟ ପଦାତିକ
୫- ଦୁଇଶହ ଅମ୍ବାଲା ରେଜିମେଣ୍ଟ ପଦାତିକ

୬- ଦୁଇଶହ ଚାଳିଶ କଷ୍ଟମ୍ ପିଆଦା
୭- ଦୁଇଶହ ଗୋଆଲିଅର ପିଆଦା
୮- ଏକଶହ ବିଦ୍ରୋହୀ ବାହିନୀର ସଦ୍ୟ ନିଯୁକ୍ତି
୯- ଦୁଇଶହ ଦିଲ୍ଲୀ ପଦାତିକ

ନଗରୀ ଭିତରର କିଛି ଲୋକ, ଇଂରାଜି ମାନଙ୍କ ସହିତ ଗୁପ୍ତରେ ସମ୍ପର୍କ ରଖିବା ବିଷୟରେ ଅଭିଯୋଗ ହେଲା । 'ଗୋଆଲିୟର' ଓ 'ଆକବରାବାଦ'ରୁ ଫୌଜ, 'ଦିଲ୍ଲୀ' ଆଡକୁ ଆସୁଥିବା ବିଷୟରେ ଖବର ଆସିଲା । ଇଂରାଜି ବାହିନୀ, 'କୁର୍ଣ୍ଣଲ'ରେ ପହଞ୍ଚିବା ଖବର ମଧ୍ୟ ମିଳିଲା । ବିଦ୍ରୋହୀ ଫୌଜର ଜେନେରାଲ କହିଲେ ଯେ, ତାଙ୍କର ସବୁ ସୈନ୍ୟଙ୍କୁ ଏକାଠି କରିବା ବ୍ୟବସ୍ଥା କରାଯାଇଛି । କାଲି ଇଂରାଜି ମାନଙ୍କୁ ଆକ୍ରମଣ କରାଯିବାର ବ୍ୟବସ୍ଥା ମଧ୍ୟ କରାଯାଇଛି ।

ଏହିପରି ଭାବରେ 'ବାଦଶା' ତକ୍ତନସୀନ ହେଲାପରେ, ତାଙ୍କର ଦରବାରର ଦୈନିକ ବିବରଣୀରୁ ଜଣାପଡେ ଯେ, ଏଗାର ତାରିଖ ଠାରୁ ପଚିଶି ତାରିଖ ପର୍ଯ୍ୟନ୍ତ ସମସ୍ତ ଅବ୍ୟବସ୍ଥା ମଧ୍ୟରେ ନଗରୀରେ ଶାନ୍ତି ଶୃଙ୍ଖଳା ରକ୍ଷା କରିବା ତଥା ଯୋଗାଯୋଗ ଓ ଶାସନ ବ୍ୟବସ୍ଥାର ଉଦ୍ଧାରର ଯଥେଷ୍ଟ ଚେଷ୍ଟା କରାଯାଇଥିଲା । ପ୍ରତି ମୁହୂର୍ତ୍ତରେ ଇଂରାଜିଙ୍କଠାରୁ ଆକ୍ରମଣର ଭୟ ଓ ଆଶଙ୍କା ସହିତ ବିଭିନ୍ନ ସ୍ଥାନରୁ ବିଭିନ୍ନ ସିପାହୀମାନେ ଆସି ଦିଲ୍ଲୀରେ ମିଳିତ ହେଉଥିଲେ । ସେମାନଙ୍କ ମଧ୍ୟରେ ଶୃଙ୍ଖଳା ରକ୍ଷା କରିବା ସମୟ ସମୟରେ ଅସମ୍ଭବ ହେଉଥିଲା । ରସଦ ଆଜି ଯୋଗାଣର ଅସୁବିଧାର ଆଳ କରି, ସେମାନେ ବାରମ୍ବାର ଅବାଧ ଲୁଟତରାଜ କରି ଧନ ଆହରଣ କରୁଥିଲେ । ଫଳରେ ସେମାନେ ଯୁଦ୍ଧ କରିବା ଅପେକ୍ଷା ଲୁଟ୍ କରିବାରେ ଆଗ୍ରହୀ ହୋଇପଡିଥିଲେ । ଦିନ ପରେ ଦିନ 'ବାଦଶା' 'ପରମାନା' ଜାରି କରୁଥିଲେ । ସେହି 'ପରମାନା'ରେ ଇଂରାଜି ବାହିନୀରେ ନିଯୁକ୍ତ ଥିବା ଦେଶୀ ସିପାହୀମାନଙ୍କୁ, ଇଂରାଜି ବାହିନୀ ଛାଡି ବାଦଶାଙ୍କ ବାହିନୀରେ ଯୋଗଦାନ କଲେ, ପଦାତିକ ମାନଙ୍କୁ ମାସିକ ତିରିଶ ଓ ଘୋଡାସବାରମାନଙ୍କୁ ମାସିକ ପଚାଶ ଟଙ୍କା ଦିଆଯିବ ବୋଲି ପ୍ରତିଶ୍ରୁତି ଦିଆଯାଇଥିଲା । ଏହି 'ପରମାନା' ପାଇ, ବିଭିନ୍ନ ରେଜିମେଣ୍ଟରେ ଅବସ୍ଥାପିତ ଦେଶୀ ସିପାହୀମାନେ ବିଦ୍ରୋହୀ ହୋଇଉଠି, ଇଂରାଜି ସେନା ତ୍ୟାଗକରି ଦିଲ୍ଲୀ ଆଡକୁ ମୁହାଁଉଥିଲେ । ଏହିପରି ପ୍ରତିଦିନ ଦିଲ୍ଲୀ ନଗରୀ ବିଦ୍ରୋହୀମାନଙ୍କ ଦ୍ୱାରା ଭରି ଉଠୁଥିଲା ।

●

# ପଞ୍ଜାବ

ପୂର୍ବ ଅଧାୟରେ ବର୍ଣ୍ଣିତ ହୋଇଛିଯେ 'ମିରଟ୍'ରେ ବିଦ୍ରୋହର ଖବର 'ଦିଲ୍ଲୀ' ଟେଲିଗ୍ରାଫ ଅଫିସରେ ପ୍ରଥମେ 'ବ୍ରେଣ୍ଡିସ୍' ଓ 'ପିଲ୍‌କିଙ୍ଗଟନ୍' ପାଇଥିଲେ । ସେମାନେ, ଉକ୍ତ ଖବର ବ୍ୟକ୍ତିଗତ ଭାବରେ 'ଅମ୍ବାଲା'ର ସେନାଛାଉଣୀକୁ ଜଣାଇଥିଲେ ଓ ଛାଉଣୀରୁ ତାହା 'ଲାହୋର'ରେ ଥିବା ଚିଫ୍ କମିଶନଙ୍କ ପାଖକୁ ପଠାଇ ଦିଆଯାଇଥିଲା । କିନ୍ତୁ, ତାହା ସରକାରୀ ସମ୍ବାଦ ନହୋଇ ବ୍ୟକ୍ତିଗତ ସମ୍ବାଦ ଥିଲା । 'ମିରଟ'ରୁ ସିପାହୀମାନେ ଦିଲ୍ଲୀ ପହଞ୍ଚିବାର ଖବର ପାଇବାମାତ୍ରେ ସେମାନେ ତତ୍‌କ୍ଷଣାତ୍ ସରକାରୀ ଭାବରେ ତାହା 'ଅମ୍ବାଲା' ଛାଉଣୀକୁ ଟେଲିଗ୍ରାଫ ଯୋଗେ ଜଣାଇଲେ । ଦ୍ୱିପ୍ରହରରେ ସେମାନେ, ସ୍ଥାନୀୟ ଦୋକାନୀ ବ୍ୟବସାୟୀମାନେ ଲୋକଗହଳି ଭିତରେ ପିଲାଛୁଆ ସହ ପେଡିପୁଟୁଳା ବାନ୍ଧି ଯାଉଥିବାର ଦେଖିଲେ । ଏହି ସମୟରେ ଜଣେ ରକ୍ତାକ୍ତ ଇଂରାଜି ସିପାହୀକୁ ଘୋଡାରେ ବସି ଆସିବାର ଉଭୟେ ଦେଖିଲେ । ତାହାଠାରୁ ନଗରରେ ବିଶୃଙ୍ଖଳା, ବିଦ୍ରୋହ ଓ ବାସ୍ତବ ପରିସ୍ଥିତିର ଏକ ଚିତ୍ର ସେମାନେ ପାଇଗଲେ । ସେମାନେ ଅଫିସ ଛାଡି ତୁରନ୍ତ କାଣ୍ଟନମେଣ୍ଟକୁ ଗଲେ । କାରଣ ତାହାହିଁ ଇଂରାଜିମାନଙ୍କର ସାଧାରଣ ମିଳନ ସ୍ଥଳ ଥିଲା । କାଣ୍ଟନମେଣ୍ଟରେ, 'ବ୍ରେଣ୍ଡିସ୍' ତୁରନ୍ତ 'ଲାହୋର'କୁ ଟେଲିଗ୍ରାଫ କଲେ:-

"We must leave office. All the bunglows are being burned down by Sepoys of Meerut. We are off. Mr. Todd is dead, we think. He went out this morning and is not yet returned. We learnt that nine Europeans were killed. Good-bye."

(''ଆମ୍ଭେମାନେ ଅଫିସ ଛାଡ଼ିବାକୁ ବାଧ ହେଉଛୁ । ମିରଟ୍‌ର ସିପାହୀମାନଙ୍କ ଦ୍ୱାରା 'ବଙ୍ଗଳା' ଗୁଡ଼ିକ ଜଳାଇ ଦିଆଯାଉଛି । ଆମେମାନେ ଅସହାୟ । 'ଟୋଡ୍' ମୃତ ବୋଲି ଆମେ ଭାବୁଛୁ । ସେ ସକାଳୁ ବାହାରିଯାଇ ଏ ପର୍ଯ୍ୟନ୍ତ ଫେରି ନାହାନ୍ତି । ଆମେ ଜାଣିବାକୁ ପାଇଲୁ ଯେ ସାତଜଣ ଇଉରୋପୀୟ ମୃତ୍ୟୁ ବରଣ କରିଛନ୍ତି । ବିଦାୟ ।'')

ଅପରାହ୍ନରେ ଇଂରାଜି ସୈନ୍ୟଙ୍କର ଗହଣରେ ସେମାନେ ପୁନର୍ବାର ଟେଲିଗ୍ରାଫ୍ ଅଫିସ୍‌କୁ ଯାଇ ଅମ୍ବାଲା ଛାଉଣୀକୁ ଶେଷ ଖବର ଦେଇ କହିଲେ:-

"Cantonments In a state of Seize. Mutineer from Meerut, 3rd cavarly, numbers not known, said to be 150men. Cut off communication with Meerut. Taken possession of bridge-of-boats. 54th NI sent aqairst

them, but would not act. Several officers killed or wounded. City ina state of considerable excitement. Troups sent down, but nothing known yet. Further infantry will be forwarded.'

(''କାଣ୍ଟନ୍‌ମେଣ୍ଟ ମିରଟ୍‌ରୁ ଆସିଥିବା, ସଂଖ୍ୟା ଜଣା ନପଡ଼ିଲେ ମଧ୍ୟ ଆନୁମାନିକ ୧୫୦ ଜଣ ସୈନ୍ୟଙ୍କର ଦଖଲରେ ଅଛି । ମିରଟ୍ ସହିତ ଯୋଗାଯୋଗ ବିଚ୍ଛିନ୍ନ ହୋଇଯାଇଛି । ଡଙ୍ଗା ପୋଲର ଦଖଲ ନିଆ ହୋଇଯାଇଛି । ୫୪ତମ ବାହିନୀକୁ ସେଥିପାଇଁ ପଠାଯାଇଛି । କିନ୍ତୁ ସେମାନେ କିଛି କରିବେ ନାହିଁ । ବହୁ ଅଫିସର ମୃତାହତ । ନଗରୀ ଘୋର ଉତ୍ତେଜନାପୂର୍ଣ୍ଣ । ସୈନ୍ୟମାନଙ୍କୁ ପଠାଯାଇଛି । କିନ୍ତୁ କିଛି ଜଣାପଡ଼ି ନାହିଁ । ଅନ୍ୟବାହିନୀ ପଠାଯିବ ।'')

'ବ୍ରେଣ୍ଡିସ୍'ଙ୍କର ପୂର୍ବରୁ ପଠାଇଥିବା ଟେଲିଗ୍ରାଫ, 'ଲାହୋର'ରେ ମଙ୍ଗଳବାର ସକାଳେ ପହଞ୍ଚିଲା । ପଞ୍ଜାବର ଚିଫକମିଶନର 'ସାର୍ ଜନ୍ ଲରେନ୍ସ ' (Sir John Lawrence), ଲାହୋରଠାରୁ ଦୁଇଶହ ମାଇଲ ଦୂର 'ରାଓଲପିଣ୍ଡି'ରେ ଥିଲେ । ଏଣୁ, ତାଙ୍କର ସହକାରୀ 'ରବର୍ଟ ମଣ୍ଟେଗୋମେରୀ' (Montgomery), ଜରୁରୀ କାଳୀନ ପଦକ୍ଷେପ ନେଲେ । ସେତେବେଳେ ଚାରୋଟି ଭାରତୀୟ ରେଜିମେଣ୍ଟ, ପାଞ୍ଚମାଇଲ ଦୂରରେ ଅବସ୍ଥାପିତ ଥିଲା । 'ମଣ୍ଟଗୋମେରୀ', ତୁରନ୍ତ ସେନାର ଦାୟିତ୍ୱରେ ଥିବା ବ୍ରିଗେଡିୟରଙ୍କ ପାଖକୁ ଘୋଡାଛୁଟାଇ ଗଲେ ଏବଂ ସିପାହୀମାନଙ୍କୁ ତୁରନ୍ତ ଶସ୍ତ୍ରହୀନ କରିବାପାଇଁ ତାଙ୍କୁ ନିର୍ଦ୍ଦେଶ ଦେଲେ । ବ୍ରିଗେଡିୟର ତତ୍‌କ୍ଷଣାତ ପଦକ୍ଷେପ ନେଲେ । ପୂର୍ବରୁ ସେ ଦିନ ଇଂରାଜି ରେଜିମେଣ୍ଟରେ ଏକ ବଲପାର୍ଟିର ଆୟୋଜନ କରାଯିବାର ବ୍ୟବସ୍ଥା କରାଯାଇଥିଲା । କାହାର ସନ୍ଦେହ ନ ହେବା ପାଇଁ ଏହି ପାର୍ଟି ବାତିଲ ନ ହୋଇ ଚାଲୁ ରହିଲା । ଏଣୁ ଦେଶୀ ସିପାହୀମାନେ ସନ୍ଦେହ ନ କରି ନିଶ୍ଚିନ୍ତରେ ଥିଲେ । ହଠାତ୍ ଅଫିସରମାନେ, 'ବଲ୍‌ପାର୍ଟି'ରୁ ସିଧା ପ୍ୟାରେଡ ପଡିଆରେ ଆସି ଉପସ୍ଥିତ ହେଲେ ।

ସେମାନେ ଇଂରାଜି ରେଜିମେଣ୍ଟ ସମ୍ମୁଖରେ, ଦେଶୀ ସିପାହୀ ରେଜିମେଣ୍ଟକୁ ଆଣି ଛିଡା କରାଇଲେ । ବ୍ରିଟିଶ ରେଜିମେଣ୍ଟ ପଛରେ ବାରୋଟି ତୋପ ଦେଶୀ ସିପାହୀମାନଙ୍କ ଆଡକୁ ମୁହଁ କରି ରହିଥିଲା । ଜଣେ ଅଫିସର, ବ୍ରିଗେଡିୟରଙ୍କ ଠାରୁ ପାଇଥିବା ସମ୍ବାଦ ପଢି ଶୁଣାଇଦେଲେ । ଏଥିରେ, ସିପାହୀମାନଙ୍କୁ ସେମାନଙ୍କର ଅତୀତର ସାହସିକ କାର୍ଯ୍ୟ ପାଇଁ ପ୍ରଶଂସା କରାଯାଇଥିଲା । କିନ୍ତୁ, ବର୍ତ୍ତମାନ ଭାରତରେ ଦେଶୀ ସିପାହୀମାନଙ୍କର ବିଶ୍ୱାସହୀନତା ହେତୁ ସେମାନଙ୍କୁ ସେଥିରୁ ମୁକ୍ତ ରଖିବା ପାଇଁ ସେମାନଙ୍କ ଠାରୁ ଅସ୍ତ୍ରଶସ୍ତ୍ର ଫେରାଇ ନିଆଯିବ ବୋଲି ମଧ୍ୟ କୁହାଯାଇଥିଲା । ଆଦେଶ

ପଡାଯିବା ସଙ୍ଗେ ସଙ୍ଗେ ଇଂରାଜି ରେଜିମେଣ୍ଟ ତୋପମାନଙ୍କର ମଝିରେ ମାର୍ଚ୍ଚ କରିଗଲେ ଓ ଦେଶୀ ରେଜିମେଣ୍ଟ, ସମ୍ମୁଖରେ ଚାରୋଟି ତୋପ ମୁହଁ କରି ରହିଲା । ହଠାତ୍ ଅଫିସର ଆଦେଶ ଦେଲେ, ''ଏଇଟି ଫାଷ୍ଟ ଲୋଡ୍'' । ସିପାହୀମାନଙ୍କ ମଧରେ ଦୋଦୁଲ୍ୟମାନ ଅବସ୍ଥା ଦେଖା ଦେଲା । ନିରୂପାୟ ହୋଇ ସେମାନେ ଅସ୍ତ୍ର ସମର୍ପଣ କଲେ । ସେହିଦିନ ସକାଳେ 'ଲାହୋର'ର କିଲ୍ଲା ମଧରେ ଥିବା ଦେଶୀ ସିପାହୀମାନଙ୍କୁ ମଧ ଅସ୍ତ୍ରହୀନ କରାଗଲା ଓ 'ପଞ୍ଜାବ'ର ତତ୍କାଳୀନ ରାଜଧାନୀ ବିଦ୍ରୋହର ଆଶଙ୍କାରୁ ମୁକ୍ତ ହେଲା ।

ପ୍ରକୃତରେ ଦେଖିବାକୁ ଗଲେ, ଏହି ବିଦ୍ରୋହ, ଏକ ସର୍ବଭାରତୀୟ ସଂଗଠିତ ବିଦ୍ରୋହଥିଲା । ମେ ମାସ ଏକତିରିଶ ତାରିଖ ଦିନ, ବିଦ୍ରୋହ ପାଇଁ ଦିନ ଧାର୍ଯ୍ୟ କରାଯାଇଥିଲା । ଚପାତି ଓ ରକ୍ତ ପଦ୍ମ ମାଧମରେ ପ୍ରତି ସେନାଛାଉଣୀରେ ଥିବା ଭାରତୀୟ ସିପାହୀମାନଙ୍କୁ ଏହି ସନ୍ଦେଶ ଦିଆଯାଇଥିଲା । ସେହି ଅନୁସାରେ ସେମାନେ ସମସ୍ତେ, ମେ ଏକ ତିରିଶ ତାରିଖ ଦିନ ଏକ ସଙ୍ଗେ ବିଦ୍ରୋହ କରି, ସାରାଭାରତରେ ଇଂରାଜି ଶକ୍ତିକୁ ପଙ୍ଗୁ କରିଦେଇ, ନିଜ ନିଜ ଅଞ୍ଚଳର ଖଜଣାଖାନା, ଶସ୍ତ୍ରାଗାର ଓ ଶାସନ ହାତକୁ ନେଇ 'ଦିଲ୍ଲୀ'ଆଡକୁ ଯାଇଥାଆନ୍ତେ ଓ ସେଠାରେ 'ବାଦଶା'ଙ୍କ ନେତୃତ୍ୱରେ ଏକ ରାଜନ୍ୟ ମଣ୍ଡଳୀ ଗଠିତ ହୋଇ ଭାରତ ବର୍ଷର ଶାସନ ବ୍ୟବସ୍ଥା କରାଯାଇଥାଆନ୍ତା । କିନ୍ତୁ ସେହି ଦିନ ଆସିବାର ବହୁ ପୂର୍ବରୁ ବ୍ୟାରକ୍‌ପୁର ଛାଉଣୀରେ ବିଦ୍ରୋହ ଓ ତତ୍‌ପରେ ପରେ ମିରଟ୍‌ରେ ବିଦ୍ରୋହ ସହ 'ଦିଲ୍ଲୀ' ଅଧିକାର ଓ 'ଦିଲ୍ଲୀ'ରେ 'ବାଦଶା'ଙ୍କର ତକ୍ତନସୀନ ହୋଇ ସମ୍ପୂର୍ଣ୍ଣ ଶାସନ ବ୍ୟବସ୍ଥା ହାତକୁ ନେବା ଆଦି ଘଟଣାବଳୀରେ, ଭାରତର ଅନ୍ୟ ସମସ୍ତ ଛାଉଣୀରେ ଦେଶୀ ସିପାହୀମାନେ ବଡ ଦୋଦୁଲ୍ୟମାନ ଅବସ୍ଥାରେ ଥିଲେ । ସେମାନଙ୍କ ମଧରୁ କେତେକ ବିଦ୍ରୋହ କରି ଖଜଣା ଲୁଟ୍ କରି 'ଦିଲ୍ଲୀ'ରେ 'ବାଦଶା'ଙ୍କୁ ଭେଟିଦେଇ ତାଙ୍କ ସେନାର ଅନ୍ତର୍ଭୁକ୍ତ ହେଉଥିଲେ । 'ପଞ୍ଜାବ'ରେ ଗୁପ୍ତସଂଗଠନର ନିର୍ଦ୍ଦେଶ ଅନୁସାରେ ମେ ଏକତିରିଶ ତାରିଖ ଦିନ 'ମିଆଁମୀର' ଛାଉଣୀରେ ଥିବା ସିପାହୀମାନେ 'ଲାହୋର'ର ଦୁର୍ଗ ଅଧିକାର କରିବା ପରେ ପରେ 'ପେଶବାର', 'ଅମୃତସର', 'ଜଳହୁର୍' ଓ 'ଜଳନ୍ଧର'ରେ ଥିବା ସିପାହୀମାନେ ମଧ ଅନୁରୂପ ଆକ୍ରମଣ କରିବା ଯୋଜନା ଥିଲା । କିନ୍ତୁ 'ମିଆଁମୀର' ର ସିପାହୀମାନଙ୍କୁ ହଠାତ୍ ଶସ୍ତ୍ରହୀନ କରାଯିବା କଥା ସେମାନେ ଶୁଣିବାକୁ ପାଇଲେ ।

ଏହି ସମୟରେ 'ପଞ୍ଜାବ'ର ପରିସ୍ଥିତି ଅତ୍ୟନ୍ତ ବିଚିତ୍ର ଥିଲା, ୧୮୪୯ ରେ ଯେଉଁ ଶିଖ୍‌ମାନେ ଇଂରାଜିଙ୍କ ବିରୁଦ୍ଧରେ ସଂଗ୍ରାମକରିଥିଲେ, ୧୮୫୭ ରେ ସେମାନେ ଇଂରାଜିମାନଙ୍କର ବିଶ୍ୱସ୍ତ ଓ ଘନିଷ୍ଠ ମିତ୍ରରେ ପରିଣତ ହୋଇଥିଲେ । ଇଂରାଜିମାନେ

ଏହାର ସୁଯୋଗନେଇ, ଶିଖ୍ ଓ ଜାଠମାନଙ୍କ ମଧ୍ୟରେ ମୁସଲମାନମାନଙ୍କ ପ୍ରତି ଘୃଣାଭାବ ସୃଷ୍ଟିକରି, ସବୁ ସମୟରେ ଶିଖମାନଙ୍କୁ, ସେମାନଙ୍କର ଧର୍ମ ଗୁରୁଙ୍କୁ ଯେଉଁ 'ଦିଲ୍ଲୀ'ରେ ହତ୍ୟାକରାଯାଇଥିଲା, ସେହି କିଲ୍ଲାକୁ ବର୍ତ୍ତମାନର ଖାଲ୍‌ସା, ମାଟିରେ ମିଶାଇ ଦେବାର ସମୟ ଆସିଛି ବୋଲି କହି ଉତ୍ତେଜିତ କରୁଥିଲେ ।

ଇଂରାଜିମାନେ, 'ମିଆଁମୀର'ର ସିପାହୀମାନଙ୍କୁ ଶସ୍ତ୍ରହୀନ କରି 'ଲାହୋର' ଦୁର୍ଗ କରଗତ କଲା ପରେ ପରେ, 'ଅମୃତସର' ପାଖରେ ଥିବା 'ଗୋବିନ୍ଦଗଡ' ଛାଉଣୀରେ ଅନୁରୂପ କାର୍ଯ୍ୟାନୁଷ୍ଠାନ କରିବାକୁ ବସିଲେ । କାରଣ ଅମୃତସର, ଶିଖମାନଙ୍କର ମୁଖ୍ୟ ଧର୍ମପୀଠ ହୋଇଥିବାରୁ 'ଗୋବିନ୍ଦ ଗଡ'ର ସିପାହୀମାନେ ସେଠାରେ ଶିଖ୍‌ମାନଙ୍କୁ ଇଂରାଜି ମାନଙ୍କ ବିରୁଦ୍ଧରେ ଏକତ୍ରିତ କରିବାର ସମ୍ଭାବନା ଥିଲା । ଏଣୁ ଇଂରାଜିମାନେ ଶିଖ୍ ଓ ଜାଠମାନଙ୍କୁ 'ଅମୃତସର' ରକ୍ଷାକରିବାକୁ ଅନୁରୋଧ କଲେ । ଫଳରେ 'ଗୋବିନ୍ଦ ଗଡ' ଦୁର୍ଗ ଓ 'ଅମୃତସର' ଇଂରାଜିଙ୍କର ସମ୍ପୂର୍ଣ୍ଣ କରଗତ ହେଲା । ବର୍ତ୍ତମାନ ପାଇଁ 'ଲାହୋର' ଓ 'ଅମୃତସର'କୁ ବିଦ୍ରୋହର ବିପଦରୁ ଆପାତତଃ ମୁକ୍ତ ରଖାଗଲା । 'ଲରେନ୍ସ', ସମସ୍ତ ଜରୁରୀକାଳୀନ ପ୍ରତିରକ୍ଷା ମୂଳକ ପଦକ୍ଷେପ ନେଇସାରିବାପରେ, ସେତେବେଳେ 'ସିମ୍‌ଲା'ରେ ରହୁଥିବା 'ଜେନେରାଲ ଆନ୍‌ସନ'ଙ୍କ ପାଖକୁ ଜୁନ୍ ପୂର୍ବରୁ ଦିଲ୍ଲୀ ଅଧିକାର କରିବାପାଇଁ ଏକ ଚିଠିରେ ଜଣାଇଲେ । ସେ ସେତିକିରେ ସନ୍ତୁଷ୍ଟ ରହିଲେ ନାହିଁ, ପରନ୍ତୁ ସହାୟତା ପାଇଁ ('ଡାଲି'ଙ୍କ ଅଧିନରେ (Daly) ଏକ ସେନାକୁ 'ଅମ୍ବାଲା' ପଠାଇ ନିଜେ 'ପଞ୍ଜାବ'ର ଶାନ୍ତି ଶୃଙ୍ଖଳା ଦାୟିତ୍ୱରେ ରହିଲେ । ଏହିପରି 'ଦିଲ୍ଲୀ' ଅଧିକାର ସହାୟତା ପାଇଁ 'ବିଡ' (Bead) ଙ୍କ ଅଧିନରେ ଗୋର୍ଖା ରେଜିମେଣ୍ଟ ଓ 'ଡାଲି'ଙ୍କ ଅଧିନରେ ପଞ୍ଜାବୀ ରେଜିମେଣ୍ଟ ଯାତ୍ରା କଲେ ।

'ପଞ୍ଜାବ'ରେ 'ପାତିଅଲା', 'ନାଭା', 'ଝିନ୍ଦ୍', ପ୍ରଭୃତିର ରାଜାମାନେ ଇଂରାଜିମାନଙ୍କୁ ସୈନ୍ୟ ଓ ଅର୍ଥ ସହାୟତା ଦେଲେ । ପଶ୍ଚିମ ପଞ୍ଜାବରେ ବିଦ୍ରୋହର ପ୍ରଭାବ ବିଶେଷ କିଛି ପଡିନଥିଲା । କେବଳ 'ମୂଲତାନ'ରେ ସେପ୍ଟେମ୍ବର ସତର ତାରିଖରେ 'ଅହମ୍ମଦ ଖାଁ'ଙ୍କ ନେତୃତ୍ୱରେ ଏକ ବିଦ୍ରୋହ ବ୍ୟତୀତ କୌଣସି ବିଶେଷ ଘଟଣା ଘଟି ଥିଲା । କିନ୍ତୁ ପୂର୍ବ ପଞ୍ଜାବରେ କେତେକ ସ୍ଥାନରେ ସିପାହୀମାନଙ୍କ ସହିତ ଜନସାଧାରଣ ମଧ୍ୟ ବିଦ୍ରୋହରେ ଯୋଗଦାନ କରିଥିଲେ । 'ହିସାର' ଓ 'ହାନ୍‌ସୀ'ରେ ବହୁ ଇଂରାଜି ଓ ଖ୍ରୀଷ୍ଟିଆନ ମାନଙ୍କୁ ହତ୍ୟା କରିବା ପରେ ଦେଶୀ ଅଫିସରଙ୍କୁ 'ଶାହାଜାଦା' ଉପାଧି ଦିଆହୋଇ ଶାସନ ମୁଖ୍ୟ ଭାବରେ ପ୍ରତିଷ୍ଠା କରାଯାଇଥିଲା । 'ଶିର୍ଷା'ରେ ଏହା ସାମ୍ପ୍ରଦାୟିକତାର ରୂପ ନେଇ ମୁସଲମାନମାନଙ୍କୁ ଲୁଟ୍ କରାଯାଇଥିଲା । କୁର୍ଣ୍ଣୁଲରେ

କିଛି ଛୋଟ ଗ୍ରାମରେ ଲୋକମାନେ ଖଜଣା ଦେବାପାଇଁ ମନା କରିନେଲେ ଓ ସରକାରୀ କର୍ମଚାରୀଙ୍କୁ ତାଡେଇ ବିଦା କରିଦେଲେ । ବିଭିନ୍ନ ଅପରାଧି ଗୋଷ୍ଠୀମାନେ ଏହି ବିଶୃଙ୍ଖଳତାର ସୁଯୋଗ ନେଇ ସିପାହୀ ତଥା ସର୍ବସାଧାରଣଙ୍କୁ ଲୁଟ୍ କରୁଥିଲେ । କେତେକ କ୍ଷେତ୍ରରେ ଲୁଟ୍‌ତରାଜରୁ ବଞ୍ଚିବାପାଇଁ ସାଧାରଣ ଗ୍ରାମ ଗୁଡ଼ିକ ଇଂରାଜିମାନଙ୍କୁ ସମର୍ଥନ କରୁଥିଲେ ।

ଇଂରାଜିମାନେ, 'ଲାହୋର' ଓ 'ଅମୃତସର'କୁ ବିପଦମୁକ୍ତ କରିବାପରେ ମଧ ନିଶ୍ଚିନ୍ତ ହୋଇ ରହିପାରିଲେ ନାହିଁ । 'ଫିରୋଜପୁର'ର ଶାସ୍ତ୍ରାଗାର ସୁରକ୍ଷିତ ନଥିଲା । କାରଣ, ଏଥିରେ ବହୁ ସଂଖ୍ୟାରେ ଦେଶୀ ସିପାହୀ ନିଯୁକ୍ତ ଥିଲେ । ଏଣୁ ସେମାନଙ୍କଠାରୁ ଶସ୍ତ୍ର ପ୍ରତ୍ୟାହାର କରିନେବାର ଆବଶ୍ୟକତା ପଡ଼ିଲା । ମେ ତେର ତାରିଖ ସକାଳେ ସିପାହୀମାନଙ୍କର ମନୋଭାବ ଲକ୍ଷ୍ୟ କରିବା ପାଇଁ ପ୍ୟାରେଡକୁ ଡକାଗଲା । ସେମାନେ ଏତେ ବିଶ୍ୱସ୍ତ ଓ ଶାନ୍ତ ଭାବରେ ବ୍ୟବହାର କଲେ ଯେ ସେମାନଙ୍କ ଠାରୁ ଶସ୍ତ୍ର ପ୍ରତ୍ୟାହାର କରିବା କଥା କଳ୍ପନା ସୁଦ୍ଧା କରାଗଲା ନାହିଁ । ଦୁଇଟି ରେଜିମେଣ୍ଟ ଦେଶୀ ସିପାହୀ ଥିଲେ ଓ ସେମାନେ ପରସ୍ପରଠାରୁ କିଛି ବ୍ୟବଧାନରେ ରହୁଥିଲେ । ପ୍ୟାରେଡ ପରେ ଗୋଟିଏ ରେଜିମେଣ୍ଟ ବଜାର ମଧଦେଇ ଫେରିଲା । ସେଠାରେ ବଜାର ମଧରେ ସେମାନେ ଦୋକାନୀ, ଗ୍ରାହକ ଓ ରାସ୍ତାର ଲୋକମାନଙ୍କ ଠାରେ ଇଂରାଜି ବିରୁଦ୍ଧରେ ବିଦ୍ରୋହ ମନୋଭାବ ଦେଖି ମନେ ମନେ ବିଦ୍ରୋହ ପାଇଁ ଦୃଢ ସଂକଳ୍ପ ହେଲେ । କାରଣ, ସେମାନଙ୍କ ସାଥି ଭାଇମାନଙ୍କଠାରୁ ଶସ୍ତ୍ର ଛଡାଇ ନେବାପରେ, ସେମାନେ ଭୟ ଓ ସନ୍ଦେହ ଭିତରେ ଥିଲେ ଏବଂ ଲୋକମାନଙ୍କର ଉତ୍ତେଜନା ଦେଖି ବିଦ୍ରୋହ କରିବାକୁ ମନ ଦୃଢ କରିନେଲେ । ସଙ୍ଗେ ସଙ୍ଗେ ସେମାନେ, ଇଂରାଜିଙ୍କ ବିରୁଦ୍ଧରେ ଯୁଦ୍ଧଧ୍ୱନି ଦେଇ ମାତିଗଲେ । ଏହାପରେ ବିଦ୍ରୋହୀମାନେ ଦିଲ୍ଲୀ ଅଭିମୁଖେ ଯାତ୍ରାକଲେ । ସେହି ମୁହୂର୍ତ୍ତରେ, 'ଫିରୋଜପୁରର' ଜନସାଧାରଣ ଉତ୍ତ୍ୟକ୍ତ ହୋଇ ଇଂରାଜି ବଙ୍ଗଳା, ତମ୍ବୁ, ହୋଟେଲ, ଚର୍ଚ୍ଚ ଆଦି ଅନୁଷ୍ଠାନମାନ ଜଳାଇଦେଲେ ଓ ଇଂରାଜିମାନଙ୍କୁ ଖୋଜି ବୁଲିଲେ । କିନ୍ତୁ ଇଂରାଜିମାନେ ପୂର୍ବରୁ ସତର୍କ ହୋଇ ବ୍ୟାରାକ୍‌ରେ ଲୁଚିଥିଲେ । ତେବେ ଯେଉଁମାନେ ହାତରେ ପଡିଲେ ସେମାନଙ୍କୁ ହତ୍ୟା କରାଗଲା । ଏହାପରେ ପରେ ଯେଉଁ ଇଂରାଜି ସୈନ୍ୟମାନେ ପ୍ରତିରକ୍ଷା ମୂଳକ ବ୍ୟବସ୍ଥାରେ ସିପାହୀମାନଙ୍କୁ ଅନୁସରଣ କରି ଆସିପହଞ୍ଚିଲେ, ସେମାନେ ସମସ୍ତ ବିଦ୍ରୋହୀଙ୍କୁ ନିର୍ବିବାଦରେ ହତ୍ୟା କଲେ ।

ବିଦ୍ରୋହର ଗୁପ୍ତ ସଂଗଠନର 'ଲକ୍ଷ୍ନୌ'ଶାଖା, କାବୁଲର 'ଅମୀର ଦୋସ୍ତ ମହମ୍ମଦ'ଙ୍କ ସହ ସମ୍ପର୍କ ରଖିଥିଲେ । ସେମାନେ ଅଫଗାନିସ୍ଥାନର ସହାୟତା ଚାହୁଁଥିଲେ ।

କାବୁଲର ଅମୀର, ଇଂରାଜିଙ୍କ ସହ ନିକଟରେ ଏକ ସନ୍ଧିରେ ଆବଦ୍ଧ ଥିଲେ ମଧ୍ୟ, ସଂଗଠନକୁ ଦରକାର ବେଳେ ସହାୟତା ଦେବାରେ ସମ୍ମତି ପ୍ରକାଶ କରିଥିଲେ । ସୀମାନ୍ତର 'ପେଶବାର' ନିକଟବର୍ତ୍ତୀ ଅଞ୍ଚଳରେ ରହୁଥିବା ମୁସଲମାନ ମାନଙ୍କୁ ଇଂରାଜିମାନେ ଭୟକରୁଥିଲେ । ଏଣୁ ଇଂରାଜିମାନେ କିଛି ମୁଲ୍ଲାଙ୍କୁ କରଗତ କରି ସେହିମାନଙ୍କ ଜରିଆରେ, ଇଂରାଜିଙ୍କ ବିରୁଦ୍ଧରେ ନଯିବା ପାଇଁ ମୁସଲମାନମାନଙ୍କୁ ଶିଖାଉଥିଲେ । 'ପେଶବାର' ପାଖରେ ଦୃଢ, ଯୁଦ୍ଧ ପ୍ରବୀଣ କୁଟନୀତିଜ୍ଞମାନଙ୍କୁ ଅଫିସର ରୂପେ ନିଯୁକ୍ତି ଦିଆଯାଇଥିଲା । ସେମାନେ ପ୍ରଭୂତ ଅର୍ଥ ବିନିମୟରେ ଏହି ମୁସଲମାନମାନଙ୍କୁ କରଗତ କରି, ସେବାରେ ନିଯୁକ୍ତି ଦେଲେ । ଏହା ଛଡା, ବଛା ବଛା ଇଂରାଜି ସୈନ୍ୟଙ୍କ ସହ ଇଂରାଜି ଅନୁଗତ ସିପାହୀମାନଙ୍କୁ ନେଇ ବାହିନୀ ଗଠନ କରାଗଲା । ଏହି ବାହିନୀକୁ ପଞ୍ଜାବର ବିଭିନ୍ନ ସ୍ଥାନରେ ଶାନ୍ତିରକ୍ଷା ପାଇଁ ମୁତୟନ କରାଗଲା ।

'ମିଆଁମୀର' ଓ 'ଲାହୋର' ଘଟଣା ପରେ ପରେ 'ପେଶବାର'ରେ ଅଫିସରମାନେ ଦେଶୀ ସିପାହୀଙ୍କ ଠାରୁ ଶସ୍ତ୍ର ପ୍ରତ୍ୟାହାର କରାଯିବାର ବ୍ୟବସ୍ଥା କଲେ । ମେ ଏକୋଇଶ ତାରିଖ ଦିନ 'କଟନ୍'(Cotton)ଏବଂ 'ନିକଲ୍‌ସନ୍'(Neholoson), ଇଂରାଜି ଫୌଜଙ୍କ ସହ ଘେରିଯାଇ ଦେଶୀ ସିପାହୀଙ୍କଠାରୁ ଶସ୍ତ୍ର ପ୍ରତ୍ୟାହାର କରିନେଲେ । ଏହାପରେ ଇଂରାଜିମାନେ, ହୋତିମର୍ଦ୍ଦନରେ ଥିବା ୫୫ ତମ ଦେଶୀ ପଦାତିକ ବାହିନୀ ଉପରେ ଦୃଷ୍ଟି ନିକ୍ଷେପ କଲେ । ଉକ୍ତ ବାହିନୀକୁ ସରକାର ସନ୍ଦେହ କରୁଥିଲେ ମଧ୍ୟ ବାହିନୀର 'କର୍ଣ୍ଣେଲ ସ୍ପଟିଶଉଡ'(Spattiswarde)ଙ୍କର ବାହିନୀର ସିପାହୀମାନଙ୍କ ଉପରେ ଅଦମ୍ୟ ବିଶ୍ୱାସ ଥିଲା । ଏଣୁ ସେ ସରକାରଙ୍କର ମନୋଭାବକୁ ସମର୍ଥନ କରିପାରୁନଥିଲେ । ମେ ଚବିଶ ତାରିଖ ଦିନ କିଛି ସିପାହୀ ଆସି ତାଙ୍କୁ କହିଲେ, ''ଆମେ ଶୁଣିବାକୁ ପାଉଛୁ, 'ପେଶବାର'ରୁ ଫୌଜ ଆମକୁ ଧ୍ୱଂସ କରିବାକୁ ଆସୁଛନ୍ତି । ଏହା କଣ ସତ ?'' କର୍ଣ୍ଣେଲ ଏଣୁ ତେଣୁ କହି ସିପାହୀମାନଙ୍କୁ ବିଦା କରିନେଲେ ମଧ୍ୟ ସେମାନେ ଅସନ୍ତୁଷ୍ଟ ହୋଇ ଫେରିଗଲେ । ପ୍ରକୃତରେ 'ପେଶବାର'ରୁ ଇଂରାଜି ଫୌଜ 'ହୋତିମର୍ଦ୍ଦନ' ଛାଉଣୀ ଆଡେ ଆସୁଥିଲେ । କର୍ଣ୍ଣେଲ ତାଙ୍କର ପ୍ରକୋଷ୍ଠକୁ ଯାଇ ସେଠାରେ ଆତ୍ମହତ୍ୟା କଲେ । ଏହି ଖବର ପାଇ ୫୫ତମ ବାହିନୀ ଖଜଣାଖାନା ଆକ୍ରମଣ କଲେ ଓ 'ଦିଲ୍ଲୀ' ଆଡକୁ ଯାତ୍ରା ଆରମ୍ଭ କଲେ । କିନ୍ତୁ 'ଦିଲ୍ଲୀ' ଯିବାକୁ ହେଲେ ସମଗ୍ର 'ପଞ୍ଜାବ' ଅତିକ୍ରମ କରିଯିବାକୁ ପଡିବ ଏବଂ 'ପଞ୍ଜାବ'ରେ ଇଂରାଜି ମାନଙ୍କର ସମର୍ଥନ ଓ ଆସ୍ଥାନ ଦୃଢଥିଲା । ଫଳରେ ସେମାନଙ୍କୁ 'ନିକଲସନ୍'ଙ୍କର ମୁହାମୁହିଁ ହେବାକୁ ପଡିଲା । ତୁମୁଳ

ସଂଘର୍ଷ ହେଲା । 'ନିକଲସନ୍'ଙ୍କ ପରି ପ୍ରବୀଣ ଯୋଦ୍ଧାଙ୍କୁ ମଧ ଚବିଶ ଘଣ୍ଟା ଘୋଡାପିଠିରେ ବସି ରହିବାକୁ ପଡିଲା । ସେମାନଙ୍କ ମଧ୍ୟରୁ ବହୁ ସଂଖ୍ୟାରେ ପ୍ରାଣ ହରାଇଲେ ଓ ଅନ୍ୟମାନେ ସୀମାନ୍ତ ଅତିକ୍ରମ କରି ପଳାୟନ କଲେ । ଯେଉଁମାନେ 'ଆଫଗାନିସ୍ଥାନ' ଆଡେ ଗଲେ ସେମାନଙ୍କୁ ବଳ ପୂର୍ବକ ମୁସଲମାନ କରିଦିଆଗଲା । ଅନ୍ୟମାନେ 'କାଶ୍ମୀର' ଆଡକୁ ମୁହାଁଇଲେ । ତନ୍ମଧ୍ୟରୁ କେତେକ ବାଟରେ ଇଂରାଜିଙ୍କ ହାତରେ ପ୍ରାଣ ହରାଇଲେ । ଅନ୍ୟମାନେ 'କାଶ୍ମୀର'ରେ ପହଞ୍ଚିବା ପୂର୍ବରୁ ରାଜା ଗୋଲାବସିଂହ ଇଂରାଜି ବନ୍ଧୁତାର ନିଦର୍ଶନ ସ୍ୱରୂପ ଆଦେଶ ଦେଲେ ଯେ, ଯେଉଁ ହିନ୍ଦୁ ସିପାହୀ କାଶ୍ମୀରରେ ପ୍ରବେଶ କରିବ, ତାକୁ ହତ୍ୟା କରାଯିବ । ଫଳରେ ଅନ୍ୟମାନେ ନିରାଶ୍ରୟ ହୋଇ ଇଂରେଜଙ୍କ ହାତରେ ମୃତ୍ୟୁ ବରଣ କଲେ ।

ଜଳନ୍ଧରରେ ବିଦ୍ରୋହର ନିଆଁ କୁହୁଳିବାକୁ ଆରମ୍ଭ କରୁଥିଲା । 'ଜଳନ୍ଧର'ର ସିପାହୀମାନେ 'ହୋସିଆରପୁର'କୁ ଏକ ବାହିନୀ ପଠାଇବାକୁ କଳ୍ପନା କରିଥିଲେ । ସେଠାରୁ ୩୧ ତମ ବାହିନୀ ବିଦ୍ରୋହକରି 'ପିଲହୁର' ଯିବାରଯୋଜନାଥିଲା ଓ ସେଠାରୁ ୩ୟ ପଦାତିକ ବାହିନୀ ସହ ଦିଲ୍ଲୀ ଯାତ୍ରା କରିବା ମଧ ଯୋଜନା ଥିଲା । କିନ୍ତୁ ଏ ସମସ୍ତ ଯୋଜନା ଇଂରାଜିମାନେ ଗୁପ୍ତଚର ଦ୍ୱାରା ଜାଣିବା ଫଳରେ ତାହା ପଣ୍ଡ କରିଦିଆ ଯାଇଥିଲା । ଜୁନ୍ ୭ଅ ତାରିଖରେ, ହଠାତ୍ 'ଜଳନ୍ଧର'ର କ୍ୱିନ୍ସ ରେଜିମେଣ୍ଟ(Queen's Regiment) ର କର୍ଣ୍ଣେଲଙ୍କ ଘରେ ନିଆଁ ଲଗାଇଦିଆଗଲା ଓ ସିପାହୀମାନେ ଏକାସାଥିରେ ବିଦ୍ରୋହ କରିଉଠିଲେ । ଇଂରାଜିମାନଙ୍କର ସେଠାରେ ଇଂରାଜି ସୈନ୍ୟ ଓ ଗୋଲନ୍ଦାଜ ବାହିନୀ ଥିଲା । କିନ୍ତୁ ସିପାହୀମାନଙ୍କର ବିଦ୍ରୋହ ଏତେ ଐକ୍ୟପୂର୍ଣ୍ଣ ଓ ଅପ୍ରତ୍ୟାଶିତ ଥିଲା ଯେ ଇଂରାଜିମାନେ ସମ୍ପୂର୍ଣ୍ଣ ଭାବରେ ଭୟଭୀତ ହୋଇଯାଇ ଭାରସାମ୍ୟ ହରାଇ ବସିଥିଲେ । ବିଦ୍ରୋହୀମାନେ ତୋପମାନ ଅଧିକାର କରିନେଲେ । ସେମାନଙ୍କର ଅଫିସରମାନେ, ସେମାନଙ୍କୁ ବିଶ୍ୱାସ କରୁଥିବାରୁ ସେମାନଙ୍କୁ ନିଶସ୍ତ୍ର କରାଯାଇନଥିଲା । ଏଣୁ ସେମାନେ, ଅଫିସରମାନଙ୍କର ବିଶ୍ୱାସକୁ ସମ୍ମାନ ଦେଇ, ସେମାନଙ୍କୁ ଜୀବନରେ ନ ମାରି, ଛାଡିଦେଲେ । ଅର୍ଦ୍ଧ ରାତ୍ରିରେ ବିଦ୍ରୋହ କରିବା ପୂର୍ବରୁ, ସେମାନେ 'ପିଲହୁର୍'କୁ ଖବର ଦେବାପାଇଁ ଘୋଡାସବାର ପଠାଇଥିଲେ । ଯେତେବେଳେ 'ଜଳନ୍ଧର' ସିପାହୀମାନେ 'ପିଲହୁର୍'ରେ ଯାଇ ପହଞ୍ଚିଲେ, 'ପିଲ୍ହୁର'ର ସିପାହୀମାନେ, ସେମାନଙ୍କୁ ଅଭ୍ୟର୍ଥନା ଜଣାଇ ଗ୍ରହଣ କଲେ । ଉଭୟ ସେନା ଏକତ୍ର 'ଦିଲ୍ଲୀ' ଆଡକୁ ଯାତ୍ରାକଲେ । ରାସ୍ତାରେ ଏକ ପାର୍ଶ୍ୱରେ ନଦୀ ଓ ଅପର ପାର୍ଶ୍ୱରେ 'ଲୁଧିଆନା' ଅବସ୍ଥିତ ଥିଲା । ସକାଳୁ 'ଲୁଧିଆନା'ର ଅଫିସର, 'ଜଳନ୍ଧର' ବିଦ୍ରୋହ

ବିଷୟରେ ଟେଲିଗ୍ରାମ ପାଇଲେ । 'ଲୁଧିଆନା'ର ସିପାହୀମାନେ ଟେଲିଗ୍ରାମ ପହଞ୍ଚିବା ଆଗରୁ ଖବର ପାଇ ସାରିଥିଲେ । 'ଫିଲହୁର' ଓ 'ଲୁଧିଆନା' ମଝିରେ ଶତଦ୍ରୁ ନଦୀ ଥିଲା । ଏଣୁ ନଦୀପଥ ନଷ୍ଟ କରିବା ପାଇଁ ଇଂରାଜିମାନେ ନୌକା ସବୁ ଧ୍ୱଂସ କରିଦେଲେ । ଇଂରାଜି ଓ ଶିଖ୍ ସେନା ଏବଂ 'ନାଭା'ର ରାଜା ତାଙ୍କର ସେନାସହ ନଦୀକୂଳ ଜଗିରହିଲେ । ଯେତେବେଳେ ବିଦ୍ରୋହୀମାନେ ଏ ଖବର ପାଇଲେ ସେମାନେ ଚାରିମାଇଲ ନଦୀର ଉପର ଦିଗକୁ ଯାଇ ଅର୍ଦ୍ଧରାତ୍ରିରେ ତାହା ପାର ହେବାକୁ ସ୍ଥିର କଲେ । କିଛି ସିପାହୀ ପାରିହୋଇ ଆର କୂଳରେ ପହଞ୍ଚିଲେ ଓ କିଛି ସିପାହୀ ପାରିହେଉଥିବା ବେଳେ, ଇଂରାଜି ଓ ଶିଖ୍ ଗୋଲନ୍ଦାଜ ବାହିନୀ ଏହା ଜାଣିପାରି ନଦୀକୁ ଗୋଳାବର୍ଷଣ କଲେ । ସିପାହୀମାନେ ମଧ୍ୟ ତାହାର ଜବାବ ଦେବାକୁ ଲାଗିଲେ । ଦୁଇଘଣ୍ଟା ପର୍ଯ୍ୟନ୍ତ ଲଢେଇ ଚାଲିଲା । ଏହି ସମୟରେ ଜଣେ ଦେଶୀ ସିପାହୀର ଗୁଳି 'କମାଣ୍ଡର ଉଇଲିୟମ'ଙ୍କର ଦକ୍ଷିଣ ଛାତିରେ ପ୍ରବେଶ କଲା ଓ ସେ ଘଟଣା ସ୍ଥଳରେ ପ୍ରାଣ ହରାଇଲେ । ସେହି ଜ୍ୟୋତ୍ସ୍ନା ରାତିରେ ସିପାହୀମାନେ ଇଂରାଜିମାନଙ୍କର ଯୁଦ୍ଧ କୌଶଳ ବୁଝିପାରି, ସେମାନଙ୍କୁ ପ୍ରବଳ ବେଗରେ ଆକ୍ରମଣ କରିବା ଫଳରେ ସେମାନେ ପଳାୟନ କଲେ । ଦିନ ଦ୍ୱିପରହରରେ ସିପାହୀମାନେ, 'ଲୁଧିଆନା' ସହର ମଧ୍ୟରେ ପ୍ରବେଶ କଲେ । ସେହି ସହରରେ ରହୁଥିବା ଜଣେ ମୌଲବୀ, ସଦାବେଳେ ଲୋକମାନଙ୍କୁ ଇଂରାଜିଙ୍କର ଦାସତ୍ୱରୁ ମୁକ୍ତ ହେବାପାଇଁ ଉତ୍ତେଜିତ କରୁଥିଲେ ଓ ତଦନୁସାରେ ଲୋକମାନେ ମଧ୍ୟ ଅନୁପ୍ରାଣିତ ହୋଇଥିଲେ । ଏହା ବିଦ୍ରୋହର ଏକ କେନ୍ଦ୍ର ହୋଇଥିଲା । ସିପାହୀମାନଙ୍କର ଆଗମନର ବାର୍ତ୍ତା ଶୁଣି 'ଲୁଧିଆନା'ର ଜନସାଧାରଣ ଘର, ଥାନା, ହୋଟେଲ, ଖବରକାଗଜ ଆଦି ବିଭିନ୍ନ ଇଂରାଜି ଅନୁଷ୍ଠାନମାନ ଲୁଟ୍ କରିବା ସଙ୍ଗେ ସଙ୍ଗେ ନିଆଁ ଲଗାଇଦେବାକୁ ଲାଗିଲେ । ନାଗରିକମାନେ ସିପାହୀମାନଙ୍କ ସହିତ ବୁଲି ବୁଲି ସେମାନଙ୍କୁ ଇଂରାଜି ବା ସେମାନଙ୍କର ଅନୁଗତମାନଙ୍କ ଘର ଦେଖାଇ ଦେବାକୁ ଲାଗିଲେ । ବନ୍ଦୀଶାଳାକୁ ଭାଙ୍ଗି ଦିଆଯାଇ ବନ୍ଦୀମାନଙ୍କୁ ମୁକ୍ତ କରାଗଲା । ସମସ୍ତ ସରକାରୀ ଅଫିସରେ ନିଆଁ ଲଗାଇ ଦିଆଗଲା । 'ଲୁଧିଆନା' ଦୁର୍ଗ ଅଧିକାର କରି ସେଠାରେ ସେହି ମୁହୂର୍ତ୍ତରେ ଏକ ଟାଣୁଆ ଘାଟୀ ପ୍ରତିଷ୍ଠା କରାଯାଇଥିଲେ, ତାହା ଇଂରାଜି ସାମରିକ ଶକ୍ତି ପାଇଁ ଏକ ଶକ୍ତ ଆଘାତ ହୋଇଥାଆନ୍ତା । କାରଣ, ସାମରିକ ଦୃଷ୍ଟିକୋଣରୁ ସେ ସମୟରେ ଲୁଧିଆନାର ସ୍ଥାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । କିନ୍ତୁ ପରିସ୍ଥିତି ଦୃଷ୍ଟିରୁ ସିପାହୀମାନଙ୍କ ପକ୍ଷରେ 'ଲୁଧିଆନା'ରେ ରହିବା ସମ୍ଭବ ନ ଥିଲା । ଏଣୁ ସେମାନେ 'ଦିଲ୍ଲୀ' ଅଭିମୁଖେ ଯାତ୍ରା କଲେ ।



# ରୋହିଲାଖଣ୍ଡ

'ରୋହିଲାଖଣ୍ଡ'ର ରାଜଧାନୀ 'ବରେଲୀ' ଥିଲା । ପୂର୍ବରୁ ଏହା ପଠାଣମାନଙ୍କ ଦ୍ୱାରା ଶାସିତ ହେଉଥିଲା । ଇଂରାଜି ଶାସନ ପରେ ୧୮୫୭ ମସୀହାରେ ଏହା ବିଦ୍ରୋହୀମାନଙ୍କର ଗୁପ୍ତ ସଂଗଠନର ଏକ କେନ୍ଦ୍ରଥିଲା । ସେହି ସମୟରେ ସେଠାରେ ୮ମ ସାମୟିକ ଘୋଡାସବାର ବାହିନୀ ଓ ୧୮ତମ ଓ ୬୮ତମ ପଦାତିକବାହିନୀ ଅବସ୍ଥାପିତ ଥିଲା, ଏହା ସହିତ ଏକ ଦେଶୀ ଗୋଲନ୍ଦାଜବାହିନୀ ମଧ୍ୟ ଥିଲା । 'ବ୍ରିଗେଡିୟର ସିବାଲ୍ଡ' (Sibbald) ଏହି ସେନାର ଦାୟିତ୍ୱରେ ଥିଲେ । ଏପ୍ରିଲ ମାସରେ, ସିପାହୀମାନଙ୍କ ମଧ୍ୟରେ ନୂତନ ଗୁଳି ପ୍ରଚଳନ ନେଇ ଅଶାନ୍ତି ଦେଖାଯାଇଥିଲା । ମେ ଚଉଦ ତାରିଖ ଦିନ, 'ବରେଲୀ'ରେ 'ମିରଟ୍' ବିଦ୍ରୋହର ଖବର ପହଞ୍ଚିଲା । ଏହାପରେ ଇଂରାଜିମାନେ ନିଜର ସ୍ତ୍ରୀ ପିଲାମାନଙ୍କୁ 'ନୈନିତାଲ' ପଠାଇ ଦେଇ ଘୋଡା ସବାର ବାହିନୀକୁ ସତର୍କ ରଖିଲେ । ମେ ପନ୍ଦର ତାରିଖଦିନ ପ୍ୟାରେଡରେ ସିପାହୀମାନଙ୍କୁ ପ୍ରଭୁଭକ୍ତି ଓ ବିଶ୍ୱାସ ଉପରେ ଉଦ୍‌ବୋଧନ ଦିଆଗଲା । ସିପାହୀମାନେ ଏହି ଉଦ୍‌ବୋଧନ ଦେବା ପଛରେ ଇଂରାଜିମାନଙ୍କର ଭୟ ଓ ଦୁର୍ବଳତା ଲକ୍ଷ୍ୟ କଲେ । ପୂର୍ବରୁ ସେମାନଙ୍କ ପାଖକୁ 'ବାଦଶା'ଙ୍କ ବାହିନୀରେ ଯୋଗ ଦାନ କରିବା ପାଇଁ ଦିଲ୍ଲୀରୁ ଗୁପ୍ତରେ ସମ୍ବାଦ ଆସିଥିଲା । କିନ୍ତୁ ସଂଗଠନର ପୂର୍ବନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁସାରେ ମେ ଏକ ତିରିଶ ତାରିଖ ଦିନ ସେମାନେ ବିଦ୍ରୋହ କରିବେ ବୋଲି ସ୍ଥିର କରିଥିଲେ । 'ମିରଟ୍' ବିଦ୍ରୋହ ଘଟଣାବଳୀର ଏକ ନିଖୁଣ ଚିତ୍ର ପାଇବାପରେ ସିପାହୀମାନେ ନିଜେ ବନ୍ଧନରୁ ମୁକ୍ତ ହେବାପାଇଁ ଦୃଢସଂକଳ୍ପ ହୋଇଥିଲେ । କିନ୍ତୁ ପୂର୍ବନିର୍ଦ୍ଧାରିତ ଯୋଜନା ଅନୁସାରେ ସେମାନେ ଶାନ୍ତ ଓ ଶୃଙ୍ଖଳିତ ଭାବରେ ଇଂରାଜି ଅଫିସରମାନଙ୍କର ଆଦେଶ ପାଳନ କରୁଥିଲେ ।

ଅଣତିରିଶ ତାରିଖ ଦିନ ସକାଳେ ନଦୀରେ ସ୍ନାନ କରିବା ସମୟରେ ସମସ୍ତ ଦେଶୀ ସିପାହୀ ଇଂରାଜିମାନଙ୍କୁ ହତ୍ୟାକରି ଦାସତ୍ୱ ଶୃଙ୍ଖଳରୁ ମୁକ୍ତ ହେବାପାଇଁ ଏକ ସ୍ୱରରେ ସଂକଳ୍ପ ନେଲେ । ସେମାନେ ଦୁଇଟାବେଳେ ଆକ୍ରମଣ ଅରମ୍ଭ କରିବା ପାଇଁ ସ୍ଥିର କଲେ । ଇଂରାଜିମାନେ ସୁରାକ୍ ପାଇଁ ଘୋଡାସବାରବାହିନୀକୁ ସତର୍କ ରଖିଲେ । ତାହା ଦେଖି ସିପାହୀମାନେ ନୀରବରେ ଓ ଶାନ୍ତଭାବରେ ନିଜର କର୍ତ୍ତବ୍ୟ ପାଳନ କରିବାକୁ ଲାଗିଲେ । ଏହି ପ୍ରକାରେ ଅଣତିରିଶ ଓ ତିରିଶ ତାରିଖ ଶାନ୍ତି ପୂର୍ଣ୍ଣ ଭାବରେ କଟିଗଲା । ସିପାହୀମାନଙ୍କର ବିଶ୍ୱସ୍ତ ଓ ସୁଶୃଙ୍ଖଳ ଆଚରଣରେ ଇଂରାଜିମାନଙ୍କର କୌଣସି ସନ୍ଦେହ କରିବାର ନ ଥିଲା ।

ଏକତିରିଶ ତାରିଖ ଦିନ ସକାଳେ 'କ୍ୟାପଟେନ ବ୍ରାଉନଲୋ'(Caption Brownlow)ଙ୍କର ବଙ୍ଗଳାରେ ନିଆଁ ଲଗାଇ ଦିଆଗଲା । କିନ୍ତୁ ଇଂରାଜିମାନେ ଏହାକୁ ଏକ ସାଧାରଣ ଘଟଣା ଭାବରେ ଗ୍ରହଣ କଲେ । ସେ ଦିନ ରବିବାର ଥିଲା । ସକାଳର ପ୍ୟାରେଡ୍ ଶାନ୍ତବାତାବରଣ ମଧ୍ୟରେ ସମାହିତ ହେଲା । କିନ୍ତୁ ସେ ଦିନ ସିପାହୀମାନେ ଅନ୍ୟଦିନ ଅପେକ୍ଷା ଅସ୍ୱାଭାବିକ ଭାବରେ ନୀରବ ଥିଲେ । ସବୁ କିଛି ଶାନ୍ତ ଥିଲା । ଘଣ୍ଟାରେ ଏଗାରଟା ବାଜିଲା । ସିପାହୀମାନଙ୍କ ଛାଉଣୀରୁ ଏକ ତୋପ ଫୁଟିବା ଶବ୍ଦ ହେଲା । ଏହି ଶବ୍ଦ ଶାନ୍ତ ହେବା ପୂର୍ବରୁ ବହୁ ଗୁଳି ଶବ୍ଦ ଶୁଣିବାକୁ ମିଳିଲା । 'ବରେଲୀ'ରେ ବିଦ୍ରୋହ ଏତେ ସୁଶୃଙ୍ଖଳ ଭାବରେ ସଂଗଠିତ ହୋଇଥିଲା ଯେ କେଉଁ ସିପାହୀ କେଉଁ ଅଫିସରକୁ ମାରିବ ତାହା ପୂର୍ବରୁ ନିର୍ଦ୍ଧାରିତ ହୋଇଥିଲା । ଠିକ୍ ଏଗାରଟା ସମୟରେ ତୋପର ଶବ୍ଦ ପରେ ପରେ ୬୮ ତମ ବାହିନୀ ଲାଇନ୍ ନିକଟରେ ଥିବା ଇଂରାଜିମାନଙ୍କୁ ଆକ୍ରମଣ ଆରମ୍ଭ କଲେ । ଏହାପରେ ପ୍ରତିଇଂରାଜି ଘରେ ନିଆଁ ଲଗେଇଦିଆଗଲା । ଇଂରାଜିମାନେ, ଗଣ୍ଡଗୋଳ ଶୁଣି ଭୟରେ ଘୋଡାସବାର ବାହିନୀର ଛାଉଣୀ ଆଡକୁ ଦୌଡିବାକୁ ଆରମ୍ଭ କଲେ । ସରକାରୀ ଓ ସାମରିକ ଅଫିସରମାନେ ସେମାନଙ୍କୁ ସାହାଯ୍ୟ କରିବାକୁ ଆଗେଇଆସିଲେ । ସେମାନେ ଘୋଡସବାର ବାହିନୀକୁ ବିଦ୍ରୋହୀମାନଙ୍କର ମୁକାବିଲା କରିବାକୁ ଆଦେଶ ଦେଲେ । କିନ୍ତୁ ସେହି ବାହିନୀର ମୁଖ୍ୟ ଦେଶୀ ଅଫିସର 'ମହମ୍ମଦ ସଫି' ବିଦ୍ରୋହୀ ସଂଗଠନରେ ପୂର୍ବରୁ ସଂପୃକ୍ତ ଥିଲେ । ଏଣୁ ସେ ନିଜର ଘୋଡାସବାର ମାନଙ୍କୁ ନେଇ ବିଦ୍ରୋହୀମାନଙ୍କ ସହ ମିଶାଇ ଦେଲେ । ସେମାନେ ସମସ୍ତେ ଏକତ୍ରିତ ହୋଇ ଇଂରାଜି ବିରୋଧି ଧ୍ୱନି ଦେଇ ଆକ୍ରମଣ ଆରମ୍ଭ କଲେ । 'ବ୍ରିଗେଡିୟର ସିବାଲ୍ଡ'ଙ୍କୁ ସର୍ବ ପ୍ରଥମ ଆକ୍ରମଣରେ ହତ୍ୟା କରାଗଲା ଓ ଅନ୍ୟ ସମସ୍ତେ ପ୍ରାଣ ଭୟରେ ନୈନିତାଲ ଆଡକୁ ପଳାଇଲେ । 'କ୍ୟାପଟେନ କିର୍ବାଇ' (Captain Kirby), 'ଲେଫଟନାଣ୍ଟ ଫ୍ରାସର' (Lieufentant Fraser), 'ସର୍ଜେଣ୍ଟ ଓ୍ୟାଲଟର୍' (Sergeant Walter) 'କର୍ଣ୍ଣେଲ ଟ୍ରୁପ୍' (Cornel Troup), 'କ୍ୟାପେଟନ୍ ରବର୍ଟସନ' (Captain Robertson) ଆଦି ଅଫିସରମାନେ, ବିଦ୍ରୋହୀମାନଙ୍କ ହାତରେ ପଡି ମୃତ୍ୟୁବରଣ କଲେ । ଯେଉଁ ଇଂରାଜିମାନେ ବିଦ୍ରୋହୀମାନଙ୍କ ହାତରେ ପଡିଲେ, ସେସମସ୍ତଙ୍କୁ ହତ୍ୟା କରାଗଲା । କେବଳ ବତିଶ ଜଣ ଅଫିସର, କୌଣସି ପ୍ରକାରେ ପ୍ରାଣ ରକ୍ଷା କରି, ନିରାପଦରେ ନୈନିତାଲ ରେ ପହଞ୍ଚିଲେ । ଏହିପରି ଭାବରେ 'ବରେଲୀ'ରେ ଛଅ ଘଣ୍ଟା ମଧ୍ୟରେ ଇଂରାଜି ଶକ୍ତିର ପତନ ହେଲା ।

'ବରେଲୀ'ରେ ଇଂରାଜି ପତାକା ଖସାଇ ନିଆଯାଇ ସ୍ୱାଧିନତା ସଂଗ୍ରାମୀଙ୍କର ପତାକା ଉଡେଇଦିଆଗଲା । ଗୋଲନ୍ଦାଜ ବାହିନୀର ସୁବେଦାର୍ 'ବକ୍ତ ଖାଁ' ଙ୍କୁ ବାହିନୀର ନେତୃତ୍ୱ ଦିଆଗଲା । ସେ, ସିପାହୀମାନଙ୍କୁ ସ୍ୱାଧୀନତା ସଂଗ୍ରାମରେ ସେମାନଙ୍କ ଚରିତ୍ର

ଓ ଆଚରଣ ଏବଂ ସ୍ୱାଧୀନତା ପରେ ସ୍ୱରାଜ୍ୟ ରକ୍ଷା କରିବା ପାଇଁ ସେମାନଙ୍କର କର୍ତ୍ତବ୍ୟ ବିଷୟରେ ଉଦ୍‌ବୋଧନ ଦେଲେ । ଇଂରାଜିମାନଙ୍କର ଯାନରେ ଚଢି ଏହି ବାହିନୀ ବଜାର ପରିକ୍ରମା କଲେ । ସେମାନଙ୍କ ପଛରେ ନବ ନିଯୁକ୍ତ କର୍ମଚାରୀମାନେ ଚାଲିଲେ । 'ଖାଁ ବାହାଦୂର ଖାଁ'ଙ୍କୁ 'ରୋହିଲାଖଣ୍ଡ'ର ଶାସକ ରୂପେ ସ୍ୱୀକାର କରାଗଲା । ସେ 'ବାଦଶା'ଙ୍କର ସୁବାଦାର ରୂପେ ପରିଗଣିତ ହେଲେ । 'ବରେଲୀ'ରେ ଇଂରାଜିମାନଙ୍କର ଗୃହଦାହ, ଲୁଟ୍ ଓ ହତ୍ୟା ପରେ 'ବାହାଦୂର ଖାଁ', ବନ୍ଦୀମାନଙ୍କୁ ତାଙ୍କ ସମ୍ମୁଖକୁ ଆଣିବାକୁ କହିଲେ । ସେ ଇଂରାଜିମାନଙ୍କଦ୍ୱାରା ନିଯୁକ୍ତ ଜଣେ ବିଚାରପତି ଥିଲେ । ଏଣୁ ଇଂରାଜି ନ୍ୟାୟ ବିଷୟରେ ତାଙ୍କର ଜ୍ଞାନଥିଲା । ସେ ଇଂରାଜି ଅପରାଧୀମାନଙ୍କର ବିଚାର ପାଇଁ, ଏକ କୋର୍ଟ ବସାଇଲେ । ଅପରାଧୀମାନଙ୍କ ମଧ୍ୟରେ ଡାକ୍ତର, ଉତ୍ତର-ପଶ୍ଚିମ ପ୍ରଦେଶର ଲେଫଟନାଣ୍ଟ ଗଭର୍ଣ୍ଣରଙ୍କର କ୍ଲାଇଁ, ବରେଲୀ ସରକାରୀ କଲେଜର ଅଧ୍ୟକ୍ଷ ଏବଂ ଜିଲ୍ଲା ବିଚାରପତି ଥିଲେ । ସେମାନଙ୍କୁ ବିଭିନ୍ନ ଅପରାଧରେ ଅଭିଯୁକ୍ତ କରାଯାଇ ଫାଶୀଦଣ୍ଡର ଆଦେଶ ଦିଆଗଲା । 'ରୋହିଲାଖଣ୍ଡ'ର କମିଶନର ପ୍ରାଣ ନେଇ ପଳାୟନ କରିଥିବା ଦୃଷ୍ଟିରୁ, 'ଖାଁ ବାହାଦୂର ଖାଁ', ଏକ ଘୋଷଣା ନାମାରେ ଯେ କେହି ତାଙ୍କୁ ମୃତ ବା ଜୀବିତ ଭାବରେ ଉପସ୍ଥିତ କରାଇଲେ ଏକ ହଜାର ଟଙ୍କା ପୁରସ୍କାର ମିଳିବ ବୋଲି ପ୍ରକାଶ କଲେ । 'ଖାଁ ବାହାଦୂର ଖାଁ' ଏହିପରି ନିଜକୁ ଦୃଢଭାବରେ ପ୍ରତିଷ୍ଠିତ କରାଇ 'ରୋହିଲାଖଣ୍ଡ'ର ସ୍ୱାଧିନତାର ସନ୍ଦେଶ ଦିଲ୍ଲୀକୁ ପଠାଇଦେଲେ । 'ବରେଲୀ'ର ଗୋଲନ୍ଦାଜ ବାହିନୀ, ସେଠାରେ ଥିବା ଇଂରାଜି ଶକ୍ତିକୁ ଖଣ୍ଡ ବିଖଣ୍ଡିତ କରିଦେଲା ।

'ଶାହାଜାହାନପୁର', 'ବରେଲି'ଠାରୁ ସତଚାଳିଶମାଇଲ ଦୂରରେ ଅବସ୍ଥିତ ଏବଂ ୨୮ତମ ପଦାତିକ ବାହିନୀର ଏହା ମୁଖ୍ୟ କାର୍ଯ୍ୟାଳୟ ଥିଲା । 'ମିରଟ୍' ବିଦ୍ରୋହର ଖବର ସେଠାରେ ମେ ପନ୍ଦର ତାରିଖରେ ପହଞ୍ଚିଲା । ଏକତିରିଶ ତାରିଖର ସକାଳ, ସବୁଦିନ ପରି ଶାନ୍ତ ଭାବରେ ଆସିଲା । ତାହା ରବିବାର ଥିଲା, ଏଣୁ ଇଂରାଜିମାନେ ଚର୍ଚ୍ଚରେ ଥିଲେ । ପ୍ରାର୍ଥନା ଅଧା ହୋଇଥିବା ସମୟରେ ସିପାହୀମାନେ ମାଡି ଆସିଲେ । ପାଦ୍ରୀ, ଚର୍ଚ୍ଚ ବାହାରେ ଗଣ୍ଡଗୋଳ ବିଷୟରେ ବୁଝିବାକୁ ବସିଲା ବେଳକୁ ତାଙ୍କର ହାତକୁ କାଟିଦିଆଗଲା । ଏହାପରେ ଭୟାବହ ହତ୍ୟାକାଣ୍ଡମାନ ସଂଘଟିତ ହେଲା । ସିଟିମାଜିଷ୍ଟ୍ରେଟ 'ରିକେଟ୍', ଦଉଡୁଥିବା ସମୟରେ ପଡିଗଲେ । 'ଲାବାଦୁର' (Lavadoor)ଙ୍କୁ ଚର୍ଚ୍ଚ ମଧ୍ୟରେ ହତ୍ୟା କରାଗଲା ।

ସିପାହୀମାନଙ୍କ ମଧ୍ୟରୁ ଏକ ଦଳ ଚର୍ଚ୍ଚ ଆଡେ ଆସିଲା ବେଳକୁ ଅନ୍ୟ ଏକ ଦଳ ଇଂରାଜି ଛାଉଣୀ ଆଡେ ଯାଇଥିଲେ । ସେଠାରେ ଲୁଟ୍, ଗୃହ ଦାହ ଓ ହତ୍ୟାକାଣ୍ଡମାନ

ଆରମ୍ଭ ହୋଇଯାଇଥିଲା । ଆସିଷ୍ଟାଣ୍ଟ ମାଜିଷ୍ଟ୍ରେଟ୍ ପ୍ରାଣରକ୍ଷାପାଇଁ ବାରଣ୍ଡା ଆଡକୁ ଦଉଡି ପଳାଉଥିବା ବେଳେ ତାଙ୍କୁ ହତ୍ୟା କରାଗଲା । 'ଡକ୍ଟର ବାଉଲିଙ୍ଗ' (Doctor Bowling), ସିପାହୀମାନଙ୍କୁ କିଛି ଉଦ୍‌ବୋଧନ ଦେବାକୁ ଚେଷ୍ଟାକଲେ । ସିପାହୀମାନେ ପ୍ରଥମେ ଶାନ୍ତ ଭାବରେ ସବୁ ଶୁଣୁଥିଲେ । କିନ୍ତୁ 'ବାଉଲିଙ୍ଗ୍', ତାଙ୍କର ଭାଷଣ ଭିତରେ, ସିପାହୀମାନଙ୍କୁ ବିଶ୍ୱାସଘାତକ ବୋଲି କହିଦେଲେ । ଏହି ସମୟରେ ଏକ ଗୁଳି ଆସି ତାଙ୍କୁ ବିଦ୍ଧ କଲା ଓ ସେ ଟଳି ପଡିଲେ । ଯେଉଁ ସିପାହୀମାନେ ଚର୍ଚ୍ଚକୁ ଯାଇଥିଲେ ସେମାନଙ୍କ ପାଖରେ କେବଳ ତଲବାର ଓ ଲାଠି ଥିଲା, ଏଣୁ ସେମାନେ ରାଇଫଲ ଆଣିବା ପାଇଁ ବ୍ୟାରାକ୍‌କୁ ଫେରିଲେ । ଏହା ମଧ୍ୟରେ କିଛି ଇଂରାଜି, ଶିଖ୍ ସିପାହୀ ଓ ଦେଶୀ ରୋଷେଇଆମାନଙ୍କ ସହାୟତାରେ ପଡିଶାରେଥିବା ରାଜାଙ୍କ ଘରକୁ ଆତ୍ମରକ୍ଷା ପାଇଁ ଗଲେ । କିନ୍ତୁ ରାଜା ନିଜର ଅସହାୟତା ପ୍ରକାଶ କରିବା ଫଳରେ ସେମାନେ 'ମହମଦୀ' ଆଡେ ଗଲେ । ଏହିପରି ଭାବରେ ଏକତିରିଶ ତାରିଖ ଅପରାହ୍ଣ ପୂର୍ବରୁ 'ଶାହାଜାହାନପୁର' ସ୍ୱାଧିନ ହୋଇଗଲା ।

'ବରେଲୀ'ଠାରୁ ଉତ୍ତର-ପଶ୍ଚିମ ଦିଗରେ ଅଠଚାଳିଶ ମାଇଲ ଦୂରରେ 'ମୋରାଦାବାଦ' ସହର ଅବସ୍ଥିତ । ଏଠାରେ ଅଣତିରିଶତମ ପଦାତିକ ବାହିନୀ ଅବସ୍ଥାପିତ ଥିଲା ଓ ଅଧା ବାଟାଲିୟନ ଦେଶୀ ଗୋଲନ୍ଦାଜ ବାହିନୀ ଅବସ୍ଥାପିତ ଥିଲା । ସେମାନେ ମଧ୍ୟ 'ମିରଟ୍' ବିଦ୍ରୋହର ଖବର ପାଇଥିଲେ । ମେ ଅଠର ତାରିଖ ଦିନ ଇଂରାଜିମାନେ ଖବର ପାଇଲେ ଯେ କିଛି 'ମିରଟ୍'ର ବିଦ୍ରୋହୀ ସେନା ମୋରାଦାବାଦ ନିକଟରେ ଛାଉଣୀ ପକାଇଛନ୍ତି ।

ଅଣତିରିଶତମ ପଦାତିକ୍ ବାହିନୀକୁ ଏହା ଜଣାଇ ଦିଆଯାଇ, ରାତ୍ରିରେ ସେମାନଙ୍କୁ ଆକ୍ରମଣ କରିବାକୁ ଆଦେଶ ଦିଆଗଲା । ସିପାହୀମାନେ ଆଦେଶ ଅନୁସାରେ ଆକ୍ରମଣ କଲେ । ଘନ ଅନ୍ଧକାର ଥିଲା । କିଛି ଦେଖାଯାଉ ନଥିଲା । 'ମିରଟ'ର ସିପାହୀମାନେ ଛାଉଣୀ ଭିତରେ ଜଙ୍ଗଲ ମଧ୍ୟରେ ଶୋଇଥିଲେ । ୨୯ତମ ବାହିନୀ, ଆଦେଶ ଅନୁସାରେ ଜଙ୍ଗଲ ମଧ୍ୟରେ ପଶିଗଲେ ଓ ଅନ୍ଧକାରରେ କଣ ହେଲା କିଛି ଜଣାଗଲା ନାହିଁ । କିନ୍ତୁ ଆକ୍ରମଣ କରିଥିବା ସିପାହୀମାନଙ୍କ ଠାରୁ ଖବର ମିଳିଲା ଯେ ସମସ୍ତ 'ମିରଟ' ସିପାହୀ ମାନେ ପ୍ରାଣ ଭୟରେ ପଳାଇଛନ୍ତି ଓ ଜଣକୁ ବନ୍ଦୀ କରାଯାଇଛି । ଏହି ଆକ୍ରମଣ ପ୍ରକୃତରେ ଏକ ଅଭିନୟ ଥିଲା । ଏହାଦ୍ୱାରା ସିପାହୀମାନଙ୍କର ବିଶ୍ୱସ୍ତତା ଇଂରାଜି ମାନଙ୍କ ଆଗରେ ପ୍ରମାଣିତ ହେବା ସଙ୍ଗେ ସଙ୍ଗେ ସେମାନଙ୍କୁ ନିଃସନ୍ଦେହ କରିଥିଲା ।

ଏକତିରିଶ ତାରିଖ ଦିନ ସକାଳେ ସମସ୍ତ ସିପାହୀ, ପ୍ୟାରେଡ ପଡିଆରେ ଏକତ୍ରିତ ହେବାକୁ ଲାଗିଲେ । ଇଂରାଜି ମାନେ ଏହାର କାରଣ ପଚାରିବାରୁ, ସିପାହୀମାନେ ଆଦେଶାତ୍ମକ ସ୍ୱରରେ କହିଲେ ଯେ କମ୍ପାନୀର ରାଜତ୍ୱ ଶେଷ ହୋଇଯାଇଛି । ଏଣୁ ତୁମେମାନେ ଦେଶଛାଡି ତୁରନ୍ତ ଚାଲିଯାଅ, ନ ହେଲେ ତୁମ ସମସ୍ତଙ୍କୁ ହତ୍ୟା କରାଯିବ । ଏହାଶୁଣି ଇଂରାଜିମାନେ ଭୟଭୀତ ହୋଇ କହିଲେ, 'ଆମେ ଯିବାକୁ କିଛି ସମୟ ଲାଗିବ, ସେତିକି ସମୟ ପାଇଁ ଅନୁମତି ଦିଆଯାଉ ।' ସିପାହୀମାନେ ସେମାନଙ୍କୁ ଦୁଇଘଣ୍ଟା ମଧ୍ୟରେ 'ମୋରଦାବାଦ' ନଛାଡିଲେ ହତ୍ୟା କରାଯିବ ବୋଲି ଶୁଣାଇଦେଲେ । ଠିକ୍ ଦୁଇଘଣ୍ଟା ପରେ ଯେଉଁ ଇଂରାଜିମାନେ ଦେଖାଗଲେ ସେମାନଙ୍କୁ ହତ୍ୟା କରାଗଲା । 'କମିଶନର ପାଓ୍ୱେଲ' (Powell) ଏବଂ ଅନ୍ୟମାନେ ମୁସଲମାନ ଧର୍ମ ଗ୍ରହଣ କରି ରକ୍ଷା ପାଇଗଲେ । 'ମୋରଦାବାଦ'ରେ, ପୁଲିସମାନେ ପ୍ରକାଶ୍ୟ ବିଦ୍ରୋହ କରି ଘୋଷଣା କଲେ ଯେ ସେମାନେ ଇଂରାଜିମାନଙ୍କର ଆଦେଶ ପାଳନ କରିବେ ନାହିଁ । ସେମାନଙ୍କର ପଛରେ ଜନସାଧାରଣଙ୍କର ସମର୍ଥନ ଥିଲା । କଲେକ୍ଟର, ଜଜ୍, ମାଜିଷ୍ଟ୍ରେଟ, ଡାକ୍ତର ଓ ଅନ୍ୟମାନେ ପ୍ରାଣ ଭୟରେ ପିଲାପିଲି ନେଇ ପଳାଇଗଲେ । ସିପାହୀମାନେ ଖଜଣାଖାନା, ସରକାରୀ ଅନୁଷ୍ଠାନ ଓ ସମ୍ପତ୍ତି ଦଖଲ ନେଲେ । ସୂର୍ଯ୍ୟାସ୍ତ ପୂର୍ବରୁ, ମୋରାଦାବାଦରେ ଇଂରାଜି ପତାକା ଖସାଇଦିଆଯାଇ ସ୍ୱାଧୀନତା ସଂଗ୍ରାମୀଙ୍କର ପତାକା ଉଡାଇଦିଆଗଲା ।

'ବରେଲୀ' ଓ 'ଶାହାଜାହାନପୁର' ମଝିରେ 'ବୁଦାଓଁ' ନାମକ ଏକ ସହର ଥିଲା । 'ଏଡଓ୍ୱାର୍ଡ' ସେଠାରେ କଲେକ୍ଟର ଥିଲେ । ଇଂରାଜିମାନେ, 'ରୋହିଲାଖଣ୍ଡ' ଶାସନ କରିବା ପରଠାରୁ ଜମିଦାରମାନେ କରଭାରରେ ଅତ୍ୟାଚାରିତ ହେଉଥିଲେ । ଜମି ଉପରେ କରଭାରରେ ସାଧାରଣ ପ୍ରଜାମାନେ ମଧ୍ୟ ଉତ୍ପୀଡିତ ଥିଲେ । କଲେକ୍ଟର ଏହି ସମସ୍ତ ଉତ୍ତେଜନା ଲକ୍ଷ୍ୟ କରି 'ବରେଲୀ'ରୁ ସାହାଯ୍ୟ ଆଣିବାକୁ ମନସ୍ଥ କରିଥିଲେ । ବରେଲୀରୁ ଖବର ଆସିଲାଯେ ଜୁନ୍ ଏକ ତାରିଖରେ 'ବରେଲୀ'ରୁ ଇଂରାଜିସେନା ଆସିବେ । ଏଣୁ ସେ ଜୁନ୍ ପହିଲାକୁ ଅପେକ୍ଷା କରି ରହିଥିଲେ । ଏହି ସମୟରେ ଜଣେ ସରକାରୀ ଘୋଡାସବାର 'ବରେଲୀ'ରୁ ଖବର ନେଇ ଆସିଲା ।

ସେ ଖବର ଦେଇ କହିଲା ଯେ ବରେଲୀ ସ୍ୱାଧିନ ହୋଇଯାଇଛି । ସେଠାରୁ ସାହାଯ୍ୟର କୌଣସି ଆଶା ନାହିଁ । ଏହାପରେ କଲେକ୍ଟର, ସିପାହୀମାନଙ୍କୁ ସାନ୍ତ୍ୱନା ଦେଇ ଶାନ୍ତ ରହିବାକୁ ବହୁତ ବୁଝାସୁଝା କଲେ । କିନ୍ତୁ ଅପରାହ୍ନ ବେଳକୁ ବିଦ୍ରୋହ ଆରମ୍ଭ ହେଲା । ସିପାହୀମାନେ ଖଜଣାଖାନା ଲୁଟ୍‌କଲେ । ଏଣୁ ତାହା 'ଖାଁ ବାହାଦୁର

ଖାଁ'ଙ୍କର ଶାସନାଧିନ ହେଲା । ସିପାହୀମାନେ ଖଜଣାଖାନା ଲୁଟ୍‌କରି ତାହା ନେଇ ଦିଲ୍ଲୀ ଅଭିମୁଖେ ଯାତ୍ରା କଲେ । ଇଂରାଜିମାନେ ପ୍ରାଣ ଭୟରେ ଜଙ୍ଗଲକୁ ପଳାଇ ଗଲେ । କିଛି, ବିଦ୍ରୋହୀଙ୍କ ହାତରେ ପଡି ପ୍ରାଣ ଦେଲେ ଓ ଆଉ କିଛି, ବହୁକଷ୍ଟରେ ପ୍ରାଣ ବଞ୍ଚାଇ ପଳାଇଲେ । 'ବକ୍ତ ଖାଁ', ସିପାହୀମାନଙ୍କୁ ନେଇ ଦିଲ୍ଲୀ ଯାତ୍ରା କଲେ । ଏଣୁ 'ଖାଁ ବାହାଦୂର ଖାଁ' ନାଗରିକମାନଙ୍କୁ ନେଇ ଶାନ୍ତି ଶୃଙ୍ଖଳା ରକ୍ଷା ପାଇଁ ଏକ ବାହିନୀ ଗଠନ କଲେ । ଶାସନ ବ୍ୟବସ୍ଥାରେ ଦେଶୀ କର୍ମଚାରୀ ମାନେ ପୂର୍ବପରି ରହିଲେ ଓ ଉଚ୍ଚପଦସ୍ଥ ଇଂରାଜି କର୍ମଚାରୀଙ୍କ ସ୍ଥାନରେ ଦେଶୀ କର୍ମଚାରୀ ନିଯୁକ୍ତ କରାଗଲା । ଜମିର କର 'ବାଦଶା'ଙ୍କ ନାମରେ ନିର୍ଣ୍ଣୟ କରାଗଲା । ବିଚାର ବିଭାଗ ମଧ୍ୟ ପୂର୍ବପରି ଖୋଲାଯାଇ ଯଥାରୀତି କାମ ଚାଲିଲା ।

ଏହି ପରି ଭାବରେ ସାରା 'ରୋହିଲାଖଣ୍ଡ'ରେ କିଛି ଘଣ୍ଟା ମଧ୍ୟରେ କୋର୍ଟ କଚେରୀ ଓ ସରକାରୀ ଅନୁଷ୍ଠାନ ମାନଙ୍କରୁ ବ୍ରିଟିଶ୍ ପତାକା ଚିରି ଫୋପାଡି ଦିଆଯାଇ ସ୍ୱାଧୀନତା ସଂଗ୍ରାମୀଙ୍କର ସ୍ୱାଧିନ ପତାକା ଉଡାଇଦିଆଗଲା ।



# ବନାରସ

'ବନାରସ'ରେ 'ଟକର' (Mr. Tucker) ଚିଫ୍ କମିଶନର ଥିଲେ । ସେ ସମୟରେ 'ବନାରସ'ର ଲୋକମାନଙ୍କ ମଧ୍ୟରେ ଇଂରାଜିମାନଙ୍କ ପ୍ରତି ଉତ୍ତେଜନା ସେ ଅନୁଭବ କରିଥିଲେ । ଏଣୁ ସେ ତାଙ୍କ ସାଥିରେ ଥିବା 'ଜଜ୍ ଗବିନ୍' (Gubbins), 'ମାଜିଷ୍ଟ୍ରେଟ ଲିଣ୍ଡ' (Lind) ଓ ଅନ୍ୟ ସରକାରୀ ଅଫିସର ତଥା 'କ୍ୟାପ୍‌ଟେନ୍ ଓଲଫେଟ' (Olpherts), 'କର୍ଣ୍ଣେଲ ଗର୍ଡନ'(Cornel Gordon) ଓ ଅନ୍ୟାନ୍ୟ ସାମରିକ ଅଫିସରମାନଙ୍କୁ ନେଇ ସମସ୍ତ ପ୍ରକାର ପ୍ରତିରକ୍ଷା ମୂଳକ ବ୍ୟବସ୍ଥା କରିଥିଲେ । ମେ ମାସର ଆରମ୍ଭରେ ସିପାହୀମାନଙ୍କ ଛାଉଣୀରେ ମୌଲବୀ ଓ ପଣ୍ଡିତ ମାନଙ୍କୁ ଦେଖିବାକୁ ମିଳିଲା । ସେମାନେ ବିଦ୍ରୋହର ବାର୍ତ୍ତା ପ୍ରଚାର କରିବା ସଙ୍ଗେ ସଙ୍ଗେ ମନ୍ଦିର ଓ ମସଜିଦ୍‌ରେ ଫିରିଙ୍ଗି ଶାସନରୁ ମୁକ୍ତି ପାଇଁ ପ୍ରାର୍ଥନା କରୁଥିଲେ । ସେମାନଙ୍କ ସହିତ ଜନ ସାଧାରଣ ମଧ୍ୟ ଯୋଗ ଦେଉଥିଲେ । ଏହି ସମୟରେ ଶସ୍ୟ ଦରର ବୃଦ୍ଧି ହେବା ଫଳରେ ଜନସାଧାରଣଙ୍କ ମଧ୍ୟରେ ଅଶାନ୍ତି ବ୍ୟାପିଯାଇଥିଲା । ଇଂରାଜି ଅଫିସରମାନେ, ବ୍ୟବସାୟୀମାନଙ୍କୁ ଦର ନବଢାଇବା ପାଇଁ ଅନୁରୋଧ କରିବା ଫଳରେ, ସେମାନେ ଉତ୍ତେଜିତ ହୋଇ, ଦରବୃଦ୍ଧିର କାରଣ ଇଂରାଜିମାନଙ୍କର ଶୋଷଣ ନୀତି ବୋଲି କହିଥିଲେ । ଏଥିରେ ଇଂରାଜିମାନେ ଭୟଭୀତ ହୋଇ ନିରାପତ୍ତା ପାଇଁ 'ବନାରସ' ଛାଡି ଯିବାକୁ ବିଚାର କଲେ । ପରିଶେଷରେ ସମସ୍ତେ ପରସ୍ପର ପରାମର୍ଶ କରି, 'ବନାରସ' ନ ଛାଡି ପରିସ୍ଥିତିର ମୁକାବିଲା କରିବାକୁ ସ୍ଥିର କଲେ ।

ଏକ ତିରିଶ ତାରିଖ ଦିନ ସକାଳେ ସିପାହୀମାନେ ଖାଲି କରିଥିବା ବ୍ୟାରାକ୍‌ରେ ନିଆଁ ଲଗାଇଦିଆଗଲା । ଏହା ହିଁ ଆଖପାଖର ସିପାହୀମାନଙ୍କୁ ବିଦ୍ରୋହ ଆରମ୍ଭର ସଂକେତ ଥିଲା ।

'ବନାରସ' ଠାରୁ ଷାଠିଏ ମାଇଲ ଦୂରରେ 'ଆଜମଗଡ' ଅବସ୍ଥିତ ଥିଲା । ଏଥିରେ ୧୭ତମ ପଦାତିକ ବାହିନୀ 'ମେଜର ବରୋ' (Major Burrough)ଙ୍କ ଅଧିନରେ ଅବସ୍ଥାପିତ ଥିଲା । ମେ ଏକତିରିଶ ତାରିଖରୁ ଏଠାରେ ସିପାହୀମାନଙ୍କ ମଧ୍ୟରେ ଉତ୍ତେଜନା ଲାଗିରହିଥିଲା । ଏହି ସମୟରେ 'ଗୋରଖପୁର'ରୁ କିଛି ଖଜଣା ଆଦାୟ ହୋଇ, ୧୭ତମ ବାହିନୀର ଏକ କମ୍ପାନୀ ଓ ୧୩ତମ ଘୋଡାସବାର ବାହିନୀର କିଛି ଘୋଡାସବାରଙ୍କ ପହରା ଭିତରେ ଏହା 'ଆଜମଗଡ' ବାଟ ଦେଇ 'ବନାରସ'

ଯାଉଥିଲା । 'ଆଜମଗଡ'ର ଖଜଣା ମଧ୍ୟ ଏହାସହିତ ମିଶାଇ 'ବନାରସ'ର 'ଲେଫଟନାଣ୍ଟ ପାଲିସର' (Lieutenant Palliser)ଙ୍କ ନେତୃତ୍ୱରେ ୧୩ତମ ବାହିନୀର ପହରାରେ ତାହା 'ବନାରସ'କୁ ନେବାପାଇଁ ସ୍ଥିର ହୋଇଥିଲା । 'ଗୋରଖପୁର'ରୁ ପାଞ୍ଚଲକ୍ଷ ଟଙ୍କା ଆସିଥିଲା ଓ 'ଆଜମଗଡ'ରୁ ଦୁଇଲକ୍ଷ ଟଙ୍କା ତାହା ସହିତ ମିଶିଥିଲା । ଏହି ସମସ୍ତ ଖଜଣା ବର୍ତ୍ତମାନ ସିପାହୀମାନଙ୍କ ହାତରେ ଥିଲା । ଏଣୁ ସେମାନେ ପରସ୍ପର ମଧ୍ୟରେ ଖଜଣା ଏଠାରୁ ନଛାଡିବାକୁ ପରାମର୍ଶ କଲେ । କିନ୍ତୁ, ଏହା ହଠାତ୍ କାର୍ଯ୍ୟକାରୀ ନକରି ଜୁନ୍ ତିନିତାରିଖ ଦିନ ଖଜଣାକୁ ପହରା ଦେଇ ରକ୍ଷୀଦଳ 'ଆଜମଗଡ'ରୁ ଯାତ୍ରା ଆରମ୍ଭ କଲେ ।

'ଆଜମଗଡ'ରେ ଥିବା ସମସ୍ତ ଇଂରାଜିମାନେ ନିଜକୁ ସମ୍ପୂର୍ଣ୍ଣ ବିପଦମୁକ୍ତ ବୋଲି ଭାବୁନଥିଲେ । ପ୍ରତି ମୁହୂର୍ତ୍ତରେ ସିପାହୀମାନେ ବିଦ୍ରୋହ କରିବାର ସମ୍ଭାବନା ଥିଲା । ଜୁନ୍ ତିନିତାରିଖ ଦିନ ୧୭ତମ ବାହିନୀର ମେସ୍‌ରେ ଅଫିସରମାନେ ତାଙ୍କର ସ୍ତ୍ରୀ ପିଲାଙ୍କ ସହିତ ଖାଇବସିଥିବା ବେଳେ ତୋପର ଆବାଜ ଶୁଣିବାକୁ ପାଇଲେ । 'ଆଜମଗଡ'ରେ ଦୁଇଟି ତୋପଥିଲା ଓ ସେତେବେଳକୁ ତାହା ସିପାହୀମାନେ ଦଖଲ କରି ବିଦ୍ରୋହର ସଂକେତ ରୂପେ ଫୁଟାଇଥିଲେ । ପ୍ୟାରେଡ୍ ପଡିଆ ଆଡୁ ଗୁଳି ଶବ୍ଦ ଶୁଣାଯାଉଥିଲା । ଏହାପରେ ଡ୍ରମବାଜା ବାଜିଲା ଓ ସିପାହୀମାନେ ବିଦ୍ରୋହ ଆରମ୍ଭ କରିଛନ୍ତି ବୋଲି ଜଣାପଡିଲା । ବାତାବରଣ କୋଳାହଳମୟ ହୋଇଗଲା । ସ୍ତ୍ରୀ ଓ ଅଣସାମରିକ କର୍ମଚାରୀମାନେ ପ୍ରାଣ ବିକଳରେ କଚେରୀ ଆଡକୁ ଦଉଡିଲେ । ତାହା ମାଜିଷ୍ଟ୍ରେଟ ଓ ତାଙ୍କର ସହକର୍ମୀ ମାନଙ୍କ ଦ୍ୱାରା ରକ୍ଷିତ ହୋଇଥିଲା । ଏହା ମଧ୍ୟରେ ସିପାହୀମାନେ 'କ୍ୱାଟର ମାଷ୍ଟର ଲେଫଟନାଣ୍ଟ ହଚିନ୍‌ସନ୍' (Hutchinson) ଓ 'କ୍ୱାଟର ମାଷ୍ଟର ସର୍ଜେଣ୍ଟ ଲୁଇସ୍' (Leuis)ଙ୍କୁ ଗୁଳିକରି ହତ୍ୟାକଲେ, କିନ୍ତୁ ଅନ୍ୟ ଇଂରାଜିମାନଙ୍କୁ ହତ୍ୟା ନକରି ପଳାଇଯିବାକୁ କହିଲେ । ଏହା ପରେ ସେମାନେ 'ବନାରସ'କୁ ଖଜଣା ନେଇ ଯାଉଥିବା ରକ୍ଷୀ ବାହିନୀକୁ ଅନୁସରଣ କରି ଗଲେ । 'ହର୍ଣ୍ଣ' (Horne) 'ଆଜମଗଡ'ର ପୁଲିସ ମାନଙ୍କୁ ବିଦ୍ରୋହ ବିଷୟରେ ସତର୍କ କରାଇଦେଇ ସେ ବିଷୟରେ ଖବର ଜଣାଇବାକୁ ନିର୍ଦ୍ଦେଶ ଦେଇଥିଲେ । କିନ୍ତୁ ତା'ଙ୍କୁ ଜଣା ନଥିଲା ଯେ ସେହି ପୁଲିସମାନଙ୍କର ବିଦ୍ରୋହ ପ୍ରତି ସମର୍ଥନ ଥିବା ସଙ୍ଗେ ସଙ୍ଗେ ବିଦ୍ରୋହୀମାନଙ୍କ ସହିତ ସମ୍ପର୍କ ମଧ୍ୟ ରହିଛି । ଏଣୁ ଉପଯୁକ୍ତ ସମୟ ଆସିବା ମାତ୍ରେ ପୋଲିସ ମାନେ ମଧ୍ୟ ସିପାହୀମାନଙ୍କ ସହିତ ଯୋଗଦାନ କଲେ । ସେମାନେ ଜେଲରୁ ବନ୍ଦୀମାନଙ୍କୁ ମୁକ୍ତ କରି ଖଜଣା ନେଇ ଯାଉଥିବା ରକ୍ଷୀଦଳଙ୍କ ଆଡକୁ ବିଦ୍ରୋହୀ ସିପାହୀମାନଙ୍କ ସହିତ ଗଲେ ।

ରାସ୍ତାରେ 'ପଲିସ୍‌ର', ହଠାତ୍ ବହୁ ସିପାହୀଙ୍କ ସମ୍ମୁଖୀନ ହୋଇ ନିଜକୁ ଅସହାୟ ଅନୁଭବ କଲେ । ଖଜଣାକୁ ପ୍ରହରା ଦେଉଥିବା ୧୩ତମ ବାହିନୀର ସିପାହୀମାନଙ୍କ ମନରେ ଜାତୀୟ ଭାବ ଥିଲେ ମଧ୍ୟ ସେମାନେ ଅଫିସର ମାନଙ୍କୁ ହତ୍ୟାକରିବା ସପକ୍ଷରେ ନଥିଲେ । ଏଣୁ ଅଫିସରମାନେ ରକ୍ଷା ପାଇଗଲେ କିନ୍ତୁ ଖଜଣା ଲୁଟ୍ କରାହେଲା । ୧୭ତମ ବାହିନୀ, ତାହା 'ଆଜମଗଡ'କୁ ଫେରାଇନେଲେ । ସାମୟିକ ବାହିନୀ, ଅଫିସରମାନଙ୍କୁ ରକ୍ଷା କରି 'ବନାରସ' ନେଇଗଲେ । 'ଆଜମଗଡ'ର ରେସିଡେଣ୍ଟ, ପ୍ରାଣରକ୍ଷା କରି 'ରାଜପୁର'କୁ ପଳାଇଗଲେ । ଫଳରେ 'ଆଜମଗଡ', ସମ୍ପୂର୍ଣ୍ଣ ଭାବରେ ମୁକ୍ତ ହେଲା । ଏହାପରେ ସିପାହୀମାନେ 'ଫୌଜାବାଦ'କୁ ବିଜୟ ଦର୍ପରେ ଯାତ୍ରା କଲେ ।

ଏହି ସମ୍ବାଦ ଜୁନ୍ ଚାରିତାରିଖରେ 'ବନାରସ'ରେ ପହଞ୍ଚିଲା । ସେଠାରେ ଅବସ୍ଥାପିତ ଥିବା 'ଚିଫ୍‌କମିଶନର ଟକର' ଏ ସମସ୍ତ ଲକ୍ଷ କଲେ ମଧ୍ୟ, ଶାନ୍ତ ରହିଲେ । ସେ ହଠାତ୍ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ ନକରି ଅନ୍ୟ ଇଂରାଜି ବାହିନୀ ଆସିବା ପର୍ଯ୍ୟନ୍ତ ଅପେକ୍ଷା କଲେ । ତାଙ୍କର ନୀତିଥିଲା ଶାନ୍ତ ରହିବା ଓ କୌଣସି ପ୍ରକାର ଉତ୍ତେଜନା ପ୍ରକାଶ ନ କରିବା ଫଳରେ ସିପାହୀମାନଙ୍କ ମନରେ କୌଣସି ସନ୍ଦେହ ରହିବ ନାହିଁ ଓ ସେମାନେ ଇଂରାଜି ଅଫିସରମାନଙ୍କୁ ବିଶ୍ୱାସ କରିବେ । ଏ ଦିଗରେ 'ଲର୍ଡକ୍ୟାନିଂ'ଙ୍କ ନିର୍ଦ୍ଦେଶରେ 'କର୍ଣ୍ଣେଲ ନେଲ୍' (Cornel Neil) ମାଡ୍ରାସ ବାହିନୀ ସହିତ ବନାରସରେ ପହଞ୍ଚିଲେ । ଦିନାପୁରରୁ ୧୦ତମ ବାହିନୀ ଆସିବାରେ ସାମାନ୍ୟ ବିଳମ୍ବ ହେଲେ ମଧ୍ୟ 'ବନାରସ'ରେ ପହଞ୍ଚିଯାଇଥିଲା ।

ଭାରତୀୟ ସିପାହୀମାନଙ୍କୁ ନିଶସ୍ତ୍ର କରିବାର ବିଚାର ଆରମ୍ଭ ହେଲା । 'ପୋନ୍‌ସନ୍‌ବାଇ' (Ponsonby), 'ବନାରସ'ରେ ସେନାବାହିନୀର ମୁଖ୍ୟ ଥିଲେ । 'କର୍ଣ୍ଣେଲ ଗର୍ଡନ', 'ବନାରସ'ରେ ଅବସ୍ଥାପିତ ଲୁଧିଆନା ରେଜିମେଣ୍ଟର ମୁଖ୍ୟ ଥିଲେ । ଜୁନ୍ ଚାରିତାରିଖରେ ସେ, 'ପୋନ୍‌ସନ୍‌ବାଇ' କୁ ଦେଖାକରି ଖବର ଦେଲେ ଯେ ୩୭ତମ ବାହିନୀର ଦେଶୀ ସିପାହୀମାନେ ସହରର କିଛି ଗଣ୍ଡଗୋଳିଆ ଲୋକଙ୍କ ସହିତ ସମ୍ପର୍କ ରଖି ଷଡଯନ୍ତ୍ର ଚଳାଇଛନ୍ତି । କିନ୍ତୁ ଏହା ସହିତ ସେ, ସିପାହୀମାନଙ୍କର ବିଶ୍ୱସ୍ତତାରେ ମଧ୍ୟ ଆସ୍ଥା ସ୍ଥାପନ କରିଥିଲେ । ଉଭୟେ ସାଥି ହୋଇ, 'ଚିଫ୍ କମିଶନର ଟକର୍'ଙ୍କ ଘରକୁ ଗଲେ ଏବଂ ସମସ୍ତ ଘଟଣା ଅବଗତ କରାଇଲେ । ସେ, ସେମାନଙ୍କୁ ଗବିନ୍‌ଙ୍କ ପାଖକୁ ଯିବା ପାଇଁ ପରାମର୍ଶ ଦେଲେ । 'ଗବିନ୍', ଏ ମଧ୍ୟରେ ଗୁପ୍ତଚର ମାଧ୍ୟମରେ 'ଆଜମଗଡ'ର ବିଦ୍ରୋହ ସମ୍ବାଦର ଏକ ଟିକିନିଖି ବିବରଣୀ ସଂଗ୍ରହ କରି ସାରି ଥିଲେ ଏବଂ ୩୭ତମ ବାହିନୀର ଯୋଜନା ବିଷୟରେ ମଧ୍ୟ ଖବର ପାଇଥିଲେ । ସେ ଏହି ସବୁ

କଥା ବର୍ଣ୍ଣନା କରୁଥିବା ସମୟରେ 'ବ୍ରିଗେଡମେଜର କ୍ୟାପଟେନ୍ ଡସ୍‌ସନ୍' ପହଞ୍ଚି, 'ଆଜମଗଡ'ରୁ 'ବନାରସ' ଆସୁଥିବା ଖଜଣା ରାସ୍ତାରେ ସିପାହୀମାନଙ୍କ ଦ୍ୱାରା ଲୁଟ୍ କରାହୋଇଥିବା ବିଷୟ ଜଣାଇଲେ । 'ବନାରସ' ଆଖପାଖରେ ଏହି କାଣ୍ଡ ଘଟିଥିବା ଫଳରେ, ଅବସ୍ଥାର ଗୁରୁତ୍ୱ ସମସ୍ତେ ଉପଲବ୍ଧି କରି, ତୁରନ୍ତ କିଛି ଜରୁରୀ କାଳୀନ ପଦକ୍ଷେପ ନେବାକୁ ବିଚାର କରାଗଲା । କିନ୍ତୁ ଏହି ପଦକ୍ଷେପ ତୁରନ୍ତ ନିଆଯିବ ବା ଆସନ୍ତାକାଲି ସକାଳ ଦଶଟା ବେଳକୁ ନିଆଯିବ ତାହା ବିଚାରର ବସ୍ତୁ ଥିଲା । 'ଗବିନ୍' ମତଦେଲେ ଯେ, 'ଆଜମଗଡ'ର ବିଦ୍ରୋହୀ ସିପାହୀମାନେ ଅତିଶୀଘ୍ର 'ବନାରସ'ରେ ପହଞ୍ଚିଯିବାର ସମ୍ଭାବନା ରହିଛି । ଏଣୁ ଏହାପୂର୍ବରୁ ଏଠାରୁ ସିପାହୀମାନଙ୍କୁ ତୁରନ୍ତ ନିଶସ୍ତ୍ର କରାଯିବା ଦରକାର । ଏହିପରି ବିଚାରକରି ସେମାନେ ଦିନ ତିନିଟାବେଳକୁ 'କର୍ଣ୍ଣେଲ ନେଇ'ଙ୍କ ପାଖକୁ ଗଲେ । 'ନେଲ' ଜଣେ ଅଭିଜ୍ଞ ଯୁଦ୍ଧ ପ୍ରବୀଣ ସେନାପତି ଥିଲେ । 'ନେଇ'ଙ୍କ ପରାମର୍ଶରେ ସନ୍ଧ୍ୟା ପାଞ୍ଚଟା ସମୟରେ ସିପାହୀମାନଙ୍କୁ ନିଶସ୍ତ୍ର କରାଯିବାର ଯୋଜନା କରାଗଲା ।

ସେତେବେଳେ ସାଢେ ଚାରିଟା ବାଜିଥିଲା । ହାତରେ ସମୟ କମ୍ ଥିଲା । ଏଣୁ ତୁରନ୍ତ 'ମେଜର ବାରେଟ୍' (Barette)ଙ୍କୁ, ପାଞ୍ଚଟା ପ୍ୟାରେଡରେ ସିପାହୀମାନେ ହାଜିର ହେବାପାଇଁ ସତର୍କ କରିଦେବାକୁ କୁହାଗଲା । 'ବ୍ରିଗେଡିଅର' ଓ 'କର୍ଣ୍ଣେଲ ଗର୍ଡନ' ଉଭୟେ ଘୋଡାଚଢି ପ୍ୟାରେଡ ପଡ଼ିଆକୁ ଚାଲିଲେ । ସେମାନେ ଯିବା ସମୟରେ 'ନେଲ' ଓ 'ଅଲ୍‌ଫେଟ' ମଧ୍ୟ ପ୍ରସ୍ତୁତ ହେଉଥିବା ଦେଖିବାକୁ ପାଇଲେ । ଦେଶୀ ସିପାହୀମାନଙ୍କୁ ଏହି ଉତ୍ତେଜନାମୟ ପରିସ୍ଥିତି ଭିତରେ ନିଶସ୍ତ୍ର କରିବା ଏକ ଦୁଃସାହସିକ କାର୍ଯ୍ୟଥିଲା । କାରଣ ଦେଶୀ ସିପାହୀମାନଙ୍କର ସଂଖ୍ୟା ଦୁଇହଜାର ହେଲାବେଳକୁ ଇଂରାଜି ସୈନ୍ୟମାନଙ୍କର ସଂଖ୍ୟା ମାତ୍ର ଅଢେଇଶହ ଥିଲା । ଏହା ବ୍ୟତୀତ ଏକ ଶିଖ୍ ରେଜିମେଣ୍ଟ ମଧ୍ୟ ଇଂରାଜିମାନଙ୍କ ପ୍ରତି ଅନୁରକ୍ତ ଥିଲା । କିନ୍ତୁ ସେମାନେ ସମ୍ପୂର୍ଣ୍ଣ ବିଶ୍ୱାସ ଯୋଗ୍ୟ ନଥିଲେ ।

ଯେତେବେଳେ ସିପାହୀମାନଙ୍କୁ ନିଶସ୍ତ୍ର କରିବା ପାଇଁ ହୁକୁମ୍ ଦିଆଗଲା, 'କର୍ଣ୍ଣେଲ ସ୍ପଟିଶ୍‌ଉଡ' (Spottiswoode), ୩୭ତମ ବାହିନୀକୁ ଶସ୍ତ୍ର ରଖିଦେବା ପାଇଁ ଆଦେଶ ଦେଲେ । ପ୍ୟାରେଡରେ ଚାରିଶହ ସିପାହୀ ଥିଲେ । ସେମାନଙ୍କ ଠାରେ ହଠାତ୍ ପ୍ରତିବାଦର ଲକ୍ଷଣ ଦେଖାଗଲା ନାହିଁ । ପ୍ରଥମେ ଗ୍ରିନେଡିୟର କମ୍ପାନୀ, ତାପରେ ପରେ ଛଅ ନମ୍ବର କମ୍ପାନୀ ପର୍ଯ୍ୟନ୍ତ, ସମସ୍ତେ ଆଦେଶ ଅନୁସାରେ ଅସ୍ତ୍ର ତ୍ୟାଗ କଲେ । ଏହି ସମୟରେ, ଲାଇନ୍ ଭିତରୁ କିଛି ମର୍ମର ଧ୍ୱନି ଶୁଣାଗଲା । ପୁନଶ୍ଚ ସେମାନେ ଶସ୍ତ୍ର

ତ୍ୟାଗ କଲେ ଇଂରାଜିମାନେ ସେମାନଙ୍କୁ ଗୁଳିକରି ମାରିଦେବେ ବୋଲି କେହି କହିବାର ଶୁଣାଗଲା । ଏହା ଶୁଣି 'ହ୍ୱଟିଶ୍ୱଡ' ଚିତ୍କାର କରି ଏହା ମିଥ୍ୟା ଓ ଅପପ୍ରଚାର ବୋଲି ସିପାହୀମାନଙ୍କୁ ବୁଝାଇଲେ । କିନ୍ତୁ ହଠାତ୍ ଏହି ସମୟରେ ସେମାନେ ଇଂରାଜି ବାହିନୀକୁ ଆଗକୁ ମାଡିଆସୁଥିବାର ଦେଖିଲେ । 'ପୋନ୍‌ସନ୍‌ବାଇ' ଙ୍କର ଆଦେଶରେ ଇଂରାଜି ବାହିନୀ ଓ ତୋପଖାନା ସିପାହୀ ମାନଙ୍କ ଆଡକୁ ମାଡିଆସୁଥିଲା । ୩୭ତମ ବାହିନୀର ମୁହାଁ ମୁହିଁ ହୋଇ 'କର୍ଣ୍ଣେଲ ନେଲ'ଙ୍କ ଅଧିନରେ ଥିବା କିଛି ଇଂରାଜି ସୈନ୍ୟଙ୍କୁ ଧାଡିକରି ଛିଡା ହୋଇଯିବା ପାଇଁ 'ବ୍ରିଗେଡିୟର' ଆଦେଶ ଦେଲେ । ତାପରେ ସେ ସିପାହୀମାନଙ୍କୁ ଶସ୍ତ୍ର ତ୍ୟାଗ କରିବା ପାଇଁ ଆଦେଶ ଦେଲେ । ସିପାହୀମାନେ ଉତ୍ତରରେ କହିଲେ ବିନା ଦୋଷରେ ସେମାନଙ୍କୁ କାହିଁକି ଶସ୍ତ୍ର ତ୍ୟାଗ କରିବାକୁ କୁହାଯାଉଛି । ବ୍ରିଗେଡିୟର ଏହାର ଉତ୍ତର ଦେବାକୁ ଯିବା ବେଳେ ହଠାତ୍ କିଛି ଗୁଳି ଶବ୍ଦ ହେଲା ଓ ହଠାତ୍ ସିପାହୀମାନେ ସେମାନଙ୍କର ତ୍ୟାଗ କରିଥିବା ଅସ୍ତ୍ର ଧରି ଛିଡା ହୋଇଗଲେ ଏବଂ ଇଂରାଜି ଅଫିସର ଓ ସୈନ୍ୟମାନଙ୍କ ଉପରକୁ ଗୁଳି ଚଳାଇବାକୁ ଲାଗିଲେ । ୧୦ତମ ବାହିନୀର ସାତ ଆଠ ଜଣ ଭୂତଳଶାୟୀ ହେଲେ । ୩୭ତମ ବାହିନୀର ଅଫିସରମାନେ ସିପାହୀଙ୍କର ଗୁଳିରୁ ବଞ୍ଚିବା ପାଇଁ ଆଶ୍ରୟ ଖୋଜି ନେଲେ । 'ମେଜର ବେରେଟ୍', ସିପାହୀମାନଙ୍କୁ ଶସ୍ତ୍ରହୀନ କରିବାକୁ ମୂଳରୁ ବିରୋଧ କରୁଥିଲେ । ସେ କିନ୍ତୁ ପ୍ୟାରେଡ ପଡିଆ ଛାଡିଗଲେ ନାହିଁ । ଅବଶେଷରେ ଦଳେ ସିପାହୀ ତାଙ୍କୁ ଘେରରେ ରଖି ସେଠାରୁ ନେଇଗଲେ । ସିପାହୀମାନଙ୍କର ଗୁଳିର ଜବାବ ଇଂରାଜି ସୈନ୍ୟମାନେ ଦେବାକୁ ଲାଗିଲେ । ତୋପଖାନା, ହୁକୁମର ଅପେକ୍ଷାରେ ରହିଲା । 'ଅଲ୍‌ଫେଟ' ମଧ୍ୟ ନିଜର ସୈନ୍ୟମାନଙ୍କୁ ସିପାହୀଙ୍କ ଉପରକୁ ଗୁଳି କରିବାକୁ ଆଦେଶ ଦେଲେ । ସିପାହୀମାନେ ଛତ୍ରଭଙ୍ଗ ହୋଇ, ସେମାନଙ୍କର ରହିବା କୁଡିଆ ପଛରେ ରହି ଇଂରାଜିଙ୍କ ଉପରକୁ ଗୁଳି ଚଳାଇବାକୁ ଲାଗିଲେ । ତୋପ ଚଳାଇବାକୁ ହୁକୁମ ଦିଆଗଲା । ତୋପ ଚାଲିବା ମାତ୍ରେ ସିପାହୀମାନେ ଅସ୍ତ୍ରଛାଡି ବିକଳରେ ପ୍ରାଣ ନେଇ ପଳାଇଯିବାକୁ ଲାଗିଲେ ।

ସେମାନେ ସହର ଭିତରକୁ ଯିବାକୁ ଲାଗିଲେ । ଏହି ସମୟ ମଧ୍ୟରେ ସାମୟିକ ଘୋଡାସବାରବାହିନୀ ଓ 'କର୍ଣ୍ଣେଲ ଗର୍ଡନ'ଙ୍କ ଅଧିନରେ ଥିବା ଶିଖ୍ ବାହିନୀ ଆସି ପହଞ୍ଚିଗଲେ । ସେମାନଙ୍କର 'କମାଣ୍ଡର କ୍ୟାପଟେନ୍ ଗାଇଜ' (Guise)ଙ୍କୁ ସିପାହୀମାନେ ହତ୍ୟା କରିଥିବାରୁ ତାଙ୍କ ସ୍ଥାନରେ 'କ୍ୟାପ୍‌ଟେନ୍ ଡଗସନ୍', କମାଣ୍ଡର ରୂପେ ରହିଲେ । 'ଡଗସନ', କମାଣ୍ଡର ଦାୟିତ୍ୱ ନେବା ସଙ୍ଗେ ସଙ୍ଗେ ଜଣେ କେହି ତାଙ୍କ ଉପରକୁ ଗୁଳି ଚଳାଇଲା । ପୁନଶ୍ଚ ତାଙ୍କୁ ହାଣି ଦେବା ପାଇଁ ମଧ୍ୟ ଚେଷ୍ଟା କରାଗଲା । କିନ୍ତୁ ସେ ସମସ୍ତ

ଆକ୍ରମଣରୁ ଶିଖ୍‌ମାନେ ତା'ଙ୍କୁ ସବୁ ପ୍ରକାରେ ରକ୍ଷାକଲେ । ଶିଖ୍‌ମାନେ ଦୋଦୋପାଞ୍ଚ ଅବସ୍ଥାରେ ଥିବା ସମୟରେ ଜଣେ ଶିଖ୍, ହଠାତ୍ 'କର୍ଣ୍ଣେଲ ଗର୍ଡନ'ଙ୍କ ଉପରକୁ ଗୁଳି ଚଳାଇଲା । କିନ୍ତୁ ଅନ୍ୟ ଶିଖ୍‌ମାନେ ସାମନାକୁ ଚାଲିଆସି ତାଙ୍କୁ ରକ୍ଷା କଲେ । 'ଅଲଫେଟ୍' ଖବର ପାଇଲେ ଯେ ହଠାତ୍ ଶିଖ୍‌ମାନେ ବିଦ୍ରୋହୀ ହୋଇ ଉଠିଛନ୍ତି । ଶିଖ୍‌ମାନେ ଅଶୀ ବା ଶହେଗଜ ଦୂରରେ ପ୍ୟାରେଡ୍ ଗ୍ରାଉଣ୍ଡରେ ଥାଇ ଏଣେ ତେଣେ ଗୁଳି ଚଳାଇ ଚିତ୍କାର କରୁଥିଲେ । ତୋପଗୁଡିକ ମଧ୍ୟ ଇଂରାଜି ସିପାହୀମାନଙ୍କ ଦ୍ୱାରା ସୁରକ୍ଷିତ ନଥିଲା । ହଠାତ୍ 'ଆଲଫେଟ', ଡେରି ନକରି ତୋପ ଚଳାଇବା ପାଇଁ ଆଦେଶ ଦେଲେ । କାରଣ ସେ ପରିସ୍ଥିତିରେ ଦେଶୀ ସିପାହୀମାନେ ହଠାତ୍ ତୋପଖାନା ଦଖଲ କରି ଦେଇଥିଲେ, ଇଂରାଜିମାନଙ୍କୁ ଅଚିରେ ପରାଜୟ ସ୍ୱୀକାର କରି 'ବନାରସ' ଛାଡିବାକୁ ପଡିଥାଆନ୍ତା । ତୋପ ଚାଲିବା ସତ୍ତ୍ୱେ ସିପାହୀମାନେ ଦୁଇ ତିନି ଥର ଆଗେଇବାକୁ ଚେଷ୍ଟାକଲେ । କିନ୍ତୁ ପ୍ରବଳ ଗୋଳା ବର୍ଷଣ ମଧ୍ୟରେ ଆଗକୁ ନଯାଇ ପାରି ପଛେଇବାକୁ ଲାଗିଲେ । ବର୍ତ୍ତମାନ ଏହି ପ୍ରକାର ଭାବରେ ପ୍ୟାରେଡ୍ ପଡିଆଟି 'ଅଲଫେଟ୍'ଙ୍କର ଅଧିକାରକୁ ଚାଲିଆସିଲା । କିନ୍ତୁ ବିଦ୍ରୋହୀ ସିପାହୀମାନଙ୍କ ସହିତ ସାମୟିକ ଘୋଡାସବାର ବାହିନୀ ଯୋଗ ଦେଇ ଚାଲିଗଲେ । 'ବ୍ରିଗେଡିୟର', ଏହି ସମୟରେ ଅତ୍ୟନ୍ତ ଅସୁସ୍ଥ ଅନୁଭବ କରୁଥିଲେ ଓ ଘୋଡା ପିଠିରେ ବସିବା ଅବସ୍ଥାରେ ନଥିଲେ । ସେ ପୂର୍ବରୁ 'ସ୍ପଟିଶଉଡ'ଙ୍କୁ ସିପାହୀମାନଙ୍କୁ ନିର୍ବିଚାରରେ ଗୁଳି କରିବାକୁ ଅଦେଶ ଦେଇଥିଲେ । ବର୍ତ୍ତମାନ ସେ କମାଣ୍ଡର ଦାୟିତ୍ୱ 'ନେଲ'ଙ୍କ ଉପରେ ନ୍ୟସ୍ତ କଲେ । 'ନେଲ', ଜଣେ ପୁରୁଣା ଯୁଦ୍ଧପ୍ରବୀଣ ଓ କଠୋର ମନୋଭାବ ସମ୍ପନ୍ନ ବ୍ୟକ୍ତିଥିଲେ । ଇଂରାଜି ହତ୍ୟାର ପ୍ରତିଶୋଧ ନେବାର ଆକାଂକ୍ଷା ତାଙ୍କର ମନରେ ଭରିରହିଥିଲା । ଏଣୁ ପ୍ରବଳ ଗୁଳିଗୋଳା ବର୍ଷଣ କରି, ସେ ସିପାହୀମାନଙ୍କର କୁଡିଆଗୁଡିକୁ ଜଳାଇ ଧ୍ୱଂସ କଲେ । ଫଳରେ ସେଥିରେ ଥିବା ସିପାହୀମାନେ ମଲେ ଓ ପଛରେ ଲୁଚି ଗୁଳି କରୁଥିବା ସିପାହୀମାନେ ମଧ୍ୟ ପ୍ରାଣ ଦେଲେ । ଯେଉଁମାନେ ମିଳିଲେ ସେମାନଙ୍କୁ ଗୁଳି କରାଗଲା ।

ଏହିପରି ଭାବରେ ସଂଖ୍ୟାଲଘିଷ୍ଠଙ୍କର ସଂଖ୍ୟାଗରିଷ୍ଠ ଉପରେ ବିଜୟ ହେଲା । କିନ୍ତୁ ଏତିକିରେ ବିପଦ ଗଲାନାହିଁ । ଇଂରାଜିମାନଙ୍କର ଭୟ ଥିଲା ଯେ ଯେଉଁ ସିପାହୀମାନେ କୌଣସି ପ୍ରକାରେ ସହର ଭିତରକୁ ଯାଇଛନ୍ତି ସେମାନଙ୍କର ସହିତ ଜନସାଧାରଣ ଯୋଗ ଦେବାର ଯଥେଷ୍ଟ ସମ୍ଭାବନା ଥିଲା । ଏଣୁ 'ଟକର', 'ଗବିନ୍'ଙ୍କର ପରାମର୍ଶକ୍ରମେ ସହରରେ ରହୁଥିବା ବେସାମରିକ ଇଂରାଜି ଓ ଖ୍ରୀଷ୍ଟିଆନ୍‌ମାନଙ୍କୁ ପ୍ରତିରକ୍ଷାମୂଳକ ବ୍ୟବସ୍ଥା ସ୍ୱରୂପ, ସେନା ଛାଉଣୀ ଓ ସହର ମଝିରେ ଥିବା ଏକ

ମୁଦ୍ରାଶାଳରେ ଆଶ୍ରୟ ନେବାପାଇଁ ବ୍ୟବସ୍ଥା କରିଥିଲେ । ଗୁଳିଶବ୍ଦ ଓ ଉତ୍ତେଜନା ପୂର୍ଣ୍ଣ ଚିତ୍କାର ଶୁଣି ସହରରେ ଥିବା ଇଂରାଜିମାନେ ମନେ କଲେ ଯେ ବିଦ୍ରୋହ ଆରମ୍ଭ ହୋଇଯାଇଛି । ପ୍ରବଳ ହୋଇହାଲ୍ଲା ଭିତରେ ସେମାନେ ମୁଦ୍ରାଶାଳ ଆଡକୁ ଆଶ୍ରୟ ପାଇଁ ଦଉଡିବାକୁ ଲାଗିଲେ । କେତେକ ଧରା ପଡିବାରୁ ରକ୍ଷା ପାଇବା ପାଇଁ କଚେରୀ ଛାତରେ ଆଶ୍ରୟନେଲେ । 'ବନାରସ'ର ଖଜଣାଖାନା ଶିଖମାନଙ୍କର ଦାୟିତ୍ୱରେ ଥିଲା । ଶିଖମାନେ ମାତିଗଲେ ଖଜଣାଖାନା ଦଖଲକୁ ନେଇ ବିଦ୍ରୋହୀଙ୍କ ସହିତ ମିଶିଯିବାର ଭୟ ମଧ୍ୟ ଥିଲା ।

ବନାରସରେ ଏହି ସମୟରେ 'ସୁରତ୍‌ସିଂହ' ନାମକ ଜଣେ ଶିଖ ସର୍ଦ୍ଦାର ରହୁଥିଲେ । ସେ ଦ୍ୱିତୀୟ ଶିଖ ସମରରେ ଲଢିବାପରେ 'ବନାରସ'ରେ ବାସ କରୁଥିଲେ । ତାଙ୍କର ଗର୍ଭ୍‌ନଙ୍କ ଉପରେ ଅଦମ୍ଯ ବିଶ୍ୱାସ ଥିଲା । ଗଣ୍ଡଗୋଳ ଆରମ୍ଭ ହେବା ମାତ୍ରେ ସେ ତାଙ୍କର ଅନୁଚରମାନଙ୍କ ସହ ଗୋଟିଏ ଦୁଇନଳିଆ ରାଇଫଲ ଧରି ଗର୍ଭନଙ୍କୁ ପହରା ଦେଇ କଚେରୀକୁ ନେଇଗଲେ । ସେଠାରେ ଖଜଣାକୁ ପହରା ଦେଉଥିବା ଶିଖମାନଙ୍କୁ ଶାନ୍ତ କରି ପ୍ରଭାବିତ କଲେ । ଏହା ଫଳରେ ଶିଖମାନେ ଆଶ୍ୱସ୍ତ ହୋଇ ତାଙ୍କ ନିର୍ଦ୍ଦେଶ ମୁତାବକ ଖଜଣା ଓ ଲାହୋରର ଅଳଙ୍କାର ସବୁ ନେଇ ଶସ୍ତ୍ରାଗାରରେ ଇଂରାଜି ଅଫିସରମାନଙ୍କ ନିକଟରେ ସମର୍ପଣ କଲେ । ଏହି ମୂଲ୍ୟବାନ୍ ସେବା ପାଇଁ ତା ପରଦିନ ସକାଳୁ ଚିଫ୍ କମିଶନରଙ୍କର ଆଦେଶ କ୍ରମେ ଦଶହଜାର ଟଙ୍କା ସେମାନଙ୍କ ମଧ୍ୟରେ ବାଣ୍ଟି ଦିଆଗଲା ।

ସେତେବେଳେ 'ପଣ୍ଡିତ ଗୋକୁଳଚାନ୍ଦ' ନାମକ ଜଣେ ପ୍ରଭାବଶାଳୀ ବ୍ୟକ୍ତି 'ବନାରସ'ରେ ଥିଲେ । ସେ ଜଜ୍‌କୋର୍ଟର ନାଜର ଭାବରେ ନିଯୁକ୍ତି ପାଇଥିଲେ । ଜନସାଧାରଣଙ୍କୁ ଇଂରାଜିଙ୍କ ସପକ୍ଷରେ ପ୍ରଭାବିତ କରିବାରେ ସେ ଏହି ପରିସ୍ଥିତି ମଧ୍ୟରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ସେହିପରି 'ଦେଓ ନାରାୟଣ ସିଂହ' ନାମକ ଜଣେ ପ୍ରଭାବଶାଳୀ ଧନୀ ବ୍ୟକ୍ତି ମଧ୍ୟ ଇଂରାଜିମାନଙ୍କର ସହାୟତା କରିଥିଲେ । 'ବନାରସ'ର ରାଜା ମଧ୍ୟ ସଦାବେଳେ ଇଂରାଜିମାନଙ୍କ ସହିତ ଭଲ ସମ୍ପର୍କ ରଖିବାକୁ ଇଚ୍ଛା କରୁଥିଲେ । ଏଣୁ ଆହତ ଓ ବିପନ୍ନ ଇଂରାଜିମାନଙ୍କୁ ମୂଳରୁ ଶେଷ ପର୍ଯ୍ୟନ୍ତ ସହାୟତା କରିବାପାଇଁ ନିଜର ସମସ୍ତ ଶକ୍ତି ଓ କ୍ଷମତା ପ୍ରୟୋଗ କରିଥିଲେ ।

'ସୁରଜିତ୍ ସିଂହ'ଙ୍କର ସହଯୋଗ ଫଳରେ କଚେରୀରୁ କିଛି ଇଂରାଜି 'ଗବିନ୍'ଙ୍କ ସହ ଆସି ମୁଦ୍ରାଶାଳରେ ଆତ୍ମଗୋପନ କରିଥିଲେ । ରାତ୍ର ଦୁଇ ପହର

ଅତିକ୍ରାନ୍ତ ହେବା ପରେ 'ରବିନ' କିଛି ସାଥିଙ୍କ ସହ ଇଂରାଜି ସୈନ୍ୟଙ୍କର ସହାୟତା ନେଇ କଟେରୀକୁ ଯିବାପାଇଁ ମୁଦ୍ରାଶାଳରୁ ବାହାରି ଆସିଲେ । ବାହାରେ ଜ୍ୟୋତ୍ସ୍ନା ବିଧୌତ ରାତ୍ରି ଥିଲା । ସେମାନେ ଧୀରେ ଧୀରେ ଆଗେଇଗଲେ । ଏହି ସମୟରେ ଜଣାପଡିଲା ଯେ ବୁଦା ମୂଳରେ କିଛି ସିପାହୀ ଲୁଚିରହି ଜଗିଛନ୍ତି । ହଠାତ୍ ବୁଦାଆଡୁ ଗୁଳି ଆସିଲା । ଅବଶ୍ୟ କାହାରି କ୍ଷତି ହେଲାନାହିଁ । ସେମାନେ ଫେରି ଆସିଲେ । ସକାଳ ହେଲା । ଇଂରାଜିମାନେ ମୁଦ୍ରାଶାଳର ଛାତ ଉପରକୁ ଆସି ଅବସ୍ଥା ନିରୀକ୍ଷଣ କଲେ । ଏହାପରେ ସେମାନଙ୍କର ସହାୟତାପାଇଁ ସମସ୍ତ ସାମଗ୍ରୀ ଆସି ପହଞ୍ଚିଲା । ଇଂରାଜିମାନେ ନିରାପଦରେ ସହରକୁ ଆସିଲେ । ଜଜକୋର୍ଟ ବନ୍ଦ ହୋଇଯାଇଥିଲା । ଏଣୁ 'ଗବିନ' ବସି ରହିବା ଅପେକ୍ଷା ଶାସନ ଦାୟିତ୍ୱ ହାତକୁ ନେଲେ । ଭୟ ଓ ସ୍ନେହ ଉଭୟ ଦେଇ ସେ ସବୁକିଛି ସ୍ଥିତାବସ୍ଥାକୁ ଆଣିବାକୁ ଚେଷ୍ଟାକଲେ । ବିଦ୍ରୋହ ସହିତ ସଂପୃକ୍ତ ବ୍ୟକ୍ତିମାନଙ୍କ ବିଷୟରେ ତଦନ୍ତ ଆରମ୍ଭ ହେଲା । ଏହି ପ୍ରକ୍ରିୟାରେ ଜଣେ ଧନଶାଳୀ ବ୍ୟାଙ୍କମାଲିକ ଓ ତିନିଜଣ ବିଦ୍ରୋହୀ ନେତାଙ୍କୁ ବନ୍ଦୀ କରାଗଲା । ସେମାନଙ୍କର ଘର ଖୋଜାଯାଇ ସେଠାରୁ ବିଦ୍ରୋହ ଷଡଯନ୍ତ୍ର ସମନ୍ଧୀୟ ବହୁ ଗୁରୁତ୍ୱପୂର୍ଣ୍ଣ ଚିଠି ମିଳିଲା । ଜଣେ ମୁଖ୍ୟ ନେତାଙ୍କଠାରୁ ଆସିଥିବା ଏକ ଚିଠି ସେ ମଧ୍ୟରେ ଥିଲା । ସେଠାରେ ଲେଖାହୋଇଥିଲା:-

''ବନାରସର ଜନସାଧାରଣ ଏକ ସହିତ ଜାଗିଉଠିବା ଦରକାର 'ଗବିନ', 'ଲିଣ୍ଡ' ଓ ଅନ୍ୟ ଇଂରାଜିମାନଙ୍କୁ ହତ୍ୟାକର । ଏହି କାର୍ଯ୍ୟ ପାଇଁ ବ୍ୟାଙ୍କର ମାଲିକ ସମସ୍ତ ଅର୍ଥଦେବ ।''

ଏହି ଚିଠି ଅନୁସାରେ ଯେତେବେଳେ ବ୍ୟାଙ୍କର ମାଲିକଙ୍କର ଘରେ ଅନୁସନ୍ଧାନ କରାଗଲା ସେଠାରେ ଦୁଇଶହ ତଲବାର ଓ ବହୁ ରାଇଫଲ ଗଚ୍ଛିତ ଥିବାର ଦେଖାଗଲା । ସେ ଯାହାକିଛି ହେଉନା କାହିଁକି, 'ବନାରସ'ରେ ଇଂରାଜି ଗୃହଦାହ ପାଇଁ କୌଣସି ସୁଯୋଗ ନଥିଲା । ବିଦ୍ରୋହୀ ସିପାହୀମାନେ, 'ବନାରସ' ତ୍ୟାଗ କରି 'ଅବଧ' ଆଡେ ଯାତ୍ରା କଲେ । 'ବନାରସ'ରେ ବିଦ୍ରୋହ ସଫଳ ନହେଲେ ମଧ୍ୟ ତାହାର ପ୍ରଭାବ ଆଖପାଖ ଅଞ୍ଚଳରେ ବିଶେଷ ଭାବରେ ଅନୁଭୂତ ହୋଇଥିଲା । ଗ୍ରାମାଞ୍ଚଳର ଲୋକମାନେ ସମ୍ପୂର୍ଣ୍ଣ ଭାବରେ ଇଂରାଜି ବିରୋଧି ହୋଇଯାଇଥିଲେ ।

'ବନାରସ'ଠାରୁ ଚାଳିଶ ମାଇଲ ଦୂରରେ 'ଯବନପୁର' ଥିଲା । ସେଠାରେ ଲୁଧିଆନା ରେଜିମେଣ୍ଟର ଏକ ଅଂଶ ଅବସ୍ଥାପିତ ହୋଇଥିଲା । ପାଞ୍ଚ ତାରିଖ ଦିନ ସେଠାରେ, 'ବନାରସ'ରେ ୩୭ ତମ ବାହିନୀର ବିଦ୍ରୋହର ସମ୍ବାଦ ପହଞ୍ଚିଲା । ଏଣୁ

ସେଠାରେ ସିପାହୀମାନେ ଇଂରାଜି ଅଫିସରମାନଙ୍କର ବିଶ୍ୱାସଭାଜନ ହେବାପାଇଁ ଅତ୍ୟନ୍ତ ବିଶ୍ୱସ୍ତ ଆଚରଣ କଲେ । କିନ୍ତୁ ପରେ ପରେ ସମ୍ବାଦ ପହଞ୍ଚିଲା ଯେ ଇଂରାଜି ଫୌଜ ଦ୍ୱାରା ୩୭ ତମ ବାହିନୀକୁ ଗୁଳିକରି ଦିଆଯାଇଛି । ସେମାନେ ହଠାତ୍ ଉତ୍ତେଜିତ ହୋଇ ଉଠି, ଖୋଲାଖୋଲି ଭାବରେ ବିଦ୍ରୋହ ଆରମ୍ଭ କଲେ । ସେମାନଙ୍କର କମାଣ୍ଡିଂ ଅଫିସର 'ଲେଫଟ୍‌ନାଣ୍ଟ ମାରା',କୁ ସେମାନେ ଗୁଳି କରି ହତ୍ୟାକଲେ । 'ଜଏଣ୍ଟ ମ୍ୟାଜିଷ୍ଟ୍ରେଟ୍ କୁପେଜ(Cuppage)'ଙ୍କୁ ଜେଲକୁ ଯିବା ରାସ୍ତାରେ ଗୁଳି କରାଗଲା । ଖଜଣାଖାନା ଲୁଟ୍ କରାଗଲା । ବଞ୍ଚିଥିବା ଅନ୍ୟାନ୍ୟ ଇଂରାଜିମାନେ ପ୍ରାଣ ଭୟରେ ସେମାନଙ୍କର ଅସ୍ତ୍ର ସମର୍ପଣ କରି ପଳାୟନ କଲେ । ସମସ୍ତ ଇଂରାଜିମାନଙ୍କ ଘର ଲୁଟ୍ କରାଯାଇ ନିଆଁ ଲଗାଇ ଦିଆଗଲା । ସିପାହୀମାନେ ପ୍ରଚୁର ଅର୍ଥ ସହ 'ଅବଧ' ଅଭିମୁଖେ ଯାତ୍ରାକଲେ । ବାକି ଯେଉଁ ଅର୍ଥ ବଳିଥିଲା ତାହା ସବୁ ସାଧାରଣ ନାଗରିକମାନେ ବହୁ ପରିମାଣରେ ପ୍ରାପ୍ତ ହେଲେ । ଏହିପରିଭାବରେ ଜୁନ ତିନି ତାରିଖରେ 'ଆଜମଗଡ',ଜୁନ ଚାରି ତାରିଖରେ 'ବନାରସ' ଓ ଜୁନ ପାଞ୍ଚ ତାରିଖରେ 'ଯବନପୁର'ରେ ବିଦ୍ରୋହ ଦେଖା ଦେଇଥିଲା । ଏହାର ପ୍ରଭାବରେ ସମ୍ପୂର୍ଣ୍ଣ 'ବନାରସ' ପ୍ରଦେଶ ବିଦ୍ରୋହରେ ଅଗ୍ନିଗର୍ଭା ହୋଇଯାଇଥିଲା ।



# ଆଲ୍ହାବାଦ

'ବନାରସ'ଠାରୁ ସତୁରୀ ମାଇଲ ଦୂରରେ 'ଆଲ୍ହାବାଦ' ସହର ଅବସ୍ଥିତ । ଏହା ଗଙ୍ଗା ଓ ଯମୁନାର ମିଳନସ୍ଥଳ ଅଟେ । ବିଦ୍ରୋହ ସମୟରେ ଏହି ଯଥେଷ୍ଟ ସ୍ଥାନର ସାମରିକ ଓ ରାଜନୈତିକ ଗୁରୁତ୍ୱ ଥିଲା । 'ଅବଧ'ରେ ବିଦ୍ରୋହ ପରେ, ଏହି ସ୍ଥାନର ନିରାପତ୍ତାର ଆବଶ୍ୟକତା ଥିଲା । 'ଆଲହାବାଦ'ର ଶକ୍ତିଶାଳୀ ଦୁର୍ଗରେ ଏକ ବିରାଟ ଅସ୍ତ୍ରାଗାର ଓ ଗୁଳିଗୁଳାର ଭଣ୍ଡାର ଥିଲା ।

ମେ ୧୨ର ତାରିଖ ଦିନ, 'ମିରଟ୍' ବିଦ୍ରୋହର ସମ୍ବାଦ ଆସି 'ଆଲ୍ହାବାଦ'ରେ ପହଞ୍ଚିଲା । ଏହାର କିଛିଦିନ ପରେ ବିଦ୍ରୋହୀମାନଙ୍କର ପ୍ରଗତି ଓ 'ଦିଲ୍ଲୀ'ରେ 'ବାଦଶା'ଙ୍କର ତକ୍ତନସୀନର ସମ୍ବାଦ ମଧ୍ୟ ଆସି ପହଞ୍ଚିଲା । ମେ ମାସର ଆରମ୍ଭରେ 'ଏଲ୍ହାବାଦ'ରେ ଏକ ମାତ୍ର ରେଜିମେଣ୍ଟ ଅବସ୍ଥାପିତ ଥିଲା । ତାହା ଦେଶୀସିପାହୀଙ୍କର ଷଷ୍ଠତମ ରେଜିମେଣ୍ଟ ଥିଲା ଓ 'କର୍ଣ୍ଣେଲ ସିମ୍ପସନ୍' ଉକ୍ତ ସେନାର ଅଧିନାୟକତ୍ୱ ଗ୍ରହଣ କରିଥିଲେ । ନଅ ତାରିଖ ଦିନ ମଧ୍ୟ 'ଫିରୋଜପୁର' ଶିଖ ରେଜିମେଣ୍ଟର ଗୋଟିଏ ଶାଖା 'ମିର୍ଜାପୁର'ରୁ ଆସି ସେଠାରେ ପହଞ୍ଚିଲା । ଦଶଦିନ ପରେ 'ଅବଧ'ରୁ ଦୁଇଟି ସାମୟିକଫୌଜମଧ୍ୟ 'ହେନେରୀ ଲରେନ୍ସ'ଙ୍କର ଆଦେଶକ୍ରମେ ସେଠାରେ ପହଞ୍ଚିଲା । କିଛିଦିନ ପରେ 'ଚୁନାର'ରୁ ଷାଠିଏଜଣ ଅକ୍ଷମ ଇଂରାଜି ଆସି ସେମାନଙ୍କ ସହ ମିଳିତ ହେଲେ । ସିପାହୀମାନେ ସେନାଛାଉଣୀରେ ରହିଲେ । ସେନାଛାଉଣୀଟି ଦୁର୍ଗଠାରୁ ଦୁଇତିନିମାଇଲ ଦୂରରେ ଗଙ୍ଗା ଯମୁନା ନଦୀର ମଧ୍ୟ ଭାଗରେ ଥିଲା । ଏହି ବାହିନୀର କିଛି ଅଂଶକୁ ଦୁର୍ଗରକ୍ଷା କାର୍ଯ୍ୟରେ ମୁତୟନ କରାଯାଇଥିଲା । 'ଆଲ୍ଲାହାବାଦ'ରେ ସରକାରୀ କର୍ମଚାରୀମାନଙ୍କ ମଧ୍ୟରେ 'କମିଶନର ଚେଷ୍ଟାର' (Chester)ଓ 'ମାଜିଷ୍ଟ୍ରେଟ୍ କୋର୍ଟ', (Court)ମୁଖ୍ୟ ଥିଲେ । ଷଷ୍ଠତମ ପଦାତିକ ବାହିନୀର ବିଶ୍ୱସ୍ତତା ଉପରେ 'କର୍ଣ୍ଣେଲ ସିମ୍ପସନ୍'ଙ୍କର ସମ୍ପୂର୍ଣ୍ଣ ଆସ୍ଥା ଥିଲା । କିନ୍ତୁ ଅନ୍ୟ ସରକାରୀ କର୍ମଚାରୀ ମାନେ ସିପାହୀମାନଙ୍କୁ ସନ୍ଦେହ ଚକ୍ଷୁରେ ଦେଖୁଥିଲେ । 'ମିରଟ' ଓ ଅନ୍ୟାନ୍ୟସ୍ଥାନରେ ବିଦ୍ରୋହର ପ୍ରଭାବ ସ୍ୱାଭାବିକ ଭାବରେ ଜନସାଧାରଣ ତଥା ସିପାହୀମାନଙ୍କ ଉପରେ ପଡିଥିଲା । ଚଉଦିଗରେ ସନ୍ଦେହ ଓ ଅବିଶ୍ୱାସର ବାତାବରଣ ଘେରିରହିଥିଲା । ବିଭିନ୍ନ ପ୍ରକାର ଗୁଜବ ମଧ୍ୟ ସୃଷ୍ଟି ହେଉଥିଲା ।

ଏହି ଅସ୍ଥିର ବାତାବରଣ ଭିତରେ 'କର୍ଣ୍ଣେଲ ସିମ୍ପସନ୍', ତାଙ୍କର ରେଜିମେଣ୍ଟକୁ ନେଇ ଦୁର୍ଗରେ ଅବସ୍ଥାପିତ କରିବା ପାଇଁ ଇଚ୍ଛାକଲେ । କିନ୍ତୁ 'ମାଜିଷ୍ଟ୍ରେଟ କୋର୍ଟ', ବିରୋଧ କରିବା ଫଳରେ ତାହା ସ୍ଥଗିତ ରହିଲା । ସେହି ସନ୍ଧ୍ୟାରେ ସାମରିକ ଓ

ଅଣସାମରିକ ଅଫିସର ମାନଙ୍କର ଏକ କାଉନ୍‌ସିଲ ବସି ବିଚାର ପରାମର୍ଶ ଚାଲିଲା । ପରିଶେଷରେ ସ୍ତ୍ରୀଲୋକ ଓ ପିଲାମାନଙ୍କୁ ଦୁର୍ଗ ଭିତରକୁ ପଠାଇଦେବା ପାଇଁ ସ୍ଥିର ହେଲା, କିନ୍ତୁ ତା ପରଦିନ ମେ ତେଇଶ ତାରିଖ ସକାଳ ହେବା ପୂର୍ବରୁ ସେଥିରେ ପରିବର୍ତ୍ତନ କରାଯାଇ ସବୁ ଅଣସାମରିକ ଇଂରାଜିମାନଙ୍କର ଦୁର୍ଗ ଭିତରକୁ ଯିବାପାଇଁ ବ୍ୟବସ୍ଥା କରାଗଲା । ପରେ ପରେ ଏହି ଅଣସାମରିକ କର୍ମଚାରୀ ମାନଙ୍କ ମଧ୍ୟରୁ ବିଛି କର୍ମଚାରୀଙ୍କୁ ନେଇ ସ୍ୱେଚ୍ଛାସେବକରକ୍ଷୀବାହିନୀ ଗଠନ କରାଗଲା । ପଚିଶ ତାରିଖ ଦିନ ଇଦ୍ ପର୍ବଥିଲା । ଇଂରାଜିମାନେ ଆଶା କରୁଥିଲେ ହୁଏତ ମୁସଲମାନମାନେ ଧର୍ମର ଦୁହାଇ ଦେଇ ଯୁଦ୍ଧର ଡାକରା ଦେବା ଫଳରେ ବିଦ୍ରୋହ ଆରମ୍ଭ ହୋଇଯାଇପାରେ । କିନ୍ତୁ ସେ ଦିନଟି ଶାନ୍ତ ଓ ସୁସ୍ଥ ବାତାବରଣ ମଧ୍ୟରେ କଟିଗଲା । ସେଦିନର ଅପରାହ୍ନର ପ୍ୟାରେଡରେ ସିପାହୀମାନେ, ଇଂରାଜିମାନଙ୍କ ମନରୁ ସନ୍ଦେହ ଦୂର କରିବା ପାଇଁ ବିଦ୍ରୋହ କାର୍ଯ୍ୟରେ ଲିପ୍ତ ଥିବା ଦୁଇ ଜଣ ସିପାହୀଙ୍କୁ ଖୋଲା ଖୋଲି ଭାବରେ ଦଣ୍ଡ ଦେଲେ । ଏହା କେବଳ କର୍ତ୍ତୃପକ୍ଷଙ୍କ ଆଖିରେ ଧୂଳି ପକାଇବା ପାଇଁ ହିଁ କରାହୋଇଥିଲା ।

ଜୁନ୍ ମାସ ଆରମ୍ଭରେ ନଗରୀରେ ପ୍ରବଳ ଉତ୍ତେଜନା ପ୍ରକାଶ ପାଇଲା । ଏଣୁ ସିପାହୀମାନେ, ଇଂରାଜି କର୍ତ୍ତୃପକ୍ଷଙ୍କୁ ସନ୍ଦେହ ମୁକ୍ତ କରିବା ପାଇଁ, ସେମାନଙ୍କୁ ଦିଲ୍ଲୀ ଅଧିକାର କରିବା ପାଇଁ ପଠାଯିବାକୁ, ପ୍ରସ୍ତାବ ଦେଲେ । କଲିକତାରେ ଥିବା 'ଲର୍ଡ କ୍ୟାନିଂ'ଙ୍କ ପାଖକୁ ମଧ୍ୟ ତାହା ଟେଲିଗ୍ରାଫ୍ ଜରିଆରେ ଜଣାଗଲା । କିନ୍ତୁ, ଅଣସାମରିକ କର୍ମଚାରୀମାନେ, ଜନସାଧାରଣଙ୍କ ମଧ୍ୟରେ ଉତ୍ତେଜନା ଦେଖି ବିପନ୍ନ ଅନୁଭବ କରୁଥିଲେ । ଜୁନ୍ ଚାରି ତାରିଖ ଦିନ, 'ସିମ୍ପସନ୍', 'ବନାରସ'ର ବିଦ୍ରୋହ ଓ 'ନେଲ'ଙ୍କ ଦ୍ୱାରା ତାହାର ଦମନର ସମ୍ବାଦ, ଟେଲିଗ୍ରାଫ ଯୋଗେ ପାଇଲେ । ଏଣୁ ପ୍ରତିରକ୍ଷା ମୂଳକ ଭାବରେ ସେ, ଦିନ ରାତି ଦୁର୍ଗର ଦ୍ୱାର ବନ୍ଦ ରଖିବା ପାଇଁ ଆଦେଶ ଦେଲେ । ଏକ ପୋଲ ଦ୍ୱାରା 'ଏଲ୍‌ହାବାଦ' ନଗରୀ, 'ବନାରସ' ରାସ୍ତା ସହିତ ମିଶିଥିଲା । 'ବନାରସ'ରୁ ବିଦ୍ରୋହୀ ସିପାହୀମାନେ 'ଆଲହାବାଦ' ଆସିବାର ଯଥେଷ୍ଟ ସମ୍ଭାବନା ଥିଲା । ତେଣୁ ଷଷ୍ଠ ରେଜିମେଣ୍ଟର ଗୋଟିଏ କମ୍ପାନୀକୁ ଦୁଇଟି ତୋପ ସହିତ ପୋଲକୁ ରକ୍ଷା କରିବା ପାଇଁ ପଠାଇଦିଆଗଲା । ଏହା ସହିତ ପୋଲର ମୁଣ୍ଡ ଆଡ ଓ ସେନାଛାଉଣୀର ମଧ୍ୟ ଭାଗରେ ସାମୟିକ ଘୋଡାସବାର ବାହିନୀର ଗୋଟିଏ ଅଂଶକୁ ଅବସ୍ଥାପିତ କରାଗଲା । କିନ୍ତୁ ବାହାରକୁ ସବୁକିଛି ଶାନ୍ତ ଜଣାପଡୁଥିଲେ ମଧ୍ୟ 'ବନାରସ'ର ସମ୍ବାଦ ପାଇବା ପରେ ସିପାହୀମାନଙ୍କ ମଧ୍ୟରେ ଚାପା ଉତ୍ତେଜନା ଦେଖାଦେଇଥିଲା ।

ସୂର୍ଯ୍ୟାସ୍ତରେ ପ୍ୟାରେଡରେ ମଧ୍ୟ ସିପାହୀମାନଙ୍କ ମଧ୍ୟରେ ବିଶ୍ୱସ୍ତତା ଓ ପ୍ରଭୁଭକ୍ତିର ଲକ୍ଷଣ ଦେଖାଗଲା । କିନ୍ତୁ ଷଷ୍ଠ ବାହିନୀର ଆଡଜୁଟାଣ୍ଟ ଜଣେ ଦେଶୀ

ଅଫିସରଙ୍କ ଠାରୁ ଏକ ଚିଠି ପାଇଲେ ଯେ 'ବନାରସ'ର ସମ୍ବାଦ ପାଇବା ପରେ ସିପାହୀମାନଙ୍କ ମଧ୍ୟରେ ଉତ୍ତେଜନା ଦେଖାଦେଇଛି । ସେ ଏହି ଚିଠି ନେଇ 'ସିମ୍ପସନ୍'ଙ୍କୁ ଦେଖାଇଲେ । କିନ୍ତୁ 'ସିମ୍ପସନ୍'ଙ୍କର ସିପାହୀମାନଙ୍କର ବିଶ୍ୱସ୍ତତା ଉପରେ ଏତେ ଦୂର ବିଶ୍ୱାସ ଥିଲା ଯେ ସେ ଏହା ଭ୍ରମାତ୍ମକ ବୋଲି କହି ଉଡାଇଦେଲେ । ଅପରପକ୍ଷରେ ସେ କହିଲେ ଯେ ଆସନ୍ତା ସୂର୍ଯ୍ୟାସ୍ତର ପ୍ୟାରେଡରେ ଗଭର୍ଣ୍ଣର ଜେନେରାଲଙ୍କର ଧନ୍ୟବାଦ ପତ୍ର ସିପାହୀମାନଙ୍କୁ ଶୁଣାଇଦିଆଯିବା ପରେ ସେମାନଙ୍କର ମନୋଭାବ ଲକ୍ଷ୍ୟ କରାଯିବ । ତତ୍ ପର ଦିନ ପ୍ୟାରେଡ ଅନୁଷ୍ଠିତ ହେଲା । ଗଭର୍ଣ୍ଣର ଜେନେରାଲ ସିପାହୀମାନଙ୍କୁ ଦେଇଥିବା ଧନ୍ୟବାଦ ପତ୍ର ମଧ୍ୟ ପାଠ କରାଗଲା । କର୍ଣ୍ଣେଲଙ୍କ ଅନୁରୋଧରେ ଆସିଥିବା କମିଶନର ସାହେବ ମଧ୍ୟ ସିପାହୀମାନଙ୍କୁ ଉଦ୍‌ବୋଧନ ଦେଇ ପ୍ରଶଂସାସୂଚକ ବାକ୍ୟମାନ କହିଲେ । ସିପାହୀମାନେ ଉଲ୍ଲସିତ ଧ୍ୱନି କରି ତାହା ଶୁଣିଲେ । ପ୍ୟାରେଡ ପରେ ଅଫିସରମାନେ ସିଧା ସେମାନଙ୍କର ମେସକୁ ଗଲେ । 'ସିମ୍ପସନ୍,' ଷଷ୍ଠତମ ବାହିନୀର ଜଣେ ଅଫିସର 'ପ୍ଲଙ୍କେଟ୍' (Plunkett) ଙ୍କ ସହ ଘୋଡାରେ ବସି ମେସ୍ ଆଡକୁ ଗଲେ । ସେଠାରେ ଫୋର୍ଟ ଆଡଜୁଟାଣ୍ଟ 'କ୍ୟାପଟେନ ବିର୍ଚ'(Birch) ଙ୍କ ସହ ଦେଖାହେଲା । ସେ ପୋଲ ପାଖରେ ଥିବା ତୋପକୁ ଦୁର୍ଗମଧ୍ୟକୁ ଆଣିବାର ଆବଶ୍ୟକତା ବିଷୟରେ କହିଲେ । ଏହି ପରାମର୍ଶ କ୍ରମେ 'ସିମ୍ପସନ୍' ତୋପ ଦୁଇଟିକୁ ଦୁର୍ଗକୁ ଫେରାଇ ଆଣିବା ପାଇଁ ଆଦେଶ ଦେଲେ ।

ମେସ୍ ଘର ସେଦିନ ସରଗରମ ଥିଲା । ସେଠାରେ ବହୁ ଇଂରାଜିମାନଙ୍କର ସମାବେଶ ହୋଇଥିଲା । ଡିନର ପାର୍ଟି ଖୁବ୍ ସୁସ୍ଥ ବାତାବରଣ ଭିତରେ ହୋଇଥିଲା । ଅଣସାମରିକ କର୍ମଚାରୀମାନେ ନିଶ୍ଚିନ୍ତ ହୋଇ ରାତ୍ରି ଭୋଜନ ପରେ ପରେ ନିଜ ଘରକୁ ବାହୁଡି ନିଦ୍ରାଗଲେ ବା କେହି କେହି ତାସ୍ ଖେଳରେ ମାତି ରହିଲେ । ଯେଉଁମାନେ ପୂର୍ବ ରାତ୍ରିରେ ଦୁର୍ଗ ମଧ୍ୟରେ ଶୋଇଥିଲେ ସେମାନେ ନିଶ୍ଚିନ୍ତରେ ନିଜ ନିଜ ଘରକୁ ଗଲେ । ସବୁ କିଛି ଠିକ ଠାକ ଚାଲିଥିଲା । କିନ୍ତୁ ଠିକ୍ ନଅଟା ବେଳକୁ ହଠାତ୍ ବିଗୁଲ ବାଜିବାର ଶବ୍ଦ ହେଲା । ଏହା ବିପଦର ସଂକେତ ଥିଲା । 'କର୍ଣ୍ଣେଲ ସିମ୍ପସନ୍' ସେହି ସମୟରେ ମେସ୍‌ରୁ ଘରକୁ ଫେରୁଥିଲେ । ସେ ବିଗୁଲ ଶବ୍ଦ ଶୁଣି ଘରକୁ ଯାଇ ଘୋଡାକୁ ଆଣିଲେ ଓ ସେଥିରେ ବସି କ୍ୱାଟର ଗାର୍ଡଙ୍କ ପାଖକୁ ଚାଲିଲେ । ୬ଷ୍ଠ ତମ ଶିଖ୍ ରେଜିମେଣ୍ଟ ବିଦ୍ରୋହୀ ହୋଇଉଠିଥିଲେ ।

ଘଟଣାଟି ହେଲା ଯେତେବେଳେ ତୋପ ଫେରାଇ ଆଣିବା ପାଇଁ ମେସରୁ ଆଦେଶ ପଠାଗଲା, ସେତେବେଳେ ସିପାହୀମାନେ ଏହି ତୋପକୁ 'ବନାରସ'ର

ବିଦ୍ରୋହୀ ସିପାହୀ ମାନଙ୍କ ପାଇଁ ରଖାଯାଇଛି ବୋଲି ଜାଣିପାରି, ଉତ୍ତେଜିତ ହୋଇ ପଡିଥିଲେ । ସେମାନେ ଏହି ଆଦେଶକୁ ଅମାନ୍ୟ କଲେ । ସିପାହୀମାନେ ତାଙ୍କର ଅଫିସର 'ଲେଫଟନାଣ୍ଟ ହାରଓ୍ୱାର୍ଡ' (Harward)ଙ୍କୁ ଦୁର୍ଗ ପରିବର୍ତ୍ତେ ଛାଉଣୀକୁ ତୋପ ଗୁଡିକୁ ନିଆଯିବ ବୋଲି ଦାବୀ କଲେ । ଅନ୍ୟ ସମସ୍ତେ ମଧ୍ୟ ସେମାନଙ୍କ ସହିତ ମିଳିତ ଭାବରେ ଦାବୀ କଲେ । 'ହାରଓ୍ୱାର୍ଡ' ତତ୍‌କ୍ଷଣାତ ପୋଲ ଓ ଛାଉଣୀର ମଧ୍ୟ ଭାଗରେ ଅବସ୍ଥାପିତ ସାମୟିକ ଘୋଡ଼ସବାର ବାହିନୀ ପାଖକୁ ଗଲେ । 'ଲେଫଟନାଣ୍ଟ ଆଲେକଜାଣ୍ଡାର' ସେମାନଙ୍କର ସେନାନାୟକ ଥିଲେ । ସେ ତୁରନ୍ତ 'ହାରଭାର୍ଡ'ଙ୍କର କଥା ଅନୁସାରେ ତାଙ୍କର ବାହିନୀକୁ ପଠାଇଲେ । ସେନାଛାଉଣୀକୁ ପଡିଥିବା ରାସ୍ତାରୁ ତୋପର ଗର୍ଜନ ଶୁଣାଯାଉଥିଲା । ଏହି ସମୟରେ ଘୋଡାସବାର ବାହିନୀ ସହ 'ହାରଭାର୍ଡ' ଓ 'ଆଲେକ୍‌ଜାଣ୍ଡାର' ଘୋଡାରେ ପହଞ୍ଚି ଗଲେ ଏବଂ ବିଦ୍ରୋହୀ ସିପାହୀମାନଙ୍କ ଉପରକୁ ଘୋଡା ଚଲାଇଦେବା ପାଇଁ ଆଦେଶ ଦେଲେ । କିନ୍ତୁ ଆଦେଶ ପାଇବା ପରେ ମାତ୍ରେ ତିନି ଜଣ ଘୋଡସବାର ଆଗେଇ ଗଲେ କିନ୍ତୁ ଅନ୍ୟ ସମସ୍ତେ ବିଦ୍ରୋହୀ ସିପାହୀମାନଙ୍କ ସହିତ ମିଶିଗଲେ । 'ଆଲେକ୍‌ଜାଣ୍ଡାର', ଘୋଡାରେ ଆଗେଇଯାଉଥିବା ବେଳେ ତାଙ୍କର ହୃଦୟରେ ଗୁଳି ବିଦ୍ଧ ହେଲା ଓ ସେ ଟଳି ପଡିଲେ । 'ହାରଭାର୍ଡ' ଅଳ୍ପକେ ରକ୍ଷା ପାଇଗଲେ । ବିଦ୍ରୋହୀମାନେ ପୂର୍ବରୁ ସେମାନଙ୍କର ସାଥିମାନଙ୍କୁ ସତର୍କ କରାଇଦେବା ପାଇଁ ଦୁଇଜଣଙ୍କୁ ପଠାଇଥିଲେ ଓ ବିଦ୍ରୋହ ପରେ ପରେ ସିଗ୍‌ନାଲ ରକେଟ ମାଧ୍ୟମରେ ତାହାର ସମ୍ବାଦ ଜଣାଇଦେଇଥିଲେ । ଏବେ ସେମାନେ ଶସ୍ତ୍ର ସହ ଛାଉଣୀକୁ ଆଗେଇଗଲେ । ସେତେବେଳେ 'କର୍ଣ୍ଣେଲ ସିମ୍ପସନ୍' ସିପାହୀମାନଙ୍କ ସହିତ ପ୍ୟାରେଡ ପଡିଆରେ ଥିଲେ । ହଠାତ୍ ସମସ୍ତ ସିପାହୀ ବିଦ୍ରୋହୀ ହୋଇଉଠିଲେ । କେହି ଅଫିସରମାନଙ୍କର ଆଦେଶ ମାନିବାକୁ ପ୍ରସ୍ତୁତ ନଥିଲେ । 'ସିମ୍ପସନ୍', ଏ ସମସ୍ତ ଲକ୍ଷ୍ୟ କଲେ ଓ ଘୋଡାରେ ବସି, ତୋପ ଦୁର୍ଗକୁ ନେବା ବିଷୟ ବୁଝିବାକୁ ଗଲେ । ସେ ସିପାହୀମାନଙ୍କୁ ପଚାରିବା ସଙ୍ଗେ ସଙ୍ଗେ ଗୁଳିରେ ଜବାବ ପାଇଲେ । କିନ୍ତୁ ତାଙ୍କ ଦେହରେ ଗୁଳି ନବାଜିବାରୁ ସେ ଅଳ୍ପକେ ରକ୍ଷା ପାଇଗଲେ । ଏହାପରେ ସେ ଦେଖିବାକୁ ପାଇଲେ ଯେ ପ୍ୟାରେଡ ପଡିଆରେ ସିପାହୀମାନେ ଇଂରାଜି ଅଫିସରମାନଙ୍କୁ ଗୁଳି କରିବାରେ ଲାଗିଛନ୍ତି । ଏହା ଦେଖି ସେ ଅତିଶୀଘ୍ର ଦୁର୍ଗକୁ ପଳାୟନ କଲେ । ସେଠାରେ ଥିବା ଖଜଣାଖାନାକୁ ରକ୍ଷା କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । 'ଲେଫଟନାଣ୍ଟ କ୍ୟୁରି' (Currie)ଙ୍କ ସହିତ ସେ ଖଜଣାଖାନାକୁ ଗଲେ । ଚାରିଆଡୁ ଗୁଳିମାଡ ହେଉଥିଲା । ଗୁଳିମାଡରେ ତାଙ୍କର ପିନ୍ଧିଥିବା ଟୋପି ମଧ୍ୟ କଣା ହୋଇଗଲା । କିନ୍ତୁ ମେସ୍ ଘରର ବିପରୀତ ଦିଗରେ

ସେ ଦୁର୍ଗ ଆଡକୁ ଯାଉଥିବା ସମୟରେ ରକ୍ଷୀମାନେ ସାମନାରେ ଲାଇନ୍ କରି ଛିଡାହୋଇ ଗୁଳି ଚଳାଇଲେ । ଫଳରେ ତାଙ୍କର ଘୋଡା ସେହିଠାରେ ମରି ପଡିଲା । ଏକ ଗୁଳି 'ସିମ୍ପସନ୍'ଙ୍କର ବାହୁରେ ବିଦ୍ଧ ହେଲା । କୌଣସି ପ୍ରକାରେ ମୁମୂର୍ଷୁ ଓ ରକ୍ତାକ୍ତ ହୋଇ ସେ ଦୁର୍ଗ ଭିତରକୁ ପଶିଗଲେ । 'ଆଡଜୁଟାଣ୍ଟ ଷ୍ଟିଓ୍ୱାର୍ଡ', 'କ୍ୱାଟର ମାଷ୍ଟର ହେଓ୍ୱିଜ' (Hawes), 'ଏନସାଇନ ପ୍ରିଙ୍ଗ୍ଲ', 'ମୁର୍ଣ୍ଣୋ' ଆଦି ଅଫିସର ମାନଙ୍କୁ ପ୍ୟାରେଡ ପଡିଆରେ ଗୁଳିକରି ମାରିଦିଆଗଲା । ଦୁର୍ଗର 'ଆଡଜୁଟାଣ୍ଟ ଚର୍ଚ୍ଚ' ଓ 'ଲେଫଟନାଣ୍ଟ ଇନ୍ସ' (Innes) ଙ୍କୁ ମଧ୍ୟ ହତ୍ୟା କରାଗଲା । ମେସ ଘରୁ ଫେରୁଥିବା ସାତଜଣ ଇଂରାଜିଙ୍କୁ ହତ୍ୟା କରାଗଲା ।

'ସିମ୍ପସନ୍' ରକ୍ତାକ୍ତ ଅବସ୍ଥାରେ ଦୁର୍ଗ ମଧ୍ୟକୁ ପ୍ରବେଶ କରି 'ଲେଫଟନାଣ୍ଟ ବ୍ରାସେୟର୍' (Brasyer)ଙ୍କୁ ଷଷ୍ଠତମ ବାହିନୀକୁ ତୁରନ୍ତ ନିଶସ୍ତ୍ର କରିବା ପାଇଁ ଆଦେଶ ଦେଲେ । ଏହା ଏକ ବିପଦଜନକ ମୁହୂର୍ତ୍ତ ଥିଲା । ଦୁର୍ଗ ରକ୍ଷା ଦାୟିତ୍ୱରେ ଥିବା ବ୍ୟକ୍ତିମାନଙ୍କୁ ଗୁଳି ଲୋଡ୍ କରିବାକୁ ଆଦେଶ ଦିଆଗଲା । ମୁଖ୍ୟ ଫାଟକ ପାଖରେ ଶିଖ୍‌ମାନେ ରାଇଫଲ ଧରି ଛିଡା ହୋଇଗଲେ ଓ ସେମାନଙ୍କ ପଛରେ ତୋପ ସହିତ ଅକ୍ଷମ ଇଂରାଜିମାନେ ଛିଡା ହୋଇଗଲେ । ଦୁର୍ଗ ମଧ୍ୟରେ ସିପାହୀମାନଙ୍କର କୌଣସି ଉପାୟ ନଥିଲା । ଏଣୁ ସେମାନେ ଅନନ୍ୟୋପାୟ ହୋଇ ଅସ୍ତ୍ରତ୍ୟାଗ କରି ଦୁର୍ଗରୁ ପଳାଇଆସି ଛାଉଣୀରେ ସେମାନଙ୍କର ବିଦ୍ରୋହୀ ସାଥିମାନଙ୍କ ସହିତ ମିଶିଗଲେ । ଏହି ପ୍ରକାରେ 'ଆଲ୍‌ହାବାଦ' ଦୁର୍ଗକୁ ବିଦ୍ରୋହୀ ମାନଙ୍କର କବଳରୁ ରକ୍ଷା କରାଗଲା ।

ଦୁର୍ଗ ମଧ୍ୟରେ ଏହିପ୍ରକାର ଘଟଣାବଳୀ ଘଟିଚାଲିଥିବା ସମୟରେ, ନଗରୀ ମଧ୍ୟରେ ଖୁବ୍ ଉତ୍ତେଜନା ଦେଖାଯାଇଥିଲା । ଜୁନ୍ ଛଅତାରିଖ ରାତ୍ରିରେ ବନ୍ଦୀଶାଳା ଭାଙ୍ଗି ବନ୍ଦୀମାନଙ୍କୁ ଖଲାସ କରାଗଲା । ଏହାପରେ ସାରାନଗରରେ ଇଂରାଜି ମାନଙ୍କର ଗୃହଦାହ ଲୁଟତରାଜ ହତ୍ୟା କରାଗଲା । ରେଳ ଲାଇନ୍ ମଧ୍ୟ ତାଡି ଦିଆଯାଇ ଗାତ ଖୋଳି ଦିଆଗଲା । ଟେଲିଗ୍ରାଫ ତାର ଛିଣ୍ଡାଇ ଦିଆଯାଇ ଅଫିସକୁ ଜାଳିଦିଆଗଲା । ନଗରର ପୁଲିସମାନେ ମୁସଲମାନ ରାଜତ୍ୱର ଘୋଷଣା କଲେ । ଏହାପରେ ବିଦ୍ରୋହୀମାନେ ଖଜଣାଖାନା ଲୁଟ୍ କରିବାର ବିଚାର କଲେ । ତାହା ଦୁର୍ଗର ବାହାରେ ଥିଲା । ଏହାକୁ ଲୁଟ୍ କରାନଯାଇ ଦିଲ୍ଲୀରେ 'ବାଦଶା'ଙ୍କ ପାଖକୁ ନେଇଯିବା ପାଇଁ ସ୍ଥିର ହେଲା । ଫଳରେ ସେହି ରାତ୍ରିରେ ତାହାକୁ ସିପାହୀମାନେ ପହରା ଦେଲେ । ପରଦିନ ସକାଳୁ ସିପାହୀମାନେ ପ୍ୟାରେଡ ଗ୍ରାଉଣ୍ଡରେ ଏକତ୍ରିତ ହୋଇ ସେମାନଙ୍କର ବିଚାରରେ ପରିବର୍ତ୍ତନ କଲେ ଓ ଖଜଣାଖାନା ଖୋଲି ପ୍ରତ୍ୟେକ ଗୋଟିଏ ଗୋଟିଏ ଥଳି ଭର୍ତ୍ତି ଟଙ୍କା

ନେବା ପରେ ଅବଶିଷ୍ଟ ସେମାନଙ୍କ ସାଥିରେ ଥିବା ଅପରାଧୀ ତଥା ସାଧାରଣ ଲୋକମାନଙ୍କ ପାଇଁ ଛାଡିଦେଲେ । 'ଆଲ୍‌ହାବାଦ'ରେ ବିଦ୍ରୋହ ହେବା ସଙ୍ଗେ ସଙ୍ଗେ ତାହା ଗ୍ରାମାଞ୍ଚଳକୁ ବ୍ୟାପିଗଲା । କିଛିଦିନ ଲୁଟ୍ ତରାଜରେ କଟିଯିବା ପରେ ବର୍ତ୍ତମାନ ଶୃଙ୍ଖଳାର ପ୍ରଶ୍ନ ଉଠିଲା । 'ଲିଆକତ୍ ଅଲି' ନାମକ ଜଣେ ଶିକ୍ଷିତ ଧର୍ମ ପ୍ରଚାରକଙ୍କୁ ନେତୃତ୍ୱ ଦିଆଗଲା । ସେ ଜଣେ ସ୍ୱାଧୀନତା ପ୍ରେମୀ ଥିଲେ ଓ ପୂର୍ବରୁ ଜଣେ ଶିକ୍ଷକ ଥିଲେ । ତାଙ୍କୁ ଆଡମ୍ବର ସହକାରେ 'ବାଦଶା'ଙ୍କର ପ୍ରତିନିଧି ରୂପେ ଘୋଷଣା କରାଗଲା । ଏହି ମୌଲବୀ, 'ଖୁସ୍ରୁବାଗ' ନାମକ ଏକ ସୁଦୃଢ ଭାବରେ ରକ୍ଷିତ ହୋଇଥିବା ଉଦ୍ୟାନ ମଧ୍ୟରେ ନିଜର ମୁଖ୍ୟ କାର୍ଯ୍ୟାଳୟ ସ୍ଥାପନ କଲେ । ତାଙ୍କର ନେତୃତ୍ୱ ଶୃଙ୍ଖଳା ଓ ଶାନ୍ତି ପ୍ରତିଷ୍ଠିତ ହେଲା । ଶେଷ ପର୍ଯ୍ୟନ୍ତ ସେ, ସମସ୍ତ ଖବର ଦିଲ୍ଲୀରେ 'ବାଦଶା'ଙ୍କ ପାଖକୁ ପଠାଉଥିଲେ । 'ଲିଆକତ୍ ଅଲି', ସର୍ବପ୍ରଥମେ ଦୁର୍ଗ ଦଖଲ ନେବା ପାଇଁ ଯୋଜନା କଲେ । ସେହି ଅନୁସାରେ ସେ ସୈନ୍ୟ ସଂଗ୍ରହ କରି ଏକତ୍ରିତ କଲେ । ସେ 'ବନାରସ'ରୁ 'ନେଲ' ଆସିବା ଖବର ପାଇଲେ ।

ଜୁନ୍ ଏଗାର ତାରିଖ ଦିନ 'ନେଲ', 'ଏଲାହାବାଦ'ରେ ପହଞ୍ଚି ଦୁର୍ଗରେ ଇଂରାଜି ପତାକାଉଡୁଥିବା ଦେଖି ଆନନ୍ଦିତ ହୋଇଗଲେ । 'ଲର୍ଡ କ୍ୟାନିଂ'ଙ୍କ ଠାରୁ 'ଆଲ୍‌ହାବାଦ'ର କମାଣ୍ଡ ଗ୍ରହଣ କରିବାକୁ ସେ ଟେଲିଗ୍ରାଫ ଯୋଗେ ଆଦେଶ ପାଇଥିଲେ । ଏଣୁ ସର୍ବ ପ୍ରଥମେ ସେ କମାଣ୍ଡ ଗ୍ରହଣ କରି, ବାରତାରିଖ ଦିନ ସକାଳୁ ଦୁର୍ଗ ବାହାରେ ରହିଥିବା ବିଦ୍ରୋହୀ ସିପାହୀ ଦଳଙ୍କ ଆଡକୁ ତୋପ ଚାଳନା ପାଇଁ ଆଦେଶ ଦେଲେ । ଏହା ପରେ ପରେ ସେ, ଦଳେ ସୈନ୍ୟଙ୍କୁ ବିଦ୍ରୋହୀମାନଙ୍କୁ ଆକ୍ରମଣ କରିବାପାଇଁ ଆଗକୁ ପଠାଇଦେଲେ । ବିଦ୍ରୋହୀମାନଙ୍କ ହାତରୁ ପୋଲ ଅଧିକାର କରି ଦଖଲ ନିଆଗଲା ଓ ତାହା ମରାମତି କରାଗଲା । ସେହିଦିନ 'ମେଜର ଷ୍ଟିଫେନ୍‌ସନ୍'ଙ୍କ ଅଧିନାୟକତ୍ୱରେ ଶହେ ଜଣ ଇଂରାଜି ସୈନ୍ୟ ବିନା ବାଧାରେ ଦୁର୍ଗ ମଧ୍ୟକୁ ପବେଶ କଲେ । ଏହାଫଳରେ 'ନେଲ'ଙ୍କର ସାହସ ବଢିଗଲା । ସର୍ବ ପ୍ରଥମେ ଦୁର୍ଗ ମଧ୍ୟରୁ ଶିଖ୍ ସୈନ୍ୟ ମାନଙ୍କୁ ଦୁର୍ଗ ବାହାରେ କୌଣସି ସରକାରୀ କୋଠାରେ ପ୍ରସ୍ତୁତ ହୋଇ ରହିବାକୁ କୁହାଗଲା ।

ଜୁନ୍ ପନ୍ଦର ତାରିଖ ଦିନ 'ନେଲ', ଏକ ଷ୍ଟିମରରେ ଇଂରାଜି ସ୍ତ୍ରୀ ପିଲାମାନଙ୍କୁ 'କଲିକତା', 'କୈଦଗଞ୍ଜ', 'ମୁଙ୍ଗେରଗଞ୍ଜ' ଆଦି ପଠାଇ ଦେବା ପରେ 'ଆଲହାବାଦ'ର ଆଖପାଖ ଗ୍ରାମ ଗୁଡିକୁ ତୋପ ଚଳାଇବାକୁ ଆଦେଶ ଦେଲେ । କାରଣ ସେ 'ବନାରସ'ରୁ ଆସିଥିବା ବେଳେ ଗ୍ରାମ ଗୁଡିକରେ ଲୁଟ୍ ତରାଜ ଇଂରାଜି ହତ୍ୟା ଓ ଗୃହଦାହ ଆଦିର

ଚିହ୍ନ ଦେଖିବାକୁ ପାଇଥିଲେ । ଏହାପରେ ସେ, 'ହାରଓ୍ୱାର୍ଡ'ଙ୍କ ସହିତ ଦଳେ ରାଇଫଲ ଧାରୀ ସୈନ୍ୟଙ୍କୁ, ଷ୍ଟିମରରେ ନଦୀ ଭିତରେ ଥାଇ ପାଖ ଗ୍ରାମ ଗୁଡିକରେ ଗୁଳି ଗୋଳା ବର୍ଷା କରିବାକୁ ଆଦେଶ ଦେଲେ । ଏହି ପ୍ରକାର ଆକ୍ରମଣ ଫଳରେ ବିଦ୍ରୋହୀମାନେ ଆତ୍ମରକ୍ଷା କରି ପଳାୟନ କଲେ ଓ ଧୀରେ ଧୀରେ ଅବସ୍ଥା ଆୟତ୍ତ ମଧ୍ୟକୁ ଆସିଗଲା । ସତର ତାରିଖ ଦିନ ମାଜିଷ୍ଟ୍ରେଟ, ମୁଖ୍ୟ ଥାନାକୁ ଯାଇ ଶାନ୍ତି ଶୃଙ୍ଖଳା ଫେରାଇ ଆଣିବାର ଆୟୋଜନ କଲେ । ତାଙ୍କୁ କେହି ବାଧା ଦେବାକୁ ନଥିଲେ । ମୌଲବୀ ଯେତେ ବୁଝାଇଲେ ମଧ୍ୟ ଲୋକମାନଙ୍କ ମଧ୍ୟରେ ଇଂରାଜିମାନେ ଦୁର୍ଗରୁ ଗୋଳା ବର୍ଷଣ କରି ସହରକୁ ଧ୍ୱଂସ କରିଦେବେ ବୋଲି ଅପପ୍ରଚାର ହେବାଫଳରେ, କେହି ସାହସ କରି ରହିଲେ ନାହିଁ । ସମସ୍ତ ଗୃହ ଜନଶୂନ୍ୟ ଓ ଅନ୍ଧକାର ମୟ ହୋଇଗଲା । ଏହି ପରିସ୍ଥିତିରେ ମୌଲବୀ ମଧ୍ୟ ଆତ୍ମରକ୍ଷା କରି ପଳାୟନ କଲେ । ଅଠର ତାରିଖ ଦିନ 'ନେଲ୍', ଦୁଇଟି ଦଳକୁ 'ସୈଦରାବାଦ' ଓ 'ରସୁଲପୁର' ଆକ୍ରମଣ କରିବାକୁ ପଠାଇ ଦେଇ ଅବଶିଷ୍ଟ ସୈନ୍ୟମାନଙ୍କ ସହ ସହର ମଧ୍ୟରେ ବିନା ବାଧାରେ ପ୍ରବେଶ କଲେ ।



# କାନପୁର

'କାନପୁର' ଦିଲ୍ଲୀର ପୂର୍ବରେ ଦୁଇଶହଷାଠିଏ ମାଇଲ ଦୂରରେ ଅବସ୍ଥିତ । ଏହା ଏକ ଗୁରୁତ୍ୱପୂର୍ଣ୍ଣ ସାମରିକ ଛାଉଣୀ ଥିଲା । ଏହି ସହର ଅର୍ବାଚୀନ ଥିଲା । କାରଣ ୧୭୭୩ ଖ୍ରୀଷ୍ଟାବ୍ଦରେ ୱାରେନ୍ ହେଷ୍ଟିଙ୍ଗସ୍, ଅବଧ ନବାବ ବାଜିର ସୁଜାଉଦ୍ଦୌଲାଙ୍କ ସହିତ ଏକ ସନ୍ଧି ପତ୍ରରେ ସାକ୍ଷର କରିଥିଲେ । ଉକ୍ତ ସନ୍ଧି ବଳରେ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ଗୋଟିଏ ବ୍ରିଗେଡ ସୈନ୍ୟ ରଖିପାରିବାର କ୍ଷମତା ଦିଆହୋଇଥିଲା । ପ୍ରଥମେ ଏହି ବ୍ରିଗେଡକୁ ବିଲଗ୍ରାମରେ ଅବସ୍ଥାପିତ କରାଗଲା, କିନ୍ତୁ ପରେ ସୁବିଧା ଦୃଷ୍ଟିରୁ ତାହା କାନପୁରକୁ ସ୍ଥାନାନ୍ତରିତ କରାଗଲା । ପରବର୍ତ୍ତୀ ନବାବ 'ଆସଫ୍‌ଉଦ୍ଦୌଲା'ଙ୍କ ସମୟରେ କମ୍ପାନୀକୁ କିଛି ଗ୍ରାମ ମଧ୍ୟ ହସ୍ତାନ୍ତର କରାହୋଇଥିଲା । ଏହାପରେ 'କାନପୁର'ର ଗୁରୁତ୍ୱ ବୃଦ୍ଧି ପାଇଥିଲା । ଶିଖ୍ ସମର ପରେ ପରେ ଇଂରାଜି ମାନଙ୍କର କ୍ଷମତା ଓ ପ୍ରଭାବ ପଶ୍ଚିମଦିଗକୁ ବୃଦ୍ଧି ହେବା ଫଳରେ 'କାନପୁର'ର ସାମରିକ ମୂଲ୍ୟ କମିଗଲେ ମଧ୍ୟ ଏହାର ଗୁରୁତ୍ୱ ହ୍ରାସ ପାଇନଥିଲା । କାରଣ 'ଲକ୍ଷ୍ନୌ' ଯିବାକୁ ହେଲେ କାନପୁର ବାଟଦେଇ ଯିବାକୁ ପଡୁଥିଲା । ଏଣୁ 'ଅବଧ' ରାଜ୍ୟକୁ ନିଜ ଦଖଲକୁ ନେବା ପରେ ଇଂରାଜିମାନେ ଏହାକୁ ଗୁରୁତ୍ୱ ଦେଇଥିଲେ । ଏହି ସହରରେ ଚର୍ଚ୍ଚ, ସଭାଘର, ବଲ ନୃତ୍ୟ ପାଇଁ ହଲ, ଘୋଡାଦୌଡ ପାଇଁ ପଡିଆ, ବଡ ବଡ ବଙ୍ଗଳା ଓ ଅନ୍ୟାନ୍ୟ ଇଉରୋପୀୟ ଭୋଗସାମଗ୍ରୀ ମାନ ଥିଲା । ସହରକୁ ଉତ୍ତର ପଶ୍ଚିମ ଦିଗରୁ ପ୍ରବେଶ କଲେ ପ୍ରଥମେ 'ବୋବଗଞ୍ଜ' ପଡେ । ଏଠାରେ ବିଭିନ୍ନ ସରକାରୀ ଅନୁଷ୍ଠାନ ଓ ବାସଗୃହ, ଖଜଣାଖାନା ଓ ଜେଲ ଆଦିଥିଲା । ତାର ଟିକିଏ ଦକ୍ଷିଣକୁ ମିଶନାରୀମାନଙ୍କର ଆବାସସ୍ଥଳ ଥିଲା । ନଦୀ କୂଳରେ ଶସ୍ତ୍ରାଗାର ଓ ଇଂରାଜି ଡାକ୍ତରଖାନା ଥିଲା । ଆହୁରି ପୂର୍ବକୁ ସଭାଗୃହ ଓ ଚର୍ଚ୍ଚଥିଲା । ଗଙ୍ଗା କେନାଲର ପଶ୍ଚିମ ଦିଗକୁ ମୁଖ୍ୟ ସହର ଅବସ୍ଥିତ ଥିଲା । ସେଥିରେ ଥିବା ଗଳି ଓ ଧାଡି ଧାଡି ବଜାର ମାନଙ୍କରେ ସର୍ବଦା ଲୋକଗହଳି ଲାଗି ରହୁଥିଲା । କେନାଲର ଅପରପାର୍ଶ୍ୱରେ 'ଜେନେରାଲଗଞ୍ଜ' ଅବସ୍ଥିତ ଥିଲା ଏବଂ ତାହାର ପୂର୍ବରେ ଏକ ଗ୍ରନ୍ଥାଗାର ଓ ଖ୍ରୀଷ୍ଟିୟାନ ମାନଙ୍କ ଉପାସନା ସ୍ଥଳ ଥିଲା ।

'ଜେନେରାଲଗଞ୍ଜ' ପାଖରେ ୧ମ ଦେଶୀ ପଦାତିକ ବାହିନୀ ଅବସ୍ଥାପିତ ଥିଲା । ତାହାର ଏକ ମାଇଲ ଦକ୍ଷିଣକୁ ଘୋଡାଶାଳ ଓ ଘୋଡାସବାର ବାହିନୀଙ୍କର ଛାଉଣୀ ଥିଲା । ପୂର୍ବ ଦିଗରେ ୫୩ତମ ଓ ୫୬ତମ ପଦାତିକ ବାହିନୀ ଅବସ୍ଥାପିତ ଥିଲା । 'କାନପୁର'ରେ ଇଉରୋପୀୟ ଓ ଇଉରେସୀୟ ବ୍ୟକ୍ତିଗଣ ସରକାରୀ କର୍ମଚାରୀ

ବା ସାମରିକ ବାହିନୀରେ, ଅଥବା ଗଙ୍ଗା କେନାଲର ନିର୍ମାଣ ବା ରେଲୱେ କର୍ମଚାରୀ ଭାବରେ ନିଯୁକ୍ତି ପାଇଥିଲେ । ତନ୍ମଧ୍ୟରୁ କେତେକ ମିଶନାରୀ ଓ ଅନ୍ୟକେତେକ ବ୍ୟବସାୟୀ ମଧ୍ୟ ଥିଲେ । ସେ ସମୟରେ କାନପୁରର ବ୍ୟବସାୟୀ 'ଗ୍ରୀନ୍‌ୱେ ବ୍ରଦରସ୍' (Greenway brothers) ବହୁତ ଧନୀ ଥିଲେ । ଏମାନେ ଇଉରୋପରୁ ଜନ ଏକ୍ସାଜ୍ (John Exshaws), କାଷ୍ଟିଲିଅନ୍ (Castillion) ପରି ଉନ୍ନତ ଧରଣର ବ୍ରାଣ୍ଡି ତଥା ଉନ୍ନତମାନର ଚାହା ଓ ବିଭିନ୍ନ ପ୍ରକାରର ବିଦେଶୀ ଫଳ, ଚାଇନାର ଅଦା, ଫ୍ରାନ୍ସର ଅତର ଆଦି ବହୁ ବିଦେଶୀ ସୌଖିନ ଦ୍ରବ୍ୟ ବିକ୍ରୟ କରୁଥିଲେ । ଏହି ବ୍ୟବସାୟ ସଂସ୍ଥା ଏକ ବ୍ୟାଙ୍କର ମଧ୍ୟ ଏଜେନ୍ସି ନେଇଥିଲେ । ଏତଦ୍‌ବ୍ୟତୀତ କାନପୁରରେ ବହୁ ସ୍ୱଚ୍ଛଳ ଭାରତୀୟ ବ୍ୟବସାୟୀମାନେ ମଧ୍ୟ ଥିଲେ । ତନ୍ମଧ୍ୟରୁ ଗଙ୍ଗାପ୍ରସାଦ ମହାଜନ ଅନ୍ୟତମ । ସେ ତମ୍ବୁ ତିଆରି, କଣ୍ଟ୍ରାକ୍ଟରି, ବେଶ ପୋଷାକ ଆଦି ପ୍ରସ୍ତୁତ କରିବା ପରି ବହୁ ଧରଣର ବ୍ୟବସାୟ କରୁଥିଲେ ।

'କାନପୁର'ରେ ଇଂରାଜି ସୈନ୍ୟ ବିଶେଷ ସଂଖ୍ୟାରେ ନଥିଲେ । ୧୮୫୪ରେ ଦୁଇଟି କମ୍ପାନି ଗୋଲନ୍ଦାଜ (Artillery), ଦେଶୀ ଘୋଡସବାର ବାହିନୀ ଗୋଟିଏ ଦଳ, ଗୋଟିଏ ଇଂରାଜି ପଦାତିକ ବାହିନୀର ରେଜିମେଣ୍ଟ, ଓ ତିନୋଟି ଦେଶୀ ପଦାତିକ ସିପାହୀଙ୍କର ଦଳ ଥିଲେ । ୧୮୫୭ରେ ଦେଶୀ ସିପାହୀଙ୍କର ସଂଖ୍ୟା ବୃଦ୍ଧି ପାଇଥିଲା ଓ ୧ମ, ୫୩ତମ ଓ ୫୬ତମ ଦେଶୀ ସିପାହୀ ରେଜିମେଣ୍ଟ ଏବଂ ୨ୟ ଘୋଡସବାର ବାହିନୀର ଏକ ରେଜିମେଣ୍ଟ ଅବସ୍ଥାପିତ ହୋଇଥିଲା । ଏହିପରି ଦେଶୀ ସିପାହୀଙ୍କର ସଂଖ୍ୟା ହାରାହାରି ତିନିହଜାର ଥିଲା । ଏହା ତୁଳନାରେ ଇଂରାଜିଙ୍କର ସଂଖ୍ୟା ନଗଣ୍ୟ ଥିଲା । ସେମାନଙ୍କ ମଧ୍ୟରେ ଷାଠିଏ ଜଣ ଗୋଲନ୍ଦାଜ ବାହିନୀର ଓ ଷାଠିଏ ଜଣ ୮୪ତମ ରେଜିମେଣ୍ଟର ଏବଂ ମାଡ୍ରାସ ବାହିନୀର ଅଳ୍ପ କିଛି ଅଂଶ 'ବନାରସ'ରୁ ଆସିଥିଲେ ।

'ସାର ହ୍ୟୁଗ୍ ମାସେ ହ୍ୱିଲର୍'(Sir Huge massey wheeler), ଇଷ୍ଟ ଇଣ୍ଡିଆ କମ୍ପାନୀର ଜଣେ ଖ୍ୟାତି ସମ୍ପନ୍ନ ଓ ପୁରୁଣା ଅଫିସର ଥିଲେ । ତାଙ୍କର ପିତା ମଧ୍ୟ ଏହି କମ୍ପାନୀରେ ପୂର୍ବରୁ ନିଯୁକ୍ତି ପାଇଥିଲେ । 'ଜେନେରାଲ ହ୍ୱିଲର' ତାଙ୍କର ଯୌବନ ସମୟରେ 'ଲର୍ଡ ଲେକ୍'ଙ୍କ ସହିତ ସିନ୍ଧିଆଙ୍କ ବିପକ୍ଷରେ ଲଢିଥିଲେ । ସେ ଆଫଗାନ ଯୁଦ୍ଧ ଓ ପ୍ରଥମ ଶିଖ ସମରରେ ମଧ୍ୟ ଭାଗ ନେଇଥିଲେ । ତାଙ୍କୁ ସତୁରୀ ବର୍ଷ ବୟସ ହୋଇଥିଲା ଓ ସେ ପଚାଶ ବର୍ଷରୁ ଉର୍ଦ୍ଧ୍ୱ ସାମରିକ ବାହିନୀରେ କାର୍ଯ୍ୟ କରିଥିଲେ । ବିଦ୍ରୋହର ବର୍ଷେ ପୂର୍ବରୁ ସେ କାନପୁର ଡିଭିଜନ ସୈନ୍ୟବାହିନୀର ଦାୟିତ୍ୱରେ ଥିଲେ । ସେ ଜଣେ ଭାରତୀୟ ମହିଳାଙ୍କୁ ବିବାହ କରିଥିଲେ ଓ ଜୀବନର ଅଧିକାଂଶ ବର୍ଷ

ଭାରତରେ ହିଁ କଟାଇଥିଲେ । ସେ ସିପାହୀମାନଙ୍କର ପ୍ରିୟଥିଲେ । 'ମିରଟ୍' ବିଦ୍ରୋହର ପ୍ରଭାବ 'କାନପୁର'ରେ ବିଶେଷ ଅନୁଭୂତ ହେଉନଥିଲା । 'ଜେନେରାଲ ହ୍ୱିଲର' ତାଙ୍କର ଲୋକପ୍ରିୟତା ହେତୁ 'କାନପୁର'ରେ ବିଦ୍ରୋହ ହେଲେ ସେ ଆୟତ୍ତ କରିପାରିବେ ବୋଲି ବିଶ୍ୱାସ କରିଥିଲେ । ତେବେ ଧୀରେ ଧୀରେ 'କାନପୁର'ର ଅବସ୍ଥା ଖରାପ ଆଡକୁ ଗତି କରୁଥିଲା । ଲୋକମାନଙ୍କ ମଧ୍ୟରେ ସାମାନ୍ୟ ଉତ୍ତେଜନାମଧ୍ୟ ଅନୁଭୂତ ହେଉଥିଲା ।

କୋଡିଏ ତାରିଖ ଦିନ ସନ୍ଧ୍ୟାବେଳେ ଏକ ଗୁଜବ ପ୍ରଚାରିତ ହେଲା ଯେ ୨ୟ ଘୋଡା ସବାର ବାହିନୀଠାରୁ ଘୋଡା ଓ ଅସ୍ତ୍ର ଛଡାଇ ନିଆଯାଇ ଇଂରାଜିମାନଙ୍କୁ ବାଣ୍ଟି ଦିଆଯିବ । ଏହା ନେଇ ସିପାହୀମାନଙ୍କ ମଧ୍ୟରେ ଭୟ ଓ ଉତ୍ତେଜନା ପ୍ରକାଶ ପାଇଲା । ଏହି ସମୟରେ ୧ମ ପଦାତିକ ବାହିନୀର୍ ଛାଉଣୀରେ ଆକସ୍ମିକ ଭାବରେ ନିଆଁ ଲାଗିଗଲା । ଇଂରାଜିମାନେ ଏହାକୁ ସିପାହୀମାନଙ୍କର ବିଦ୍ରୋହ ଆରମ୍ଭର ସଙ୍କେତ ବୋଲି ଭାବି ଅତ୍ୟନ୍ତ ଭୟଭୀତ ହୋଇଗଲେ । କିନ୍ତୁ ସେ ପ୍ରକାର କିଛି ନ ହେବାରୁ ସମସ୍ତେ ଆଶ୍ୱସ୍ତ ହୋଇଗଲେ । ସମ୍ବାଦ ମିଳିଲା ଯେ 'ଆଲିଗଡ' ଓ 'ଇଟୱା'ରେ ସିପାହୀମାନେ ବିଦ୍ରୋହ କରି, ଲୁଟ୍ ତରାଜ କରି, 'କାନପୁର' ଆଡକୁ ଆଗେଇ ଆସୁଛନ୍ତି । 'ହ୍ୱିଲର' ପରିସ୍ଥିତିର ଗୁରୁତ୍ୱ ବୁଝି ତୁରନ୍ତ ଗଭର୍ଣ୍ଣର ଜେନେରାଲଙ୍କୁ ଟେଲିଗ୍ରାମ ଦ୍ୱାରା ଜଣାଇଲେ । ବର୍ତ୍ତମାନ 'ହ୍ୱିଲର' କାନପୁରରେ ଥିବା ଇଂରାଜି, ଇଉରୋପୀୟ ଓ ଭାରତୀୟ ଖ୍ରୀଷ୍ଟିଆନ୍ ତଥା କର୍ମଚାରୀମାନଙ୍କର ନିରାପତ୍ତା ବିଷୟରେ ବ୍ୟବସ୍ଥା କରିବାକୁ ଆରମ୍ଭ କଲେ । ପ୍ରଥମତଃ, ସେ ସମସ୍ତଙ୍କୁ ସଶସ୍ତ୍ର ରହିବାକୁ ପରାମର୍ଶ ଦେଲେ । ଏଥିରେ କେହି ସନ୍ତୁଷ୍ଟ ନରହି ବ୍ୟକ୍ତିଗତ ଭାବରେ ନିଜର ନିଜର ନିରାପତ୍ତାର ବ୍ୟବସ୍ଥା କରିବାକୁ ଲାଗିଲେ ।

ଏହିପରି ଅବହାୱା ମଧ୍ୟରେ ଦିନେ ଅପରାହ୍ନରେ, ଜଣେ ଇଂରାଜି ମଦ ନିଶାରେ ଜଣେ ସିପାହୀକୁ ଗୁଳି କରି ମାରିଦେଲା । ଅପରାଧୀ ବିରୁଦ୍ଧରେ ସିପାହୀମାନେ ଆପତ୍ତି ଜଣାଇଲେ । ବିଚାର ହେଲା ଏବଂ ଇଂରାଜି ଜଣକୁ ଉଦ୍ଦେଶ୍ୟ ପ୍ରାଣୋଦିତ ନ ହୋଇ କେବଳ ମଦ ନିଶାରେ ହତ୍ୟା କରିଥିବାରୁ ତାକୁ ହତ୍ୟା ଅପରାଧରୁ ମୁକ୍ତ କରାଗଲା । କୌଣସି ସିପାହୀ କ୍ଷେତ୍ରରେ ଏଠାରେ ଫାଶୀ ଦଣ୍ଡର ବିଧାନ ହୋଇ ଥାଆନ୍ତା । ଏହି କଥା ବିଚାର କରି ସିପାହୀମାନେ ଉତ୍ତେଜିତ ହୋଇଗଲେ ।

ମେ ଏକୋଇଶ ତାରିଖ ଦିନ 'ସେଫାର୍ଡ'(Shepherd), ଅଫିସକୁ ଯାଇ ଦେଖିବାକୁ ପାଇଲେ ଯେ ସମସ୍ତେ ବ୍ୟାରାକ୍‌କୁ ପିଲାଛୁଆ ସହିତ ଯିବାରେ ଲାଗିଛନ୍ତି । ସେ ମଧ୍ୟ ନିଜ ପରିବାର ସହିତ ବ୍ୟାରାକ୍‌କୁ ଗଲେ । ବ୍ୟାରାକ୍ ସେତେବେଳେ ପୂର୍ଣ୍ଣ

ହୋଇ ଯାଇଥିଲା । ତଥାପି କୌଣସି ପ୍ରକାରେ ବାରଣ୍ଡାରେ ସେ ନିଜ ପରିବାର ପାଇଁ କିଛି ଜାଗା କରିନେଇ ପାରିଲେ । କିନ୍ତୁ କୌଣସି ଉଲ୍ଲେଖନୀୟ ଘଟଣା ଘଟିଲା ନାହିଁ । କେବଳ ଗୁଜବ ସୃଷ୍ଟି ହିଁ ଏହିପରି ଭୟ ଓ ଆଶଙ୍କାର କାରଣ ହୋଇଥିଲା । ବାଇଶ ତାରିଖ ଦିନ 'ଜେନେରାଲ ହ୍ୱିଲର' ଗଭର୍ଣ୍ଣରର ଜେନେରାଲଙ୍କ ପାଖକୁ ଏକ ଆଶା ପୂର୍ଣ୍ଣ ପତ୍ର ଲେଖି ଜଣାଇଲେ ଯେ, କଲିକତାରୁ ଇଂରାଜି ବାହିନୀ ଆସିଗଲେ ସବୁ କିଛି ଶାନ୍ତ ହୋଇଯିବ । ମେ ମାସ ବତିଶ ତାରିଖ ଦିନ ଇଂରାଜି ରେଜିମେଣ୍ଟରୁ ପଞ୍ଚାବନ ଜଣ ଓ ଅବଧ ସାମୟିକ ଘୋଡା ସବାର ବାହିନୀର ୨୪୦ ଜଣ ସିପାହୀ ଆସିଯିବା ପରେ 'ହ୍ୱିଲର' ଦମ୍ଭ ଅନୁଭବ କଲେ । ବାଇଶ ତାରିଖ ଦିନ 'ନାନା ସାହେବ', ତିନିଶହ ସିପାହୀ ଓ ଦୁଇଟି ତୋପ ସହ 'ବିଠୁର୍'ରୁ ଆସି ଇଂରାଜି ଛାଉଣୀମାନଙ୍କର ମଧ ସ୍ଥଳରେ ଛାଉଣୀ ପକାଇ ରହିଲେ । ଦିନକୁ ଚାରି ପାଞ୍ଚଥର ଦୋକାନ ବଜାର ବନ୍ଦ ହୋଇଯାଉଥିଲା । ପ୍ରତି ମୂହୂର୍ତ୍ତରେ ବିଭିନ୍ନ ପ୍ରକାର ଗୁଜବ ସୃଷ୍ଟି ହେଉଥିଲା । ଚବିଶ ତାରିଖ ଦିନ ମୁସଲମାନଙ୍କର ଇଦ୍ ପର୍ବ ପାଳିତ ହେଲା । ସେ ସମୟରେ ବିପଦର ଆଶଙ୍କା ଥିଲେ ମଧ ତାହା ସୁରୁଖୁରୁରେ ଅତିବାହିତ ହୋଇଗଲା । ପଚିଶ ତାରିଖରେ 'ହ୍ୱିଲର', ତାହା ଟେଲିଗ୍ରାମ ଯୋଗେ ଗଭର୍ଣ୍ଣର ଜେନେରାଲଙ୍କୁ ଜଣାଇଦେଲେ । ରାଣୀ ଭିକ୍ଟୋରିଆଙ୍କର ଜନ୍ମ ଦିବସରେ ତୋପସଲାମ୍ ଦେବା ବନ୍ଦ କରାଗଲା । କାରଣ ଏହାଦ୍ୱାରା ସିପାହୀମାନେ ଉତ୍ତେଜିତ ହେବାର ଭୟଥିଲା ।

ଏହାପରେ 'ହ୍ୱିଲର' ଆତ୍ମରକ୍ଷା ଓ ନିରାପତ୍ତା ପାଇଁ ଇଟାପାଚିରୀ ଥିବା ଦୁଇଟି ବ୍ୟାରକ୍ କଡ଼ରେ ଟ୍ରେଞ୍ଚ ଖୋଳାଇବାର ବ୍ୟବସ୍ଥା କଲେ । ସେହି ବ୍ୟାରାକ୍‌ର ବାହାର ଘର ଓ ବାରଣ୍ଡା ମଧ ଥିଲା । ବ୍ୟାରାକ୍ ଦୁଇଟି ସମତଳ କ୍ଷେତ୍ର ଉପରେ ଅବସ୍ଥିତ ଥିଲା ଓ ତାହାର ବାମ ଦିଗରେ ଓ ସମ୍ମୁଖରେ କିଛି ଅଧା ତିଆରି ହୋଇଥିବା ବ୍ୟାରାକ୍ ମଧ ଥିଲା । ଦକ୍ଷିଣ ଦିଗରେ ରାସ୍ତାଥିଲା, ଓ ତାହା ପରେ ତଳକୁ ଅନ୍ୟ ଏକ ସମତଳଭୂମି ଧାଡ଼ି ଧାଡ଼ି ଘର ସହିତ ବକ୍ର ହୋଇଯାଇଥିଲା ଓ ତାପରେ ପରେ ନଦୀ ଥିଲା । 'ହ୍ୱିଲର' ଏହାର ଚାରିପାଖରେ ଟ୍ରେଞ୍ଚ ଖୋଳାଇଲେ ଓ ମାଟିରେ ଏକ ପାରାପେଟ ନିର୍ମାଣ କରାଇଲେ । ରକ୍ଷୀମାନଙ୍କର ଆତ୍ମରକ୍ଷା ପାଇଁ ବାଲିବସ୍ତା ମଧ ସମ୍ମୁଖରେ ରଖାଗଲା । ପରବର୍ତ୍ତୀ କାଳରେ ସମରିକ ବିଶେଷଜ୍ଞମାନଙ୍କ ମତରେ ଏହା ସାମରିକ ଦୃଷ୍ଟି କୋଣରୁ ଉପଯୁକ୍ତ ସ୍ଥାନ ନଥିଲା । କାରଣ ଏହା ନଦୀଠାରୁ ଦୂର ଥିଲା ଓ ପାଚେରୀ ଗୁଡିକ ମଧ ଦୃଢ ନଥିଲା । ଏହିପରି ଭାବରେ ମେ ମାସ ସରିବାକୁ ବସିଲା । ସିପାହୀମାନେ ବିଦ୍ରୋହ କଲେ ନାହିଁ ମାତ୍ର ଚାପା ଉତ୍ତେଜନା ବଢି ବଢି ଚାଲିଲା

ଜୁନ୍ ତିନିତାରିଖରେ 'ହ୍ୱିଲର', କାନପୁରରେ ଉତ୍ତେଜନା ଦେଖାଦେଇଥିବା ବିଷୟ ଗଭର୍ଣ୍ଣର ଜେନେରାଲଙ୍କୁ ଜଣାଇଲେ । ସେହି ଦିନ ସରକାରୀ ଅଫିସର ତିନିହଜାର ଚାରିଶହ ଟଙ୍କା ଓ କାଗଜପତ୍ର ଟ୍ରେଞ୍ଚ ଭିତରକୁ ନିରାପଦରେ ସ୍ଥାନାନ୍ତର କରାଗଲା । କିନ୍ତୁ କିଛିଦିନ ପୂର୍ବରୁ 'ହିଲରର୍ସଡେନ'(Hillersden), ଚେଷ୍ଟା କରି ମଧ୍ୟ ଖଜଣାଖାନାରୁ ସମସ୍ତ ଅର୍ଥ ଆଣିନପାରି କେବଳ ଲକ୍ଷେ ଟଙ୍କା ମାତ୍ର ଆଣିଥିଲେ । ତିନି ତାରିଖ ଦିନ ୨ୟ ଘୋଡ଼ାସବାର ବାହିନୀ ବିଦ୍ରୋହ ପାଇଁ ପ୍ରସ୍ତୁତ ହେଉଥିଲେ ମଧ୍ୟ 'ସୁବେଦାର ଭବାନୀସିଂହ'ଙ୍କ ହସ୍ତକ୍ଷେପ ଯୋଗୁଁ ତାହା ସମ୍ଭବ ହୋଇନଥିଲା । ସେହି ଦିନ 'ଲରେନ୍ସ'ଙ୍କୁ ସାହାଯ୍ୟ କରିବା ପାଇଁ ଗୋଟିଏ ଦଳ ସୈନ୍ୟଙ୍କୁ 'ହ୍ୱିଲର' ଲକ୍ଷ୍ନୌକୁ ପ୍ରେରଣ କଲେ । ଜୁନ୍ ଚାରିତାରିଖ ଦିନ ଘୋଡ଼ାସବାର ବାହିନୀର ସିପାହୀମାନେ ସେମାନଙ୍କର ପିଲାଛୁଆମାନଙ୍କୁ ସହର ଭିତରକୁ ପଠାଇ ଦେଲେ, କାରଣ ଗୁଜବ ପ୍ରଚାରିତ ହୋଇଥିଲା ଯେ ସେମାନଙ୍କର ବ୍ୟାରାକ୍‌ରେ ଇଂରାଜମାନେ ମାଇନ୍ ଖଞ୍ଜିଛନ୍ତି ।

ପାଞ୍ଚ ତାରିଖ ଦିନ ଗଭୀର ରାତ୍ରିରେ 'ସେଫାର୍ଡ' ଓ ଅନ୍ୟମାନେ ସିପାହୀମାନଙ୍କର ଲାଇନ୍ ଭିତରୁ ଚାପା ଉତ୍ତେଜନା ପୂର୍ଣ୍ଣ ଶବ୍ଦ ଶୁଣିବାକୁ ପାଇଲେ । ଯେପରିକି ଏକ ବିରାଟ ଦଳ ମାର୍ଚ୍ଚ କରିବା ପାଇଁ ତିଆରି ହେଉଛନ୍ତି । ସିପାହୀମାନେ ବାହିନୀର ହାତୀକୁ ଜବତ୍ କରି 'ଟୀକା ସିଂହ'ଙ୍କର ନେତୃତ୍ୱରେ ଖଜଣାଖାନାଲୁଟ କରିବାକୁ 'ନବାବଗଞ୍ଜ' ଚାଲିଲେ । 'ସୁବେଦାର ମେଜର ଭବାନୀ ସିଂହ' ତାହା ରକ୍ଷା କରିବାକୁ ସମସ୍ତ ପ୍ରକାର ଚେଷ୍ଟା କଲେ ମଧ୍ୟ କ୍ଷତ ବିକ୍ଷତ ହୋଇ, ଅନ୍ୟମାନଙ୍କ ଦ୍ୱାରା କାବୁ ହୋଇଯାଇ, ଛାଡିଦେବାକୁ ବାଧ୍ୟ ହେଲେ । ଆଉଦଳେ, ପ୍ରଥମ ପଦାତିକ ବାହିନୀ ପାଖକୁ ଯାଇ ସେମାନଙ୍କୁ ଘୋଡ଼ାସବାର ବାହିନୀ ସହିତ ଯୋଗ ଦେବାପାଇଁ ଉତ୍ସାହିତ କଲେ । ସେମାନେ ଯୋଗଦେବା ପାଇଁ ସମ୍ମତି ପ୍ରକାଶ କଲେ ମଧ୍ୟ ସେମାନଙ୍କର ଅଫିସରମାନଙ୍କୁ ନିରାପଦରେ ଛାଡ଼ି ଦେବା ପାଇଁ ଅନୁରୋଧ କଲେ ଓ ଅଫିସରମାନଙ୍କୁ ବଳପୂର୍ବକ ଅକ୍ଷତ ଅବସ୍ଥାରେ ବିଦାକରିଦିଆଗଲା ।

୫୩ତମ ଓ ୫୬ତମ ଦେଶୀ ପଦାତିକ ବାହିନୀ ସେହିଦିନ ରାତିରେ ବିଶ୍ୱସ୍ତତାର ଚିହ୍ନ ଦେଖାଇଲେ । କିନ୍ତୁ ପରବର୍ତ୍ତୀ ସକାଳରେ ଉଭୟ ରେଜିମେଣ୍ଟ ବିଦ୍ରୋହୀମାନଙ୍କ ସହିତ ଯୋଗ ଦେବାର ଲକ୍ଷଣ ପ୍ରକାଶ କଲେ । ଦୁଇ ତିନି ଥର ତୋପରୁ ଗୋଳାବର୍ଷଣ କରାଯିବା ଫଳରେ ଯେ ଯେଉଁ ଆଡ଼େ ପଳାଇଲେ । ୫୩ତମ ବାହିନୀ ଭୟରେ ଏକ ଖାତ ମଧ୍ୟରେ ଲୁଚିଗଲେ ଓ ପରେ ପରେ ଅଫିସରମାନଙ୍କ ସହିତ ମିଳିତ ହେଲେ । ଏ ସମସ୍ତ ଏକ ଭୁଲ ବୁଝାମଣା ଥିଲା ବୋଲି ପରେ ଜଣାପଡିଲା । ୫୩ତମ ଓ

୫୬ତମ ବାହିନୀ ସେମାନଙ୍କର ଅଫିସରମାନଙ୍କ ସହିତ ସାରାରାତି ରହିଲେ ମଧ୍ୟ ବିଦ୍ରୋହ ଦମନ କରିବା ପାଇଁ ସେମାନଙ୍କ ଠାରୁ କୌଣସି ଅଦେଶ ପାଇଲେ ନାହିଁ । ତା ପରଦିନ ସକାଳ ନଅଟା ବେଳକୁ ସେମାନେ ଲାଇନ୍‌କୁ ଫେରିଯିବା ପାଇଁ ଅନୁମତି ପାଇଲେ । ୫୩ତମ ବାହିନୀର ଦେଶୀ ଅଫିସରମାନଙ୍କୁ ଜେନେରାଲ ଡକାଇଲେ । ୫୬ତମ ବାହିନୀର ଜଣେ ଅଫିସର ଗାଡିରେ ନିଜର ପିଲାଛୁଆଙ୍କୁ ବସାଇ ଚାଲିଗଲେ । ଗଲାବେଳେ ସେ ଜଣାଇଗଲେ ଯେ ୫୩ତମ ଓ ୫୬ତମ ବାହିନୀର ସିପାହୀମାନେ ବିଦ୍ରୋହ ଆରମ୍ଭ କରିଛନ୍ତି ଏବଂ ବାହିନୀର କୋଷାଗାରକୁ ଲୁଟ୍ କରୁଛନ୍ତି । ଏଣୁ ବ୍ରିଗେଡ଼ିୟର ସେମାନଙ୍କ ଉପରକୁ ତୋପ ଚଳାଇବାକୁ ଆଦେଶ ଦେଲେ । ୫୩ତମ ବାହିନୀର ଅଧିକାଂଶ ବିଦ୍ରୋହରେ ଯୋଗଦାନ କରିଥିଲେ ମଧ୍ୟ କିଛି ସିପାହୀ ଇଂରାଜିମାନଙ୍କ ପାଇଁ କାମ କରୁଥିଲେ । ସେମାନେ ଦୀର୍ଘ ଚାରିଘଣ୍ଟା କୋଷାଗାରକୁ ପ୍ରହରା ମଧ୍ୟରେ ରକ୍ଷା କଲେ । କିନ୍ତୁ ଇଂରାଜି ଅଫିସରମାନେ ସେମାନଙ୍କୁ ସାହାଯ୍ୟ ପ୍ରେରଣ କରିବା ଅବସ୍ଥାରେ ନଥିଲେ । ଇଂରଜିଙ୍କ ସହିତ ରହିଥିବା ସିପାହୀମାନଙ୍କୁ ସାମରିକ ହସପିଟାଲରେ ରହିବା ପାଇଁ ଅନୁମତି ଦିଆଗଲା । ପୁନର୍ବାର ଇଂରାଜିମାନେ 'କାନପୁର' ଦଖଲ କରିବା ପର୍ଯ୍ୟନ୍ତ, ସେମାନେ ସେହିଠାରେ ଥିଲେ ।

## ନାନା ସାହେବ

ଏହି ପ୍ରସଙ୍ଗରେ 'ନାନା ସାହେବ'ଙ୍କ ଉପରେ କିଛି ଆଲୋକପାତ କରିବା ପ୍ରାସଙ୍ଗିକ ହେବ । ପୂର୍ବ ଅଧ୍ୟାୟରେ ନାନା ସାହେବଙ୍କର ରାଜନୈତିକ ସ୍ଥିତି ବିଷୟରେ କୁହାଯାଇଛି । 'ନାନା ସାହେବ' ଜଣେ କୁଳୀନ ବ୍ରାହ୍ମଣ ପରିବାରରେ ଜନ୍ମ ହୋଇଥିଲେ ମଧ୍ୟ 'ଦ୍ୱିତୀୟ ବାଜିରାଓ'ଙ୍କ ଦ୍ୱାରା ପୋଷ୍ୟପୁତ୍ର ରୂପେ ଗୃହୀତ ହୋଇ ତାଙ୍କ ଅନ୍ତେ ପେଶବା ହୋଇଥିଲେ । ସେ ସୁଶିକ୍ଷିତ ଓ ସଂସ୍କୃତି ସମ୍ପନ୍ନ ପୁରୁଷ ଥିଲେ । ସେ ଉଦାର ସ୍ୱଭାବର ହୋଇଥିବାରୁ ଇଂରାଜିମାନେ ତାଙ୍କର ରାଜ୍ୟ ଅପହରଣ କରି କ୍ଷମତା ଧୀରେ ଧୀରେ ସଂକୁଚିତ କରିବାକୁ ଯାଉଥିଲେ ମଧ୍ୟ ସେ ସେମାନଙ୍କ ସହିତ ବନ୍ଧୁତା ପୂର୍ଣ୍ଣ ବ୍ୟବହାର କରୁଥିଲେ । ସେମାନଙ୍କୁ ବହୁ ସମୟରେ ସେ ନିଜେ ରହୁଥିବା 'ବିଠୁର' ସହରରେ ଆତିଥ୍ୟ ପ୍ରଦାନ କରୁଥିଲେ । କିନ୍ତୁ ସେ କେବେହେଲେ କୌଣସି ଇଂରରାଜିମାନଙ୍କର ଆତିଥ୍ୟ ସ୍ୱୀକାର କରୁନଥିଲେ । ତାଙ୍କର ଦେହର ରଙ୍ଗ ସ୍ପେନୀୟମାନଙ୍କ ପରି ଥିଲା । ମୁହଁ ଗୋଲ ଓ ଚକ୍ଷୁ ଦୁଇଟି ବାଘ ପରି ଜଳୁଥିଲା । ବହୁ ସମୟରେ 'କାନପୁର' ବାତାବରଣରୁ ମୁକ୍ତ ରହି ଶାନ୍ତି ଉପଭୋଗ କରିବା ପାଇଁ ଇଂରାଜିମାନେ ସେମାନଙ୍କର ସ୍ତ୍ରୀ ପିଲା ସହ ତାଙ୍କର ଆତିଥ୍ୟ ଗ୍ରହଣ କରୁଥିଲେ ।

'ନାନାସାହେବ' ସେମାନଙ୍କୁ କେବଳ ଆତିଥ୍ୟ ପ୍ରଦାନ କରୁନଥିଲେ ପରନ୍ତୁ ଦାମୀ ଶାଲ ଓ ହୀରା, ମୋତି ଆଦି ମୂଲ୍ୟବାନ ଉପହାର ମଧ୍ୟ ପ୍ରଦାନ କରୁଥିଲେ । 'ନାନାସାହେବ', ଅତିଥି ପରାୟଣତାରେ ଇଂରାଜିମାନଙ୍କ ମଧ୍ୟରେ ଖ୍ୟାତି ଲାଭ କରିଥିଲେ । ସେ ରାଜନୈତିକ ବ୍ୟାପାରରେ ବିଶେଷ ଆଗ୍ରହ ପ୍ରକାଶ କରୁଥିଲେ । ସେ ସୂକ୍ଷ୍ମ ଦୃଷ୍ଟିରେ ସମସ୍ତ ରାଜନୈତିକ ପରିବର୍ତ୍ତନ ଓ ତାହାର ପ୍ରଭାବ ଲକ୍ଷ୍ୟ ଓ ବିଶ୍ଳେଷଣ କରୁଥିଲେ । 'ଟଡ଼'(Tod) ନାମକ ଜଣେ ଇଂରେଜ, ତାଙ୍କୁ ଦୈନିକ ଇଂରାଜି ଖବରକାଗଜ ପଢ଼ି ଶୁଣାଉଥିଲେ । ଏଣୁ ଇଂଲାଣ୍ଡରେ ଘଟୁଥିବା ଘଟଣାବଳୀ ଓ ଆନ୍ତର୍ଜାତିକ କ୍ଷେତ୍ରରେ ଇଂରାଜିମାନଙ୍କର କ୍ରିୟାକଳାପ ବିଷୟରେ ସେ ସମ୍ପୂର୍ଣ୍ଣ ଭାବରେ ଜ୍ଞାତଥିଲେ । ସମସ୍ତ ଘଟଣାର ଅନୁଶୀଳନ କରି ଭରାତକୁ ଇଂରାଜି ଶାସନରୁ ମୁକ୍ତ କରିବାକୁ ହୋଇଥିବା ଷଡ଼ଯନ୍ତ୍ର ଚକ୍ରରେ ସେ ଥିଲେ ମୁଖ୍ୟ ପୁରୋଧା । ପୂର୍ବରୁ, ତାଙ୍କର ଅଜିମୁଲ୍ଲା ଖାଁ ଓ ଭାଇ ବାଳା ସାହେବଙ୍କ ସହିତ ଉତ୍ତର ଭାରତ ତଥା ଦିଲ୍ଲୀ ଭ୍ରମଣର ବିଷୟ ଉଲ୍ଲେଖ କରାଯାଇଛି । ଏହିପରି ନାନା କୌଶଳରେ ସେ ବିଭିନ୍ନ ରାଜ୍ୟ ମୁଖ୍ୟଙ୍କ ସହିତ ଷଡ଼ଯନ୍ତ୍ର ରଚ଼ନାରେ ଭିତରେ ଭିତରେ ଲିପ୍ତ ଥିଲେ ମଧ୍ୟ ଇଂରାଜିମାନେ ତାଙ୍କର ସୌଜନ୍ୟରେ ମୁଗ୍ଧ ହୋଇ ତାଙ୍କୁ ବନ୍ଧୁ ଭାବରେ ଗ୍ରହଣ କରିନେଇଥିଲେ ।

କାନପୁରରେ 'ସୁବେଦାର ଟୀକାସିଂହ'ଙ୍କର ବାସଗୃହ, ଷଡ଼ଯନ୍ତ୍ରକାରୀମାନଙ୍କର ମିଳନସ୍ଥଳୀ ଥିଲା । ସେଠାରେ 'ନାନା'ଙ୍କ ତରଫରୁ ତାଙ୍କର ରାଜପ୍ରାସାଦର ବିଶ୍ୱସ୍ତ କର୍ମଚାରୀ, 'ଜ୍ୱାଳାପ୍ରସାଦ' ଓ 'ମହମ୍ମଦ ଅଲ୍ଲୀ' ଯୋଗଦାନ କରୁଥିଲେ । 'ଟୀକା ସିଂ'ଙ୍କର ସିପାହୀମାନଙ୍କ ଉପରେ ଖୁବ୍ ପ୍ରଭାବ ଥିଲା । ସମସ୍ତେ ତାଙ୍କର ଆଦେଶକୁ ଶିରୋଧାର୍ଯ୍ୟ କରୁଥିଲେ । ମିରଟ୍‌ର ବିଦ୍ରୋହ ପରେ ପରେ 'ନାନାସାହେବ' ଓ 'ଟୀକା ସିଂହ'ଙ୍କର ସାକ୍ଷାତ ଆଲୋଚନା ହୋଇଥିଲା । ଜୁନ୍ ପହିଲା ଦିନ 'ନାନାସାହେବ', 'ଅଜିମୁଲ୍ଲା ଖାଁ' ଓ ତାଙ୍କର ଭାଇ 'ବାଳା ସାହେବ'ଙ୍କ ସହିତ ଗଙ୍ଗାକୂଳକୁ ଆସିଥିଲେ । ସେଠାରେ 'ଟୀକା ସିଂହ'ଗୁପ୍ତ ସଂଗଠନର ଅନ୍ୟାନ୍ୟ ସଦସ୍ୟମାନଙ୍କ ସହ ପୂର୍ବରୁ ଉପସ୍ଥିତ ଥିଲେ । ସମସ୍ତେ ଏକାଠି ବସି ଗଙ୍ଗାନଦୀର ମଧ୍ୟ ଭାଗକୁ ଯାଇଥିଲେ । ସେହିଠାରେ ଗଙ୍ଗାପାଣି ହାତରେ ଧରି ସ୍ୱଧର୍ମ ଓ ସ୍ୱରାଜ୍ୟ ପ୍ରତିଷ୍ଠା କରିବା ପାଇଁ ଜୀବନ ଦେବା ପାଇଁ ସଂକଳ୍ପ ନେଇଥିଲେ । ତାହା ପରେ ପରେ ଦୁଇ ଘଣ୍ଟା କାଳ ଭବିଷ୍ୟତର କାର୍ଯ୍ୟଧାରା ଉପରେ ଆଲୋଚନା ହେବା ପରେ ସମସ୍ତେ କୂଳକୁ ଫେରିଆସିଥିଲେ ।

ସେହିଦିନ 'ଶ୍ୟାମସୁଦ୍ଦିନ', ତାଙ୍କର ପ୍ରେମିକା 'ଆଜିଜାନ'ଙ୍କ ଘରକୁ ଆସି ଭାବବିହ୍ୱଳ ହୋଇ କହିଲେ, ଦୁଇଦିନ ଭିତରେ ଫିରିଙ୍ଗି ରାଜ ଯାଇ ଆମର ରାଜ ଆସିବ ।

ଏହି 'ଅଜିଜାନ', ଜଣେ ସୁନ୍ଦରୀ, କଳାନିପୁଣା ନର୍ତ୍ତକୀ ଥିଲେ । ସେ ଅର୍ଥ ବିନିମୟରେ ନିଜ କଳାକୁ ବିକ୍ରୟ କରୁଥିଲେ । କିନ୍ତୁ ତାଙ୍କର ମଧୁର ବ୍ୟବହାର, ହାସ୍ୟ, ଲାସ୍ୟ, କଟାକ୍ଷ ଓ ନୃତ୍ୟରେ ସେ ସିପାହୀମାନଙ୍କ ହୃଦୟରେ ସ୍ୱଧର୍ମ ଓ ସ୍ୱରାଜ୍ୟ ପାଇଁ ଆତ୍ମବଳୀ ଦେବାର ଭାବ ସୃଷ୍ଟି କରୁଥିଲେ ।

ଚାରି ତାରିଖ ଦିନ ରାତିରେ ୨ୟ ଘୋଡସବାର ବାହିନୀ, ୧ମ ପଦାତିକ ବାହିନୀ ଏବଂ ୫୩ତମ ଓ ୫୬ତମ ପଦାତିକ ବାହିନୀ ଏକ ସଙ୍ଗରେ ବିଦ୍ରୋହ କରି ଇଂରାଜି ଗୃହଦାହ, ଖଜଣାଖାନା ଓ ଇଂରାଜି ମାନଙ୍କ ଅନ୍ୟାନ୍ୟ ସମ୍ପତ୍ତି ଲୁଟ୍ କରିବା ସଙ୍ଗେ ସଙ୍ଗେ ଶସ୍ତ୍ରାଗାରକୁ ମଧ ଦଖଲ କଲେ । 'ଜେନେରାଲ ହ୍ୱିଲର', 'ଆସିଷ୍ଟାଣ୍ଟ କମିଶନର ରିଲେ' (Reley)କୁ ଶସ୍ତ୍ରାଗାର ବିଦ୍ରୋହୀଙ୍କ ହାତରେ ପଡିବା ପୂର୍ବରୁ ତାହାକୁ ଉଡେଇ ଦେବା ପାଇଁ ଆଦେଶ ଦେଇଥିଲେ । କିନ୍ତୁ 'ରିଲେ' ଶେଷ ମୁହୂର୍ତ୍ତରେ ବହୁ ଚେଷ୍ଟା କଲେ ମଧ ସିପାହୀମାନଙ୍କ ଦ୍ୱାରା କାବୁ ହୋଇଯାଇଥିଲେ । ସିପାହୀମାଂନେ ଇଂରାଜି ମାନଙ୍କୁ ଲୁଟ୍ କରିବା ଓ ସରକାରୀ ଅନୁଷ୍ଠାନ ମାନ ଧ୍ୱଂସ କରିବା ଛଡା ସହରର ବିଶେଷ କିଛି କ୍ଷତି କରିନଥିଲେ । ପରେ ପରେ ସମସ୍ତ ସିପାହୀ ନବାବଗଞ୍ଜକୁ ଚାଲିଲେ । ସେଠାରେ ଖଜଣାଖାନା ଲୁଟ୍‌କରି ଶସ୍ତ୍ରାଗାର ଦଖଲ କରି 'ନାନାସାହେବ'ଙ୍କୁ ସେମାନଙ୍କର ନେତୃତ୍ୱ ପ୍ରଦାନ କଲେ ।

ପାଞ୍ଚ ତାରିଖ ଦିନ 'ନାନାସାହେବ'ଙ୍କ ପାଖରେ ତିନି ହଜାର ସିପାହୀ ଏକତ୍ରିତ ହୋଇଥିଲେ । 'ନାନାସାହେବ', ତାଙ୍କର ଭାଇ 'ବାବାସାହେବ' ଓ 'ବାଳା ସାହେବ' ଏବଂ ପୁତୁରା 'ରାଓସାହେବ' ତଥା 'ତାନ୍ତ୍ୟା ଟୋପେ' ଓ 'ଅଜିମୁଲ୍ଲା'ଙ୍କୁ ସାଥିରେ ନେଇ ତିନି ହଜାର ସିପାହୀ ଓ ଅସ୍ତ୍ର ଶସ୍ତ୍ରାଦି ସହ ଦିଲ୍ଲୀ ଅଭିମୁଖେ ଯାତ୍ରା କଲେ । ସମସ୍ତ ସିପାହୀ 'ନାନାସାହେବ'ଙ୍କୁ ରାଜା ରୂପେ ସ୍ୱୀକାର କଲେ ଓ 'ସୁବେଦାର ଟୀକା ସିଂହ' ମଧ ସେମାନଙ୍କ ଦ୍ୱାରା ଜେନେରାଲ ରୂପେ ସ୍ୱୀକୃତ ହେଲେ । ଏହି ବାହିନୀ ବିଶେଷ ଦୂର ଯାତ୍ରା କରିନଥିଲା । 'କାନପୁର' ସହର ଠାରୁ ତିନିକୋଶ ଯାତ୍ରା କରିବା ପରେ 'କଲ୍ୟାଣପୁର'ରେ 'ନାନାସାହେବ'ଙ୍କ ନିର୍ଦ୍ଦେଶରେ ଏହାର ଛାଉଣୀ ପଡିଥିଲା । ଏହିଠାରେ ବିଚାର ପରାମର୍ଶ ହୋଇ 'ନାନାସାହେବ'ଙ୍କର ଅନୁରୋଧ କ୍ରମେ ବାହିନୀ କାନପୁର ଆଡକୁ ଫେରିଆସିଲା ।

ଜୁନ୍ ଛଅତାରିଖ ସକାଳୁ 'ଜେନେରାଲ ହ୍ୱିଲର', 'ନାନାସାହେବ'ଙ୍କ ଠାରୁ ଏକ ଚିଠି ପାଇଲେ । ସେଥିରେ ନାନାସାହେବ ସେମାନଙ୍କୁ ଆକ୍ରମଣ କରିବାକୁ ଯାଉଛନ୍ତି

ବୋଲି ଜଣାଇଥିଲେ । ସବୁ ଅଫିସର ତଥା ସୈନ୍ୟମାନଙ୍କୁ ସତର୍କ ରହିବା ପାଇଁ ନିର୍ଦ୍ଦେଶ ଦିଆଗଲା । ହଜାରେ ଜଣ ବ୍ୟକ୍ତି ନିରାପତ୍ତା ବଳୟ ମଧ୍ୟରେ ଥିଲେ । ସେଥି ମଧ୍ୟରୁ ୨୧୦ଜଣ ଇଂରାଜି ସୈନ୍ୟ, ୧୨୫ଜଣ ଅଣସାମରିକ କର୍ମଚାରୀ ତଥା ଅନ୍ୟମାନେ ଓ ବାକି ସମସ୍ତ କେବଳ ମହିଳା ଓ ଶିଶୁ ଥିଲେ । ଏତଦ୍ ବ୍ୟତୀତ ପଚିଶ, ତିରିଶ ଜଣ ଦେଶୀ ଭୃତ୍ୟ ଓ ଅଳ୍ପ କିଛି ସଂଖ୍ୟକ ବିଶ୍ୱସ୍ତ ସିପାହୀ ମଧ୍ୟ ସେମାନଙ୍କ ସାଙ୍ଗରେ ଥିଲେ । ଏହି ଗୌଣ ସଂଖ୍ୟା ମଧ୍ୟରେ ନିରାପତ୍ତାର ଯୋଜନା କରାଗଲା । ଉତ୍ତର ଦିଗକୁ ରକ୍ଷା କରିବା ପାଇଁ ଏକ ମାଟି ଗଦାର ବଳୟ ଭିତରେ ମେଜର ଭାଇବ୍ରାଟ (Vibrat) ରହିଲେ ଓ କ୍ୟାପଟେନ ଜେନକିନ୍ (Jenkin) ତାଙ୍କ ସହିତ ରହି ସହାୟତା ଦେଲେ । ପଶ୍ଚିମ ଦିଗରେ 'ଲେଫଟ୍‌ନାଣ୍ଟ ଡେମ୍ପଷ୍ଟୋର' (Dempster), 'ଲେଫଟ୍‌ନାଣ୍ଟ ମାର୍ଟିନ' (Martin)ଙ୍କ ସହାୟତାରେ ତିନୋଟି ନଅପାଉଣ୍ଡିଆ ତୋପସହିତ ସଜାଗ ରହିଲେ । ଦକ୍ଷିଣ ଦିଗକୁ 'କ୍ୟାପଟେନ୍ କେମ୍ପ୍ଲାଣ୍ଡ୍'(Kempland) ଜଗିକରି ରହିଲେ । ଦକ୍ଷିଣ ପୂର୍ବ ଦିଗରେ ଏକ ଦଳ ଓ ତିନୋଟି ନଅପାଉଣ୍ଡିଆ ତୋପ ସହିତ 'ଲେଫଟନାଣ୍ଟ ଇକଫୋର୍ଡ' (Eckford), 'ବର୍ଣ୍ଣେ' (Burney), ଓ 'ଡେଲାଫସ୍' (Delafoss) ରହିଲେ । ଉତ୍ତର ପୂର୍ବରେ ଏକ ଦଳସହିତ ଦୁଇଟି ନଅପାଉଣ୍ଡିଆ ତୋପ, ଲେଫଟନାଣ୍ଟ ଆସେ(Ashe) ଓ 'ଲେଫଟନାଣ୍ଟ ଶୋଦେବାଇ' (Sotheby) ଙ୍କ ଅଧିନରେ ସଜାଗ ରହିଲା । ଦକ୍ଷିଣ ଠାରୁ ପଶ୍ଚିମ ପର୍ଯ୍ୟନ୍ତ ମୁକ୍ତ ଭୂମି ଖଣ୍ଡକୁ, 'କ୍ୟାପଟେନ ଟର୍ଣ୍ଣ ବୁଲ' (Turnbull) ନିୟନ୍ତ୍ରିତ କଲେ । ପଶ୍ଚିମ ଦିଗରେ ଏକ ଦଳ ସୈନ୍ୟ ଓ ଏକ ତିନିପାଉଣ୍ଡିଆ ତୋପ ସହିତ 'ମେଜର ପ୍ରାଉଟ' (Prout) ରହିଲେ । ଉତ୍ତର ପଶ୍ଚିମ ଦିଗକୁ 'କ୍ୟାପଟେନ୍ ହ୍ୱାଇଟିଙ୍ଗ' (Whiting) ନିୟନ୍ତ୍ରଣ କଲେ । ସେମାନେ ପରସ୍ପର ପନ୍ଦର ପାଦ ଦୂରରେ ରହିଥିଲେ । ସୈନ୍ୟମାନଙ୍କର ସଂଖ୍ୟା କମ୍ ଥିବାରୁ ଅଣସାମରିକ କର୍ମଚାରୀମାନଙ୍କୁ କାର୍ଯ୍ୟରେ ନିୟୋଜିତ କରାଗଲା । ପ୍ରତିବ୍ୟକ୍ତିଙ୍କୁ ଆପଦକାଳରେ ମୁକାବିଲା ପାଇଁ ତିନୋଟି ଲେଖାଏଁ ସଙ୍ଗୀନ ଯୁକ୍ତ ବନ୍ଧୁକ ଓ ପ୍ରଚୁର ଗୁଳି ଯୋଗାଇଦିଆଯାଇଥିଲା । ନିରାପତ୍ତା ପାଇଁ ଆଲ୍ଲାହାବାଦ ରୋଡ ପାଖରେ ଥିବା ଅଧାତିଆରି ବ୍ୟାରାକ୍ ଗୁଡିକୁ ମଧ୍ୟ ଦଖଲକୁ ଆଣିବାର ବିଚାର କରାଗଲା । ସେହିପରି ସାତୋଟି ବ୍ୟାରାକ୍ ଥିଲା । ତହିଁ ମଧ୍ୟରୁ ୪ନମ୍ବର ବ୍ୟାରାକରେ ସାମୟିକ ଛାତ ପଡିଥିଲା । ଏହି ୪ନମ୍ବର ବ୍ୟାରାକକୁ ଦଖଲ ନେଇ ସେଠାରେ ଏକ ଦଳ ସୈନ୍ୟଙ୍କୁ ମୁତୟନ କରାଗଲା । ପରଦିନ ସକାଳୁ ଦୂରରେ ଧୂଆଁ ଦେଖାଗଲା । ଜଣାଗଲା କାନପୁର ସହରର ନିଆଁ ଜଳୁଛି । 'ଲେଫଟନାଣ୍ଟ ଆସେ', କୋଡିଏ ତିରିଶ ଜଣ ସ୍ୱେଚ୍ଛାସେବକଙ୍କୁ ନେଇ ଶତ୍ରୁ ମାନଙ୍କର ଗତିବିଧି

ନିରୀକ୍ଷଣ କରିବାକୁ ବାହାରକୁ ଆସିଲେ । ସେ ପ୍ରାୟ ପାଞ୍ଚଶହ ଗଜ ଯାଇଛନ୍ତି, ହଠାତ୍ ଏକ ସିପାହୀ ଦଳ ସେମାନଙ୍କ ଆଡକୁ ଆସୁଥିବାର ଦେଖିବାକୁ ପାଇଲେ । ଅଗତ୍ୟା ତା'ଙ୍କୁ ଫେରିଆସିବାକୁ ପଡିଲା ।

ଠିକ୍ ସାଢେଦଶଟା ବେଳକୁ ନାନାସାହେବଙ୍କର ବାହିନୀ, ଟ୍ରେଞ୍ଚ ଉପରେ ତୋପରୁ ଗୋଳାବର୍ଷଣ କରିବାକୁ ଲାଗିଲେ । ଏହା ପୂର୍ବରୁ 'କାନପୁର' ସହରରେ ଇଂରାଜି ଗୃହଦାହ ଓ ଲୁଟ୍‌ତରାଜ ହୋଇଯାଇଥିଲା ।ଏପରିକି ଯେଉଁମାନେ ଇଂରାଜି ବା ଖ୍ରୀଷ୍ଟିଆନ୍‌ମାନଙ୍କୁ ସାହାଯ୍ୟ ଦେଖାଇଲେ ବା ସେମାନଙ୍କ ପ୍ରତି ସହାନୁଭୂତି ଦେଖାଇଲେ ସେମାନଙ୍କର ଘର ମଧ୍ୟ ଲୁଟ୍ ହୋଇଯାଇଥିଲା । 'ବାହୀର ଅଲ୍ଲୀ' ଏବଂ 'ନବାବ ଆଗାମୀର'ଙ୍କର କିଛି ପୁତ୍ରଙ୍କର ଘର ଲୁଟ୍ କରାଗଲା । କଣ୍ଠୌର ପୂର୍ବତନ ଦାରୋଗା 'ଅଜିମ୍ ଅଲି' ଅତ୍ୟନ୍ତ ଧନୀଥିଲେ । ତାଙ୍କୁ ବନ୍ଦୀ କରି 'ନାନାସାହେବ'ଙ୍କ ସମ୍ମୁଖକୁ ଅଣାଗଲା । ସେ ଲକ୍ଷେ ଟଙ୍କା ଦେବା ପରେ ଖଲାସ ହେଲେ । 'ଅଲି ଖାଁ' ବା 'ନାନେ ନବାବ'ଙ୍କର ଘର ମଧ୍ୟ ଅନୁରୂପ ଲୁଟ୍ ହେଲା ଓ ତାଙ୍କୁ ବନ୍ଦୀ କରାଗଲା, କିଛି ଘଣ୍ଟା ପରେ ସେ 'ନାନାସାହେବ'ଙ୍କ ସହିତ ଯୋଗଦେବାରୁ ତାଙ୍କୁ ମୁକ୍ତ କରାଗଲା । ତାଙ୍କୁ ଏକ ଦଳର ଅଧିନାୟକତ୍ୱ ପ୍ରଦାନ କରାଗଲା । ପ୍ରାଣ ଭୟରେ କିଛି ଇଂରାଜି ମୁସଲମାନ ହୋଇଗଲେ ଓ କିଛି ଦେଶୀ ପୋଷାକ ପିନ୍ଧି ଖସି ପଳାଇବାକୁ ଚେଷ୍ଟା କଲା ବେଳେ ଧରାପଡି ପ୍ରାଣ ଦେଲେ । ଲୁଚିଥିବା ଇଂରାଜିମାନଙ୍କୁ ଖୋଜି ଖୋଜି ଲୋକମାନେ ହତ୍ୟା କଲେ । ଡଙ୍ଗା ପୋଲର ସୁପରିନ୍‌ଟେଣ୍ଡେଣ୍ଟ 'ଗ୍ରୀନ୍', ଖସି ପଳାଇବାକୁ ଚେଷ୍ଟା କଲାବେଳେ ଧରାପଡି ପ୍ରାଣ ଦେଲେ । 'ଦି ଗାମା' ନାମକ ଜଣେ ବ୍ୟବସାୟୀ 'ନାନା'ଙ୍କୁ ଜିନିଷ ବିକୁଥିବାରୁ ନିଶ୍ଚିନ୍ତରେ ନିଜ ଦୋକାନରେ ବସିଥିଲେ । କିନ୍ତୁ ତାଙ୍କୁ ବନ୍ଦୀ କରାଗଲା ଓ 'ନାନା'ଙ୍କର ଆଦେଶରେ ଟିକି ଟିକି କରି କାଟି ଦିଆଗଲା । ସେହିପରି 'ହେନେରୀ ଜାକୋବି' ନାମକ ଜଣେ ଘଣ୍ଟା ଦୋକାନୀ ଲୁଚି ପଳାଉଥିବା ବେଳେ ଅତ୍ୟଧିକ ଖରା ସହିନପାରି ପ୍ରାଣ ହରାଇଥିଲେ । କେତେକ ସ୍ଥାନରେ ଆକ୍ରମଣର ମୁକାବିଲା କରିବାକୁ ମଧ୍ୟ ଚେଷ୍ଟା କରାଯାଇଥିଲା । 'ଜେନେରାଲଗଞ୍ଜ' ପାଖରେ କିଛି ଭାରତୀୟ ଖ୍ରୀଷ୍ଟିଆନ୍ ଅସ୍ତ୍ରରେ ଆକ୍ରମଣର ପ୍ରତିରୋଧ କରିବାକୁ ଚେଷ୍ଟା କରୁଥିବା ବେଳେ ସେମାନଙ୍କର ଘରେ ନିଆଁ ଲଗାଇଦିଆଗଲା । ଫଳରେ ସମସ୍ତେ ପୋଡି ହୋଇ ମଲେ । 'ଗ୍ରୀନୱେ' ପରିବାର ବିରାଟ ବ୍ୟବସାୟୀ ଥିଲେ । ସେମାନେ 'କାନପୁର' ଠାରୁ ଷାଠିଏ ମାଇଲ ଦୂର 'ନଜଫଗଡ'ରେ ରହୁଥିଲେ । ତାଙ୍କୁ ରକ୍ଷା କରିବାକୁ ଚେଷ୍ଟା କରୁଥିବା ତାଙ୍କର ବନ୍ଧୁ 'ହଲିଙ୍ଗ୍‌ସ'ଙ୍କୁ (Hollings) ହତ୍ୟାକରାଗଲା ଓ 'ଗ୍ରୀନୱେ' ପରିବାରକୁ ବନ୍ଦୀ କରାଗଲା ।

'ନାନକଚାନ୍ଦ' ନାମକ ଜଣେ ଇଂରାଜି ଗୁପ୍ତଚରକୁ ବନ୍ଦୀ କରିବାକୁ ଆଦେଶ ଦିଆଗଲା । କିନ୍ତୁ ସେ ପୂର୍ବରୁ ଜାଣିପାରି ଆତ୍ମଗୋପନ କରି ପଳାୟନ କଲା । ଇଂରାଜି ମାନଙ୍କ ପ୍ରତି ସହାନୁଭୂତିଶୀଳ ଥିବା ସେମାନଙ୍କ ଦ୍ୱାରା ନିଯୁକ୍ତ ବଙ୍ଗୀୟ କିରାଣୀ ଦଳ (୧୫୦ଜଣ) ଆତ୍ମରକ୍ଷା କରି ପଳାୟନ କରୁଥିବା ସମୟରେ ରାସ୍ତାରେ ସେମାନଙ୍କୁ ଲୁଟ୍ କରାଗଲା ।

ବର୍ତ୍ତମାନ 'ନାନାସାହେବ'ଙ୍କ ପକ୍ଷରେ ବ୍ରେଞ୍ଚ ଅଧିକାର କରିବା ଏକ ସମସ୍ୟାଥିଲା । ସେ ପ୍ରଥମ ଦିନ ବ୍ରେଞ୍ଚ ଉପରକୁ ଗୋଳା ବର୍ଷଣ ପାଇଁ ଆଦେଶ ଦେଇଥିଲେ । ସେ ଅଧିକା ତୋପ ମଧ ମଗାଇଲେ । ତନ୍ମଧ୍ୟରୁ ଦୁଇଟି ବଡ ଅଠର ପାଉଣ୍ଡିଆ ତୋପଥିଲା ଓ ଅନ୍ୟ ସବୁ ଛୋଟ ତୋପଥିଲା । ଦିନରାତି ସର୍ବଗ୍ରାସୀ ଅଗ୍ନି ଜଳିବାକୁ ଲାଗିଲା । କିଛି ଘଣ୍ଟା ମଧ୍ୟରେ ଇଂରାଜିମାନେ ଆତ୍ମସମର୍ପଣ କରିବେ ବୋଲି ଆଶାକରାଗଲା । 'ନାନାସାହେବ', ବ୍ରେଞ୍ଚ ଦଖଲ ପୂର୍ବରୁ ଘୋଡାପିଠିରୁ ଓହ୍ଲାଇବେ ନାହିଁ ବୋଲି ସ୍ଥିର କଲେ । କିନ୍ତୁ ଅପରାହ୍ନରେ ସେ ଆଶା ତ୍ୟାଗ କଲେ ଓ ସାରା ରାତି ତାଙ୍କର ବାହିନୀ ସହିତ ଗୋଟାଏ ଗାଲିଚାରେ ଶୋଇ ବିତାଇଦେଲେ । ତାପର ଦିନ ସେ 'ଡନକାନ'ଙ୍କର ହୋଟେଲକୁ ଗଲେ ଓ କିଛି ଦିନ ପରେ ନିଜର ମୁଖ୍ୟ କାର୍ଯ୍ୟାଳୟ ଅନ୍ୟଜାଗାକୁ ସ୍ଥାନାନ୍ତରିତ କଲେ । 'ନାନା' ନିଜର ଆକ୍ରମଣାତ୍ମକ ଦଳକୁ ଚାରେଟି ଦିଗରେ ସଜାଇ ରଖିଲେ । ଏକ ଦଳ ଇଂରାଜିମାନଙ୍କ ବ୍ରେଞ୍ଚର ଉତ୍ତରରେ ଥିବା ରାକେଟ କୋର୍ଟରେ ଥିଲା । ଅନ୍ୟ ଏକ ଦଳ ଘୋଡସବାର ବାହିନୀର ପ୍ୟାରେଡ ପଡିଆରେ ଥିଲା । ଏକ ଦଳ 'ଦାଲାନଲା' ପାଖରେ ଅବସ୍ଥାପିତ ଥିଲା ଓ ଅନ୍ୟ ଦଳ ମୁଖ୍ୟ କାର୍ଯ୍ୟାଳୟର ଦକ୍ଷିଣ ଦିଗରେ ଥିଲା । 'ନାନା' ବ୍ୟକ୍ତିଗତ ଭାବରେ ଏକ ଦଳର ଅଧିନାୟକତ୍ୱ ଗ୍ରହଣ କରିଥିଲେ । 'ବାବୁ ଅଲି', 'ନାନେ ନବାବ' ପ୍ରଭୃତି ଅନ୍ୟ ଦଳ ମାନଙ୍କର ଦାୟିତ୍ୱରେ ଥିଲେ । ତୋପଚଳାଇବା ପାଇଁ ଲୋକ ଅଭାବ ପଡିଲେ ନାହିଁ କାରଣ ପୁରାତନ ପେନ୍‌ସନ୍‌ଭୋଗୀ କର୍ମଚାରୀମାନେ ଆସି ସ୍ୱତଃ ପ୍ରବୃତ୍ତ ଭାବରେ 'ନାନାସାହେବ'ଙ୍କ ସହିତ ଯୋଗଦାନ କଲେ ।

ଛଅ ତାରିଖ ଦିନ 'ନାନାସାହେବ'ଙ୍କ ଦଳରୁ ଗୋଳାବର୍ଷଣ ହେଲେ ମଧ ସେମାନେ ଉପଯୁକ୍ତ ଭାବରେ ପ୍ରସ୍ତୁତ ହୋଇ ନଥିଲେ । ଏଣୁ ଗୋଳା ଗୁଡିକ ଲକ୍ଷ୍ୟ ସ୍ଥଳ ସ୍ପର୍ଶ କରିପାରି ନଥିଲା । ତୋପଗୁଡିକ ଖୁବ୍ ବଡ ଥିଲା ଓ ଲକ୍ଷ୍ୟକରି ଗୋଳା ବର୍ଷଣ କରିବା ଦୁରୂହ ବ୍ୟାପାର ଥିଲା । ଅଳ୍ପ କିଛି ଗୋଳା ବ୍ୟାରକକୁ ସ୍ପର୍ଶ କରିଥିଲା ।

'ସେଫାର୍ଡ' ତାଙ୍କର ଅନୁଭୂତି ବର୍ଣ୍ଣନା କରି କହିଛନ୍ତି ଯେ ପ୍ରଥମ ଦିନ ଗୋଳା ପଡି ବ୍ୟାରାକରେ ସ୍ଥାନେ ସ୍ଥାନେ କ୍ଷତ ସୃଷ୍ଟି କରିବା ଫଳରେ ବ୍ରେଞ୍ଚରେ ସମସ୍ତେ ଅତ୍ୟନ୍ତ

ଭୟଭୀତ ହୋଇପଡିଥିଲେ । ଏପରିକି ଦିନେ ପହରାରେ ଥିବା 'ସେଫାର୍ଡ, ଆବିଶ୍ରାନ୍ତ ଗୋଳାବର୍ଷଣ ଫଳରେ ନିଜ ପରିବାର ସହ ଖାଇବାକୁ ସମୟ ନପାଇ ସାରା ଦିନ ଓପାସରେ ରହିଥିଲେ । ରାତ୍ରିର ବିଳମ୍ବିତ ପ୍ରହରରେ ଏକ କଳାବସ୍ତୁ ଟ୍ରେଞ୍ଚ ଆଡକୁ ଆଗେଇଆସୁଥିବାର ଲକ୍ଷ କରାଗଲା ଓ ରକ୍ଷୀ ଗୁଳି କରିବା ଫଳରେ ସେ ପଳାଇଗଲା । ପରେ ଜଣା ପଡିଲା, ତାହା ଏକ ବୁଲା ଗାଈଥିଲା । ଜ୍ୟୋତ୍ସ୍ନା ବିଧୌତ ରାତ୍ରିର କିରଣ, ଦୂରରେ ଥିବା ସିପାହୀମାନଙ୍କର ସଙ୍ଗୀନ ମୁନରେ ପ୍ରତିଫଳିତ ହୋଇ ଚକ୍ ଚକ୍ କରୁଥିଲା । ଆକ୍ରମଣର ଆଶଙ୍କାରେ ସମସ୍ତେ ଉଦ୍‌ବିଗ୍ନ ହୋଇଗଲେ । କିନ୍ତୁ କିଛି ସମୟ ପରେ ସିପାହୀ ଦଳଟି ଦେଖିବାକୁ ମିଳିଲେ ନାହିଁ । ପ୍ରଥମ ରାତ୍ରିରେ କୌଣସି ଗୁରୁତ୍ୱ ପୂର୍ଣ୍ଣ ଘଟଣା ଘଟି ନଥିଲେ ମଧ୍ୟ ତା'ପର ଦିନ ଟ୍ରେଞ୍ଚର ଚଉଦିଗରେ କଡାକଡି ପହରାର ବ୍ୟବସ୍ଥା କରାଗଲା । ଦୁଇଟି ଅଧାତିଆରି ବ୍ୟାରାକ୍‌ରେ ରହୁଥିବା ବ୍ୟକ୍ତିଗଣ ପ୍ରବଳ ଗୋଳାବର୍ଷଣର ସମ୍ମୁଖୀନ ହେଉଥିଲେ । ଶତ୍ରୁମାନଙ୍କୁ ଲକ୍ଷ୍ୟ କରିବା ପାଇଁ, କୋଡିଏ ଫୁଟ ଉଚ୍ଚତାର ଏକ ପକ୍ଷୀ ବସାପରି ନିରୀକ୍ଷଣ ସ୍ଥାନ ତିଆରି ହେଲା । ଆକ୍ରମଣର ଜବାବ ଟ୍ରେଞ୍ଚ ଭିତରୁ ଦିଆଯାଉଥିଲା । ଏହି ସମୟରେ ସହର ମଧ୍ୟରେ ହିନ୍ଦୁ ଓ ମୁସଲମାନ ମାନେ ଏକତ୍ର ହୋଇ ଇଂରାଜି ମାନଙ୍କୁ ଆକ୍ରମଣ କରିବା ପାଇଁ ଘୋଷଣା ପତ୍ର ବଣ୍ଟାଯାଉଥିଲା ।

ଜୁନ୍ ନଅ ତାରିଖ ଦିନ ଆକ୍ରମଣର ତୃତୀୟ ଦିବସ ଥିଲା । ମୁସଲମାନମାନଙ୍କୁ ସଜାଗ କରିବା ପାଇଁ ଦୁଇଟି ସବୁଜ ପତାକା ଉଡେଇ ଦିଆଗଲା । ଗୋଟିଏ ପତାକା ଘାତକମାନଙ୍କ ଦ୍ୱାରା ଉଡାଯାଇଥିଲା । ଏହି ପତାକା ତଳେ ଦୁଇତିନି ହଜାର ସଶସ୍ତ୍ର ବ୍ୟକ୍ତି ଛିଡା ହୋଇଥିଲେ । ଏହା ସହିତ ସହରର 'କାଜୀ ଓ୍ୱାଇସୁଦ୍ଦିନ'ଙ୍କ ସହ ୨ୟ ଘୋଡସବାର ବାହିନୀର କିଛି ସିପାହୀ ଥିଲେ । ହିନ୍ଦୁମାନଙ୍କର ଏକ ମହାବୀର ଝଣ୍ଡା ମଧ୍ୟ ବିଦ୍ରୋହର ଡାକରା ଦେଇ ଉଡାଇଦିଆଗଲା ।

ଚତୁର୍ଦ୍ଦିଗରେ ଡେଙ୍ଗୁରା ଦ୍ୱାରା ପେଶବା ଶାସନର ଘୋଷଣା କରାଗଲା । ଏକ କ୍ଷୁଦ୍ର ଦଳ ସିପାହୀ, ଏହି ଖବର 'ବିଠୁର'କୁ ନେଇ ଚାଲିଲେ । 'ନାନାସାହେବ'ଙ୍କର ଏକ କ୍ଷୁଦ୍ର ପରାମର୍ଶ ଦାତା କାଉନ୍‌ସିଲ ଥିଲା । ସେଥିରେ 'ନାନାସାହେବ', 'ବାବା ଭଟ୍ଟ', 'ଅଜିମୁଲ୍ଲା' ଓ ଅନ୍ୟମାନେ ଥିଲେ । 'ସୁବେଦାର ଟୀକା ସିଂହ'ଙ୍କୁ ଜେନେରାଲ କରି, ସମଗ୍ର ସେନାର ଦାୟିତ୍ୱ ଦିଆଗଲା । 'ଜ୍ୱାଳା ପ୍ରସାଦ'ଙ୍କୁ ବ୍ରିଗେଡିୟର ରୂପେ ନିଯୁକ୍ତି ଦିଆଗଲା । ଚାରି ସପ୍ତାହ ପରେ, ସେମାନଙ୍କର ଚାକିରୀ ସର୍ତ୍ତାବଳୀ, ଦରମା ଓ କ୍ଷତି ପୂରଣ ଭରଣାର ସମସ୍ତ ସର୍ତ୍ତାବଳୀ ଜଣାଇ ଦିଆଗଲା । ପ୍ରତ୍ୟେକ ବିଭାଗର

ସୈନ୍ୟମାନଙ୍କୁ ଏକ ପୁରୁଷ ପର୍ଯ୍ୟନ୍ତ ପେନ୍‌ସନ୍ ଦେବାର ବ୍ୟବସ୍ଥା କରାଗଲା । ଆହତ ହୋଇଥିବା ଅକ୍ଷମ ସୈନ୍ୟଙ୍କୁ ସାରା ଜୀବନ ପେନ୍‌ସନ୍ ଦେବାର ବ୍ୟବସ୍ଥାମଧ୍ୟ କରାଗଲା । ଦିଲ୍ଲୀରେ ଦିଆଯାଉଥିବା ଦରମା ଅନୁସାରେ ଏଠାରେ ଦରମାର ହାର ନିର୍ଦ୍ଧାରଣ କରାଗଲା ।

ସୈନ୍ୟ ବାହିନୀର ପରିଚାଳନା ଓ ସଂଗଠନ ସମ୍ବନ୍ଧୀୟ ଆହୁରି ଏକ ଘୋଷଣାନାମା ପ୍ରକାଶ ପାଇଲା । ଏହି ଘୋଷଣା ନାମା ଅନୁସାରେ ପ୍ରତି ପଦାତିକ, ଘୋଡସବାର ବା ଅନ୍ୟାନ୍ୟ ବାହିନୀରେ, ଜଣେ ଲେଖାଏଁ କର୍ଣ୍ଣେଲ, କମାଣ୍ଡିଂ ଅଫିସର ରୂପେ ରହିବେ ଏବଂ ଜଣେ ଆଡଜୁଟାଣ୍ଟ ରହିବେ । ସଂଗଠନର ସମସ୍ତ ଦାୟିତ୍ୱ କର୍ଣ୍ଣେଲଙ୍କ ଉପରେ ରହିବ । ମେଜର, ସବୁ କାର୍ଯ୍ୟରେ କର୍ଣ୍ଣେଲଙ୍କୁ ସହାୟତା କରିବେ ଓ ତାଙ୍କର ଅନୁପସ୍ଥିତିରେ କମାଣ୍ଡର ଦାୟିତ୍ୱ ନେବେ । ଆଡଜୁଟାଣ୍ଟ ଜଣକ ସାମରିକ ବ୍ୟାୟାମ ଓ ଆକ୍ରମଣ ଓ ଏହା ସହିତ ନିର୍ଦ୍ଦେଶ ଅନୁସାରେ ଅନ୍ୟାନ୍ୟ ଦାୟିତ୍ୱରେ ମଧ୍ୟ ରହିବେ । ସେ କ୍ୱାଟର ମାଷ୍ଟର ଅଫିସର ରେକର୍ଡ ଓ ଶସ୍ତ୍ରାଗାର ଦାୟିତ୍ୱରେ ମଧ୍ୟ ରହିବେ । ପ୍ରତି କମ୍ପାନୀର ସୁବେଦାରଙ୍କୁ ମାସିକ ପଚାଶ ଟଙ୍କା ଲେଖାଏଁ ଦିଆଯିବ । ତହିଁରୁ ତିରିଶ ଟଙ୍କା ସେ କମାଣ୍ଡ ଦେଉଥିବା ବ୍ୟକ୍ତିଙ୍କୁ ଦେବେ ଓ ଅବଶିଷ୍ଟ କୋଡିଏ ଟଙ୍କା ମୋଚି, କମାର, ବଢେଇ ଆଦିଙ୍କ ପିଛା ଖର୍ଚ୍ଚ କରାଯିବ । ପ୍ରତି ରେଜିମେଣ୍ଟରେ ଆଡଜୁଟାଣ୍ଟଙ୍କ ଅଧିନରେ ଜଣେ ମୁନସୀ ଓ ଦୁଇଜଣ ଆସିଷ୍ଟାଣ୍ଟ ରହିବେ । ସେମାନେ ହିସାବପତ୍ର ରଖିବା ସଙ୍ଗେ ସଙ୍ଗେ ମାସିକ ଦରମାର ଖସଡା ଓ ସୈନିକମାନଙ୍କ ଉପସ୍ଥାନ ଆଦିର ରେକର୍ଡ ରଖିବେ । କୋର୍ଟମାର୍ଶାଲର ରେକର୍ଡ କରିବା ପ୍ରଣାଳୀ ମଧ୍ୟ ଘୋଷଣାନାମାରେ ଥିଲା । ମୁଖ୍ୟ ମୁନସୀ, ଆପତ୍ତିକାରୀଙ୍କର ଆପତ୍ତି ଓ ସାକ୍ଷୀମାନଙ୍କର ଜମାନବନ୍ଦୀର ରେକର୍ଡ ରଖିବେ । ରାୟରେ ସଂପୃକ୍ତ ଅଫିସରଙ୍କର ଦସ୍ତଖତ ଆଣି ତାହାକୁ କମାଣ୍ଡିଂ ଅଫିସରଙ୍କ ପାଖକୁ ପଠାଇବା ତାଙ୍କର କର୍ତ୍ତବ୍ୟର ପରିସର ମଧ୍ୟରେ ଥିଲା ।

ନୂତନ ସରକାର, ସହରରେ ଶାନ୍ତିଶୃଙ୍ଖଳା ଫେରାଇ ଆଣି ନାଗରିକମାନଙ୍କର ଜୀବନଯାତ୍ରାକୁ ସ୍ୱାଭାବିକ କରିବା ପାଇଁ ସର୍ବ ପ୍ରଥମେ ପ୍ରଯନ୍ ଆରମ୍ଭ କଲା । 'କାନପୁର'ରେ ଏକ ସୁପ୍ରିମକୋର୍ଟ ପ୍ରତିଷ୍ଠିତ ହେଲା । 'ବାବାଭଟ୍ଟ'ଙ୍କୁ ବିଚାର ବିଭାଗର ମୁଖ୍ୟ ରୂପେ ନିଯୁକ୍ତି ଦିଆଗଲା । ସେ, 'କାନପୁର'ରେ ଥିବା ପୋଷ୍ଟଅଫିସ ହତା ଭିତରେ ଏକ କ୍ଷୁଦ୍ର ପ୍ରକୋଷ୍ଠରେ ଏକ ବିଲିଆର୍ଡ ଟେବୁଲ ପକାଇ କୋର୍ଟ ଆରମ୍ଭ କଲେ । 'ବାଳା ଭଟ୍ଟ', 'ଅଜିମୁଲ୍ଲା' ଓ 'ଜ୍ୱାଳା ପ୍ରସାଦ'ଙ୍କୁ ଅନ୍ୟ ବିଚାରପତି ଭାବରେ ନିଯୁକ୍ତି ଦିଆଗଲା । ଏକ ନିମ୍ନ କୋର୍ଟ ମଧ୍ୟ 'ବାଳା ଭଟ୍ଟ'ଙ୍କର ସହକାରୀ 'ରାମଲାଲ'ଙ୍କ ଦ୍ୱାରା ବସୁଥିଲା ।

କିନ୍ତୁ କଟୁଆଳ ନିଯୁକ୍ତିରେ ଅସୁବିଧା ଦେଖାଗଲା । କଟୁଆଳର କାର୍ଯ୍ୟ ଥିଲା ସହରରେ ଶାନ୍ତି ଶୃଙ୍ଖଳା ରକ୍ଷାକରିବା ଓ ସୈନ୍ୟ ବାହିନୀକୁ ଆବଶ୍ୟକୀୟ ଦ୍ରବ୍ୟ ସାମଗ୍ରୀ ଯୋଗାଇବା । କମ୍ପାନୀ ଦ୍ୱାରା ନିଯୁକ୍ତ କଟୁଆଳ 'ଶେରଅଲି', ଜୁନ ସାତତାରିଖରେ ପଳାୟନ କରିଥିଲା । ତାଙ୍କ ସ୍ଥାନରେ 'କାଜି ୱାସିଉଦ୍ଦିନ'ଙ୍କୁ ନିଯୁକ୍ତ କରାଗଲା । ଜୁନ୍ ଆଠ ତାରିଖରେ ତାଙ୍କୁ ଘୋଡାଚଢି ଅନୁଚରମାନଙ୍କ ସହିତ ବୁଲୁଥିବା ଦେଖାଗଲା, କିନ୍ତୁ ତା'ପର ଦିନ ତାଙ୍କର କାର୍ଯ୍ୟକାଳ ପୂର୍ଣ୍ଣ ହେଲା ଓ 'ହାଜି ଖାନୁମ୍'ଙ୍କର ପୁତ୍ରକୁ କଟୁଆଳରୂପେ ନିଯୁକ୍ତି ଦିଆଗଲା । ସେ ଏପରି କୌଣସି ଗୁରୁତ୍ୱପୂର୍ଣ୍ଣ ଲୋକ ନଥିଲେ ଓ ସାଧାରଣ ଲୋକମାନେ ତାଙ୍କୁ ନାଆଁ ଧରି ଡାକୁଥିଲେ । ସେ ଦୁଇ ତିନି ଦିନ ଏହି ପଦବୀରେ ରହିଲେ । ଜୁନ୍ ଦଶ ତାରିଖରେ 'ହୁଲା ସିଂହ' କଟୁଆଳ ରୂପେ ନିଯୁକ୍ତି ପାଇଲେ । 'ହୁଲା ସିଂହ'ଙ୍କ ପାଇଁ ଏହି ପଦବୀ ନୂଆ ନଥିଲା । ସେ ଅଭିଜ୍ଞ ଥିଲେ । ପୂର୍ବରୁ ସେ 'ତହସୁର' ଥାନାରେ କାମ କରୁଥିଲେ, କିନ୍ତୁ ସିପାହୀ ବିଦ୍ରୋହ ଆରମ୍ଭର କିଛି ଦିନ ପୂର୍ବରୁ ତାଙ୍କୁ ଚାକିରୀରୁ ସସ୍‌ପେଣ୍ଡ କରାଯାଇଥିଲା । ସେ ପରବର୍ତ୍ତୀ କାଳରେ ଜେନେରାଲ 'ହାଭଲକ୍' କାନପୁର ଦଖଲ କରିବା ପର୍ଯ୍ୟନ୍ତ, ଉକ୍ତ ସହରରେ କଟୁଆଳ ରୂପେ କାର୍ଯ୍ୟ ପରିଚାଳନା କରିଥିଲେ । 'ହୁଲା ସିଂହ', କଟୁଆଳ ରୂପେ ନିଯୁକ୍ତ ହେବା ପରେ ପରେ, ବ୍ୟବସାୟୀମାନଙ୍କୁ ଲୁଟ୍ ତରାଜରୁ ନିରାପଦରେ ରଖିବା ପାଇଁ ଆଶ୍ୱାସନା ଦେଲେ । ସେ ଏହି ବ୍ୟବସାୟୀମାନଙ୍କୁ ନେଇ ବାହିନୀକୁ ସାମଗ୍ରୀ ଯୋଗାଇ ଦେବା ନିମିତ୍ତ ଏକ ପଞ୍ଚାୟତ ଗଠନ କଲେ । 'ହୁଲା ସିଂହ'ଙ୍କୁ ସହାୟତା କରିବା ନିମିତ୍ତ ତଥା ଦ୍ରବ୍ୟାଦି ଯୋଗାଣ ନିମିତ୍ତ, 'ନାନାସାହେବ' ଏକ ସୁପରିଟେଣ୍ଡେଣ୍ଟ ନିଯୁକ୍ତ କଲେ । ଶାନ୍ତିଶୃଙ୍ଖଳା ରକ୍ଷା କରିବା ଦିଗରେ ସହାୟତା କରିବା ପାଇଁ ତାଙ୍କ ସହିତ 'ମୋତିରାମ' ଓ 'ଖାତିରାମ' ନାମକ ଦୁଇଜଣ ଚଉଧୁରୀ ରହିଲେ । ସେମାନେ ଶାନ୍ତିଶୃଙ୍ଖଳା ରକ୍ଷା କରିବା ସହ ସେନାକୁ ଯୋଗାଇବା ପାଇଁ ଗନ୍ଧକ ଓ ବାରୁଦ ତିଆରି ପାଇଁ ଅନ୍ୟାନ୍ୟ ଉପକରଣ ତଥା ଆବଶ୍ୟକୀୟ କାଠ ଓ ଅନ୍ୟାନ୍ୟ ଦ୍ରବ୍ୟାଦି ସଂଗ୍ରହ କରିବାକୁ ଲାଗିଲେ । 'ନାନାସାହେବ'ଙ୍କ ବାହିନୀରେ ପ୍ରତି ସିପାହୀର ଦରମା ସାତଟଙ୍କା, ହାବିଲଦାରର ଆଠ ଟଙ୍କା, ଜମାଦାରର ପନ୍ଦର ଟଙ୍କା, ସୁବେଦାରର ପଇଁତିରିଶ ଟଙ୍କା ଥିଲା । ଘୋଡସବାର ବାହିନୀ ସୈନ୍ୟର ମାସିକ ଦରମା ଶହେଟଙ୍କା ଥିଲା । ଏହାଛଡା, ହରକରା ଓ ଚପରାଶୀର ଦରମା ଥିଲା ମାସକୁ ଛଅ ଟଙ୍କା । ନାନାସାହେବ, ନିଜ ରାଜ୍ୟକୁ କେତେକ ସୁବାରେ ବିଭକ୍ତ କରି ପ୍ରତି ସୁବାରୁ ଦେଢକୋଟି ଟଙ୍କା ଖଜଣା ପାଇବାର ବନ୍ଦୋବସ୍ତ କରିଥିଲେ । ସେ ଗାଏ ମୋଟ ବାର୍ଷିକ ପଚିଶ କୋଟି ଟଙ୍କା ଖଜଣା ପାଇବାର ଅଟକଳ

କରିଥିଲେ । ଦରବାରରେ ଯୋଗ୍ୟତା ଅନୁସାରେ ସମସ୍ତଙ୍କର ବସିବା ସ୍ଥାନ ମଧ୍ୟ ନିରୂପିତ ହୋଇଥିଲା । ସିଂହାସନର ଦକ୍ଷିଣ ଦିଗରେ ଜ୍ୟୋତିଷ, ଧର୍ମଶାସ୍ତ୍ରବିତ୍ ଓ ପୁରୋହିତମାନେ ବସୁଥିଲେ ଓ ତାହାପରେ ବିଭିନ୍ନ ସୁବାର ଗଭର୍ଣ୍ଣରମାନେ ବସୁଥିଲେ ଓ ତାହାପରେ କ୍ରମାନ୍ୱୟରେ କଟୁଆଳ ଏବଂ ବିଦେଶୀ ରାଷ୍ଟ୍ରର ଦୂତ ତଥା ସ୍ୱଦେଶ ରାଜ୍ୟ ପ୍ରତିନିଧିମାନେ ବସୁଥିଲେ । ସେହିପରି ବାମଦିଗରେ ପ୍ରଥମେ ପ୍ରଧାନମନ୍ତ୍ରୀ ବସୁଥିଲେ ଏବଂ ତାଙ୍କପରେ ରାଜ୍ୟର ମୁଖ୍ୟ ଅଫିସର ଯଥା, ଗଙ୍ଗାଜ୍ୱାଳା, ଖାସ୍‌ଗିଓ୍ୱାଲା, ଫଡନିଶ, ପଣ୍ଡିସ୍, ଚିଣ୍ଡିସ୍, ମଜୁମଦାର ଆଦି ବସୁଥିଲେ । ନାନାସାହେବ ଶାସନ ପ୍ରତିଷ୍ଠା କାର୍ଯ୍ୟରେ ବ୍ୟସ୍ତଥିବା ହେତୁ ସିପାହୀମାନଙ୍କ କ୍ରିୟାକଳାପ ଉପରେ ସମ୍ପୂର୍ଣ୍ଣ ଦୃଷ୍ଟି ଦେଇପାରିନଥିଲେ । ଫଳରେ ସେମାନେ ମନଇଚ୍ଛା ଆକ୍ରମଣ କାର୍ଯ୍ୟକରୁଥିଲେ ଓ ତନ୍ମଧ୍ୟରୁ କେତେକ ବଜାରରେ ବା କେନାଲ କୂଳରେ ବୁଲାବୁଲି କରୁଥିଲେ । ଏସମସ୍ତ ସତ୍ତ୍ୱେ ବ୍ୟାରାକ୍‌କୁ ତୋପରୁ ଅବିଶ୍ରାନ୍ତ ଗୋଳାବର୍ଷଣ ଫଳରେ ତାହାର ସମସ୍ତ ଦୁଆର ଝରକା ଆଦି ପୁରାପୁରିଭାବରେ ଉଡିଗଲା । ତନ୍ମଧ୍ୟରେ ଥିବା ଇଂରାଜିମାନଙ୍କ ପକ୍ଷରେ ଶରୀରକୁ ଆଢୁଆଳରେ ଲୁଚାଇରଖିବା କଷ୍ଟକର ହୋଇପଡୁଥିଲା ।

ଜୁନ୍ ଏଗାର ତାରିଖ ଦିନ 'ନାନାସାହେବ'ଙ୍କର ସେନା ତରଫରୁ ଟ୍ରେଞ୍ଚ ଦଖଲ ପାଇଁ ଏକ ଚେଷ୍ଟା କରାହୋଇଥିଲା । 'ସେଫାର୍ଡ' ଦେଖିବାକୁ ପାଇଲେ ଯେ ହଜାରେ ଖଣ୍ଡେ ସଶସ୍ତ୍ର ସିପାହୀ ନିଜକୁ ଆଢୁଆଳ କରି ଟ୍ରେଞ୍ଚ ଦିଗକୁ ଆଗେଇବାରେ ଲାଗିଛନ୍ତି । ସେ ସମୟରେ ସେମାନଙ୍କର ବନ୍ଧୁକ ଓ ସଙ୍ଗୀନ ହିଁ କେବଳ ଦେଖାଯାଉଥିଲା । ସେମାନେ ବାରମ୍ବାର ଗୁଳି ଲୋଡ କରି ଫୁଟାଇ ଫୁଟାଇ ଆଗେଇ ଆସୁଥିଲେ । ତା ସହିତ ସେଲ ଓ ବୋମା ମଧ୍ୟ ଫିଙ୍ଗାଯାଉଥିଲା । ଏହାଫଳରେ ବ୍ୟାରାକ୍‌ର ପ୍ରବେଶଦ୍ୱାର କଣ୍ଡାକାଚ ଗୁଳି ଆଦିରେ ଛାଇହୋଇଗଲା । ତାହା ବ୍ୟାରାକ୍ ଭିତରେଥିବା ତମ୍ବୁ ଓ ଖୁମ୍ବ ଗୁଡିକୁ ଛିନ୍ନ ଭିନ୍ନ କରିପକାଇଲା । ଦୁଇ ଘଣ୍ଟା ପର୍ଯ୍ୟନ୍ତ ଏହିପରି ଅବିଶ୍ରାନ୍ତ ଆକ୍ରମଣ ଚାଲିଲା ।

ଜୁନ ତେରତାରିଖରେ ନାନେ ନବାବଙ୍କର ବ୍ୟାଟେରୀରୁ ସେଲ୍ ମାଡ ହେବା ଫଳରେ ଏକ ବ୍ୟାରାକ୍‌ର ଛାତରେ ନିଆଁ ଲାଗିଯାଇଥିଲା । ଏହି ସେଲ୍ ଏତେ ଦକ୍ଷତାର ସହ ଲକ୍ଷ୍ୟ କରାଯାଇଥିଲା ଯେ ଏହା କେବଳ ଛାତରେ ନିଆଁ ଲଗାଇଲା ନାହିଁ ପରନ୍ତୁ ବ୍ୟାରାକ୍‌ର ପ୍ରତି ଅଂଶକୁ କ୍ଷତ ବିକ୍ଷତ କରିଦେଲା । ଯେଉଁ ସିପାହୀ ଏହା ଲକ୍ଷ୍ୟ କରିଥିଲେ ସେ ଜଣେ ଅବସରପ୍ରାପ୍ତ ସୁବେଦାରଙ୍କର ପୁତ୍ର ଥିଲେ । ଏହି ଦକ୍ଷତା ହେତୁ ନାନାସାହେବ ତାହାଙ୍କୁ ନବେ ଟଙ୍କା ମୂଲ୍ୟର ଏକ ଶାଲ ଉପହାର ସ୍ୱରୂପ ଦେଇଥିଲେ । ଜୁନ୍ ମାସର ଅସହ୍ୟ ଖରା ସହିତ ଗୁଳିଗୋଳା ବିସ୍ଫୋରଣର ନିଆଁ ଓ ତତ୍ ସହିତ ସଙ୍କୀର୍ଣ୍ଣ ପରିସର

ମଧ୍ୟରେ ବହୁ ଲୋକଙ୍କର ସମାବେଶ, ବ୍ୟାରାକ୍ ମଧ୍ୟରେ ଏକତ୍ର ଥିବା ଇଂରାଜିମାନଙ୍କ ମଧ୍ୟରେ ଅତ୍ୟନ୍ତ ମର୍ମାନ୍ତିକ ଓ ଯନ୍ତ୍ରଣାମୟ ପରିସ୍ଥିତିର ସୃଷ୍ଟି କରିଥିଲା । ବ୍ୟାରାକ୍ ମଧ୍ୟରେ ବହୁ ସଂଖ୍ୟକ ସ୍ତ୍ରୀ ଓ ଶିଶୁ ରହୁଥିଲେ ଓ ଏହାର ଏକ ଅଂଶ ହସପିଟାଲ ରୂପେ ମଧ୍ୟ ବ୍ୟବହାର କରାହେଉଥିଲା । ଗୋଳାମାଡରୁ ସମସ୍ତଙ୍କୁ ବହୁ କଷ୍ଟରେ ରକ୍ଷା କରାଗଲେ ମଧ୍ୟ ଦୁଇଜଣ ଗୋଲନ୍ଦାଜ ନିଆଁରେ ପୋଡିହୋଇ ମଲେ । ଏତଦ୍‌ବ୍ୟତୀତ ସ୍କୁଲ ମାଷ୍ଟର 'ଗିଲ'(Gill) ଓ ତାଙ୍କର ସ୍ତ୍ରୀ ମଧ୍ୟ ପ୍ରାଣ ହରାଇଲେ । ପରିସ୍ଥିତି ଏପରି ହେଲା ଯେ ଆହତ ଓ ଅସୁସ୍ଥମାନଙ୍କୁ ସ୍ଥାନାନ୍ତରିତ କରାଯାଇନପାରି ସେମାନଙ୍କୁ ନିଆଁରେ ପୋଡିହେବାକୁ ଛାଡିଦିଆଗଲା । ଏହିପରି ପ୍ରାୟ ଚାଳିଶଜଣ ଖଣ୍ଡେ ନିଆଁରେ ପୋଡିହୋଇ ମଲେ । ନିଆଁ ବ୍ୟାପିଯିବା ଫଳରେ ମେଡିକାଲ ଷ୍ଟୋରଟି ପୋଡିଗଲା ଓ କେବଳ ଏକ ଔଷଧ ବାକ୍ସ ଓ ଦୁଇଟି ଡାକ୍ତରୀ ଯନ୍ତ୍ରପାତି ତନ୍ମଧ୍ୟରୁ ଉଦ୍ଧାର କରାଯାଇପାରିଥିଲା ।

ବାରମ୍ବାର ଗୋଳାବର୍ଷଣ ଓ ନିଆଁ ଜଳିବା ଫଳରେ ଆହତ ଓ ରୋଗୀଙ୍କ ସଂଖ୍ୟା ବୃଦ୍ଧି ପାଇଲା ଓ ସେମାନଙ୍କୁ ଉପଯୁକ୍ତ ସ୍ଥାନରେ ରଖିବାରେ ସମସ୍ୟା ଦେଖାଦେଲା । ପୂର୍ବରୁ ଦୁଇଟି ବ୍ୟାରାକ୍‌ରେ ସମସ୍ତଙ୍କୁ ରଖାଯାଇଥିଲା । କିନ୍ତୁ ଗୋଟିଏ ବ୍ୟାରାକ୍ ସମ୍ପୂର୍ଣ୍ଣ ଧ୍ୱଂସ ହୋଇଯିବା ଫଳରେ ଅନ୍ୟ ବ୍ୟାରାକ୍‌ଟିରେ ସମସ୍ତଙ୍କୁ ରହିବାକୁ ହେଉଥିଲା । ଏହି ଅବ୍ୟବସ୍ଥାର ସୁଯୋଗ ନେଇ ସିପାହୀମାନେ ପୁନର୍ବାର ଆକ୍ରମଣ କରି ଟ୍ରେଞ୍ଚ ଦଖଲ କରି ନେବାର ଚେଷ୍ଟା କଲେ । କିନ୍ତୁ ଟ୍ରେଞ୍ଚରୁ 'ଆସେ'ଙ୍କର ନଅପାଉଣ୍ଡିଆ ତୋପରୁ ଗୋଳାବର୍ଷଣ ଫଳରେ ସେମାନଙ୍କୁ ପଛଘୁଞ୍ଚା ଦେବାକୁ ପଡିଥିଲା ।

ତେର ତାରିଖ ପରେ ଇଂରାଜୀମାନଙ୍କର ଅବସ୍ଥା ଆହୁରି ଖରାପ ଦିଗକୁ ଗତି କରିବାକୁ ଲାଗିଲା । ଫଳରେ ଦୁଇଶହ ସ୍ତ୍ରୀ ଓ ପିଲାଙ୍କୁ ବାଧ୍ୟତା ମୂଳକ ଭାବରେ ଟ୍ରେଞ୍ଚ ଭିତରକୁ ପଠାଇଦିଆଗଲା । ୫୩ତମ ବାହିନୀର ଯେଉଁ କିଛି ଦେଶୀ ସିପାହୀମାନେ ବର୍ତ୍ତମାନ ସୁଦ୍ଧା ସେମାନଙ୍କର ଇଂରାଜି ଅଫିସରମାନଙ୍କ ସହିତ ରହି ସେମାନଙ୍କୁ ସହାୟତା କରୁଥିଲେ, ସେମାନଙ୍କୁ ତୁରନ୍ତ ଚାଲିଯିବାକୁ ଆଦେଶ ଦିଆଗଲା । କାରଣ ସେମାନଙ୍କର ରହିବାକୁ ଆଉ ଜାଗା ନଥିଲା । ଏତଦ୍‌ବ୍ୟତୀତ, କୌଣସି ଦେଶୀ ବ୍ୟକ୍ତିଙ୍କୁ ପ୍ରତିରକ୍ଷା ବଳୟ ମଧ୍ୟରେ ପ୍ରବେଶ କରିବାକୁ ନିଷେଧ କରାଗଲା । 'ଜନ୍‌ମେକିଲପ୍' (John Mekillop) ଜଣେ ବେସାମରିକ ଅଫିସର ଥିଲେ । ସେ ଯୁଦ୍ଧ ବିଦ୍ୟା ଜାଣି ନଥିଲେ ମଧ୍ୟ ଅନ୍ୟ ପ୍ରକାରେ ସହାୟତା କରୁଥିଲେ । ସେ ଏକ ଦୁଃସାହସିକ କାର୍ଯ୍ୟ କରୁଥିଲେ । ଟ୍ରେଞ୍ଚ ମଧ୍ୟରେ ପାଣିର ଘୋର ଅଭାବ ଅନୁଭୂତ ହେବାରୁ, ସେ ପ୍ରବଳ ଗୁଳିବର୍ଷଣ

ସତ୍ତ୍ୱେ, ଟ୍ରେଞ୍ଚର ବାହାରେ ଥିବା ଏକ କୂଅରୁ ପାଣି ଆଣି ମୁଖ୍ୟତଃ ସ୍ତ୍ରୀ ଓ ପିଲାମାନଙ୍କୁ ଯୋଗାଉଥିଲେ । ଏକ ସପ୍ତାହ ପରେ ସେ ଗୁଳିବିଦ୍ଧ ହୋଇ ପ୍ରାଣ ହରାଇଲେ । ମୃତ୍ୟୁ ସମୟରେ ଏତିକି ମାତ୍ର ଅନୁରୋଧ କରିଗଲେ ଯେ ସେ ଏକ ନିର୍ଦ୍ଦିଷ୍ଟ ସ୍ତ୍ରୀ ଲୋକଙ୍କୁ ପାଣି ଯୋଗାଇବା ପାଇଁ ପ୍ରତିଶ୍ରୁତି ଦେଇଛନ୍ତି । ଏଣୁ କେହି ଜଣେ ହେଲେ କୂଅରୁ ପାଣି ଆଣି ଯେପରି ତାଙ୍କୁ ଦିଏ ।

ଅବରୋଧର ପ୍ରଥମ କିଛି ଦିନ ଧରି ଅବିଶ୍ରାନ୍ତ ଗୋଳା ବର୍ଷଣ ଚାଲିଥିଲା । ପରେ ପରେ ସିପାହୀମାନେ କୌଶଳର ପରିବର୍ତ୍ତନ କଲେ । ଇଂରାଜିମାନଙ୍କର ତୋପଗୁଡିକ ଆକାରରେ କ୍ଷୁଦ୍ର ହୋଇଥିବା ଦୃଷ୍ଟିରୁ ତହିଁର ଗୋଳା ଶତ୍ରୁ ଛାଉଣୀରେ ପହଞ୍ଚିପାରୁ ନଥିଲା । କିନ୍ତୁ ଟ୍ରେଞ୍ଚ ଦିଗକୁ ଶତ୍ରୁର ଗତିରୋଧ କରିବାରେ ତାହା ସହାୟକ ହେଉଥିଲା । ଟ୍ରେଞ୍ଚ ମଧ୍ୟରେ ପ୍ରାୟ ସମସ୍ତ ଗୋଳନ୍ଦାଜ ପ୍ରାଣ ହରାଇଥିଲେ ଓ ସେମାନଙ୍କର ସ୍ଥାନ ସ୍ୱେଚ୍ଛାସେବକ ମାନଙ୍କଦ୍ୱାରା ପୂରଣ ହୋଇଥିଲା । ସେମାନଙ୍କର କିଛି ତୋପ ମଧ୍ୟ ଗୋଳାମାଡରେ କ୍ଷତିଗ୍ରସ୍ତ ହୋଇଥିଲା । ସେଗୁଡିକୁ ସଜାଡି ପୁନର୍ବାର କାର୍ଯ୍ୟରେ ନିୟୋଜିତ କରାଯାଉଥିଲା । ଗୋଳା ଅଭାବ ପଡିବାରୁ ନଅପାଉଣ୍ଡିଆ ତୋପରେ ଛଅପାଉଣ୍ଡିଆ ଗୋଳା ଦେଇ କାମ ଚଳାଇବାକୁ ପଡୁଥିଲା । ବାହାରୁ ଯୋଗାଣ ଆସିବା ସମ୍ଭବ ନଥିଲା କାରଣ ତାହାସବୁ ନାନାସାହେବଙ୍କ ହାତରେ ପଡୁଥିଲା ।

ଏସମସ୍ତ ମଧ୍ୟରେ ଇଂରାଜିମାନଙ୍କ ପକ୍ଷରେ ଖାଦ୍ୟ ଓ ଯୋଗାଣ ଏକ ମୁଖ୍ୟ ସମସ୍ୟା ରୂପେ ଦେଖାଦେଲା । ପ୍ରଥମ କିଛିଦିନ ପ୍ରଚୁର ଖାଦ୍ୟ ଗଚ୍ଛିତ ଥିବାରୁ ସମସ୍ତେ ଖାଦ୍ୟ ପେୟର କୌଣସି ଅଭାବ ଅନୁଭବ କରିନଥିଲେ । କିନ୍ତୁ କ୍ରମେ ଯୋଗାଣ ଅଭାବରେ ଖାଦ୍ୟ ଦ୍ରବ୍ୟାଦି ସରିବାକୁ ବସିଲା । ଏଣୁ ସମସ୍ତଙ୍କୁ ଦୁଇବେଳା ପରିବର୍ତ୍ତେ ଏକ ବେଳା ଆହାର ନେବାର ବ୍ୟବସ୍ଥା କରାଗଲା । କ୍ରମେ ରନ୍ଧନ ଖାଦ୍ୟ କେବଳ ସୈନ୍ୟମାନଙ୍କୁ ଦିଆଯାଉଥିଲା ଓ ଅନ୍ୟମାନଙ୍କୁ ସାମାନ୍ୟ ସାମଗ୍ରୀ ଯୋଗାଇଦିଆଯାଉଥିଲା । ଖାଦ୍ୟ ଦ୍ରବ୍ୟର ଘନ ଘନ ପରିବର୍ତ୍ତନ କରାଯାଉଥିଲା । କ୍ରମେ ଖାଦ୍ୟାଭାବ ହେତୁ ବାହାରେ ବୁଲୁଥିବା ଗାଈ ଓ ବଳଦ ତଥା ବ୍ୟାରାକ୍ ମଧ୍ୟରେ ଥିବା ଘୋଡାଗୁଡିକୁ ସେମାନେ ମାରି ଖାଇବାକୁ ଲାଗିଲେ । ଏତଦ୍‌ବ୍ୟତୀତ ପାଣିର ଅଭାବ ମଧ୍ୟ ଏକ ଗୁରୁତର ସମସ୍ୟା ସୃଷ୍ଟିକଲା । ଟ୍ରେଞ୍ଚ ପାଖରେ ଥିବା କୂଅଟି ସିପାହୀମାନଙ୍କର ଲକ୍ଷ୍ୟସ୍ଥଳ ଥିଲା । ଦିନ ରାତି ତାହା ଉପରକୁ ଅବିଶ୍ରାନ୍ତ ଗୁଳିବର୍ଷଣ ଚାଲିଥିଲା । ଏହି ବିପଜ୍ଜନକ ପରିସ୍ଥିତି ମଧ୍ୟରେ ଯାହା କିଛି ଜଳ ସଂଗୃହୀତ ହେଉଥିଲା, ତାହା ସମସ୍ତଙ୍କର ଆବଶ୍ୟକତା ଦୃଷ୍ଟିରୁ ଅତ୍ୟନ୍ତ ସ୍ୱଳ୍ପ ଥିଲା । ଖାଦ୍ୟ ଓ ଜଳର ଅଭାବ, ଅସ୍ୱାସ୍ଥ୍ୟକର ପରିବେଶ ଆଦି ହେତୁ ଅସୁସ୍ଥତା

ବୃଦ୍ଧିପାଇବା ସଙ୍ଗେ ସଙ୍ଗେ ମୃତ୍ୟୁ ସଂଖ୍ୟା ଧୀରେ ଧୀରେ ବଢ଼ିବାକୁ ଲାଗିଲା । ଆକ୍ରମଣ ଜନିତ ମୃତ୍ୟୁ ଓ ଅସୁସ୍ଥତା ଜନିତ ମୃତ୍ୟୁ ଲାଗିରହିଥିବା ହେତୁ ଇଂରାଜିମାନଙ୍କର ସଂଖ୍ୟା ଧୀରେ ଧୀରେ କମିବାକୁ ଲାଗିଲା । ତିନି ସପ୍ତାହ ଭିତରେ ଦୁଇଶହ ପଚିଶ ଜଣଙ୍କୁ ମୃତ୍ୟୁ ମୁଖରେ ପଡିବାକୁ ହେଲା । ସେଠାରେ କଫିନର ବ୍ୟବସ୍ଥା ନଥିବାରୁ ସମସ୍ତଙ୍କୁ ପୋଡିଦେବାକୁ ପଡୁଥିଲା । କେତେକ କ୍ଷେତ୍ରରେ ମୃତ ଶରୀରକୁ କମକ ଗୁଡାଇ ଏକ ଅବ୍ୟବହୃତ କୂପ ମଧ୍ୟକୁ ନିକ୍ଷେପ କରିଦିଆଯାଉଥିଲା । 'କର୍ଣ୍ଣେଲ ଉଇଲିୟମ' ଆହତ ହୋଇଥିଲେ ଏବଂ ପ୍ରଚଣ୍ଡ ଖରା ହେତୁ ମୃତ୍ୟୁ ମୁଖରେ ପଡିଲେ । 'ହିଲର୍‌ସ୍‌ଡନ' (Hillersdon) ଗୁଳିବିଦ୍ଧ ହୋଇ ପ୍ରାଣତ୍ୟାଗ କଲେ ଓ ତାଙ୍କ ସ୍ତ୍ରୀ ଏକ ବିସ୍ଫୋରଣରେ ପ୍ରାଣତ୍ୟାଗ କଲେ । 'କ୍ୟାପ୍‌ଟେନ ହାଲିଡେ' (Halliday) ତାଙ୍କ ସ୍ତ୍ରୀଙ୍କ ପାଖକୁ ଘୋଡାମାଂସର ଝୋଳ ନେଇଯାଉଥିବା ସମୟରେ ଗୁଳିବିଦ୍ଧ ହୋଇ ପ୍ରାଣତ୍ୟାଗ କଲେ । ଘଣ୍ଟା ଦୋକାନୀ 'ଜାକୋବି' ଓ ପୂର୍ବତନ ସୈନିକ 'କକ୍ସ' (Cox) ମଧ୍ୟ ଗୁଳିମାଡରେ ପ୍ରାଣତ୍ୟାଗ କଲେ । 'ଲେଫଟନାଣ୍ଟ ଜେରଭିସ୍' (Jervis) ଏବଂ 'ଲେଫଟନାଣ୍ଟ ଏକ ଫୋର୍ଡ' (Eckford) ମଧ୍ୟ ଗୁଳିମାଡରେ ପ୍ରାଣ ଦେଲେ । ମାଆ ଓ ଝିଅ ବ୍ୟାରାକ୍ ପଛପଟେ ପରସ୍ପରକୁ ରକ୍ଷା କରିବାକୁ ଯାଇ ପ୍ରାଣ ତ୍ୟାଗ ଦେଲେ । 'ମେଜର ଲିଣ୍ଡସେ' (Lindsay), ଗୋଳା ମାଡରେ ଅନ୍ଧ ହୋଇଗଲେ ଓ ବହୁ ଯନ୍ତ୍ରଣା ଭୋଗିବା ପରେ ମୃତ୍ୟୁ ମୁଖରେ ପଡିଲେ । ଜଣେ ସ୍ତ୍ରୀ ଆଉ ଯନ୍ତ୍ରଣା ସହିନପାରି ନିରାପତ୍ତା ବଳୟ ବାହାରକୁ ଆସି ସିପାହୀମାନଙ୍କ ଗୁଳି ସମ୍ମୁଖରେ ନିଜ ପିଲା ଛୁଆଙ୍କ ସହ ମରିବାକୁ ଠିଆ ହୋଇଗଲେ । ତାଙ୍କୁ ତୁରନ୍ତ ଉଦ୍ଧାର କରି ଅଣାଗଲା । 'ଜେନେରାଲ ହ୍ୱିଲର'ଙ୍କ ପୁତ୍ର ଗୁଳିମାଡରେ ଆହତ ହୋଇ ସେବା ଶୁଶ୍ରୁଷା ପାଇଁ ତାଙ୍କର ମାଆ ଓ ଭଉଣୀଙ୍କ ପାଖକୁ ଅଣାଯିବା ବେଳେ ଗୁଳିମାଡରେ ତାଙ୍କର ମୁଣ୍ଡରୁ ଗଣ୍ଡି ଅଲଗା ହୋଇଗଲା ।

'ନାନାସାହେବ', ଏହା ମଧ୍ୟରେ ସହର ମଧ୍ୟରେ ଥିବା ପୂର୍ବତନ ଇଂରାଜି କର୍ମଚାରୀ, ବଙ୍ଗୀୟ ଓ ଅନ୍ୟ ସନ୍ଦେହଜନକ ବ୍ୟକ୍ତିମାନଙ୍କୁ ବନ୍ଦୀକରି ଧମକ ଚମକ ଦେଇ ସେମାନେ ଇଂରାଜିମାନଙ୍କର ଗୁପ୍ତଚର ବୃତ୍ତି କରିବେ ନାହିଁ ବୋଲି ପ୍ରତିଶ୍ରୁତି ଆଦାୟ କଲେ । ଅପର ପକ୍ଷରେ ବିଭିନ୍ନ ବେଶରେ 'ନାନା'ଙ୍କର ଗୁପ୍ତଚରମାନେ ଯାଇ ଇଂରାଜିମାନେ ଥିବା ଟ୍ରେଞ୍ଚମଧ୍ୟରୁ ଖବର ଆଣି ତା'ଙ୍କୁ ଦେଉଥିଲେ । 'ନାନାସାହେବ' ସମସ୍ତ ଅବସ୍ଥା ପର୍ଯ୍ୟବେକ୍ଷଣ କରି ବିଚାର କଲେ ଯେ ଇଂରାଜିମାନେ ଆଉ ବେଶୀ ଦିନ ପ୍ରତିରୋଧ କରିପାରିବେ ନାହିଁ । ଅବରୋଧର ଦୁଇ ସପ୍ତାହ ପରେ ଜଣେ ପାଣିବାଲା କିଛି ପାଣି ନେଇ ଟ୍ରେଞ୍ଚ ମଧ୍ୟକୁ ଆସିଲା ଓ ଇଂରାଜିମାନଙ୍କୁ ଖବର ଦେଇ କହିଲା, ସେ

ଇଂରାଜିଙ୍କର ବନ୍ଧୁ ଓ ସେ ଦେଖିଆସିଛି ଯେ ଗଙ୍ଗାର ଅପରପାର୍ଶ୍ୱରେ ଇଂରାଜି ସୈନ୍ୟମାନେ ସହାୟତା ଦେବା ପାଇଁ ଆସି ପହଞ୍ଚି ଯାଇଛନ୍ତି । ଏହା ଇଂରାଜିମାନଙ୍କ ମଧ୍ୟରେ ନୂତନ ଆଶାର ସଞ୍ଚାର କରିଥିଲା । କିନ୍ତୁ ଦ୍ୱିତୀୟ ଦିନ ସେ ଆସି କହିଲା ଯେ ନଦୀରେ ବନ୍ୟା ହେତୁ ସେମାନେ ନଦୀ ଅତିକ୍ରମ କରିପାରୁ ନାହାନ୍ତି । କିନ୍ତୁ ଏହା ସବୁ ଇଂରାଜିମାନଙ୍କ ମଧ୍ୟରେ ଆଶ ଓ ହତାଶା ଭାବ ସୃଷ୍ଟି କରି ସେମାନଙ୍କୁ ନୈତିକ ଦୁର୍ବଳ କରିବା ପାଇଁ ନୂତନ କୌଶଳ ମାତ୍ର ଥିଲା । ଏହା ମଧ୍ୟରେ 'ନାନାସାହେବ'ଙ୍କ ବାହିନୀ, ଆକ୍ରମଣ କରି ଟ୍ରେଞ୍ଚ ଦଖଲ କରିବାକୁ ଆୟୋଜନ କରୁଥିଲେ । ଦୁଇ ତିନି ଦିନ ପରେ ଜୁନ୍ ତେଇଶ ତାରିଖ ଦିନ ପଲାସୀ ଯୁଦ୍ଧର ଶତବାର୍ଷିକି ପାଳିତ ହେଲା । ସିପାହୀମାନଙ୍କ ତରଫରୁ ଟ୍ରେଞ୍ଚ ଆକ୍ରମଣ କରିବାରେ ସାରାରାତି ସିପାହୀମାନେ ବ୍ୟାରାକ୍‌ର ପାଚେରୀ ପାଖରେ ଏକତ୍ରିତ ହେବାକୁ ଲାଗିଲେ ।

'କ୍ୟାପଟେନ ମୁର୍', 'ଲେଫଟନାଣ୍ଟ ଡେଲାଫସ', 'ମରୱେ ଥମ୍ପସନ', (Morway Thomson), ବାହାର ଚୌକିରେ ରହି ସୈନ୍ୟମାନଙ୍କୁ ଉତ୍ସାହିତ କରି ସଜାଗ ରଖିଲେ ଓ ଏକତ୍ରିତ ହୋଇଥିବା ସିପାହୀମାନ ଙ୍କ ଉପରକୁ ଗୁଳି ବର୍ଷଣ କରିବାକୁ ଆଦେଶ ଦେଲେ । ସାରାରାତ୍ରି ଏହିପ୍ରକାରେ କଟିଯିବାପରେ ପାହାନ୍ତିଆ ପହରକୁ ସବୁ କିଛି ଶାନ୍ତ ପଡିଗଲା । ଫଳରେ ଇଂରାଜି ସୈନ୍ୟମାନେ ସାମାନ୍ୟ ବିଶ୍ରାମ ନେଲେ ।ଏହି ସମୟରେ ଆକ୍ରମଣ କରାଗଲା । ମରୱେ ଥମ୍ପସନ, ତାଙ୍କର ଷୋହଳ ଜଣ ଅନୁଚରଙ୍କ ସହିତ, ଅଠର ଜଣ ସିପାହୀଙ୍କୁ ହତ୍ୟା କଲେ । ଏହା ଫଳରେ ଘୋଡା ସବାର ବାହିନୀ ଓ ପଦାତିକ ବାହିନୀର ସମ୍ମିଳିତ ଆକ୍ରମଣକୁ ପ୍ରତିହତ କରାଗଲା ଓ ସେମାନେ ପଛଘୁଞ୍ଚା ଦେଲେ । କିନ୍ତୁ ସିପାହୀମାନେ ସେମାନଙ୍କ ଆଗରେ ବଡ଼ ବଡ଼ ତୁଳାବସ୍ତା ରଖି ତାହାର ଆଢୁଆଳରେ ରହି ଆକ୍ରମଣ କରି କରି ଆଗେଇ ଆସୁଥିଲେ । ସେମାନେ ପାଖେଇ ଆସିବାବେଳେ ତୋପର ଗୁଳାରେ ତୁଳାବସ୍ତା ଗୁଡିକରେ ନିଆଁ ଲାଗିଗଲା । ଫଳରେ ସେମାନେ ପଛଘୁଞ୍ଚା ଦେବାକୁ ଲାଗିଲେ । ଏହା ପରେ ବାହିନୀର ମୁଖ୍ୟ ଅଂଶ ଆକ୍ରମଣରୁ ବିରତ ରହିଲେ ।

ଇଂରାଜିମାନଙ୍କର କଲିକତାରୁ ସାହାଯ୍ୟ ପାଇବା ଆଶା କ୍ଷୀଣ ହେବାକୁ ଲାଗିଲା । ବିଦ୍ରୋହର ଆରମ୍ଭରେ 'ହ୍ୱିଲର' ସାହାଯ୍ୟ ପାଇଁ 'କଲିକତା' ଓ 'ଲକ୍ଷ୍ନୌ'ରେ ଥିବା 'ଲରେନ୍ସ'ଙ୍କ ପାଖକୁ ଖବର ପଠାଇଥିଲେ । ଅଠର ତାରିଖ ଦିନ ମଧ୍ୟ 'କ୍ୟାପଟେନ ମୁର', ଜେନେରାଲଙ୍କ ତରଫରୁ 'ଲରେନ୍ସ' ପାଖକୁ ଖବର ପଠାଇ ଦୁଇ ଶହ ସୈନ୍ୟ ଓ କିଛି ତୋପ ପଠାଯାଇ ନ ଥିବାରୁ କ୍ଷୋଭ ପ୍ରକାଶ କରିଥିଲେ । ଅବଶେଷରେ ଜୁନ୍

୨୬ ତାରିଖରେ 'ଇରେନ୍ସ' ଆଶ୍ୱାସନା ଦେଇ ଚିଠି ଦେଇଥିଲେ ଯେ 'ବ୍ରିଗେଡ଼ିୟର ହାଭଲକ୍' ଚାରିଶହ ଇଂରାଜି ସୈନ୍ୟ, ତିନି ଶହ ଶିଖ୍ ସୈନ୍ୟ, ତୋପ ଓ ଘୋଡ଼ା ସବାର ବାହିନୀ ସହିତ ଆଲ୍‌ହାବାଦରୁ ଦୁଇଦିନ ଭିତରେ କାନପୁରରେ ପହଞ୍ଚୁଛନ୍ତି । ସେ ଜେନେରାଲଙ୍କୁ 'ନାନା ସାହେବ'ଙ୍କ ସହିତ କୌଣସି ପ୍ରକାରେ ଚୁକ୍ତି ନକରି ସେ ପର୍ଯ୍ୟନ୍ତ ଆକ୍ରମଣର ମୁକାବିଲା କରିବାକୁ ଅନୁରୋଧ ଜଣାଇଥିଲେ । କିନ୍ତୁ ଏହି ଚିଠି ଜେନେରାଲ ପାଇନଥିଲେ । 'ଇରେନ୍ସ' ଚିଠି ଲେଖିବାବେଳେ ଜାଣି ନ ଥିଲେ ଯେ ଦିନକ ପୂର୍ବରୁ 'ହ୍ୱିଲର୍', 'ନାନାସାହେବ'ଙ୍କ ପାଖରେ ଆତ୍ମ ସମର୍ପଣ କରିଛନ୍ତି ।

ଜୁନ ପଚିଶ ତାରିଖ ଦିନ ଅବରୋଧ ଶେଷ ପର୍ଯ୍ୟାୟରେ ପହଞ୍ଚିଲା । ସେହି ଦିନ ଗୋଟିଏ ସ୍ତ୍ରୀ ଲୋକ ଟ୍ରେଞ୍ଚ ଆଡକୁ ଆସୁଥିବାର ଦେଖାଗଲା । ତାଙ୍କୁ ଗୁପ୍ତଚର ବୋଲି ସନ୍ଦେହ କରି ଜଣେ ସୈନ୍ୟ ଗୁଳି କରିବାକୁ ଯାଉଥିଲା ବେଳେ 'ମୌବ୍ରେ ଥମସନ' (Mowbray) ସେହି ସୈନ୍ୟର ହାତକୁ ବିଧାମାରି ତାକୁ ଗୁଳିଚାଳନାରୁ ବିରତ କଲେ । ଫଳରେ ଉକ୍ତ ସ୍ତ୍ରୀ ଲୋକଟିର ପ୍ରାଣ ରକ୍ଷାହେଲା । ନିକଟକୁ ଆସିବାରୁ ଦେଖାଗଲା ଯେ ସେ କାଖରେ ପିଲାଟିଏ ଧରିଛି । ସେ ଜଣେ ଇଂରାଜି ମହିଳା ହୋଇଥିଲେ ମଧ ନଗ୍ନପାଦ ଓ ଛିନ୍ନବସ୍ତ୍ରରେ ଥିଲା । ସେ ଆସି 'ଥମସନ୍'ଙ୍କୁ ଗୋଟିଏ ଚିଠି ବଢ଼ାଇ ଦେଲା । ସେଥିରେ ଲେଖାଥିଲା:-

''ରାଣୀ ଭିକ୍ଟୋରିଆଙ୍କର ପ୍ରଜାମାନଙ୍କୁ ଜଣାଇ ଦିଆଯାଉଛି ଯେ ଯେଉଁମାନେ ଡେଲହାଉସୀଙ୍କର କାର୍ଯ୍ୟକଳାପ ସହିତ ସମ୍ପୃକ୍ତ ନୁହଁନ୍ତି ଓ ଯେଉଁମାନେ ଅସ୍ତ୍ର ସମର୍ପଣ କରିବେ ସେମାନଙ୍କୁ ଆଲାହାବାଦ ପଳାଇବା ପାଇଁ ନିରାପଦ ରାସ୍ତା ଛାଡି ଦିଆହେବ ।'' ଏହି ଚିଠିରେ କାହାର ଦସ୍ତଖତ ନଥିଲେ ମଧ ତାହା 'ଅଜିମୁଲ୍ଲା'ଙ୍କର ହାତ ଅକ୍ଷର ବୋଲି ଜଣାପଡିଲା । 'ହ୍ୱିଲର', ଏ ବିଷୟରେ ନିଜର ସହକର୍ମୀମାନଙ୍କ ସହିତ ପରାମର୍ଶ କରିବାକୁ ଲାଗିଲେ । ଟ୍ରେଞ୍ଚରେ ମାତ୍ର ତିନିଦିନ ପାଇଁ ଖାଦ୍ୟ ଥିଲା । ସ୍ତ୍ରୀ ପିଲା ଓ ଆହତମାନଙ୍କର ଅସ୍ୱାସ୍ଥ୍ୟକର ବାତାବରଣରେ ଏକତ୍ର ସମାବେଶ ଏକ ଅସ୍ୱାଭାବିକ ଓ ଅସହ୍ୟ ପରିସ୍ଥିତି ସୃଷ୍ଟି କରୁଥିଲା । ଖରାଦିନ ଶେଷ ହେବାକୁ ଯାଉଥିବାରୁ ଅସରାଏ ଲେଖାଏଁ ବର୍ଷା ହେବାର ମଧ ସମ୍ଭାବନା ଥିଲା । ବର୍ଷା ହେଲେ ଅବସ୍ଥା ଶୋଚନୀୟ ହୋଇଯିବ । ଏହିପରି ବହୁ ବିଚାର କରି 'ହ୍ୱିଲର', ପ୍ରଥମେ ଅମତ ହେଉଥିଲେ ମଧ ସହକର୍ମୀମାନଙ୍କର ଚାପ ତଥା ପରିସ୍ଥିତିର ବାସ୍ତବତା ଦୃଷ୍ଟିରୁ ଆତ୍ମସମର୍ପଣ ପାଇଁ ମତ ଦେଲେ । ଚିଠି ନେଇ ଆସିଥିବା ଭଦ୍ର ମହିଳା 'ମିସେସ ଗ୍ରୀନୱେ'(Mr.Greenway) ଜେନେରାଲଙ୍କର ଚିଠି ନେଇ ଅପରାହ୍ନରେ 'ନାନା'ଙ୍କ ପାଖରେ ପହଞ୍ଚାଇ ଦେଲେ ।

ଚିଠି ପାଇବା ସଙ୍ଗେ ସଙ୍ଗେ 'ଅଜିମୁଲ୍ଲା' ଓ 'ଜ୍ୱାଳା ପ୍ରସାଦ', ଇଂରାଜିଙ୍କର ବ୍ରେଞ୍ଚକୁ ଅସି 'କ୍ୟାପ୍‌ଟେନ ମୁର', 'କ୍ୟାପ୍‌ଟେନ ହ୍ୱାଇଟିଙ୍ଗ୍' (Whiting) ଓ 'ରୋଚେ' (Roche)ଙ୍କ ସହିତ ସର୍ତ୍ତାବଳୀ ସମ୍ବନ୍ଧୀୟ ଆଲୋଚନା ଚଳାଇଲେ । ଇଂରାଜିମାନେ ସମ୍ମାନଜନକ ଆତ୍ମ ସମର୍ପଣର ପ୍ରସ୍ତାବ ଦେଲେ । ପୁନଶ୍ଚ ସେମାନେ ପ୍ରସ୍ତାବ ଦେଲେ ଯେ ସେମାନଙ୍କୁ ଅସ୍ତ୍ର ସହିତ ଫେରିଯିବା ପାଇଁ ଅନୁମତି ଦିଆଯିବ ଓ ପ୍ରତିସୈନ୍ୟକୁ ଷାଠିଏଟି ଗୁଳି ଦିଆଯିବ । ସେମାନଙ୍କୁ ଖୋଲାରାସ୍ତା ଛାଡିଦିଆଯିବ ।ସ୍ତ୍ରୀ ଓ ପିଲାମାନଙ୍କ ପାଇଁ ଗାଡି ଦିଆଯିବ ଓ ଅଟା ଆଦି ଖାଦ୍ୟଦ୍ରବ୍ୟାଦି ଦିଆଯିବ । ନାନାଙ୍କର ପ୍ରତିନିଧି, ସାଧାରଣ ଖାଦ୍ୟ ସହିତ ସେମାନଙ୍କୁ ଛେଳିମେଣ୍ଢାମାନ ମଧ୍ୟ ଦିଆଯିବ ବୋଲି ଆଶ୍ୱାସନା ଦେଲେ ।

ଛବିଶ ତାରିଖ ଅପରାହ୍ଣରେ 'ନାନାସାହେବ', ଇଂରାଜିମାନଙ୍କର ସମସ୍ତ ସର୍ତ୍ତାବଳୀ ଗ୍ରହଣ କରିଛନ୍ତି ବୋଲି 'ଜେନେରାଲ ହ୍ୱିଲର'ଙ୍କ ପାଖକୁ ଖବର ଆସିଲା । କିନ୍ତୁ ସେହି ରାତ୍ରିରେ ସେମାନଙ୍କୁ ବ୍ରେଞ୍ଚ ଛାଡିବା ପାଇଁ କୁହାଯାଇଥିଲା । 'ହ୍ୱିଲର' ସକାଳ ପର୍ଯ୍ୟନ୍ତ ସମୟ ମାଗିଲେ ମଧ୍ୟ ତାହା ପ୍ରତ୍ୟାଖ୍ୟାତ ହେଲା । ତୁରନ୍ତ ସ୍ଥାନ ଖାଲି ନକଲେ ତୋପରେ ଉଡାଇ ଦିଆଯିବ ବୋଲି ମଧ୍ୟ କୁହାଗଲା । ତେବେ ପରେ ସେମାନଙ୍କୁ ସକାଳ ପର୍ଯ୍ୟନ୍ତ ରହିବାକୁ ଅନୁମତି ଦିଆଗଲା । 'ନାନା ସାହେବ'ଙ୍କର ଇଂରାଜି ଶିକ୍ଷକ ଟଡ(Tod) ସମର୍ପଣ ପତ୍ରରେ ଜେନେରାଲଙ୍କ ଠାରୁ ଦସ୍ତଖତ କରାଇଲେ ଓ ଆତ୍ମ ସମର୍ପଣ ପର୍ବ ସମାପ୍ତ ହେଲା ।

'କଟୁଆଳ ହୁଲାସିଂହ'କୁ ନୌକା ଯୋଗାଡ କରିବା ପାଇଁ ଆଦେଶ ଦିଆଗଲା । ପରେ ସେ ଡେଙ୍ଗୁରା ପିଟାଇ ଓ ତୋପ ଗର୍ଜନ ଦ୍ୱାରା ନାଉରିଆମାନଙ୍କୁ ଘାଟକୁ ଡଙ୍ଗା ଆଣିବାକୁ ଜଣାଇ ଦେଲେ । ୨୭ ତାରିଖ ସକାଳୁ ଘାଟରେ ଚାଳିଶଟି ଡଙ୍ଗା ଆସି ପହଞ୍ଚିଗଲା । ଇଂରାଜି ଅଫିସରମାନେ ସୈନ୍ୟମାନଙ୍କ ଗହଣରେ ଘାଟକୁ ଡଙ୍ଗାର ବ୍ୟବସ୍ଥା ନିରୀକ୍ଷଣ କରିବାକୁ ଗଲେ । ବ୍ରେଞ୍ଚ ମଧ୍ୟରେ ଥିବା ସମସ୍ତ ତୋପ, 'ନାନା'ଙ୍କର ହସ୍ତଗତ ହେଲା । ଇଂରାଜିମାନଙ୍କୁ ଦୁଇବେଳା ଭଲକରି ଖାଇବାକୁ ଓ ପିଇବାକୁ ବିଶୁଦ୍ଧ ଜଳ ଦିଆଗଲା । ଏହା ସେମାନଙ୍କ ପାଇଁ ଅମୃତତୁଲ୍ୟ ଥିଲା । କାରଣ ବହୁଦିନ କାଳ ଦରପେଟ ହୋଇ ଓପାସ ରହି ଓ ଅଖାଦ୍ୟ ଖାଇ ସେମାନେ ପ୍ରାୟ ସ୍ୱାଭାବିକତା ହରାଇ ସାରିଥିଲେ । ସେମାନେ ଶାନ୍ତିରେ ଉତ୍କୃଷ୍ଟ ଆହାର ଗ୍ରହଣ କରି ଗତ ଦିନ ଗୁଡିକରେ କ୍ଳାନ୍ତି ଅପନୋଦନ କଲେ । ଏହି ପ୍ରକାରେ ରାତିଟି ସୁସ୍ଥ ଓ ଶାନ୍ତ ବାତାବରଣ ମଧ୍ୟରେ କଟିଗଲା ।

ପରଦିନ ସକାଳୁ 'ନାନାସାହେବ' ବ୍ରେଞ୍ଚକୁ ହାତୀ, ଘୋଡା ଓ ଆବଶ୍ୟକୀୟ ସାମଗ୍ରୀମାନ ପଠାଇବାକୁ ଲାଗିଲେ । ସକାଳ ସାତଟା ବେଳକୁ ସ୍ତ୍ରୀ ଓ ପିଲାମାନେ ଘାଟ ଦିଗକୁ ଯାତ୍ରା କଲେ । ଦୁଇଶହ ଆହତ ବ୍ୟକ୍ତିଙ୍କୁ ହାତୀରେ ଓ ଅନ୍ୟ ଅକ୍ଷମ ବ୍ୟକ୍ତିଙ୍କୁ

ଗାଡିରେ ବସାଇ 'କ୍ୟାପ୍‌ଟେନ ମୁର୍'ଙ୍କ ଦାୟିତ୍ୱରେ ନିଆଗଲା । ସେମାନଙ୍କ ପଛରେ ସ୍ତ୍ରୀ ଓ ପିଲାମାନେ କେହି କେହି ହାତୀରେ, କେହି କେହି ବଳଦ ଗାଡିରେ ଯାତ୍ରା କଲେ । ସକ୍ଷମମାନେ, ପାଦରେ ଚାଲି ଚାଲି ଘାଟ ଆଡକୁ ଚାଲିଲେ । ଛିନ୍ନ ପୋଷାକରେ ସୈନିକମାନେ ସେମାନଙ୍କର ଅଫିସରମାନଙ୍କ ସହିତ ଘାଟ ଆଡକୁ ମୁହାଁଉଥିଲେ । ଏହା ଏକ ବିଚିତ୍ର ଶୋଭାଯାତ୍ରା ଥିଲା । ଇଂରାଜିମାନେ କାନପୁର ତ୍ୟାଗ କରିଯାଉଛନ୍ତି ବୋଲି ଖବର ପ୍ରଚାରିତ ହେବା ମାତ୍ରେ, ଲୋକମାନେ ରାସ୍ତାର ଦୁଇ ଧାରରେ ଠିଆ ହୋଇ ଶୋଭାଯାତ୍ରା ଦେଖୁଥିଲେ । ନଦୀ କୂଳରେ ପ୍ରବଳ ଜନଗହଳି ହୋଇଥିଲା । 'ଜେନେରାଲ ହ୍ୱିଲର୍', ଏକ ପାଲିକିରେ ଆସି ଓହ୍ଲାଇ ଡଙ୍ଗାକୁ ଯିବାକୁ ଚେଷ୍ଟା କଲାବେଳକୁ ସିପାହୀମାନଙ୍କର୍ ତଲବାର ଚୋଟରେ ପ୍ରାଣ ହରାଇଲେ । 'କର୍ଣ୍ଣେଲ ଏୱାର୍ଟ'(Ewart) ଓ ତାଙ୍କର ସ୍ତ୍ରୀ ମଧ୍ୟ, ସମଦଶା ପ୍ରାପ୍ତ ହେଲେ । ଅନ୍ୟ ସମସ୍ତେ, କୌଣସି ପ୍ରକାରେ ଡଙ୍ଗାରେ ଚଢି ନଈ ମଝିରେ ପହଞ୍ଚିବା ସମୟରେ, ନାଉରୀମାନେ ହଠାତ୍ ପାଣିକୁ ଡେଇଁ ପଡି, ପହଁରି ପହଁରି କୂଳକୁ ଆସିଲେ । କୂଳରୁ ସିପାହୀମାନେ ନଈ ମଝିରେ ଥିବା ଡଙ୍ଗା ଗୁଡିକରେ ଅବିଶ୍ରାନ୍ତ ଗୁଳିଗୋଳା ବର୍ଷଣ କରିବା ଫଳରେ, ସେଥିରେ ନିଆଁ ଲାଗିଗଲା ଓ ତହିଁର ଆରୋହୀମାନେ କେହି କେହି ପୋଡି ହୋଇ ମଲେ, କେହି କେହି ବା ପହଁରି ପହଁରି ଆତ୍ମରକ୍ଷା କରୁଥିବା ବେଳେ, ସିପାହୀମାନଙ୍କ ହାତରେ ପଡି ପ୍ରାଣ ଦେଲେ । 'ଅଜିମୁଲ୍ଲା ଖାଁ' ଙ୍କ ସହିତ 'ନାନାସାହେବ', ଅନତିଦୂରସ୍ଥ ନଦୀ କୂଳରେ ଥିବା ଏକ ଶିବ ମନ୍ଦିରର ପରିସର ମଧ୍ୟରେ ଠିଆହୋଇ ଏ ସମସ୍ତ ଘଟଣାବଳୀ ନିରୀକ୍ଷଣ କରୁଥିଲେ ।

ଏହି ହତ୍ୟାକାଣ୍ଡମାନ 'କାନପୁର'ର 'ସତୀଚଉରାଘାଟ'ରେ ସମାହିତ ହୋଇଥିଲା । ଦିନ ଦଶଟା ବେଳେ 'ନାନାସାହେବ'ଙ୍କୁ ଏ ସମସ୍ତ ଘଟଣାବଳୀର ବିବରଣୀ ଦିଆଗଲା । ଏହା ଶୁଣି ନାନା ସାହେବ ତତ୍‌କ୍ଷଣାତ୍ ଆଦେଶ ଦେଲେ ଯେ, ସିପାହୀମାନେ ଇଂରାଜିମାନଙ୍କୁ ହତ୍ୟା କରିପାରନ୍ତି, କିନ୍ତୁ କୌଣସି ସ୍ତ୍ରୀ ଓ ପିଲାମାନଙ୍କ ପ୍ରତି ଅସୌଜନ୍ୟ ବ୍ୟବହାର କରିପାରିବେ ନାହିଁ ବା ସେମାନଙ୍କୁ ହତ୍ୟା କରାଯାଇ ପାରିବ ନାହିଁ । 'ନାନାସାହେବ'ଙ୍କର ଆଦେଶ ପାଇବା ସଙ୍ଗେ ସଙ୍ଗେ ସିପାହୀମାନେ ହତ୍ୟାକାଣ୍ଡ ବନ୍ଦ କରି ପଚିଶ ଜଣ ସ୍ତ୍ରୀ ଓ ପିଲାମାନଙ୍କୁ ପାଣି ଭିତରୁ ଧରିଆଣି 'ସାଭାଦା' କୋଠିରେ ବନ୍ଦୀକରି ରଖିଲେ । ଅନ୍ୟ ଇଂରାଜିମାନଙ୍କୁ ଗୋଟିଏ ଲାଇନ୍‌ରେ ଛିଡାକରାଇ ହତ୍ୟା କଲେ । କେବଳ 'ଦୁର୍ବିଜୟ ସିଂହ' ନାମକ ଜଣେ ଜମିଦାର, କୌଣସି ପ୍ରକାରେ ଚାରିଜଣ ଇଂରାଜିଙ୍କୁ ଲୁଚାଇ ଆଣି, ନିଜର ଗ୍ରାମ୍ୟ ନିବାସରେ ଅନ୍ୟମାନଙ୍କ ଆଗୋଚରରେ ମାସେ କାଳ ଆଶ୍ରା ଦେଇ, ପରେ ଆଲ୍‌ହାବାଦ ପଠାଇ ଦେଇଥିଲେ ।

ଏହି ପରି, ଟ୍ରେଞ୍ଚରେ ଆଶ୍ରାନେଇଥିବା ଏକ ହଜାର ଇଂରାଜିମାନଙ୍କ ମଧ୍ୟରୁ, ଜୁନ୍ ସାତ ତାରିଖ ଦିନ, ଜମିଦାରଙ୍କ ଦ୍ୱାରା ରକ୍ଷିତ ଚାରିଜଣ ଇଂରାଜି ଓ ଶହେ ପଚାଶ ଜଣ ସ୍ତ୍ରୀ ଓ ପିଲାମାନେ ଜୀବନରେ ଥିଲେ । ଏହି ଶହେଜଣ ସ୍ତ୍ରୀ ଓ ପିଲାଙ୍କୁ, ନାନାସାହେବ ନିଜର ବନ୍ଦୀ କରି ରଖିଲେ । ଗଣ୍ଡଗୋଳ ସମୟରେ ଘୋଡାସବାରବାହିନୀର କିଛି ସିପାହୀ, ଚାରିଜଣ ଇଂରାଜି ମହିଳା ଓ କିଛି ଅନ୍ୟ ଜାତୀୟ ମହିଳାଙ୍କୁ ଅପହରଣ କରିନେଇଥିଲେ । ପରେ 'ନାନା'ଙ୍କର ଆଦେଶରେ ସେମାନେ ଏହି ମହିଳାମାନଙ୍କୁ 'ନାନାସାହେବ'ଙ୍କର ବନ୍ଦୀଶାଳାକୁ ଫେରାଇଦେଇଥିଲେ । ବନ୍ଦୀମାନଙ୍କୁ ପ୍ରାୟ ପ୍ରତିଦିନ ରୁଟି ଓ ମାଂସ ଖାଇବାକୁ ଦିଆଯାଉଥିଲା । ସେମାନଙ୍କୁ କୌଣସି କଠିନ କାମ କରିବାକୁ ଦିଆଯାଉନଥିଲା । ବନ୍ଦୀଶାଳା ଭିତରେ କଲେରା ଓ ଡିସେଣ୍ଟ୍ରି ରୋଗ ବ୍ୟାପିବାରୁ, ସେମାନଙ୍କୁ ଦିନକୁ ତିନିଥର ମୁକ୍ତ ବାୟୁ ସେବନ କରିବାକୁ ବାହାରକୁ ଅଣାଯାଉଥିଲା । ଶିଶୁମାନଙ୍କୁ ଦୁଧ ଖାଇବାକୁ ଦିଆଯାଉଥିଲା ।

ଏହି ପ୍ରକାରେ, କାନପୁରରୁ ସମସ୍ତ ଇଂରାଜି ବିତାଡିତ ହେବା ପରେ, ଅଠେଇଶ ତାରିଖ ଦିନ ସନ୍ଧ୍ୟା ପାଞ୍ଚଟା ବେଳେ, ' ନାନାସାହେବ' , ଦରବାର ଡକାଇଲେ । ଏହି ଦରବାରର ସମ୍ମାନରେ, ସେନାମାନେ ଏକ ପ୍ୟାରେଡର ବ୍ୟବସ୍ଥା କଲେ । ଛଅଟି ରେଜିମେଣ୍ଟର ପଦାତିକ ବାହିନୀ, ଦୁଇଟି ରେଜିମେଣ୍ଟର ଘୋଡସବାର ବାହିନୀ, ସେମାନଙ୍କର ପତାକା ସହ ଏହି ପ୍ୟାରେଡରେ ଯୋଗଦାନ କଲେ । 'ବାଳା ସାହେବ', ସେନା ମଧ୍ୟରେ ପ୍ରିୟ ହୋଇଯାଇଥିଲେ । ଏଣୁ, ସେ ଆସିବା ମାତ୍ରେ, ତାଙ୍କୁ ସିପାହୀମାନଙ୍କ ତରଫରୁ ଭବ୍ୟ ସମ୍ବର୍ଦ୍ଧନା ଦିଆଗଲା । ସର୍ବ ପ୍ରଥମେ, ଦିଲ୍ଲୀର ବାଦଶାଙ୍କର ସମ୍ମାନରେ ୧୦୧ ଥର ତୋପରୁ ସଲାମ ଦିଆଗଲା । ତା ପରେ, 'ନାନାସାହେବ' ପହଞ୍ଚିବା ମାତ୍ରେ, ତାଙ୍କୁ ସମ୍ମାନ ଦେଖାଇ, ଏକୋଇଶ ଥର ତୋପରେ ସଲାମ ଦିଆଗଲା । 'ନାନାସାହେବ' , ବିଜୟର ଆନନ୍ଦରେ ସିପାହୀମାନଙ୍କ ମଧ୍ୟରେ ଏକଲକ୍ଷ ଟଙ୍କା ବାଣ୍ଟିଦେବା ପାଇଁ ଆଦେଶ ଦେଲେ । ଏହାପରେ, ଆହୁରିଥରେ ଏକୋଇଶ ବାର ତୋପଧ୍ୱନି କରାଗଲା । 'ବାବାସାହେବ' ଓ 'ବାଳା ସାହେବ', ପ୍ରତ୍ୟେକ ସତରଟି ତୋପଧ୍ୱନି ର ସଲାମ ପାଇଲେ । 'ବ୍ରିଗେଡିୟର ଜ୍ୱାଳାପ୍ରସାଦ' ଓ 'କମାଣ୍ଡର ତାନ୍ତ୍ୟା ଟୋପେ', ପ୍ରତ୍ୟେକଙ୍କୁ ୧୧ଟି ତୋପର ସଲାମ ଦିଆଗଲା । ସେଦିନ ଅପରାହ୍ନରେ, ଉଦାତ୍ତ କଣ୍ଠରେ ଦେଶ ପ୍ରେମର ସଙ୍ଗୀତ ଗାଇ ଗାଇ ସିପାହୀମାନେ, ଯେଯାହା ଛାଉଣୀକୁ ଫେରିଯାଇଥିଲେ ।



# ଝାନ୍ସୀ

ବନାରସରେ, 'ମୋରେପନ୍ତ ତାମ୍ବେ' ଓ ତାଙ୍କର ସ୍ତ୍ରୀ 'ଭାଗୀରଥୀବାଈ' ବାସ କରୁଥିଲେ । ତାଙ୍କରି ପରିବାରରେ, ଝାନ୍ସୀ ରାଣୀ 'ଲକ୍ଷ୍ମୀବାଈ' ଜନ୍ମଗ୍ରହଣ କରିଥିଲେ । ପିଲାଦିନେ, ତାଙ୍କର ଡାକନାମ 'ମନୁ' ଥିଲା । ବାଲ୍ୟାବସ୍ଥାରେ ଲୋକମାନେ ତାଙ୍କୁ ଶ୍ରଦ୍ଧାରେ 'ଛବେଳି' ବୋଲି ଡାକୁଥିଲେ । 'ନାନାସାହେବ', 'ମନୁ'ଙ୍କର ବାଲ୍ୟଜୀବନର ବନ୍ଧୁ ଥିଲେ । ଏପରିକି, ବାଲ୍ୟକାଳରେ ଉଭୟେ ଘୋଡସବାର, ତୀର ଓ ବନ୍ଧୁକ ଚାଳନା, ତଲବାର ଚାଳନା ଆଦି ଏକ ସଙ୍ଗେ ଅଭ୍ୟାସ କରୁଥିଲେ । ୧୮୪୨ମସିହାରେ, 'ମନୁ'ଙ୍କର ଝାନ୍ସୀର 'ମହାରାଜା ଗଙ୍ଗାଧର ରାଓ ସାହେବ'ଙ୍କ ସହିତ ବିବାହ ହେଲା ଓ ସେ 'ମହାରାଣୀ ଲକ୍ଷ୍ମୀବାଈ' ରୂପେ ପରିଚିତା ହେଲେ । ସେ ଅତ୍ୟନ୍ତ ଜନପ୍ରିୟା ଥିଲେ । ୧୮୫୩ମସିହାରେ, 'ମହାରାଜା ଗଙ୍ଗାଧର ରାଓ'ଙ୍କର ମୃତ୍ୟୁ ହେବାରୁ, 'ଲକ୍ଷ୍ମୀ ବାଈ', 'ଦାମୋଦର ରାଓ'ଙ୍କୁ ପୋଷ୍ୟ ପୁତ୍ର ରୂପେ ଗ୍ରହଣ କଲେ । କିନ୍ତୁ, 'ଡେଲହାଉସୀ'ଙ୍କର ନୂତନ ନୀତି ଫଳରେ ସନ୍ଧିପତ୍ରର ଚୁକ୍ତିନାମା ଅନୁସାରେ ମଧ ତାଙ୍କ ପୋଷ୍ୟପୁତ୍ରଙ୍କୁ ସ୍ୱୀକୃତି ମିଳିନଥିଲା । ସ୍ୱାଭିମାନୀ 'ଲକ୍ଷ୍ମୀବାଈ', ଅତ୍ୟନ୍ତ ଉତ୍କ୍ଷିପ୍ତା ହୋଇ, ଝାନ୍ସୀର ସ୍ୱାଧୀନତା ବଜାୟ ରଖିବା ପାଇଁ ଦୃଢସଂକଳ୍ପ ହେଲେ । 'ନାନାସାହେବ'ଙ୍କ ସହ ତାଙ୍କର ବାଲ୍ୟକାଳରୁ ବନ୍ଧୁତା ଥିବା ଦୃଷ୍ଟିରୁ ଓ ଉଭୟେ ସ୍ୱଧର୍ମ ଓ ସ୍ୱରାଜ୍ୟ ପ୍ରତିଷ୍ଠା ପାଇଁ ସଂକଳ୍ପବଦ୍ଧ ହୋଇଥିବାରୁ 'ନାନାସାହେବ'ଙ୍କର କାର୍ଯ୍ୟକଳାପ ପ୍ରତି 'ଲକ୍ଷ୍ମୀବାଈ'ଙ୍କର ସମର୍ଥନ ଓ ସହଯୋଗ ଥିଲା ।

ଜୁନ୍ ଚାରିତାରିଖରେ 'ଝାନ୍ସୀ'ରେ ବିଦ୍ରୋହ ଦେଖାଦେଲା । ବିଦ୍ରୋହ ପୂର୍ବରୁ, ବିଦ୍ରୋହୀମାନଙ୍କର ସଂଗଠନ ସଂକ୍ରାନ୍ତୀୟ କିଛି ଗୁପ୍ତ ଚିଠିରୁ ସୂଚନା ମିଳିଥିଲାଯେ 'ଲକ୍ଷ୍ମଣ ରାଓ' ନାମକ 'ଲକ୍ଷ୍ମୀବାଈ'ଙ୍କର ଜଣେ ଅନୁଗତ ବ୍ରାହ୍ମଣ, ବିଦ୍ରୋହ ସଂଗଠନ କରୁଥିଲେ ଓ ଇଂରାଜି ସେନାର ଅଫିସରମାନଙ୍କୁ ହତ୍ୟା କରିବା ଏହି ସଂଗଠନର ଲକ୍ଷ୍ୟ ଥିଲା । ଇଂରାଜିମାନଙ୍କ ମଧ୍ୟରେ, ଏହିଚିଠି ବିଷୟରେ ଓ ପ୍ରତିରକ୍ଷାତ୍ମକ ବ୍ୟବସ୍ଥା ସମ୍ବନ୍ଧରେ ଆଲୋଚନା ଚାଲିଥିଲା ବେଳେ, ବିଦ୍ରୋହୀମାନେ ଦୁର୍ଗ ଅଧିକାର କରିନେଲେ । ଇଂରାଜିମାନେ, ଆତ୍ମରକ୍ଷା ପାଇଁ ନଗରୀମଧ୍ୟରେ ଥିବା ଅନ୍ୟ ଏକ ଦୁର୍ଗକୁ ପଳାୟନ କଲେ । କିନ୍ତୁ 'ହାକିମ ସଲାୟ ମହମ୍ମଦ', ସେମାନଙ୍କର ପ୍ରାଣରକ୍ଷାର ପ୍ରତିଶ୍ରୁତି ଦେବାରୁ, ସେମାନେ ଦୁର୍ଗ ଦ୍ୱାରରେ ଅସ୍ତ୍ର ତ୍ୟାଗକରି ଆତ୍ମସମର୍ପଣ କଲେ । ବିଦ୍ରୋହୀମାନେ ତୁରନ୍ତ ଉକ୍ତ ଦୁର୍ଗ ଅଧିକାର କରି ନେଲେ । ଅବଶେଷରେ ଜୁନ୍ ସାତତାରିଖ ଦିନ, ରିସାଲଦାର

'କାଲା ଖାଁ' ଓ ତହସିଲଦାର 'ମହମ୍ମଦ ହୁସେନ୍'ଙ୍କ ଅଧିନାୟକତ୍ୱରେ ବିଦ୍ରୋହୀ ସୈନ୍ୟମାନେ ଇଂରାଜି ପତାକା କାଢିନେଇ ଝାନ୍‌ସୀର ପତାକା ଉଡାଇ ଦେଲେ । ଝାନ୍‌ସୀରେ ଇଂରାଜି ରାଜତ୍ୱର ଅନ୍ତ ହେଲା ।

ଜୁନ୍ ଆଠ ତାରିଖ ଦିନ ବନ୍ଦୀ ଇଂରାଜିମାନଙ୍କୁ ଏକ ଶୋଭାଯାତ୍ରାରେ ନଗରୀ ମଧ୍ୟରେ ନିଆଗଲା । ଶୋଭାଯାତ୍ରା 'ଜୋହନବାଗ'ରେ ପହଞ୍ଚିବା ପରେ ସମସ୍ତଙ୍କୁ ହତ୍ୟା କରାଗଲା । ଏଥିରେ ପଞ୍ଚସ୍ତରୀ ଜଣ ପୁରୁଷ, ବାର ଜଣ ମହିଳା ଓ ତେଇଶ ଜଣ ଶିଶୁ ଥିଲେ । 'ଲକ୍ଷ୍ମୀବାଈ', 'ମହାରାଜା ଦାମୋଦର ରାଓ'ଙ୍କର ଅଭିଭାବକ ହିସାବରେ, ଶାସନ କାର୍ଯ୍ୟ ନିଜ ହାତକୁ ନେଲେ ।

'ଲକ୍ଷ୍ମୀବାଈ' ନିଜର ବୀରତ୍ୱ, ଦେଶପ୍ରେମ ଓ ସଚ୍ଚରିତ୍ରତା ବଳରେ ପ୍ରଜାମାନଙ୍କର ଶ୍ରଦ୍ଧା ଓ ଭକ୍ତିର ପାତ୍ରୀ ହୋଇଥିଲେ । କେବଳ ପ୍ରଜାମାନେ ନୁହେଁ, ପରନ୍ତୁ ସିପାହୀମାନେ ମଧ୍ୟ ତାଙ୍କୁ ଦେବୀ ପରି ଜ୍ଞାନ କରୁଥିଲେ ଓ ତାଙ୍କର ଶ୍ରୀମୁଖର ଆଦେଶକୁ ଅନାଇବସିଥିଲେ । 'ଲକ୍ଷ୍ମୀବାଈ', ଭୋର ପାଞ୍ଚଟାରୁ ଶଯ୍ୟା ତ୍ୟାଗ କରୁଥିଲେ ଓ ସୁଗନ୍ଧ ଅତର ମିଶ୍ରିତ ଜଳରେ ସ୍ନାନ କରୁଥିଲେ । ସାଧାରଣତଃ ଏହାପରେ ସେ ଏକ ଧଳା ଚନ୍ଦେରୀ ଶାଢୀ ପିନ୍ଧୁଥିଲେ ଓ ନିତ୍ୟ ପ୍ରାର୍ଥନାରେ ବସୁଥିଲେ । ସର୍ବ ପ୍ରଥମେ, ସେ ସ୍ୱାମୀଙ୍କର ମୃତ୍ୟୁ ପରେ ମଧ୍ୟ କେଶ ଧାରଣ କରିଥିବାରୁ, ପ୍ରାୟଶ୍ଚିତ ସ୍ୱରୂପ କିଛି ଜଳ ପ୍ରକ୍ଷାଳନ କରୁଥିଲେ । ତାହା ପରେ ସେ ତୁଳସୀ ଚଉରାକୁ ଯାଇ ତୁଳସୀ ବୃକ୍ଷକୁ ପୂଜା କରୁଥିଲେ । ଏହାପରେ ସେ ପାର୍ଥିବ ପୂଜା ଆରମ୍ଭ କରୁଥିଲେ । ଦରବାରରେ ସଙ୍ଗୀତଜ୍ଞମାନେ ଭକ୍ତିମୂଳକ ଭଜନ ଗାନ କରୁଥିଲେ ଓ ପୁରାଣ ପଣ୍ଡାମାନେ ପୁରାଣ ପାଠ କରି ଶୁଣାଉଥିଲେ । ଏହାପରେ, ସର୍ଦ୍ଦାର ଓ ରାଣୀଙ୍କ ଉପରେ ନିର୍ଭର କରୁଥିବା ଅନ୍ୟମାନେ ଆସି, ରାଣୀଙ୍କର ଦର୍ଶନ କରୁଥିଲେ ଓ ପ୍ରଣାମ କରୁଥିଲେ । ଏମାନଙ୍କର ସଂଖ୍ୟା ସାତଶହ ପଚାଶ ହୋଇଥିଲେ ମଧ୍ୟ, ରାଣୀଙ୍କର ଅସାଧାରଣ ସ୍ମୃତି ଶକ୍ତି ଯୋଗୁଁ, ସେ ଏ ସମସ୍ତଙ୍କୁ ବ୍ୟକ୍ତିଗତ ଭାବରେ ଜାଣିଥିଲେ ଏବଂ କେଉଁ ଦିନ କିଏ ନଆସିଲେ ତାହା ମନେରଖି ଖବର ନେଉଥିଲେ । ଏହାପରେ ସେ ଈଶ୍ୱର ଆରାଧନା କରି ଆହାର ଗ୍ରହଣ କରୁଥିଲେ । ଆହାର ଅନ୍ତେ, ବିଶେଷ କାର୍ଯ୍ୟ ନଥିଲେ ସେ ଏକ ଘଣ୍ଟା ବିଶ୍ରାମ କରୁଥିଲେ । ବିଶ୍ରାମ ପରେ, ସେ ସକାଳର ଆସିଥିବା ଉପହାର ସାମଗ୍ରୀ ଗୁଡିକୁ ନିରୀକ୍ଷଣ କରୁଥିଲେ । ତହିଁରୁ ନିଜର ମନୋମତ କିଛି ଉପହାର ସାମଗ୍ରୀ ଗ୍ରହଣ କରି, ଅନ୍ୟ ଗୁଡିକୁ ସେ କୋଠିବାଲାଙ୍କୁ (କୋଷ ବିଭାଗର ମନ୍ତ୍ରୀ) ଭୃତ୍ୟମାନଙ୍କ ମଧ୍ୟରେ ବଣ୍ଟନ କରିବା ପାଇଁ, ଦେଇଦେଉ ଥିଲେ । ଅପରାହ୍ଣ ତିନିଟା ବେଳେ ସେ ଦରବାରକୁ

ଯାଉଥିଲେ । ସାଧାରଣତଃ ଏହି ସମୟରେ ସେନିଜକୁ ପୁରୁଷ ପୋଷାକରେ ସଜ୍ଜିତ କରୁଥିଲେ । ସେ ଏକ ପାଇଜାମା ଓ ଘନନୀଳ ସହିତ କଳା ମିଶ୍ରିତ ଏକ କୋଟ ପରିଧାନ କରୁଥିଲେ । ମସ୍ତକରେ ଟୋପି ପିନ୍ଧି ତା ଉପରେ ଏକ ପଗଡି ଗୁଡାଉଥିଲେ । ଜରିକାମ ହୋଇଥିବା ଏକ ଦୁପଟ୍ଟାକୁ ଅଣ୍ଟାରେ କସି ସେଥିରେ ଏକ ରତ୍ନଖଚିତ ତଲବାର ଝୁଲାଉଥିଲେ । ସେ ଅଳଙ୍କାର ମଧ୍ୟରେ କେବଳ ଏକ ମୋତିର ମାଳା ପରିଧାନ କରୁଥିଲେ ଓ ଆଙ୍ଗୁଠିରେ ଏକ ହୀରାର ମୁଦି ପିନ୍ଧୁଥିଲେ ।

ସେ ଦରବାର ସଂଲଗ୍ନ ଏକ କୋଠରୀରେ ବସୁଥିଲେ ଏବଂ ତାହାର ଦ୍ୱାର ଦରବାର ଆଡକୁ ମୁହଁ କରିଥିଲା । ମଝିରେ ସୁନାଜରିରେ କାମ ହୋଇଥିବା ଏକ ସୂକ୍ଷ୍ମ ପରଦା ପଡିଥିଲା । ପ୍ରକୋଷ୍ଠ ମଧ୍ୟରେ, ଏକ ନରମ ଗଦି ଓ ତକିଆରେ ଭରା ଦେଇ ରାଣୀ ଉପବେଶନ କରୁଥିଲେ । ପ୍ରକୋଷ୍ଠର ବାହ୍ୟ ପାର୍ଶ୍ୱରେ, 'ଦେୱାନ ଲକ୍ଷ୍ମଣ ରାଓ ପାଣ୍ଡେ' ଆବଶ୍ୟକୀୟ କାଗଜ ପତ୍ର ଧରି ଛିଡା ହୋଇ ପଢି ଶୁଣାଉଥିଲେ ଓ ରାଣୀ ସେସବୁ ଉପରେ ନିଜର ନିର୍ଦ୍ଦିଷ୍ଟ ଓ ସ୍ୱଷ୍ଟ ରାୟ ଦେଉଥିଲେ । ବେଳେ ବେଳେ ରାୟ ସେ ନିଜ ହାତରେ ମଧ୍ୟ ଲେଖୁଥିଲେ । ସେ ଅତ୍ୟନ୍ତ ବୁଦ୍ଧିମତୀ ହୋଇଥିବାରୁ ଯେ କୌଣସି ଜଟିଳ ସମସ୍ୟାକୁ ସୂକ୍ଷ୍ମଭାବରେ ବିଶ୍ଳେଷଣ କରି, ତହିଁ ଉପରେ ନିଜର ସୁଚିନ୍ତିତ ଆଦେଶ ଦେଉଥିଲେ । ସେ ନ୍ୟାୟ ପ୍ରଦାନ ଦିଗରେ ତତ୍ପରତାର ସହ ଦୃଷ୍ଟି ଦେଉଥିଲେ । ରାଣୀ ଉଭୟ ଫୌଜଦାରୀ ଓ ଦେୱାନୀ ସମ୍ବନ୍ଧୀୟ ମାମଲାରେ ନିଜର ଉନ୍ନତ ବିଚାରପ୍ରସୂତ ରାୟ ପ୍ରଦାନ କରିପାରୁଥିଲେ । ସେ ମହାଲକ୍ଷ୍ମୀଙ୍କର ଅତ୍ୟନ୍ତ ଭକ୍ତ ଥିଲେ । ମହାଲକ୍ଷ୍ମୀଙ୍କର ମନ୍ଦିର ଏକ ହ୍ରଦ କୂଳରେ ଅବସ୍ଥିତ ଥିଲା । ଉକ୍ତ ହ୍ରଦ ପଦ୍ମ ଦ୍ୱାରା ପୂର୍ଣ୍ଣ ହୋଇଥିଲା । ପ୍ରତି ମଙ୍ଗଳବାର ଓ ଶୁକ୍ରବାର ରାଣୀ ମନ୍ଦିର ଦର୍ଶନରେ ଆସୁଥିଲେ । ଦିନେ ସେ ମନ୍ଦିରରୁ ଦକ୍ଷିଣ ଦ୍ୱାର ଦେଇ ଫେରିବା ବେଳେ କିଛି ଦୁଃଖୀ ଲୋକ ଛିଡା ହୋଇ କୋଳାହଳ କରୁଥିବାର ଦେଖିବାକୁ ପାଇଲେ । ମନ୍ତ୍ରୀ 'ଲକ୍ଷ୍ମଣ ରାଓ'ଙ୍କୁ କାରଣ ଅନୁସନ୍ଧାନ କରିବାକୁ କହିବା ଫଳରେ ଜଣାପଡିଲାଯେ ଦରିଦ୍ର ବ୍ୟକ୍ତିମାନେ ଶୀତହେତୁ ଥଣ୍ଡାରେ କଷ୍ଟ ପାଇ ଦୁଃଖ ଜଣାଉଛନ୍ତି । ରାଣୀ ତତ୍ କ୍ଷଣାତ୍ ସେମାନଙ୍କୁ ଶୀତ ବସ୍ତ୍ର ପ୍ରଦାନ କରିବାକୁ ଆଦେଶ ଦେଲେ ଓ ସେହିଦିନ ଠାରୁ ମନ୍ଦିରରୁ ଫେରିବା ସମୟରେ ଦରିଦ୍ର ନାରାୟଣ ସେବାର ବ୍ୟବସ୍ଥା କଲେ । ଏହିପରି ରାଣୀ ନିଜର ସଦ୍‌ଗୁଣାବଳୀ ଓ ପ୍ରଜାବତ୍ସଳତା ବଳରେ ପ୍ରଜାମାନଙ୍କର ତଥା ସୈନ୍ୟମାନଙ୍କର ହୃଦୟରେ ଦେବୀର ଆସନ ଗ୍ରହଣ କରିଥିଲେ ।



# ଅବଧ

ଡେଲହାଉସୀଙ୍କ ସମୟରେ ଅବଧ, ସ୍ୱାଧୀନତା ହରାଇ ଇଂରାଜି ଶାସନର ଅନ୍ତର୍ଭୁକ୍ତ ହୋଇଥିଲା । ନବାବଙ୍କର ରାଜ୍ୟ ଇଂରାଜିମାନଙ୍କର ହସ୍ତଗତ ହେବାଫଳରେ, ତାଙ୍କ ଅଧିନରେ ଥିବା ଅଫିସର, ମନ୍ତ୍ରୀ, ଦରବାରୀ ତଥା କର୍ମଚାରୀଗଣ, ନିଜ ନିଜର ବୃତ୍ତି ହରାଇ, ସାଧାରଣ ଭାବରେ ଅର୍ଜନ କରି ବଞ୍ଚି ରହିଥିଲେ । ନବାବଙ୍କର ସୈନ୍ୟବାହିନୀକୁ ଭାଙ୍ଗିଦିଆଗଲା । ନବାବଙ୍କ ପୂର୍ବରୁ ଜମିଦାର ତଥା ରାଜାମାନଙ୍କୁ ଦିଆଯାଇଥିବା ସମ୍ପତ୍ତି ଉପରେ ପାରମ୍ପାରିକ ଅଧିକାର, ଇନାମ ଆଦି ନାକଚ କରିଦିଆଗଲା । ଏତଦ୍ ବ୍ୟତୀତ, ଇଂରାଜି ସରକାର, ପ୍ରଜାମାନଙ୍କର ଜମି ଉପରେ ଅତ୍ୟଧିକ କରଧାର୍ଯ୍ୟ କରିବା ଫଳରେ, କୃଷକ ମାନଙ୍କ ଭିତରେ ଅଶାନ୍ତି ବ୍ୟାପିଗଲା । ଇଂରାଜି ବାହିନୀରେ ନିଯୁକ୍ତି ପାଇଥିବା ଅଧିକାଂଶ ହିନ୍ଦୁସ୍ଥାନୀ ସିପାହୀ ଅବଧର ପ୍ରଜା ଥିଲେ । ସେମାନଙ୍କର ଜନ୍ମସ୍ଥାନର ଦୁର୍ଦ୍ଦଶା ଦେଖି ସେମାନଙ୍କ ମଧ୍ୟରେ ଇଂରାଜିଙ୍କ ବିରୁଦ୍ଧରେ ପ୍ରତିକ୍ରିୟା ସୃଷ୍ଟି ହେବାକୁ ଲାଗିଲା । ବିଶେଷ ଭାବରେ ସେମାନଙ୍କର 'ନବାବ ଓ୍ୱାଜିଦ୍ ଅଲ୍ଲି ଶାହ'ଙ୍କଠାରୁ, ଯେଉଁ ପ୍ରକାରେ କପଟତା, ପ୍ରବଞ୍ଚନା ଓ ନିଷ୍ଠୁରତା ପୂର୍ବକ ଶାସନ ଗାଦୀ ଛଡାଇନିଆଗଲା, ତାହାର ଅପମାନରେ ସିପାହୀମାନେ ଅନ୍ତରରେ ଜର୍ଜରିତ ହେବାକୁ ଲାଗିଲେ । ଏହି ପ୍ରବଞ୍ଚନା ଫଳରେ କେବଳ ସିପାହୀମାନଙ୍କ ମଧ୍ୟରେ ନୁହେଁ, ପରନ୍ତୁ, ରାଜା ଜମିଦାର ତଥା ଜନସାଧାରଣଙ୍କ ମଧ୍ୟରେ ମଧ୍ୟ ଚାପା ଉତ୍ତେଜନା ଦେଖାଗଲା ।

ଏହି ପରିସ୍ଥିତି ମଧ୍ୟରେ 'ସାର୍ ହେନେରୀ ଲରେନ୍ସ' (Sir Henery Lawrence) ଅବଧର ମୁଖ୍ୟ ଅଫିସର ହୋଇ ନିଯୁକ୍ତି ହେଲେ । ସେ ପଞ୍ଜାବ ବିପ୍ଳବକୁ ଶାନ୍ତ କରିଥିବା (Sir John Lawrence) 'ସାର୍ ଜନ୍ ଲରେନ୍ସ'ଙ୍କର ବଡଭାଇ ଥିଲେ । 'ହେନେରୀ ଲରେନ୍ସ', ଅବଧ ପହଞ୍ଚି ପରିସ୍ଥିତିର ଅନୁଶୀଳନ କରି, ସର୍ବ ପ୍ରଥମେ ଭବିଷ୍ୟତରେ ହେବାକୁଯାଉଥିବା ବିଦ୍ରୋହର ସଂକେତ ପାଇଥିଲେ ।

ଲକ୍ଷ୍ନୌ ଅବଧର ରାଜଧାନୀ ହୋଇଥିବାରୁ, 'ଲରେନ୍ସ' ସେହିଠାରେ ନିଜର ମୁଖ୍ୟ କାର୍ଯ୍ୟାଳୟ ସ୍ଥାପନ କଲେ । ସେ, ପରିସ୍ଥିତିର ଭୟାବହତା ଅନୁମାନ କରି ଜମିଦାର ଆଦି ମୁଖ୍ୟ ବ୍ୟକ୍ତିମାନଙ୍କୁ, ତୁଷ୍ଟି ବାକ୍ୟ ପ୍ରୟୋଗ କରି ଶାନ୍ତ କରିବାକୁ ଚେଷ୍ଟା କଲେ । ଏଥିପାଇଁ ସେ ଶ୍ରମ ସ୍ୱୀକାର କରି ଦରବାର ମାନ ଡକାଇଲେ ଏବଂ ସେମାନଙ୍କୁ ବିଭିନ୍ନ

ଉପାଧି ଆଦିରେ ସନ୍ତୁଷ୍ଟ କରିବାକୁ ଚେଷ୍ଟା କଲେ । 'ଇରେଜ୍' କେବଳ ଏହି ତୁଷ୍ଟିକରଣ ପ୍ରକ୍ରିୟାରେ ସନ୍ତୁଷ୍ଟ ନଥିଲେ । ଅପରପକ୍ଷରେ ବିଦ୍ରୋହ ସଂଘଟିତ ହେଲେ କି ପ୍ରକାରେ ତାହାର ପ୍ରତିରୋଧ କରାଯାଇପାରିବ ସେ ବିଷୟରେ ମଧ୍ୟ ସେ ଆୟୋଜନ କରିବାକୁ ଲାଗିଲେ ।

'ମୌଲବୀ ଅହମ୍ମଦ ଶାହ', ନବାବଙ୍କର ଜଣେ ତାଲୁକଦାର ଥିଲେ । ଇଂରାଜି ଶାସନ ହେତୁ ସେ ତାଲୁକଦାରୀ ହରାଇଥିଲେ । ଏହା ତା'ଙ୍କ ସ୍ୱାଭିମାନରେ ପ୍ରଚଣ୍ଡ ଆଘାତ ଆଣିଥିଲା । ଏଣୁ ସେ, କେବଳ ନିଜର ତାଲୁକ୍ ପାଇଁ ଚେଷ୍ଟା ନକରି, ସ୍ୱଧର୍ମ ଓ ସ୍ୱରାଜ୍ୟର ସାଧନ ନିମିତ୍ତ ବିଦ୍ରୋହର ବାଡବାଗ୍ନି ଉଦ୍ଦୀପିତ କରିବାକୁ ଲାଗିଲେ । ତାଙ୍କର ତାଲୁକ୍‌ଦାରୀ ଚାଲିଯିବା ପରେ, ସେ ମୌଲବୀ ହୋଇଗଲେ ଓ ସାରାଦେଶ ପରିଭ୍ରମଣ କରି ବିଦ୍ରୋହର ବାର୍ତ୍ତା ପ୍ରଚାର କରିବାକୁ ଲାଗିଲେ । ସେ ଯେଉଁ ସ୍ଥାନକୁ ଯାଉଥିଲେ, ସେଠାରେ ଲୋକମାନଙ୍କ ମଧ୍ୟରେ ଉଦ୍ଦୀପିତ ସ୍ୱଧର୍ମ ଓ ସ୍ୱରାଜ୍ୟ ଚେତନା ପରିଲକ୍ଷିତ ହେଉଥିଲା । ସେତେବେଳେ ତାଙ୍କର ବାକ୍ୟାବଳୀ, ଅବଧ ରାଜପରିବାରର ଧର୍ମରେ ପରିଣତ ହୋଇଥିଲା । ସେ ଆଗ୍ରାରେ ସ୍ୱଧର୍ମ ଓ ସ୍ୱରାଜ୍ୟ ସଂଗଠନର ଏକ ଶାଖା ପ୍ରତିଷ୍ଠା କରିଥିଲେ । ସେ ଲକ୍ଷ୍ନୌରେ ମଧ୍ୟ ଖୋଲା ଖୋଲି ଭାବରେ ବିଦ୍ରୋହର ବାର୍ତ୍ତା ପ୍ରଚାର କରୁଥିଲେ । ସେ କାୟମନୋବାକ୍ୟରେ ସ୍ୱଧର୍ମ ଓ ସ୍ୱରାଜ୍ୟ ପ୍ରତିଷ୍ଠା ପାଇଁ, ଗୁପ୍ତ ସଂଗଠନର ଜାଲ ବିଛାଇବାକୁ ଲାଗିଥିଲେ । ଏହା ସହିତ ସେ, ସ୍ୱରଚିତ ରଚନା, ବିଦ୍ରୋହାତ୍ମକ ପ୍ରଚାରପତ୍ର, ଅବଧର ଜନସାଧାରଣଙ୍କ ମଧ୍ୟରେ ବିତରଣ କରାଉଥିଲେ ।

ସେହିସମୟରେ, ଅବଧରେ ମାନସିଂହ ନାମକ ଜଣେ କ୍ଷମତାଶାଳୀ ହିନ୍ଦୁ ସରଦାର ଥିଲେ । ସେ ଜଣେ ଉଗ୍ର ସ୍ୱଧର୍ମ ଓ ସ୍ୱରାଜ୍ୟ ସର୍ବସ୍ୱ ବ୍ୟକ୍ତିତ୍ୱ ଥିଲେ । ଏହି ଉଭୟଙ୍କର ନେତୃତ୍ୱରେ, ମୌଲବୀ ଓ ପଣ୍ଡିତମାନେ, ସାରା ଅବଧ ପରିଭ୍ରମଣ କରି ଜନସାଧାରଣଙ୍କ ମଧ୍ୟରେ ସ୍ୱଧର୍ମ ଓ ସ୍ୱରାଜ୍ୟର ବହ୍ନି ପ୍ରଜ୍ୱଳିତ କରିବାକୁ ଲାଗିଲେ । ଅହମ୍ମଦ ଶାହ, ବ୍ୟକ୍ତିଗତ ଭାବରେ ଭାରତ ବର୍ଷର ବିଭିନ୍ନ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ସହ ସମ୍ପର୍କ ସ୍ଥାପନ କରି, ବିଦ୍ରୋହର ଜାଲ ବିଛାଇବାକୁ ଲାଗିଲେ । ଲକ୍ଷ୍ନୌରେ ସେ ଖୋଲା ଖୋଲି ଭାବରେ ଇଂରାଜିରାଜଧ୍ୱଂସାତ୍ମକ ବିଦ୍ରୋହର ବାର୍ତ୍ତା ପ୍ରଚାର କରୁଥିଲେ । ସେ ଜନସାଧାରଣଙ୍କ ପୂଜ୍ୟ ତଥା ପ୍ରିୟ ଥିଲେ । ତାଙ୍କର ଏ ସମସ୍ତ କାର୍ଯ୍ୟାବଳୀ ଲକ୍ଷ୍ୟ କରି, ସେ ସମୟରେ ଇଂରାଜି ସରକାର ତାଙ୍କୁ ସନ୍ଦେହରେ ବନ୍ଦୀ କରିବା ପାଇଁ ଆଦେଶ ଦେଇଥିଲେ । କିନ୍ତୁ, ସେ ଏତେ ଦୂର ଜନପ୍ରିୟ ଥିଲେ ଯେ ପୁଲିସ ତାଙ୍କୁ ବନ୍ଦୀ କରିବାକୁ ପ୍ରତ୍ୟାଖ୍ୟାନ କରିଦେଲା । ଏଣୁ ମୌଲବୀଙ୍କୁ ବନ୍ଦୀ କରିବା ପାଇଁ ଏକ ସୈନ୍ୟ ଦଳ

ପଠାଗଲା । ପରିଶେଷରେ ତାଙ୍କର ବିଚାର ହୋଇ ଫାଶୀ ହୁକୁମ୍ ହେଲା ଓ ଫୈଜାବାଦ ବନ୍ଦୀଶାଳାରେ ତାଙ୍କୁ ବନ୍ଦୀ କରି ରଖାଗଲା ।

ହେନେରୀ ଲରେନ୍ସ ମେ ବାର ତାରିଖ ଦିନ ଏକ ବଡ ଦରବାରର ବ୍ୟବସ୍ଥା କରାଇଲେ । ଉକ୍ତ ଦରବାରରେ ସେ ହିନ୍ଦୁସ୍ତାନୀମାନଙ୍କର ବିଶ୍ୱସ୍ତତା ଓ ଅତୀତରେ ରଣଜିତ୍ ସିଂହଙ୍କର ମୁସଲମାନମାନଙ୍କୁ କରିଥିବା ଅପମାନ ଏବଂ ଆଓରଙ୍ଗଜେବ ହିନ୍ଦୁ ମାନଙ୍କୁ କରିଥିବା ଅପମାନ ଆଦି ଅନର୍ଗଳ ବିଭେଦମୂଳକ ଭାଷଣ ଦେଲେ । ଏତଦ୍‌ବ୍ୟତୀତ ଇଂରାଜି ସରକାର କିପରି ହିନ୍ଦୁ ଓ ମୁସଲମାନମାନଙ୍କର ପରସ୍ପର ବିରୁଦ୍ଧରେ ଆତ୍ମରକ୍ଷାରେ ସହାୟତା କରୁଛନ୍ତି ସେ ବିଷୟ ମଧ୍ୟ ସେ ଦରବାରରେ ପ୍ରାଞ୍ଜଳ ଭାବରେ ବୁଝାଇଲେ । ଏହାପରେ ସେ ବିଶ୍ୱସ୍ତ ସିପାହୀମାନଙ୍କୁ ତଲବାର, ପଗଡି ଓ ଶାଲ ଆଦି ଉପହାର ପ୍ରଦାନ କଲେ । ଏହା ସହିତ ୭ମ ରେଜିମେଣ୍ଟକୁ ଅସ୍ତ୍ରହୀନ କରି ଭାଙ୍ଗିଦିଆଗଲା ।

ମେ ବାର ତାରିଖ ଦିନ ଦରବାର ବସିଥିଲା । ତେର ତାରିଖ ଦିନ 'ମିରଟ୍'ରେ ବିଦ୍ରୋହ ହେବାର ସମାଚାର ପହଞ୍ଚିଗଲା । ଚଉଦ ତାରିଖ ଦିନ 'ଦିଲ୍ଲୀ' ପତନର ଖବର ମଧ୍ୟ ପହଞ୍ଚିଗଲା । 'ଦିଲ୍ଲୀ'ରେ ବିଦ୍ରୋହୀମାନଙ୍କର ଭାରତବର୍ଷର ସ୍ୱାଧୀନତା ଘୋଷଣାର ସମ୍ବାଦ ମଧ୍ୟ ପ୍ରାପ୍ତି ହେଲା ।

ଅପରଦିଗରେ 'ହେନେରୀ ଲରେନ୍ସ', ବିପଦର ଆଶଙ୍କା କରି ପ୍ରତିରକ୍ଷା ମୂଳକ ବ୍ୟବସ୍ଥା ସ୍ୱରୂପ 'ଲକ୍ଷ୍ନୌ' ନଗରୀ ପାଖରେ ଦୁଇଟି ସ୍ଥାନ ସ୍ଥିର କଲେ । ତାହା ହେଲା ଲକ୍ଷ୍ନୌର 'ରେସିଡେନ୍ସୀ' ଓ 'ମଚିଭବନ' । ଏହି ଦୁଇଟି ସ୍ଥାନକୁ ସେ ନିରାପଦ ଆଶ୍ରୟ ସ୍ଥଳୀରୂପେ ନିର୍ଣ୍ଣୟ କରି ସେଠାରେ ସୁଦୃଢ ପ୍ରତିରକ୍ଷା ବ୍ୟବସ୍ଥାମାନ କରିବାକୁ ଲାଗିଲେ । ସେହି ସ୍ଥାନକୁ ସମସ୍ତ ଅଣସାମରିକ ଇଂରାଜି, ଯଥା, ବେପାରୀ ଓ କର୍ମଚାରୀମାନଙ୍କୁ ସ୍ଥାନାନ୍ତରିତ କରାଗଲା । ଏହି ସମୟରେ 'ସାର୍ ହେନେରୀ ଲରେନ୍ସଙ୍କୁ ସାମରିକ ମୁଖ୍ୟ ଭାବରେ ନିଯୁକ୍ତି ମିଳିଲା । 'ଅବଧ', 'ନେପାଳର' ନିକଟବର୍ତ୍ତୀ ହୋଇଥିବାରୁ 'ଲରେନ୍ସ', ନେପାଳକୁ ସାହାଯ୍ୟର ଅନୁରୋଧ କରି ଦୂତମାନଙ୍କୁ ପ୍ରେରଣ କଲେ । ପୁନଶ୍ଚ ସେ ନେପାଳର 'ଯାଜାଙ୍ଗ ବାହାଦୂର'ଙ୍କୁ ଏକ ସୈନ୍ୟବାହିନୀ ସହ 'ଅବଧ'ରେ ଉପସ୍ଥିତ ରହିବା ପାଇଁ ଅନୁରୋଧ ଜଣାଇଲେ ।

ଏ ସମସ୍ତ ପ୍ରତିରକ୍ଷାମୂଳକ ବ୍ୟବସ୍ଥା ଗ୍ରହଣ କରିବା ସଙ୍ଗେ ସଙ୍ଗେ 'ଲରେନ୍ସ', ବିଦ୍ରୋହର ସମ୍ଭାବନା ସମ୍ପର୍କରେ ଜାଣିବାପାଇଁ ଗୁପ୍ତଚର ନିଯୁକ୍ତ କରି ସେମାନଙ୍କ ଠାରୁ

ସମ୍ବାଦ ଗ୍ରହଣ କରୁଥିଲେ । ପ୍ରତିଦିନ, ସେ ବିଭିନ୍ନ ଖବର ପାଇ, ବିଦ୍ରୋହର ଆଶଙ୍କା କରି, ବିଭିନ୍ନ ପ୍ରକାର ପ୍ରତିରକ୍ଷା ମୂଳକ ବ୍ୟବସ୍ଥା ଗ୍ରହଣ କରୁଥିଲେ । ପ୍ରତିଦିନ ବିଦ୍ରୋହ ସମ୍ଭାବନାର ଖବର ମିଳିଲେ ମଧ, ତା'ର କୌଣସି ସଂକେତ ବାସ୍ତବରେ ଦେଖିବାକୁ ନପାଇବାରୁ, 'ଲରେନ୍ସ', କ୍ରମେ ଏହାକୁ ଏକ ପ୍ରତାରଣା ବୋଲି ମନେ କରିନେଲେ ।

ପ୍ରତିଦିନ ପରି ମେ' ମାସ ତିରିଶ ତାରିଖରେ ଜଣେ ଅଫିସର, 'ଲରେନ୍ସ'ଙ୍କୁ ଖବର ଦେଲେ ଯେ ସେହିଦିନ ରାତ୍ର ନଅଟା ସମୟରେ ବିଦ୍ରୋହର ଆରମ୍ଭ ହେବ ।

ତିରିଶ ତାରିଖ ଦିନ ସନ୍ଧ୍ୟାରେ ସୂର୍ଯ୍ୟ ଯଥାବିଧି ପଶ୍ଚିମାକାଶରେ ଅସ୍ତ ଗଲେ । ସବୁଦିନ ପରି 'ଲରେନ୍ସ' ନିଜର ଅଧିନସ୍ଥ ସହକର୍ମୀମାନଙ୍କ ସହିତ ରାତ୍ର ଭୋଜନରେ ମିଳିତ ହେଲେ । ଠିକ୍ ରାତ୍ର ନଅଟା ସମୟରେ କମାଣର ଗର୍ଜନ ଶୁଣାଗଲା । ସବୁଦିନ ମିଥ୍ୟା ସମ୍ବାଦ ଦେଉଥିବା ସମ୍ବାଦ ବାହକ ଆଜି ହିଁ ସତ୍ୟ ସମ୍ବାଦ ଆଣିଥିଲା ।

କମାଣର ଗର୍ଜନ ସହିତ ୭୧ତମ ରେଜିମେଣ୍ଟର ସିପାହୀମାନଙ୍କର ରାଇଫଲ ଗୁଳିର ଶବ୍ଦ ଶୁଣିବାକୁ ମିଳିଲା । ୭୧ତମ'' ରେଜିମେଣ୍ଟର ସିପାହୀମାନେ, ଇଂରାଜି ବଙ୍ଗଳା ଗୁଡ଼ିକ ଉପରେ ଆକ୍ରମଣ ଆରମ୍ଭ କରିଥିଲେ । ୭୧ତମ ବାହିନୀ, ନିଜର ବ୍ୟାରାକ୍‌ରେ ନିଆଁ ଲଗାଇଦେଲେ । ଇଂରାଜିମାନଙ୍କୁ ହତ୍ୟା କରାଗଲା । 'ଲେଫଟନାଣ୍ଟ ଗ୍ରାଣ୍ଟ୍', ବିଦ୍ରୋହୀ ସିପାହୀମାନଙ୍କ କବଳରୁ ରକ୍ଷା ପାଇବା ପାଇଁ, ଏକ ମସିଣା ତଳେ ଲୁଚିଥିଲେ । କିନ୍ତୁ କେହିଜଣେ, ସିପାହୀମାନଙ୍କୁ ଖବର ଦେଇଦେବା ଫଳରେ, ତାହାଙ୍କୁ ସିପାହୀମାନେ ଭିଡ଼ିଆଣି ହତ୍ୟା କରିଥିଲେ । 'ଲେଫଟନାଣ୍ଟ ହାର୍ଡିଙ୍ଗ୍', ତାଙ୍କର ଅଶ୍ୱାରୋହୀ ବାହିନୀ ସହିତ କେତୋଟି ମୁଖ୍ୟମାର୍ଗରେ ପହରା ଦେଉଥିବା ଅବସ୍ଥାରେ, ତଲବାର ଦ୍ୱାରା ଆଘାତ ପ୍ରାପ୍ତ ହେଲେ । ସମୁଦାୟ କ୍ୟାଣ୍ଟନ୍‌ମେଣ୍ଟରେ ନିଆଁ ଲଗାଇଦିଆଗଲା । 'ବ୍ରିଗେଡିୟ ହାଣ୍ଡସ୍କମ୍ବ' (Handscomb)ଙ୍କୁ ମଧ ହତ୍ୟା କରାଗଲା । ଅଳ୍ପ କେତେକ ବିଶ୍ୱସ୍ତ ସିପାହୀ ଓ ଇଂରାଜି ସୈନ୍ୟମାନେ, ସାରା ରାତ୍ରି ଅନିଦ୍ରା ହୋଇ ପହରା ଦେବାକୁ ଲାଗିଲେ ।

ମେ ୩୧ ତାରିଖ ଦିନ ସକାଳେ 'ଲରେନ୍ସ', ନିଜ ପାଖରେ ଥିବା ଇଂରାଜିସୈନ୍ୟ ଓ କିଛି ବିଶ୍ୱସ୍ତ ଦେଶୀ ସିପାହୀମାନଙ୍କୁ ନେଇ ବିଦ୍ରୋହୀ ମାନଙ୍କୁ ମୁକାବିଲା କରିବାକୁ ବାହାରି ପଡ଼ିଲେ । ବାଟରେ ତାଙ୍କ ସହିତ ଥିବା ୭ମ ଅଶ୍ୱାରୋହୀ ରେଜିମେଣ୍ଟ ବିଦ୍ରୋହୀମାନଙ୍କ ସହିତ ମିଶିଗଲେ । ଯଦିଚ ଇଂରାଜିମାନଙ୍କ ହସ୍ତରେ ସମସ୍ତ ୩୨ତମ ରେଜିମେଣ୍ଟ ଲକ୍ଷ୍ନୌରେ ଅବସ୍ଥାପିତ ଥିଲା, ତଥାପି ସୂର୍ଯ୍ୟାସ୍ତ ପୂର୍ବରୁ ୭୧ତମ ପଦାତିକ

ବାହିନୀ, ୪୮ତମ ପଦାତିକ ବାହିନୀ ଓ ୭ମ ଅଶ୍ୱାରୋହୀ ରେଜିମେଣ୍ଟ ଏକ ସଙ୍ଗେ ବିଦ୍ରୋହ କରି ଉଠିଲେ । ସେମାନଙ୍କ ସହିତ ସେଠାରେ ଅବସ୍ଥାପିତ ଥିବା ଅସ୍ଥାୟୀ ସୈନ୍ୟବାହିନୀର ସମସ୍ତ ସିପାହୀ ମିଶିଗଲେ । ସମସ୍ତେ ମିଳି ସ୍ୱାଧୀନତାର ପତାକା ଉଡାଇଦେଲେ ।

ଲକ୍ଷ୍ନୌର ଉତ୍ତର ପଶ୍ଚିମ ଦିଗରେ 'ସୀତାପୁର' ସହର ଅବସ୍ଥିତ । ସେଠାରେ ୪୮ତମ ପଦାତିକ ବାହିନୀ ସହିତ ନବମ ଓ ଦଶମ ଅସ୍ଥାୟୀ ପଦାତିକ ବାହିନୀ ମଧ୍ୟ ଅବସ୍ଥାପିତ ହୋଇଥିଲେ । 'ସୀତାପୁର' ସହର, ସେ ସମୟରେ ପ୍ରଦେଶର ଚିଫ୍‌କମିଶନର ଓ ଅନ୍ୟାନ୍ୟ ଅଫିସର ଓ କର୍ମଚାରୀମାନଙ୍କର ବାସସ୍ଥାନ ଥିଲା ।

ମେ ସତେଇଶ ତାରିଖ ଦିନ, ସେଠାରେ କିଛି ଇଂରାଜିଙ୍କ ଗୃହରେ ଅଗ୍ନି ସଂଯୋଗ କରାଗଲା । ସେଠାରେ ବିଦ୍ରୋହର ଆଶଙ୍କା ନଥିବା ହେତୁ, ଏହା ଉପରେ କେହି ଗୁରୁତ୍ୱ ଆରୋପ କଲେ ନାହିଁ । ଏଣୁ, ଆଖି ଦୁରୁଶିଆ ଭାବରେ ସିପାହୀମାନେ ବହୁ ଶ୍ରମ ସ୍ୱୀକାର ସହି, ନିଆଁକୁ ଆୟତ୍ତ କଲେ । ଗୁପ୍ତ ସଂଗଠନର ନିର୍ଦ୍ଦେଶରୁ ସେମାନେ ବିଦ୍ରୋହର ସମୟ ଆସନ୍ନ ପ୍ରାୟ ବୋଲି ଜାଣି, ଇଂରାଜିମାନଙ୍କ ମନରେ ବିଶ୍ୱାସ ଜନ୍ମାଇବା ପାଇଁ, ଏହି ଅଭିନୟ କରିଥିଲେ । ଏ ସମସ୍ତ, ଏକ ସଂଘବଦ୍ଧ ଓ ସୁଚିନ୍ତିତ ଯୋଜନାର ଅଂଶ ବିଶେଷ ଥିଲା ।

ଜୁନ୍ ଦୁଇ ତାରିଖ ଦିନ ଏକ ଅପ୍ରତ୍ୟାଶିତ ଘଟଣା ଘଟିଲା । ସିପାହୀମାନେ, ସେମାନଙ୍କୁ ଦିଆଯାଉଥିବା ଅଟାରେ ହାଡଗୁଣ୍ଡ ମିଶିଥିବାର ଅଭିଯୋଗ କଲେ । ସେମାନେ, ଏହି ଅଟା ବସ୍ତାଗୁଡିକୁ, ଗଙ୍ଗାକୁ ନିକ୍ଷେପ କରିବା ପାଇଁ ଦାବୀ କଲେ । ଇଂରାଜିମାନେ ମଧ୍ୟ, ଉକ୍ତ ଦାବୀକୁ ନୀରବରେ ଗ୍ରହଣ କରି, ବସ୍ତାଗୁଡିକୁ ଗଙ୍ଗାକୁ ନିକ୍ଷେପ କଲେ । ସେହିଦିନ ଅପରାହ୍ନରେ ସିପାହୀମାନେ, ଦଳଦଳ ହୋଇ ଇଂରାଜିମାନଙ୍କର ବାସଗୃହ ସଂଲଗ୍ନ ବଗିଚାମାନଙ୍କରେ ବଳପୂର୍ବକ ପ୍ରବେଶ କରି, ଫଳମୂଳ ଆଦି ଯାହାପାଇଲେ ତାହା ଖାଇବାକୁ ଲାଗିଲେ । ଇଂରାଜିମାନେ ଏହାର ବାରଣ କରି ପ୍ରତିବାଦ କଲେ ମଧ୍ୟ, ସେମାନଙ୍କ କଥାରେ କର୍ଣ୍ଣପାତ କରାଗଲା ନାହିଁ । ଏହି ଭୟାବହ କାର୍ଯ୍ୟାବଳୀ ପରେ ପରେ, ଜୁନ୍ ତିନି ତାରିଖ ଦିନ, ଦଳେ ସିପାହୀ ଯାଇ ଖଜଣାଖାନାକୁ ନିଜର ଅଧିକାରକୁ ଆଣିଲେ । ଆହୁରି ଦଳେ ସିପାହୀ, ଚିଫ୍ କମିଶନର୍‌ଙ୍କ ବଙ୍ଗଳାକୁ ଆକ୍ରମଣ କଲେ । ବାଟରେ ସେମାନେ 'କର୍ଣ୍ଣେଲ ବିର୍ଚ୍ଛ' (Cornel Birch) ଓ 'ଲେଫଟନାଣ୍ଟ ଗ୍ରେଭସ୍' (Leufutnant Graves) କୁ ଭେଟିଲେ ଓ ତତ୍ କ୍ଷଣାତ ସେମାନଙ୍କୁ ହତ୍ୟାକଲେ ।

ନବମଅସ୍ଥାୟୀ ପଦାତିକବାହିନୀ ମଧ୍ୟ ସେମାନଙ୍କର ଇଂରାଜି ଅଫିସରମାନଙ୍କୁ ହତ୍ୟାକଲେ । ''ଇଂରାଜି ଶାସନର ଲୋପ ହେଉ'', ଏହା ଉତ୍ତେଜିତ ଭାବରେ ଚିତ୍କାର କରି କରି ସିପାହୀମାନେ ଧ୍ୱଂସଲୀଳା ସଂଘଟିତ କରିଚାଲିଲେ । କମିଶନର ଓ ତାଙ୍କର ସ୍ତ୍ରୀ ଏ ସମସ୍ତ ଘଟଣାବଳୀରେ ଭୟଭୀତ ହୋଇ ପ୍ରାଣ ଭୟରେ ଆତ୍ମରକ୍ଷା ପାଇଁ ନଦୀ କୂଳକୁ ପଳାୟନ କଲେ । ସେମାନେ ନଦୀ ପାରିହେବା ସମୟରେ, ସ୍ୱାମୀ ସ୍ତ୍ରୀ ଓ ସେମାନଙ୍କ ସାଥିରେ ଥିବା ଏକ ବାଳକକୁ ହତ୍ୟା କରାଗଲା । ସେହିପରି 'ଥୋର୍ଣ୍ଣହିଲ୍' (Thornhill) ଓ ତାଙ୍କର ସ୍ତ୍ରୀଙ୍କୁ ମଧ୍ୟ ହତ୍ୟା କରାଗଲା । ସିପାହୀମାନେ କ୍ରୋଧରେ ଚବିଶ ଜଣ ଇଂରାଜିଙ୍କୁ ହତ୍ୟା କଲେ । ଅନ୍ୟାନ୍ୟ ଇଂରାଜିମାନେ ପ୍ରାଣଭୟରେ ରାମକୋଟ, ମିତାବାଲି ଆଦି ସ୍ଥାନର ଜମିଦାର ମାନଙ୍କ ପାଖରେ ଆଶ୍ରୟ ଭିକ୍ଷା କରି ଆଠ ଦଶ ମାସ କୌଣସି ପ୍ରକାରେ ପ୍ରାଣନେଇ ରହିଗଲେ ।

'ସୀତାପୁର'ର ଏହି ଭୟାବହକାଣ୍ଡ ସଂଘଟିତ ହେବା ପରେ ପରେ, ସିପାହୀମାନେ 'ଫରୁକାବାଦ' ଆଡକୁ ଆଗେଇ ଚାଲିଲେ । ସେଠାରେ ଦୁର୍ଗକୁ ଦଖଲ କରି, ଦୁର୍ଗରେ ଥିବା ଇଂରାଜିମାନଙ୍କୁ ହତ୍ୟା କଲେ । ବିଦ୍ରୋହୀମାନେ, ନବାବ ତଫଜଲ୍ ହୋସେନଙ୍କୁ ସେଠାରେ ଗାଦିନସୀନ କଲେ । ନବାବ ମଧ୍ୟ, ବିଦ୍ରୋହୀମାନଙ୍କ ସହିତ ମିଳି, ସମସ୍ତ ଇଂରାଜିମାନଙ୍କୁ ଧରିଆଣି ହତ୍ୟା କଲେ । ଏହିପରି ଜୁଲାଇ ୧ ତାରିଖ ଭିତରେ ଫରୁକାବାଦ ପ୍ରଦେଶ ଇଂରାଜିଶୂନ୍ୟ ହୋଇଗଲା ।

'ସୀତାପୁର' ସହରର ଚଉରାଳିଶ ମାଇଲ ଦୂରରେ 'ମଲନ୍' ସହର ଅବସ୍ଥିତ । ସେଠାରେ ଅଫିସରମାନେ, 'ସୀତାପୁର'ର ବିଦ୍ରୋହ ଖବର ପାଇ, ନିଜ ନିଜ ଘୋଡାରେ ବସି, ଆତ୍ମରକ୍ଷା ନିମିତ୍ତ ପ୍ରାଣ ଭୟରେ ପଳାୟନ କଲେ । ଏହିପରି, 'ମଲନ୍' ସହର ମଧ୍ୟ ସ୍ୱତଃ ସ୍ୱାଧୀନ ହୋଇଗଲା ।

ତୃତୀୟ ଜିଲ୍ଲା 'ମହମଦୀ' ଥିଲା । ସେଠାରେ ଥିବା ଇଂରାଜିମାନେ ସେମାନଙ୍କର ପରିବାରବର୍ଗଙ୍କୁ ନିରାପଦ ଆଶ୍ରୟ ପାଇଁ 'ମିଥାଉଲି'ର ରାଜାଙ୍କ ପାଖକୁ ପଠାଇଦେଇଥିଲେ । ରାଜା ସେମାନଙ୍କୁ କହିଲେ ଯେ ସେ ଖୋଲା ଖୋଲି ଭାବରେ ସେମାନଙ୍କୁ ରକ୍ଷା କରିପାରିବେ ନାହିଁ । ସେମାନଙ୍କୁ ରାଜାଙ୍କର ନିଜ ଜଙ୍ଗଲ ଭିତରେ ଆତ୍ମଗୋପନ କରି ରହିବାକୁ ଦିଆଗଲା । 'ମହମଦୀ'ରେ, ଇଂରାଜି ଅଫିସରମାନେ ଦୁର୍ଗ ଭିତରେ ଅବସ୍ଥାନ କଲେ । ସେହିଦିନ 'ଶାହାଜାହାନପୁର' ଓ 'ରୋହିଲାଖଣ୍ଡ'ରୁ ତ୍ରସ୍ତ ଓ ବିପର୍ଯ୍ୟସ୍ତ ଅବସ୍ଥାରେ, କିଛି ଇଂରାଜି ଆଶ୍ରୟ ପାଇଁ ପହଞ୍ଚିଲେ । ପରନ୍ତୁ,

'ମହମଦୀ'ରେ ଅବସ୍ଥା ନିରାପଦ ଜନକ ନଥିଲା । ପ୍ରତି ମୁହୂର୍ତ୍ତରେ ବିସ୍ଫୋରଣର ଆଶଙ୍କାଥିଲା । ଏଣୁ, ଏହି ନିରାଶ୍ରୟ ଇଂରାଜିମାନଙ୍କୁ ସାହାଯ୍ୟ କରିବାପାଇଁ, 'ସୀତାପୁର'କୁ ଖବରପଠାଗଲା । ସେତେବେଳେ 'ସୀତାପୁର'ରେ ବିଦ୍ରୋହର ଆରମ୍ଭ ହୋଇନଥିଲା । ଏଣୁ 'ସୀତାପୁର'ରୁ ଏକ ଗାଡି ଓ କିଛି ସିପାହୀ ପଠାଇଦିଆଗଲା । ଏହି ସିପାହୀମାନେ ହିଁ ବିଦ୍ରୋହର ବୀଜ ବହନ କରିଆଣିଥିଲେ ଓ ତାହା 'ମହମଦୀ'ରେ ବପନ କରି, ଇଂରାଜିମାନଙ୍କୁ ଆଣିଥିବା ଗାଡିରେ ନେଇ, 'ସୀତାପୁର' ଅଭିମୁଖେ ଯାତ୍ରାକଲେ । ଅଧାରାସ୍ତାରେ ସେହି ସିପାହୀମାନେ ଇଂରାଜିମାନଙ୍କୁ ଗାଡିରୁ ବାହାରକୁ ଆଣି ହତ୍ୟା କରିଥିଲେ । ଏହି ଗଣ ସଂହାରରେ ଆଠଜଣ ସ୍ତ୍ରୀଲୋକ ଓ ଚାରିଜଣ କ୍ୟାପ୍‌ଟେନଙ୍କ ସହ ଅନ୍ୟମାନେ ବଞ୍ଚିପଡିଥିଲେ । 'ମହମଦୀ'ରେ ରହୁଥିବା ଇଂରାଜି ଅଫିସରମାନେ, ପ୍ରାଣଭୟରେ ପଳାୟନ କଲେ ଓ ଜୁନ୍ ଚାରିତାରିଖ ଦିନ 'ମହମଦୀ' ସ୍ୱାଧିନ ହେଲା ।

'ସୀତାପୁର' ପାଖରେ 'ବାର୍‌ହାଇଚ୍' ନାମକ ଅନ୍ୟ ଏକ ଜିଲ୍ଲା ଥିଲା । ସେଠାରେ 'କମିଶନର ଓ୍ୱିଙ୍ଗ୍ ଫିଲ୍ଡ' (Wingfield) ମୁଖ୍ୟ ଅଫିସର ଥିଲେ । ଏହି ଜିଲ୍ଲାର ଯଥାକ୍ରମେ, 'ସିକୋରା', 'ଗୋଣ୍ଡା', 'ବାର୍‌ହାଇଚ' ଓ 'ମେଲାପୁର' ନାମକ ଚାରୋଟି ଶାସନ କେନ୍ଦ୍ର ଥିଲା । 'ସିକୋରା'ରେ, ଦ୍ୱିତୀୟ ପଦାତିକ ରେଜିମେଣ୍ଟ ଓ ଏକ ଗୋଲନ୍ଦାଜ ବାହିନୀ ଥିଲା । ସେଠାରେ ବିଦ୍ରୋହର ପ୍ରତିଧ୍ୱନି ଶୁଣାଯିବା ମାତ୍ରେ, ଇଂରାଜି ଅଫିସରମାନେ ସ୍ତ୍ରୀ ଓ ଛୋଟ ପିଲାମାନଙ୍କୁ 'ଲକ୍ଷ୍ନୌ' ପଠାଇଦେଲେ । ଜୁନ୍ ନଅତାରିଖ ଦିନ, ଇଂରାଜି ଅଫିସର ମାନେ ସ୍ୱତଃ ପ୍ରବୃର ଭାବରେ, 'ବଳରାମପୁର' ରାଜାଙ୍କ ପାଖରେ ଆଶ୍ରୟ ଭିକ୍ଷା କଲେ । କିନ୍ତୁ କେବଳ ଗୋଲନ୍ଦାଜ ବାହିନୀର ମୁଖ୍ୟ ଅଫିସର 'ବୋନ୍‌ହାମ' (Bonham), ସିପାହୀମାନଙ୍କ ଉପରେ ତା'ଙ୍କର ବିଶ୍ୱାସ ଜାରିରଖିଲେ ଓ ନିଜର ସ୍ଥାନ ପରିବର୍ତ୍ତନ କଲେ ନାହିଁ । କିନ୍ତୁ ଅପରାହ୍ନରେ, ସିପାହୀମାନେ ତା'ଙ୍କୁ ସ୍ପଷ୍ଟ ଭାବରେ ଜଣାଇଦେଲେ ଯେ ସେମାନେ ବ୍ୟକ୍ତିଗତ ଭାବରେ ତା'ଙ୍କୁ ଆଘାତ କରିବାକୁ ଚାହାନ୍ତି ନାହିଁ ଓ ସେମାନେ ନିଜର ଦେଶର ଲୋକଙ୍କ ସହିତ ଲଢିବାକୁ ପ୍ରସ୍ତୁତ ନୁହଁନ୍ତି । ଏହାପରେ 'ବୋନ୍‌ହାମ୍', ସେ ସ୍ଥାନ ତ୍ୟାଗ କରିବାକୁ ବାଧ ହେଲେ । ସିପାହୀମାନେ, ତା'ଙ୍କୁ ନିରାପଦ ରାସ୍ତା ଦେଖାଇଦେଲେ ଓ ସେ ଲକ୍ଷ୍ନୌରେ ପହଞ୍ଚିଲେ ।

'ସିକୋରା'ର ସ୍ୱାଧିନତା ଖବର 'ଗୋଣ୍ଡା'ରେ ପହଞ୍ଚିବା ମାତ୍ରେ ସେଠାରେ ସ୍ୱାଧିନତା ସଂଗ୍ରାମ ଆରମ୍ଭ ହୋଇଗଲା । ଏହା ଦେଖି 'ଓ୍ୱିଙ୍ଗ୍‌ଫିଲ୍ଡ', ସମସ୍ତ ଇଂରାଜିମାନଙ୍କ ସହିତ ଆତ୍ମରକ୍ଷା ପାଇଁ, 'ବଳରାମପୁର' ରାଜାଙ୍କ ପାଖକୁ ପଳାୟନ

କଲେ । ରାଜା ପ୍ରାୟ ପଚିଶି ଜଣ ଇଂରାଜିଙ୍କୁ ରକ୍ଷା କଲେ ଓ ସେମାନଙ୍କୁ ଇଂରାଜି ଛାଉଣୀକୁ ସୁବିଧା ଦେଖି ପଠାଇଦେଲେ ।

'ସିକୋରା' ଓ 'ଗୋଣ୍ଡା'ର ସ୍ୱାଧୀନତା 'ବାରହାଇଚ'ରେ ମଧ୍ୟ ପହଞ୍ଚିଲା । ସେଠାରେ ଇଂରାଜି ଅଫିସରମାନେ ଜୁନ୍ ଦଶ ତାରିଖ ଦିନ ବିଦ୍ରୋହକୁ ଅପେକ୍ଷା ନକରି, ତୁରନ୍ତ ସେ ସ୍ଥାନ ତ୍ୟାଗ କରି, 'ଲକ୍ଷ୍ନୌ'କୁ ପଳାୟନ କଲେ । ମାତ୍ର ସିପାହୀମାନେ, ବିଭିନ୍ନ ସ୍ଥାନରେ ଛାଉଣୀ ପକାଇଥିବା ଦୃଷ୍ଟିରୁ, ସେମାନେ ଭାରତୀୟର ଛଦ୍ମବେଶରେ 'ଗୋଗ୍ରା' ନଦୀକୁ ଡଙ୍ଗାରେ ଅତିକ୍ରମ କରିବାକୁ ବସିଲେ । ପ୍ରଥମେ ସେମାନେ କାହାର ଦୃଷ୍ଟି ଆକର୍ଷଣ କରିନଥିଲେ । କିନ୍ତୁ ନଈ ମଝିରେ ପହଞ୍ଚିଲା ପରେ, କୂଳରୁ ହଠାତ୍ 'ଫିରିଙ୍ଗି', 'ଫିରିଙ୍ଗି' ଆଦି ଚିତ୍କାର ଶୁଣାଗଲା । ଏହି ସମୟରେ, ନାଉରୀ ଡଙ୍ଗାଛାଡି ପାଣିକୁ ଡେଇଁ ପଡି ପଳାଇଗଲା ଓ ସମସ୍ତ ଇଂରାଜିମାନେ, ସିପାହୀମାନଙ୍କର ଗୁଳିର ଶିକାର ହେଲେ । ଏହି ପ୍ରକାରେ 'ବାରହାଇଚ୍'ରେ ମଧ୍ୟ ବ୍ରିଟିଶ୍‌ଶାସନର ଅନ୍ତ ହେଲା ।

'ମେଲାପୁର'ରେ, ଇଂରେଜମାନଙ୍କର କୌଣସି ସାମରିକ ଛାଉଣୀ ନଥିଲା । ଏଣୁ, ବିଦ୍ରୋହର ସଂକେତ ପାଇ, ଇଂରେଜମାନେ ସେ ଜିଲ୍ଲାତ୍ୟାଗ କରି ପଳାୟନ କରିଥିଲେ । ସେମାନଙ୍କୁ ପଳାୟନ କରିବାରେ, ଜଣେ ରାଜା ସହାୟତା କରିଥିଲେ । କିନ୍ତୁ ସେମାନଙ୍କ ମଧ୍ୟରୁ କେତେକ ଜଙ୍ଗଲ ମଧ୍ୟରେ ସିପାହୀମାନଙ୍କ ହାତରେ ପ୍ରାଣ ଦେଲେ ଓ ଅନ୍ୟ କେତେକ ଜଙ୍ଗଲ ଯାତ୍ରା କଷ୍ଟ ସହିନପାରି ପ୍ରାଣ ନେଲେ ।

ଅବଧର ପୂର୍ବାଞ୍ଚଳରେ 'ଫୈଜାବାଦ' ସହର ଅବସ୍ଥିତ ଥିଲା । ଏଠାରେ ପ୍ରଦେଶର କମିଶନର 'ଗୋଲ୍ଡନେ'(Goldney)ଙ୍କର ବାସସ୍ଥାନ ଥିଲା । 'ଫୈଜାବାଦ' ପ୍ରଦେଶରେ, 'ସୁଲତାନପୁର', 'ସାଲୋନି' ଏବଂ 'ଫୈଜାବାଦ' ନାମକ ତିନୋଟି ଜିଲ୍ଲାଥିଲା । ସେ ସମୟରେ, 'ଫୈଜାବାଦ'ରେ 'କର୍ଣ୍ଣେଲ ଲେନୋକ୍ସ'(Lennox)ଙ୍କର ଅଧିନାୟକତ୍ୱରେ, ୨୨ତମ ପଦାତିକ ବାହିନୀ, ୬ଷ୍ଠ ଅସ୍ଥାୟୀ ପଦାତିକ ବାହିନୀ, କିଛି ଘୋଡାସବାର ବାହିନୀ ଓ କିଛି ଗୋଲନ୍ଦାଜ ଥିଲେ ।

'ଫୈଜାବାଦ'ରେ ଇଂରାଜ ଅତ୍ୟାଚାର ଚରମ ସୀମାରେ ପହଞ୍ଚିଥିଲା । ତାହା ବର୍ଣ୍ଣନା କରିବାକୁ ଯାଇ ନିଜେ ହେନେରୀ ଲରେନ୍ସଙ୍କର ଉକ୍ତି ଥିଲା,

"The Talukdars have also I fear been hardly dealt with. At least in the Fyzabad district they have lost all their villages."

''ଆମେ ଆଶଙ୍କା କରୁଛୁ ଯେ ତାଲୁକଦାରମାନଙ୍କ ସହିତ ଅବିଚାରିତ ବ୍ୟବହାର କରାଯାଇଛି । 'ଫୈଜବାଦ' ଜିଲ୍ଲାରେ ସେମାନେ ସମସ୍ତ ଗ୍ରାମ ହରାଇଛନ୍ତି ।''

ପୂର୍ବରୁ କଥିତ 'ମୌଲବୀ ଅହମଦଶାହ', ଏହିପରି ଜଣେ ତାଲୁକଦାର ଥିଲେ । ତା'ଙ୍କର ସ୍ୱାଧୀନତାର ବହ୍ନି ପ୍ରଜ୍ଜଳନରେ ଆତଙ୍କିତ ହୋଇ, ଇଂରାଜମାନେ ତାଙ୍କୁ ଫାଶି ଦେବା ପାଇଁ ବନ୍ଦୀ କରି ରଖିବା କଥା ପୂର୍ବରୁ ବର୍ଣ୍ଣନା କରାଯାଇଛି । ଏହି ସମୟରେ ଫୈଜାବାଦରେ ଇଂରାଜମାନେ ମିରଟ୍ ବିଦ୍ରୋହର ସମ୍ବାଦ ପ୍ରାପ୍ତ ହେଲେ । ଏଣୁ, ସେମାନଙ୍କର ଅତ୍ୟାଚାରର ପ୍ରତିଶୋଧ ନେବାପାଇଁ ବିଦ୍ରୋର ସମସ୍ତ ସମ୍ଭାବନା ଥିବା ଦୃଷ୍ଟିରୁ, ସେମାନେ ଭୟଭୀତ ଓ ଆତଙ୍କିତ ହୋଇ, ସେମାନଙ୍କର ପରିବାରବର୍ଗଙ୍କୁ ରକ୍ଷା କରିବା ପାଇଁ ଉପାୟ ଚିନ୍ତା କରିବାକୁ ଲାଗିଲେ । ଲକ୍ଷ୍ନୌର ପଥ ବିଦ୍ରୋହୀମାନଙ୍କ ଦ୍ୱାରା ଅବରୁଦ୍ଧ ହୋଇଥିଲା । ଏଣୁ ସେ ଦିଗରେ ପଳାୟନ ଅସମ୍ଭବ ଥିଲା । 'ଫୈଜାବାଦ'ରେ ରହିଲେ ମଧ, ସେମାନେ ବିଦ୍ରୋହୀଙ୍କ ସହିତ ଯୁଦ୍ଧ କରିବାରେ ସକ୍ଷମ ନଥିଲେ । କାରଣ, ସେମାନଙ୍କ ଅଧୀନରେ କେବଳ ଦେଶୀ ସିପାହୀମାନେ ଥିଲେ । ଯୁଦ୍ଧରେ ସେମାନଙ୍କଠାରୁ ଆନୁଗତ୍ୟର ସମ୍ଭାବନା ନଥିଲା । ଅବଶେଷରେ, ସେମାନେ ରାଜା ମାନସିଂହ'ଙ୍କ ପାଖକୁ ଆଶ୍ରୟ ଭିକ୍ଷାପାଇଁ ଗଲେ । ନିୟତିର କ୍ରୁର ପରିହାସ ! ଏହି ଇଂରାଜମାନେ, ସେହି ବର୍ଷ 'ମାନସିଂହ'ଙ୍କ ଖଜଣା ବାବଦରେ ବିବାଦ ସୃଷ୍ଟି କରି ତାଙ୍କୁ ବନ୍ଦୀକରିଥିଲେ । କିନ୍ତୁ ମିରଟ୍ ବିଦ୍ରୋହର ସମ୍ବାଦ ପ୍ରାପ୍ତି ପରେ, ସେମାନେ ତୁରନ୍ତ ତାଙ୍କୁ ଖଲାସ କରି ତା'ଙ୍କର ଆଶ୍ରୟ ପ୍ରାର୍ଥୀ ହେଲେ । ବହୁକଷ୍ଟରେ ରାଜା 'ମାନସିଂହ' ସେମାନଙ୍କର ସ୍ତ୍ରୀ ଓ ପିଲାମାନଙ୍କୁ ନିଜ ପ୍ରାସାଦରେ ଆଶ୍ରୟ ଦେବାକୁ ରାଜି ହେଲେ । ତଥାପି ସେ କହିଲେ ଯେ, ଲୋକମାନେ ଏହା ପସନ୍ଦ ନକରି ପ୍ରାସାଦ ଆକ୍ରମଣ କରିବାର ସମ୍ଭାବନା ମଧ ଅଛି । ସେ ଯାହାହେଉ ଜୁନ୍ ପହିଲା ଦିନ ଇଂରାଜ ଅଫିସରମାନେ ସେମାନଙ୍କର ପରିବାର ବର୍ଗଙ୍କୁ ସୁରକ୍ଷା ପାଇଁ 'ମାନସିଂହ'ଙ୍କର 'ଶାହାଗଞ୍ଜ' ପ୍ରାସାଦରେ ଛାଡିଦେଇ ଆସିଲେ ।

ଇଂରାଜମାନେ, ମୌଲବୀଙ୍କୁ ପ୍ରାଣଦଣ୍ଡ ଦେବାପାଇଁ ବନ୍ଦୀ କରିଥିବା କଥା ଚାରିଆଡେ ପ୍ରଘଟ ହେବା ସଙ୍ଗେ ସଙ୍ଗେ ବିଦ୍ରୋହର ବାଡବାଗ୍ନି ପ୍ରଜ୍ଜଳିତ ହେଲା । ଏହା ଥିଲା ମୌଲବୀ ଓ ଇଂରାଜମାନଙ୍କ ମଧରେ ନୈତିକ ଯୁଦ୍ଧ । ସାରା ସହର ସିପାହୀମାନଙ୍କ ସହିତ ଏକତ୍ର ଜାଗିଉଠିଲା । ଯେତେବେଳେ ଇଂରାଜ ଅଫିସରମାନେ, ସିପାହୀମାନଙ୍କ ମଧରେ ଶୃଙ୍ଖଳା ରକ୍ଷା କରିବା ପାଇଁ, ସେମାନଙ୍କୁ ପ୍ୟାରେଡ୍ ଗ୍ରାଉଣ୍ଡରେ ଏକତ୍ରିତ ହେବାକୁ ଆଦେଶ ଦେଲେ, ସିପାହୀମାନେ ଦୃଢ ଭାବରେ କହିଲେ ଯେ ସେମାନେ

କେବଳ ଦେଶୀ ଅଫିସରଙ୍କର ଆଦେଶ ମାନିବେ, କିନ୍ତୁ କୌଣସି ବିଦେଶୀ ଅଫିସରଙ୍କର ଆଦେଶ ମାନିବେ ନାହିଁ, ଏବଂ ସେମାନେ ସୁବାଦାର ଧୁଲିପ୍ ସିଂହଙ୍କର ନେତୃତ୍ୱ ହିଁ ସ୍ୱୀକାର କରନ୍ତି । 'ଧୁଲିପ୍‌ସିଂହ', ତୁରନ୍ତ ଇଂରାଜ ଅଫିସରମାନଙ୍କୁ ବନ୍ଦୀକଲେ ଓ ବାରପାଦଠାରୁ ଅଧିକ ନଯିବା ପାଇଁ ସେମାନଙ୍କ ଉପରେ କଡ଼ା କଟକଣା ଜାରିକଲେ । ଏହାପରେ, ସହରର ସମସ୍ତ ଜନତା ଓ ସିପାହୀମାନେ, କାରାଗାର ଦିଗକୁ ଧାବମାନ ଥିଲେ । ସେଠାରେ ତାଙ୍କର ନେତା ମୌଲବୀ, ବନ୍ଦୀ ଅବସ୍ଥାରେ ଥିଲେ । ଅବରୁଦ୍ଧ କାରାଦ୍ୱାରକୁ ଜନତାଙ୍କର ଆନନ୍ଦ ଉଲ୍ଲାସ ଧ୍ୱନି ମଧ୍ୟରେ ଭାଙ୍ଗି ଦିଆଗଲା ଓ ମୌଲବୀଙ୍କ ହାତ ଓ ଗୋଡର ଶୃଙ୍ଖଳକୁ ଛିନ୍ନ କରାଗଲା । ମୌଲବୀ ମୁକ୍ତ ହେବାମାତ୍ରେ ବିଦ୍ରୋହର ନେତୃତ୍ୱ ଗ୍ରହଣ କଲେ । ସର୍ବ ପ୍ରଥମେ ସେ, ତା'ଙ୍କୁ ଫାଶୀ ଦେବାକୁ ଯାଉଥିବା ଓ ବର୍ତ୍ତମାନ ସିପାହୀମାନଙ୍କ ଘେରରେ ବନ୍ଦୀ ହୋଇ ରହିଥିବା, 'କର୍ଣ୍ଣେଲ ଲେନକ୍ସ'ଙ୍କ ପାଖକୁ, ପୂର୍ବରୁ ବନ୍ଦୀ ଅବସ୍ଥାରେ ଥିବା ବେଳେ ତା'ଙ୍କୁ ହୁକ୍କା ପିଇବାକୁ ସେ ଅନୁମତି ଦେଇଥିବାରୁ, ଧନ୍ୟବାଦର ବାର୍ତ୍ତା ପଠାଇଲେ । ଏହାପରେ, ସେ ଅମାୟିକ ଭାବରେ ସେହି ଇଂରାଜ ଅଫିସରମାନଙ୍କୁ, ତୁରନ୍ତ 'ଫୈଜାବାଦ' ଛାଡି ଚାଲିଯିବାକୁ ଆଦେଶ ଦେଲେ ।

'ଫୈଜାବାଦ'ରେ, କୌଣସି କୌଣସି ସ୍ଥାନରେ ଲୁଟ୍‌ତରାଜ୍ ବନ୍ଦ କରିବା ପାଇଁ ଓ ଶାନ୍ତି ଶୃଙ୍ଖଳାରକ୍ଷା ପାଇଁ, ସିପାହୀମାନଙ୍କୁ ମୁତୟନ କରାଗଲା । ଅସ୍ତ୍ରାଗାର ଓ ଅନ୍ୟାନ୍ୟ ଜନସାଧାରଣ ସ୍ୱାର୍ଥ ସଂପୃକ୍ତ ମୁଖ୍ୟ ମୁଖ୍ୟ ପ୍ରାସାଦ ଗୁଡ଼ିକୁ ସୁରକ୍ଷିତ କରାଗଲା । ୧୫ତମ ରେଜିମେଣ୍ଟର ସିପାହୀମାନେ ଏକ ଯୁଦ୍ଧ ସମିତି (War commitment)ଗଠନ କରି ସମସ୍ତ ଇଂରାଜ ଅଫିସରମାନଙ୍କୁ ହତ୍ୟା କରିବା ପାଇଁ ପ୍ରସ୍ତାବ ଗ୍ରହଣ କଲେ । କଲେ । କିନ୍ତୁ ମୁଖ୍ୟ ଅଫିସର ତାଙ୍କର ମତ ଦେଇ କହିଲେ ଯେ ପ୍ରଥମ ପ୍ରତିଶ୍ରୁତି ଭଙ୍ଗ କରାଯିବା ଉଚିତ ନୁହେଁ । ଏଣୁ ସେମାନଙ୍କୁ ଜୀବନ୍ତ ଅବସ୍ଥାରେ ଯିବାକୁ ଦିଆଗଲା ଓ ଏହା ସହିତ ସେମାନଙ୍କର ସମସ୍ତ ବ୍ୟକ୍ତିଗତ ସମ୍ପତ୍ତି ସାଥିରେ ନେଇ ଯିବାପାଇଁ ମଧ୍ୟ ଅନୁମତି ଦିଆଗଲା । ମାତ୍ର କୌଣସି ସର୍ବ ସାଧାରଣ ସମ୍ପତ୍ତି ନେବା ଉପରେ ଦୃଢ଼ ନିଷେଧାଜ୍ଞା ଜାରି କରାଗଲା । କାରଣ ତାହା 'ଅବଧ' ନବାବଙ୍କର ସମ୍ପତ୍ତି ଥିଲା । ଏହାପରେ ସିପାହୀମାନେ ସେମାନଙ୍କ ପାଇଁ ଡଙ୍ଗାମାନ ଯୋଗାଡ କଲେ ଓ ସେମାନଙ୍କୁ କିଛି ଅର୍ଥଦେଇ ବିଦାୟ ଦେଲେ । ଇଂରାଜ ଅଫିସରମାନେ 'ଗୋଗ୍ରା' ନଦୀ ଗର୍ଭରେ ଡଙ୍ଗାରେ ଅଗ୍ରସର ହେଲେ । ଜୁନ୍ ନଅ ତାରିଖ ଦିନ ଇଂରାଜ ଶାସନର ଅନ୍ତ ଓ ଫୈଜାବାଦର ସ୍ୱାଧିନତା ଘୋଷଣା ବିଧିବଦ୍ଧ ଭାବରେ କରାଗଲା । 'ଓ୍ୱାଜିଦ୍ ଅଲିଶାହ'ଙ୍କୁ

ଶାସକ ବୋଲି ଘୋଷଣାନାମାରେ ସ୍ୱୀକାର କରାଗଲା । ଇଂରାଜମାନେ ଡଙ୍ଗାରେ ଯିବା ସମୟରେ, ସେମାନଙ୍କୁ ୧୭ତମ ରେଜିମେଣ୍ଟର ସିପାହୀମାନେ ଦେଖିବାକୁ ପାଇଲେ । ସେମାନଙ୍କୁ ପୂର୍ବରୁ 'ଫୈଜାବାଦ'ର ସିପାହୀମାନେ ହତ୍ୟା କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଏଣୁ ସେମାନେ ତୁରନ୍ତ ଡଙ୍ଗା ଗୁଡିକୁ ଆକ୍ରମଣ କଲେ । ଏହି ଆକ୍ରମଣରେ 'ଚିଫ୍ କମିଶନର ଗଡନେ' ଓ 'ଲେଫଟ୍‌ନାଣ୍ଟ ଥମାସ୍', 'ରିଚେ' (Ritchie), 'ମିଲ୍', 'ଏଡୱାର୍ଡସ୍', 'କୁରି' (Currie) ଓ ଅନ୍ୟମାନେ ପ୍ରାଣ ହରାଇଲେ । ଯେଉଁମାନେ ପ୍ରାଣ ନେଇ ମୋହଦାବା ସହର ଅଡକୁ ପଳାଇଗଲେ, ସେମାନେ ସେଠାରେ ପୁଲିସ ହାତରେ ପ୍ରାଣ ହରାଇଲେ । କେବଳ କୌଣସି ପ୍ରକାରେ ଏକମାତ୍ର ଡଙ୍ଗା ଏହି ସଂହାର ଲୀଳାରୁ କୌଣସି ପ୍ରକାରେ ବର୍ତ୍ତିଯାଇ ଇଂରାଜ ଛାଉଣୀରେ ପହଞ୍ଚି ପାରିଥିଲା ।

ଏ ଦିଗରେ 'ରାଜା ମାନସିଂହ'ଙ୍କ ପ୍ରାସାଦରେ, ତା'ଙ୍କ ପରିବାରର ଲୋକମାନେ, ଇଂରାଜ ସ୍ତ୍ରୀ ଓ ପିଲାମାନଙ୍କର ନିରାପତ୍ତା ପାଇଁ ଉଦ୍‌ବିଗ୍ନ ଥିଲେ । ଏହି ସମୟରେ ଅନ୍ୟାନ୍ୟ ଇଂରାଜମାନେ ମଧ ସେଠାକୁ ଆଶ୍ରୟ ଭିକ୍ଷା ପାଇଁ ଆସିଲେ । ସେ ସମୟରେ ମାନସିଂହ, 'ଅବଧ'ର ମୁଖ୍ୟ ସହରରେ ଥିଲେ । ସେ ଚିଠି ଦ୍ୱାରା ଜଣାଇଲେ ଯେ ତାଙ୍କର ବିଦ୍ରୋହୀମାନଙ୍କ ସହିତ ଚୁକ୍ତିନାମା ହୋଇଅଛି । ସେହି ଚୁକ୍ତିନାମା ବଳରେ କେବଳ ଇଂରାଜ ସ୍ତ୍ରୀ ଓ ପିଲାମାନଙ୍କୁ ଆଶ୍ରୟ ଦେଇହେବ, କିନ୍ତୁ କୌଣସି ଇଂରାଜ ବ୍ୟକ୍ତିକୁ ଆଶ୍ରୟ ଦିଆଯାଇ ପାରିବ ନାହିଁ । ବିଦ୍ରୋହୀ ସିପାହୀମାନେ ଏ ବିଷୟର ବାରମ୍ବାର ତନଖି କରିବେ ।

ଏହିପରି ଅବସ୍ଥାରେ 'ମାନସିଂହ'ଙ୍କ ଆଶ୍ରୟରେ ଦୁର୍ଗ ମଧ୍ୟରେ ଥିବା ଇଂରାଜମାନେ, ଆତ୍ମରକ୍ଷା ପାଇଁ ସ୍ତ୍ରୀ ଓ ପିଲାମାନଙ୍କ ସହ 'ଗୋଗ୍ରା' ନଦୀ ଅତିକ୍ରମ କରିବାକୁ ବସିଲେ । ପଥରେ ସେମାନଙ୍କ ମଧ୍ୟରୁ ଯେଉଁମାନେ ବହୁ କ୍ଳେଶକର ପରିସ୍ଥିତିର ସମ୍ମୁଖୀନ ହୋଇ ପ୍ରାଣ ରକ୍ଷା କରିପାରିଥିଲେ, ସେମାନେ ଅବଶେଷରେ ଗୋପାଳପୁରର ରାଜାଙ୍କ ପାଖରେ ପହଞ୍ଚିଲେ । ରାଜା ବଞ୍ଚିକରି ଆସିଥିବା ଏହି ଅଣତିରିଶ ଜଣ ଇଂରାଜଙ୍କୁ କିଛିଦିନ ଆତିଥ୍ୟ ପ୍ରଦାନ କଲାପରେ, ସେମାନଙ୍କୁ ଏକ ଇଂରାଜ ଛାଉଣୀକୁ ପଠାଇଦେଲେ ।

ଇଂରାଜ ଅଫିସରମାନେ 'ଫୈଜାବାଦ' ଛାଡିବା ପରେ ପରେ ସେହି ପ୍ରଦେଶର ଅନ୍ୟାନ୍ୟ ଜିଲ୍ଲାଗୁଡିକରେ ସ୍ୱାଧୀନତାର ପତାକା ଉତ୍ତୋଳନ କରାଗଲା । ଜୁନ ନଅ ତାରିଖ ଦିନ 'ସୁଲତାନପୁର' ଓ ଦଶ ତାରିଖ ଦିନ 'ସାଲୋନୀ'ରେ ସ୍ୱାଧୀନତାର

ଝଣ୍ଡା ଉଡାଇ ଦିଆଗଲା । ସେଠାର ଅଫିସରମାନେ ପ୍ରାଣ ଭୟରେ ପଳାୟନ କଲେ । ସେମାନଙ୍କ ମଧ୍ୟରୁ ଅଳ୍ପ କେତେଜଣଙ୍କୁ 'ସର୍ଦ୍ଦାର ରୁସ୍ତମ ଶାହ' ଓ 'ରାଜା ହନୁମନ୍ତ ସିଂହ' ରକ୍ଷା କରିଥିଲେ ।

'ରାଜା ହନୁମନ୍ତ ସିଂହ' 'କାଲା'ର ରାଜା ଥିଲେ । ସେ ଜଣେ ଅମାୟିକ, ସ୍ୱଦେଶ ପ୍ରେମୀ ଥିଲେ । ଇଂରାଜମାନଙ୍କର ନୂତନ ରାଜସ୍ୱ ନୀତି ଫଳରେ ସେ ନିଜ ସମ୍ପତ୍ତିର ବହୁଳାଂଶ ହରାଇଥିଲେ । ତଥାପି ଆର୍ତ୍ତ ଓ ମୁମୂର୍ଷ ଅବସ୍ଥାରେ ସେ ସେମାନଙ୍କୁ ରକ୍ଷା କରିଥିଲେ । ବିଦାୟ ଦେବା ସମୟରେ 'କ୍ୟାପ୍ଟେନ୍ ବାରୋ'(Captcion Barrow) ତାଙ୍କୁ ତାଙ୍କର ଆତିଥେୟତା ପାଇଁ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ଆଶା ପ୍ରକାଶ କଲେ ଯେ, ଭବିଷ୍ୟତରେ ବିଦ୍ରୋହ ଦମନରେ ସେ ଇଂରାଜମାନଙ୍କର ସହାୟତା କରିବେ । ଏହାର ଉତ୍ତରରେ 'ରାଜା ହନୁମନ୍ତ ସିଂହ' କହିଲେ:-

''ସାହେବ, ଆପଣଙ୍କ ଦେଶର ଲୋକ ଆମ ଦେଶକୁ ଆସି ଆମ ରାଜାଙ୍କୁ ବାହାର କରିଦେଲେ । ଆପଣ, ଅଫିସରମାନଙ୍କୁ ପଠାଇ ଜିଲ୍ଲାରେ ସତ୍ତ୍ୱ ଓ ଖଜଣା ଯାଞ୍ଚ କରାଇଲେ । ଗୋଟିଏ ଆଘାତରେ ଆପଣ ମୋର ଅବାହମାନ କାଳରୁ ପୁରୁଷାନୁକ୍ରମେ ଭୋଗ ଦଖଲ କରିଆସିଥିବା ସମ୍ପତ୍ତି ଛଡାଇ ନେଲେ । ଆଜି ଆପଣ ଦୁର୍ଦ୍ଦଶାଗ୍ରସ୍ତ ହେଲେ, ମୁଁ ଆପଣଙ୍କୁ ରକ୍ଷା କଲି । କିନ୍ତୁ ବର୍ତ୍ତମାନ ମୁଁ ବିଦ୍ରୋହୀମାନଙ୍କର ସମ୍ମୁଖ ଭାଗରେ ରହି ଅପଣମାନଙ୍କୁ ଦେଶରୁ ବିତାଡିତ କରିବାପାଇଁ ଯୁଦ୍ଧ ଯାତ୍ରାରେ ଅଗ୍ରସର ହେବି ।''

ବିଦ୍ରୋହ ଆରମ୍ଭର ଦଶଦିନ ମଧ୍ୟରେ ସମଗ୍ର 'ଅବଧ'ରୁ ଇଂରାଜ ଶାସନ ସ୍ୱପ୍ନବତ୍ ଅଦୃଶ୍ୟ ହୋଇଗଲା । ମାତ୍ର କେଉଁଠାରେ ହେଲେ ପ୍ରତିଶୋଧମୂଳକ ନିଷ୍ଠୁରତାର ବାତାବରଣ ନଥିଲା । ଏହିପରି ଜୁନ୍ ଦଶ ତାରିଖ ଦିନ 'ଅବଧ' ସମ୍ପୂର୍ଣ୍ଣ ସ୍ୱାଧୀନ ହୋଇଗଲା ଓ ସମସ୍ତ ବିଦ୍ରୋହୀ ସିପାହୀ ଓ ସ୍ୱେଚ୍ଛାସେବୀମାନେ 'ଲକ୍ଷ୍ନୌ' ଅଭିମୁଖେ ଯାତ୍ରାକଲେ ।



# ପ୍ରତ୍ୟାକ୍ରମଣ ପ୍ରସ୍ତୁତି

ସିପାହୀ ବିଦ୍ରୋହ ସଂଘଟିତ ହେବା ବର୍ଷ ମୃତ୍ୟୁବରଣ କରିଥିବା ପୂର୍ବତନ ଗଭର୍ଣ୍ଣର ଜେନେରାଲ 'ଆମହେର୍ଷ୍ଟ'(General Amherst), ଗ୍ରୀଷ୍ମ କାଳରେ କଲିକତାର ଅସହ୍ୟ ଗରମରୁ ରକ୍ଷାପାଇବା ପାଇଁ, ସିମଳା ପାର୍ବତ୍ୟ ପରିବେଶରେ ଗ୍ରୀଷ୍ମ କାଳ ବିତାଇବାର ପରମ୍ପରା ସୃଷ୍ଟି କରିଥିଲେ । ଏଣୁ ତା'ଙ୍କ ପରବର୍ତ୍ତୀ ଗଭର୍ଣ୍ଣର ଜେନେରାଲମାନେ ଏହି ପରମ୍ପରାର ବ୍ୟତିକ୍ରମ ନଥିଲେ । 'ଜେନେରାଲ ଆନସନ୍' (General Anson) ମଧ୍ୟ ଏହି ପରମ୍ପରାର ବଶବର୍ତ୍ତୀ ହୋଇ, ମାର୍ଚ୍ଚମାସ ଠାରୁ ନିଜର ଆଡ୍‌ଜୁଟାଣ୍ଟ ଜେନେରାଲ(Adjutant General) ଓ ସମସ୍ତ ମୁଖ୍ୟ କାର୍ଯ୍ୟାଳୟ କର୍ମଚାରୀମାନଙ୍କ ସହ ପଥ ମଧ୍ୟରେ ଧୀରେ ଧୀରେ ବିଭିନ୍ନ ଛାଉଣୀମାନ ପରିଦର୍ଶନ କରି କରି, ସିମ୍‌ଳା ଅଭିମୁଖେ ଯାତ୍ରା କରିଥିଲେ । ଏଣୁ ସିପାହୀ ବିଦ୍ରୋହ ସଂଘଟିତ ହେବା ସମୟରେ, ସେ ତତ୍‌କାଳରେ କଲିକତାରେ ବାସ କରୁଥିବା 'ଗଭର୍ଣ୍ଣର ଜେନେରାଲ ଲର୍ଡ କ୍ୟାନିଂ'ଙ୍କ ଠାରୁ ନଅଶହ ମାଇଲ ଦୂରରେ ଥିଲେ । ସେ ସମୟରେ 'ସିମଳା' ପର୍ଯ୍ୟନ୍ତ ଟେଲିଗ୍ରାଫ୍ ଲାଇନ୍ ଯାଇନଥିଲା, ଓ ପଚାଶ ମାଇଲ ଦୂରରେ ଥିବା 'ଅମ୍ବାଲା' ହିଁ ନିକଟତମ ଟେଲିଗ୍ରାଫ୍ ଅଫିସ ଥିଲା । କ୍ରିମିଆ ଯୁଦ୍ଧରୁ ଫେରିଥିବା 'ଜେନେରାଲ୍ ସାର୍ ହେନେରୀ ବାର୍‌ନାଡ଼'(Grneral Sir Henery Barnard)ଙ୍କ ଅଧିନରେ ଥିବା ଏକ ଡିଭିଜନ ସୈନ୍ୟ ବାହିନୀର ମୁଖ୍ୟ କାର୍ଯ୍ୟାଳୟ ଅମ୍ବାଲାରେ ଅବସ୍ଥିତ ଥିଲା । ସେଠାରେ 'ଜେନେରାଲ ବାରନାଡ', ତାଙ୍କର ଅଙ୍ଗରକ୍ଷକ ଭାବେ (A.D.C) ଥିବା ଓ କ୍ୟାପଟେନ୍ ପଦବୀରେ ଅବସ୍ଥାପିତ ତାଙ୍କର ପୁତ୍ର ସହ ବାସ କରୁଥିଲେ । ସେ ତା'ଙ୍କର ପୁତ୍ରକୁ ପ୍ରତିଦିନ ଘୋଡାରେ ବସି ଟେଲିଗ୍ରାଫ୍ ଅଫିସରୁ ସମ୍ବାଦ ଆଣି ପହଞ୍ଚାଇବା କାମରେ ନିଯୁକ୍ତ କରିଥିଲେ । ଦିଲ୍ଲୀରେ ବିଦ୍ରୋହ ଆରମ୍ଭ ସମୟରେ ସେଠାରେ ଥିବା ଟେଲିଗ୍ରାଫ୍ ଅଫିସରୁ ସୋମବାର ଦିନ ଅଫିସର କର୍ମଚାରୀ ବ୍ରେଣ୍ଡିସ୍(Brendish) ନିଜର ଆତ୍ମରକ୍ଷା ପାଇଁ ଫ୍ଲାଗ୍ ଟାୱାର(Flag towers)କୁ ଯିବା ପୂର୍ବରୁ ଦୁଇଟି ଟେଲିଗ୍ରାମ୍ କରିଥିବା ବିଷୟ ପୂର୍ବରୁ ବର୍ଣ୍ଣନା କରାଯାଇଛି । ଉକ୍ତ ଟେଲିଗ୍ରାମ୍ ବୁଧବାର ଦିନ ଅମ୍ବାଲାରେ ପହଞ୍ଚିଥିଲା । 'ଜେନେରାଲ ବାରନାଡ', ତାହା ପାଇବା ପରେ ପରେ ସମ୍ବାଦର ଗୁରୁତ୍ୱ ଦୃଷ୍ଟିରୁ, ନିଜର ପୁଅକୁ ତୁରନ୍ତ ଘୋଡାରେ ସିମ୍‌ଳା ପଠାଇଲେ । ସେଠାରେ ଥିବା 'ଜେନେରାଲ ଆନସନ୍'ଙ୍କୁ ସମସ୍ତ ବିଷୟ ଅବଗତ କରାଇବା ପାଇଁ ମଧ୍ୟ ତାହାଙ୍କୁ ନିର୍ଦ୍ଦେଶ ଦେଲେ । ନିର୍ଦ୍ଦେଶ ମତେ କ୍ୟାପଟେନ୍ ତୁରନ୍ତ ଘୋଡାରେ ସିମ୍‌ଳା ଅଭିମୁଖେ

ରମାନା ହେଲେ । ପଥ ମଧ୍ୟରେ ସେ 'କସୌଲି'ରେ ଅବସ୍ଥାପିତ ୭୫ତମ ପଦାତିକ ବାହିନୀକୁ ମଧ୍ୟ ଜାଗତିଆର ରହି ଯେକୌଣସି ସମୟରେ ଏବଂ ଅଳ୍ପସମୟ ମଧ୍ୟରେ ଯେକୌଣସି ସ୍ଥାନକୁ ଯିବାପାଇଁ ପ୍ରସ୍ତୁତ ରହିବାକୁ ନିର୍ଦ୍ଦେଶ ଦେଇଗଲେ । ଅବଶେଷରେ ସେ ସିମ୍‌ଲାରେ ପହଞ୍ଚିଲେ ।

ସେ ଦିନ ସିମ୍‌ଲାରେ ଗ୍ରୀଷ୍ମ କାଳ ଉପଭୋଗ କରୁଥିବା 'ଜେନେରାଲ ଆନ୍‌ସନ୍' ନିଜର ପ୍ରାୟ ପଚିଶ ଜଣ ବନ୍ଧୁଙ୍କୁ ରାତ୍ରି ଭୋଜନ ନିମନ୍ତେ ନିମନ୍ତ୍ରଣ କରିଥିଲେ । ତା'ଙ୍କର ସ୍ତ୍ରୀ ଇଂଲାଣ୍ଡରେ ଥିବା ହେତୁ ଅନ୍ୟ ଜଣେ ସିନିୟର ଅଫିସରଙ୍କର ସ୍ତ୍ରୀ 'ବଡାମେମସାହେବ' ହୋଇ ସମସ୍ତ ପରିଚାଳନା କରୁଥିଲେ । ରାତ୍ରି ଭୋଜନର ଉତ୍ସବ ଅଧାଅଧି ହୋଇ ଆସିବା ବେଳକୁ ଅମ୍ବାଲାରୁ କ୍ୟାପ୍‌ଟେନ୍ ଆଣିଥିବା ଦୁଇଟି ଟେଲିଗ୍ରାମ୍ ଗୋଟିଏ ଲଫାଫାରେ ଗୁଡା ହୋଇ 'ଆନସନ୍'ଙ୍କ ହାତକୁ ବଢାଇ ଦିଆଗଲା । ରାତ୍ରି ଭୋଜନ ଚାଲିଥିବା ହେତୁ ସେ କୌଣସି ଗୁରୁତ୍ୱ ପ୍ରକାଶ ନକରି ନିର୍ଲିପ୍ତ ଭାବରେ ତାହା ତାଙ୍କର ଡିନର ପ୍ଲେଟ୍ ତଳେ ରଖିଦେଲେ । ଯେତେବେଳେ ରାତ୍ରି ଭୋଜନ ସମାପ୍ତ ହେଲା ଓ ସମସ୍ତ ଅତିଥିମାନେ ବିଦାୟ ହୋଇଗଲେ, ଅସଂଖ୍ୟ ମହମବତୀରେ ଆଲୋକିତ ସେହି ଶୂନ୍ୟ କୋଠରୀରେ 'ଆନସନ୍' ଉକ୍ତ ଲଫାଫାଟି ଖୋଲି ପଢିବାକୁ ଲାଗିଲେ । ସୁରାରେ ସ୍ୱପ୍ନିଳ ଓ ବନ୍ଧୁମାନଙ୍କର ମଧୁର ଆଳାପର ସ୍ମୃତିରେ ବିଭୋର 'ଜେନେରାଲ ଆନ୍‌ସନ୍' ଟେଲିଗ୍ରାମ୍ ଦୁଇଟି ପଢିବାକୁ ଲାଗିଲେ । ସେଥିରେ ତା'ଙ୍କ ପାଇଁ ସିପାହୀମାନଙ୍କର ବିଦ୍ରୋହ, ଦିଲ୍ଲୀଯାତ୍ରା ଓ ଅଧିକାର ଆଦି ଭୟାବହ ସମ୍ବାଦମାନ ଥିଲା ।

'ଜେନେରାଲ ଆନ୍‌ସନ୍' ଜଣେ ସୁଯୋଗ୍ୟ ଯୋଦ୍ଧା ଥିଲେ । ଯୁଦ୍ଧ ପରିଚାଳନା ଓ ଅଶ୍ୱଚାଳନା ଆଦି ବହୁ ବିଷୟରେ ସେ ପାରଙ୍ଗମ ଥାଇ ଇଂରାଜ ସମାଜରେ ସିଂହ ପରଗଣ୍ୟ ହେଉଥିଲେ । ସୈନ୍ୟ ବାହିନୀରେ ତାଙ୍କ ଜୀବନର ତେୟାଳିଶି ବର୍ଷ ବିତିଥିଲା । ଭାରତରେ ତାଙ୍କର ଚାରିବର୍ଷ ଭିତରୁ ଦୁଇବର୍ଷ ମୁଖ୍ୟ ସେନାଧିକାରୀ ଭାବରେ ବିତିଥିଲା । ଯୁଦ୍ଧ କ୍ଷେତ୍ରରେ ବହୁବର୍ଷ ବିତାଇଥିବା ହେତୁ କେବଳ ଯୁଦ୍ଧ ଓ ସୀମାନ୍ତ ପ୍ରତିରକ୍ଷାରେ ହିଁ ତା'ଙ୍କର ବିଶେଷ ଅଭିଜ୍ଞତା ଥିଲା । ସେ ଆଭ୍ୟନ୍ତରୀଣ ଗଣ୍ଡଗୋଳର ଆଶଙ୍କା କରିନଥିଲେ ଓ ତାହା ମୁକାବିଲା କରିବାର ଅଭିଜ୍ଞତା ମଧ୍ୟ ତାଙ୍କର ନଥିଲା । ମୁଖ୍ୟ ସେନାଧିକାରୀ ହିସାବରେ ସୀମାନ୍ତରେ ଆକ୍ରମଣର ଆଶଙ୍କା କରି, ସେ ଶହ ଶହ ମାଇଲ ଦୂରରେ ଥିବା ଉତ୍ତର ପଶ୍ଚିମ ସୀମାନ୍ତ ଅଞ୍ଚଳରେ ମୁଖ୍ୟ ଅସ୍ତ୍ରଶସ୍ତ୍ରଗାର, ଗୋଳାବାରୁଦ କାରଖାନା ଓ ଗୋଦାମ ଏବଂ ମୁଖ୍ୟ ପ୍ରତିରକ୍ଷା ଶକ୍ତିକୁ ଅବସ୍ଥାପିତ କରାଇଥିଲେ । ସେତେବେଳେ

ରେଳର ପ୍ରଚଳନ ଆରମ୍ଭ ହେଉଥିବା ଦୃଷ୍ଟିରୁ କେତେଶହ ମାଇଲ ମାତ୍ର ରେଳଧାରଣା ପକାଯାଇଥିଲା । ସୈନ୍ୟବାହିନୀକୁ ନିଜର ଆବଶ୍ୟକୀୟ ଅସ୍ତ୍ରଶସ୍ତ୍ର ଓ ଦ୍ରବ୍ୟାଦି ସହ ଯିବାକୁ ହେଲେ ବଳଦ ଗାଡି, ଘୋଡାଗାଡି ଏବଂ ଜଳପଥରେ ଡଙ୍ଗା ଦ୍ୱାରା ଯିବାକୁ ହେଉଥିଲା । ବଡ ବଡ ଓଜନଦାର ତୋପ ଓ କମାଣ ଆଦି ହାତୀ ଦ୍ୱାରା ନିଆଯାଉଥିଲା । ଅଫିସରମାନଙ୍କୁ ସେମାନଙ୍କର ଜିନିଷପତ୍ର ନେବା ପାଇଁ ଦୁଇଟି ଲେଖାଏଁ ଓଟ ମିଳୁଥିଲା । ସ୍ଥାନର ଦୂରତା ଗୁଡିକୁ, ସୈନ୍ୟ ବାହିନୀର ଦୈନିକ ଅଗ୍ରଗତି (March) ହାରରେ ହିସାବ କରାଯାଉଥିଲା । ସିପାହୀ ବିଦ୍ରୋହର କିଛି ବର୍ଷ ପୂର୍ବରୁ ସୈନ୍ୟ ବାହିନୀ, ଏକ ସ୍ଥାନରୁ ଅନ୍ୟଏକ ସ୍ଥାନକୁ ଯିବାକୁ ହେଲେ ସାଧାରଣତଃ ସ୍ଥାନୀୟ ବେପାରୀମାନଙ୍କୁ ରସଦ,ଯାନ,ପାଣିବାଲା ଭିସ୍ତି ଓ ଭୃତ୍ୟ ଆଦି ଯୋଗାଇବା ପାଇଁ ଠିକା ଦିଆଯାଉଥିଲା । ଠିକା ନେଉଥିବା ବ୍ୟବସାୟୀମାନେ, ନିଜ ଦାୟିତ୍ୱରେ ଯଥା ସମ୍ଭବ ନିର୍ଦ୍ଦେଶ ମୁତାବକ ଆବଶ୍ୟକୀୟ ଦ୍ରବ୍ୟାଦି ସଂଗ୍ରହ କରି, ବାହିନୀର ଅଗ୍ରଗତି ଓ ଯୁଦ୍ଧ ସମୟରେ, ଦୈନନ୍ଦିନ ଆବଶ୍ୟକତା ପୂରଣ କରୁଥିଲେ । ଏତଦ୍‌ବ୍ୟତୀତ ଦୈନିକ ଜୀବନ ନିର୍ବାହ ପାଇଁ ଆହତ ଓ ରୋଗୀଙ୍କ ଚିକିତ୍ସା ପାଇଁ ଡାକ୍ତର ଓ ସେବକମାନଙ୍କୁ ସାଥିରେ ଯିବାକୁ ହେଉଥିଲା । ଏହିପରି ଏକ ହଜାର ସୈନ୍ୟ ବିଶିଷ୍ଟ ବାହିନୀକୁ ଯାତ୍ରା କରିବାକୁ ହେଲେ ବସ୍ତୁତଃ ସେମାନଙ୍କ ସହ ଅନ୍ୟାନ୍ୟ ବହୁ ଲୋକମାନଙ୍କୁ ଓ ପଶୁ ଆଦିମାନଙ୍କୁ ସେମାନଙ୍କ ଖାଦ୍ୟଦ୍ରବ୍ୟାଦି ସହିତ ଯିବାକୁ ହେଉଥିଲା । ଏହାର ଆୟୋଜନ ଆର୍ଥିକ ଦୃଷ୍ଟିରୁ ଶସ୍ତା ହେଲେ ମଧ୍ୟ ବହୁ ଆୟାସସାଧ ଥିଲା ଏବଂ ସବୁ ସମୟରେ ଓ ସବୁପରିସ୍ଥିତିରେ ତାହାର କାର୍ଯ୍ୟକାରୀତା ସମ୍ଭବ ନଥିଲା । ବିଶେଷ ଭାବରେ ବ୍ୟାପକ ବିଦ୍ରୋହ ସମୟରେ ଲୋକମାନଙ୍କଠାରୁ ସାହାଯ୍ୟ ଆଶା କରିବା କଷ୍ଟକର ଥିଲା । ଏହି ପ୍ରକାର ପରିସ୍ଥିତିରେ ପନ୍ଦର ତାରିଖ ଦିନ 'ଜେନେରାଲ ଆନ୍‌ସନ୍' 'ଅମ୍ବାଲା'ରେ ପହଞ୍ଚିଲେ ।

ଅପରପକ୍ଷରେ କଲିକତାରେ ଗଭର୍ଣ୍ଣର ଜେନେରାଲ ଲର୍ଡକ୍ୟାନିଂ ଚୁପ୍‌ଚାପ ହୋଇ ବସି ନଥିଲେ । ସେ ବିଦ୍ରୋହ ବିଷୟରେ ଅବଗତ ହୋଇ ନିଜର ସହକର୍ମୀମାନଙ୍କ ସହ ପରାମର୍ଶ କଲେ । ଉତ୍ତର ଭାରତ ବିଶେଷ ଭାବରେ ସମଗ୍ର ଗାଙ୍ଗେୟ ଉପତ୍ୟକା ତଥା 'ଦିଲ୍ଲୀ' ହିଁ, 'ଲର୍ଡକ୍ୟାନିଂ'ଙ୍କ ମତରେ ପ୍ରତ୍ୟାକ୍ରମଣର କେନ୍ଦ୍ରବିନ୍ଦୁ ବୋଲି ନିର୍ଣ୍ଣିତ ହେଲା । ତନ୍ମଧ୍ୟରୁ ସେ ଗାଙ୍ଗେୟ ଉପତ୍ୟକା ଅପେକ୍ଷା ଦିଲ୍ଲୀ ଅଧିକାରକୁ ବିଶେଷ ଗୁରୁତ୍ୱ ଦେଲେ । କାରଣ ଏହା ପାରମ୍ପରିକ ଭାବରେ ଭାରତୀୟ ଜନତା ତଥା ସିପାହୀମାନଙ୍କର ଜାତୀୟତା ବୋଧର ଭାବପ୍ରବଣତାର ଏକ କେନ୍ଦ୍ରବିନ୍ଦୁ ଥିଲା । ତାହା ବିଦ୍ରୋହୀମାନଙ୍କ ଦ୍ୱାରା ଅଧିକୃତ ହୋଇ ରହିବା ଫଳରେ, ଭାରତ ବର୍ଷରେ ଅନ୍ୟାନ୍ୟ ରାଜ୍ୟରେ ଉତ୍ସାହ

ସୃଷ୍ଟିକରି ସ୍ୱାଧୀନତା ଘୋଷଣାରେ ଉଦ୍‌ବୁଦ୍ଧ କରୁଥିଲା । ସମସ୍ତେ ନିଜ ସ୍ୱାଧୀନତା ଘୋଷଣା ସହ 'ଦିଲ୍ଲୀ'ର 'ବାଦଶା'ଙ୍କୁ, ସେମାନଙ୍କର ନେତା ସ୍ୱୀକାର କରିବା ଫଳରେ ଏକ ସର୍ବଭାରତୀୟ ସୈନ୍ୟ ତଥା ଜନଗଣ ଶକ୍ତିର, ବିକାଶରେ ଏହା ସହାୟକ ହେଉଥିଲା । ଏହି ସବୁ ଦୃଷ୍ଟିରୁ ବିଚାର କରି 'ଇର୍ଡକ୍ୟାନିଂ', ଗାଙ୍ଗେୟ ଉପତ୍ୟକା ଅପେକ୍ଷା 'ଦିଲ୍ଲୀ' ପ୍ରତ୍ୟାକ୍ରମଣକୁ ଅଧିକ ପ୍ରାଧାନ୍ୟ ଦେଲେ । କାରଣ, ଏହା ଫଳରେ ବିଦ୍ରୋହୀ ସିପାହୀମାନଙ୍କ ମଧ୍ୟରେ ନେତୃତ୍ୱରେ ବିଶୃଙ୍ଖଳା ଦେଖାଯିବା ସଙ୍ଗେ ସଙ୍ଗେ ସେମାନଙ୍କର ମନୋବଳ ମଧ୍ୟ ଭାଙ୍ଗିଯିବ । ଏହି ପ୍ରକାର ବିଚାର କରି 'କ୍ୟାନିଂ', ଗାଙ୍ଗେୟ ଉପତ୍ୟକାରେ ପ୍ରତ୍ୟାକ୍ରଣ କରିବା ସଙ୍ଗେ ସଙ୍ଗେ, ତୁରନ୍ତ 'ଦିଲ୍ଲୀ' ଅଧିକାର କରିବା ପାଇଁ ଏକ ବିଶେଷ ଟାଣୁଆ ବାହିନୀ ପଠାଇବାର ଯୋଜନା କଲେ ।

ତା'ଙ୍କର ମୁଖ୍ୟ ସେନାଧିକାରୀଙ୍କ ଉପରେ ଅଦମ୍ୟ ବିଶ୍ୱାସ ଥିଲା । ସେ ତୁରନ୍ତ ତାଙ୍କୁ ପରିସ୍ଥିତିର ଅବଗତ କରାଇ ଓ 'ଦିଲ୍ଲୀ' ଯାତ୍ରା କରି ଅଧିକାର କରିବାକୁ ଆଦେଶ ଦେଇ, ତାରବାର୍ତ୍ତା ପ୍ରେରଣ କଲେ । ସେ କେବଳ ଏତିକିରେ କ୍ଷାନ୍ତ ହେଲେ ନାହିଁ । ଏତଦ୍‌ବ୍ୟତୀତ ସେ ଇଂରାଜି ରେଜିମେଣ୍ଟମାନଙ୍କୁ, ବିଭିନ୍ନ ଦିଗରୁ ଆଣି କେନ୍ଦ୍ରୀଭୂତ କରି ବିଦ୍ରୋହ ଦମନ ପାଇଁ ପ୍ରେରଣ କରିବାର ବ୍ୟବସ୍ଥାରେ ଲାଗିଲେ । ସେତେବେଳେ ତା'ଙ୍କ ହାତରେ ରାଜଧାନୀ କଲିକତାର ପାର୍ଶ୍ୱବର୍ତ୍ତୀ ସ୍ଥାନରେ ଅବସ୍ଥାପିତ ଦୁଇଗୋଟି ରେଜିମେଣ୍ଟ ଇଂରାଜି ବାହିନୀ ଥିଲେ । ପ୍ରଥମଟି ୫୩ତମ ପଦାତିକ ବାହିନୀ ଓ ତାହାର ମୁଖ୍ୟ କାର୍ଯ୍ୟାଳୟ କଲିକତାସ୍ଥିତ 'ଫୋର୍ଟଉଇଲିୟମ୍' ଥିଲା । ଏବଂ ଅପରଟି ଚଉରାଶୀ ତମ ବାହିନୀ ଥିଲା । ତାହାକୁ ମାର୍ଚ୍ଚ ମାସରେ ରେଙ୍ଗୁନ୍‌ରୁ ଅଣାଯାଇ ଚିନ୍‌ଶୁରା ଠାରେ ହୁଗୁଳି ନଦୀ କୂଳରେ ଅବସ୍ଥାପିତ କରାଯାଇଥିଲା । ସେମାନଙ୍କୁ ସେତେବେଳେ ବଙ୍ଗର ନିମ୍ନାଂଶର ପ୍ରତିରକ୍ଷା ପାଇଁ ନିଯୁକ୍ତି ଦିଆଯାଇଥିଲା । ଏତଦ୍‌ବ୍ୟତୀତ 'ଫୋର୍ଟ ଉଇଲିୟମ୍' ଓ ତାର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ଗୁଡିକ ସାମରିକ, ରାଜନୈତିକ ତଥା ଶାସନଗତ ଦୃଷ୍ଟି କୋଣରୁ ଅତ୍ୟନ୍ତ ଗୁରୁତ୍ୱ ପୂର୍ଣ୍ଣ ହୋଇଥିବାରୁ 'ଫୋର୍ଟ ଉଇଲିୟମ୍'ରେ ସର୍ବବୃହତ୍ ଅସ୍ତ୍ରଶସ୍ତ୍ର ଓ ଗୋଳାବାରୁଦର ଭଣ୍ଡାର ଥିଲା । ନଦୀର କିଛି ମାଇଲ ଉପରକୁ ଥିବା 'କୋଶୀପୁର'ରେ ଗୋଟିଏ ବନ୍ଧୁକ କାରଖାନା ଥିଲା । ବାରମାଇଲ ଅନ୍ତରରେ ଥିବା 'ଇଶାପୁର'ରେ ଗୋଟିଏ ଗୋଳା ବାରୁଦ କାରଖାନା ଥିଲା । ଗୋଲନ୍ଦାଜ ବାହିନୀର ଅସ୍ତ୍ର ତଥା ଯୁଦ୍ଧ କୌଶଳ ଶିକ୍ଷା ପାଇଁ, 'ଦମ୍‌ଦମ୍' ଠାରେ ଏକ ତାଲିମ ସ୍କୁଲ ମଧ୍ୟ ଥିଲା ଓ ତତ୍ ସହିତ ଗୋଳାଗୁଳି ବାରୁଦ ଆଦିର ପ୍ରସ୍ତୁତି ପାଇଁ ଆବଶ୍ୟକୀୟ ଦ୍ରବ୍ୟର ବିରାଟ ଗୋଦାମ ମାନ ସଂଲଗ୍ନ ଥିଲା । 'କଲିକତା'ରେ ବିରାଟ ବିରାଟ ଅଟ୍ଟାଳିକାରେ ସ୍ୱଚ୍ଛଳ ଇଂରାଜି ବେପାରୀ ତଥା

ରାଜକର୍ମଚାରୀ ମାନେ ରହୁଥିଲେ । ଆଲିପୁରରେ ଏକ ବସ୍ତ୍ର ଗୋଦାମ ଥିଲା । ଏଥିରୁ ସୈନ୍ୟମାନଙ୍କର ପୋଷାକ ଆଦି ଦିଆଯାଉଥିଲା । ଏହା ସହିତ କଲିକତାର ବିଭିନ୍ନ ସ୍ଥାନରେ ମୁଦ୍ରାଶାଳ, ଖଜଣାଖାନା, ବ୍ୟାଙ୍କ ପରି ଗୁରୁତ୍ୱପୂର୍ଣ୍ଣ ଅନୁଷ୍ଠାନମାନ ମଧ୍ୟ ଥିଲା ।

ଏ ସମସ୍ତର ପ୍ରତିରକ୍ଷା ଦୃଷ୍ଟିରୁ 'କ୍ୟାନିଂ', କଲିକତା ପାର୍ଶ୍ୱରେ ଅବସ୍ଥାପିତ ଦୁଇଟି ରେଜିମେଣ୍ଟକୁ ଛାଡିବାକୁ ଚାହୁଁନଥିଲେ । ଏଣୁ ସେ, ସୈନ୍ୟ ସଂଗ୍ରହ ତଥା ଶକ୍ତିର କେନ୍ଦ୍ରୀକରଣ ଓ ପ୍ରୟୋଗ ପାଇଁ ଚତୁର୍ଦ୍ଦିଗକୁ ପ୍ରତ୍ୟାକ୍ରଣ ପାଇଁ ପ୍ରସ୍ତୁତି ସହ କଲିକତାରେ ରୁଣ୍ଡ ହେବାକୁ ତାରବାର୍ତ୍ତା ପ୍ରେରଣ କଲେ । କିନ୍ତୁ ଏହା ସହିତ ଅବସ୍ଥାର ଗୁରୁତ୍ୱ ଦୃଷ୍ଟିରୁ ସେ, ଚଉରାଶୀ ତମ ବାହିନୀକୁ ତୁରନ୍ତ 'ବନାରସ' ଦିଗରେ ରମାନା ହେବାକୁ ଆଦେଶ ଦେଲେ । ସେ 'ଦିନାପୁର'ରେ ଥିବା 'ଜେନେରାଲ' ଲଏଡ(General of Lyod)ଙ୍କ ଦଶମ ବାହିନୀରୁ ତାଙ୍କ ଅଧିନସ୍ଥ ଗୋଟିଏ ବା ଦୁଇଟି କମ୍ପାନୀ ସେମାନଙ୍କ ସହ ପଠାଇବାକୁ ନିର୍ଦ୍ଦେଶ ପଠାଇଲେ । ସେ ସମୁଦ୍ର ଆରପାରିରେ ଥିବା ସୈନ୍ୟମାନଙ୍କର ଆଗମନ ଉପରେ ମଧ୍ୟ ଆଶା ରଖି ଓ ଉତ୍କଣ୍ଠାର ସହ ସେମାନଙ୍କ ଅପେକ୍ଷାରେ ଥିଲେ । 'ଲର୍ଡ କ୍ୟାନିଂ' ଉଣେଇଶ ତାରିଖ ଦିନ ଇଂଲାଣ୍ଡରେ ଭାରତବ୍ୟାପାରବିଭାଗ ମନ୍ତ୍ରୀଙ୍କ ପାଖକୁ ତା'ଙ୍କର ପ୍ରତ୍ୟାକ୍ରମଣ ପ୍ରସ୍ତୁତି ବିଷୟରେ ଅବଗତ କରାଇବାକୁ ଯାଇ ଜଣାଇଥିଲେ:-

''ଲକ୍ଷ୍ୟ ସାଧନ ଦିଗରେ ନିମ୍ନଲିଖିତ ପଦକ୍ଷେପ ମାନ ନିଆଯାଇଅଛି:-

''ମାଡ୍ରାସରୁ ଏକ ବାହିନୀ ଆସୁଅଛନ୍ତି । ସେମାନେ ଏଠରେ ୨୧ ବା ୨୨ ତାରିଖରେ ପହଞ୍ଚିବେ । ରେଙ୍ଗୁନ୍‌ରୁ ଗୋଟିଏ ରେଜିମେଣ୍ଟ ମଗାଯାଇଛି ଓ ସେମାନେ ଅସନ୍ତା ସପ୍ତାହ ମଧ୍ୟରେ ପହଞ୍ଚିଯିବେ । ଦୁଇଟି ରେଜିମେଣ୍ଟ ସହିତ କିଛି ଗୋଲନ୍ଦାଜ ବାହିନୀ ପାରସ୍ୟରୁ ଆସି ବମ୍ବେରେ ପହଞ୍ଚିବା ସଙ୍ଗେ ସଙ୍ଗେ ସେମାନଙ୍କୁ କଲିକତା ପଠାଇ ଦେବାର ନିର୍ଦ୍ଦେଶ ଦିଆହୋଇଛି । ସେମାନେ ଯାତ୍ରା ଆରମ୍ଭ କରି ପ୍ରାୟ ଅର୍ଦ୍ଧ ପଥ ଅତିକ୍ରମ କରିଛନ୍ତି । ପଞ୍ଜାବରେ ଅବସ୍ଥାପିତ 'ଜନ୍ ଲରେନ୍ସ'ଙ୍କୁ ଆବଶ୍ୟକ ସମୟରେ ସାହାଯ୍ୟ କରିବା ପାଇଁ କରାଚୀରେ ଅବସ୍ଥାପିତ ଏକ ରେଜିମେଣ୍ଟକୁ ଫିରୋଜପୁରରେ ଅବସ୍ଥାପିତ କରାଯାଇଛି । ଜଣେ ଅଫିସରଙ୍କୁ ସାର୍ ହେନେରୀ ୱାର୍ଡ(Sir Henery Ward)ଙ୍କ ଠାରୁ ଯଥାସମ୍ଭବ ସୈନ୍ୟ ସାହାଯ୍ୟ ପାଇଁ ଶ୍ରୀଲଙ୍କା ପଠାଯାଇଛି । ଅତ୍ୟନ୍ତ ପକ୍ଷେ ପାଞ୍ଚଶହ ଇଂରାଜ ସୈନ୍ୟଙ୍କୁ ପଠାଇବା ପାଇଁ କୁହାଯାଇଛି ଓ ଅଭାବରେ ମାଳୟ ସୈନ୍ୟ ମଧ୍ୟ ପଠାଇବା ପାଇଁ ବାର୍ତ୍ତା ପ୍ରେରଣ କରାଯାଇଛି । ସେହି ଅଫିସରଙ୍କ ହସ୍ତରେ

‘ଏଲ୍‌ଗିନ୍‌’ (Elgine) ଓ ‘ଆଶବର୍ଣ୍ଣହାମ୍‌’(Ashburnhum)ଙ୍କ ନିକଟକୁ ଚୀନା ଅଭିମୁଖେ ଯାଉଥିବା ବାହିନୀକୁ ତୁରନ୍ତ ଭାରତକୁ ପଠାଇବା ପାଇଁ ମଧ୍ୟ ପତ୍ର ପ୍ରେରଣ କରାଯାଇଛି । ତାହାଙ୍କ ମିଳିଲେ ପେରୁରେ ଥିବା କିଛି ଅଧିକ ରେଜିମେଣ୍ଟଙ୍କୁ ଆଣିବା ପାଇଁ ପଠାଯିବ ।’’

ମାଡ୍ରାସ ବାହିନୀ ନଦୀ ପଥରେ ଯାତ୍ରା କରୁଥିବା ଖବର ମଧ୍ୟ ‘କ୍ୟାନିଂ’ ପାଇଗଲେ । ସେ ଅତ୍ୟନ୍ତ ଆଶାୟୀ ହୋଇଉଠିଲେ । ମାଡ୍ରାସ୍‌ ବାହିନୀ ‘କର୍ଣ୍ଣେଲ ନେଲ’ (Colonel Neilll)ଙ୍କର ଅଧିନାୟକତ୍ୱରେ ଯାତ୍ରା କରି ହୁଗୁଳି ନଦୀରେ ପହଞ୍ଚିଲା । ଦ୍ୱିତୀୟ ମାଡ୍ରାସ ଇଂରାଜି ରେଜିମେଣ୍ଟର ଅଧିନାୟକ ‘କର୍ଣ୍ଣେଲ ନେଲ’ ଜଣେ ବିଚକ୍ଷଣ ଓ ଅଭିଜ୍ଞ ଯୋଦ୍ଧା ଥିଲେ । ଏହି ଇଂରାଜି ବାହିନୀଟି କମ୍ପାନୀର ଅଧିନରେ ବିଶେଷ ଭାବରେ ଗଠିତ ହୋଇଥିଲା । ଏହା ଅତୀତରେ କମ୍ପାନୀ ଅଧିନରେ ରହି ବହୁ ଯୁଦ୍ଧରେ ବିଜୟ ହାସଲ କରିଥିଲା । ବାହିନୀଟି ସଦ୍ୟ ପାରସ୍ୟ ଯୁଦ୍ଧରୁ ପ୍ରତ୍ୟାବର୍ତ୍ତନ କରିଥିଲା । ଏହି ସମୟରେ ନେଲ ମଧ୍ୟ କ୍ରିମିଆ ଯୁଦ୍ଧରୁ ଫେରିଥିଲେ । ଏପ୍ରିଲ କୋଡିଏ ତାରିଖ ଦିନ ସେ ଏହି ବାହିନୀର ମୁଖ୍ୟ ଭାବରେ ନିଯୁକ୍ତି ପାଇ ଆହ୍ଲାଦିତ ହୋଇଗଲେ ।

‘କର୍ଣ୍ଣେଲ ନେଲ’ ସ୍କଟଲ୍ୟାଣ୍ଡର ଆୟର୍‌ସାୟାର୍‌ (Ayrshire) ସହରରେ ୧୮୧୦ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ସେ ସତର ବର୍ଷ ବୟସରେ ସୈନ୍ୟ ବିଭାଗରେ ଯୋଗ ଦେଇଥିଲେ ଓ ତା’ଙ୍କର ଉକ୍ତ ବିଭାଗରେ ୩୦ ବର୍ଷର ଅଭିଜ୍ଞତା ଥାଇ ସତଚାଳିଶ ବର୍ଷ ହୋଇଥିଲା । ତାଙ୍କର ଶରୀର ଗଠନ ସୁଦୃଢ଼ ଓ ଖେଳୁଆଡ ମନୋଭାବ ସହ, ଅକ୍ଳାନ୍ତ ପରିଶ୍ରମ କରିବା ଓ ସହ୍ୟ କରିବା ଶକ୍ତି ଏବଂ ଅଫୁରନ୍ତ ଉତ୍ସାହ ମଧ୍ୟ ଥିଲା । ସେ ଜଣେ ଈଶ୍ୱରଭୀରୁ ପୁରୁଷ ଥିଲେ ଓ ଶାନ୍ତ ଥିଲେ । ବନ୍ଧୁ ମାନଙ୍କ ପ୍ରତି ତାଙ୍କର ଯେପରି ସାହାଯ୍ୟ ମନୋବୃତ୍ତି ତଥା ଉତ୍ସର୍ଗ ମନୋଭାବ ଥିଲା, ଶତ୍ରୁମାନଙ୍କ ପ୍ରତି ଠିକ୍‌ ତାହାର ବିପରୀତ, ଅତ୍ୟନ୍ତ ନିର୍ଦ୍ଦୟ ଓ କ୍ରୁର ଭାବ ମଧ୍ୟ ଥିଲା ।

ମେ ସତାଇଶ ତାରିଖ ଦିନ ‘ନେଲ’ ହୁଗୁଳି ନଦୀ ଦେଇ କଲିକତାରେ ପହଞ୍ଚିବା ସଙ୍ଗେ ସଙ୍ଗେ ତାଙ୍କର ବାହିନୀକୁ ବଳଦ ତଥା ଘୋଡାଗାଡିରେ କଲିକତା ଭିତରକୁ ଅଣାଗଲା । ସେମାନଙ୍କୁ ତୁରନ୍ତ ବନାରସ ପଠାଇବା ପାଇଁ ରେଳଗାଡିର ବ୍ୟବସ୍ଥା କରାଗଲା । ‘ନେଲ୍‌’ ନଅଶହ ଇଂରାଜି ସୈନ୍ୟଙ୍କ ସହ ରାତ୍ରିର ଅନ୍ଧକାରରେ ହାଓଡାରେ ଥିବା ନଦୀର ଅପରପାର୍ଶ୍ୱରେ ରେଳପ୍ଲାଟଫର୍ମରେ ପହଞ୍ଚିଲେ । କିନ୍ତୁ ସେଠାରେ ବାହିନୀର ମାଲପତ୍ର ଆଦି ବୋହିବା ଓ ଅନ୍ୟାନ୍ୟ କାର୍ଯ୍ୟ ପାଇଁ ଲୋକଙ୍କର ଅସହଯୋଗର ପ୍ରକାଶ ପାଇଲା । କେହି ବାହିନୀର ବନାରସକୁ ଯାତ୍ରା କରିବାକୁ ବୋଧହୁଏ ଚାହୁଁ ନଥିଲେ ।

ଏହା ସେମାନଙ୍କର ମନୋଭାବରୁ ସ୍ପଷ୍ଟ ବାରି ହୋଇ ପଡୁଥିଲା । ଫଳରେ 'ନେଲ୍' ନିଜର ବାହିନୀ ସହ ନିର୍ଦ୍ଧାରିତ ସମୟରୁ କିଛି ବିଳମ୍ବରେ ପହଞ୍ଚିଲେ । ଦ୍ୱିତୀୟ ଦଫା ସୈନ୍ୟ ପାଗ ଖରାପ ହେତୁ ପହଞ୍ଚିବାରେ କିଛି ବିଳମ୍ବ ହେଲା । ହଠାତ୍ ଟ୍ରେନ୍ ଛାଡିବା ସମୟ ହେବାରୁ ଷ୍ଟେସନମାଷ୍ଟର, ଗାଡି ଯାତ୍ରା କରିବ ବୋଲି ଜଣାଇଦେବାରୁ 'ନେଲ' ତାହାଙ୍କୁ ପରିସ୍ଥିତିର ବାସ୍ତବତା ବୁଝାଇ ତାହାଙ୍କୁ ଗାଡିକୁ ରଖିବାକୁ ନିର୍ଦ୍ଦେଶ ଦେଲେ । ଉକ୍ତ ଷ୍ଟେସନମାଷ୍ଟର ତାଙ୍କର ଅଧିନସ୍ଥ ନୁହଁନ୍ତି ଏଣୁ ତାଙ୍କର ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ କରିବେ ନାହିଁ ବୋଲି କହି ଅନୁରୋଧ ପ୍ରତ୍ୟାଖ୍ୟାନ କଲେ । ଫଳରେ 'ନେଲ' ତାହାଙ୍କୁ ବିଶ୍ୱାସ ଘାତକ ଓ ବିଦ୍ରୋହୀ ଆଦି କହି ଭର୍ତ୍ସନା କଲେ ଏବଂ ଗାଡ଼ିର ଚାଳକ ମାନଙ୍କ ପାଖରେ ପ୍ରହରୀମାନଙ୍କୁ ମୁତୟନ କଲେ । ଟ୍ରେନ୍ ନିଦ୍ଧାରିତ ସମୟର ଦଶ ମିନିଟ୍ ବିଳମ୍ବରେ ଯାତ୍ରାକଲା ।

ଜୁନ୍ ମାସରେ ଶାସକମାନଙ୍କୁ ସମ୍ପୂର୍ଣ୍ଣ କ୍ଷମତା ହସ୍ତାନ୍ତର କରି, ପାର୍ଲାମେଣ୍ଟରେ ଏକ ଆଇନ୍ ପ୍ରଣୟନ କରାଗଲା । ଏହାପରେ ପରେ ସମୁଦ୍ର ଆରପାରିରୁ ଇଂରାଜି ବାହିନୀମାନେ ଆସି ହୁଗୁଳି ନଦୀରେ ପହଞ୍ଚିବାକୁ ଲାଗିଲେ । ପାରସ୍ୟ ଯୁଦ୍ଧରୁ ଅବ୍ୟାହତି ପାଇଥିବା ୬୪ତମ ବାହିନୀ, ଜୁନ୍ ତିନି ତାରିଖରେ ପହଞ୍ଚିବା ପରେ ପରେ, 'ମୌଲମେଁ' (Moulmein)ରୁ ୩୫ତମ ବାହିନୀ ଆସି ପହଞ୍ଚିଗଲେ । ପାରସ୍ୟ ଯୁଦ୍ଧରୁ, ସ୍କଟଲ୍ୟାଣ୍ଡ ଉଚ୍ଚପାର୍ବତ୍ୟାଞ୍ଚଳର ଏକ ସୈନ୍ୟ ବାହିନୀ ମଧ୍ଯ ଆସି ପହଞ୍ଚି ଗଲେ । ଏମାନଙ୍କୁ 'ରାଣୀଗଞ୍ଜ'ଠାରୁ ଘୋଡା, ଡାକଗାଡି ବା ବଳଦ ଗାଡି ଦ୍ୱାରା ବନାରସ ପଠାଇଦେବାର ବ୍ୟବସ୍ଥା କରାଗଲା ।ସୈନ୍ୟ ବାହିନୀକୁ ତୁରନ୍ତ ସ୍ଥାନାନ୍ତର କରିବା ପାଇଁ ଆବଶ୍ୟକୀୟ ସରଞ୍ଜାମ ଯଥେଷ୍ଟ ନଥିଲା । ସେ ସମୟରେ କଲିକତାରୁ ବନାରସରେ ପହଞ୍ଚିବାକୁ ପାଞ୍ଚଦିନ ଲାଗୁଥିଲା । ଘୋଡାଗାଡିରେ ଦିନକୁ ୧୮ଠାରୁ ୨୦ଜଣ ସୈନ୍ୟ, ପ୍ରତ୍ୟହ ପଠାଇବାର ବ୍ୟବସ୍ଥା କରାଗଲା । ଜୁନ୍ ୪ତାରିଖ ସୁଦ୍ଧା, ଏହି ପ୍ରକାର ବ୍ୟବସ୍ଥା ମଧ୍ୟରେ ଅଫିସରମାନଙ୍କ ସହିତ ନବେ ଜଣ ସୈନ୍ୟ, ୮ତାରିଖରେ ଆଉ ଅଠାଅଶୀ ଜଣ ଓ ବାରତାରିଖରେ ଆଉ ଅଠାଅଶୀ ଜଣ ଏହିପରି ଭାବରେ ତ୍ୱରିତଗତିରେ କିଛି ଅଂଶକୁ ଆଗ ପଠାଇଦିଆଗଲା ଓ ବଳଦ ଗାଡିରେ ପ୍ରତ୍ୟହ ଶହେ ଲେଖାଏଁ ସୈନ୍ୟ ମନ୍ଥର ଗତିରେ ବନାରସ ଅଭିମୁଖେ ଯାତ୍ରା କଲେ ।

'ଜେନେରାଲ୍ ଆନସନ୍', 'ଅମ୍ବାଲା'ରେ ପହଞ୍ଚିବା ପୂର୍ବରୁ, ଚଉଦ ତାରିଖ ଦିନ ଦୁଇଟି ରେଜିମେଣ୍ଟକୁ 'ଅମ୍ବାଲା'କୁ ଯିବାପାଇଁ ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ 'ସିରମୁର୍' (Sirmoor) ବାଟାଲିୟନ୍‌କୁ ଡେରାରୁ ମିରଟ୍ ଯିବାପାଇଁ ଆଦେଶ ଦେଲେ ।

ଏହା ବ୍ୟତୀତ ସେ କ୍ୟାନିଂଙ୍କୁ ଟେଲିଗ୍ରାମ୍ ଦ୍ୱାରା 'ଫିରୋଜପୁର'କୁ ୬୧ତମ ବାହିନୀ ଦ୍ୱାରା ଓ ଗୋବିନ୍ଦଗଡ଼କୁ ୮୧ତମ ବାହିନୀ ଦ୍ୱାରା ରକ୍ଷା କରିବାର ଇଚ୍ଛା ମଧ୍ୟ ଜଣାଇଦେଲେ । ୮ମ ବାହିନୀରୁ ଦୁଇଟି କମ୍ପାନୀ ଜଳନ୍ଧରରୁ ଫିଲୁର୍ (Phillur)କୁ ସ୍ଥାନାନ୍ତର କରିବାର ନିର୍ଦ୍ଦେଶ ମଧ୍ୟ ଜଣାଇଦେଲେ । 'ଫିଲୁର୍'ରେ ଥିବା ଅସ୍ତ୍ରଶସ୍ତ୍ରାଗାର ବିରାଟ ଆକାରର ହୋଇଥିବାରୁ ସେଥିରୁ ଅସ୍ତ୍ରଶସ୍ତ୍ର ସମ୍ଭାରର ସୁଶୃଙ୍ଖଳିତ ଓ ସୈନ୍ୟ ବାହିନୀଯୁକ୍ତ ଶ୍ରେଣୀବଦ୍ଧ ଧାରାର ସୃଷ୍ଟିକରାଯାଇ ତାହା ଦିଲ୍ଲୀ ଅଭିମୁଖେ ପ୍ରତ୍ୟାକ୍ରମଣ ପାଇଁ ପଠାଯିବାର ଯୋଜନା କରାଗଲା । 'ପଞ୍ଜାବ'ରୁ 'ଲରେନ୍ସ' ବାରମ୍ବାର ଟେଲିଗ୍ରାମ କରି 'ଆନସନ୍'ଙ୍କୁ 'ଦିଲ୍ଲୀ'ରେ ଶୀଘ୍ର ପହଞ୍ଚିବା ପାଇଁ ବ୍ୟସ୍ତ କରୁଥିବା ବେଳେ 'ଆନସନ୍' ଧୈର୍ଯ୍ୟର ସହ ପରିସ୍ଥିତିର ମୁକାବିଲା କରୁଥିଲେ । ଏହି ସମୟରେ ସେ 'ହଡସନ୍ ' ନାମକଜଣେ ଯୁବକ ଅଫିସରଙ୍କୁ ଆସିଷ୍ଟାଣ୍ଟ କ୍ୱାଟରମାଷ୍ଟରଜେନେରାଲ ପଦବୀରେ ନିଯୁକ୍ତ କଲେ । ଏହି 'ହଡସନ୍' ପୂର୍ବରୁ ନିଜର ଅନିୟମିତତା ଦୋଷରୁ କୋର୍ଟମାର୍ଶାଲ ହାତରୁ ଦଣ୍ଡ ଭୋଗ କରି ୧୮୫୬ମସିହା ଫେବୃୟାରୀ ମାସରେ ଖଲାସ ହୋଇଥିଲେ । ସେ 'ଆନସନ୍'ଙ୍କ ଠାରୁ ଅନୁମତି ନେଇ 'କ୍ୟାନିଂ'ଙ୍କ ସହ ଦେଖାକରିବା ଫଳରେ, ବିଦ୍ରୋହ ଦମନ ପାଇଁ 'କ୍ୟାନିଂ' ତାଙ୍କୁ ଏକ ଘୋଡସବାର ରେଜିମେଣ୍ଟର ସେନାଧକ୍ଷ କରି ପଠାଇଲେ । 'ଅମ୍ବାଲା'ରେ ଗୋଲନ୍ଦାଜ ବାହିନୀର ଅଭାବଥିବାରୁ 'ଲାହୋର'ରୁ ତାହା ମଗାଯାଇଥିଲା । ଏହା ସହିତ ଓଜନଦାର କମାଣ ମଧ୍ୟ ଦିଲ୍ଲୀ ଆକ୍ରମଣ ପାଇଁ ମଗାଯାଇଥିଲା । 'ଦିଲ୍ଲୀ'ରେ ସଂଖ୍ୟା ଗରିଷ୍ଠ ସିପାହୀଙ୍କ ସହିତ ମୁକାବିଲା କରିବା ପାଇଁ ଏହାର ଆବଶ୍ୟକତା କମ ଥିବା ଦୃଷ୍ଟିରୁ ତାହା 'କୁର୍ଣ୍ଣୁଲ'ରୁ ସଂଗ୍ରହ କରି ସେଠାରୁ ଦିଲ୍ଲୀ ଯାତ୍ରା କରିବା ପାଇଁ ସ୍ଥିର କରାଯାଇଥିଲା ।

ସେହି ସମୟରେ 'ଅମ୍ବାଲା'ରେ ଥିବା ଦେଶୀ ସିପାହୀଙ୍କ ମଧ୍ୟରେ ବିଦ୍ରୋହର ଲକ୍ଷଣ ପରିଲକ୍ଷିତ ହେଉଥିଲା । 'ଲରେନ୍ସ', 'ଆନସନ୍'ଙ୍କୁ ସେମାନଙ୍କୁ ନିରସ୍ତ୍ର କରିବାକୁ ନିର୍ଦ୍ଦେଶ ଦେଲେ ମଧ୍ୟ ସେ ତାହା ନକରି ସେମାନଙ୍କୁ ସାଥିରେ ନନେଇ ସେହିଠାରେ ଛାଡିଦେଲେ । 'ସିମଲା'ଠାରୁ ତିନି ଚାରି ମାଇଲ ଦୂରରେ ଥିବା 'ନସୁରୀ ବାଟାଲିୟନ୍' (Nusseree) ର ଗୁର୍ଖା ମାନେ ବିଦ୍ରୋହୀ ହୋଇ ଉଠିଥିଲେ । ସେମାନଙ୍କୁ 'ଫିଲୁର' ଯିବାପାଇଁ ଆଦେଶ ଦିଆଗଲା, କିନ୍ତୁ ସେମାନେ ତାହା ଅମାନ୍ୟ କଲେ । ସେମାନେ ମୁଖ୍ୟ ସେନାଧିକାରୀଙ୍କର ଜିନିଷ ପତ୍ର ଲୁଟ୍ କଲେ ଓ ଶିଖ୍ ମାନଙ୍କୁ ଆକ୍ରମଣ କରିବେ ବୋଲି ଧମକାଇଲେ । ତାହା 'ସିମ୍ଲା'ରେ ସପରିବାରେ ଛୁଟି ଉପଭୋଗ କରୁଥିବା ଇଂରାଜମାନଙ୍କ ପାଇଁ ଆତଙ୍କର କାରଣ ହେଲା । କିନ୍ତୁ ଏ ସମସ୍ତ ଆଶଙ୍କା ଅମୂଳକ

ଥିଲା । ପ୍ରକୃତରେ ଗୁର୍ଖାମାନେ ହତ୍ୟା ବା ଲୁଟ୍‌ତରାଜ କରିବାର ମତଲବରେ ନଥିଲେ । ମେସାନଙ୍କର କିଛି ଯୁକ୍ତି ଯୁକ୍ତ ଦାବୀଥିଲା ଓ ତାହା ଆଂଶିକ ପୂରଣ ହେବା ମାତ୍ରେ ସେମାନେ ପୂର୍ବପରି ବିଶ୍ୱସ୍ତ ଭାବରେ ଆଦେଶ ପାଳନ କରିବାକୁ ଲାଗିଲେ ।

'ଜେନେରାଲ ଆନସନ୍' 'ଦିଲ୍ଲୀ' ଆକ୍ରମଣର ଯୋଜନା କରିବାକୁ ଲାଗିଲେ । 'ଅମ୍ବାଲା'ରେ, ନବମ ଲାନ୍‌ସର୍ (9th Lancers) ସହ ୪ର୍ଥ ଲାନ୍‌ସର୍ (4th Lancers)ର ଦୁଇଟି ସ୍କ୍ୱାର୍ଡନ ଅବସ୍ଥାପିତ ଥିଲା । ଏହା ସହିତ ରାଣୀଙ୍କର ୭୫ତମ ପଦାତିକ ବାହିନୀ (Her majestys Seventy Fifth foot), ପ୍ରଥମ ଇଂରାଜି ରେଜିମେଣ୍ଟ, ୨ୟଇଂରାଜି ରେଜିମେଣ୍ଟ,୬ଷ୍ଠ ଦେଶୀ ପଦାତିକ ବାହିନୀ, ଦୁଇଟି ଟ୍ରୁପ୍ ଘୋଡସବାର ଗୋଲନ୍ଦାଜ ବାହିନୀ ଥିଲେ । ଏ ସମସ୍ତଙ୍କୁ ଦୁଇଟି ବ୍ରିଗେଡରେ ବିଭକ୍ତ କରି ପ୍ରଥମଟିରେ 'ବ୍ରିଗେଡିୟର ହାଲିଫାକ୍ସ' (Halifax) ଓ ଦ୍ୱିତୀୟଟି 'ବ୍ରିଗେଡିୟର ଜାନ୍‌ସ' (Johnes) ଙ୍କୁ ଅଧିନାୟକତ୍ୱ ଦିଆଗଲା । ସତର ତାରିଖ ଦିନ, ପ୍ରଥମ ବାହିନୀ ସହିତ ନବମ ଲାନ୍‌ସରରୁ ଗୋଟାଏ ସ୍କ୍ୱାର୍ଡନ, ଦୁଇଟି କମାଣ ଓ ଏକ ଘୋଡସବାର ଗୋଲନ୍ଦାଜ ବାହିନୀ ସହ କୁର୍ଣ୍ଣୁଲକୁ ପଠାଇଦିଆଗଲା । ସେମାନେ 'କୁର୍ଣ୍ଣୁଲ'ରେ କୋଡିଏ ତାରିଖ ଦିନ ପହଞ୍ଚିବାକୁ ନିର୍ଦ୍ଦେଶ ଦିଆଗଲା । ବାଇଶ ତାରିଖ ଦିନ, ରାଣୀଙ୍କର ୭୫ତମ ପଦାତିକ ବାହିନୀ, ଷଷ୍ଠ ରେଜିମେଣ୍ଟର ଦେଶୀ ବାହିନୀ ସହିତ ଯାତ୍ରା କଲେ । ଚବିଶ ଓ ପଚିଶ ତାରିଖରେ ନବମ ଲାନ୍‌ସରରୁ ଗୋଟାଏ ସ୍କ୍ୱାର୍ଡନ ଓ ଚାରିଗୋଟି ତୋପ ଯାତ୍ରା ଆରମ୍ଭ କରି 'କୁର୍ଣ୍ଣୁଲ'ରେ ୨୮ତାରିଖ ଦିନ ପହଞ୍ଚିବା ସ୍ଥିର ହେଲା । ଦ୍ୱିତୀୟ ଇଂରାଜି ବାହିନୀ, ୩ୟ ବ୍ରିଗେଡ ଘୋଡାସବାର ଗୋଲନ୍ଦାଜ ବାହିନୀର ୩ୟ ଟ୍ରୁପ୍ ସହିତ ୨୬ତାରିଖ ଦିନ ଯାତ୍ରା ଆରମ୍ଭ କଲେ । ଏ ସମସ୍ତେ 'କୁର୍ଣ୍ଣୁଲ'ରେ ତିରିଶ ତାରିଖ ଦିନ ମିଳିତ ହେବାର ସ୍ଥିର ହେଲା ।

ମେ ଚବିଶ ତାରିଖ ଦିନ 'ଜେନେରାଲ ଆନସନ୍' ତା'ଙ୍କର ସଂଗୃହୀତ ବାହିନୀ ସହିତ ଦିଲ୍ଲୀ ପ୍ରତ୍ୟାକ୍ରମଣ ପାଇଁ 'କୁର୍ଣ୍ଣୁଲ' ଯାତ୍ରା କଲେ । ତାହାହିଁ ତା'ଙ୍କର ଶେଷ ଯାତ୍ରା ଥିଲା । କାରଣ ତା ପର ଦିନ ସେ ଅସୁସ୍ଥ ହୋଇପଡିଲେ । 'ବାରନାଡ' ଘୋଡାରେ ଆସି ସେ ରାସ୍ତାରେ ଅଟକିଥିବା ସ୍ଥାନରେ ପହଞ୍ଚିଲେ । 'ବାରନାଡ'ଙ୍କୁ ଦେଖି ସେ କହିଲେ, ''ବାରନାଡ' ମୁଁ ତୁମକୁ ବାହିନୀର ଦାୟିତ୍ୱ ଦେଲି । ତୁମେ ଜାଣ କର୍ତ୍ତବ୍ୟ କରିବାକୁ ମୁଁ କେତେ ଭଲପାଏ । ମୋର ଆଉ ସୁସ୍ଥ ହେବାର ଆଶ ନାହିଁ । ବିଦାୟ'' । ଏହା କହି ସେ ମେ ସତାଇଶ ତାରିଖ ଦିନ ଦୁଇଟା ପନ୍ଦର ମିନିଟ୍‌ରେ ପ୍ରାଣତ୍ୟାଗ କଲେ । ସେ କଲେରା ରେ ଆକ୍ରାନ୍ତ ହୋଇଥିଲେ ।

'ବାରନାର୍ଡ' ବାହିନୀ ସହିତ 'ଦିଲ୍ଲୀ' ଅଭିମୁଖେ ଯାତ୍ରା କଲେ । ଜୁନ୍ ପାଞ୍ଚତାରିଖ ଦିନ ସେ 'ଦିଲ୍ଲୀ'ଠାରୁ ବାରମାଇଲ ଦୂରରେ ଥିବା 'ଆଲିପୁର'ରେ ପହଞ୍ଚିଲେ । 'ଦିଲ୍ଲୀ' ଯାତ୍ରା ବାରନାର୍ଡଙ୍କ ପାଇଁ-ଏକ ବିରାଟ ସଫଳତା ଥିଲା । ସେମାନେ ଦିନରେ ବିଶ୍ରାମ ନେଇ ରାତ୍ରିରେ ଯାତ୍ରା କରୁଥିଲେ ଓ ପ୍ରତି ଘଣ୍ଟାରେ ଅଳ୍ପ କିଛି ମିନିଟ୍ ବିଶ୍ରାମ କରୁଥିଲେ । ଯୋଜନା ଅନୁସାରେ 'ଜେନେରାଲ ଆନସନ', ଏହି ମିଳିତ ବାହିନୀ ସହିତ ଜୁନ୍ ପହିଲାରେ ଦିଲ୍ଲୀ ଆଡକୁ ଯାତ୍ରା ଆରମ୍ଭ କରି ପାଞ୍ଚତାରିଖ ଦିନ 'ବାଘପତ୍' ରେ ପହଞ୍ଚିବାର କଥାଥିଲା । ଏହିଠାରୁ 'ମିରଟ୍'ରୁ ଆସିଥିବା ବାହିନୀ ଓ 'ଲୁଧିଆନା'ରୁ ଆସୁଥିବା ଅସ୍ତ୍ରସମ୍ଭାରର ଶ୍ରେଣୀବଦ୍ଧ ପ୍ରବାହ ମିଳିତ ହେବାର ସ୍ଥିର କରାଯାଇଥିଲା ।

ସେତେବେଳେ ଯମୁନାନଦୀ ଠାରୁ ଶତ୍‌ଲେଜ ନଦୀ ମଧ୍ୟରେ ବାସ କରୁଥିବା ଶିଖ୍ ସର୍ଦ୍ଦାରମାନେ ଇଂରାଜିମାନଙ୍କ ଦ୍ୱାରା ରକ୍ଷିତ ଥିଲେ । ଏମାନଙ୍କୁ 'ଦିଲ୍ଲୀ' ଅଭିମୁଖରେ ଯାଉଥିବା ଇଂରାଜି ପ୍ରତ୍ୟାକ୍ରମଣ ବାହିନୀକୁ ସବୁ ପ୍ରକାରେ ସହାୟତା ଯୋଗାଇ ଦିଆଯିବା ପାଇଁ ନିର୍ଦ୍ଦେଶ ଦିଆଗଲା । ଏଥିରେ 'ଅମ୍ବାଲା'ରୁ ଦୁଇଜଣ କମିଶନର ଓ ଡେପୁଟୀ କମିଶନର (Mr.Gorge Barnes, Mr. Douglas Forsyth) ଓ ପଞ୍ଜାବ କମିଶନ ଜନ୍ ଲରେନ୍ସ' ସମସ୍ତ ପ୍ରକାର ବୁଦ୍ଧି, ବଳ ଓ ପ୍ରଭାବ ପ୍ରୟୋଗ କରିଥିଲେ । ମିରଟ୍ ଠାରୁ 'ଅମ୍ବାଲା' ଓ 'ଅମ୍ବାଲା' ଠାରୁ କୁର୍ଣ୍ଣୁଲର ଦୁର୍ଗକୁ ବିଦ୍ରୋହୀମାନଙ୍କ ଠାରୁ ନିରାପଦ ରଖିବାର ଆବଶ୍ୟକତା ଥିଲା । କାରଣ ଏହା ଦ୍ୱାରା ଇଂରାଜି ବାହିନୀ ବିନା ବାଧାରେ 'ଦିଲ୍ଲୀ'ରେ ପହଞ୍ଚିପାରିବେ । 'ପଟିଆଲା'ର ରାଜା ନିର୍ଦ୍ଦେଶ କ୍ରମେ ପଥ ମଧ୍ୟବର୍ତ୍ତୀ 'ଥାନେଶ୍ୱର' ନାମକସ୍ଥାନରେ ତାଙ୍କର ବାହିନୀ ନେଇ ରହିଲେ । 'କୁର୍ଣ୍ଣୁଲ'ର ନବାବ ଇଂରାଜିମାନଙ୍କର ବନ୍ଧୁଥିଲେ । ଏଣୁ ସେ ଅର୍ଥ, ସୈନ୍ୟଦଳ ଆଦି ସମସ୍ତ ପ୍ରକାରେ ସାହାଯ୍ୟ କଲେ । 'ଜିନ୍ଦ' ଓ ନାଭାର ରାଜା ମଧ୍ୟ ଏମାନଙ୍କୁ ସହାୟତା ଦେଲେ । 'ଜିନ୍ଦ'ର ରାଜା ତାଙ୍କର ସୈନ୍ୟବାହିନୀକୁ ସହାୟତା ପାଇଁ 'କୁର୍ଣ୍ଣୁଲ' ପଠାଇଦେଲେ । 'କୁର୍ଣ୍ଣୁଲ'ଠାରୁ କିଛି ମାଇଲ ଦୂରରେ ଥିବା 'ପାନିପଥ'ଠାରେ 'ଜିନ୍ଦ' ରାଜାଙ୍କର ବାହିନୀକୁ ଅବସ୍ଥାପିତ କରାଗଲା ।

ମେ ତିରିଶ ତାରିଖ ଦିନ 'ଜେନେରାଲ ଆନସନ'ଙ୍କ ନିର୍ଦ୍ଦେଶରେ 'ମିରଟ୍'ରୁ ଏକ ବାହିନୀ, 'ବ୍ରିଗେଡିୟ ଉଇଲ୍‌ସନ' (Wilson)ଙ୍କ ନେତୃତ୍ୱରେ 'ଦିଲ୍ଲୀ' ଅଭିମୁଖେ ଯାତ୍ରା ଆରମ୍ଭ କରିଥିଲା । ତାହା ମେତିରିଶ ତାରିଖରେ ଦିଲ୍ଲୀଠାରୁ ଚଉଦମାଇଲ ଦୂର 'ହିନ୍ଦୋନ' ନଦୀ ପାଖରେ ପହଞ୍ଚିବାମାତ୍ରେ ନଦୀର ଅପରପାର୍ଶ୍ୱରେ ତିନୋଟି କମାଣ ସହ ବହୁ ବିଦ୍ରୋହୀ ସିପାହୀଙ୍କୁ ଦେଖିବାକୁ ପାଇଲା । 'ମିରଟ୍' ଛାଡିବା ପରଠାରୁ 'ଉଇଲସନ'ଙ୍କର ଏହା ବିଦ୍ରୋହୀସିପାହୀମାନଙ୍କ ସହିତ ପ୍ରଥମ ମୁହାଁ ମୁହିଁ ମୁକାବିଲା ଥିଲା ।

ବିଦ୍ରୋହୀ ସିପାହୀମାନଙ୍କର ନେତାଥିଲେ ଦିଲ୍ଲୀର ବାଦଶାହଙ୍କର 'ଆବୁବକର୍' ନାମକ ଜଣୈକ ପୁତ୍ର । ସେ ଏକ ଘରର ଛାତ ଉପରୁ ଯୁଦ୍ଧର ଦୃଶ୍ୟ ଦେଖୁଥିବା ବେଳେ ଏକ ଗୋଳା ତାଙ୍କର ପାର୍ଶ୍ୱବର୍ତ୍ତୀ ସ୍ଥାନରେ ପଡି ତାଙ୍କର ସେନାଙ୍କର କିଛି କ୍ଷୟକ୍ଷତି କଲା । ଭାରତୀୟ ସିପାହୀମାନେ ଯୁଦ୍ଧ କରିବାକୁ ସବୁ ପ୍ରକାର ଉତ୍ସାହିତ ଓ ଉପଯୁକ୍ତ ଥିଲେ । ଯୁଦ୍ଧ ମଧ୍ୟ ଚାଲିଥିଲା । କିନ୍ତୁ ଗୋଳାନିକ୍ଷେପ ଓ ନିଜ ସମ୍ମୁଖରେ ନିଜର ସେନାମାନଙ୍କର ରକ୍ତକ୍ଷୟ ଦେଖି କୋମଳମତି 'ଆବୁବକର୍', ଭୟଭୀତ ହୋଇ ଦିଲ୍ଲୀ ଆଡ଼କୁ ପଳାୟନ କଲେ । ଯଦିଚ ଭାରତୀୟ ସିପାହୀମାନେ ଯୁଦ୍ଧ କରିବାରେ ଓ ବୀରତ୍ୱରେ ଅତୁଳନୀୟ ଥିଲେ ତଥାପି ନେତୃତ୍ୱ ବିହୀନ ହୋଇ ସେମାନେ କେତେଦୂର ବା ତିଷ୍ଠି ପାରିଥାଆନ୍ତେ । ତଥାପି ସେମାନେ, ତା'ପର ଦିନ ମଧ୍ୟ ଇଂରାଜି ବାହିନୀ ବିରୁଦ୍ଧରେ ପ୍ରବଳ ଉତ୍ସାହରେ ଲଢିଲେ । କିନ୍ତୁ ଭାଗ୍ୟଦେବୀ ସେସମୟରେ ଇଂରାଜିମାନଙ୍କର ଅନୁକୂଳ ଥିଲେ । କାରଣ ଇଂରାଜିମାନେ ଛତ୍ରଭଙ୍ଗ ଦେବାକୁ ଯିବା ଅବସ୍ଥାରେ ସେମାନଙ୍କ ସହିତ (Major Charles Reid) 'ମେଜର ଚାର୍ଲସ ରିଡ୍' ଙ୍କ ନେତୃତ୍ୱରେ 'ବୁଲନ୍ଦ ସହର'ରୁ ୫୦୦ ସୈନ୍ୟବିଶିଷ୍ଟ ଏକ ଟାଣୁଆ ଗୁର୍ଖା ବାହିନୀ ମିଳିତ ହେଲା । ଏଣୁ ସେମାନେ ପ୍ରବଳ ଉତ୍ସାହରେ ପ୍ରତ୍ୟାକ୍ରମଣ ଚାଲୁରଖିଲେ । ବିଦ୍ରୋହୀ ସିପାହୀମାନେ ପୂର୍ବଦିନର ଯୁଦ୍ଧରେ ଗୋଟାଏ କମାଣ ହରାଇଥିଲେ ଏହି ଯୁଦ୍ଧରେ ସତର୍କତାର ସହ ବାକି ସମସ୍ତ କମାଣ ସହିତ ନେତୃତ୍ୱ ବିହୀନ ଅବସ୍ଥାରେ ଦିଲ୍ଲୀ ଅଭିମୁଖେ ଯାତ୍ରା କରିବାକୁ ବାଧ୍ୟ ହେଲେ । ଏହି ଯୁଦ୍ଧ ସେତେବେଳର 'ହିଣ୍ଡୋନ' ନଦୀ କୂଳର 'ଘାଜିଉଦ୍ଦିନ୍' ନଗରରେ ହୋଇଥିଲା । ଏ ସ୍ଥାନର ଆଧୁନିକ ନାମ ଘାଜିଆବାଦ । ବ୍ୟର୍ଥ ମନୋରଥ ହୋଇ ବିଦ୍ରୋହୀ ସେନା ଦିଲ୍ଲୀରେ ପହଞ୍ଚି ଡଙ୍ଗାପୋଲ ବାଟେ ନଗରୀ ମଧ୍ୟରେ ପ୍ରବେଶ କରିବାକୁ ଗଲେ । ଏ ମଧ୍ୟରେ ବାହାଦୂରଶାହଙ୍କୁ ଖବର ହେଲା ଯେ ସିପାହୀମାନେ ଯୁଦ୍ଧରେ ଅସଫଳ ହୋଇ ଦିଲ୍ଲୀ ପ୍ରତ୍ୟାବର୍ତ୍ତନ କରୁଅଛନ୍ତି । 'ବାହାଦୂରଶାହ' ଏହି ଖବର ପାଇ ଯମୁନାର ଡଙ୍ଗା ପୋଲକୁ ତୁରନ୍ତ ଭାଙ୍ଗିଦେବା ପାଇଁ ଆଦେଶ ପ୍ରଦାନ କଲେ ଓ ତାହା ତତ୍‌କ୍ଷଣାତ୍ କାର୍ଯ୍ୟକାରୀ ହେଲା । ଫଳରେ ଯୁଦ୍ଧରେ ଅସଫଳ ସିପାହୀ ଦଳ ଡଙ୍ଗାପୋଲ ଦେଇ ନଗରୀମଧ୍ୟରେ ପ୍ରବେଶ କରୁଥିବା ଅବସ୍ଥାରେ ବହୁସଂଖ୍ୟକ ସିପାହୀ ଜଳସ୍ରୋତରେ ଭାସିଗଲେ ଏବଂ ସେମାନଙ୍କର ଅସ୍ତ୍ରଶସ୍ତ୍ର ଇଂରାଜିମାନଙ୍କ ହାତରେ ପଡିଲା ।

'ଆଲିପୁର'ରେ 'ବାରନାଡ', 'ପଞ୍ଜାବ', ଗୋର୍ଖା, ଶିଖ୍, ଇଂରାଜି ଆଦି ବାହିନୀ ସହିତ ଜୁନ୍ ପାଞ୍ଚ ତାରିଖରେ ପହଞ୍ଚି ଅବସ୍ଥାନ କରିଥିଲେ । ଯୋଜନା ଅନୁସାରେ 'ଦିଲ୍ଲୀ'ର ଯମୁନା ନଦୀର ପୋଲ ପାଖରେ 'ମିରଟ୍'ରୁ ଆସିଥିବା 'ଉଇଲ୍‌ସନ'ଙ୍କ

ବାହିନୀ ତାଙ୍କ ସହିତ ମିଳିତ ହେବାର ଥିଲା । କିନ୍ତୁ ଉଇଲସନ୍ ପଥବଦଳାଇ ସିଧା 'ଆଲିପୁର'ରେ ନିଜର ବାହିନୀ ସହିତ ନିରାପଦରେ ପହଞ୍ଚି 'ବାରନାର୍ଡ'ଙ୍କ ସହିତ ମିଳିତ ହେଲେ । ଫିଲୁରରୁ ଅସ୍ତ୍ରମାରରଶ୍ରେଣୀବଦ୍ଧଦୀର୍ଘପ୍ରବାହ ଆସି 'ଆଲିପୁର'ରେ ସେମାନଙ୍କ ସହ ମିଳିତ ହେଲା ।

ଇଂରାଜିମାନେ କେବଳ ଶକ୍ତି ସଂଗ୍ରହ କରି ପ୍ରତ୍ୟାକ୍ରମଣ ନିମିତ୍ତ 'ଦିଲ୍ଲୀ' ନିକଟରେ କେନ୍ଦ୍ରୀଭୂତ କରୁନଥିଲେ, ପରନ୍ତୁ ଭେଦନୀତି ପ୍ରୟୋଗ କରି ସେମାନେ ବିଶ୍ୱାସଘାତକ ଦେଶୀ ଲୋକଙ୍କୁ ଅର୍ଥ, କ୍ଷମତା ଓ ଅନ୍ୟାନ୍ୟ ପ୍ରଲୋଭନରେ ବଶୀଭୂତ କରି ଗୁପ୍ତଚର ବୃତ୍ତିରେ ନିଯୁକ୍ତ କରୁଥିଲେ । ଏହି ବ୍ୟକ୍ତିମାନେ ସର୍ଦ୍ଦାର, ପଦସ୍ଥ କର୍ମଚାରୀ ତଥା ବାଦଶାହାଙ୍କର ପାଖାପାଖି ପ୍ରାସାଦର ବ୍ୟକ୍ତି ବିଶେଷ ଥିଲେ ।

ଏଣୁ 'ଦିଲ୍ଲୀ' ନଗରୀରେ 'ବାଦଶା'ଙ୍କର ପ୍ରସାଦର ଭିତରେ ଓ ବାହାରେ ଇଂରାଜିଙ୍କର ଷଡଯନ୍ତ୍ର ଜାଲ ବିଛାହୋଇ ରହିଥିଲା । ଇଂରାଜିମାନେ ଏହି ବିଶ୍ୱାସଘାତକ ମାନଙ୍କ ଦ୍ୱାରା ଧର୍ମଗତ, କ୍ଷମତାଗତ ଆଦି ବିଭିନ୍ନ ପ୍ରକାର ଭେଦ, ନଗରୀ ଭିତରେ ସୃଷ୍ଟି କରୁଥିଲେ । ଏତଦ୍ୱାରା ପାରସ୍ପରିକ ଶ୍ରଦ୍ଧା ଓ ବିଶ୍ୱାସ ନଷ୍ଟ ହେବା ଫଳରେ ଘୃଣା, ଈର୍ଷା ଓ ଅନ୍ତଃଶତ୍ରୁତାର ଅଭିବୃଦ୍ଧି ଏହି ଗୁପ୍ତଚରମାନଙ୍କ ଦ୍ୱାରା କୌଶଳରେ କରାଯାଇ ଏକ ବିଶୃଙ୍ଖଳ ଓ ଆତ୍ମୀୟତାହୀନ ବାତାବରଣର ସୃଷ୍ଟି କରାଯାଉଥିଲା ।

ପୂର୍ବ ବର୍ଣ୍ଣିତ 'ବାଦଶା'ଙ୍କ ଦରବାରର 'ମୁନ୍‌ସୀ ଜୀବନଲାଲ' ରଖୁଥିବା ଦରବାରର ଦୈନିକ କାର୍ଯ୍ୟାବଳୀର ବିବରଣୀରୁ, ଅନ୍ତର୍ଘାତୀ କାର୍ଯ୍ୟର ସ୍ପଷ୍ଟ ବିବରଣୀ ମିଳେ । ତାଙ୍କ ବିବରଣୀ ଅନୁସାରେ ଛବିଶତାରିଖ ଦିନ 'ଇସଲାମଗଡ'ଠାରେ ଥିବା କମାଣ ମଧ୍ୟରେ କେହି ପଥର ଓ ବଡ ବଡ ଗୋଡି ଆଦି ଭର୍ତ୍ତି କରିଦେଇଥିବା ଦେଖାଗଲା । ଏହି ପ୍ରକାରେ ଅନ୍ୟାନ୍ୟ ସ୍ଥାନରେ ମଧ୍ୟ କମାଣଆଦି ଅସ୍ତ୍ରରେ ପଥର ଗୋଡି ଆଦି ଭର୍ତ୍ତି କରାଯାଇଥିବାର ଖବର ମିଳିଲା ।

ମେ ସତେଇଶ ତାରିଖ ଦିନ ମଧ୍ୟ ଅନୁରୂପ କମାଣ ମାନଙ୍କରେ ପଥର କଣ୍ଟା ଆଦି ପଶିଥିବା ଦେଖାଗଲା । ଏଣୁ ଏହା ଇଂରାଜିମାନଙ୍କ ଦ୍ୱାରା କୌଣସି ନିକଟତମ ଦେଶୀ ଗୁପ୍ତଚର ଦ୍ୱାରା ସଂଘଟିତ କାର୍ଯ୍ୟ ବୋଲି ସମସ୍ତେ ସ୍ପଷ୍ଟ ଭାବରେ ଗ୍ରହଣ କରିନେଲେ । ପ୍ରାୟ ଦୁଇଶହ ସିପାହୀ ମସଜିଦ୍ ଭିତରେ ଥିବା 'ବାଦଶା'ଙ୍କର ଭୃତ୍ୟମାନଙ୍କୁ ବିଶ୍ୱାସଘାତକତାର ଦୋଷାରୋପ କଲେ । ସେମାନଙ୍କୁ ବୁଝାଇ ଶୁଝାଇ ପଠାଇବା ପରେ ସେମାନଙ୍କର ନେତା, 'ମିଶର୍ ମହମ୍ମଦ' ଆବୁବକର୍‌ଙ୍କୁ ଘେରିଯାଇ

ବିଶ୍ୱାସଘାତକତାର ଆରୋପ କରି କ୍ରୁଦ୍ଧ ଭାବରେ ଗାଳି ଦେବାକୁ ଲାଗିଲା । 'ବେଗମ୍ ଜୀନତ୍ ମହଲ' ମଧ୍ୟ ଏ ସନ୍ଦେହରୁ ମୁକ୍ତ ନଥିଲେ । ଦିନ ତିନିଟା ବେଳେ ଜଣେ ହାବିଲଦାରକୁ ସନ୍ଦେହରେ ବନ୍ଦୀ କରାଯାଇ ତୋପ ଆଗରେ ଉଡାଇଦିଆଗଲା । କିଛି ଗୁଜର ଇଂରାଜିଙ୍କୁ ବିକିବା ପାଇଁ ବାରୁଦଖାନାରୁ ବାରୁଦ ଚୋରି କରୁଥିବା ସମୟରେ ସେମାନଙ୍କୁ ଧରାଯାଇ ତୋପରେ ଉଡାଇଦିଆଗଲା । ମେ ଅଠେଇଶ ତାରିଖ ଦିନ ସିପାହୀ ଓ ସେମାନଙ୍କର ସର୍ଦ୍ଦାରମାନେ ସେମାନଙ୍କର ଦରମା ହାରରେ ଅତ୍ୟନ୍ତ ଅସନ୍ତୋଷ ପ୍ରକାଶ କରି 'ବାଦଶା'ଙ୍କର ପ୍ରାସାଦରେ ପ୍ରତିବାଦ କରିଥିଲେ ଓ ସେମାନଙ୍କର ଦାବୀ ଉପସ୍ଥାପନ କରିଥିଲେ । ସେମାନଙ୍କୁ ବାଦଶାଙ୍କର ଭୃତ୍ୟମାନେ ବହୁକଷ୍ଟରେ ଶାନ୍ତ କଲେ । ଏହି ସମୟରେ ଖବର ପହଞ୍ଚିଲା, 'ଗୋୱାଲିୟର' ଓ 'ଆକବରା ବାଦ'ରୁ ସୈନ୍ୟବାହିନୀ ଇଂରାଜିଙ୍କର ସହାୟତା ପାଇଁ ଆଗେଇ ଆସୁଛନ୍ତି ଓ କିଛି ଇଂରାଜି ବାହିନୀ 'କୁର୍ଣ୍ଣୁଲ'ରେ ପହଞ୍ଚିସାରିଲେଣି ।

ମେ ଅଣତିରିଶ ତାରିଖ ଦିନ ସିପାହୀମାନେ ଓ ଅଫିସରମାନେ ବହୁ ବାରୁଦ ଓ ଗୁଳି, ପ୍ରସାଦର ଶସ୍ୟ ଗୋଦାମରେ 'ହାକିମ୍ ଅସନୁଲ୍ଲା ଖାଁ' ଓ 'ମହବୁବ ଅଲିଖାଁ'ଙ୍କ ଦ୍ୱାରା ଇଂରାଜିମାନଙ୍କୁ ବିକ୍ରୟ କରାଯିବା ପାଇଁ ଗଚ୍ଛିତ ଥିବାର ସମ୍ବାଦ ପାଇ ତାହା ଜବତ୍ କରିଥିଲେ ଓ ଉଭୟଙ୍କୁ ମାରଧର କରିଥିଲେ ।

ମେ ତିରିଶ ତାରିଖ ଦିନ 'ବାଦଶା'ଙ୍କ ଦରବାରରେ, ଦିନ ତିନିଟା ବେଳେ, ପାତିଆଲା ରାଜାଙ୍କର ଦିଲ୍ଲୀରେ ଥିବା ଓକିଲ 'ମୀର ହାସନ୍' ଅଲିଙ୍କୁ ଇଂରାଜିଗୁପ୍ତଚର ବୋଲି ସନ୍ଦେହ କରି, ନଗର କଟୁଆଳଙ୍କୁ ହସ୍ତାନ୍ତର କରାଗଲା । ଏହା ପତିଆଲା ମହାରାଜାଙ୍କର ବିଶ୍ୱାସଘାତକତାର ଉତ୍ତରରେ କରାଯାଇଥିଲା । ଅପରାହ୍ଣରେ 'ହିନ୍ଦୋନ' ନଦୀ, ଯୁଦ୍ଧରେ ବିଦ୍ରୋହୀ ସିପାହୀମାନଙ୍କର ପରାଜୟ ସମ୍ବାଦ ମିଳିଲା । ଏକ ବିରାଟ ଇଂରାଜି ସମ୍ମିଳିତ ବାହିନୀ 'ଆଲିପୁର'ରେ ଏକତ୍ର ହୋଇଥିବାର ସମ୍ବାଦ ମଧ୍ୟ ମିଳିଲା । ଇଂରାଜି ବାହିନୀ, 'ଆଲିପୁର'ରେ ପହଞ୍ଚିବାର ଚାରିଦିନ ପୂର୍ବରୁ ଇଂରାଜି ୪ର୍ଥ ଘୋଡସବାର ବାହିନୀର ରିସାଲଦାର 'ଅହମ୍ମଦଖାଁ' 'ଦିଲ୍ଲୀ'ରେ ପହଞ୍ଚିଥିଲା । ସେ ବାଦଶାଙ୍କୁ ଦେଖା କରି ଆନୁଗତ୍ୟ ପ୍ରକାଶ କରି ନିଜର ଘୋଡାସବାର ବାହିନୀକୁ ନେଇ ବିଦ୍ରୋହୀ ସିପାହୀଙ୍କ ସହିତ ମିଶିଯିବାର ଇଚ୍ଛାମଧ୍ୟ ପ୍ରକାଶ କଲା । ସେ ଯୁଦ୍ଧ ସମୟରେ ଇଂରାଜିଙ୍କୁ ଛାଡି ହଠାତ୍ ବିଦ୍ରୋହୀଙ୍କ ସହିତ ମିଶି ଯୁଦ୍ଧ କରିବାର ପ୍ରତିଶ୍ରୁତି ମଧ୍ୟ ଦେଲା ।

'ବାଦଶା' ତା'ର ସର୍ତ୍ତକୁ ଗ୍ରହଣ କରି ତାହାକୁ ସମ୍ମାନର ସହ ସ୍ୱୀକୃତି ଦେଇଥିଲେ । 'ଅହମ୍ମଦଖାଁ' କିଲ୍ଲାରେ ତିନିଦିନ ରହିଲା । ଏ ମଧ୍ୟରେ ସେ 'ଲଟଫଟ ଅଲି' ନାମକ ଏକ ଇଂରାଜି ଗୁପ୍ତଚର ହାତରେ, ପ୍ରାସାଦର ବହୁ ମୂଲ୍ୟବାନ ତଥା ସାମରିକ

ପ୍ରସ୍ତୁତି ସମ୍ବନ୍ଧୀୟ ତଥ୍ୟ, ଇଂରାଜିମାନଙ୍କ ପାଖକୁ ପଠାଇଦେଲା । ଏହା ସହିତ ମଧ୍ୟ ସେ ଇଂରାଜମାନଙ୍କୁ ଜଣାଇଦେଲା ଯେ ସେ ପ୍ରଥମେ ବିଦ୍ରୋହୀ ସିପାହୀମାନଙ୍କ ସହିତ ମିଶି ପୋଲପାରିହେବ ଏବଂ 'ଜୀନତ୍ ମହଲ' ଓ 'ହାକିମ ଅସନୁଲ୍ଲାଖାଁ'ଙ୍କୁ ନେଇ ହଠାତ୍ ଇଂରାଜିମାନଙ୍କ ସହ ମିଶି ବିଦ୍ରୋହୀମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବ । ଏଥିରୁ ପ୍ରମାଣିତ ହୁଏ ଯେ 'ବାଦଶା'ଙ୍କର ଉପଦେଷ୍ଟା ଓ ବେଗମ୍ ମଧ୍ୟ ଇଂରାଜି ଷଡଯନ୍ତ୍ର ଜାଲରୁ ମୁକ୍ତ ନଥିଲେ । ଏହି ସମୟରେ ଇଂରାଜି, ତାର ଶକ୍ତିକୁ 'ଆଲିପୁର'ରେ କେନ୍ଦ୍ରୀଭୂତ କରିଥିବା ଖବର 'ବାଦଶା'ଙ୍କ ପାଖରେ ପହଞ୍ଚିଲା ।

ଜୁନ୍ ଆଠତାରିଖ ସକାଳେ, 'ମିରଟ୍'ରୁ ଆସିଥିବା ବାହିନୀ 'ଆଲିପୁର'ରୁ 'ଦିଲ୍ଲୀ' ଅଭିମୁଖେ ଯାତ୍ରା କଲେ । ଗୁପ୍ତଚରମାନେ ଖବର ଦେଲେ ଯେ ବିଦ୍ରୋହୀ ସେନା 'ବଦ୍‌ଲିକା ସେରାଇ'ରେ 'ଦିଲ୍ଲୀ' ପ୍ରତିରକ୍ଷା ପାଇଁ ମହଜୁଦ୍ ଅଛନ୍ତି । ଏହି ସ୍ଥାନରୁ ଦିଲ୍ଲୀର ଦୂରତା ମାତ୍ର ଛଅମାଇଲ । ଗୁପ୍ତଚରମାନଙ୍କଠାରୁ 'ବଦଲିକା ସେରାଇ'ରେ ବିଦ୍ରୋହୀ ସେନାମାନଙ୍କର ପାଖରେ ଥିବା ୩୦ଟି କମାଣ ଏବଂ ପଦାତିକ ବାହିନୀ ଓ ଘୋଡସବାର ବାହିନୀର ଶକ୍ତି ବିଷୟରେ ସବିଶେଷ ଖବର ମିଳିଥିଲା । 'ଜେନେରାଲ ବାରନାଡ' ତାଙ୍କର ବାହିନୀ ସହିତ ଗ୍ରାଣ୍ଡଟ୍ରଙ୍କରୋଡରେ ଯାତ୍ରା କଲେ । ତାଙ୍କର ଏକ ଦିଗରେ ନଦୀଥିଲା ଓ ଅପର ଦିଗରେ ଯମୁନାର କେନାଲ ଥିଲା । 'ବ୍ରିଗେଡିଅର ହୋପ୍ ଗ୍ରାଣ୍ଟ' (Hope Grant) ଘୋଡାସବାର ବାହିନୀ ଓ ଘୋଡାସବାର ଗୋଲନ୍ଦାଜ ବାହିନୀ ସହ ଯମୁନା କେନାଲ ପାରିହୋଇ ତାହାର ଦକ୍ଷିଣ ତୀରକୁ ଶତ୍ରୁମାନଙ୍କୁ ଆକ୍ରମଣରେ ହତଚକିତ କରିଦେବା ପାଇଁ ଆଗେଇଗଲେ । ଏଦିଗରେ 'ବାରନାଡ' ତାଙ୍କର ବାହିନୀ ସହିତ ଆଗେଇ ଆସି ଶତ୍ରୁମାନଙ୍କୁ ଗୁଳିର ସୀମାସରହଦ୍ ଭିତରେ ପ୍ରବେଶ କଲେ ।

'ବାରନାଡ'ଙ୍କ ପୂର୍ବ ଯୋଜନା ଅନୁସାରେ 'ସାଓ୍ୱରସ' (Showers) ଏକ ବ୍ରିଗେଡ ସହିତ 'ଗ୍ରେଭ୍'(Grave) ଙ୍କର ବାମ ପାର୍ଶ୍ୱରେ ଆଗେଇ ଯିବା ସ୍ଥିର ହୋଇଥିଲା । 'ଗ୍ରାଣ୍ଟ', କମାଣର ପ୍ରଥମ ଗର୍ଜନ ଶୁଣିବା କ୍ଷଣି ପୋଲବାଟ ଦେଇ କେନାଲ ଅତିକ୍ରମ କରି ଶତ୍ରୁମାନଙ୍କୁ ପଶ୍ଚାତଦିଗରୁ ଆକ୍ରମଣ କରିବା ମଧ୍ୟ ଯୋଜନାରେ ଥିଲା । ଶତ୍ରୁମାନଙ୍କ ପାଖରେ ଶକ୍ତିଶାଳୀ କମାଣ ଥିବା କଥା ଆଗରୁ ଗୁପ୍ତଚର ଦ୍ୱାରା ଜଣାଥିଲେ ମଧ୍ୟ ଇଂରାଜିମାନେ ନିଜର କମାଣ ବାହିନୀକୁ ସେମାନଙ୍କର ମୁକାବିଲାପାଇଁ ପଠାଇଦେଲେ । ଫଳରେ ଏପ୍ରକାର ପରିସ୍ଥିତି ହେଲା ଯେ ଇଂରାଜିମାନେ ଆତ୍ମରକ୍ଷା ପାଇଁ ସେମାନଙ୍କ କମାଣ ରକ୍ଷା କରିପାରିବେ କି ନାହିଁ ସେଥିରେ ସନ୍ଦେହ ଉପୁଜିଲା ଓ ଥୋକେ କମାଣ ତ୍ୟାଗ କରିବାକୁ ବସିଲେ । ଏହି ସମୟରେ ଇଂରାଜି ପଦାତିକ ବାହିନୀ ଦକ୍ଷିଣ ଦିଗରୁ

ଆକ୍ରମଣ କରି ଅଗ୍ରସର ହେବାକୁ ଲାଗିଲା । କିନ୍ତୁ ବିଦ୍ରୋହୀମାନେ, ଆକ୍ରମଣ ସତ୍ତ୍ୱେ ପଥର ପରି ନିଶ୍ଚଳ ହୋଇ ଛିଡା ହୋଇ ଶତ୍ରୁର ଆକ୍ରମଣକୁ ପ୍ରତିହତ କରିବାକୁ ଲାଗିଲେ । ଏହି ସମୟରେ ଗ୍ରେଭସ୍‌ଙ୍କ ଅଧିନରେ ଥିବା ଦ୍ୱିତୀୟ ବ୍ରିଗେଡ ବାମ ଦିଗରୁ ଆକ୍ରମଣ କଲେ ଓ 'ଗ୍ରାଣ୍ଟ' ପଶ୍ଚାତ୍ ଦିଗରୁ ଆକ୍ରମଣ କଲେ । ଏ ଆକ୍ରମଣ ଅପ୍ରତ୍ୟାଶିତ ଥିଲେ ମଧ୍ୟ ବିଦ୍ରୋହୀ ସିପାହୀମାନେ ଅତ୍ୟନ୍ତ ଶକ୍ତିଶାଳୀ ଥିଲେ ଓ ସେମାନଙ୍କର ମୁକାବିଲାର ଶକ୍ତି ଦେଖି ମନେ ହେଉଥିଲା, ଯେପରି ସେମାନେ ହିଁ ବିଜୟୀ ହେବେ । 'ବାଦଶା'ଙ୍କର ଅନ୍ୟ ଏକ ପୁତ୍ର 'ମିର୍ଜା ଖିଜର୍ ସୁଲତାନ' ସେମାନଙ୍କ ଅଧିନାୟକ ଥିଲେ । ଏହି ସମୟରେ ଇଂରାଜିଙ୍କ ସହିତ ଯୁଦ୍ଧ କରିବାକୁ 'ବାଦଶା'ଙ୍କ ଆଗରେ ଶପଥ କରିଥିବା 'ଅହମ୍ମଦ ବକ୍ସଖାଁ' ହଠାତ୍ ବିଶ୍ୱାସଘାତକତା କଲା । ଏପର୍ଯ୍ୟନ୍ତ ବିଦ୍ରୋହୀମାନଙ୍କର ବନ୍ଧୁ ଓ ସମର୍ଥକ ଅଭିନୟ କରୁଥିବା ବକ୍ସଖାଁ ହଠାତ୍ ନିଜର ଘୋଡସବାର ବାହିନୀକୁ ବିଦ୍ରୋହୀମାନଙ୍କୁ ଆକ୍ରମଣ କରିବା ପାଇଁ ନିର୍ଦ୍ଦେଶ ଦେଲେ । ଏହା ବିଦ୍ରୋହୀ ସିପାହୀମାନଙ୍କର ଦୁର୍ଗତିର କାରଣ ହେଲା । କିନ୍ତୁ ସେମାନେ ପ୍ରବଳ ପରାକ୍ରମରେ ଯୁଦ୍ଧ କରି ଇଂରାଜି ବାହିନୀର ବହୁ କ୍ଷୟକ୍ଷତି ଘଟାଇଲେ । ବିଦ୍ରୋହୀ ସୈନ୍ୟମାନଙ୍କର ଶକ୍ତି ସାମର୍ଥ୍ୟ ଓ ଉତ୍ସାହ ଥିବା ସତ୍ତ୍ୱେ ମିର୍ଜା ଖିଜିର୍ ସୁଲତାନ୍ ଯୁଦ୍ଧ କ୍ଷେତ୍ରରୁ ପଳାୟନ କଲେ । ଏହା ଫଳରେ ସେମାନଙ୍କର କମାଣ ଓ ଅସ୍ତ୍ରଶସ୍ତ୍ର, ରସଦ୍ ଆଦି ଇଂରାଜିମାନଙ୍କର ହସ୍ତଗତ ହେଲା । ବିଦ୍ରୋହୀ ସୈନ୍ୟମାନେ ବାଧ ହୋଇ ପଛଘୁଞ୍ଚା ଦେଇ 'ଦିଲ୍ଲୀ ନଗରୀ' ପାଶ୍ୱବର୍ତ୍ତୀ ଉଚ୍ଚ ପଥୁରିଆ ସ୍ଥାନରେ ରହି 'ସମଦ୍ ଖାଁ'ଙ୍କ ନେତୃତ୍ୱରେ ଆସ୍ଥାନ ଜମାଇବାକୁ ଚେଷ୍ଟାକଲେ ।

'ବାରନାଡ' ତାଙ୍କର ଦୀର୍ଘ ସାମରିକ ଅଭିଜ୍ଞତାରୁ ବୁଝିଥିଲେ ଯେ ବିଶୃଙ୍ଖଳ ଓ ପଳାୟମାନ ଶତ୍ରୁକୁ ପଶ୍ଚାତ୍ ଧାବନ ନକଲେ ସେମାନେ ଅଳ୍ପ ସମୟ ମଧ୍ୟରେ ମିଳିତ ହୋଇ ପୁନଃ ଆକ୍ରମଣ କରିବାର ଅଧିକ ସମ୍ଭାବନା ଥାଏ । ଏଣୁ 'ବାରନାଡ' ତାଙ୍କ ବାହିନୀ ସହିତ ବିଦ୍ରୋହୀ ସିପାହୀଙ୍କର ପଶ୍ଚାତଧାବନ କରିବାକୁ ମନସ୍ଥ କଲେ । 'ବଦ୍‌ଲିକା ସେରାଇ' ଠାରୁ ଏକ ରାସ୍ତା ଗ୍ରାଣ୍ଡ ଟ୍ରଙ୍କ ରୋଡ ଦେଇ 'ସବ୍‌ଜିମଣ୍ଡି' ସ୍ଥାନରେ ମିଶିଥିଲା । ଅନ୍ୟ ଏକ ରାସ୍ତା ପୁରାତନ ଇଂରାଜି କ୍ୟାଣ୍ଟନମେଣ୍ଟକୁ ପଡିଥିଲା । ଏହି ଉଭୟ ସ୍ଥାନକୁ ତ୍ରିକୋଣ ଭୂମି ପରି ଏକ ଉଚ୍ଚ ପଥୁରିଆ ଅଞ୍ଚଳ ଯୋଗକରୁଥିଲା । 'ବାରନାଡ' ଶତ୍ରୁର ପଶ୍ଚାତ୍‌ଧାବନ କରି ଶେଷରେ ଏହି ପଥୁରିଆ ଅଞ୍ଚଳକୁ ଆକ୍ରମଣ କଲେ । 'ବାରନାଡ' ନିଜର ବାହିନୀକୁ ଦୁଇଭାଗ କରି, 'ଉଇଲସନ'ଙ୍କର ଅଧିନାୟକତ୍ୱରେ ଏକ ଡିଭିଜନ ସୈନ୍ୟଙ୍କୁ ରାସ୍ତା ବାଟ ଦେଇ ଆଗେଇଯିବାକୁ ନିର୍ଦ୍ଦେଶ ଦେଲେ ଓ ନିଜେ ଅନ୍ୟଟିର ନେତୃତ୍ୱ ନେଇ ସିଧା ଉଚ୍ଚ ପଥୁରିଆ ଅଞ୍ଚଳକୁ ଆଗେଇ ଚାଲିଲେ । ସେହି ପଥୁରିଆ

ଅଞ୍ଚଳର ଉଚ୍ଚସ୍ଥାନ ମାନଙ୍କରେ ବିଦ୍ରୋହୀ ସିପାହୀଙ୍କର କମାଣ ଥିଲା । ତାହା ସେମାନେ ପଟୁତାର ସହ ଶତ୍ରୁ ଉପରେ ଚାଳନା କଲେ । କିନ୍ତୁ ଅତର୍କିତ ଭାବରେ ସେମାନେ ଏକ ପାର୍ଶ୍ୱରୁ 'ମୁର'ଙ୍କ ସୈନ୍ୟମାନଙ୍କର ଆକ୍ରମଣର ଜବାବ ଦେବାପାଇଁ କମାଣ ବୁଲାଇବାକୁ ଗଲା ବେଳେ ଅପରପାର୍ଶ୍ୱରେ 'ସବଜିମଣ୍ଡି' ଆଡୁ 'ଉଇଲସନ'ଙ୍କ ବାହିନୀର ଆକ୍ରମଣର ସମ୍ମୁଖୀନ ହେଲେ । ବ୍ରିଦ୍ରୋହୀ ସିପାହୀମାନେ ସମସ୍ତ କ୍ଷୟ କ୍ଷତି ସତ୍ତ୍ୱେ ପ୍ରବଳ ଭାବରେ ଯୁଦ୍ଧ କଲେ । କିନ୍ତୁ ଉପଯୁକ୍ତ ନେତୃତ୍ୱ ଓ ଶୃଙ୍ଖଳା ଅଭାବରୁ ଛତ୍ରଭଙ୍ଗ ଦେଇ ନଗରୀ ମଧ୍ୟକୁ ପଳାଇଯିବା ପାଇଁ ବାଧ ହେଲେ । ସେହି ଉଚ୍ଚପଥୁରିଆ ସ୍ଥାନକୁ ଇଂରାଜି ବାହିନୀ ଅଧିକାର କଲା । ଏହି ଯୁଦ୍ଧରେ ବିଦ୍ରୋହୀ ସିପାହୀମାନଙ୍କ ମଧ୍ୟରୁ ତିନିଶହ ପଚାଶ ଜଣ ମୃତ୍ୟୁ ବରଣ କରିଥିଲେ । ଯୁଦ୍ଧ କ୍ଷେତ୍ରରେ ସେମାନେ ଛବିଶଟି କମାଣ ଓ କିଛି ଗୁଳିଗୁଳା ଛାଡିଯାଇଥିଲେ । ତାହା ଇଂରାଜି ମାନଙ୍କ ହାତରେ ପଡିଲା । ଇଂରାଜିଙ୍କର ଚାରିଜଣ ଅଫିସର ଓ ସତଚାଳିଶ ଜଣ ସୈନ୍ୟ ପ୍ରାଣ ହରାଇଥିଲେ ଓ ଶହେ ଚଉତିରିଶ ଜଣ ଆହତ ହୋଇଥିଲେ (ଜେନେରାଲ ବାରନାଡଙ୍କ ଡାଏରୀ ଅନୁସାରେ) ।

ଏହି ଉଚ୍ଚ ପଥୁରିଆ ମାଳ ଅଞ୍ଚଳଟି ଦିଲ୍ଲୀ ନଗରୀର ଉଭୟ ପାର୍ଶ୍ୱରେ ଦୁଇମାଇଲ ଧରି ଥିଲା ଓ ଅପରପାର୍ଶ୍ୱରେ ଯମୁନା ନଦୀ ଥିଲା । ଏହା 'ଦିଲ୍ଲୀ ନଗରୀ'ର ପରନ ଠାରୁ ଅଶୀଠାରୁ ଶହେ ଫୁଟ ଉଚ୍ଚରେ ଥିଲା । ଏହି ସ୍ଥାନରେ ନିଜର ଛାଉଣୀ ପକାଇବାକୁ 'ବାରନାଡ' ସ୍ଥିର କଲେ ଓ ସେଠାରେ ଇଂରାଜି ଛାଉଣୀ ସ୍ଥାପନ କରାଯାଇ ଇଂରାଜି ପତାକା ଉଡାଇଦିଆଗଲା । ଏହା ସହିତ ନଗରୀର ପରନ ଠାରୁ ଷାଠିଏ ଫୁଟ ଉଚ୍ଚରେ ଥିବା 'ହିନ୍ଦୁରାଓହାଉସ୍' ମଧ୍ୟ ଅଧିକାର କରି ତାହା ଛାଉଣୀର ପରିସରଭୁକ୍ତ କରାଗଲା । 'ସବ୍‌ଜିମଣ୍ଡି' ପରେ ପରେ ଇଂରାଜିମାନେ, 'ରାଜପୁର' କ୍ୟାଣ୍ଟନମେଣ୍ଟ ଆଡକୁ ଆଗେଇଯାଇ ତାହା ଦଖଲ କଲେ । ଏହି ସମୟରେ, ସେମାନେ ଅପ୍ରତିହତ ଗତିରେ ନଗର ଆକ୍ରମଣ କରିଥିଲେ ଜିଣିବାର ବହୁତ ସମ୍ଭାବନା ଥିଲା । କାରଣ ବିଶୃଙ୍ଖଳା, ନୈତିକ ଅଧଃ ପତନ, ପାରସ୍ପରିକ ବିବାଦ ଓ ନେତୃତ୍ୱର ଅଭାବ ହେତୁ, ହଠାତ୍ ବିଦ୍ରୋହୀ ସିପାହୀମାନେ ସଂଖ୍ୟାରେ ଅଧିକ ହେଲେ ମଧ୍ୟ, ଅଳ୍ପ ସଂଖ୍ୟକ ସୁଶୃଙ୍ଖଳ ଓ ସୁଶିକ୍ଷିତ ଇଂରାଜିବାହିନୀ ଆକ୍ରମଣକୁ ପ୍ରତିହତ କରିବା ଅବସ୍ଥାରେ ନଥିଲେ । କିନ୍ତୁ ଇଂରାଜି ବାହିନୀ ଅଧିକ ଅଗ୍ରସର ନହୋଇ ଶତ୍ରୁମାନେ ଛାଡିଯାଇଥିବା କମାଣ ଓ ଗୁଳିଗୁଳା ସଂଗ୍ରହ କରିବାକୁ ଲାଗିଲେ । ସେମାନେ 'ଫ୍ରାସର୍'ଙ୍କର ବଙ୍ଗଳା ଆଡକୁ ଆଗେଇଯାଇ ସେଠାରେ ଏକ (Battery) ଯୁଦ୍ଧମଞ୍ଚ ନିର୍ମାଣ କଲେ । ଏବଂ 'ଫତେଗଡ'ରେ ମଧ୍ୟ ଅନ୍ୟ ଏକ ମଞ୍ଚ ନିର୍ମିତ ହେଲା ।

ବିଦ୍ରୋହୀମାନେ ଇଂରାଜିଙ୍କର ଯୁଦ୍ଧ ବିରତିରେ ଉତ୍ସାହିତ ହୋଇ, ପ୍ରତିରକ୍ଷା ମୂଳକ ବ୍ୟବସ୍ଥା ଭାବରେ ନଗରୀର ପ୍ରାଚୀର ମାନଙ୍କରେ କମାଣ ଆଦି ଅସ୍ତ୍ର ଶସ୍ତ୍ର ଖଞ୍ଜି ଇଂରାଜି ଛାଉଣୀ ଆଡକୁ ଗୋଳାବର୍ଷଣ କରିବାକୁ ଲାଗିଲେ । ବିଦ୍ରୋହୀ ମାନଙ୍କର ଚାରୋଟି ଯୁଦ୍ଧ ମଞ୍ଚା ଥିଲା । 'ସଲିମ୍‌ଗଡ'ରେ ଗୋଟାଏ, 'କାଶ୍ମୀର ଦ୍ୱାର'ରେ ଦୁଇଟି ଓ ଚତୁର୍ଥଟି 'କାବୁଲ ଦ୍ୱାର'ରେ ଅବସ୍ଥିତ ଥିଲା । ଇଂରାଜିମାନେ, ସେମାନେ ବାନ୍ଧିଥିବା ଦୁଇଟି ମଞ୍ଚାରୁ, ବିଦ୍ରୋହୀ ମାନଙ୍କର ଗୁଳିଗୋଳାର ଜବାବ ଦେଉଥିଲେ । ଇଂରାଜି ଗୋଳାଦ୍ୱାରା ବିଦ୍ରୋହୀମାନେ ବିଶେଷ କ୍ଷତିଗ୍ରସ୍ତ ହେଉନଥିଲେ, କାରଣ ଏ ସମସ୍ତ ଗୋଳା, ମୁକ୍ତ ପଡିଆମାନଙ୍କରେ ହିଁ ପଡୁଥିଲା । ସୈନ୍ୟମାନଙ୍କୁ ଉତ୍ସାହିତ କରିବା ପାଇଁ ସେମାନଙ୍କୁ ପ୍ରାୟ ପଦୋନ୍ନତି ଦିଆହେଉଥିଲା । ବିସ୍ଫୋରଣ ଭୟରେ 'ଦିୱାନୀ-ଆମ'ରୁ ବାରୁଦ ତିଆରି କାରଖାନା ଉଠାଇ ଆଣି 'ବେଗମ ସିମ୍ରୁର୍ଦ୍ଧ'ଙ୍କ ଘରେ ଅବସ୍ଥାପିତ କରାଗଲା । ଏଥିରେ ଦୁଇଶହରୁ ଅଢ଼େଇଶହ ଲୋକ ନିଯୁକ୍ତ ରହିଲେ । ସିପାହୀମାନେ ପ୍ରତିଦିନ ସକାଳର ପ୍ୟାରେଡରେ ଯୋଗଦାନ କରି, 'ମିଥାର ବ୍ରିଗେଡ'କୁ ମାର୍ଚ୍ଚ କରିଯାଉଥିଲେ ଓ ସେଠାରୁ ବିଭିନ୍ନ ଦିଗକୁ ଯାଇ ଇଂରାଜି ଛାଉଣୀ ଉପରେ ଅପରାହ୍ଣ ଚାରିଟା ପର୍ଯ୍ୟନ୍ତ ଗୁଳି ଗୋଳା ବର୍ଷଣ କରୁଥିଲେ । ଅଧିକାଂଶ ଗୁଳିଗୋଳା ବେଖିଆଲି ଭାବରେ ପ୍ରୟୋଗ କରାଯିବା ଫଳରେ ଲକ୍ଷ୍ୟ ଭ୍ରଷ୍ଟ ହୋଇ ଇଂରାଜିଙ୍କର ବିଶେଷ କ୍ଷତି କରୁନଥିଲା ।



# ପ୍ରତ୍ୟାକ୍ରମଣ ପ୍ରତୀକ୍ଷା

ଜୁନ୍ ମାସ ମଧ୍ୟ ଭାଗ ସୁଦ୍ଧା 'ଦିଲ୍ଲୀ' ନଗରୀ ପ୍ରତ୍ୟାକ୍ରଣ କରିବା ପାଇଁ ଛାଉଣୀ ପକାଇଥିବା ଇଂରାଜି ବାହିନୀରେ ତେଇଶଶହ ଜଣ ପଦାତିକ, ଛଅଶହ ଘୋଡସବାର ସହ ବାଇଶଟି ସମରକ୍ଷେତ୍ରରେ ବ୍ୟବହାର କରାଯାଇଥିବା କମାଣ ଥିଲା । ବିଶାଳ ଓ ସୁଦୃଢ ପ୍ରାଚୀର ପରିବେଷ୍ଟିତ 'ଦିଲ୍ଲୀ ନଗରୀ'ରେ ମଧ୍ୟ ଓଜନଦାର କମାଣ ଥିଲା । ' ଦିଲ୍ଲୀ ନଗରୀ'ର ପ୍ରାଚୀରର ଦୈର୍ଘ୍ୟ ସାତମାଇଲ ଥିଲା । ଇଂରାଜିମାନେ ହଠାତ୍ ନଗରୀ ଆକ୍ରମଣ ନକରି ଛାଉଣୀ ପକାଇ ପ୍ରସ୍ତୁତିରେ ଲାଗିଯିବା ଦେଖି, ଏସମୟର ସୁଯୋଗ ବିଦ୍ରୋହୀମାନେ ନେଇ, ଦିନକୁ ଦିନ ନଗରୀର ପ୍ରାଚୀରରେ ଓଜନଦାର କମାଣ ଓ ଅନ୍ୟାନ୍ୟ ଶସ୍ତ୍ର ସମୂହ ଇଂରାଜିମାନଙ୍କ ଆଡକୁ ମୁହାଁଇ ଖଞ୍ଜିବାରେ ଲାଗିଗଲେ ।

ଇଂରାଜିମାନେ ସେମାନଙ୍କର ଅଧିକୃତ ଉଚ୍ଚପଥୁରିଆ ଅଞ୍ଚଳରେ ଥିବା ପୁରାତନ ମରହଟ୍ଟା ସର୍ଦ୍ଦାର ହିନ୍ଦୁ ରାଓଙ୍କର ପ୍ରାସାଦ ପାଖରେ କମାଣ ମାନ ଖଞ୍ଜିବାକୁ ଲାଗିଲେ । ବିଦ୍ରୋହ ପୂର୍ବରୁ 'ହିନ୍ଦୁ ରାଓ'ଙ୍କର ମୃତ୍ୟୁ ହୋଇଥିଲା ଏବଂ ଏହି ସ୍ଥାନଟି ପ୍ରତ୍ୟାକ୍ରମଣ ପାଇଁ ଉପଯୁକ୍ତ ଥିଲା ।

'ହିନ୍ଦୁ ରାଓ' ଉଦ୍ୟାନପ୍ରେମୀଥିବାରୁ ତାଙ୍କର ପ୍ରାସାଦ ସଂଲଗ୍ନ ଏକ ବିରାଟ ଉଦ୍ୟାନ ଥିଲା ଓ ତହିଁରେ ବହୁ ବଡ ବଡ ବୃକ୍ଷମାନ ଥିଲା । ତାହାରି ଛାଇ ତଳେ ଇଂରାଜି ବାହିନୀରେ ଥିବା ଏକ ବ୍ୟାଟାଲିୟନ୍ ଗୁର୍ଖା ଓ ୬୦ତମ ରାଇଫଲ ବାହିନୀର ତିନୋଟି କମ୍ପାନୀ, ଦୁଇଟି କମ୍ପାନୀ ସହ ମୁତୟନ ହୋଇଥିଲେ । ଉଚ୍ଚ ପଥୁରିଆ ମାଳ ଅଞ୍ଚଳର ଶେଷ ଭାଗରେ 'ସବ୍‌ଜିମଣ୍ଡି' ଥିଲା । ଦକ୍ଷିଣ ଭାଗରେ ମାଳ ଅଞ୍ଚଳ ଆରମ୍ଭ ହୋଇଥିବାର ସ୍ଥାନରେ 'କିଶାନଗଞ୍ଜ' ଓ ପାହାଡୀପୁର ଥିଲା ।

ଇଂରାଜ ବାହିନୀର ପ୍ରଥମ କାର୍ଯ୍ୟଥିଲା ପ୍ରତିରକ୍ଷାତ୍ମକ ବ୍ୟବସ୍ଥା କରିବା । ପଥୁରିଆ ଅଞ୍ଚଳର ଶୀର୍ଷ ଭାଗ ଟାଙ୍ଗରା ଓ କଠିନ ଭୂମିଯୁକ୍ତ ହୋଇଥିବାରୁ ତାହା ଖୋଳି କମାଣ, ଟ୍ରେଞ୍ଚ, ତମ୍ବୁଆଦି ପକାଇବା କଷ୍ଟକର ହେଉଥିଲା ଓ ନିରାପଦ ନଥିଲା । ଏଣୁ କୃତ୍ରିମ ଉପାୟରେ ପ୍ରତିରକ୍ଷା ବ୍ୟବସ୍ଥା କରିବାକୁ ପଡିଲା । ବଳଦ ଗାଡିରେ ମାଟି ବୁହାହୋଇ ଆସି କିଛିସ୍ଥାନ ପରୀଖା ପରିବେଷ୍ଟିତ କରାଗଲା । 'ହିନ୍ଦୁରାଓ ପ୍ରାସାଦ'ରେ ମଧ୍ୟ ଅନୁରୂପ ବ୍ୟବସ୍ଥା ଗ୍ରହଣ କରାଗଲା । ଇଂରାଜମାନେ ଥିବା ଉଚ୍ଚ ପଥୁରିଆମାଳ ଅଞ୍ଚଳ ଓ ଯମୁନା ନଦୀ ମଧ୍ୟ ଭାଗରେ ଥିବା ଦିଲ୍ଲୀ ନଗରୀରେ କିଛି ନଙ୍କା ଓ ବୁଦାମାନ

ଥିଲା । ଛଡ଼ାଇ ଦିଆଯାଇଥିବା ଓ ପରିତ୍ୟକ୍ତ ଘରମାନଙ୍କ ମଝିରେ ଅସମତଳ ରାସ୍ତାମାନ ଯାଇଥିଲା । ନଗରୀର ପାଖରେ ବହୁ ପରିତ୍ୟକ୍ତ ବାସଗୃହ, ପୁରାତନ ମସ୍‌ଜିଦ୍ ବୃକ୍ଷରାଜି ଓ ବୁଦାମାନ ଥିଲା । 'କାଶ୍ମୀର ଦରଜା' ଠାରୁ ଅଧ ମାଇଲ ଆଗକୁ ଦିଲ୍ଲୀର କମିଶନର 'ସାଇମନ ଫ୍ରାସର୍'ଙ୍କର ପ୍ରାସାଦ 'ଲୁଡଲୋ କ୍ୟାଷ୍ଟଲ୍'(Ludlow castle)ଥିଲା । ଏହାର ନିମ୍ନ ଭାଗରେ ଏକ ନଳା, ' କୁଦିଶାବାଗ' ପାଖରେ ଥିବା ନଦୀରୁ ଆରମ୍ଭ କରି ପଥୁରିଆ ମାଳ ଅଞ୍ଚଳ ପର୍ଯ୍ୟନ୍ତ ଯାଇଥିଲା । ଏହା ଇଂରାଜ ବାହିନୀ ପାଇଁ ଆଶୀର୍ବାଦ ଥିଲା । ନଚେତ୍ ସେମାନେ ପ୍ରବଳ ଜଳକଷ୍ଟ ଅନୁଭବ କରିଥାଆନ୍ତେ । କାରଣ ସେ ସ୍ଥାନରେ ଥିବା ସବୁ କୂପ ଗୁଡିକ ମଳା ମୂର୍ଦ୍ଧାରରେ ଭର୍ତ୍ତି ହୋଇଥିଲା । 'କୁଦିଶାବାଗ' ନଗରୀର ପ୍ରାଚୀରଠାରୁ ତିନିଶହ ଗଜ ଦୂରରେ ଥିଲା । ଏହା କୌଣସି କାଳରେ ବିଳାସୀ ମୋଗଲ ଶାସକମାନଙ୍କର ଗ୍ରୀଷ୍ମ ନିବାସ ଥିଲା । ଏହା ଧ୍ୱସ୍ତ ପ୍ରାୟ ହେଲେ ମଧ ଲେମ୍ବୁ, କମଳା ଓ ଗୋଲାପ ଆଦି ବଗିଚା ଦ୍ୱାରା ପରିବେଷ୍ଟିତ ହୋଇଥିଲା ।

ଇଂରାଜ ଛାଉଣୀର ପାର୍ଶ୍ୱରେ ମୁଖ୍ୟ ରାସ୍ତାଗୁଡିକ ଥିଲା । ସେଥି ମଧ୍ୟରୁ ପ୍ରଥମ ରାସ୍ତା ଗ୍ରାଣ୍ଡଟ୍ରଙ୍କ ରୋଡ, ଛାଉଣୀ ମଧ ଦେଇ କିଛି ଘଞ୍ଚ ବୁଦା ବଗିଚା ଓ ଅଟ୍ଟାଳିକା ଅତିକ୍ରମ କରି କାବୁଲ ଦରଜା ପର୍ଯ୍ୟନ୍ତ ଯାଇଥିଲା । ମାତ୍ର 'କାବୁଲ ଦରଜା' ଓ ଅନ୍ୟ ପାର୍ଶ୍ୱବର୍ତ୍ତୀ ସ୍ଥାନମାନ ବିଦ୍ରୋହୀ ସିପାହୀମାନଙ୍କର କବଳରେ ଥିଲା । ଦ୍ୱିତୀୟ ରାସ୍ତା କ୍ୟାଣ୍ଟନ୍‌ମେଣ୍ଟ ରୋଡ ନାମରେ ପରିଚିତ ଥିଲା ଓ ତାହା ଛୋଟ ଥିଲା । ତାହା ଉଚ୍ଚ ପଥୁରିଆମାଳ ଅଞ୍ଚଳ ଅତିକ୍ରମ କରି 'କାଶ୍ମୀର ଦରଜା' ପର୍ଯ୍ୟନ୍ତ ଯାଇଥିଲା । ଉଚ୍ଚ ପଥୁରିଆ ମାଳ ଅଞ୍ଚଳର ଉତ୍ତର ପଶ୍ଚିମ ଦିଗର ଗଡାଣିଆ ସ୍ଥାନ ତଳେ ଇଂରାଜିମାନେ ସେମାନଙ୍କର ତମ୍ବୁ ପକାଇଥିଲେ । ତାହା ପାଖରେ ଛାତଥିବା ଏକ ଭଙ୍ଗାଘରେ ଇଂଜିନିୟରମାନେ ରହୁଥିଲେ । ଏହି ଛାଉଣୀଟି ଗଡାଣିଆ ଦିଗରେ କେନାଲ ପର୍ଯ୍ୟନ୍ତ ଲମ୍ବିଥିଲା । ଇଂରାଜମାନଙ୍କର, ସାମରିକ ଦୃଷ୍ଟିକୋଣରୁ ମୁଖ୍ୟସ୍ଥାନ, 'ହିନ୍ଦୁରାଓ ପ୍ରାସାଦ' ଥିଲା । କାରଣ ଏହିଠାରେ ହିଁ ଇଂରାଜମାନେ ଶତ୍ରୁସହ ମୁହାଁମୁହିଁ ହୋଇ ରହିଥିଲେ । ଏହା ଇଂରାଜମାନଙ୍କ ଦ୍ୱାରା ଅଧିକୃତ ହେବାର ପ୍ରାୟ ସପ୍ତାହ ପରେ ଏକ ଅପରାହ୍ନରେ, ଏକ ବତିଶ ପାଉଣ୍ଡିଆ ଗୋଳା ଆସି ପ୍ରାସାଦର ପୋର୍ଟିକୋରେ ପଡିବା ଫଳରେ ଜଣେ ଅଫିସର, ଚାରିଜଣ ଗୁର୍ଖା, କାର୍‌ବାଇନର୍, ଦୁଇଜଣ ଅର୍ଡିର୍ଲି ଓ ଜଣେ ଡ୍ରାଇଭର ମୃତ୍ୟୁ ମୁଖରେ ପଡିଥିଲେ ଓ ଏହାବ୍ୟତୀତ ଅନ୍ୟମାନେ ମଧ ବହୁ ସଂଖ୍ୟାରେ ଆହତ ହୋଇଥିଲେ । ଇଂରାଜମାନଙ୍କର, ଶତ୍ରୁକୁ ମୁକାବିଲା କରିବା ପାଇଁ 'ହିନ୍ଦୁରାଓ ପ୍ରାସାଦ'କୁ ଲାଗି ତିନୋଟି ଆଗୁଆ ଛାଉଣୀ ଥିଲା । ସେଥି ମଧ୍ୟରୁ ଗୋଟିକର ନାମ ଥିଲା' ଶମ୍ମୀ

ହାଉସ' । ଅନ୍ୟଟି ସବଜି ମଣ୍ଡିରେ ଥିବା ନିମ୍ନ ଭୂମିରେ ଅବସ୍ଥାପିତ ଥିଲା । କିନ୍ତୁ ହିନ୍ଦୁରାଓ ପ୍ରାସାଦ ସବୁଠାରୁ ଆଗୁଆ ଛାଉଣୀ ଥିଲା । ତଥାପି ତାହା ଶତ୍ରୁଠାରୁ ୧୫୦୦ ଗଜ ଦୂରତାରେ ଅବସ୍ଥାପିତ ହୋଇଥିଲା ! ରାଜପୁତ ରାଜାଙ୍କ ଦ୍ୱାରା ସ୍ଥାପିତ ୬୦ ଫୁଟ ଉଚ୍ଚତା ବିଶିଷ୍ଟ ଏକ ସ୍ତମ୍ଭ ଥିଲା ( ଅଧୁନା ଜନ୍ତର ମନ୍ତର) । ଏଥିରେ କିଛି କୋଠରୀ ମଧ୍ୟ ଥିଲା । ଏହା ମଧ୍ୟରେ ପାହାଚରେଉପରକୁ ଗଲେ, ଉପରେ ଏକ ଛାତବିହୀନ ମୁକ୍ତ ସ୍ଥାନ ପଡେ ତାହା ସେହି ପଥୁରିଆ ଅଞ୍ଚଳରେ ସବୁଠାରୁ ଖୋଲା ସ୍ଥାନ ଥିଲା । ସେଠାରେ ଇଂରାଜମାନେ ଦୁଇଟି ତୋପ ଖଞ୍ଜିଥିଲେ । ପୁନଶ୍ଚ ବାମ ଭାଗରେ ଛଅଶହ ପଚାଶ ଗଜ ଦୂରରେ ବହୁତ ମସ୍‌ଜିଦ୍‌ମାନ୍ ଥିଲା । ସେଠାରେ ଏକ ବାହିନୀକୁ ଅବସ୍ଥାପିତ କରାଯାଇଥିଲା । ସେତେବେଳେ ଯମୁନା ନଦୀ ପ୍ରାୟ ଏକ ମାଇଲ ଦୈର୍ଘ୍ୟ ବିଶିଷ୍ଟ ଥିଲା ।

ଏହି ପ୍ରକାର ପରିସ୍ଥିତି ମଧ୍ୟରେ ଯେତେବେଳେ ଇଂରାଜସେନା ଉପଯୁକ୍ତ ସମୟର ଅପେକ୍ଷାରେ ବସି ବସି ଧିରେ ଧିରେ ନିରୁତ୍ସାହିତ ଅନୁଭବ କରୁଥିଲେ ସେହି ସମୟରେ 'କ୍ୟାପଟେନ ହେନେରୀ ଡାଲି'(Caption Henery Daly)ଙ୍କ ଅଧିନରେ ଏକ ଆଗୁଆ ବାହିନୀ ଆସି ପହଞ୍ଚିଗଲେ । 'ଡାଲି' ଜଣେ ଆୟରଲାଣ୍ଡର ବ୍ୟକ୍ତିଥିଲେ ଓ କମ୍ପାନୀର ସୈନ୍ୟବାହିନୀରେ ୧୮୪୦ ମସିହାରୁ ଯୋଗ ଦେଇଥିଲେ । ସେ 'ଲରେନ୍ସ'ଙ୍କ ନିର୍ଦ୍ଦେଶରେ ଛଅ ଶହ ମାଇଲ ଦୂର 'ପଞ୍ଜାବ'ରୁ ଆସିଥିଲେ । 'ଦିଲ୍ଲୀ'ରେ ପହଞ୍ଚିବାକୁ ତାଙ୍କୁ ତିନି ସପ୍ତାହ ଲାଗିଥିଲା । ତାଙ୍କର ସେନା ଦିନକୁ ତିରିଶ ମାଇଲ ପଥ ଅତିକ୍ରମ କରୁଥିଲେ । 'ଡାଲି' ପହଞ୍ଚିବା ମାତ୍ରେ ଛାଉଣୀରୁ ଜଣେ ଷ୍ଟାଫ୍ ଅଫିସର ଘୋଡାରେ ଯାଇ ତାଙ୍କୁ ଦେଖାକଲେ । ସେ 'ଡାଲି'ଙ୍କୁ ପଚାରିଲେ, ''କେତେ ସମୟ ମଧ୍ୟରେ ଆପଣ ଆକ୍ରମଣ ପାଇଁ ପ୍ରସ୍ତୁତ ହୋଇପାରିବେ ?'' ଏହାର ଉତ୍ତରେ 'ଡାଲି' କହିଲେ, ''ଅଧଘଣ୍ଟାଏ ମଧ୍ୟରେ'' । ସେହି ଦିନ ଅପରାହ୍ନରେ ବିଦ୍ରୋହୀ ସିପାହୀମାନେ ହିନ୍ଦୁରାଓ ପ୍ରାସାଦ ଉପରେ ପ୍ରବଳ ଆକ୍ରମଣ କଲେ ଓ ଡାଲି ତାଙ୍କର ବାହିନୀ ସହ ତାହା ପ୍ରତିହତ କରି ଶତ୍ରୁ ପକ୍ଷର ପ୍ରବଳ କ୍ଷୟକ୍ଷତି ଘଟାଇଲେ । 'ଦିଲ୍ଲୀ' ଅଧିକାର ସମୟରେ 'ଡାଲି'ଙ୍କ ବାହିନୀର ଚାରିଶହ ଜଣଙ୍କ ମଧ୍ୟରୁ ତିନିଶହ କୋଡିଏ ଜଣ ପ୍ରାଣ ହରାଇଥିଲେ । ଉପରୋକ୍ତ 'ହିନ୍ଦୁରାଓ ପ୍ରାସାଦ'ରେ, ଶତ୍ରୁକୁ ମୁକାବିଲା କରି 'ଡାଲି'ଙ୍କର ଅଶ୍ୱ ମୃତ୍ୟୁ ମୁଖରେ ପଡିଥିଲା ଓ ଡାଲିଙ୍କର ଗୋଡରେ ଗୁଳି ବାଜିଥିଲା ।

ବିଦ୍ରୋହୀ ସିପାହୀମାନଙ୍କର ଆକ୍ରମଣ ଖୁବ୍ ସବଳ ଥିଲା । ଏହାର ଗୁଳିଗୋଳା ଇଂରାଜି ଛାଉଣୀର ବହୁ କ୍ଷତି ଘଟାଉଥିଲା । ଏଣୁ ସେଠାରେ ଆଉ କିଛି କମାଣ ସହିତ

ଏକ ମଞ୍ଚା ବସାଗଲା । ଏହା ସତ୍ତ୍ୱେ ବିଦ୍ରୋହୀ ବାହିନୀରୁ ଅବିଶ୍ରାନ୍ତ ଗୁଳିଗୋଳା ବର୍ଷଣ ଚାଲିଥିଲା । 'ହିନ୍ଦୁରାଓ ପ୍ରାସାଦ', ଇଂରାଜି ବାହିନୀର ଦୁର୍ବଳତମ ସ୍ଥାନ ହୋଇଥିବାରୁ ବିଦ୍ରୋହୀ ବାହିନୀ, ତାହାକୁ ପ୍ରଥମେ ମୁଖ୍ୟ ଆକ୍ରମଣ ସ୍ଥଳ ବିବେଚନା କରିଥଲେ ।

ଇଂରାଜି ବାହିନୀ, ପଶୁ ଓ ମଣିଷର ମଳା ମୁର୍ଦ୍ଦାର ଓ ଧ୍ୱଂସ ସ୍ତୁପ ମଧ୍ୟରେ ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ପରିବେଶ ମଧ୍ୟରେ ଥିଲା । ବାରମ୍ବାର ଆକ୍ରମଣ ସମ୍ମୁଖୀନ ହେଉଥିବାରୁ ସେମାନଙ୍କୁ କ୍ୱଚିତ୍ ବିଶ୍ରାମ ମିଳୁଥିଲା । ପ୍ରବଳ ଉତ୍ତାପରେ ତମ୍ବୁମାନ ତାତି ଯାଉଥିଲା । ଛାଉଣୀରେ ହଇଜାର ପ୍ରାଦୁର୍ଭାବ ଦେଖାଦେଲା । ଜୁନ ଦଶ ତାରିଖ ଦିନ 'ଲରେନ୍ସ'ଙ୍କ ନିର୍ଦ୍ଦେଶରେ 'ଜେନେରାଲ ରିଡ୍' (General Read), 'ଦିଲ୍ଲୀ'ରେ ପହଞ୍ଚି ସେଠାରେ ଥିବା ସମଗ୍ର ଇଂରାଜି ବାହିନୀର ଅଧିନାୟକତ୍ୱ ଗ୍ରହଣ କଲେ । କିନ୍ତୁ ସେ ଆସିବା ସଙ୍ଗେ ସଙ୍ଗେ ପ୍ରବଳ ଉତ୍ତାପ ସହ୍ୟ ନକରିପାରି ପ୍ରାୟ ଶଯ୍ୟାଶାୟୀ ହୋଇ ରହିଲେ । ଏହି ପରିସ୍ଥିତି ମଧ୍ୟରେ 'ଜେନେରାଲ ବାର୍‌ନାଡ୍', 'ଇଂଞ୍ଜିନିୟର ୟଙ୍ଗ୍' 'ଉଇଲବରଫୋର୍ସ ଗ୍ରୀଥେଡ୍' (Young willberforce Greathed), 'ମେଜର ହଡ଼ସନ', 'ବ୍ରିଗେଡ୍ ମେଜର ଚେସନେ' (Chesney) ଓ 'ଫ୍ରାଙ୍କ ମଉନସେଲ' (Frank Mauncell) ଆଦି ଇଞ୍ଜିନିୟରମାନଙ୍କୁ ଆକ୍ରମଣ ଯୋଜନା ତିଆରି କରିବାର ଦାୟିତ୍ୱ ଦେଲେ । ଏହି ଯୋଜନା "Project attack on the city of Delhi"ନାମରେ ଜେନେରାଲ 'ବାର୍‌ନାଡ୍'ଙ୍କ ସମ୍ମୁଖରେ ଜୁନ୍ ଏଗାର ତାରିଖ ଦିନ ଉପସ୍ଥାପିତ କରାଗଲା ଓ ତାହା ଜେନେରାଲଙ୍କ ଦ୍ୱାରା ସ୍ୱୀକୃତ ହେଲା ।

ଏହା ଏକ ଅଚାନକ ଆକ୍ରମଣର ଯୋଜନା ଥିଲା । ଯୋଜନା ଅନୁସାରେ ସର୍ବ ପ୍ରଥମେ ନଗରୀର ଦ୍ୱାରକୁ ଗୋଳାରେ ଉଡ଼ାଇ ଦିଆଯିବ ଓ ନଗରୀରେ ସେନା ପ୍ରବେଶ କରି ପ୍ରବଳ ଆକ୍ରମଣ କରିବେ ଓ ଅନ୍ୟ ସୈନାମାନେ ତତ୍ ସଙ୍ଗେ ସଙ୍ଗେ ବାଉଁଶ ସିଡ଼ି ଦ୍ୱାରା ନଗର ମଧ୍ୟକୁ ପ୍ରବେଶ କରିବେ । ଜୁନ୍ ତେର ତାରିଖ ଅପରାହ୍ନ ପରେ ଏହି ଆକ୍ରମଣର ଯୋଜନା ହୋଇଥିଲା ଓ ସେଦିନ ସେନାଙ୍କର ଆକ୍ରମଣ ପାଇଁ ଏକତ୍ରିତ ହେବାର ସ୍ଥାନ ମଧ୍ୟ ନିର୍ଦ୍ଧାରାତ ହୋଇଥିଲା । ଏହି ଆକ୍ରମଣର ଯୋଜନାରେ, ଯୋଜନାକାରୀ ଗଣ ଏତେ ଦୂର ଉତ୍ସାହିତ ଓ ଉତ୍ତେଜିତ ହୋଇପଡ଼ିଥିଲେ ଯେ, ସେମାନେ ପୁରୁଣା ଅଫିସରମାନଙ୍କୁ ସେମାନଙ୍କର ଯୋଜନାର ବିସ୍ତୃତ ରୂପରେଖ ଜଣାଇବାକୁ ଭୁଲି ଯାଇଥିଲେ । ତେଣୁ ଆକ୍ରମଣ ମୁହୂର୍ତ୍ତରେ ସୈନ୍ୟମାନେ ବିଭିନ୍ନ କର୍ତ୍ତବ୍ୟରେ ନିଯୁକ୍ତ ଥିବା ଦୃଷ୍ଟିରୁ ଯୋଗ ଦେଇ ପାରିଲେ ନାହିଁ । କେବଳ ଅଳ୍ପ କେତୋଟି ବାହିନୀ ନିର୍ଦ୍ଦିଷ୍ଟ ସ୍ଥଳରେ ଅପେକ୍ଷା କରି ରହିଲେ । ଏହି ବାହିନୀମାନଙ୍କର ନେତୃତ୍ୱ ନେବାକୁ ମଧ୍ୟ କୌଣସି

ଅଫିସର ଆଗେଇ ଆସିଲେ ନାହିଁ । ତଥାପି ରାଇଫଲ୍ ବାହିନୀ ନଗରୀର ପ୍ରାଚୀର ଠାରୁ ତିନିଶହ ଗଜ ଦୂର ପର୍ଯ୍ୟନ୍ତ ଆଗେଇ ଯାଇଥିଲେ । ସେମାନେ ଆଦେଶ ମୁତାବକ୍ ନଗରୀ ଦ୍ୱାର ଧ୍ୱଂସ କରିବାକୁ ଆଗେଇ ଯାଉଥିବା ବେଳେ, 'ବ୍ରିଗେଡ଼ିୟର ଗ୍ରୀଭସ୍(Brdgeer Greaves) ସେନା ମାନଙ୍କ ଆଗରେ ଆଦେଶର ବୈଧତା ଓ ଯୁକ୍ତିଯୁକ୍ତତା ସମନ୍ଧରେ ସନ୍ଦେହ ପ୍ରକାଶ କରିବା ଫଳରେ ,ସମସ୍ତ ସେନା ଆକ୍ରମଣ ନକରି ଛାଉଣୀକୁ ପ୍ରତ୍ୟାବର୍ତ୍ତନ କଲେ ।

ଏ ଦିଗରେ ଦିଲ୍ଲୀ ନଗରୀରେ ବିଶୃଙ୍ଖଳ ବାତାବରଣ ଥିଲା । ବିଦ୍ରୋହୀ ସିପାହୀମାନେ ବିଭିନ୍ନ ଦିଗରୁ ପ୍ରତ୍ୟହ ବହୁ ସଂଖ୍ୟାରେ ଆସି ଏକତ୍ରିତ ହେଉଥିଲେ । ସେମାନଙ୍କୁ ଶୃଙ୍ଖଳାବଦ୍ଧ କରି ରଖିବା ପାଇଁ ଉପଯୁକ୍ତ ସେନାପତିତ୍ୱର ଅଭାବଥିଲା । ଏହା ଫଳରେ ନଗରୀରେ ପ୍ରବେଶ କରୁଥିବା ବାହିନୀମାନଙ୍କ ମଧ୍ୟରେ ସହଯୋଗ ବୁଝାମଣା ଓ ଦୃଢ ଯୋଗ ସୂତ୍ରର ଅଭାବ ଦେଖାଗଲା । ପ୍ରତ୍ୟହ ବହୁ ସଂଖ୍ୟାରେ ବିଦ୍ରୋହୀମାନେ ବିଭିନ୍ନ ସ୍ଥାନରୁ ଆସି ନଗରୀରେ ଏକତ୍ରିତ ହେଉଥିବା ବେଳେ, ସେମାନଙ୍କର ଖାଦ୍ୟ ଭତ୍ତା ଆଦି ଆନୁସାଙ୍ଗିକବିଷୟ ବ୍ୟବସ୍ଥା କରିବା ଅତ୍ୟନ୍ତ ଦୁରୁହ ବ୍ୟାପାର ହୋଇପଡ଼ିଲା । ଏହି ପ୍ରକାର ବିଶୃଙ୍ଖଳା ମଧ୍ୟରେ, ବିଦ୍ରୋହୀ ସିପାହୀମାନେ, ଉପଯୁକ୍ତ ନେତୃତ୍ୱ ଆଭାବରୁ ମୂଳ ଲକ୍ଷ୍ୟ ଭୁଲି ନାଗରିକମାନଙ୍କୁ ଲୁଟ କରିବାକୁ ଆରମ୍ଭ କରିଦେଲେ । ଜୁନ୍ ଆଠ ତାରିଖରେ 'ବାଦଶା', 'ମିର୍ଜା ମୋଗଲ'ଙ୍କୁ ନିଜର ମୋହର ଥାଇ ଏକ ଚିଠିରେ ନିର୍ଦ୍ଦେଶ ଦେଲେ ଯେ, ଲୁଟ୍ କରୁଥିବା ଫୌଜମାନଙ୍କୁ 'ଦିଲ୍ଲୀ'ଠାରୁ ପାଞ୍ଚ ଛଅ ମାଇଲ ଦୂରକୁ ପଠାଇ ଦିଆଯାଉ । ଏହା ଫଳରେ ନଗରୀର ନାଗରିକମାନେ ଶାନ୍ତିରେ ରହିପାରିବେ ।

ବାଦଶା, ଅତ୍ୟନ୍ତ ବୃଦ୍ଧାବସ୍ଥା ହେତୁ ଦୁର୍ବଳ ଥିଲେ ଓ ଏହି ବିରାଟ ବାହିନୀର ଉପଯୁକ୍ତ ରକ୍ଷଣା ବେକ୍ଷଣ ଓ ପରିଚାଳନା ପାଇଁ ତାଙ୍କର ସମ୍ବଳର ଅଭାବ ଥିଲା । ପୁନଶ୍ଚ ତାଙ୍କ ପାଖରେ ବିଶ୍ୱସ୍ତ ଓ ଦକ୍ଷ ସେନାପତି ମଧ୍ୟ ନଥିଲେ । ଏହିପରି ପରିସ୍ଥିତି ମଧ୍ୟରେ ସେ ଲୁଟ୍‌ତରାଜ ଓ ଉଶୃଙ୍ଖଳତା ରୋକିବା ପାଇଁ ବାରମ୍ୱାର ନିର୍ଦ୍ଦେଶ ନାମା ଜାରିକରୁଥିଲେ । ମାତ୍ର, ନେତୃତ୍ୱହୀନ ବିଦ୍ରୋହୀମାନେ ନିୟମିତ ଦରମା ଓ ରସଦ୍ ନପାଇ ନିଜର ଦୈନିକ ଗୁଜୁରାଣ ମେଣ୍ଟାଇବା ଆଳରେ ତା'ହା ବାରମ୍ୱାର ଉଲଘଂନ କରୁଥିଲେ । ପରିଶେଷରେ ବାଦଶା ଅତ୍ୟନ୍ତ ନିରାଶ ହୋଇ ଦିନେ ଆତ୍ମହତ୍ୟାର ଧମକ ଦେଲେ । ଫଳରେ କିଛିଦିନ ଲୁଟ୍‌ତରାଜ କମିଲା, କିନ୍ତୁ ତାହା ଅବା କେତେଦିନ !

ପୂର୍ବବର୍ଣ୍ଣିତ ବିଦ୍ରୋହୀସେନାମାନଙ୍କର ଦିଲ୍ଲୀ ଅଧିକାର ସମୟରେ ଇଂରାଜିମାନଙ୍କ ଦ୍ୱାରା ଆତ୍ମରକ୍ଷା ମୂଳକ ଭାବେ ଅସ୍ତ୍ରାଗାର ଓ ବାରୁଦଖାନା ଉଡାଇଦିଆଯିବା ଫଳରେ ନଗରୀରେ ଗୁଳିଗୋଳା ବାରୁଦ ଓ ଅସ୍ତ୍ରଶସ୍ତ୍ରର ଅତ୍ୟନ୍ତ ଅଭାବ ଦେଖାଦେଇଥିଲା । ଏଥି ନିମିତ୍ତ 'ବେଗମ୍ ସମରୁ'ଙ୍କର ପ୍ରାସାଦରେ ଏକ ଅସ୍ତ୍ରଶସ୍ତ୍ର ଓ ବାରୁଦ ନିର୍ମାଣ କାରଖାନା ସ୍ଥାପିତ ହୋଇଥିଲା । ଏଥିରେ ଅଢ଼େଇଶହ ଜଣ ଲୋକ କାମ କରୁଥିଲେ । ଏଥି ନିମିତ୍ତ ଆବଶ୍ୟକୀୟ ଉପକରଣମାନ ସଂଗ୍ରହ କରିବା, ବାହାରୁ ଆସୁଥିବା ବିଦ୍ରୋହୀ ସିପାହୀ ଦଳମାନଙ୍କୁ ସୁବ୍ୟବସ୍ଥିତ କରି ରଖିବା ସେମାନଙ୍କର ଖାଦ୍ୟଦ୍ରବ୍ୟାଦି ସଂଗ୍ରହ କରିବା, ତଥା ନିୟମିତ ଭତ୍ତା ଆଦି ପ୍ରଦାନ କରିବା ପ୍ରଭୃତି କାର୍ଯ୍ୟମାନ ସମ୍ପାଦନ କରିବା ପାଇଁ ଅର୍ଥର ଅତ୍ୟନ୍ତ ଆବଶ୍ୟକତା ଅନୁଭୂତ ହେଲା ।

ସମ୍ବଳହୀନ 'ବାଦଶା', ନଗରୀର ଧନାଢ୍ୟ ବ୍ୟକ୍ତିମାନଙ୍କ ଠାରୁ ଋଣ ସଂଗ୍ରହ କରିବାର, ବ୍ୟବସ୍ଥା କଲେ । ଏଥିନିମିତ୍ତ ସେ 'ନବାବହମୀଦଅଲି ଖାଁ', 'ରାଜା ଦେବୀ ସିଂହ', 'ସାଲିଗରାମ', 'ନବାବ ମୁଷା ଖାଁ', 'ନବାବ ଅହମ୍ମଦ ମିର୍ଜା' ଓ 'ହାକିମ୍ ଅବଦୁଲ ହକ୍' ଆଦିଙ୍କୁ ନେଇ ଏକ ସମିତି ଗଠନ କଲେ । ଉକ୍ତ ସମିତିକୁ ସେ ଜନସାଧାରଣଙ୍କ ଠାରୁ ଋଣ ଆଦାୟ କରିବା ଅଧିକାର ପ୍ରଦାନ କଲେ । 'ବାଦଶା'ଙ୍କର ଆଦେଶନାମାରେ ବଳ ପ୍ରୟୋଗ ପୂର୍ବକ ଋଣ ସଂଗ୍ରହ କରିବାକୁ ନିଷେଧ କରାଯାଇଥିଲା । ଅପରପକ୍ଷରେ ଲୋକମାନଙ୍କ ସହ ଉପଯୁକ୍ତ ଭଦ୍ର ବ୍ୟବହାର ପୂର୍ବକ ଋଣ ସଂଗ୍ରହ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । ଖଜଣା ଆଦାୟ ପରେ 'ବାଦଶା'ଙ୍କ ତରଫରୁ ଏସମସ୍ତ ଋଣ ଭରଣା ଦିଆଯିବାର ପ୍ରତିଶ୍ରୁତି ମଧ୍ୟ ଦିଆଯାଇଥିଲା । କିନ୍ତୁ ଋଣ ସଂଗ୍ରହ କରିବାରେ ଉପରୋକ୍ତ ସମିତି ଅସଫଳ ହେଲେ । ଏପରିକି, 'ଯୁଗୋଳକିଶୋର', 'ଶିଓ ପ୍ରସାଦ', 'ମୁନ୍‌ସୀ ଜୀବନଲାଲ', 'ଦେବୀ ସିଂହ', 'ସାଲିଗ୍ରାମ', ଆଦି ବ୍ୟାଙ୍କ ମାଲିକମାନେ ମଧ୍ୟ ବିଶେଷ ଭାବରେ ସାହାଯ୍ୟ କରିପାରିଲେ ନାହିଁ । କିନ୍ତୁ ଏହି ଦୁର୍ଦ୍ଦିନ ସମୟରେ ସେତେବେଳର ବିରାଟ ସାହୁକାର 'ରାମଜୀ ଦାସ', 'ବାଦଶା'ଙ୍କୁ ଦାନ ଆକାରରେ ପ୍ରଚୁର ଅର୍ଥ ଓ ଅଟା ଆଦି ଦ୍ରବ୍ୟମାନ ଦେଇଥିଲେ (ତା'ଙ୍କ ପୁତ୍ର 'ସେଠ ନାରାୟଣ ଦାସ ଗୁଡ଼ୱାଲା'ଙ୍କର ପୁତ୍ର 'ରାୟବାହାଦୂର ଶ୍ରୀକିଷନ୍ ଦାସ ଗୁଡ଼ୱାଲା' ବର୍ତ୍ତମାନର 'ରାମଦାସ କଲେଜ'ର ପ୍ରତିଷ୍ଠାତା ଅଟନ୍ତି) । କିନ୍ତୁ ଏହା ସମୁଦ୍ରକୁ ଶଙ୍ଖେ ପଣା ପରି କାମ ଦେଲା । ଏଣୁ ବିଦ୍ରୋହୀ ସିପାହୀମାନେ ଦୈନିକ ଗ୍ରାସାଚ୍ଛାଦନ ମେଣ୍ଟାଇବା ପାଇଁ ରସଦ ଓ ରହିବା ପାଇଁ ସ୍ଥାନ ଏବଂ ନିୟମିତ ଭାବେ ଦରମା ନପାଇ, ପରିଶେଷରେ ନାଗରିକ ମାନଙ୍କୁ ଲୁଟ୍‌ତରାଜ କରି, ନିଜର

ଜୀବନୋପାୟର ପନ୍ଥା ଧରିଲେ । ଏମାନେ ସାଧାରଣତଃ ନଗରର ଧନୀ ବ୍ୟକ୍ତିମାନଙ୍କୁ ନଜର ଉପରେ ରଖୁଥିଲେ ଓ ଉକ୍ତ ଧନୀ ବ୍ୟକ୍ତିମାନଙ୍କ ଘରକୁ ଯାଇ, ଇଂରାଜିମାନେ ଲୁଚିରହିଥିବା ଆଳରେ ଖାନତଲାସ କରି, ବହୁଧନ ଲୁଟ୍ କରୁଥିଲେ । ଜୁଲାଇ ପଚିଶ ତାରିଖରେ ସେସମୟର ମୁଖ୍ୟ ପୁଲିସ ଅଫିସର 'ମୁବାରକ ଶାହା', 'ବାଦଶା'ଙ୍କୁ ତାଙ୍କର ରିପୋର୍ଟରେ ଜଣାଇଥିଲେ ଯେ ବହୁ ସଂଖ୍ୟକ ବିଦ୍ରୋହୀ ସିପାହୀ 'ଲାଲା ଆଲୋକ ପ୍ରସାଦ' ଓ 'ଲାଲା ରାମଲାଲ'ଙ୍କ ଘରେ ଇଂରାଜି ଲୋକଙ୍କୁ ଖୋଜିବା ବାହାନାରେ ପଶିଥିଲେ । କିନ୍ତୁ ସେମାନେ କୌଣସି ଇଂରାଜି ବ୍ୟକ୍ତିଙ୍କୁ ସେଠାରେ ପାଇଲେ ନାହିଁ । ପରିଶେଷରେ ଲୁଟ୍ କରି, ଧନ ସହ ସମସ୍ତ ଆସବାବପତ୍ର ସେମାନେ ଅପହରଣ କରିଥିଲେ । ସେମାନେ ସେ ଦୁଇଜଣଙ୍କୁ ମଧ୍ୟ ବନ୍ଦୀ କରି ସାଥିରେ ନେଇଯାଇଥିଲେ । ଏ ସମ୍ବାଦ ପ୍ରାପ୍ତ ହୋଇ ବାଦଶା ତୁରନ୍ତ ଏକ ରେଜିମେଣ୍ଟ ସୈନ୍ୟଙ୍କୁ ଏହି ଉଶୃଙ୍ଖଳ ସିପାହୀମାନଙ୍କୁ ଜବତ୍ କରି ବନ୍ଦୀ ଦୁଇଜଣଙ୍କୁ ମୁକ୍ତ କରିବା ପାଇଁ ଆଦେଶ ଦେଇଥିଲେ ।

## ଗୁପ୍ତଚର ଚକ୍ର

ଇଂରାଜି ବାହିନୀର ଅଫିସର 'ହଡସନ', ଗୁପ୍ତଚରଚକ୍ର ସଂଗଠନରେ କୁଶଳୀ ଥିଲେ । ବିଦ୍ରୋହୀ ସିପାହୀମାନଙ୍କ ତରଫରୁ କିଛି ସଂଖ୍ୟକ ପୂର୍ବୀୟ ସୈନ୍ୟ, ଗୁପ୍ତଚର ବୃତ୍ତିପାଇଁ ଇଂରାଜି ବାହିନୀର ବିଭିନ୍ନ ପଦବୀରେ ପ୍ରବେଶ କରିଥିଲେ । କିନ୍ତୁ ସେମାନେ ଇଂରାଜିମାନଙ୍କ ବିରୁଦ୍ଧରେ ସମ୍ବାଦ ସଂଗ୍ରହ କରି ପ୍ରେରଣ କରିବା ପରିବର୍ତ୍ତେ ଇଂରାଜି ଅଫିସରମାନଙ୍କ ସହ ଲଢି ସେମାନଙ୍କୁ ହତ୍ୟା କରିବା ପାଇଁ ଚେଷ୍ଟା କଲେ, ଫଳରେ ସମସ୍ତେ ଧରା ପଡିଲେ ଓ ସେମାନଙ୍କୁ ଗୁଳି କରିଦିଆଗଲା । ଅପରପକ୍ଷରେ 'ହଡସନ' ତାଙ୍କର ଗୁପ୍ତଚରମାନଙ୍କୁ ଉପଯୁକ୍ତ ପ୍ରଶିକ୍ଷଣ ଦେଇଥିଲେ । ଏହି ଗୁପ୍ତଚରମାନଙ୍କ ମଧ୍ୟରେ ହିନ୍ଦୁ ଓ ମୁସଲମାନ ଉଭୟ ଗୋଷ୍ଠିର ବ୍ୟକ୍ତିମାନେ ଥିଲେ । ଏମାନେ ବିଦ୍ରୋହୀମାନଙ୍କର ସମସ୍ତ ସ୍ଥାନକୁ ଯାଇ ସେମାନଙ୍କର ସ୍ଥିତି ଓ ଯୋଜନାର ଅନୁସନ୍ଧାନ କରି ପ୍ରତ୍ୟହ ସେ ଖବର ହଡ୍‌ସନଙ୍କୁ ଦେଉଥିଲେ । ଏମାନେ ପଦାତିକ ବାହିନୀ, ଘୋଡାସବାର ବାହିନୀ ଓ କମାଣ ବାହିନୀ ମଧ୍ୟରେ ପ୍ରବେଶ କରି ସେମାନଙ୍କର ଶକ୍ତି ଓ ସଂଖ୍ୟା ବିଷୟରେ ଅବଗତ କରାଉଥିଲେ । ଏମାନେ ନଗରୀମଧ୍ୟରେ ନିଜର ଏକ ସମର୍ଥକ ଗୋଷ୍ଠୀ ମଧ୍ୟ ସୃଷ୍ଟି କରୁଥିଲେ । ଏମାନଙ୍କଠାରୁ ଜନସାଧାରଣଙ୍କର ମନୋଭାବ, ମତାମତ ଆଦି ସଂଗ୍ରହ କରାଯାଉଥିଲା । ଦରବାରରେ ମଧ୍ୟ 'ବାଦଶା', 'ମିର୍ଜା ମୋଗଲ', 'ବକ୍ତ ଖାଁ' ଆଦିମାନଙ୍କର କ୍ରିୟା ଓ ପ୍ରତିକ୍ରିୟାର ସମ୍ବାଦ ସଂଗ୍ରହ କରି ଏମାନେ ଦୈନିକ ପ୍ରେରଣ

କରୁଥିଲେ । ଏତଦ୍ୱାରା ହଡ୍‌ସନ ବିଦ୍ରୋହୀମାନଙ୍କର ଚାଲିଚଳନ, ସାମରିକ ଶକ୍ତି ଆଦି ଓ ବିଭିନ୍ନ ବାହିନୀର ସ୍ଥିତି ତଥା ସେମାନଙ୍କର ଆକ୍ରମଣର ଯୋଜନା ବିଷୟରେ ଅବଗତ ହେଉଥିଲେ । ଏଣୁ ଉଣେଇଶ ତାରିଖ ଦିନ ନସୀରାବାଦରୁ ଏକ ବ୍ରିଗେଡ ବିଦ୍ରୋହୀ ସିପାହୀ ଦିଲ୍ଲୀ ନଗରୀରେ ପ୍ରବେଶ କରି ହିନ୍ଦୁ ରାଓ ପ୍ରାସାଦରେ ଥିବା ଇଂରାଜିମାନଙ୍କ ଉପରେ ଆକ୍ରମଣ କରିବା ପାଇଁ ଅଗ୍ରସର ହେବା ସମୟରେ, ଏହି ଗୁପ୍ତଚରମାନେ ଆକ୍ରମଣ ଯୋଜନାର ଟିକିନିଖି ବିବରଣୀ ତଥା ଶତ୍ରୁର ଶକ୍ତି ବିଷୟରେ ଇଂରାଜିମାନଙ୍କୁ ଖବର ଦେବା ଫଳରେ ସେମାନେ ଯଥେଷ୍ଟ ପୂର୍ବରୁ ସତର୍କ ରହି ଆକ୍ରମଣକୁ ବିଫଳ କରିଦେଇଥିଲେ । ପୁନଶ୍ଚ ଏହି ଗୁପ୍ତଚରମାନେ, ବିଦ୍ରୋହୀ ବାହିନୀ କିଶାନ୍‌ଗଞ୍ଜ ଠାରେ ଆକ୍ରମଣ ପାଇଁ ଏକ ମଞ୍ଚା ପ୍ରସ୍ତୁତ କରୁଥିବାର, ଖବର ଦେଇଥିଲେ । ଫଳରେ ଇଂରାଜିମାନେ ତୁରନ୍ତ ଆକ୍ରମଣ କରି ବିଦ୍ରୋହୀମାନଙ୍କର ଏ ଉଦ୍ୟମ ପଣ୍ଡ କରିଥିଲେ । ଏହି ଗୁପ୍ତଚରମାନେ ବିଭିନ୍ନ ଉପାୟରେ ବିଦ୍ରୋହୀ ସୈନ୍ୟବାହିନୀର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କରେ ଖଞ୍ଜା ହୋଇଥିବା ତୋପ ଆଦି ଅସ୍ତ୍ରମାନଙ୍କ ମଧ୍ୟରେ ଗୋଡି, କଙ୍କର, ବାଲି ପ୍ରଭୃତି ପୁରାଇ ସେଗୁଡିକୁ ଅକାମୀ କରିଦେବାକୁ ଚେଷ୍ଟା କରୁଥିଲେ । ବାରୁଦ, ଗୁଳି ଆଦି ଚୋରୀ କରୁଥିଲେ । ଏମାନେ ବହୁ ଅର୍ଥ ବିନିମୟରେ ଇଂରାଜିମାନଙ୍କ ପାଇଁ ଶଗଡ ଶଗଡ ଖାଦ୍ୟ ଦ୍ରବ୍ୟାଦି ନଗରୀ ମଧ୍ୟରୁ ସଂଗ୍ରହ କରୁଥିଲେ ।

ଏହି ଗୁପ୍ତଚରମାନଙ୍କ ମଧ୍ୟରେ, 'ରଜବଅଲି' ପ୍ରଧାନ ଥିଲା । ସେ ପୂର୍ବରୁ ଲାହୋରରେ 'ଜନ୍‌ଲରେନ୍ସ'ଙ୍କର ମୁନ୍‌ସୀ ଥିଲା । ସେ, ଜଣେ ନିଷ୍ଠାପର ମୁସଲମାନ ମୌଲବୀ ଥିଲେ ମଧ୍ୟ ଇଂରାଜି ମାନଙ୍କ ପ୍ରତି ଅତ୍ୟନ୍ତ ବିଶ୍ୱସ୍ତ ଥିଲା । ସେ ପ୍ରତ୍ୟହ ନଗରୀର କେନ୍ଦ୍ର ସ୍ଥଳରୁ ଚପାତି ମଧ୍ୟରେ, ଜୋତା ମଧ୍ୟରେ, ପଗଡି ମଧ୍ୟରେ ଥିବା ଶିଖ୍ ମାନଙ୍କର ଗୁଡିଆ ହୋଇଥିବା କେଶ ରାଶି ମଧ୍ୟରେ କାଗଜରେ ଲିଖିତ ଆକାରରେ ଟିକିନିଖି ବିବରଣୀ ମାନେ ପଠାଉଥିଲା । ଏତଦ୍ୱାରା ନଗରୀର ଦୈନିକ କାର୍ଯ୍ୟକଳାପର ବିସ୍ତୃତ ବିବରଣୀ, 'ହଡସନ'ଙ୍କୁ ମିଳୁଥିଲା । 'ରଜବ ଅଲୀ', ଏହିସବୁ ଖବର ଏତେ କୌଶଳର ସହିତ ପଠାଉଥିଲା ଯେ ନଗରୀ ମଧ୍ୟରେ ତାକୁ କେହି ଅଣୁମାତ୍ର ସନ୍ଦେହ କରୁନଥିଲେ । ଗୋଟିଏ ତାରର ଦୁଇଟି ପାଖ ପରି 'ରଜବ ଅଲ୍ଲୀ' ଓ 'ହଡସନ'ଙ୍କ ମଧ୍ୟରେ ଦୈନିକ ବହୁ ଗୁରୁତ୍ୱପୂର୍ଣ୍ଣ ସମ୍ବାଦ ପରିବାହିତ ହେଉଥିଲା ।

ଏହି 'ରଜବଅଲୀ', 'ବାଦଶା'ଙ୍କର ଦରବାରରେ ଏକ ଗୁରୁତ୍ୱ ପୂର୍ଣ୍ଣ ସ୍ଥାନରେ ମୁକରୀର ଥିଲା । ସେ ମୁଖ୍ୟ ସେନାପତିଙ୍କର ମୀରମୁନସୀଭାବରେ ତିନିମାସ ରହିଥିଲା । 'ବାଦଶା' କିନ୍ତୁ 'ଅଲ୍ଲୀ'ଙ୍କୁ ସନ୍ଦେହ କରୁନଥିଲେ । ବିଦ୍ରୋହୀମାନେ ତାକୁ ସନ୍ଦେହରେ

ଗିରଫ କଲାବେଳେ ବାଦଶା ତା' ପାଇଁ ନିବେଦନ କରି ତା'କୁ ଖଲାସ କରିଥିଲେ । ପରେ ଅଗଷ୍ଟ ନଅ ତାରିଖ ଦିନ ରଜବ ଅଲ୍ଲୀ, ଇଂରାଜିମାନଙ୍କର ମୁଖ୍ୟ ଗୁପ୍ତଚର ବୋଲି ସ୍ପଷ୍ଟ ଭାବରେ ଜଣାପଡିଲା । କିନ୍ତୁ ତାହା ପୂର୍ବରୁ ସେ ଆତ୍ମରକ୍ଷା କରି ପଳାୟନ କରିଥିଲା ।

ବିଦ୍ରୋହୀସେନାମାନଙ୍କ ମଧ୍ୟରେ ପାରସ୍ପରିକ ସହଯୋଗ ଅଭାବରୁ ସେନାକୁ 'ନସୀରାବାଦ', 'ବରେଲୀ', 'ଫିରୋଜପୁର' ଓ 'ଦିଲ୍ଲୀ' ଏହିପରି ଚାରିଭାଗରେ ବିଭକ୍ତ କରାଯାଇଥିଲା । ପ୍ରତି ବିଭାଗରେ ଛଅଟି ପଦାତିକ ରେଜିମେଣ୍ଟ, ଏକହଜାର ଘୋଡସବାର ବାହିନୀ ଓ ଏକ କମାଣ ବାହିନୀ ଥିଲା । କିନ୍ତୁ ଏ ବ୍ୟବସ୍ଥା ଦ୍ୱାରା କୌଣସି ଲାଭ ହେଲା ନାହିଁ । 'ମହମ୍ମଦ ବକ୍ତ ଖାଁ' ସର୍ବୋଚ୍ଚ ସେନାପତି ଥାଇ ସାହେବ-ଏ-ଆଲମ ବାହାଦୂର ଉପାଧି ପ୍ରାପ୍ତ ହୋଇଥିଲେ । ସେ 'ମିର୍ଜାମୋଗଲ'ଙ୍କର ଅଯୋଗ୍ୟତା ଉପଲବ୍ଧି କରୁଥିଲେ ଓ ତାଙ୍କର ଅପରିଣାମଦର୍ଶିତାର ଶିକାର ହେବାକୁ ଚାହୁଁନଥିଲେ । ଏଣୁ ସେ ତାହାଙ୍କ ସହିତ କେବଳ ଔପଚାରିକତା ରକ୍ଷା କରିଥିଲେ ମଧ୍ୟ, ପାରସ୍ପରିକ ବୁଝାମଣାର ଅଭାବ ଥିଲା । 'ମୀର୍ଜାମୋଗଲ', 'ବକ୍ତ ଖାଁ 'ଙ୍କ ବିରୁଦ୍ଧରେ ସର୍ବଦା 'ବାଦଶା'ଙ୍କ ସମ୍ମୁଖରେ ଅଭିଯୋଗ କରୁଥିଲେ ।

ଇଂରାଜି ଗୁପ୍ତଚରମାନଙ୍କ ଖବର ଅନୁସାରେ, 'ମିର୍ଜା ମୋଗଲ' 'ବାଦଶା'ଙ୍କୁ ହତ୍ୟା କରି ନିଜେ ବାଦଶା ହେବାକୁ ଇଚ୍ଛା କରୁଥିଲେ । ଏ ଦିଗରେ 'ବାଦଶା'ଙ୍କର 'ବେଗମ ଜୀନତ୍‌ମହଲ', 'ନବାବ ଅହମଦ ଖାଁ'ଙ୍କ ସହିତ ନଦୀ ପାରହୋଇ ଇଂରାଜିବାହିନୀ ସହ ମିଳିତ ହେବାକୁ ଚେଷ୍ଟା କରୁଥିଲେ । 'ଦିଲ୍ଲୀ' ଭିତରେ କ୍ଷମତାର କନ୍ଦଳ ଓ ପାରସ୍ପରିକ ବିଶ୍ୱାସଘାତକତାର ବିଭତ୍ସ ଦୃଶ୍ୟମାନ ସଂଘଟିତ ହେଉଥିଲା । ଏହି ପରିସ୍ଥିତି ମଧ୍ୟରେ 'ରଜବ ଅଲ୍ଲୀ', ମୀରମୁନସୀ ଥାଇ ବିଦ୍ରୋହୀମାନଙ୍କର ଶକ୍ତି କଳନା କରି, ଇଂରାଜି ବାହିନୀକୁ ଗୁପ୍ତରେ ସମ୍ବାଦ ପ୍ରେରଣ କରୁଥିଲେ ।

ଜୁନ୍ ତେଇଶ ତାରିଖ ଦିନ, ବିଦ୍ରୋହୀ ମାନଙ୍କର ୧୭୫୭ ପଲାସୀ ଯୁଦ୍ଧର ଶତବାର୍ଷିକି ପାଳନ ଅବସରରେ, ଇଂରାଜିମାନଙ୍କୁ ଆକ୍ରମଣ କରିବାର ଯୋଜନା ଥିଲା । ଏଣୁ ଇଂରାଜିମାନେ ପଞ୍ଜାବରୁ ଏକ ବାହିନୀ ପଠାଇବା ପାଇଁ ସେଠାର ଗଭର୍ଣ୍ଣରଙ୍କୁ ପୂର୍ବରୁ ଅନୁରୋଧ ଜଣାଇଥିଲେ । ନିର୍ଦ୍ଧାରିତ ସମୟରେ ପଞ୍ଜାବବାହିନୀ ପହଞ୍ଚିଯିବା ଫଳରେ, ଇଂରାଜି ମାନଙ୍କ ମନରେ ନୂତନ ବଳ ଓ ଉତ୍ସାହ ସଞ୍ଚାରିତ ହେଲା । ତେଇଶ ତାରିଖ ଦିନ ବିଦ୍ରୋହୀ ସେନା 'ସବ୍‌ଜିମଣ୍ଡି' ବାଟ ଦେଇ ଆକ୍ରମଣ କରିଚାଲିଲେ । ଇଂରାଜି ବାହିନୀ ଏହାର ମୁକାବିଲା କଲେ । ପ୍ରାସାଦର ପ୍ରାଚୀର ଉପରୁ, ବିଦ୍ରୋହୀମାନଙ୍କ

ଦ୍ୱାରା କମାଣରୁ ପ୍ରବଳ ଗୋଳାବର୍ଷଣ ହେଲା । ବିଦ୍ରୋହୀମାନେ ଇଂରାଜି ଅଧିନସ୍ଥ ପଞ୍ଜାବ ବାହିନୀ, ଗୋର୍ଖା ବାହିନୀ ଓ ଇଂରାଜି ବାହିନୀ ଉପରେ ବାରମ୍ବାର ଆକ୍ରମଣ କରିବାକୁ ଲାଗିଲେ ।

ଏହି ଭୟଙ୍କର ଆକ୍ରମଣରେ ଇଂରାଜିମାନେ ବ୍ୟତିବ୍ୟସ୍ତ ହୋଇ ପଡିଲେ । କର୍ଣ୍ଣେଲ ୱେଲ୍ସମାନ (Welshman) ବିଦ୍ରୋହୀ ମାନଙ୍କର ଗୁଳିରେ ପ୍ରାଣ ହରାଇଲେ । ସାରା ଦିନ ଇଂରାଜି ବାହିନୀରେ ପ୍ରତ୍ୟେକ ବ୍ୟକ୍ତି ଆତ୍ମରକ୍ଷା ପାଇଁ ଯୁଦ୍ଧରେ ବ୍ୟାପୃତ ରହିଲେ । ସେମାନେ ପରାଜୟର ଆଶଙ୍କାରେ 'ପଞ୍ଜାବ'ରୁ ସଦ୍ୟ ଆସିଥିବା ସୈନ୍ୟମାନଙ୍କୁ ଯୁଦ୍ଧରେ ତୁରନ୍ତ ନିୟୋଜିତ କଲେ । ଏହି ଆକ୍ରମଣ ରାତ୍ରି ପର୍ଯ୍ୟନ୍ତ ଚାଲିଲା । କିନ୍ତୁ ରାତ୍ରି ସମୟରେ ବିଦ୍ରୋହୀ ସୈନ୍ୟମାନେ ବହୁ ସଂଖ୍ୟାରେ କ୍ଷତ ବିକ୍ଷତ ହୋଇଥିବାରୁ ଆକ୍ରମଣ ବନ୍ଦରଖି ନିଜର ଛାଉଣୀକୁ ପ୍ରତ୍ୟାବର୍ତ୍ତନ କଲେ ।

ଦିନ ପରେ ଦିନ ପରେ ଗଡି ଚାଲିଲା ଓ ଏ ମଧ୍ୟରେ ଉଭୟ ପକ୍ଷରେ ବିଭିନ୍ନ ଦିଗରୁ ସୈନ୍ୟବାହିନୀ ଆସି ଯୋଗ ହେବାକୁ ଲାଗିଲେ । କିନ୍ତୁ 'ଦିଲ୍ଲୀ'ରେ ବିଦ୍ରୋହୀମାନଙ୍କର ପତାକା ସଗର୍ବରେ ଉଡୁଥିଲା । ଜେନେରାଲ ରିଡ, ଇସ୍ତଫାପ୍ରଦାନ କରି ହିମାଳୟର ପାହାଡିଆ ଅଞ୍ଚଳକୁ ପଳାଇଗଲେ ।



# ପ୍ରତ୍ୟାକ୍ରମଣ

ଅଗଷ୍ଟ ବାର ତାରିଖ ଦିନ ଇଂରାଜି ବାହିନୀର ଜେନେରାଲଙ୍କ ଦ୍ୱାରା ଏକ ପ୍ରତ୍ୟାକ୍ରମଣର ଯୋଜନା କରାଗଲା । ଭୋର ତିନିଟା ବେଳକୁ, ବାରଶହ ସୈନ୍ୟଙ୍କ ସହ ଘୋଡାସବାର ବାହିନୀ, ଗୁର୍ଖା ବାହିନୀ ଆଦି ଏକତ୍ରିତ ହେବାକୁ ଲାଗିଲେ । ଭୋର ଚାରିଟା ପରେ ଏହି ବାହିନୀ ଅତ୍ୟନ୍ତ ସତର୍କତାର ସହ ଆଗେଇବାକୁ ଲାଗିଲେ । ଆକ୍ରମଣର ସମସ୍ତ ସମ୍ବାଦ ଗୁପ୍ତ ରଖାଯାଇଥିଲା । ଉଦ୍ଦେଶ୍ୟ ଥିଲା ଯେ ଶତ୍ରୁକୁ ଅଚାନକ ଆକ୍ରମଣ କରି କାବୁ କରିଦେବା । ସେମାନେ 'ଲୁଡଲୋ ପ୍ରାସାଦ' (Ludlow Castle) ରେ ଥିବା ବିଦ୍ରୋହୀମାନଙ୍କର ମଞ୍ଚା ଆଡକୁ ଆଗେଇ ଚାଲିଲେ । ସେମାନେ ଘୁଷୁରି ଘୁଷୁରି ପ୍ରାସାଦର ପ୍ରାଚୀର ନିକଟକୁ ଚାଲିଆସିଲେ । ବିଦ୍ରୋହୀମାନେ ସେତେବେଳେ ନିଦ୍ରାଗତ ଥିଲେ । ସମସ୍ତ ସତର୍କତା ସତ୍ତ୍ୱେ, ବିଦ୍ରୋହୀମାନଙ୍କର ରାତ୍ରି ପ୍ରହରୀ, ସେମାନଙ୍କୁ ଦେଖିବା ମାତ୍ରେ ବିଦ୍ରୋହୀ ସୈନ୍ୟମାନଙ୍କୁ ସତର୍କ କରାଇଦେଲା । ବିଦ୍ରୋହୀମାନଙ୍କ ମଧ୍ୟରେ ୭୪ତମ ପୁରାତନ ବାହିନୀଥିଲେ ଓ ସେମାନେ ଇଂରାଜିମାନଙ୍କର ଦୁଇଟି କମାଣକୁ ଅକ୍ତିଆର କରିନେଲେ, କିନ୍ତୁ ସେମାନଙ୍କର ଏକ ଗୋଲନ୍ଦାଜ, ଇଂରାଜିଙ୍କର ସଙ୍ଗୀନ ମୁନରେ ପ୍ରାଣତ୍ୟାଗ କଲେ । ଇଂରାଜି ବାହିନୀ ବିଜୟର ଆଶାନଦେଖି ନିଜର ଛାଉଣୀକୁ ପ୍ରତ୍ୟାବର୍ତ୍ତନ କଲେ । ଏହି ଯୁଦ୍ଧରେ ବାର ଜଣ ପ୍ରାଣ ହରାଇଥିଲେ ।

ଏ ମଧ୍ୟରେ 'ଜେନେରାଲ ଉଇଲସନ୍', 'ଲର୍ଡ କ୍ୟାନିଂ'ଙ୍କଠାରୁ ଏକ ଟେଲିଗ୍ରାମ ପ୍ରାପ୍ତ ହେଲେ । ସେଥିରେ ତାଙ୍କୁ 'ଦିଲ୍ଲୀ' ଆକ୍ରମଣ ଓ ଦଖଲ ନେବାରେ କୁଣ୍ଠା ଓ ଅହେତୁକ ବିଳମ୍ବର କାରଣ ଦର୍ଶାଇବା ପାଇଁ କୁହାଯାଇଥିଲା । ଏହାର ଉତ୍ତରରେ ଉଇଲସନ୍ ଦିଲ୍ଲୀରେ ସାଂପ୍ରତିକ ପରିସ୍ଥିତି ବିଷୟରେ ଜ୍ଞାତ କରାଇ, ଦିଲ୍ଲୀ ଆକ୍ରମଣ ପାଇଁ ଅଧିକ ସୈନ୍ୟ ଓ ଅସ୍ତ୍ରଶସ୍ତ୍ରର ଆବଶ୍ୟକତା ବିଷୟରେ ବୁଝାଇଥିଲେ ।

ଅଗଷ୍ଟ ଚଉଦ ତାରିଖ ଦିନ, ସମସ୍ତ ବିଦ୍ରୋହୀସେନା ବାଦଶାଙ୍କ ସମ୍ମୁଖରେ ଉପସ୍ଥିତ ରହି ଶପଥ ନେଲେ ଯେ, ଇଂରାଜିମାନଙ୍କ ବିରୁଦ୍ଧରେ ସମସ୍ତେ ଏକତାବଦ୍ଧ ହୋଇ ଶେଷ ରକ୍ତ ଥିବା ପର୍ଯ୍ୟନ୍ତ ଯୁଦ୍ଧ କରିବେ । ବିଜୟ ବ୍ୟତିରେକେ ସେମାନେ କେବେହେଲେ ଜୀବନ୍ତ ଶରୀରରେ ପ୍ରତ୍ୟାବର୍ତ୍ତନ କରିବେ ନାହିଁ । ଜେନେରାଲ ବକ୍ତ ଖାଁ ଓ 'ଜେନେରାଲ ସିଧର ସିଂହ'ଙ୍କ ମଧ୍ୟରେ ମତଭେଦ ମଧ୍ୟ ଦୂର ହୋଇଗଲା । ଏହି ସମୟରେ ଶହେ ଜଣ ଶିଖ୍ ସୈନ୍ୟ ଇଂରାଜି ପକ୍ଷ ତ୍ୟାଗ କରି ବିଦ୍ରୋହୀମାନଙ୍କ ସେନାରେ

ଯୋଗଦାନ କଲେ । ଭାରତୀୟ ବିଦ୍ରୋହୀ ବାହିନୀରୁ ମଧ୍ୟ ସୈନ୍ୟମାନେ ଛାଉଣୀ ତ୍ୟାଗ କରି ଇଂରାଜି ସେନାରେ ଯୋଗ ଦେଉଥିଲେ ।

ଏସମସ୍ତ ସତ୍ତ୍ୱେ ବାଦଶାଙ୍କର ପ୍ରାସାଦ ମଧ୍ୟରେ ମିଥ୍ୟା ଓ ପ୍ରତାରଣାର ପ୍ରବାହ ଚାଲିଥିଲା । ଦିଲ୍ଲୀରେ ଥିବା ଇଂରାଜି ଗୁପ୍ତଚର 'ଗୌରୀଶଙ୍କର'ଙ୍କର ଅଗଷ୍ଟ ଅଠର ତାରିଖର ରିପୋର୍ଟ ଅନୁସାରେ, ରାଜାଙ୍କର ମୋହର ଯେକୌଣସି ଲୋକ ଇଚ୍ଛାକଲେ ପାଇପାରୁଥିଲା । ପ୍ରାସାଦ ଓ ନଗରୀ ମଧ୍ୟରେ ବହୁ ଗୁଜବ ପ୍ରଚାରିତ ହେଉଥିଲା । ବାଦଶା ଓ ତାଙ୍କର ପୁତ୍ରମାନେ କ୍ରୀଡନକବତ୍ ହୋଇଯାଇଥିଲେ । ଅନ୍ୟଜଣେ ଗୁପ୍ତଚର 'ରଜବ୍ ଅଲ୍ଲୀ'ଙ୍କ ଦ୍ୱାରା, ସେସମୟରେ 'ଦିଲ୍ଲୀ'କୁ ଆସିଥିବା ବିଭିନ୍ନ ବାହିନୀର ସଂଖ୍ୟା ଓ ଶକ୍ତି ବିଷୟରେ ଦିଆଯାଇଥିବା ରିପୋର୍ଟ ଅନୁଯାୟୀ, 'ମିରଟ୍', 'ମଥୁରା', 'ଲକ୍ଷ୍ନୌ', 'ନସିରାବାଦ', 'ଫିରୋଜପୁର', 'ଜଳନ୍ଧର', 'ବରେଲୀ', 'ଝାନ୍‌ସୀ', 'ଗୋଓ୍ୱାଲିୟର', 'ନିମୁଚ୍', 'ବନାରସ', 'ଆଲିଗଡ', 'ଆଗ୍ରା', 'ରୋହତକ', 'ଜାଲ୍ଧାର', 'ଟୋଙ୍କ୍', 'ଆଲ୍ଲାହାବାଦ' ଇତ୍ୟାଦି ଅଞ୍ଚଳରୁ ଗାଏ ମୋଟ ୩୫୯୦ ସଂଖ୍ୟକ ଘୋଡସବାର ବାହିନୀ, ୪୪୨୦ ପଦାତିକ ବାହିନୀ ଓ ୩୦ଟି କମାଣ ଆସିଥିଲା ।

ବିଦ୍ରୋହୀ ବାହିନୀ ମଧ୍ୟରେ ମଧ୍ୟ ଏକତା ଓ ବୁଝାମଣାର ଅଭାବ ଦେଖି 'ଜେନେରାଲ ବକ୍ତ ଖାଁ' ଭଗ୍ନହୃଦୟ ପ୍ରାୟ ହୋଇଗଲେ । ତଥାପି ସେ ଯୁଦ୍ଧ ପାଇଁ ଆବଶ୍ୟକୀୟ ପ୍ରସ୍ତୁତି କରିବାକୁ ଲାଗିଲେ । ସେ ଇଂରାଜିମାନଙ୍କର ଏକ ଶ୍ରେଣୀବଦ୍ଧ ସୈନ୍ୟ ଓ ଅସ୍ତ୍ର ସମ୍ଭାରର ପ୍ରବାହ, ଦିଲ୍ଲୀରେ ଅବସ୍ଥାପିତ ହୋଇଥିବା ଇଂରାଜି ବାହିନୀର ନିକଟକୁ ଆସୁଥିବାର ଖବର ପାଇଲେ । ତହିଁରେ କୁର୍ଣ୍ଣୁଲରୁ ସଂଗୃହୀତ ହଜାରେଟି ବଳଦଗାଡିଥିଲା ଓ ଛଅଟି ଚବିଶ ପାଉଣ୍ଡିଆ କମାଣ, ଅଠରଟି ଅଠର ପାଉଣ୍ଡିଆ କମାଣ, ଚାରୋଟି ଆଠ ଇଞ୍ଚିଆ ମୋର୍ଟାର ଓ ପ୍ରତି ବନ୍ଧୁକ ପାଇଁ ଚାରିଶହ ଗୁଳି ରହିଥିଲା । 'ବକ୍ତ ଖାଁ' ଅନୁଭବ କଲେ ଯେ ଯଦି ଏହା ଶତ୍ରୁ ହାତରେ ପଡେ, ତେବେ ଭାରତୀୟ ସେନାଙ୍କର ବିଜୟର ଆଶା ଅସମ୍ଭବ ହୋଇପଡିବ । ଏଣୁ ସେ ଏହି ଶ୍ରେଣୀବଦ୍ଧ ପ୍ରବାହକୁ ବାଧାପ୍ରଦାନ କରି ଅକ୍ତିଆରକୁ ଆଣିବା ପାଇଁ ଯୋଜନା କଲେ । ଆକ୍ରମଣର ସ୍ଥାନ ରୂପେ 'ଦିଲ୍ଲୀ' ଠାରୁ ୧୬ମାଇଲ ଦୂରରେ ଥିବା 'ନଫଜ୍‌ଗଡ୍'କୁ ସ୍ଥିର କରାଗଲା । ତାଙ୍କର ନିର୍ଦ୍ଦେଶ ମତେ ଅଗଷ୍ଟ ୨୪ତାରିଖ ଦିନ 'ବରେଲୀ' ଓ 'ନିମୁଚ' ବ୍ରିଗେଡ 'ନଫଜ୍‌ଗଡ' ଆଡକୁ ମାଡିଚାଲିଲେ । କିନ୍ତୁ 'ବକ୍ତ ଖାଁ' ଓ ନିମୁଚ ବ୍ରିଗେଡର ଅଧ୍ୟକ୍ଷଙ୍କ ମଧ୍ୟରେ ଯୁଦ୍ଧକୌଶଳ ନେଇ ମତଭେଦ ହେଲା । ବକ୍ତ ଖାଁଙ୍କ ନିର୍ଦ୍ଦେଶକୁ ନିମୁଚ ବ୍ରିଗେଡର ଅଧ୍ୟକ୍ଷ ଅମାନ୍ୟ କଲେ । ଫଳରେ 'ବକ୍ତ ଖାଁ', ଛାଉଣୀଠାରୁ ଛଅମାଇଲ ଦୂରରେଥିବା

ପାଲାମ ଠାରେ ନିଜର ବ୍ରିଗେଡକୁ ଅବସ୍ଥାପିତ କରାଇଲେ । ନିମ୍ଛ ବ୍ରିଗେଡ ଦୃଢ଼ ପ୍ରାଚୀର ବିଶିଷ୍ଟ ଏକ ସେରାଇ ଦଖଲ କଲା । ଏହା 'ନଜଫି' ଗ୍ରାମଠାରୁ ଅଧମାଇଲ ଦୂରରେ ଥିଲା ଏବଂ 'ନଫଜ୍‌ଗଡ'ଠାରୁ ଏହାର ଦୂରତା ଏକ ମାଇଲ ଥିଲା । ସେହି ବ୍ରିଗେଡରେ ଛଅହଜାର ସୈନ୍ୟଥିଲେ ଓ ସେମାନଙ୍କର ଦୀର୍ଘ ଶ୍ରେଣୀ କେନାଲର ପୋଲ ଓ ଗ୍ରାମ ମଧ୍ୟରେ ଦୁଇମାଇଲ ପର୍ଯ୍ୟନ୍ତ ବିସ୍ତାରିତ ଥିଲା । ଚାରୋଟି କମାଣ ସେରାଇର ପ୍ରାଚୀରରେ ଓ ନଅଟି କମାଣ ପୋଲ ଓ ଗ୍ରାମ ମଧ୍ୟରେ ରଖାଗଲା ।

'ଦିଲ୍ଲୀ' କୁ ଆସୁଥିବାଇଂରାଜିମାନଙ୍କର ସୈନ୍ୟ ଓ ଅସ୍ତ୍ରଶସ୍ତ୍ର ସମ୍ଭାରର ଶ୍ରେଣୀବଦ୍ଧ ପ୍ରବାହର ନେତୃତ୍ୱ 'ନିକଲସନ୍' ନେଉଥିଲେ । ସେ ପୂର୍ବରୁ ଦୁଇହଜାର ଆଦିବାସୀ ସୈନ୍ୟ, ପାଞ୍ଚୋଟି ଓଜନଦାର କମାଣ, ପ୍ରଚୁର ଗୁଳି ଗୋଳା ଓ ଲକ୍ଷ ଲକ୍ଷ ଟଙ୍କା ସହିତ 'ଦିଲ୍ଲୀ'ରେ ପହଞ୍ଚିଯାଇଥିଲେ ।ଏ ମଧ୍ୟରେ 'ଦିଲ୍ଲୀ' ନଗରୀ ମଧ୍ୟରୁ ଗୁପ୍ତଚର ମାନେ ବିଦ୍ରୋହୀ ସୈନ୍ୟମାନଙ୍କର 'ନଫଜ୍‌ଗଡ'ରେ ଆକ୍ରମଣ କରିବା ଯୋଜନା, ବାର୍ତ୍ତାରେ ପଠାଇଦେଲେ ଓ ତଦ୍ ସହିତ ସେମାନଙ୍କର ସୈନ୍ୟ ଓ ଅସ୍ତ୍ରଶସ୍ତ୍ର ସଂଖ୍ୟା ତଥା ଅବସ୍ଥିତି ବିଷୟରେ ଇଂରାଜିମାନଙ୍କୁ ଅବଗତ କରାଇଲେ । ଏହାର ସୁଯୋଗ ନେଇ ପଚିଶ ତାରିଖ ଦିନ ସକାଳୁ ନିକଲସନ୍ ଷୋହଳଶହ ପଦାତିକ, ଚାରିଶହ ପଚାଶ ଘୋଡସବାର ବାହିନୀ ଓ ଷୋହଳଟି ଅଶ୍ୱସଂଯୁକ୍ତ କମାଣ ସହ ନଫଜଗଡ ଅଭିମୁଖେ ଯାତ୍ରା କଲେ । ସେ ସମୟରେ ପ୍ରବଳ ବର୍ଷା ହେଉଥିଲା । ନଫଜଗଡ ନଅମାଇଲ ଦୂରରେ ଥିବା ବେଳେ, ସେମାନଙ୍କୁ ଦୁଇଟି ଯାଗାରେ ପାଣିଭିତରେ ଅଣ୍ଟାପର୍ଯ୍ୟନ୍ତ ପଙ୍କ ଓ କାଦୁଅରେ ପଶି ଯିବାକୁ ହେଲା । ଏ ସମସ୍ତ ପ୍ରତିବନ୍ଧକ ମଧ୍ୟରେ କମାଣ ବାହିନୀର ଚକଗୁଡିକ କାଦୁଅ ଅତିକ୍ରମ କରିଯିବା ଏକରକମ ଅସମ୍ଭବ ମନେ ହେଲା । କିନ୍ତୁ ଇଂରାଜିମାନେ ଦୃଢ଼ ପ୍ରତିଜ୍ଞ ହୋଇ, ଯେ କୌଣସି ପ୍ରକାରେ କମାଣ ଓ ଗୁଳିଗୁଳା ସହ ଆଗେଇଗଲେ । 'ଷ୍ଟାର୍‌ଥି ଓ ମେଟକାଫ', ବାହିନୀର ରାସ୍ତା ନିର୍ଦ୍ଦେଶ କରିବା ପାଇଁ ଘୋଡାରେ ଗୁପ୍ତରେ ଆଗକୁ ଯାଉଥିବା ବେଳେ ଶତ୍ରୁ ମାନଙ୍କ ହାତରେ ଧରାପଡି କୌଣସି ପ୍ରକାରେ ବର୍ତ୍ତି କରି ଚାଲିଆସିଥିଲେ । ଏହି ସମୟରେ 'ନିକଲସନ୍', ବାରମାଇଲ୍ ଦୂରରେ ଥିବା ଶତ୍ରୁ ମାନଙ୍କର ଅବସ୍ଥିତି, ଗୁପ୍ତଚରମାନଙ୍କ ଦ୍ୱାରା ଅବଗତ ହେଲେ । ସେ ଦ୍ରୁତତାର ସହିତ ନିଜର ବାହିନୀକୁ ନଫଜଗଡ ଦିଗକୁ ଅଗ୍ରସର କରାଇଲେ । ପ୍ରାୟ ଅପରାହ୍ଣ ଚାରିଟା ବେଳେ, କ୍ଳାନ୍ତ ଶ୍ରାନ୍ତ ଅବସ୍ଥାରେ, ଉକ୍ତ ବାହିନୀ, 'ନଫଜଗଡ'ର ନିକଟବର୍ତ୍ତୀ ହୋଇଗଲେ । ଏହି ସମୟରେ 'ନିକଲସନ୍' ଦେଖିଲେ, କେନାଲର ପୋଲ ଓ ଗ୍ରାମ ମଝିରେ ପ୍ରାୟ ଦୁଇମାଇଲ ବ୍ୟାପି ଛଅହଜାର ଟାଣୁଆ ବିଦ୍ରୋହୀ ସୈନ୍ୟମାନେ

ମୁତୟନ ରହିଛନ୍ତି । କେନାଲରେ ବର୍ଷା ଫଳରେ ପାଣି ଉଛୁଳି ଉଠୁଥିଲା । ଏହି ସମସ୍ତ ପ୍ରତିବନ୍ଧକ ମଧ୍ୟରେ 'ନିକଲସନ୍' କେନାଲ ମଧ୍ୟରେ ଉଚାଯାଗା ଦେଖି ସେହିବାଟ ଦେଇ ସମସ୍ତଙ୍କୁ କେନାଲ ପାରିହେବାର ନିର୍ଦ୍ଦେଶ ଦେଲେ । ସେଠାରେ ମଧ୍ୟ ପାଣି ଛାତି ପର୍ଯ୍ୟନ୍ତ ହୋଇଥିଲା ।

ସେମାନେ ବହୁ ବାଧାବିଘ୍ନ ଅତିକ୍ରମ କରି ଆଗେଇଥିବା ବେଳେ, ସେରାଇରେ ମୁତୟନ ଥିବା ବିଦ୍ରୋହୀମାନଙ୍କର ଗୁଳିବର୍ଷଣର ସମ୍ମୁଖୀନ ହେଲେ । ଏ ମଧ୍ୟରେ 'ନିକଲସନ୍', ପ୍ରଥମେ ସେରାଇ ଉପରେ ପ୍ରବଳ ଆକ୍ରମଣ କରି, ତତ୍‌ପରେ ପରେ ହଠାତ୍ କେନାଲ ଆଡେ ପୋଲକୁ ଜଗିଥିବା ବିଦ୍ରୋହୀ ସୈନ୍ୟମାନଙ୍କୁ ଆକ୍ରମଣ କରି, ପୋଲ ଦଖଲ କରିବାର ଯୋଜନାରେ ଲାଗିଲେ । ଇଂରାଜି ବାହିନୀ ସେରାଇର ୩୦୦ ଗଜ ବ୍ୟବଧାନରେ ଥିଲେ । 'ନିକଲସନ' ଘୋଡାରେ ସୈନ୍ୟମାନଙ୍କ ସମ୍ମୁଖକୁ ଯାଇ, ପ୍ରବଳ ବର୍ଷା ମଧ୍ୟରେ ଶୁଣିପାରିବା ଭଳି ଉଚ୍ଚ ସ୍ୱରରେ ଆଦେଶ ଦେବାକୁ ଲାଗିଲେ । ସେରାଇରୁ କୋଡିଏ ତିରିଶ ଗଜ ବ୍ୟବଧାନରେ ପହଞ୍ଚିବା ମାତ୍ରେ, ସେ ଅସ୍ତ୍ର ଚାଳନା କରିବାକୁ ନିର୍ଦ୍ଦେଶ ଦେଲେ । ସର୍ବ ପ୍ରଥମେ, କମାଣ ବାହିନୀ ଗୋଳା ନିକ୍ଷେପ କଲେ ଓ ତତ୍ ପରେ ପରେ, ଏକ ଅଶ୍ୱ ଯୁକ୍ତ କମାଣ ସେରାଇ ଦିଗକୁ ଆଗେଇ ଗଲା । ତତ୍ କ୍ଷଣାତ ସେରାଇରୁ ବିଦ୍ରୋହୀମାନେ ଗୁଳିଗୋଳା ବର୍ଷଣ କରି ତାହାକୁ ଛିନ୍ନ ବିଛିନ୍ନ କରି ଭୂପତିତ କଲେ । ଏହି ଗୋଳାବର୍ଷଣ ମଧ୍ୟରେ 'ନିକଲସନ୍' ତାଙ୍କର ବାହିନୀକୁ ଆଗେଇଯିବାକୁ ଆଦେଶଦେଲେ । ଶହେ ଗଜ ପର୍ଯ୍ୟନ୍ତ ବିସ୍ତାରିତ ହୋଇଥିବା ସିକ୍ତ ଓ କାଦୁଅରେ ଲଟ୍‌ପଟ୍ ହୋଇଥିବା ଇଂରାଜି ସୈନ୍ୟମାନେ ତୁରନ୍ତ ସେମାନଙ୍କର ରାଇଫଲରେ ବାୟନେଟ୍ ଯୋଖିବାକୁ ଲାଗିଲେ । 'ନିକଲସନ୍', ସେମାନଙ୍କର ସମ୍ମୁଖରେ ରହି ସେମାନଙ୍କୁ ଆଗେଇନେଲେ । ସେମାନେ ଆଶ୍ଚର୍ଯ୍ୟଜନକ ଭାବରେ, ଶତ୍ରୁମାନଙ୍କର ଗୁଳି ଗୁଳାକୁ ଭ୍ରୁକ୍ଷେପ ନକରି, ଲତା, ବୁଦା ଆଦି ମଧ୍ୟ ଦେଇ, ସେରାଇଠାରୁ ତିରିଶଗଜ ଦୂରରେ ପହଞ୍ଚିଲେ । ଏହାପରେ ରେଜିମେଣ୍ଟର ଅଫିସର, ସେମାନଙ୍କର ନେତୃତ୍ୱ ନେଲେ ଏବଂ ସମସ୍ତ ବାହିନୀ ଶତ୍ରୁମାନଙ୍କ ଉପରେ କୁଦେଇ ହୋଇ ପଡିଲେ । ବାୟନଟ୍‌ର ମୁନରେ ସେମାନେ ସରାଇକୁ ସମ୍ପୂର୍ଣ୍ଣ ଭାବରେ ଅକ୍ତିଆର କରିନେଲେ । ବିଦ୍ରୋହୀମାନେ ଶେଷ ପର୍ଯ୍ୟନ୍ତ ଯୁଦ୍ଧ ଚାଲୁରଖିଥିଲେ କିନ୍ତୁ ପରିଶେଷରେ ଦ୍ୱନ୍ଦ୍ୱ ମଧ୍ୟରେ ପଡି, ତେରୋଟି କମାଣ, ସମସ୍ତ ଗୁଳିଗୋଳା, ଅର୍ଥ, ଭଣ୍ଡାର, ତମ୍ବୁ ଓ ବ୍ୟବହାର୍ଯ୍ୟ ଦ୍ରବ୍ୟାଦି ତ୍ୟାଗ କରି ପଳାୟନ କଲେ । ଇଂରାଜିମାନେ ଶ୍ରାନ୍ତ କ୍ଲାନ୍ତ ହୋଇ ସେହିପରି ଅବସ୍ଥାରେ ବିଶ୍ରାମ ନେବାକୁ ଲାଗିଲେ । 'ଲେଫଟନାଣ୍ଟ ଗାବେଟ୍' (Gabbett) ଓ 'ଲେଫଟନାଣ୍ଟ

ଏଲକିଙ୍ଗ୍‌ଟନ୍‌' (Elkington) ସାଂଘାତିକ ଭାବରେ ଆହତ ହୋଇ ପ୍ରାଣତ୍ୟାଗ କଲେ । ଏହି ଯୁଦ୍ଧରେ ଇଂରାଜିଙ୍କ ପକ୍ଷରୁ ପଚିଶଜଣ ମୃତ୍ୟୁ ବରଣ କଲେ ଓ ସତୁରୀ ଜଣ ଆହତ ହେଲେ । କୋଡିଏଟି ଘୋଡା ନଷ୍ଟ ହେଲେ । କିନ୍ତୁ ଏ ସମସ୍ତ କ୍ଷୟକ୍ଷତି ସତ୍ତ୍ୱେ ଏହି ଯୁଦ୍ଧରେ ଇଂରାଜିମାନଙ୍କର ବହୁ ଲାଭ ହୋଇଥିଲା । ସେମାନେ, ଶତ୍ରୁ ଛାଡିଯାଇଥିବା କମାଣ ଗୁଳି ଗୋଳା ସହ, ତମ୍ବୁ ଓ ପ୍ରଚୁର ଖାଦ୍ୟ ସାମଗ୍ରୀ ମଧ୍ୟ ପାଇଲେ ।

ସେରାଇରେ ଯୁଦ୍ଧ ଚାଲିଥିବା ବେଳେ 'ଜେନେରାଲ ବକ୍ତ ଖାଁ' ପାଲାମରେ ଅପେକ୍ଷାରତ ଥିଲେ । ସେ ଯେତେବେଳେ ପରାଜୟର ବାର୍ତ୍ତା ଶୁଣିଲେ ତତ୍‌କ୍ଷଣାତ ଦିଲ୍ଲୀ ଅଭିମୁଖେ ପ୍ରତ୍ୟାବର୍ତ୍ତନ କଲେ । ସେ ବାଦଶାଙ୍କ ଠାରୁ ଏଥିପାଇଁ ବହୁତ ଗାଳି ଶୁଣିଲେ । 'ଦିଲ୍ଲୀ'ର ଜନସାଧାରଣଙ୍କ ମଧ୍ୟରେ ଏହି ଯୁଦ୍ଧର ବହୁତ ପ୍ରଭାବ ପଡିଗଲା । ସେମାନେ ଭବିଷ୍ୟତରେ ପରାଜୟର ଆଶଙ୍କାରେ ସ୍ତ୍ରୀ ପିଲା ଆଦିଙ୍କୁ 'ଦିଲ୍ଲୀ' ବାହାରକୁ ନିରାପଦ ସ୍ଥାନକୁ ପଠାଇଦେବାକୁ ଲାଗିଲେ । ଏହି ସମୟରେ 'ଫଜଲ୍‌ହକ୍‌' ନାମକ ଜଣେ ମୌଲବୀ 'ଅଲୱାର'ରୁ ଆସି ମସ୍‌ଜିଦ୍‌ରେ ବକ୍ତୃତା ଦେଇ କହିଲେ ଯେ ସେ ଆଗ୍ରା ଗେଜେଟରୁ ଦେଖିଛନ୍ତି, ଇଂରାଜି ପାର୍ଲାମେଣ୍ଟ, 'ଦିଲ୍ଲୀ' ନଗରୀର ସମସ୍ତଙ୍କୁ ହତ୍ୟା କରି ଜୁମା ମସଜିଦ୍ ଛଡା ଅନ୍ୟସମସ୍ତ ଧ୍ୱଂସ କରି ମାଟିରେ ମିଶାଇ ଦେବାପାଇଁ ଭାରତରେ ଥିବା ଇଂରାଜିବାହିନୀକୁ ନିର୍ଦ୍ଦେଶ ଦେଇଛନ୍ତି । ଏହି ପ୍ରଚାର ଲୋକମାନଙ୍କୁ ଅଧିକ ଭୀତତ୍ରସ୍ତ କଲା । ଏ ଦିଗରେ 'ବାଦଶା'ଙ୍କର ପୁତ୍ରମାନେ, ଲୋକମାନଙ୍କଠାରୁ ଯଥେଚ୍ଛାଭାବରେ ଅର୍ଥ ଆଦାୟ କରି, ବିଳାସ ବ୍ୟସନରେ ଖର୍ଚ୍ଚ କରୁଥିଲେ । ବାଦଶା ପରିଶେଷରେ ବିରକ୍ତ ହୋଇ ଏକ ଫରମାନ୍‌ରେ ଜନସାଧାରଣଙ୍କୁ ସେମାନଙ୍କୁ ଅର୍ଥ ଦେବାପାଇଁ ନିଷେଧ କଲେ । 'ଜୀନତ୍ ମହଲ', 'ବଲ୍ଲଭଗଡ'ର ରାଜା, 'ଦିଲ୍ଲୀ'ର ଏକ ଧନିକ ଓ ଦରବାରର 'ସର୍ଦ୍ଦାର 'ମଫ୍‌ତି ସଦ୍‌ରୁଦ୍ଦିନ୍‌'ଙ୍କ ଠାରୁ ଦଶହଜାର ଟଙ୍କା ଆଦାୟ କରି ଆତ୍ମସାତ୍ କରିଥିଲେ । ପ୍ରତ୍ୟହ କିଛି କିଛି ସୈନ୍ୟ ବିଦ୍ରୋହୀ ବାହିନୀରୁ ଯାଇ ଇଂରାଜିଙ୍କ ସହିତ ଯୋଗଦେଉଥିଲେ । 'ମିର୍ଜା ମୋଗଲ', ଏକ ବ୍ରିଗେଡ ସହିତ ଅନ୍ୟ ବ୍ରିଗେଡର ମତଦ୍ୱୈଧ ଓ ଶତ୍ରୁତା ସୃଷ୍ଟି କରାଉଥିଲେ ଓ ସମସ୍ତଙ୍କୁ ବକ୍ତ ଖାଁ ଙ୍କ ବିରୁଦ୍ଧରେ ମତାଉଥିଲେ ।

ସମସ୍ତ ଘଟଣାବଳୀ ଓ ପରାଜୟର ବାର୍ତ୍ତା ପାଇ 'ବାଦଶା' ଅତ୍ୟନ୍ତ ଭଗ୍ନହୃଦୟ ହୋଇଗଲେ ଓ ନିଜକୁ ଦାୟୀ କରି 'ଜୟପୁର', 'ଯୋଧପୁର', 'ବିକାନୀର', 'ଅଲୱାର' ଓ ସମସ୍ତ ରାଜପୁତ୍ ରାଜାମାନଙ୍କୁ ଚିଠି ଦ୍ୱାରା ଜଣାଇଲେ ଯେ ସେ ଇଂରାଜିଙ୍କ ସହ ଯୁଦ୍ଧରେ କୌଣସି ସଫଳତା ନଦେଖିବାରୁ ନିରାଶ ହୃଦୟରେ ଯେ କୌଣସି ଦୃଢ ନେତୃତ୍ୱ

ସମ୍ପନ୍ନ ତଥା ବିଦ୍ରୋହୀ ବାହିନୀରେ ଐକ୍ୟ ପ୍ରତିଷ୍ଠା କରି ଇଂରାଜଙ୍କ ବିରୁଦ୍ଧରେ ଯୁଦ୍ଧ କରିପାରିବା ବ୍ୟକ୍ତିକୁ ଶାସନ ଗାଦି ଦେଇଦେବା ପାଇଁ ଇଚ୍ଛା କରୁଛନ୍ତି । କିନ୍ତୁ ଯଦି ରାଜା ମହାରାଜାମାନେ ଏକତା ବଦ୍ଧ ହୋଇ ସ୍ୱତଃ ପ୍ରବୃତ୍ତ ଭାବରେ ଯୁଦ୍ଧପାଇଁ ଆଗେଇ ଆସନ୍ତି, ତେବେ ସେ, ସେମାନଙ୍କ ଦ୍ୱାରା ନିର୍ବାଚିତ ଏକ କମିଟିକୁ ନିଜର ସମସ୍ତ କ୍ଷମତା ପ୍ରଦାନ କରିବା ପାଇଁ ରାଜି ଅଛନ୍ତି । ଅବଶ୍ୟ ଏହି ଚିଠିର କିଛି ଭଲ ପ୍ରଭାବ ପଡିଲା ।

ଏ ଦିଗରେ ଇଂରାଜି ବାହିନୀକୁ ସହାୟତା ପାଇଁ ଆସୁଥିବା 'ଅସ୍ତ୍ରଶସ୍ତ୍ର ସୈନ୍ୟର- ଶ୍ରେଣୀବଦ୍ଧ-ପ୍ରବାହ ଦିଲ୍ଲୀର ଛାଉଣୀରେ ଆସି ପହଞ୍ଚିଲା । ତନ୍ମଧ୍ୟରେ ବିଭିନ୍ନ ପ୍ରକାରର କମାଣ, ଗୁଳିଗୋଳା, ଅନ୍ୟାନ୍ୟ ଯୁଦ୍ଧାସ୍ତ୍ର ଥିଲା । ଏହା ବହନ କରି ଆଣିବା ପାଇଁ ବହୁ ହାତୀ, ଘୋଡା, ଓଟ, ବଳଦ ଆଦି ପଶୁମାନଙ୍କୁ ବ୍ୟବହାର କରାଯାଇଥିଲା । ଏହି ଶ୍ରେଣୀ-ବଦ୍ଧ-ସମ୍ଭାର, ବେଲୁଚି ସୈନ୍ୟମାନଙ୍କ ଦ୍ୱାରା ରକ୍ଷିତ ହୋଇ ଆସିଥିଲା । ଏହା ଫଳରେ ଇଂରାଜି ଛାଉଣୀରେ ଯଥାଶୀଘ୍ର 'ଦିଲ୍ଲୀ' ଅଧିକାର କରିବା ପାଇଁ ଉନ୍ମାଦନାର ସଞ୍ଚାର ହେଲା । କିନ୍ତୁ ସେପ୍ଟେମ୍ବର ଛଅ ତାରିଖ ଦିନ ସମଗ୍ର ଛାଉଣୀରେ ୨୯୭୭ ଜଣ ଅସୁସ୍ଥ ଥିଲେ । ତନ୍ମଧ୍ୟରୁ କେତେକ କଲେରା ରୋଗରେ ଆକ୍ରାନ୍ତ ହୋଇଥିଲେ । ଏହା ସତ୍ତ୍ୱେ, ସମସ୍ତେ ଯଥା ଶୀଘ୍ର ଦିଲ୍ଲୀ ଅଧିକାର କରିବା ପାଇଁ ଉତ୍ସାହିତ ହୋଇଗଲେ ।

ସୈନ୍ୟ ବାହିନୀରେ ଥିବା ଇଞ୍ଜିନିୟର ମାନେ ଏକତ୍ରିତ ହୋଇ ଯୁଦ୍ଧ ପାଇଁ ଲକ୍ଷେ ବାଲି ବସ୍ତା ଓ ଅନ୍ୟାନ୍ୟ ସରଞ୍ଜାମ ତଥା ମଞ୍ଚା (Battery) ଓ ଟ୍ରେଞ୍ଚ ଆଦି ନିର୍ମାଣ କରାଇଲେ । ଏ ଦିଗରେ ବିଦ୍ରୋହୀମାନଙ୍କର ଅତ୍ୟାଚାର ଓ ନିର୍ମମ ହତ୍ୟା ଆଦି ବିଷୟରେ କହି ସୈନ୍ୟମାନଙ୍କୁ ଉତ୍ତେଜିତ କରାଗଲା ଓ 'ଦିଲ୍ଲୀ' ନଗରୀରୁ ପ୍ରଚୁର ଲୁଣ୍ଠନ ଦ୍ରବ୍ୟ ଲାଭ ହେବ, ଆଦି କହି ଉତ୍ସାହିତ କରାଗଲା । ନଗରୀର ପ୍ରାଚୀରକୁ ଲକ୍ଷ୍ୟ କରି କମାଣ ଓ ଅନ୍ୟାନ୍ୟ ଯୁଦ୍ଧାସ୍ତ୍ରମାନ କ୍ଷେପଣ କରାଗଲା । କାରଣ ପ୍ରାଚୀର କିମ୍ବା କୌଣସି ଦ୍ୱାର ଭଗ୍ନ କରି ତନ୍ମଧ୍ୟରେ ବାହିନୀ ସହ ନଗରୀ ମଧ୍ୟକୁ ପ୍ରବେଶ କରିବାର ଯୋଜନା ଇଂରାଜିମାନଙ୍କର ଥିଲା ।

ନଗରୀ ମଧ୍ୟରେ ବିଦ୍ରୋହୀ ବାହିନୀ ମଧ୍ୟ, ଇଂରାଜିମାନଙ୍କର ଗତିବିଧି ହାବଭାବ ଓ 'ଅସ୍ତ୍ରଶସ୍ତ୍ର-ସୈନ୍ୟ-ସମ୍ଭାର'ର ଆଗମନ ଆଦି ଦେଖି ଠିକ୍ ବୁଝି ପାରିଥିଲେ ଯେ ଆକ୍ରମଣ ଆଉ ବେଶୀ ଡେରି ନୁହେଁ । ଏଣୁ ସେମାନେ ମଧ୍ୟ ଆକ୍ରମଣର ସମ୍ମୁଖୀନ ହେବା ପାଇଁ ନଗରୀର ପ୍ରାଚୀର ତଥା ନଗରୀ ମଧ୍ୟସ୍ଥ ଗୁରୁତ୍ୱ ପୂର୍ଣ୍ଣ ସ୍ଥାନମାନଙ୍କରେ,

ଯଥାସମ୍ଭବ ବ୍ୟବସ୍ଥା କରିବାକୁ ଲାଗିଲେ । ନଗରୀର ପ୍ରାଚୀର, କେନାଲ ଓ ପୋଲମାନ ମରାମତି କରାଯିବା ସଙ୍ଗେ ସଙ୍ଗେ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କରେ, ଶତ୍ରୁର ମୁକାବିଲା କରିବା ପାଇଁ, ଯୁଦ୍ଧ ମଞ୍ଚ ଓ ଟ୍ରେଞ୍ଚମାନ ନିର୍ମାଣ କରାଗଲା । ବାଲି ବସ୍ତାମାନ ମଧ୍ୟ ବିଭିନ୍ନ ପଥ ଓ ସ୍ଥାନମାନଙ୍କରେ ରଖାଯାଇ ଅବରୋଧ ସୃଷ୍ଟି କରାଗଲା । ଦିଓ୍ୱାନୀ ଖାସ୍‌ରେ ତିନୋଟି ଓଜନଦାର କମାଣ ରଖାଗଲା । କିଲ୍ଲା ଭିତରେ ଦୁଇଟି ରେଜିମେଣ୍ଟ, 'ବାଦଶା'ଙ୍କର ବ୍ୟକ୍ତିଗତ ରକ୍ଷୀ ବାହିନୀର ଦୁଇଶହ ସୈନ୍ୟ ଓ ନବମ ଅସାମୟିକ ଘୋଡସବାର ବାହିନୀ ରହିଲେ । ଅନ୍ୟ ଏକ ଓଜନଦାର କମାଣ, ନଗରୀ ଓ 'ଲାହୋର ଦରଜାର' ମଧ୍ୟ ଭାଗରେ, ନଗରୀର ବିପରୀତ ଦିଗ ପ୍ରାଚୀର ଆଡକୁ ରଖାଗଲା । ପୁରୁଣା ହିନ୍ଦୁ କଲେଜରେ ନବମ ଓ ବିଂଶତମ ପଦାତିକ ବାହିନୀ ରହିଲେ । 'କାବୁଲ ଦରବାଜା' ପାଖରେ ଦଶମ ପଦାତିକ ବାହିନୀକୁ ରଖାଗଲା । ଚର୍ଚ୍ଚରେ ଗୋଟିଏ ବ୍ୟାଟାଲିୟନ ପୋଲିସଙ୍କୁ ମୁତୟନ କରାଗଲା । କଚେରୀରେ ୩୮ତମ ପଦାତିକ ବାହିନୀକୁ ରଖାଗଲା । ପଞ୍ଚମ ପଦାତିକ ବାହିନୀକୁ 'ଲାହୋର ଦରବାଜା' ଓ ଏକାଦଶ ପଦାତିକ ବାହିନୀକୁ 'ଆଜ୍‌ମୀର ଦରବାର'ରେ ରଖାଗଲା । 'ହାଉଜ୍ କାଜି', 'ସୀତାରାମ ବଜାର' ଓ 'ଇମ୍‌ଲି ମୋହଲ୍ଲା'ଠାରୁ ତୁର୍କମାନ ଦରବାଜା ପର୍ଯ୍ୟନ୍ତ ୩ୟ, ୬ଷ୍ଠ ଓ ୩୬ତମ ପଦାତକ ବାହିନୀକୁ ମୁତୟନ କରାଗଲା । 'ଦିଲ୍ଲୀ ଦରବାଜା' ନିକଟସ୍ଥ ବଜାରରେ ୭୪ତମ ଘୋଡାସବାର ବାହିନୀ, ୪ର୍ଥ ଓ ନବମ ସାମୟିକ ବାହିନୀ ଥିଲେ । ବେଗମ ସମରୁଙ୍କର ବଗିଚାରେ ୩ୟ ଘୋଡାସବାର ବାହିନୀ ରହିଲେ । ଗାଜିଉଦ୍ଦିନ ମଦ୍ରାସାରେ ବାରୋଟି କମାଣ ଖଞ୍ଜାଗଲା । କୋତଓ୍ୱାଲି ପାଖରେ ଦୁଇଟି ଓଜନଦାର କମାଣ ରଖାଗଲା । ଲାହୋର ଓ କାଶ୍ମୀର ଦରବାଜା ମଝିରେ ଅବରୋଧ ନିର୍ମାଣ କରାଗଲା । 'କାଶ୍ମୀର ଦରବାଜା' ଭିତରେ ଚାରୋଟି ଓଜନଦାର କମାଣ ରଖାଗଲା । ଅନ୍ୟାନ୍ୟ ଗୁରୁତ୍ୱ ପୂର୍ଣ୍ଣ ସ୍ଥାନମାନଙ୍କରେ ମଧ୍ୟ କମାଣ ମାନ ଖଞ୍ଜାଗଲା । ନଗରୀର ପ୍ରାଚୀରରେ ଦୃଢ ନିରୀକ୍ଷଣ ଓ ସଂରକ୍ଷଣର ବ୍ୟବସ୍ଥା କରାଗଲା । ପ୍ରତି ଦରବାଜା ମଧ୍ୟ ଦୃଢ ଭାବରେ ସଂରକ୍ଷିତ କରାଗଲା । 'କାଶ୍ମୀର ଦରବାଜା' ଠାରୁ ଲାହୋର ଦରବାଜା ପର୍ଯ୍ୟନ୍ତ ମୁଖ୍ୟ ରାସ୍ତା ଓ କଡରେ ଥିବା ସମସ୍ତ ଘରମାନଙ୍କରେ ସୈନ୍ୟମାନେ ପୂର୍ଣ୍ଣ ହୋଇଥିଲେ ।

ସେପ୍ଟେମ୍ବର ମାସର ପ୍ରଥମ ଭାଗରେ 'ବାଦଶା'ଙ୍କ ପାଖରେ ଚାଳିଶ ହଜାର ଟଙ୍କା ଥିଲା । ତାହା କିଛି ସୁନାମୋହର ସହ ସେ ରିସାଲଦାର ବାର ଟଙ୍କା, ନାଏବ୍‌ରିସାଲଦାର ଆଠ ଟଙ୍କା, ଜମାଦାର ଛଅ ଟଙ୍କା, ଦଫାଦାର ପାଞ୍ଚ ଟଙ୍କା,

ଘୋଡସବାର ସୈନ୍ୟ ତିନି ଟଙ୍କା, ସିପାହୀ ଦୁଇ ଟଙ୍କା ଓ ଛାଉଣୀର ଶ୍ରମିକମାନଙ୍କୁ ଟଙ୍କାଏ ହିସାବରେ ବାଣ୍ଟିଦେଲେ ।

ଇଂରାଜି ବାହିନୀରେ ସେପ୍ଟେମ୍ବରମାସର ପ୍ରଥମ ଭାଗରେ ଚଉଦ ହଜାର ସୈନ୍ୟଥିଲେ । ସେମାନଙ୍କର ନିତ୍ୟ ବ୍ୟବହାର୍ଯ୍ୟ ଖାଦ୍ୟ ଦ୍ରବ୍ୟାଦି 'ଏ ଆଣ୍ଡ ଡି' (A&D) ନାମକ ଏକ ଇଂରାଜି ଫାର୍ମ ଓ ଜାହାଙ୍ଗୀର, କାଓ୍ୱାସଜି (Cowasjee) ନାମକ ଦୁଇଟି ପାର୍ଶୀ ଫାର୍ମ ଯୋଗାଉଥିଲେ ।

ଇଂରାଜିମାନେ ନଗରୀମଧ୍ୟରେ ଥିବା 'ଗୌରୀଶଙ୍କର', 'ଫତେ ମହମ୍ମଦ', 'ତୁରବ ଅଲ୍ଲୀ', 'ରଜବ ଅଲ୍ଲୀ' ଆଦି ଗୁପ୍ତଚରମାନଙ୍କ ଠାରୁ ନଗରୀର ବିଭିନ୍ନ ସ୍ଥାନରେ ସେନାମାନଙ୍କର ଅବସ୍ଥିତି ସମ୍ବନ୍ଧରେ ଜାଣିପାରିଥିଲେ । ସେମାନେ ଜାଣିଥିଲେ ଯେ ରାଜକୋଷ ଶୂନ୍ୟ । ଏଣୁ ସେମାନେ 'ଦିଲ୍ଲୀ'ର ପତନର ସମ୍ବନ୍ଧରେ ଅତ୍ୟନ୍ତ ଆଶାନ୍ୱିତ ହୋଇଉଠିଥିଲେ । ଗଭର୍ଣ୍ଣର ଜେନେରାଲ ମଧ୍ୟ ଦିଲ୍ଲୀ ନଗରୀ ଅଧିକାର କରିବା ପାଇଁ ବାରମ୍ବାର ଚାପ ପ୍ରୟୋଗ କରୁଥିଲେ । 'ଦିଲ୍ଲୀ' ଅଧିକାର ସେ ସମୟରେ ଇଂରାଜିମାନଙ୍କ ପାଇଁ ଗୁରୁତ୍ୱପୂର୍ଣ୍ଣ ଥିଲା । କାରଣ ଏହାବିନା ସେମାନଙ୍କୁ ଭାରତବର୍ଷର ଅନ୍ୟାନ୍ୟ ସ୍ଥାନ ତ୍ୟାଗକରି ସ୍ୱଦେଶକୁ ଫେରିଯିବାକୁ ପଡିଥଆନ୍ତା । ଏଣୁ ସୈନ୍ୟମାନେ ଆଦେଶ ମାତ୍ରେ ଆକ୍ରମଣର ଅପେକ୍ଷାରେ ରହିଲେ ।



# ଦିଲ୍ଲୀର ପତନ

ସେପ୍ଟେମ୍ବର ସାତ ତାରିଖ ଦିନ୍ ଇଂରାଜିମାନେ ନଗରୀ ଉପରେ ଆକ୍ରମଣ କଲେ । ଇଂରାଜି ବାହିନୀ, 'କାବୁଲ ଦରବାଜା', 'ମୋରି ଦରବାଜା', 'ଲାହୋରଦରବାଜା' ଆଦି ସ୍ଥାନମାନଙ୍କର ପାର୍ଶ୍ୱ ଦେଶରେ ଦୃଢ ଆସ୍ଥାନ ଜମାଇଥିବାରୁ ନଗରୀରେ ଥିବା ବିଦ୍ରୋହୀ ବାହିନୀର ଦୃଷ୍ଟି ସେହି ଦିଗକୁ ଥିଲା । ଏଣୁ 'ଲୁଡଲୋ ପ୍ରାସାଦ' (Ludlow Castle)କୁ ଅବହେଳା କରି, ସେମାନେ ତା'ର ପ୍ରତିରକ୍ଷା ବ୍ୟବସ୍ଥା କୋହଳ କରିଥିଲେ । ପୁନଶ୍ଚ ସେମାନେ ଇଂରାଜିମାନଙ୍କ ଠାରୁ ଶୀଘ୍ର କାଳରେ ହିଁ ଆକ୍ରମଣର ଆଶଙ୍କା କରୁଥିଲେ । ଏହାର ସୁଯୋଗ ଇଂରାଜିମାନେ ସମ୍ପୂର୍ଣ୍ଣ ଭାବରେ ନେଇ, ଦିନ ବେଳା ଅପ୍ରତ୍ୟାଶିତ ଭାବରେ 'ଲୁଡଲୋ ପ୍ରାସାଦ' ଉପରେ ଆକ୍ରମଣ କଲେ । ଆକ୍ରମଣ ପୂର୍ବରୁ ଇଂରାଜିମାନେ ଲକ୍ଷ୍ୟ କରି ନିର୍ଦ୍ଦିଷ୍ଟ ଭାବରେ ଖବର ପାଇଥିଲେ ଯେ, 'ଲୁଡଲୋ ପ୍ରାସାଦ'ରେ ବହୁ ସମୟରେ ସୈନ୍ୟମାନେ ରହୁନଥିବାରୁ, ତାହା ଖାଲି ରହୁଛି । ଆକ୍ରମଣ ପୂର୍ବରୁ ନିଜେ ଚିଫ୍ ଏକ୍ଜକ୍ୟୁଟିଭ ଇଞ୍ଜିନିୟର 'ଆଲେକ୍ସ ଟେଲର୍' (Alex tyler) ଓ ବାହିନୀର ଜେନେରାଲଙ୍କ ପରେ ୨ୟ ମୁଖ୍ୟ ସେନାପତି 'ନିକଲସନ୍', ଗଭୀର ରାତ୍ରିରେ ଗୁପ୍ତ ଭାବରେ 'ଲୁଡଲୋ ପ୍ରାସାଦ'କୁ ଯାଇ, ତାହା ଖାଲି ଥିବାର ଦେଖିଆସିଥିଲେ ।

ଆକ୍ରମଣ ଫଳରେ 'ଲୁଡଲୋ ପ୍ରାସାଦ' ଇଂରାଜିମାନଙ୍କର ହସ୍ତଗତ ହେଲା ଓ ସେଠାରେ ସେମାନେ ଏକ ଦୃଢ ଯୁଦ୍ଧମଞ୍ଚା ତିଆରି କଲେ । ଏହା ପରେ ସେମାନେ 'କୁଦିଶାବାଗ'ରେ ମଧ୍ୟ ଓଜନଦାର ମୋର୍ଟାରମାନ ଖଞ୍ଜିଦେଲେ । ଇଂରାଜିମାନଙ୍କ ପଛଦିଗରୁ ବିଦ୍ରୋହୀମାନେ ବହିଃଶୁଳ୍କ ଆଦାୟ ଗୃହ (Custom house) ଆଡୁ ଆକ୍ରମଣ କଲେ । (ବର୍ତ୍ତମାନ ଏହି ସ୍ଥାନରେ ହିନ୍ଦୁ କଲେଜର କ୍ରିକେଟ ପଡିଆ ଅଛି) । କିନ୍ତୁ ତହିଁରେ ସଫଳ ହୋଇପାରିଲେ ନାହିଁ । ଲୁଡଲୋ ପ୍ରାସାଦ ଓ କୁଦିଶାବାଗରେ ଇଂରାଜିମାନେ ଦୃଢ ଆସ୍ଥାନ ଜମାଇବା ଫଳରେ ସେମାନଙ୍କର ଦିଲ୍ଲୀ ନଗରୀ ଅଧିକାର କରିବାର ପଥ ସୁଗମ ହୋଇଗଲା ।

ସେପ୍ଟେମ୍ବର ଏଗାର ତାରିଖ ସକାଳ ଆଠଟା ବେଳେ ପୁନଶ୍ଚ ଆକ୍ରମଣର ଆଦେଶ ଦିଆଗଲା । ପ୍ରାଚୀରର ଏକ ନିର୍ଦ୍ଦିଷ୍ଟ ସ୍ଥାନକୁ ଲକ୍ଷ୍ୟକରି, କମାଣରୁ ତୋପ ତଥା ଅନ୍ୟାନ୍ୟ କ୍ଷେପଣାସ୍ତ୍ରରୁ, ଇଂରାଜିମାନେ ପ୍ରବଳ ବେଗରେ ଗୋଳା ବର୍ଷଣ କରିବାକୁ ଲାଗିଲେ । ପ୍ରାଚୀରର ଘନତ୍ୱ ତେର ଫୁଟ ଥିଲା । ଏଣୁ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ବହୁ

ଗୋଳାବର୍ଷଣ ଫଳରେ ପ୍ରାଚୀରରୁ କିଛି ପଥର ଖସି ପଡି ଚକ୍ରାକାରରେ ଏକ ଗର୍ତ୍ତର ସୃଷ୍ଟି ହେଲା ।

ବିଦ୍ରୋହୀ ସେନାମାନେ ମଧ୍ୟ ପ୍ରାଚୀର ଉପରୁ ଓ ଟ୍ରେଞ୍ଚ ଭିତରୁ ହାଲୁକା କମାଣ ଓ ବନ୍ଧୁକ ଆଦିରୁ ଗୁଳିଗୋଳା ନିକ୍ଷେପ କରୁଥିଲେ । ରାତ୍ରି ଆସନ୍ନ ହେବାରୁ ଉଭୟ ପକ୍ଷ କ୍ଷାନ୍ତ ହେଲେ ମଧ୍ୟ ଇଂରାଜିମାନେ ମୋର୍ଟାରରୁ ଗୋଳାବର୍ଷଣ ଅବ୍ୟାହତ ରଖିବା ସଙ୍ଗେ ସଙ୍ଗେ ପ୍ରାଚୀରର ଅତ୍ୟନ୍ତ ନିକଟରେ ଏକ ମଞ୍ଚା ପ୍ରସ୍ତୁତ କରିବାରେ ଲାଗିଯାଇଥିଲେ । ବିଦ୍ରୋହୀସେନାଙ୍କର ଅବିଶ୍ରାନ୍ତ ଗୁଳିବର୍ଷଣ ସତ୍ତ୍ୱେ ସେମାନେ ଏହି କାର୍ଯ୍ୟ ସମାପ୍ତ କଲେ ।

ଏଗାର ଓ ବାର ତାରିଖ, ଦୁଇଦିନ ଧରି ପ୍ରବଳ ଗୁଳିଗୋଳା ବିନିମୟ ହେଉଥିବା ବେଳେ 'ବାଦଶା', ଅର୍ଥାଭାବ ପୂରଣ ପାଇଁ, ନିଜ ହାତୀରେ ଲାଗିଥିବା ରୂପାର ହାଉଦା ଓ ନିଜର ରୂପାର ବାସନ କୁସନ ଆଦି ତରଙ୍କାଇ, ମୁଦ୍ରା ପ୍ରସ୍ତୁତ କରିବାକୁ ମୁଦ୍ରାଶାଳକୁ ପଠାଇଦେଲେ । ଅର୍ଥ ସାହାଯ୍ୟ ନଦେଇ ବିଶ୍ୱାସଘାତକତା କରିଥିବା ଦୋଷରେ, 'ବାଦଶା'ଙ୍କ ଆଦେଶରେ 'ନବାବ ହମୀଦ ଅଲି ଖାଁ', 'ଅହମଦ କୁଲି ଖାଁ' (ଜୀନତ୍ ମହଲଙ୍କର ପିତା), 'ହାକିମ ଅବଦୁଲ ହକ'ଙ୍କୁ ବନ୍ଦୀ କରାଗଲା ।

ନିରବିଚ୍ଛିନ୍ନ ଗୋଳାବର୍ଷଣ ଫଳରେ 'କାଶ୍ମୀର ଦରବାଜା' ନିକଟସ୍ଥ ପ୍ରାଚୀରରେ ଗର୍ତ୍ତର ଆକାର କ୍ରମେ ବୃଦ୍ଧି ପାଇଁ ପ୍ରାଚୀରରେ ଫାଟ ସୃଷ୍ଟି ହେବାକୁ ଗଲା । ଏଣୁ ଚଉଦ ତାରିଖ ଦିନ ଇଂରାଜିମାନେ ନଗର ମଧ୍ୟରେ ପ୍ରବେଶ କରିବାର ସମ୍ଭାବନା ଥିବା ଦୃଷ୍ଟିରୁ ସେନା ତଥା ନାଗରିକ ମାନଙ୍କୁ ସତର୍କ କରିଦିଆଗଲା ଓ ନାଗରିକମାନଙ୍କୁ ଇଂରାଜିଙ୍କ ସହ ଲଢିବା ପାଇଁ ଉତ୍ସାହିତ କରାଗଲା ।

ଚଉଦ ତାରିଖ ଦିନ ଇଂରାଜିମାନେ ନଗରୀକୁ ପାଞ୍ଚୋଟି ଦିଗରୁ ଆକ୍ରମଣ କଲେ । କିନ୍ତୁ ସେମାନଙ୍କର ଆକ୍ରମଣର କେନ୍ଦ୍ର ସ୍ଥାନଥିଲା 'କାଶ୍ମୀର ଦରବାଜା', 'ମୋରି ଦରବାଜା' ଓ 'କାବୁଲ ଦରବାଜା' । ଜେନେରାଲ, 'ଲୁଡଲୋ ପ୍ରାସାଦ' ଉପରେ ଯୁଦ୍ଧର ଫଳାଫଳ ନିରୀକ୍ଷଣ କରିବା ପାଇଁ ରହିଲେ । ଆକ୍ରମଣ ଆରମ୍ଭ ହେଲା । ଇଂରାଜିମାନଙ୍କର ଯୁଦ୍ଧ ମଞ୍ଚାମାନଙ୍କରୁ ପ୍ରବଳ ଗୋଳାବର୍ଷଣ ଅବ୍ୟାହତ ରହିବା ସଙ୍ଗେ ସଙ୍ଗେ, ସର୍ବ ପ୍ରଥମେ 'ନିକଲସନ୍' ତାଙ୍କ ଅଧିନରେ ଥିବା ସୈନ୍ୟ ମାନଙ୍କୁ ନେଇ ନିଶୁଣି ସହ ପ୍ରାଚୀର ଦିଗକୁ ଆଗେଇବାକୁ ଲାଗିଲେ । ବିଦ୍ରୋହୀସେନା ଗୋଳାବର୍ଷଣର ମୁକାବିଲା କରିବାରେ ବ୍ୟସ୍ତ ରହିଥିଲେ ଏଣୁ ଏ ଦିଗକୁ ବିଶେଷ ଦୃଷ୍ଟି ଦେଇପାରିଲେ ନାହିଁ । କେବଳ ପ୍ରାଚୀର ଉପରେ ରହି ସେମାନଙ୍କ ଉପରକୁ ଗୁଳି ବର୍ଷଣ କରିବାକୁ ଲାଗିଲେ । ଏସମସ୍ତ ସତ୍ତ୍ୱେ ଇଂରାଜି

ସୈନ୍ୟମାନେ ପ୍ରାଚୀର ନିକଟକୁ ଆସି ନିଶୁଣିମାନ ଖଞ୍ଜିବାକୁ ଚେଷ୍ଟା କଲେ । ଉପରୁ ପ୍ରବଳ ଗୁଳି ବର୍ଷଣ ସହିତ ପଥର ଖଣ୍ଡମାନ ମଧ୍ୟ ପକାଯାଉଥିଲା । ପ୍ରଥମ ଦଶମିନିଟ୍ ମଧ୍ୟରେ ଶହେଢ଼ଣ ଖଣ୍ଡେ ଇଂରାଜି ସୈନ୍ୟ ନିଶୁଣି ଖଞ୍ଜିବାକୁ ଯାଇ ପ୍ରାଣ ହରାଇଲେ । ଜଣେ ମୃତ୍ୟୁ ବରଣ କଲେ ଅନ୍ୟମାନେ ତା'ହାତରୁ ନିଶୁଣି ନେଇ ଖଞ୍ଜିବାକୁ ଚେଷ୍ଟା କରୁଥିଲେ । ଏହି ପ୍ରକାରେ ଅଳ୍ପ ସମୟ ମଧ୍ୟରେ ସେ ସ୍ଥାନଟି ମଡାରେ ପୂର୍ଣ୍ଣ ହୋଇଗଲା ଓ ମଡାମାନଙ୍କରେ ଡେରା ଦେଇ, ଇଂରାଜି ସୈନ୍ୟମାନେ ନିଶୁଣି ଲଗାଇ ପ୍ରାଚୀର ଉପରକୁ ଉଠିବାକୁ ଚେଷ୍ଟା ଅବ୍ୟାହତ ରଖିଥିଲେ । ପରିଶେଷରେ ବହୁ ମୃତାହତ ସତ୍ୱେ ଗୁଳିବିଦ୍ଧ ରକ୍ତାକ୍ତ ଶରୀରରେ ସେମାନେ ନଗରୀ ମଧ୍ୟରେ ପ୍ରବେଶ କରିବାକୁ ସକ୍ଷମ ହୋଇପାରିଲେ ।

ଏହି ସମୟରେ ଦୁଇଜଣ ଇଂଜିନିୟର, 'ଲେଫଟନାଣ୍ଟ ଡନକାନ ହୋମ' (Duncan Home) ଏବଂ 'ଫିଲିପ୍ ସଲକେଡ' (Philip Salked), 'କାଶ୍ମୀର ଦରବାଜା'କୁ ଗୋଳାରେ ଉଡାଇ ଦେବା ପାଇଁ, ଗୋଳା ଖଞ୍ଜିବାରେ କିଛି ପ୍ରବୀଣ ସୈନ୍ୟ ଓ ତିନିଜଣ ସର୍ଜେଣ୍ଟଙ୍କ ସହ 'କାଶ୍ମୀର ଦରବାଜା' ଦିଗକୁ ଆଗେଇବାକୁ ଲାଗିଲେ । ପ୍ରତ୍ୟେକଙ୍କ ପାଖରେ ଚବିଶ ପାଉଣ୍ଡିଆ ବାରୁଦର ପ୍ୟାକେଟ ଥିଲା । ସେମାନେ ବାରୁଦ ପ୍ୟାକେଟ ଗୁଡିକୁ 'କାଶ୍ମୀର ଦରବାଜା'କୁ ଲଗାଇ ରଖି ଦେଇ ନିକଟସ୍ଥ ଖାତମାନଙ୍କରେ ଲୁଚିଗଲେ । ଏହା ପରେ ଫ୍ୟୁଜ ତାରରେ ନିଆଁ ଲଗାଇବାରେ ସମସ୍ୟା ଦେଖାଗଲା । ବିଦ୍ରୋହୀ ସୈନ୍ୟମାନେ ପ୍ରଥମେ ଇଂରାଜିମାନଙ୍କର ଉଦ୍ଦେଶ୍ୟ ବୁଝିପାରି ନଥିଲେ । କିନ୍ତୁ ବାରୁଦ ପ୍ୟାକେଟ ରଖାଯିବା ପରେ ପରେ ସେମାନଙ୍କର ଉଦ୍ଦେଶ୍ୟ ବୁଝିପାରି ବିଦ୍ରୋହୀ ସୈନ୍ୟମାନେ ତୁରନ୍ତ ପ୍ରବଳ ଗୁଳି ବର୍ଷଣ କରି ଫ୍ୟୁଜ ତାରରେ ନିଆଁ ଲଗାଇବାରେ ବାଧା ଦେଲେ । ଇଂରାଜିମାନଙ୍କ ମଧ୍ୟରୁ ଜଣ ଜଣ ହୋଇ ଡିଆସିଲି ନେଇ ତାରରେ ନିଆଁ ଲଗାଇବାକୁ ଚେଷ୍ଟା କରୁଥିଲେ ଓ ପରମୁହୂର୍ତ୍ତରେ ଗୁଳି ମାଡରେ କଡରେ ଥିବା ଖାତରେ ଗଳି ପଡୁଥିଲେ । ଏହି ପରି ସାତ ଆଠ ଜଣଙ୍କର ମୃତ୍ୟୁ ପରେ ହଠାତ୍ ସେମାନେ ତାରରେ ନିଆଁ ଧରାଇବାରେ ସମର୍ଥ ହେଲେ । ପୂର୍ବରୁ ଆତ୍ମରକ୍ଷା ପାଇଁ ସେମାନେ ନିକଟସ୍ଥ ଖାତ ଭିତରକୁ ଡେଇଁପଡିଲେ । ବିସ୍ଫୋରଣ ହୋଇ 'କାଶ୍ମୀର ଦରବାଜା'ର କାଠ ଓ ପଥରଖଣ୍ଡମାନ ଚାରିଆଡେ ବିଛାଡି ହୋଇ ପଡିଲା ଓ ଚାରିଆଡେ ଧୂଆଁ ଛାଇଗଲା । ଧୂଆଁ ସଫା ହୋଇଯିବା ପରେ ପରେ ଅଦୂରରେ ଅପେକ୍ଷାରତ ଇଂରାଜି ବାହିନୀମାନେ 'ନିକଲସନ୍'ଙ୍କ ନେତୃତ୍ୱରେ ନଗରୀ ମଧ୍ୟରେ ପ୍ରବେଶ କଲେ । ଏହି ଅବସ୍ଥାରେ ବିଦ୍ରୋହୀ ସେନାମାନଙ୍କ ସହ ନାଗରିକ ମାନେ ମଧ୍ୟ ସେମାନଙ୍କୁ ଆକ୍ରମଣ

କଲେ । ରାସ୍ତାର ଦୁଇ କଡରୁ, ଭିତରୁ, ଛାତଉପରୁ ଇଂରାଜିମାନଙ୍କ ଉପରକୁ ଅବିଶ୍ରାନ୍ତ ଗୁଳିବର୍ଷଣ କରାଯାଉଥିଲା । ଗଳି କନ୍ଦି ମଧ୍ୟରେ ପଶିଗଲେ, ସେମାନଙ୍କୁ ହାଣି ଦିଆଯାଉଥିଲା । ଏସବୁ ସତ୍ତ୍ୱେ, ଇଂରାଜି ସେନା 'ଲାହୋର ଦରବାଜା' ଦିଗକୁ ଆଗେଇ ଚାଲିଲେ । ପୂର୍ବ ଯୋଜନା ଅନୁସାରେ ନିକଲସନ ଆଗେଇ ଯିବା ବେଳକୁ 'ମେଜର୍ ରିଡ' (Major Reid)ଙ୍କ ବାହିନୀ 'ଲାହୋର ଦରବାଜା' ଧ୍ୱଂସ କରି 'ନିକଲସନ୍'ଙ୍କ ବାହିନୀ ସହ ମିଳିତ ହୋଇ ଆକ୍ରମଣ କରିବାର ଥିଲା । 'ଲାହୋର ଦରବାଜା' ସମ୍ମୁଖରେ ବିଦ୍ରୋହୀ ସୈନ୍ୟମାନେ ଏକ ଅବରୋଧ ନିର୍ମାଣ କରିଥିଲେ ଓ ତହିଁରେ ଖଞ୍ଜାଥିବା କମାଣରୁ ପ୍ରବଳ ଗୋଳା ବର୍ଷଣ କରୁଥିଲେ । 'ରିଡ'ଙ୍କ ପକ୍ଷରେ 'ଲାହୋର ଦରବାଜା' ଧ୍ୱଂସ କରି ତହିଁରେ ପ୍ରବେଶ କରିବା ଦୁରୁହ ବ୍ୟାପାର ଥିଲା । ଏଣୁ ସେ 'କାବୁଲ ଦରବାଜା'କୁ ଅପେକ୍ଷାକୃତ ନିରାପଦ ଭାବି ସେ ଦିଗକୁ ମୁହାଁଇଲେ । 'ନିକଲସନ୍' ନିଜର ସେନା ସହ ଆଗୋଉଥିବା ବେଳେ 'କାବୁଲ ଦରବାଜା' ନିକଟରେ ତାଙ୍କର ଛାତିରେ ଗୁଳି ବିଦ୍ଧ ହେଲା ଓ ତାଙ୍କୁ ତୁରନ୍ତ ଛାଉଣୀକୁ ନିଆଗଲା । ସେପ୍ଟେମ୍ବର ୨୩ତାରିଖରେ, ଦିଲ୍ଲୀର ପତନ ପରେ, ସେ ପ୍ରାଣତ୍ୟାଗ କଲେ ।

ଅନ୍ୟ ଏକ ବାହିନୀ ଧରି ବ୍ରିଗେଡିଅର୍ 'କ୍ୟାମ୍ପବେଲ' (Brigadier Campbell), ଚର୍ଚ୍ଚରୁ ନଗରୀର ମଧ୍ୟ ଭାଗରେ ଥିବା ଜୁମା ମସଜିଦ୍ ଆକ୍ରମଣ କରିବା ପାଇଁ ଆଗେଇଗଲେ । 'ମେଟକାଫ୍' ଆଉ ଏକ ସେନାଧରି ନଗରୀର ଗଭୀରତମ ଅଞ୍ଚଳରେ ଥିବା ଗଳିକନ୍ଦି ଭିତରକୁ ମାଡି ଚାଲିଲେ । କିନ୍ତୁ ପ୍ରତି ଗଳି କନ୍ଦିରେ, ଗୃହ ମଧ୍ୟରୁ ଓ ଛାତ ଉପରୁ ଆକ୍ରମଣ ହେବା ଫଳରେ ବହୁ ଇଂରାଜି ସୈନ୍ୟ ମୃତାହତ ହେଉଥିଲେ । ତଥାପି ଏହି ବାହିନୀ 'ବେଗମ ବାଗ' ମଧ୍ୟ ଦେଇ ଚାନ୍ଦିନୀଚୌକ ଆଡକୁ ଖୋଲା ରହିଥିବା ଏକ ଦରବାଜା ଆଡକୁ ଆଗେଇଗଲା । ସେମାନେ ଏହି ଦରବାଜାଟି ଗୋଳାରେ ଉଡାଇଦେଇ ଗୁର୍ଖାମାନଙ୍କ ସାହାଯ୍ୟରେ 'କୋତଓ୍ୱାଲି'କୁ ଦଖଲ କରିନେଲେ । ଏହାପରେ ସେମାନେ 'ଜୁମା ମସ୍‌ଜିଦ'ର ଶହେ ଗଜ ପାଖାପାଖି ହୋଇଗଲେ । ସେମାନେ ଦେଖିଲେ ଯେ 'ଜୁମା ମସଜିଦ'ର ଦରବାଜା ବନ୍ଦ ହୋଇଛି । ଏହା କେବଳ ବାରୁଦ ବା କମାଣ ଦ୍ୱାରା ଉଡାଇ ଦିଆଯାଇପାରିବ । କିନ୍ତୁ ସେମାନଙ୍କ ପାଖରେ ବାରୁଦ ନଥିଲା । ସେମାନଙ୍କର ସହିତ ଥିବା ଇଞ୍ଜିନିୟରମାନେ ପ୍ରାଣ ତ୍ୟାଗ କରିଥିଲେ । 'କାଶ୍ମୀର ଦରବାଜା'ରେ ଧ୍ୱଂସ ସ୍ତୂପ ମଧ୍ୟ ଦେଇ କମାଣ ଗୁଡିକ ଆଣିବାକୁ ସେମାନେ ସକ୍ଷମ ହୋଇପାରିନଥିଲେ । ସେମାନଙ୍କ ଦଳରେ ଦୁଇଶହ ଚାଳିଶ ଜଣଙ୍କ ମଧ୍ୟରୁ ମାତ୍ର ଶହେ ପଚାଶ ଜଣ ବଞ୍ଚିଥିଲେ । ପରିସ୍ଥିତି ଦୃଷ୍ଟିରୁ ଅନ୍ୟ ଉପାୟ ନଦେଖି

ସେମାନେ ଅନ୍ୟ ସହାୟକ ବାହିନୀର ଅପେକ୍ଷାରେ ରହିଲେ ।

ଏହି ସମୟରେ ହଠାତ୍ ଧଳାପେଷାକ ପରିହିତ ଘାଜିମାନେ, ତଲବାର ହଲାଇ, ବହୁ ସଂଖ୍ୟାରେ 'ଜୁମା ମସ୍‌ଜିଦ' ମଧ୍ୟରୁ ବାହାରି 'ଆଲ୍ଲାଦିନ' ଆଦି ଉଚ୍ଚାରଣ କରି, ଇଂରାଜିବାହିନୀ ଉପରେ ପ୍ରବଳ ଆକ୍ରମଣ କଲେ । ଏଣୁ ଉକ୍ତ ଇଂରାଜିବାହିନୀ ଅନ୍ୟମାନଙ୍କଠାରୁ ସହାୟତା ଆଶାନକରି, ଅନନ୍ୟୋପାୟ ହୋଇ, 'ବେଗମ ବାଗ' ଆଡକୁ ଫେରିବାକୁ ଲାଗିଲେ । ବେଗମବାଗରେ ମଧ୍ୟ ସେମାନେ ପ୍ରତ୍ୟେକ ଘରୁ ଗୁଳିବର୍ଷଣର ସମ୍ମୁଖୀନ ହେଲେ ।

ସେପ୍ଟେମ୍ବର ୧୬ତାରିଖ ଦିନ ଇଂରାଜିମାନେ, ବିଦ୍ରୋହୀମାନଙ୍କର ଗୋଳାବାରୁଦ ଭଣ୍ଡାର (magazine) ଦଖଲ କରି ଉଡାଇଦେଲେ । ଆକ୍ରମଣ ଫଳରେ ବିଦ୍ରୋହୀ ସୈନ୍ୟମାନେ 'କିଶାନଗଞ୍ଜ' ଛାଡିଦେବାକୁ ବାଧ୍ୟ ହେଲେ । ସତର ତାରିଖ ଦିନ, ଯୁଦ୍ଧ ପ୍ରବଳ ଆକାର ଧାରଣ କଲା । 'ଦିଲ୍ଲୀ'ର ପ୍ରତିଗଳି କନ୍ଦି ଯୁଦ୍ଧକ୍ଷେତ୍ରରେ ପରିଣତ ହେଲା । ଜନସାଧାରଣ, ସଶସ୍ତ୍ର ଇଂରାଜି ବାହିନୀ ସହ ପ୍ରାଣମୂର୍ଚ୍ଛା ଲଢିଲେ । ସେମାନେ ବହୁ ସୈନ୍ୟ ହତ୍ୟା କଲେ ମଧ୍ୟ ବହୁ ସଂଖ୍ୟାରେ ମରୁଥିଲେ । ଘର ଗଳିକନ୍ଦି ସବୁ ମଡାରେ ଛାଇ ହୋଇଗଲା । ଏହା ସତ୍ତ୍ୱେ, 'ଲାହୋର ଦରବାଜା'ରେ ମୁତୟନ ଥିବା ବିଦ୍ରୋହୀମାନଙ୍କର କମାଣ ବାହିନୀ, ଅସମ୍ଭବ ସାହସ ଓ ଦକ୍ଷତାର ପରିଚୟ ଦେଲେ । 'ଗ୍ରୀଥେଡ' (Greathed) ଏହା ଦଖଲ କରିବାକୁ ବହୁ ଚେଷ୍ଟା କରି ନିରାଶ ହୋଇ ଫେରିଗଲେ । ତଥାପି ମଧ୍ୟ ଇଂରାଜି ସୈନ୍ୟମାନେ 'କାଶ୍ମୀର ଦରବାଜା' ଠାରୁ 'ଉର୍ଦ୍ଦୁବଜାର' ପର୍ଯ୍ୟନ୍ତ ନିଜର ଆଧିପତ୍ୟ ଜମାଇବାରେ ସଫଳ ହୋଇପାରିଲେ ।

ଅଠର ତାରିଖ ଦିନ ସକାଳୁ 'ଗ୍ରୀଥେଡ', 'ଲାହୋର ଦରବାଜା' ଦଖଲ ନେବାର ଯୋଜନା କରି, 'ଜେନେରାଲ ଉଇଲସନ୍'ଙ୍କର ଅନୁମତି ଆଣିଲେ । ସେ ତିନି ସହ ସୈନ୍ୟ ଓ ଦୁଇଟି କମାଣ ସହ 'ଲାହୋର ଦରବାଜା' ଦିଗକୁ ଗଲେ । ସେତେବେଳେ ତାହା ବନ୍ଦ ଥିଲା ଓ ବିଦ୍ରୋହୀ ସୈନ୍ୟମାନେ ତାହା ରକ୍ଷା କରୁଥିଲେ । ଗ୍ରୀଥେଡ କମାଣରୁ ଗୋଳା ବର୍ଷଣର ଆଦେଶ ଦେଲେ । ହଠାତ୍ ଦରବାଜା ଖୋଲିଗଲା ଓ ପ୍ରତ୍ୟୁତ୍ତରରେ ଏକ ଓଜନ ଦାର କମାଣରୁ ଇଂରାଜି ସୈନ୍ୟମାନଙ୍କ ଆଡକୁ ଗୋଳାବର୍ଷଣ ହେଲା । ଗୋଳା ଖଞ୍ଜିବାର ସମୟ ବ୍ୟବଧାନରେ ଇଂରାଜି ସୈନ୍ୟମାନେ ଦଶଗଜ ଦୂରତା ଭିତରକୁ ଆସିଗଲେ । 'ଗ୍ରୀଥେଡ ଚାର୍ଜ୍ଜ' କରିବାକୁ ସୈନ୍ୟମାନଙ୍କୁ ଆଦେଶ ଦେଲେ । କେହି ପାଦେ ହେଲେ ଆଗେଇଲେ ନାହିଁ । ତାହା' ଗ୍ରୀଥେଡ'ଙ୍କ

ପାଇଁ ଅଭାବନୀୟ ଦୃଶ୍ୟ ଥିଲା । ବିଦ୍ରୋହୀଙ୍କର କମାଣଚଳାଉଥିବା ଏକମାତ୍ର ଗୋଲନ୍ଦାଜ ଇଂରାଜି ବାହିନୀ ଉପରକୁ ଗୋଳା ଅଭାବରେ ପଥର ଫୋପାଡି ପ୍ରତିରୋଧ କରୁଥିଲା । ଏହା ଦେଖି ସୈନ୍ୟମାନେ ଉକ୍ତ ଗୋଳନ୍ଦାଜଟିକୁ ହସ ଥଟ୍ଟା ତାମସା କରୁଥିଲେ ମଧ୍ୟ 'ଗ୍ରୀଥେଡ'ଙ୍କ ସମସ୍ତ ଯୁକ୍ତି ସତ୍ତ୍ୱେ, କେହିହେଲେ ଆଗେଇବାକୁ ରାଜିହେଲେ ନାହିଁ । ଅବଶେଷରେ 'ଗ୍ରୀଥେଡ'ଙ୍କୁ ନିରାଶ ହୋଇ ଫେରିବାକୁ ପଡିଲା ।

ଲାହୋର ଦରବାଜା ଅଧିକାର ପାଇଁ ପୁନଶ୍ଚ ସଲା ପରାମର୍ଶ ଚାଲିଲା । ଟେଲର (Tylor), ସର୍ବ ପ୍ରଥମେ ଦରବାଜା ପାଖରେ ଥିବା ବଡ ବଡ ଘର ଗୁଡିକ ଦଖଲ ନେବାକୁ ପରାମର୍ଶ ଦେଲେ । ଏହା ଫଳରେ ଦରବାଜା ଉପରେ ଦୃଢ ଭାବରେ ଆକ୍ରମଣ କରିବା ପଥ ସୁଗମ ହୋଇପଡିବ । ପରାମର୍ଶକୁ ତୁରନ୍ତ କାର୍ଯ୍ୟରେ ପରିଣତ କରାଗଲା । ଲାହୋର ଦରବାଜା ପର୍ଯ୍ୟନ୍ତ ଥିବା ଘରଗୁଡିକ ଇଂରାଜିମାନେ ଦଖଲ ନେଇଗଲେ । ସେଠାରେ ସୁରକ୍ଷିତ ରହି, ସେମାନେ ସନ୍ଧ୍ୟା ବେଳକୁ ଆକ୍ରମଣ କରିବାର ଯୋଜନା କଲେ । ସେମାନେ ଦରବାଜା ଆଡକୁ ଥିବା ଘରଗୁଡିକୁ ଦଖଲକୁ ନେଉଥିବା ସମୟରେ, ଏକ ଘରେ ପ୍ରାୟ ଚାଳିଶ ପଚାଶ ଜଣ ଶସ୍ୟ ବେପାରୀ ଏକତ୍ର ଥିବାର ଦେଖିଥିଲେ । ସେମାନଙ୍କୁ ଇଂରାଜି ସୈନ୍ୟମାନେ ସେମାନଙ୍କର ଜୀବନର ପ୍ରତିବଦଳରେ 'ଲାହୋର ଦରବାଜା' ପାଖରେ ଏକ ସୁବିଧା ସ୍ଥାନ ଦେଖାଇଦେବାକୁ କହିଲେ । ସେହି ବେପାରୀମାନେ ପ୍ରାଣଭୟରେ ଲାହୋର ଦରବାଜା ଠାରୁ ପଚାଶ ଗଜ ବ୍ୟବଧାନରେ ଥିବା ଏକ ଘରେ ସେମାନଙ୍କୁ ନେଇ ପହଞ୍ଚାଇଦେଲେ । ସେହିଠାରୁ ଇଂରାଜିମାନେ ଦରବାଜା ଉପରେ ଆକ୍ରମଣ କରି ଅଳ୍ପ ସମୟ ମଧ୍ୟରେ ତାହା ଦଖଲ କରିନେଲେ । ଦରବାଜା ଖୋଲିଯିବା ଫଳରେ, ସେମାନେ ନଗରୀର ମଧ୍ୟ ଭାଗକୁ ମାଡି ଚାଲିଲେ । ଏହା ପରେ କେବଳ କିଲ୍ଲା ଓ ପ୍ରାସାଦର ଉପରୁ ପ୍ରବଳ ଗୁଳି ବର୍ଷଣ ଚାଲିଥିଲା ।

ଏହି ସମୟରେ ପ୍ରାସାଦର ପ୍ରଥମ ଓ ଦ୍ୱିତୀୟ ଫାଟକ ଉଡାଇ ଦିଆଗଲା । ଇଂରାଜିମାନେ ପ୍ରାସାଦ ଭିତରକୁ ପ୍ରବେଶ କରି ଦେଖିଲେ, ଏକ ସିପାହୀ ବନ୍ଧୁକ ଧରି ପହରା ଦେଉଅଛି । ସେ ଏମାନଙ୍କୁ ଦେଖି କୌଣସି ପ୍ରତିକ୍ରିୟା ପ୍ରକାଶ କଲା ନାହିଁ । ସେମାନେ ଆଶ୍ଚର୍ଯ୍ୟ ହୋଇ ପାଖକୁ ଆସିବା ବେଳକୁ ସିପାହୀ ଜଣକ ହଠାତ୍ ବନ୍ଧୁକରୁ ଗୁଳି ଫୁଟାଇ ସଂଗୀନ୍‌ରେ ଇଂରାଜି ସୈନ୍ୟଙ୍କୁ ଆକ୍ରମଣ କରିବାକୁ ଆଗେଇଆସିଲା । ତତ୍‌କ୍ଷଣାତ୍ ତାର ଗୁଳିବିଦ୍ଧ ଶରୀର ଲୋଟି ପଡିଲା । ତାହାହିଁ ଥିଲା ବିଦ୍ରୋହୀ ମାନଙ୍କର ଶେଷ ଅବରୋଧ । ଏହାପରେ ଦିଲ୍ଲୀର ପତନ ହେଲା । ବାଦଶା ଏକ ଗୁପ୍ତ ପଥରେ 'ହୁମାୟୁନଙ୍କର କବର ଗୃହ'କୁ ପଳାୟନ କଲେ । ଇଂରାଜି ସୈନ୍ୟମାନେ ପ୍ରାସାଦ ଭିତରକୁ ଧସେଇପଶିଲେ ।

କୋଡିଏ ତାରିଖ ଦିନ ପ୍ରାସାଦ ଓ ରାସ୍ତା ସବୁ ଶୂନଶାନ୍ ଓ ପରିତ୍ୟକ୍ତ ହୋଇଯାଇଥିଲା । 'ଚାନ୍ଦିନୀଚୌକ' ଆଖ ପାଖ ଅଞ୍ଚଳ ଓ କାଁ ଭାଁ ଅନ୍ୟସ୍ଥାନମାନଙ୍କରେ କିଛି ବିଦ୍ରୋହୀ ସୈନ୍ୟମାନେ ଲଢାଇ କରୁଥିଲେ । କିନ୍ତୁ ଏ ସମସ୍ତ ମଧ୍ୟରେ ଜଣେ ପ୍ରାୟ ପଚାଶ ବର୍ଷୀୟା ବୁର୍ଖା ପରିହିତା ରହସ୍ୟମୟୀ ମହିଳା ନିଜେ ତଲବାର ହସ୍ତରେ ଧରି ଘୋଡାରେ ବସି ବୁଲି ବୁଲି ବିଦ୍ରୋହୀ ସୈନ୍ୟମାନଙ୍କୁ ଉତ୍ତେଜିତ ଓ ଉତ୍ସାହିତ କରୁଥିଲେ । ଏହି କ୍ରମରେ ସେ ଅଧଡଜନ ଇଂରାଜ ସୈନ୍ୟଙ୍କୁ ହତ୍ୟା କଲେ । ପରିଶେଷରେ ଆହତ ହୋଇ ସେ ଇଂରାଜିମାନଙ୍କ ହାତରେ ଧରାପଡିଲେ ଓ ତାହାଙ୍କୁ ଅମ୍ବାଲା ଛାଉଣୀକୁ ପଠାଇଦିଆଗଲା । ତା'ପରେ ସେ ମହିଳାଙ୍କର କଣ ହେଲା କିଛି ଜଣାପଡିଲା ନାହିଁ ।

ବାଦଶା, ପ୍ରକୃତରେ ପରିବାର ସହ କୁତବମୀନାରକୁ ଯିବାକୁ ମନସ୍ଥ କରିଥିଲେ କିନ୍ତୁ କୁପରାମର୍ଶରେ ହୁମାୟୁନ୍‌ଙ୍କ କବରଖାନାରେ ଆଶ୍ରୟ ନେଲେ । 'ବକ୍ତ ଖାଁ' ପାଞ୍ଚ ହଜାର ସୈନ୍ୟଙ୍କ ସହିତ ବାଦଶାଙ୍କ ସେବାରେ ଅଛନ୍ତି ବୋଲି ଜଣାଇ ଆଶ୍ୱାସନା ଦେଲେ ଓ କହିଲେ ବର୍ତ୍ତମାନ ମଧ ସମୟ ଅଛି ଆମେ ଜିଣିପାରିବା । କିନ୍ତୁ ପରିସ୍ଥିତି ଦୃଷ୍ଟିରୁ 'ବାଦଶା'ଙ୍କର ତୁରନ୍ତ ଦିଲ୍ଲୀ ତ୍ୟାଗ କରିବା ଆବଶ୍ୟକ । ବାଦଶା ସେତେବେଳକୁ ଇଂରାଜି ଗୁପ୍ତଚରମାନଙ୍କର ଚକ୍ରରେ କବଳିତ ହୋଇସାରିଥିଲେ । ବେଗମ୍ ଜୀନତ୍‌ମହଲ ୧୮ ତାରିଖ ଦିନ ଗୁପ୍ତଚର 'ଇଲାହୀ ବକ୍ସ' ଓ 'ହାକିମ ଅସନୁଲ୍ଲା ଖାଁ'ଙ୍କ ଜରିଆରେ 'ହଡସନ'ଙ୍କୁ ଜଣାଇଥିଲେ ଯେ ତାଙ୍କର, ତାଙ୍କର ପୁତ୍ର ଦିଓ୍ୱାନ ବକ୍ତଙ୍କର, ତାଙ୍କର ପିତା 'ଅହମ୍ମଦ କୁଲି ଖାଁ'ଙ୍କର ଓ 'ବାଦଶା'ଙ୍କର ଜୀବନରକ୍ଷା କଲେ ସେ ବାଦଶାଙ୍କର ଆତ୍ମସମର୍ପଣର ସମସ୍ତ ବ୍ୟବସ୍ଥା କରିବେ । ଯେତେବେଳେ ଗୁପ୍ତଚରମାନଙ୍କ ଜରିଆରେ ହଡସନ ବକ୍ତ ଖାଁଙ୍କର ବାଦଶାଙ୍କୁ ଦେଉଥିବା ପରାମର୍ଶର ଖବରପାଇଲେ, ସେତେବେଳେ ସେ ଇଲାହୀ ବକ୍ସ ଓ ହାକିମଙ୍କୁ ଯେ କୌଣସି ପ୍ରକାରେ ବାଦଶାଙ୍କୁ ସେଥିରୁ ନିବର୍ତ୍ତାଇବାକୁ କହିଲେ । 'ଜୀନତ୍ ମହଲ' ବାଦଶାଙ୍କୁ ପ୍ରଭାବିତ କରି ବକ୍ତ ଖାଁଙ୍କର ପରାମର୍ଶ ଗ୍ରହଣ ନକରିବାକୁ ପ୍ରବର୍ତ୍ତାଇଥିଲେ । 'ବାଦଶା', 'ବକ୍ତ ଖାଁ 'ଙ୍କର ପରାମର୍ଶ ଗ୍ରହଣ ନକରିବା ଫଳରେ ବକ୍ତ ଖାଁ ଅନ୍ୟ ଉପାୟ ନଦେଖି, ନିଜର ସୈନ୍ୟମାନଙ୍କ ସହ 'ଆଗ୍ରା' ଯାଇ, ସେଠାରୁ 'ଲକ୍ଷ୍ନୌ'ଗଲେ । ଏହାପରେ ଏହି ମହାନ୍ ଯୋଦ୍ଧାଙ୍କର କଣ ହେଲା ସେ ବିଷୟରେ ଇତିହାସ ନୀରବ ।

'ବାଦଶା'ଙ୍କୁ ବନ୍ଦୀ କରିବା ବିଷୟରେ ବର୍ତ୍ତମାନ ସୁଦ୍ଧା ଇଂରାଜିମାନେ କିଛି ବ୍ୟବସ୍ଥା କରିନଥିଲେ । ସେପ୍ଟେମ୍ବର ଏକୋଇଶ ତାରିଖ ଦିନ ହଡସନ୍ ଗୁପ୍ତଚର ଜରିଆରେ ଖବର ପାଇଲେ ଯେ 'ବାଦଶା', ହୁମାୟୂନ୍ କବରଖାନାରେ ଆଶ୍ରୟ

ନେଇଛନ୍ତି । ସେ ତୁରନ୍ତ ଜେନେରାଲଙ୍କୁ ଏହି ଖବର ଦେଇ ସେମାନଙ୍କୁ ବନ୍ଦୀ କରିବା ନିମନ୍ତେ ଅନୁମତି ପ୍ରାର୍ଥନା କଲେ । ପରିଶେଷରେ ଜେନେରାଲ, 'ହଡସନ'ଙ୍କୁ ପଚାଶ ସୈନ୍ୟ ସଙ୍ଗରେ ନେଇ, 'ବାଦଶା'ଙ୍କୁ ଜୀବନ ରକ୍ଷା ଓ ବ୍ୟକ୍ତିଗତ ନିରାପତ୍ତାର ପ୍ରତିଶ୍ରୁତି ଦେଇ, ବନ୍ଦୀ କରି ଆଣିବାକୁ ଆଦେଶ ଦେଲେ । 'ବାଦଶା' ତାଙ୍କର ଅନେକ ସହଚର ତଥା ପରିବାର ବର୍ଗଙ୍କ ସହ ହୁମାୟୂନ-କବରରେ ଲୁଚିଥିଲେ । ହୁମାୟୂନ୍-କବର, ମୋଗଲଙ୍କ ନିର୍ମିତ ଦିଲ୍ଲୀ ପୂର୍ବରୁ ଥିବା, ପ୍ରାଚୀନ ଦିଲ୍ଲୀରେ, ଗୃହମାନଙ୍କରେ ଭଗ୍ନାବଶେଷ ତଥା ବହୁ ବୁଦା ଗହଳି ମଧ୍ୟରେ ଥିଲା । ହୁମାୟୂନ୍ କବରଟି ଧଳା ମାର୍ବଲ ପଥରରେ ତିଆରି ହୋଇଥିଲା ଓ ଏକ ପ୍ରକାଣ୍ଡ ବଗିଚା ମଧ୍ୟରେ ତାହା ଅବସ୍ଥିତ ଥିଲା । ବଗିଚାଟି ପ୍ରାଚୀର ବେଷ୍ଟିତ ହୋଇଥିଲା ଓ ତାହାର ପ୍ରବେଶ ଦ୍ୱାରରେ ଏକ ସୁନ୍ଦର କାରୁକାର୍ଯ୍ୟ ସମ୍ପନ୍ନ ତୋରଣ ଥିଲା । କବରଖାନା ମଧ୍ୟରେ ଓ ବାହାର ଦିଗରେ ଥିବା ବୁଦା ଓ ଭଗ୍ନ ଗୃହାବଶେଷ ମଧ୍ୟରେ ବହୁ ବିଦ୍ରୋହୀ ସୈନ୍ୟ ଲୁଚିକରିଥିଲେ ।

'ହଡସନ୍' ଏକ ଛୋଟ ବାହିନୀ ସହ କବରଖାନା ଦିଗକୁ ଆସୁଥିବା, ସେମାନେ ଲକ୍ଷ୍ୟ କରୁଥିଲେ । 'ହଡସନ୍' ମଧ୍ୟ ଏ ବିଷୟରେ ସଚେତନ ଥିଲେ ଓ ପ୍ରତିମୁହୂର୍ତ୍ତରେ ସେମାନଙ୍କଠାରୁ ଆକ୍ରମଣର ଆଶଙ୍କା କରୁଥିଲେ । କିନ୍ତୁ ଧୈର୍ଯ୍ୟ ଓ ସାହସର ସହ ସେ ନିଜ ବାହିନୀକୁ ନେଇ କବରଖାନାର ତୋରଣ ପାଖରେ ପହଞ୍ଚି, 'ବେଗମଜୀନତ୍ ମହଲ'ଙ୍କ ପାଖକୁ, 'ବାଦଶା'ଙ୍କର ତଥା ତାଙ୍କ ପାଖ ଲୋକଙ୍କର ଜୀବନ ଓ ନିରାପତ୍ତାର ପ୍ରତିଶ୍ରୁତି ସହ, ଆତ୍ମସମର୍ପଣ ପାଇଁ ଖବର ଦେଇ ଦୂତ ପଠାଇଲେ । ଦୂତ, କବରଖାନା ମଧ୍ୟରେ ପ୍ରବେଶ କରିବାର ଦୁଇଘଣ୍ଟା ବିତିଗଲା । ଏହି ସମୟ ହଡସନ୍‌ଙ୍କ ପାଇଁ ଅତ୍ୟନ୍ତ ବିପଜ୍ଜନକ ଥିଲା । କାରଣ, କବରଖାନା ମଧ୍ୟରୁ ଓ ବାହାରୁ ପ୍ରତି ମୁହୂର୍ତ୍ତରେ ଆକ୍ରମଣର ଆଶଙ୍କା ଥିଲା । ସେଠାରେ କ୍ରମେ ହଜାର ହଜାର ସଂଖ୍ୟାରେ ଜନସାଧାରଣ ରୁଣ୍ଡ ହେଉଥିଲେ । 'ହଡସନ୍'ଙ୍କ ସୈନ୍ୟ ସଂଖ୍ୟା ସେମାନଙ୍କ ସଂଖ୍ୟା ତୁଳନାରେ ଅତ୍ୟନ୍ତ ନଗଣ୍ୟ ଥିଲା । ପରିଶେଷରେ ଦୂତ ଆତ୍ମସମର୍ପଣର ସମ୍ବାଦ ନେଇ ଆସିଲା । କେବଳ ହଡସନ୍‌ଙ୍କ ବ୍ୟତୀତ ଆଉ କାହା ପାଖରେ ଆତ୍ମସମର୍ପଣ ନକରିବାର ସର୍ତ୍ତ 'ବାଦଶା' ଦେଇଥିଲେ । ଉକ୍ତ ସର୍ତ୍ତ ମାନିନିଆଗଲା । 'ହଡସନ୍' ଆତ୍ମସମର୍ପଣ ଗ୍ରହଣ କରିବାକୁ ରାଜି ହେଲେ ଓ ଉନ୍ମୁକ୍ତ ତରବାରୀ ହସ୍ତରେ ଘୋଡାରେ ବସି ଦରବାଜା ପାଖକୁ ଗଲେ । ଭିତର ଦିଗରେ ଅସ୍ତ୍ରଶସ୍ତ୍ରଧାରୀ ବ୍ୟକ୍ତିମାନେ ଥିଲେ । ସେ ଚିତ୍କାର କରି ଜଣାଇଦେଲେ ଯେ ସମସ୍ତ ବନ୍ଦୀମାନଙ୍କର ଜୀବନ ନିରାପଦ ରହିବ । ଚତୁର୍ଦ୍ଦିଗରେ ନୀରବତା ଛାଇଗଲା । କିଛି ସମୟ ପରେ କବରଖାନା ମଧ୍ୟରୁ ଧୀର ଓ ମନ୍ଥର ଗତିରେ

ଏକ ପଟୁଆର ବାହାରିଲା । ସେହି ପଟୁଆରର ପ୍ରଥମ ଭାଗରେ ଦୁଇଟି ପୃଥକ୍ ପାଲିକିରେ ବାଦଶା ଓ ଜୀନତ୍ ମହଲ ଥିଲେ । କମ୍ପିତ ଶରୀରରେ ବୃଦ୍ଧ ବାଦଶା ଓ ତାଙ୍କର ପୁତ୍ର କ୍ରମାବନ୍ତ ନିଜ ନିଜର ଅସ୍ତ୍ର ହଡସନ୍‌ଙ୍କୁ ସମର୍ପଣ କଲେ । 'ହଡସନ୍' ସେମାନଙ୍କୁ ନେଇ ପ୍ରାସାଦ ଅଭିମୁଖେ ଯାତ୍ରା କଲେ । ପଟୁଆରର ଦୁଇ ପାଖରେ ପ୍ରଥମେ ପଲପଲ ଶରଣାର୍ଥୀ ଦଳ ଘେରି ରହି ପଟୁଆର ସହ ଯାଇଥିଲେ । ସେମାନଙ୍କର ଅଧିକ ସଂଖ୍ୟାହେତୁ ପ୍ରତିମୂହୂର୍ତ୍ତରେ ଦଙ୍ଗାର ଆଶଙ୍କା ଥିଲା । କିନ୍ତୁ 'ହଡସନ'ଙ୍କର ନିର୍ଭୀକତା ଓ ଦୃଢତା ଦେଖି, ସେମାନଙ୍କର ସଂଖ୍ୟା କମିଯାଇ, 'ଲାହୋର ଦରବାଜା' ପାଖରେ ପହଞ୍ଚିବା ବେଳକୁ, ଅଳ୍ପ କେତେକ ଦେଖଣାହାରୀ ମାତ୍ର ଥିଲେ । ପଟୁଆର ପ୍ରାସାଦରେ ପହଞ୍ଚିଲା । ପ୍ରାସାଦର ଫାଟକ ପାଖରେ ନିୟମ ଦୃଷ୍ଟିରୁ 'ହଡସନ' ତାଙ୍କର ଦାୟିତ୍ୱ ବେସାମରିକ ଅଫିସର ସଉନ୍ଦର (Saunder)ଙ୍କୁ ଅପର୍ଣ କରିଥିଲେ । ଏ ମଧ୍ୟରେ ଜେନେରାଲ ତାଙ୍କର ମୁଖ୍ୟ କାର୍ଯ୍ୟାଳୟ 'ଦେଓ୍ୱାନ-ଇ-ଖାସ୍'ରେ ସ୍ଥାପନ କରିଥିଲେ । 'ହଡସନ୍' ସେଠାରେ ତାଙ୍କ ସହିତ ଦେଖା କରି 'ବାଦଶା'ଙ୍କର ଆତ୍ମସମର୍ପଣର ଖବର ଦେଲେ ଓ ଜେନେରାଲ ଖୁସି ହୋଇ ତା'ଙ୍କୁ ବାଦଶା ଓ ତାଙ୍କର ପୁତ୍ର ସମର୍ପଣ କରିଥିବା ତଲବାର ଉପହାର ସ୍ୱରୂପ ପ୍ରଦାନ କଲେ ।

ପରଦିନ ସକାଳୁ 'ହଡସନ୍', ଗୁପ୍ତଚର 'ଇଲାହୀବକ୍ସ' ଠାରୁ ଖବର ପାଇଲେ ଯେ ବାଦଶାଙ୍କର କିଛି ପୁତ୍ର କବରଖାନା ମଧ୍ୟରେ ରହିଯାଇଛନ୍ତି । ପୁନଶ୍ଚ ହଡସନ୍ ଖବର ପାଇଲେ ଯେ କବରଖାନା ମଧ୍ୟରେ ତିନିଶହ ସଶସ୍ତ୍ର ବିଦ୍ରୋହୀ ଏବଂ କବରଖାନା ବାହାରେ ବୁଦା ଓ ଭଙ୍ଗା ଘରମାନଙ୍କ ଭିତରେ ଆଉ ତିନି ହଜାର ସଶସ୍ତ୍ର ବିଦ୍ରୋହୀ ଲୁଚି ରହିଛନ୍ତି । କବରଖାନା ଭିତରେ 'ବାଦଶା'ଙ୍କର ଦୁଇପୁତ୍ର 'ମିର୍ଜା ମୋଗଲ' ଓ 'ମିର୍ଜାକିଶେରେ ସୁଲତାନତ୍' ଏବଂ ନାତି 'ଆବୁବକ୍ର' ଥିଲେ । ସେମାନଙ୍କୁ ବନ୍ଦୀ କରିବାର ଅତ୍ୟନ୍ତ ଆବଶ୍ୟକତା ଥିଲା । କାରଣ ବିଦ୍ରୋହ ସମୟରେ ସେମାନେ ପ୍ରାସାଦରେ ଆଶ୍ରୟ ନେଇଥିବା ସମସ୍ତ ଇଂରେଜମାନଙ୍କୁ ହତ୍ୟା କରିଥିଲେ । ଇଂରାଜି ମହିଳାମାନଙ୍କୁ ଉଲଗ୍ନ କରି ରାସ୍ତାରେ ଚଲାଇଥିଲେ ଓ ସେମାନଙ୍କର ଶିଶୁର ହାତ ଗୋଡ କାଟି ସେହି ରକ୍ତ ସେମାନଙ୍କର ମୁହଁରେ ପକାଇଥିଲେ । 'ହଡସନ୍' ଏ ସମସ୍ତ ଖବର ପୂର୍ବରୁ ରଖିଥିଲେ । ଏଣୁ ତାଙ୍କର ଏହି ତିନିଜଣଙ୍କ ପ୍ରତି ପ୍ରଚଣ୍ଡ କ୍ରୋଧ ଥିଲା ।

'ହଡସନ୍', 'ମାକ୍‌ଡାଓ୍ୱେଲ'ଙ୍କ (MacDowell) ସହ ଘୋଡାରେ ବସି ଶହେଜଣ ସୈନ୍ୟଙ୍କ ସହିତ କବରଖାନା ଦିଗକୁ ଆଗେଇଲେ । କବରଖାନାଠାରୁ ପ୍ରାୟ ଅଧମାଇଲ ଦୂରରେ, ସେମାନେ 'ବାଦଶା'ଙ୍କର ଏକ ପୁତୁରାକୁ ବନ୍ଦୀ କରିବାକୁ ସକ୍ଷମ

ହେଲେ । ତାହାଙ୍କ ହାତରେ କବରଖାନାକୁ ଆତ୍ମସମର୍ପଣ କରିବାର ଖବର ପଠାଇ ହଡସନ ସେଠାରେ ନିଜର ବାହିନୀ ସହ ଅପେକ୍ଷା କରିବାକୁ ଲାଗିଲେ । ଅଧଘଣ୍ଟାଏ ପରେ ଦୂତ ହୋଇ ଯାଇଥିବା 'ବାଦଶା'ଙ୍କର ପୁତୁରା ଫେରିଆସି ଜଣାଇଲେ ଯେ ସେମାନଙ୍କ ଜୀବନ ରକ୍ଷାର ପ୍ରତିଶ୍ରୁତି ମିଳିଲେ ସେମାନେ ଆତ୍ମସମର୍ପଣ କରିବେ । କିନ୍ତୁ 'ହଡସନ୍' ବିନା ସର୍ତ୍ତରେ ଆତ୍ମସମର୍ପଣ କରିବା ଖବର ଦେଇ ପୁନଶ୍ଚ ତା'ଙ୍କୁ ପଠାଇଲେ । ଏମଧ୍ୟରେ ସେ 'ମାକ୍‌ଡାଓ୍ୱେଲ'ଙ୍କ ସହ ବନ୍ଦୀ କରିବାର ଯୋଜନା କରିବାକୁ ଲାଗିଲେ । କବରଖାନା ମଧ୍ୟରେ ଥିବା ମୁସଲମାନ ସୈନ୍ୟମାନେ 'ବାଦଶା'ଙ୍କ ପୁତ୍ରମାନଙ୍କୁ ସେମାନଙ୍କର ନେତୃତ୍ୱ ନେଇ ଇଂରାଜିମାନଙ୍କୁ ହଟାଇଦେଇ କବରଖାନା ମଧ୍ୟରୁ ବାହାରି ଯିବା ପାଇଁ ପ୍ରବର୍ତ୍ତାଉ ଥିଲେ । କାରଣ ସେହି ସମୟରେ ସେମାନଙ୍କ ତୁଳନାରେ ଇଂରାଜିମାନଙ୍କର ସଂଖ୍ୟା ଅତି ନଗଣ୍ୟ ଥିଲା । କିନ୍ତୁ ସେଠାରେ ଥିବା 'ବାଦଶା'ଙ୍କର ପୁତ୍ରମାନେ ସାହସ କରିପାରିଲେ ନାହିଁ । ଏଣୁ ଆତ୍ମସମର୍ପଣ କରିବାକୁ ରାଜି ହୋଇଗଲେ । ଦୂତ ଫେରିଆସି 'ହଡସନ୍'ଙ୍କୁ ଆତ୍ମସମର୍ପଣର ଖବର ଦେଲା ।

ହଡସନ୍ ଆଉ ଡେରି ନକରି ଶହେ ଜଣ ସୈନ୍ୟଙ୍କ ମଧ୍ୟରୁ ଦଶ ଜଣଙ୍କୁ କବରଖାନା ଭିତରୁ ବନ୍ଦୀମାନଙ୍କୁ ଆଣିବାକୁ ପଠାଇଲେ । ତାଙ୍କର ଆଦେଶ ମୁତାବକ 'ମାକ୍‌ଡାଓ୍ୱେଲ' ଅବଶିଷ୍ଟ ସୈନ୍ୟମାନଙ୍କ ସହ ପଥ ପାର୍ଶ୍ୱରେ ସତର୍କ ହୋଇ ରହିଲେ । କିଛି ସମୟ ପରେ ଏକ ବଳଦଗାଡିରେ ଉଭୟ ଦିଗରେ ସୈନ୍ୟ ପ୍ରହରା ଭିତରେ 'ବାଦଶା'ଙ୍କର ପୁତ୍ର ଓ ନାତିଆସୁଥିବାର ଦେଖାଗଲା । ସେମାନଙ୍କ ପଛରେ ପ୍ରାୟ ଦୁଇ ତିନି ହଜାର ଉତ୍ତେଜିତ ସଶସ୍ତ୍ର ମୁସଲମାନ ଅନ୍ୟାନ୍ୟ ଅନୁଗତ ଭୃତ୍ୟ ତଥା କିଛି ଦରବାରୀ ଓ ଅନ୍ୟମାନେ ଥିଲେ । 'ବାଦଶା'ଙ୍କ ପୁତ୍ର ଓ ନାତିମାନେ ଅତ୍ୟନ୍ତ ମୂଲ୍ୟବାନ ରାଜକୀୟ ପୋଷାକ ପରିଧାନ କରିଥିଲେ । ତନ୍ମଧ୍ୟରୁ ପ୍ରାୟ ୩୫ବର୍ଷ ବୟସ୍କ 'ମିର୍ଜା ମୋଗଲ' ଅତ୍ୟନ୍ତ ସୁନ୍ଦର ନାତିଦୀର୍ଘ ଶକ୍ତିଶାଳୀ ଓ ପେଶୀ ବହୁଳ ଶରୀର ଥିଲେ । ତାଙ୍କର ଭାଇ ପଚିଶ ବର୍ଷ ବୟସର ଯୁବକ ଥିଲେ ଓ ପୁତୁରା ଅଠର ବର୍ଷ ବୟସ୍କ ଥିଲେ । 'ହଡସନ୍', 'ମାକ୍‌ଡାଓ୍ୱେଲ'ଙ୍କ ସହ ଘୋଡାରେ ଚଢି ସେମାନଙ୍କ ଦିଗକୁ ଗଲେ । ଉଭୟ ଦିଗରୁ ପରସ୍ପରକୁ ମୁଣ୍ଡ ନୁଆଇଁ ସୌଜନ୍ୟ ଜଣାଇଲେ । ଏହାପରେ 'ହଡସନ୍' ଚାଳକଙ୍କୁ ଆଗକୁ ଯିବାକୁ କହିଲେ । 'ବାଦଶା'ଙ୍କ ପୁତ୍ରମାନେ ବସିଥିବା ବଳଦଗାଡି ପଛରେ ବହୁ ଜନସାଧାରଣ ଓ ସଶସ୍ତ୍ର ମୁସଲମାନ ଏକତ୍ରିତ ହୋଇ ଉତ୍ତେଜିତ ଅବସ୍ଥାରେ ଯାଉଥିବାର ଦେଖି 'ହଡସନ' ନିଜର ବାହିନୀକୁ ବଳଦଗାଡି ପଛରେ ରହିବାକୁ କହିଲେ । 'ହଡସନ୍'ଙ୍କର ସୈନ୍ୟମାନେ ବଳଦଗାଡି ପଛରେ ଥିବା ମୁସଲମାନମାନଙ୍କୁ ହୁମାୟୁନ

କବର ପର୍ଯ୍ୟନ୍ତ ତଡିନେଲେ ଓ ସେମାନେ କବରଖାନା ଭିତରେ ପଶିଗଲେ । ସୈନ୍ୟମାନଙ୍କୁ ବାହାରେ ରହିବାକୁ କହି 'ହଡସନ', 'ମାକ୍‌ଡାଓ୍ୱେଲ'ଙ୍କ ସହ କବରଖାନା ଭିତରକୁ ଯାଇ ସଶସ୍ତ୍ର ବ୍ୟକ୍ତିମାନଙ୍କୁ ତୁରନ୍ତ ଅସ୍ତ୍ରତ୍ୟାଗ କରିବା ପାଇଁ ଆଦେଶ ଦେ଼ଲେ, ସେମାନଙ୍କ ମଧ୍ୟରେ ପ୍ରଥମେ କିଛି କୋଳାହଳ ଶୁଣାଗଲା, କିନ୍ତୁ କେଜାଣି କାହିଁକି, ପର ମୁହୂର୍ତ୍ତରେ ସମସ୍ତେ ଅସ୍ତ୍ରସମର୍ପଣ କଲେ । ସମସ୍ତ ଅସ୍ତ୍ର ସଂଗ୍ରହ କରିବାରେ ଦୁଇଘଣ୍ଟା ବିତିଗଲା । ଏ ମଧ୍ୟରେ ପାଞ୍ଚଶହ ତଲବାର ଓ ବହୁ ଆଗ୍ନେୟାସ୍ତ୍ର ଥିଲା । ସେ ସମସ୍ତ ସୁରକ୍ଷିତ ଅବସ୍ଥାରେ ଗାଡିରେ ପଠାଇଦିଆଗଲା ।

ଏ ମଧ୍ୟରେ ପ୍ରାୟ ଛଅହଜାର ଲୋକ ଏକତ୍ରିତ ହୋଇଯାଇଥିଲେ । ଏହି ପ୍ରକାରେ ସେମାନେ ଏକମାଇଲ ଯାତ୍ରା ପରେ ମଧ୍ୟ ଆଖପାଖ ବୁଦା ଗହଳିରୁ ଲୋକମାନେ ଆସି ସେମାନଙ୍କ ସହ ମିଶୁଥିଲେ । ସମସ୍ତେ ଉତ୍ତେଜିତ ହୋଇ ଥିଲେ । ତାହା ଏକ ବିପଜ୍ଜନକ ପରିସ୍ଥିତି ଥିଲା । ଏହି ଅବସ୍ଥାରେ ହଡସନ୍ ହଠାତ୍ ପଟୁଆରକୁ ରହିବାକୁ ଆଦେଶ ଦେଲେ । ଏହାପରେ ସେ ବାଦଶାଙ୍କର ପୁତ୍ର ଓ ନାତି ମାନଙ୍କୁ ଜନସାଧାରଣଙ୍କୁ ଦେଖାଇ ସେମାନେ ଅତୀତରେ କିପରି ନିଷ୍ଠୁର ଭାବରେ ସ୍ତ୍ରୀ ଶିଶୁ ଆଦିଙ୍କୁ ହତ୍ୟା କରିଥିଲେ ତାହାର ବର୍ଣ୍ଣନା କଲେ । ସେ ଏମାନଙ୍କୁ ଦଣ୍ଡ ଦେବାପାଇଁ ସରକାର ଆଦେଶ ଦେଇଥିବା କଥା ମଧ୍ୟ କହିଲେ । ହଡସନ୍ ସେହି ତିନି ଜଣ ବନ୍ଦୀଙ୍କୁ ବଳଦଗାଡିରୁ ଓହ୍ଲାଇ ଆସିବାକୁ ଆଦେଶ ଦେଲେ । ସେମାନଙ୍କର ରାଜକୀୟ ପୋଷାକ କାଢି ନିଆଯାଇ ସାଧାରଣ ପୋଷାକ ପିନ୍ଧାଇଦିଆଗଲା । ତାହାପରେ 'ହଡସନ୍' ନିଜର ଏକ ସୈନ୍ୟ ହାତରୁ କାର୍‌ବାଇନ୍ ନେଇ ଜଣକ ପରେ ଜଣକୁ ତତ୍‌କ୍ଷଣାତ୍ ଗୁଳିକରି ହତ୍ୟାକଲେ । ଏହାପରେ ସେମାନଙ୍କର ମଡାକୁ ନିଆଯାଇ 'କୋତଓ୍ୱାଲି' ପାଖରେ ଥିବା ପଥର ଉପରେ ସମସ୍ତେ ଦେଖିବା ପାଇଁ ଥୁଆଗଲା । ତିନି ଦିନ କାଳ ସେଠାରେ ସେ ମଡା ତିନୋଟି ପଡିରହିଥିଲା, ଚବିଶ ଘଣ୍ଟାମଧ୍ୟରେ 'ହଡସନ୍', ବାଦଶାଙ୍କ ପରିବାରର ଅନ୍ୟାନ୍ୟମାନଙ୍କୁ ହତ୍ୟାକଲେ ।

'ବାଦଶା'ଙ୍କୁ ପ୍ରାସାଦ ଭିତରକୁ ନିଆଯାଇ ସେଠାରେ ଏକ ପୂତିଗନ୍ଧମୟ କ୍ଷୁଦ୍ର ପ୍ରକୋଷ୍ଠରେ ରଖାଗଲା । ଉକ୍ତ ପ୍ରକୋଷ୍ଠରେ ଏକ ଖଟିଆ ଓ ଦଉଡିରେ ବୁଣାହୋଇଥିବା ଏକ ମସିଣା ଥିଲା । ଅନ୍ୟ ଏକ ଅପେକ୍ଷାତମ କ୍ଷୁଦ୍ର ପ୍ରକୋଷ୍ଠରେ 'ଜୀନତ ମହଲ' କିଛି ପରିଚାରିକା ଓ ଦୁଇ ତିନୋଟି ବାଳକ ସହ ରହୁଥିଲେ । 'ବାଦଶା'ଙ୍କୁ ଦିନକୁ ଦୁଇ ଅଣାର ଭତ୍ତା ଦିଆଯାଉଥିଲା । ତାଙ୍କୁ ସାଧାରଣ ସୈନ୍ୟମାନେ ମଧ୍ୟ ଅସମ୍ମାନ କରୁଥିଲେ । ବହୁ ସମୟରେ ସେମାନେ ତାଙ୍କୁ ଛିଡା ହୋଇ ସଲାମ କରିବାକୁ କହୁଥିଲେ

ଓ ତାଙ୍କର ଦାଢି ଧରି ଟାଣୁଥିଲେ । 'ଢୀନତ୍‌ମହଲ'ଙ୍କର ମଧ କୌଣସି ଗୋପନୀୟତା ରହୁନଥିଲା । ସୈନ୍ୟମାନେ ବାରମ୍ବାର ଆସି ତାଙ୍କୁ ନିରୀକ୍ଷଣ କରୁଥିଲେ । ବେଗମ ସେମାନଙ୍କ ଆଡକୁ ପିଠି ବୁଲାଇ ଦେଉଥିଲେ । 'ବାଦଶା', ତାଙ୍କର କ୍ଷୁଦ୍ର ପ୍ରକୋଷ୍ଠ ଭିତରେ ବହୁ ସମୟରେ ବସି ରହୁଥିଲେ । ବେଳେ ବେଳେ ଚାଲବୁଲ କରି ଫୁସ୍ ଫୁସ୍ ସ୍ୱରରେ କୋରାନ୍ ଆବୃତି କରୁଥିଲେ । 'ବେଗମ' ସଦାବେଳେ ତାଙ୍କୁ ଇଂରାଜିମାନଙ୍କ ସହିତ କଥା କହିବା ପାଇଁ ନିବର୍ତାଉଥିଲେ ।

ପ୍ରାୟ ତିନି ସପ୍ତାହ ଧରି 'ଦିଲ୍ଲୀ ନଗରୀ' ଓ ଆଖପାଖ ଗ୍ରାମମାନଙ୍କରେ ସୈନ୍ୟମାନେ ଲୁଟ୍‌ତରାଜ ଓ ହତ୍ୟାକାଣ୍ଡ ଅବ୍ୟାହତ ରଖିଲେ । ସବୁ ନାଗରିକଙ୍କୁ ନଗର ଖାଲି କରିବା ପାଇଁ ଆଦେଶ ଦିଆଗଲା । ଯେ କେହି ଦୃଷ୍ଟି ଗୋଚର ହେଲା ତାକୁ ଜାତି, ବର୍ଣ୍ଣ, ବୟସ ଓ ଲିଙ୍ଗ ନିର୍ବିଶେଷରେ ନିର୍ମମ ଭାବରେ ହତ୍ୟା କରାଗଲା । ଏହିପରି ଭାବରେ ବହୁ ମୂଲ୍ୟବାନ ଦ୍ରବ୍ୟ ଓ ଅର୍ଥ ଓ ପ୍ରଭୃତି ଅଳଙ୍କାର ଆଦି ଲୁଟ୍ କରାଯାଇ ତାହା ବଣ୍ଟନ କରାଯିବା ପାଇଁ ଏକତ୍ରିତ କରାଗଲା । ସେଗୁଡିକ କୋଟି କୋଟି ଟଙ୍କାର ସମ୍ପତ୍ତି ଥିଲା ।

'ଚାନ୍ଦିନୀଚୌକ'ରେ ଥିବା 'କୋତଓ୍ୱାଲି'ରେ 'ମେଟକାଫ୍', ଏକ ସାମରିକ ଅଦାଲତ ପ୍ରତିଷ୍ଠା କଲେ । ତାହା ସମ୍ମୁଖରେ ୭/୮ଟି ଫାଶୀଖୁଣ୍ଟ ନିର୍ମାଣ କଲେ । ସେଥିରେ ଦୋଷୀମାନଙ୍କୁ ନିର୍ବିଚାରରେ ଫାଶୀ ଦିଆଯାଉଥିଲା । ମଡାଗୁଡିକ ପ୍ରତ୍ୟହ ୭/୮ଟି ବଳଦ ଗାଡିରେ ଲଦା ହୋଇ, ନଗରୀ ବାହାରକୁ ନିଆଯାଇ ପୋଡାଯାଉଥିଲା ବା ଶାଗୁଣା ଖାଇବା ପାଇଁ ଫୋପାଡି ଦିଆଯାଉଥିଲା । ଏପରିକି ଦୋଷୀ ନିର୍ଣ୍ଣୟ କରିବାରେ ବନ୍ଧୁ, ଶତ୍ରୁ ବିଚାର ମଧ ରହିଲା ନାହିଁ । ହିନ୍ଦୁ ମନ୍ଦିର ଗୁଡିକ ଧ୍ୱଂସ କରାଯାଇ ସେଠାରୁ ମୂଲ୍ୟବାନ ଧାତୁ ଓ ସୁନା ଗହଣା ଆଦି ଲୁଟ୍ କରାଗଲା । କେବଳ ଐତିହାସିକ ବିଶେଷତ୍ୱ ଥିବା କେତୋଟି ମସ୍‌ଜିଦ ବା ପ୍ରାସାଦ ଛାଡିଦେଇ ପ୍ରାୟ ସବୁ ଘର ମାଟିରେ ମିଶାଇ ସମତଳ କରିଦିଆଗଲା । ଦାଦାରର ନବାବଙ୍କର ବିଚାର କରି ଫାଶୀ ଦିଆଗଲା । ସେହିପରି ଫରୁକ୍‌ନଗରର ନବାବ 'ଅହମ୍ମଦ ଅଲି ଖାଁ', ବଲ୍ଲଭଗଡର ରାଜା 'ନହାନ ସିଂହ', ଲୋହାରୁର ନବାବ ଓ ଦାଦ୍ରିର ନବାବ ଆଦିଙ୍କୁ ବନ୍ଦୀକରି ସେମାନଙ୍କର ସାମରିକ ଅଦାଲତରେ ବିଚାର କରାଗଲା ଓ ସେମାନଙ୍କର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କରାଗଲା ।

ଅପରପକ୍ଷରେ ଇଂରାଜିମାନଙ୍କୁ ସାହାଯ୍ୟ କରିଥିବା ବ୍ୟକ୍ତିମାନଙ୍କୁ ପୁରସ୍କାର ପ୍ରଦାନ କରାଗଲା । 'ଇଲାହୀବକ୍ସ'ଙ୍କୁ କିଛି ସ୍ଥାବର ସମ୍ପତ୍ତି ସହିତ ଏକ ଲକ୍ଷ ଟଙ୍କା ପ୍ରଦାନ କରାଗଲା । 'ନବାବ ଜାନଫିସାନ ଖାଁ'ଙ୍କୁ ମାସିକ ହଜାରେ ଟଙ୍କାର ପେନସନ୍ ଓ ମିରଟ୍

ପାର୍ଶ୍ୱବର୍ତ୍ତୀ କିଛି ଗ୍ରାମର ବାର୍ଷିକ ଦଶହଜାର ଟଙ୍କା ଖଜଣା ପ୍ରଦାନ କରାଗଲା । ଏହା ସହିତ 'ଅମନୁଲ୍ଲା ଖାଁ'ଙ୍କୁ ପନ୍ଦର ହଜାର ଟଙ୍କା ଦିଆଗଲା । 'ଶ୍ରୀରାମ'ଙ୍କର ପିତା, ବିଦ୍ରୋହୀମାନଙ୍କ ବିରୁଦ୍ଧରେ ଇଂରାଜ ବାହିନୀ ତରଫରୁ ଲଢେଇ କରି ହିସାର ଠାରେ ପ୍ରାଣ ତ୍ୟାଗ କରିଥିଲେ । ଲୁଟ୍ ତରାଜ ସମୟରେ ତାଙ୍କୁ ଚିହ୍ନିନପାରି ତାଙ୍କ ଘର ମଧ୍ୟ ଲୁଟ କରାଯାଇଥିଲା । ଏଣୁ ତାଙ୍କୁ ସବଇନ୍‌ସପେକ୍ଟର ଚାକିରୀ ସହ ନଅଶହ ଟଙ୍କା ନଗଦ ଅର୍ଥ ଆକାରରେ ଦିଆଗଲା । ବାଦଶାଙ୍କର ବିଚାର ହୋଇ ତାଙ୍କୁ 'ଜୀନତ୍ ମହଲ'ଙ୍କ ସହ ରେଙ୍ଗୁନକୁ ନିର୍ବାସିତ କରାଗଲା । ସେଠାରେ ସେ ଅବଶିଷ୍ଟ ବନ୍ଦୀ ଜୀବନ ବିତାଇ ୧୮୬୨ ମସିହା ନଭେମ୍ବର ସାତ ତାରିଖ ଦିନ ଦେହତ୍ୟାଗ କଲେ । 'ବାଦଶା'ଙ୍କର ପୁଅ ଓ ନାତିମାନଙ୍କ ମଧ୍ୟରୁ ସମସ୍ତଙ୍କୁ 'ହଡ୍‌ସନ' ପୂର୍ବରୁ ହତ୍ୟା କରିଥିଲେ । କେବଳ ଏକମାତ୍ର ପୁତ୍ର 'ଫିରୋଜଶାହ' ବିଦ୍ରୋହ ପୂର୍ବରୁ ଆରବ ଦେଶକୁ ଚାଲିଯାଇଥିଲେ । ଏହି ଯୁଦ୍ଧରେ ଇଂରାଜ ବାହିନୀରୁ ୯୯୨ ଜଣ ମୃତ, ୨୭୯୫ ଜଣ ଆହତ ଓ ତିରିଶ ଜଣ ନିରୁଦ୍ଦିଷ୍ଟ ହୋଇଥିଲେ । ଏହି ୩୮୧୭ ଜଣଙ୍କ ମଧ୍ୟରେ ୨୧୪୦ ଜଣ ଇଂରାଜ ଓ ଅନ୍ୟମାନେ ଦେଶୀୟ ଥିଲେ । ବାହିନୀର ୩୭୮ ଟି ଘୋଡା ଆହତ ହୋଇଥିଲେ । ଲୁଟ ଦ୍ରବ୍ୟ ସବୁ ଏକତ୍ରିତ କରି ବଣ୍ଟନର ବ୍ୟବସ୍ଥା କରାଗଲା । ଦିଲ୍ଲୀ ନଗରୀ ଇଂରାଜମାନଙ୍କର ସମ୍ପୂର୍ଣ୍ଣ ଅଧିକାର ମଧ୍ୟରେ ରହିଲା ।

ପରିଶେଷରେ ୧୮୫୮ ମସିହା ଜୁଲାଇ ମାସରେ ବିଦ୍ରୋହୀଙ୍କର ବିଚାର ପାଇଁ ଗଠିତ ହୋଇଥିବା ଏକ ବିଶେଷ କମିଶନ (Special commission) ରେ ୨୦୨୫ ଜଣ ଦୋଷୀ ସାବ୍ୟସ୍ତ ହେଲେ ଓ ୧୨୮୧ ଜଣ ନିର୍ଦ୍ଦୋଷରେ ଖଲାସ ହେଲେ । ଦୋଷୀମାନଙ୍କ ମଧ୍ୟରୁ ୩୯୨ ଜଣଙ୍କୁ ମୃତ୍ୟୁ ଦଣ୍ଡ ଦିଆଗଲା । ସତାବନ ଜଣଙ୍କୁ ଆଣ୍ଡାମାନ ନିକୋବରକୁ କଳାପାଣିରେ ପଠାଗଲା । ୨୫୬ ଜଣଙ୍କୁ ୩ ବର୍ଷରୁ ୧୫ ବର୍ଷ ଭିତରେ ଜେଲ ଦଣ୍ଡର ଆଦେଶ କରାଗଲା ଓ ଅନ୍ୟ ୧୨୬ ଜଣଙ୍କୁ ଅଳ୍ପଦିନ ପାଇଁ କୋହଳ ଜେଲ ଦଣ୍ଡର ଆଦେଶ ଦିଆଗଲା । ବର୍ତ୍ତମାନ ନଗରୀରେ ଶାସନର ପୁନଃ ପ୍ରବର୍ତ୍ତନ ଅବଶ୍ୟକତା ଥିଲା । ଲୋକମାନେ କିଛି ସଂଖ୍ୟାରେ ଫେରୁଥିଲେ । ଏହି ପରିସ୍ଥିତିରେ ନଗରୀରେ ଯୁଦ୍ଧ ପ୍ରବୀଣ ସେନାପତି ଅପେକ୍ଷା କୂଟନୀତିଜ୍ଞର ବିଶେଷ ଆବଶ୍ୟକତା ଥିଲା । ଅକ୍ଟୋବର ଦୁଇ ତାରିଖ ଦିନ 'ଜେନେରାଲ ଉଇଲସନ'ଙ୍କୁ ସ୍ଥାନାନ୍ତରର ଆଦେଶ ଦିଆଯାଇ ଦୁଇ ମାସ ଛୁଟି ଦିଆଗଲା ଓ ତାଙ୍କ ସ୍ଥାନରେ 'ମିରଟ'ର ଜେନେରାଲ 'ପେନି' ଯୋଗଦାନ କରିବା ପାଇଁ ନିର୍ଦ୍ଦେଶ ଦିଆଗଲା । ଏହି ଆଦେଶ ପ୍ରାପ୍ତ ହୋଇ ଉଇଲସନ ବିଶେଷ ଖୁସିହେଲେ ।



# ବିହାର

'ଆଲ୍‌ହାବାଦ', 'ଆଗ୍ରା' ଆଦି ଉତ୍ତର ପଶ୍ଚିମାଞ୍ଚଳରେ ବିଦ୍ରୋହର ବହ୍ନି ଜଳି ଉଠିଥିବା ବେଳେ ବିହାର ନୀରବ ନଥିଲା । 'ବିହାର'ର ରାଜଧାନୀ 'ପାଟନା' ଥିଲା । 'ପାଟନା' ନିକଟରେ ଥିବା 'ଦାନାପୁର'ରେ ୭ମ,୮ମ ଓ ୪୦ତମ ଦେଶୀ ପଦାତିକ ବାହିନୀ ଶୃଙ୍ଖଳା ରକ୍ଷା ପାଇଁ ମହଜୁଦ୍ ଥିଲେ । ତା'ଛଡା ସେଠାରେ 'ମେଜର ଜେନେରାଲ ହଏଡ୍' (Major General Hoyd) ଙ୍କ ଅଧିନରେ ଏକ ଇଂରାଜି ରେଜିମେଣ୍ଟ ଓ ଇଂରାଜ କମାଣ ବାହିନୀ ମଧ୍ୟ ଥିଲା । 'ସିଗ୍‌ଓ୍ୱାଲି' ନାମକ ସ୍ଥାନର ମେଜର ହୋମସ୍ (Major Homnes)ଙ୍କ ଅଧିନରେ ୧୨ତମ ଦେଶୀ ପଦାତିକ ବାହିନୀ ଥିଲା । ପାଟନା ସହର ପ୍ରଭାବଶାଳୀ ଓ୍ୱାହାବି ନାମକ ଏକ ମୁସଲମାନ ସଂପ୍ରଦାୟର କେନ୍ଦ୍ରସ୍ଥଳ ଥିଲା । ଇଂରାଜମାନେ 'ପାଟନା'ରେ ବିଦ୍ରୋହର ଆଶଙ୍କା କରିଥିଲେ ।

'ପାଟନା'ରେ ଇଂରାଜମାନଙ୍କୁ କ୍ଷମତାରୁ ବିତାଡ଼ିତ କରି ସ୍ୱରାଜ୍ୟ ପ୍ରତିଷ୍ଠା ପାଇଁ ଏକ ଗୁପ୍ତ ସଂଗଠନ ଗଠିତ ହୋଇଥିଲା । ଏହି ଗୁପ୍ତ ସଂଗଠନରେ ପ୍ରଭାବଶାଳୀ ଓ ଧନୀକ ବଣିକ ଗୋଷ୍ଠୀ, ବ୍ୟାଙ୍କର ମାଲିକ ତଥା ଜମିଦାରମାନେ ଥିଲେ । ଏଣୁ ସଂଗଠନ କାର୍ଯ୍ୟ ପାଇଁ ଅର୍ଥର ଅଭାବ ନଥିଲା । ମୁଖ୍ୟତଃ ମୌଲବୀମାନେ ହିଁ ଏଥିର ନେତୃତ୍ୱ ନେଉଥିଲେ । କ୍ରମେ ଏମାନେ 'ଲକ୍ଷ୍ନୌ'ରେ ବିଦ୍ରୋହୀମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିପାରିଥିଲେ । 'ଦାନାପୁର'ରେ ଥିବା ଇଂରାଜ ନିଯୁକ୍ତ ଦେଶୀ ସିପାହୀମାନଙ୍କ ସହିତ ମଧ୍ୟ ଏ ଗୁପ୍ତ ସଂଗଠନର ସମ୍ପର୍କ ଥିଲା । ଏତଦ୍‌ବ୍ୟତୀତ ଏହି ଗୁପ୍ତ ସଂଗଠନରେ ସମାଜର ସବୁ ଶ୍ରେଣୀର ବ୍ୟକ୍ତିମାନେ ଥିଲେ । ଏମାନଙ୍କ ସହିତ ପୋଲିସମାନେ ଗୁପ୍ତରେ ବୁଝାମଣା ରଖିଥିଲେ । ବିହାରରେ ଥିବା ଜମିଦାର ଓ ରାଜାମାନଙ୍କ ଅଧିନରେ ଥିବା ସିପାହୀମାନଙ୍କୁ ଗୁପ୍ତରେ ସଂଗଠିତ କରାଯାଇଥିଲା । 'ଦାନାପୁର'ରେ ଥିବା ଇଂରାଜ ନିଯୁକ୍ତ ସିପାହୀମାନେ ରାତ୍ରି କାଳରେ ଗୁପ୍ତ ମନ୍ତ୍ରଣା ସଭା ଆଦି କରୁଥିଲେ । ଯଦି ଏହା କୌଣସି ଇଂରାଜର ଦୃଷ୍ଟିଗୋଚର ହେଉ ଥିଲା ସେମାନେ ତତ୍‌କ୍ଷଣାତ୍ ସେହି ଇଂରାଜକୁ ହତ୍ୟା କରୁଥିଲେ । ସଂଗଠନ ଦୃଢ ହେବାପରେ କାଳକ୍ରମେ ସେମାନେ 'ଦିଲ୍ଲୀ' ଓ 'ଲକ୍ଷ୍ନୌ'ରେ ଥିବା ଗୁପ୍ତ ସଂଗଠନ ସହିତ ସମ୍ପର୍କ ସ୍ଥାପନ କରିଥିଲେ । ଏପରିକି ବିଦ୍ରୋହ ଦିନ ସ୍ଥିର କରିବା ନିମନ୍ତେ ସେମାନେ ପରସ୍ପର ମଧ୍ୟରେ ଆଲୋଚନା ଆରମ୍ଭ କଲେ ।

ଏହି ସମୟରେ କମିଶନର 'ଟେଲର' (Tylor), ମିରଟ୍‌ରେ ବିଦ୍ରୋହର ସମ୍ବାଦ ପ୍ରାପ୍ତ ହେଲେ । ଏହା ସହିତ 'ଦାନାପୁର'ରେ ଥିବା ସିପାହୀମାନଙ୍କର ଗୁପ୍ତ ସଭା

ପରାମର୍ଶର ଖବର ମଧ୍ୟ ସେ ପ୍ରାପ୍ତ ହେଲେ । ତୁରନ୍ତ ରାଟ୍ରେ (Rattray)ଙ୍କ ଅଧିନରେ ଦୁଇଶହ ଶିଖ୍ ସୈନ୍ୟଙ୍କୁ ସେ 'ପାଟନା' ପ୍ରେରଣ କଲେ । ପଥ ମଧ୍ୟରେ ଏହି ଶିଖ୍ ବାହିନୀ ସମଗ୍ର ଜନତା ଓ ସବୁଶ୍ରେଣୀୟ-ଲୋକଙ୍କ ଦ୍ୱାରା ବିଶ୍ୱାସ ଘାତକ ରୂପେ ତିରସ୍କୃତ ହୋଇଥିଲେ । ଶିଖ୍ ସୈନ୍ୟମାନେ 'ପାଟନା'ରେ ପହଞ୍ଚି ଯିବାପରେ ଟେଲର ବିଦ୍ରୋହୀମାନଙ୍କ ପ୍ରତି ଦମନମୂଳକ ପନ୍ଥା ଅବଲମ୍ବନ କଲେ । 'ତିରହଟ୍' ଜିଲ୍ଲାରେ ଇଂରେଜ ନିଯୁକ୍ତ ଜମିଦାର "ୱାରିସ ଅଲ୍ଲୀ'ଙ୍କୁ ସନ୍ଦେହ କରି ତାଙ୍କର ଘର ଅଚାନକ ଘେରାଉ କରାଗଲା । ଘେରାଉ ସମୟରେ 'ୱାରିସ୍ ଅଲ୍ଲୀ' ଗୟାରେ ଥିବା 'ଅଲି କରିମ୍' ନାମକ ଗୁପ୍ତ ସଂଗଠନର ଜଣେ ନେତାଙ୍କୁ ଏକ ପତ୍ର ଲେଖୁଥିଲେ । ପତ୍ରଟି ଇଂରାଜମାନଙ୍କ ଦ୍ୱାରା ଜବତ୍ ହେଲା । ବିଦ୍ରୋହୀମାନଙ୍କ ସହିତ ସମ୍ପର୍କ ଥିବା ଯୋଗୁଁ ତାଙ୍କୁ ଫାଶୀ ଦଣ୍ଡ ହେଲା ଏବଂ ସେ ବିନା ଦ୍ୱିଧାରେ ସ୍ୱଧର୍ମ ଓ ସ୍ୱରାଜ୍ୟର ଧ୍ୱନି ଦେଇ ଫାଶୀଖୁଣ୍ଟରେ ବେକ ଗଳାଇ ଦେଲେ । 'ଅଲି କରିମ୍'ଙ୍କୁ ମଧ୍ୟ ଗିରଫ କରିବା ପାଇଁ ଆଦେଶ ଦିଆଗଲା । 'ଲୋୱିସ୍' (Lowis)ଙ୍କ ଅଧିନରେ ଏକ ଇଂରାଜ ସୈନ୍ୟଦଳ ପ୍ରେରଣ କରାଗଲା । 'ଲୋୱିସ' ଏକ ହାତୀ ଉପରେ ସବାର ହୋଇ ଗଲେ । କିନ୍ତୁ ଅଲି କରିମ୍ଙ୍କ ପକ୍ଷରେ ଜନ ସମର୍ଥନ ଥିବାରୁ ପଥ ମଧ୍ୟରେ ଲୋକମାନେ ଇଂରାଜ ସୈନ୍ୟଦଳଙ୍କୁ ଭୁଲ୍ ରାସ୍ତା ବତାଇ ଓ ଏଣୁତେଣୁ ନାନା କଥା କହି ବିଭ୍ରାନ୍ତ କରିଦେଲେ । ଏଣୁ ଇଂରାଜମାନେ ଏକ ଦେଶୀ ଭୃତ୍ୟଙ୍କୁ 'କରିମ୍'ଙ୍କ ସନ୍ଧାନରେ ପଠାଇଲେ । ତାର ମଧ୍ୟ ଅନ୍ତରରେ ସମର୍ଥନ ନଥିବା ଦୃଷ୍ଟିରୁ ସେ ଆଦେଶ ପାଳନ କରିବା ବାହାନାରେ ଏଣେତେଣେ ବୁଲାବୁଲି କରି ପରିଶେଷରେ ନିଜର ଅସଫଳତା ଜଣାଇଲା ।

ରାତ୍ରି କାଳରେ ବିଦ୍ରୋହର ନେତୃ ସ୍ଥାନୀୟ ବ୍ୟକ୍ତିମାନଙ୍କ ଗୃହରେ ଗୁପ୍ତସଂଗଠନର ମନ୍ତ୍ରଣା ସଭା ବସୁଥିଲା । 'ଟେଲର' ଏ ସମ୍ବନ୍ଧରେ ଜ୍ଞାତ ହୋଇ ଥିଲେ ମଧ୍ୟ କୌଣସି ନିର୍ଦ୍ଦିଷ୍ଟ ସମ୍ବାଦ ପାଇପାରୁ ନଥିଲେ । ଉକ୍ତ ବିଦ୍ରୋହୀ ନେତାମାନେ ଅତ୍ୟନ୍ତ ଜନପ୍ରିୟ ଥିବାହେତୁ ସର୍ବସାଧାରଣରେ ସେମାନଙ୍କୁ ଗିରଫ କରାଗଲେ ଗଣ ଆନ୍ଦୋଳନର ଆଶଙ୍କା ଥିଲା । ଏହି ପରିସ୍ଥିତିରେ 'ଟେଲର' ଏକ କୌଶଳ ଅବଲମ୍ବନ କଲେ । ସେ ବିଶିଷ୍ଟ ନେତୃ ସ୍ଥାନୀୟ ବ୍ୟକ୍ତିମାନଙ୍କୁ କିଛି ଆଲୋଚନା ନିମିତ୍ତ ରାତ୍ରି ଭୋଜନ ପାଇଁ ନିମନ୍ତ୍ରଣ କରି ମୁଖ୍ୟ ତିନିଜଣ ମୌଲବୀଙ୍କୁ ସେମାନଙ୍କର ନିରାପତ୍ତା ଆଳରେ ନିଜର ଘରେ ରଖିଦେଲେ । ତିନିଜଣ ମୌଲବୀଙ୍କୁ ବନ୍ଦୀ କଲାପରେ ସେ 'ପାଟନା' ସହରରେ, ଆଦେଶ ବଳରେ ସମସ୍ତଙ୍କୁ ନିଶସ୍ତ୍ର କଲେ ଓ ରାତ୍ରି ନଅଟା ପରେ କେହି ଗୃହମଧ୍ୟରୁ ବହିର୍ଗତ ନହେବା ପାଇଁ ଘୋଷଣାନାମା ଜାରି କଲେ । ଏହି ଘୋଷଣାନାମା ଫଳରେ ରାତ୍ରିକାଳରେ ବସିଥିବା ଗୁପ୍ତ ସଂଗଠନର ମନ୍ତ୍ରଣା ସଭା ବାଧାପ୍ରାପ୍ତ ହେଲା ।

ଏ ସମସ୍ତ କଟକଣା ସତ୍ତ୍ୱେ ଜୁଲାଇ ତିନି ତାରିଖ ଦିନ ସମସ୍ତ ମୁସଲମାନମାନେ 'ପୀରଅଲି'ଙ୍କ ଗୃହରେ ଏକତ୍ରିତ ହେଲେ । କିଛି ସମୟ ପରେ ସେମାନେ ଜଣ ଜଣ ହୋଇ .ଦିନ୍ ଦିନ୍. ଆଦି ଶବ୍ଦ କରି ବାହାରି ଆସିଲେ । ଏହିପରି ଭାବରେ ଦୁଇଶହ ଜଣ ବାହାରି ଆସି ଚର୍ଚ୍ଚକୁ ଆକ୍ରମଣ କଲେ । ଠିକ୍ ଏହିସମୟରେ ଲାଏଆଲ (Lyall) ନାମକ ଜଣେ ଇଂରାଜି କିଛି ଇଂରାଜି ସୈନ୍ୟଙ୍କ ସହ ଆସୁଥିବା ଦେଖାଗଲା । ତାଙ୍କୁ ପୀର ଅଲି ତୁରନ୍ତ ଗୁଳି କଲେ ଓ ତାଙ୍କର ଅନୁଚରମାନେ ସେ ଇଂରାଜିଙ୍କ ଶରୀରକୁ ଖଣ୍ଡ ବିଖଣ୍ଡ କରି ପକାଇଲେ । ଏହାପରେ 'ରାତ୍ରେ', କିଛି ଶିଖ୍ ସୈନ୍ୟ ଧରି ଆସିଲେ ଓ ଏକ ଛୋଟ ଧରଣର ଯୁଦ୍ଧ ପରେ ଅଳ୍ପ ସଂଖ୍ୟକ ବିଦ୍ରୋହୀଙ୍କୁ ବନ୍ଦୀ କଲେ । ସେହି ବନ୍ଦୀମାନଙ୍କ ମଧ୍ୟରେ ପୀର ଅଲି ମଧ୍ୟ ଥିଲେ । 'ପୀରଅଲି' 'ଲକ୍ଷ୍ନୌ'ର ଜଣେ ଉଗ୍ର ଦେଶପ୍ରେମୀ ଥିଲେ । ସେ ପାଟନା ଆସି ଏକ ବହି ଦୋକାନ ଖୋଲିଥିଲେ । ପୁସ୍ତକ ମାଧ୍ୟମରେ ବିଦ୍ରୋହର ପ୍ରଚାର ଓ ପ୍ରସାର କରାଇବା ତାଙ୍କର ଲକ୍ଷ୍ୟ ଥିଲା । ତାଙ୍କର ଲକ୍ଷ୍ନୌ ଓ ଦିଲ୍ଲୀରେ ଥିବା ଗୁପ୍ତ ସଂଗଠନ ସହିତ ସମ୍ପର୍କ ଥିଲା । ଶେଷରେ ତାଙ୍କର ବିଚାର ହୋଇ ଫାଶୀ ଦଣ୍ଡର ହୁକୁମ ଥିଲା । ସେ ଫାଶୀ ଖୁଣ୍ଟରେ ହସି ହସି ଚଢ଼ିଗଲେ । ଶେଷ ମୁହୂର୍ତ୍ତରେ ସେ ନିଜର ପୁତ୍ରନାମ ଉଚ୍ଚାରଣ କଲା ବେଳେ ସାମାନ୍ୟ ଦୁର୍ବଳ ହୋଇଗଲେ । ଏହାର ସୁଯୋଗ ନେଇ ଇଂରାଜି ଅଫିସର ଜଣକ ସେ ଅନ୍ୟ ବିଦ୍ରୋହୀଙ୍କର ନାମ ପ୍ରକାଶ କଲେ ତାଙ୍କୁ ଛାଡ଼ିଦିଆଯିବାକୁ କହିଲେ ମଧ୍ୟ ସେ ନିର୍ବିଚାରରେ ଫାଶୀ ଖୁଣ୍ଟରେ ନିଜର ବେକ ଗଳାଇଦେଲେ ।

'ପୀରଅଲି' ଜଣେ ଉଗ୍ର ଦେଶପ୍ରେମୀ ଥିଲେ ଏଣୁ ଜନତା ଓ ସିପାହୀ ମାନଙ୍କର ତାଙ୍କ ପ୍ରତି ଯଥେଷ୍ଟ ସମ୍ମାନ ବୋଧଥିଲା । ଏଣୁ ତାଙ୍କର ଫାଶୀ ଖବର ପାଇବା ମାତ୍ରେ 'ଦାନାପୁର'ରେ ଥିବା ଇଂରାଜି ନିଯୁକ୍ତ ଦେଶୀ ପଦାତିକ ବାହିନୀ ଜୁଲାଇ ପଚିଶ ତାରିଖ ଦିନ ବିଦ୍ରୋହ କରିଉଠିଲେ । ସେଠାରେ ଅବସ୍ଥିତ ଥିବା ଇଂରାଜି କମ୍ପାଣ ଓ ପଦାତିକ ବାହିନୀ ସମ୍ମୁଖରେ ସେମାନେ ଇଂରାଜି ସୈନ୍ୟ ପୋଷାକ କାଢ଼ି ଚିରି ପକାଇଲେ ଏବଂ 'ସୋନ୍‌ନଦୀ' ଆଡ଼କୁ ମାଡ଼ିଚାଲିଲେ । ଅବସ୍ଥାପିତ ମୁଖ୍ୟ ସେନାପତି 'ମେଜର ଜେନେରାଲ ଲଏଡ଼' ନିଜର ବାର୍ଦ୍ଧକ୍ୟ ଓ ଭୟ ହେତୁ ସେମାନଙ୍କୁ ଅନୁସରଣ କରି ଆକ୍ରମଣ କଲେ ନାହିଁ । ଏହି ଦେଶୀ ରେଜିମେଣ୍ଟ 'ସୋନ୍‌ନଦୀ' ଅତିକ୍ରମ କରି 'ଜଗଦୀଶପୁର' ଆଡ଼କୁ ଆଗେଇ ଚାଲିଲେ । ସେଠାରେ 'କୁନୱାର ସିଂହ' ନାମକ ଅଶୀ ବର୍ଷ ବୟସ୍କ ଏକ ପ୍ରଖ୍ୟାତ ଦେଶପ୍ରେମୀ ତଥା ରାଜପୁତ୍ ଯୋଦ୍ଧାଥିଲେ । 'ଶାହାବାଦ'ର ସମସ୍ତ ଜମିର ସେ ମାଲିକ ଥିଲେ ଓ 'ଜଗଦୀଶପୁର'ରେ ତାଙ୍କର ପ୍ରାସାଦ ଥିଲା । ସେ ଅଶୀ

ବର୍ଷ ବୟସ୍କ ହୋଇଥିଲେ ମଧ୍ୟ ତାଙ୍କର ଯୁବକ ସୁଲଭ ସାହସ ଓ ଶକ୍ତି ଥିଲା ଏବଂ ସେ ଜଣେ ପ୍ରବୀଣ ଯୋଦ୍ଧାଥିଲେ ।

ପୂର୍ବରୁ କମିଶନର 'ଟେଲର'-, 'କୁନଓ୍ୱାର ସିଂହ'ଙ୍କ ବିଷୟରେ ଅବଗତ ଥିଲେ । 'ଦିଲ୍ଲୀ', 'ଲକ୍ଷ୍ନୌ' ଓ 'ପାଟନା'ରେ ଥିବା ଗୁପ୍ତ ସଂଗଠନ ତଥା ନାନାସାହେବଙ୍କ ସହିତ 'କୁନଓ୍ୱାର'ଙ୍କ ସମ୍ପର୍କ ଥିବା ବିଷୟରେ ମଧ୍ୟ ସେ ଖବର ପାଇଥିଲେ । ଏଣୁ କୌଶଳ କ୍ରମେ 'କୁନ୍‌ଓ୍ୱାର ସିଂହ'ଙ୍କର ବୃଦ୍ଧାବସ୍ଥା ହେତୁ ତାଙ୍କୁ ନିରାପଦରେ ଓ ଆରାମରେ ରଖିବା ପାଇଁ, ତଥା ତାଙ୍କର ସାହଚର୍ଯ୍ୟ ପାଇବା ଜଣାଇ, ଟେଲର ତାଙ୍କୁ ନିମନ୍ତ୍ରଣ କଲେ । କିନ୍ତୁ ଚତୁର 'କୁନଓ୍ୱାର ସିଂହ' 'ଟେଲର'ଙ୍କର ଉଦ୍ଦେଶ୍ୟ ବିଷୟରେ ଅନୁମାନ କରି ନିଜର ବୃଦ୍ଧାବସ୍ଥା ହେତୁ ସେ ଯିବାକୁ ଅସମର୍ଥ ହେଉଛନ୍ତି ବୋଲି ଉତ୍ତରରେ ଜଣାଇଲେ । ଏହି ସମୟରେ 'ଦାନାପୁର'ର ବିଦ୍ରୋହୀବାହିନୀ ଆସି କୁନଓ୍ୱାର ସିଂହଙ୍କ ସହିତ ଯୋଗଦାନ କଲେ ।

'କୁନଓ୍ୱାର ସିଂହ' ଉତ୍‌କ୍ଷିପ୍ତ ସିଂହ ପରି ଉକ୍ତ ବାହିନୀର ନେତୃତ୍ୱ ନେଇ 'ଶାହାବାଦ'ର ମୁଖ୍ୟ ସହର 'ଆରା'କୁ ଯାତ୍ରା କଲେ । ସେଠାରେ ଇଂରାଜି ବନ୍ଦୀଶାଳା ଭଙ୍ଗ କରାଯାଇ ସେଥିରେ ଥିବା ବନ୍ଦୀ ମାନଙ୍କୁ ମୁକ୍ତ କରାଗଲା । ଇଂରାଜି ଖଜଣା ଖାନା ଲୁଟ କରାହେଲା । ଇଂରାଜି କାର୍ଯ୍ୟାଳୟ ମାନ ଧ୍ୱଂସ କରି ତାଉପରୁ ଇଂରାଜି ପତାକା ହଟାଇ ଦିଆଗଲା । ଏହାପରେ ସେମାନେ ନିକଟସ୍ଥ ଏକ କ୍ଷୁଦ୍ର ଦୁର୍ଗ ଆଡ଼କୁ ମାଡ଼ିଚାଲିଲେ । ଏହି ଦୁର୍ଗକୁ ଇଂରାଜିମାନେ ନିଜର ସମସ୍ତ ଅସ୍ତ୍ରଶସ୍ତ୍ର, ଗୁଳିଗୋଳା, ଖାଦ୍ୟ ଓ ଆବଶ୍ୟକୀୟ ଦ୍ରବ୍ୟ ସାମଗ୍ରୀର ଭଣ୍ଡାର କରିଥିଲେ ଓ ବିପଦ ସମୟରେ ଏଠାରେ ଆତ୍ମଗୋପନ କରିବାର ବ୍ୟବସ୍ଥା କରିଥିଲେ । ଏମାନଙ୍କର ସୁରକ୍ଷା ପାଇଁ 'ପାଟନା'ରୁ ଏକ ୫୦ଜଣିଆ ଶିଖ୍ ସୈନ୍ୟଦଳ ମଧ୍ୟ ସେଠାରେ ମହଜୁଦ ଥିଲେ । ଦୁର୍ଗ ମଧ୍ୟରେ ସିପାହୀମାନଙ୍କୁ ମିଶାଇ ସମୁଦାୟ ସଂଖ୍ୟା ପଞ୍ଚସ୍ତରୀ ଥିଲା । ବିଦ୍ରୋହୀମାନେ ନିଜର କମାଣ ଆଣି ଦୁର୍ଗ ଉପରକୁ ପ୍ରବଳ ଗୋଳାବର୍ଷଣ କଲେ ଓ କେତେକ ସ୍ଥାନରେ ଦୁର୍ଗ ଭିତରକୁ ସୁଡ଼ଙ୍ଗ ଖୋଳି ଡ଼ିନାମାଇଟ୍‌ରେ ତାହା ଉଡ଼ାଇଦେଲେ, ଏହିପରିସ୍ଥିତିରେ କିଛି ଦିନ ବିତିଯିବା ପରେ ଦୁର୍ଗମଧ୍ୟରେ ଅଶେଷ ଜଳାଭାବ ଅନୁଭୂତ ହେଲା । ସେଠାରେ ଥିବା ଶିଖ୍ ସୈନ୍ୟମାନେ ୨୪ଘଣ୍ଟା ପରିଶ୍ରମ କରି ଜଳାଭାବ ଦୂର କରିବା ନିମିତ୍ତ ଏକ କୂପ ଖନନ କରିପକାଇଲେ । ଦୁର୍ଗ ମଧ୍ୟରେ ଶିଖ୍ ସୈନ୍ୟ ଥିବା ଜାଣି ବିଦ୍ରୋହୀମାନେ ଅତ୍ୟନ୍ତ ଉତ୍‌କ୍ଷିପ୍ତ ହୋଇପଡ଼ିଲେ । ଏହିପରି ତିନିଦିନ ଧରି ଅବରୋଧ ଚାଲିଲା । ପରିଶେଷରେ ୨୯ତାରିଖ ଦିନ ଇଂରାଜିମାନେ ଦୂରରୁ କମାଣର ଧ୍ୱନି ଶୁଣିଲେ ଓ

ଅନ୍ୟଏକ ଇଂରାଜି ସେନା ତାଙ୍କର ସହାୟତା ପାଇଁ ଆସୁଥିବାର ଅନୁମାନ କରି ସେମାନେ ଉତ୍ସାହିତ ଓ ଉତ୍‌ଫୁଲ୍ଲିତ ହୋଇପଡ଼ିଲେ । 'ଦାନାପୁର'ରେ ଥିବା ୨୭୦ଜଣ ଇଂରାଜି ସୈନ୍ୟ ଓ ଏକଶହ ଶିଖ୍ ସୈନ୍ୟଙ୍କର ନେତୃତ୍ୱ ନେଇ 'କ୍ୟାପ୍‌ଟେନ୍ ଡ଼ନବାର' (Dunbar) ଆଗେଇ ଆସୁଥିଲେ । ପ୍ରାୟ ସନ୍ଧ୍ୟା ସାତଟା ବେଳକୁ 'ଡ଼ନ୍‌ବାର' ନିଜର ବାହିନୀ ସହ 'ସୋନନଦୀ' ଅତିକ୍ରମ କରି 'ଆରା'ର ନିକଟବର୍ତ୍ତୀ ହେଲେ । ସେମାନେ କ୍ରମେ ଜଙ୍ଗଲ ଆଦି ଅତିକ୍ରମ କରି ଆରାକୁ ପ୍ରବେଶ କରିବା ପଥରେ ଏକ ପୋଲ ଅତିକ୍ରମ କରିବାକୁ ବସିଲେ । ଡ଼ନବାର କେଉଁଠାରେ ହେଲେ ବିଦ୍ରୋହୀମାନଙ୍କର ଚିହ୍ନବର୍ଣ୍ଣ ଦେଖିବାକୁ ପାଇଲେ ନାହିଁ । ପ୍ରକୃତ ପକ୍ଷରେ ତାହା ଏକ ଅନ୍ଧକାର ପୂର୍ଣ୍ଣ ରାତ୍ରିଥିଲା ଓ ନିକଟସ୍ଥ ଏକ ବିଶାଳ ଆମ୍ର ବଗିଚାରେ ବିଦ୍ରୋହୀ ସିପାହୀମାନେ ଗରିଲା କୌଶଳ ଅବଲମ୍ବନ କରି ଲୁଚିକରି ରହିଥିବା ଫଳରେ ଇଂରାଜିମାନେ ଶତ୍ରୁର ଅବସ୍ଥିତି ସମ୍ବନ୍ଧରେ କିଛି ଧାରଣା କରିପାରୁନଥିଲେ । ଇଂରାଜି ସୈନ୍ୟମାନେ ଧଳା ପୋଷାକ ପରିଧାନ କରିବା ବେଳେ କୁନ୍‌ୱାର୍ ସିଂହଙ୍କ ସୈନ୍ୟମାନେ କଳା ପୋଷାକ ପିନ୍ଧିଥିଲେ । ଫଳରେ ସେମାନେ ଇଂରାଜି ସୈନ୍ୟଙ୍କର ସ୍ଥିତି ଜାଣି ପାରୁଥିବାବେଳେ ଇଂରାଜିମାନେ ଶତ୍ରୁମାନଙ୍କର ସ୍ଥିତି ଜାଣି ପାରୁନଥିଲେ । ହଠାତ୍ ଇଂରାଜି ସେନା ଉପରେ ବାମ, ଦକ୍ଷିଣ ଓ ସମ୍ମୁଖଭାଗରୁ ପ୍ରବଳ ଗୁଳିବର୍ଷଣ ହେଲା । ପ୍ରଥମେ 'ଡ଼ନବାର' ବିଦ୍ରୋହୀଙ୍କ ଗୁଳିର ଶିକାର ହେଲେ । ଇଂରାଜି ଓ ଶିଖ୍ ସୈନ୍ୟମାନେ ପ୍ରାଣ ଭୟରେ ଛତ୍ରଭଙ୍ଗ ଦେଲେ । ନିକଟରେ ଥିବା ଏକ ପ୍ରକାଣ୍ଡ ଖାତରେ ଆତ୍ମଗୋପନ କରି, ସେମାନେ କିଛିକ୍ଷଣ କୌଣସି ପ୍ରକାରେ ସେଠାରେ ରହିଲେ କିନ୍ତୁ ତତ୍‌ପରଦିନ ପ୍ରଭାତର ପ୍ରଥମ ଭାଗରେ ସେମାନେ ମୃତ ଓ ଆହତମାନଙ୍କୁ ତ୍ୟାଗ କରି 'ସୋନନଦୀ' ଦିଗକୁ ପଳାୟନ କଲେ । 'ସୋନନଦୀ'ର ତୀରକୁ ଆସି ସେମାନେ ନଦୀ ଅତିକ୍ରମ କରିବା ପାଇଁ କୌଣସି ନୌକା ପାଇଲେ ନାହିଁ । ପରେ କୌଣସି ପ୍ରକାରେ କିଛି ନୌକା ସଂଗ୍ରହ କରି ସେମାନେ ନଦୀ ଅତିକ୍ରମ କରିବାକୁ ବସିଲେ । କିନ୍ତୁ କିଛି ଡଙ୍ଗା ବାଲିଚଡ଼ାରେ ଲାଗିଗଲା । ଅନ୍ୟାନ୍ୟ ନୌକାଗୁଡ଼ିକରେ ବିଦ୍ରୋହୀମାନେ ନିଆଁ ଲଗାଇଦେଇଥିଲେ । ଏହି ପ୍ରକାରେ 'ଦାନାପୁର' ଘାଟରେ ଏହି ପରାଜିତ, କ୍ଳାନ୍ତ, ଶ୍ରାନ୍ତ, ତୃଷାର୍ତ୍ତ ଓ ଭଗ୍ନମନୋରଥ, ୪୧୫ଜଣଙ୍କ ମଧ୍ୟରୁ କେବଳ ପଚାଶ ଜଣ ମାତ୍ର ଫେରିଥିଲେ ।

'ମେଜର ଆଇରେ' (Major Eyre), ଏହି ପରାଜୟର ପ୍ରତିଶୋଧ ନେବାପାଇଁ 'ଆରା'ଦିଗକୁ ଆଗେଇ ଚାଲିଲେ । 'କୁନୱାର ସିଂହ'ଙ୍କର ବାହିନୀ 'ଡ଼ନବାର'ଙ୍କୁ ପରାସ୍ତ କରିବା ପରେ ଜୁଲାଇ ୨୯/୩୦ତାରିଖ ଦିନ ପ୍ରତ୍ୟାବର୍ତ୍ତନ କରୁଥିଲେ । ଏହି ସମୟରେ

ସେମାନେ 'ଆଇରେ'ଙ୍କର ଆସିବା ବାର୍ତ୍ତା ପାଇଲେ। 'କୁନଓ୍ୱାର' ତୁରନ୍ତ ସମସ୍ତ ସୈନ୍ୟଙ୍କୁ ସଂଗଠିତ କରି ବିଭିନ୍ନ ସାମରିକ ଗୁରୁତ୍ୱ ପୂର୍ଣ୍ଣ ସ୍ଥାନରେ ମୁତୟନ କଲେ। ଅଗଷ୍ଟ ଦୁଇ ତାରିଖ ଦିନ 'ବିବିଗଞ୍ଜ' ନାମକ ଏକ ଗ୍ରାମ ନିକଟରେ ଉଭୟ ପକ୍ଷର ଯୁଦ୍ଧ ହେଲା। ନିକଟରେ ଥିବା ଘଞ୍ଚ ଜଙ୍ଗଲରେ ଆସ୍ଥାନ ଜମାଇବା ପାଇଁ ଉଭୟ ପକ୍ଷରୁ ପ୍ରବଳ ଚେଷ୍ଟା କରାଗଲା। ଅବଶେଷରେ କୁନଓ୍ୱାର ସିଂହ ନିଜର ବାହିନୀ ସହ ଘନ ଜଙ୍ଗଲ ଅଞ୍ଚଳରେ ପ୍ରବେଶ କରି ସେଠାରୁ ଇଂରାଜି ସେନା ଉପରକୁ ପ୍ରବଳ ଗୁଳି ବର୍ଷଣ କଲେ। ଏହାର ପ୍ରତ୍ୟୁତ୍ତରରେ 'ଆଇରେ', ତିନୋଟି କମାଣରୁ ଶତ୍ରୁ ଉପରକୁ ଗୋଳାବର୍ଷଣ ପାଇଁ ଆଦେଶ ଦେଲେ। କୁନ୍‌ଓ୍ୱାର୍ ସିଂହଙ୍କର ସୈନ୍ୟମାନେ କମାଣର ସମ୍ମୁଖୀନ ହୋଇ ତାହାକୁ ନିଜର ଆୟତ୍ତକୁ ଆଣିବାକୁ ପ୍ରବଳ ଚେଷ୍ଟା ଚଳାଇଲେ। ଏହା ଦେଖି 'ଆଇ'ରେ ନିଜର ସୈନ୍ୟମାନଙ୍କୁ ସଙ୍ଗୀନ ମୁନରେ ବିଦ୍ରୋହୀ ମାନଙ୍କୁ ଚାର୍ଜ୍ଜ କରିବା ପାଇଁ ଅନୁମତି ଦେଲେ। ବିଦ୍ରୋହୀମାନେ ପରିଶେଷରେ ଛତ୍ରଭଙ୍ଗ ଦେଲେ। ବିଦ୍ରୋହୀ ମାନଙ୍କୁ ସମ୍ପୂର୍ଣ୍ଣ ରୂପେ ଘଉଡ଼ାଇ ଦେଇ 'ଆଇରେ' ଆରା, ଦୁର୍ଗରୁ ଇଂରାଜି ମାନଙ୍କୁ ଉଦ୍ଧାର କଲେ। ବିଦ୍ରୋହୀମାନେ ଆଠଦିନ କାଳ ଦୁର୍ଗକୁ ଅବରୋଧ କରି ରଖିଥିଲେ। ଏହି ଅବରୋଧ ସମୟରେ ସେମାନେ ଦୁଇଟି ଯୁଦ୍ଧର ସମ୍ମୁଖୀନ ହୋଇଥିଲେ। 'କୁନଓ୍ୱାର ସିଂହ' ଜଗଦୀଶପୁରକୁ ପଳାଇଆସିଲେ। ଜଗଦୀଶପୁରରେ ରହି ସେ ସୈନ୍ୟ ସଂଗ୍ରହ କରି ସଂଗଠିତ କରିବାକୁ ଲାଗିଲେ। ପୁନର୍ବାର 'ଆରା' ଉପରେ ଆକ୍ରମଣର ଆଶଙ୍କାରେ 'ଆଇରେ', 'ଆରା'ଠାରୁ ଜଗଦୀଶପୁର ଆଡ଼କୁ ଆଗେଇଗଲେ। ହଠାତ୍ ଏକ ବିଶାଳ ବାହିନୀର ସମ୍ମୁଖୀନ ହେବା ସମ୍ଭବ ନହେବାରୁ କୁନଓ୍ୱାର ସିଂହ ଗରିଲା କୌଶଳ ଅବଲମ୍ବନ କରି ଜଗଦୀଶପୁରରୁ ବାହାରି ଆସିଲେ ଓ ଚଉଦ ତାରିଖ ଦିନ 'ଆଇରେ' 'କୁନଓ୍ୱାର ସିଂହ'ଙ୍କର ପ୍ରାସାଦରେ ଛାଉଣୀ ପକାଇ ରହିଲେ। 'ଆଇରେ'ଙ୍କର ଆଦେଶର ଉକ୍ତ ପ୍ରାସାଦ ସହ ସମସ୍ତ ମନ୍ଦିର ଆଦି ଧ୍ୱଂସ କରିଦିଆଗଲା।



# କାନପୁରର ପତନ

ପୂର୍ବରୁ 'ଜେନେରାଲ ନେଲ୍'ଙ୍କର ଆଲ୍ହାବାଦରେ ବିଦ୍ରୋହ ଦମନ ବିଷୟରେ ବର୍ଣ୍ଣନା କରାଯାଇଛି । ଦମନ ପରେ 'ନେଲ୍'ଙ୍କର କାନପୁରକୁ ନିଜର ବାହିନୀ ସହ ଯିବାର ପ୍ରସ୍ତାବ ଥିଲା । କିନ୍ତୁ କମାଣ୍ଡର-ଇନ୍-ଚିଫ୍ ତାହାଙ୍କୁ ସୈନ୍ୟର ସ୍ୱଳ୍ପତା ଦୃଷ୍ଟିରୁ କାନପୁର ଅଭିଯାନରେ ଯାଇ ଅଯଥା ବିପଦ ବରଣ ନକରିବାକୁ ସତର୍କ କରିଦେଇଥିଲେ । ଏହିପରି ସମୟରେ ନେଲଙ୍କ ସ୍ଥାନରେ ବ୍ରିଗେଡିୟର 'ଜେନେରାଲ ହାଭଲକ୍' (Havelock) ନିଯୁକ୍ତ ହେଲେ । ହାଭଲକ୍ ଜୁନ୍ ପଚିଶ ତାରିଖ ଦିନ କଲିକତାରୁ ଯାତ୍ରା ଆରମ୍ଭ କରି ଜୁନ୍ ୩୦ତାରିଖ ସକାଳେ ଆଲ୍ହାବାଦରେ ପହଞ୍ଚିଲେ । ସେ ଜଣେ ଅଭିଜ୍ଞ ଓ କୁଶଳୀ ସେନାପତି ଥିଲେ । ସେ ପାରସ୍ୟ ଯୁଦ୍ଧରେ ବହୁ କୃତୀତ୍ୱ ଦେଖାଇଥିଲେ ଓ ଯୁଦ୍ଧ ବିରତି ପରେ ଭାରତକୁ ଆସିଥିଲେ ।

'ନେଲ୍' ପୂର୍ବରୁ କାନପୁର ଅଭିଯାନ ପାଇଁ ସମସ୍ତ ପ୍ରକାର ଆବଶ୍ୟକୀୟ ପ୍ରସ୍ତୁତି କରିଥିଲେ । ଯୋଜନା ଅନୁସାରେ ନାନା ଅସୁବିଧା ସତ୍ତ୍ୱେ ( ସେହି ସମୟରେ ଗ୍ରାମାଞ୍ଚଳ ଲୋକମାନେ ବିଶେଷ ଭାବରେ କଲେରାରେ ଆକ୍ରାନ୍ତ ହୋଇଥିଲେ, ଏଣୁ ଆବଶ୍ୟକୀୟ ଦ୍ରବ୍ୟାଦି ବହୁ କଷ୍ଟରେ ସଂଗୃହୀତ ହେଉଥିଲା ) ସେ ମେଜର ରିନଡ୍ (Major Renaud)ଙ୍କୁ ୩୦ତାରିଖ ଦିନ ସଂଧ୍ୟା ପାଞ୍ଚଟା ସମୟରେ ୪୦୦ଇଂରାଜି ସୈନ୍ୟ, ୩୦୦ଶିଖ୍ ସୈନ୍ୟ, ୧୨୦ସାମୟିକ ଦେଶୀ ଘୋଡସବାର, ଦୁଇଟି ନଅ ପାଉଣ୍ଡିଆ କମାଣ ସହ କାନପୁର ଅଭିମୁଖେ ପ୍ରେରଣ କଲେ । ଯାତ୍ରା ପୂର୍ବରୁ ଉକ୍ତ ବାହିନୀ ପାଇଁ 'ଜେନେରାଲ ନେଲ୍', ସମସ୍ତ ନିର୍ଦ୍ଦେଶ ନିଜେ ପ୍ରସ୍ତୁତ କରି ତାହା ହାଭଲକ୍ଙ୍କ ଦ୍ୱାରା ଗୃହୀତ କରାଇ ନେଇ ଥିଲେ । ତହିଁରେ ବାହିନୀକୁ ଆତୁଆଳରେ ରହି ଆଗେଇବା ପାଇଁ ନିର୍ଦ୍ଦେଶ ଥିଲା ଓ ରାସ୍ତାରେ ପଡୁଥିବା ବିଦ୍ରୋହୀ ମାନଙ୍କ ଦ୍ୱାରା ଅଧିକୃତ ସ୍ଥାନଗୁଡିକ ଦଖଲ ନେଇ ସେମାନଙ୍କର ଆଡ୍ଡାକୁ ଧ୍ୱଂସ କରିବା ପାଇ ନିର୍ଦ୍ଦେଶ ଦିଆଯାଇଥିଲା । ଏହା ସହିତ ଗ୍ରାମବାସୀମାନଙ୍କୁ ସ୍ପର୍ଶ ନକରି ଇଂରାଜି ଶାସନ ଉପରେ ସେମାନଙ୍କର ଆସ୍ଥା ସୃଷ୍ଟି କରିବା ଓ ଦିଲ୍ଲୀକୁ ଇଂରାଜିମାନେ ଅଧିକାର କରି 'ବାଦଶା'ଙ୍କୁ ବନ୍ଦୀ କରିଛନ୍ତି, ଆଦି ଗୁଜବ ସେମାନଙ୍କ ମଧ୍ୟରେ ପ୍ରଚାର କରିବାକୁ ନିର୍ଦ୍ଦେଶ ଥିଲା ।

'ମେଜର ରିନଡ୍', ବାହିନୀ ସହିତ କାନପୁର ଅଭିମୁଖେ ଯାତ୍ରା କଲା ପରେ ପରେ 'ଜେନେରାଲ ହାଭଲକ୍' ବିଦ୍ରୋହୀ ସୈନ୍ୟମାନଙ୍କ ଦ୍ୱାରା ଇଂରାଜି ହତ୍ୟା ଓ କାନପୁର ଦଖଲ ସମ୍ବାଦ ପ୍ରାପ୍ତ ହେଲେ ।

ଏହାପରେ 'ହାଭଲକ୍', 'ରିନଡ'ଙ୍କର ବାହିନୀର ଯାତ୍ରାକୁ ରୋକିବାକୁ ସ୍ଥିର କରି ତଦନୁସାରେ 'ରିନଡ୍'ଙ୍କୁ 'ଲୋହାଙ୍ଗା' ନାମକ ସ୍ଥାନରେ ଅପେକ୍ଷା କରିବାକୁ ଆଦେଶ ପ୍ରେରଣ କଲେ । ଏହା ପୂର୍ବରୁ 'ରିନଡ୍'ଙ୍କୁ, 'ହେନେରୀ ଲରେନ୍ସ୍' ମଧ୍ୟ ଅଭିଯାନ ବନ୍ଦ ରଖିବା ଓ ଆବଶ୍ୟକ ସ୍ଥଳେ ପ୍ରତ୍ୟାବର୍ତ୍ତନ କରିବାର ନିର୍ଦ୍ଦେଶ ଦେଇଥିଲେ । ଅନ୍ୟ ପକ୍ଷରେ ସାର୍ 'ପ୍ରାଟିକ୍ ଗ୍ରାଣ୍ଟ' (Sir Partic Grant) କାନପୁର ଖବରରେ ବିଶ୍ୱାସ କରୁନଥିବାରୁ 'ରିନଡ୍'ଙ୍କୁ କାନପୁରକୁ ଆଗେଇଯିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଏହାପରେ ହାଭଲକ୍‌ଙ୍କର ନିର୍ଦ୍ଦେଶ ପାଇବା ପରେ ରିନଡ୍‌ଙ୍କର ମାନସିକ ଦ୍ୱନ୍ଦ ସୃଷ୍ଟି ହେଲା । ଏଣୁ 'ରିନଡ୍' ଆଉ ସାତ ମାଇଲ ଆଗେଇଯାଇ 'କୁଟୁଙ୍ଘୀ' ନାମକ ସ୍ଥାନରେ କ୍ୟାପଟେନ୍ ସ୍ପରଜିନ୍ (Captain Spurgin)ଙ୍କ ସହ ମିଳିତ ହେଲେ । 'କ୍ୟାପ୍‌ଟେନ୍ ସ୍ପରଜିନ୍', ହାଉଲକ୍‌ଙ୍କ ନିର୍ଦ୍ଦେଶରେ ଜୁଲାଇ ଦୁଇ ତାରିଖରୁ ଆଲହାବାଦରୁ ସୈନ୍ୟମାନଙ୍କ ପାଇଁ ଆବଶ୍ୟକୀୟ ଖାଦ୍ୟ, ବ୍ୟାବହାରିକ ଦ୍ରବ୍ୟ ତଥା ଯୁଦ୍ଧୋପକରଣ ଓ କିଛି ସୈନ୍ୟ ନେଇ ଏକ ଷ୍ଟିମର ଯୋଗେ ଯାତ୍ରା ଆରମ୍ଭ କରିଥିଲେ । ଉଭୟେ 'ସ୍ୟାନି' ନାମକ ସ୍ଥାନକୁ ଯାତ୍ରା କଲେ ଓ ଜୁଲାଇ ବାର ତାରିଖ ଦିନ ହାଭଲକ୍‌ଙ୍କ ବାହିନୀ ସହିତ ମିଳିତ ହେଲେ ।

ଜୁଲାଇ ସାତ ତାରିଖ ଦିନ ଜେନେରାଲ ହାଭଲକ୍ ୧୦୦୦ଇଂରାଜି ସୈନ୍ୟ, 'ଲେଫଟ୍‌ନାଣ୍ଟ ବ୍ରେସର' (Lieutenant Brayser)ଙ୍କ ଅଧିନରେ ଥିବା ୧୩୦ଶିଖ୍ ସୈନ୍ୟ, ୧୮ଟି ସ୍ୱେଚ୍ଛାସେବୀ ଘୋଡାସବାର ଓ ଛଅଟି ତୋପସହ କାନ୍‌ପୁର ଅଭିମୁଖେ ଯାତ୍ରା କରିବା ସମୟରେ ପଥରେ 'ରିନଡ' ଓ 'ସ୍ପରଜିନ୍'ଙ୍କ ସହ ମିଳିତ ହେଲେ । ଏହାପରେ ସମୁଦାୟ ବାହିନୀ 'ହାଭଲକ୍'ଙ୍କ ନେତୃତ୍ୱରେ ଫତେପୁର ଠାରୁ ପାଞ୍ଚମାଇଲ ଦୂରରେ ଥିବା 'ଖାଗା' ନାମକ ସ୍ଥାନକୁ ଆଗେଇଲା । 'ହାଭଲକ୍' ଜାଣିଥିଲେ ଯେ କାନ୍‌ପୁରରୁ ଏକ ସୈନ୍ୟ ବାହିନୀ ତାଙ୍କୁ ବାଧା ଦେବାକୁ ଆଗେଇ ଆସୁଛି । କିନ୍ତୁ ତାହା ଏତେ ଶୀଘ୍ର ତାଙ୍କ ସମ୍ମୁଖସ୍ଥ ହେବ ବୋଲି ସେ ଆଶା କରିନଥିଲେ । କର୍ଣ୍ଣେଲ ଟାଇଟଲର୍ (Coronel Tytler)ଙ୍କ ଅଧିନରେ ଏକ ଛୋଟିଆ ଦଳକୁ ଆଗୁଆ ଶତ୍ରୁର ଶକ୍ତି, ଅବସ୍ଥିତି ଆଦି କଳନା କରିବା ପାଇଁ ପଠାଯାଇଥିଲା । ଛାଉଣୀରେ ସକାଳ ଜଳଖିଆ ପାଇଁ ବିଗୁଲ୍ ବାଜିବା ସଙ୍ଗେ ସଙ୍ଗେ 'ଟାଇଟଲର'ଙ୍କ ସହିତ ଆଗୁଆ ବାହିନୀରେ ଯାଇଥିବା ଘୋଡସବାର ମାନେ ଆସି ଖବର ଦେଲେ ଯେ, 'ନାନା ସାହେବ'ଙ୍କ ବାହିନୀ, ଛାଉଣୀ ନିକଟରେ ପହଞ୍ଚି ଗଲେଣି । ତାଙ୍କର ପଛପଟୁ ଗୁଳିଶବ୍ଦ ମଧ୍ୟ ଶୁଣାଯାଉଥିଲା । ଜେନେରାଲ ହାଭଲକ୍ ତୁରନ୍ତ ଦଶମିନିଟ୍ ଭିତରେ ସମସ୍ତଙ୍କୁ ପ୍ରସ୍ତୁତ ହୋଇଯିବାକୁ କହିଲେ ।

କାନପୁରରେ ଥାଇ 'ନାନାସାହେବ', 'ମେଜର ରିନଡ୍'ଙ୍କ ନେତୃତ୍ୱରେ ଏକ ବାହିନୀ ସହର ଅଭିମୁଖେ ଆସୁଥିବାର ଖବର ପାଇଥିଲେ । କିନ୍ତୁ ତାଙ୍କ ପଛରେ

'ହାଭଲକ୍' ଏକ ବିଶାଳ ସେନା ସହିତ ଆସୁଥିବାର ଖବର ସେ ଜାଣି ନଥିଲେ । ଏଣୁ, 'ରିନଡ'ଙ୍କର ବାହିନୀର ସଂଖ୍ୟାନ୍ୟୁନତା ଓ ଶକ୍ତି କଳନା କରି ଉକ୍ତ ବାହିନୀର ଅଗ୍ରଗତିକୁ ରୋକିବା ପାଇଁ ନାନା ସାହେବ ଜ୍ୱାଳା ପ୍ରସାଦ ଓ ଟୀକାସିଂହ ନାମକ ଦୁଇଜଣ ସେନାପତିଙ୍କ ଅଧିନରେ ଏକ ବାହିନୀ ପ୍ରେରଣ କଲେ । ସେମାନେ ଫତେଗଡରେ ପହଞ୍ଚି 'ହାଭଲକ୍' ପଠାଇଥିବା 'ମେଜର ରିନଡ୍'ଙ୍କ ବାହିନୀକୁ ଆକ୍ରମଣ କଲେ । ହଠାତ୍ ହାଭଲକ୍‌ଙ୍କର ବିଶାଳ ସେନା ରିନଡ୍‌ଙ୍କ ବାହିନୀ ସହିତ ମିଳିତ ହୋଇ ପ୍ରତ୍ୟାକ୍ରମଣ ଚଳାଇଲେ । ଏହା ଜୁଲାଇ ବାର ତାରିଖ ଦିନ ସଂଘଟିତ ହୋଇଥିଲା । ଏଥିରେ ଇଂରାଜି ମାନେ ବ୍ୟବହାର କରୁଥିବା ଏନଫିଲଡ ରାଇଫଲର ଗୁଳି ବହୁଦୂର ପର୍ଯ୍ୟନ୍ତ ଲକ୍ଷ୍ୟ ଭେଦ କରୁଥିଲା । ଏଣୁ ଇଂରାଜି ସେନ୍ୟମାନେ ଆଠ ଶହ ଗଜ ଦୂରରୁ ଗୁଳି କରି ବିଦ୍ରୋହୀ ସିପାହୀମାନଙ୍କୁ କାବୁ କରିପାରୁଥିଲେ । 'ମଡ୍' (Maude)ଙ୍କର କମାଣ ମଧ ବିଦ୍ରୋହୀମାନଙ୍କ ଉପରେ ଗୋଳାବର୍ଷଣରେ ଲାଗିଥିଲା । ଇଂରାଜି ମାନଙ୍କ ସମ୍ମୁଖ ଭାଗରେ ଥିବା ବିଦ୍ରୋହୀଙ୍କର ଘୋଡସବାର ବାହିନୀ, ଆକ୍ରମଣ ପାଇଁ ଉଦ୍ୟତ ହେଉଥିବା ସମୟରେ ମଡ୍‌ଙ୍କର (Maude), ପ୍ରବଳ ଗୋଳା ବର୍ଷଣ ଫଳରେ ଛତ୍ରଭଙ୍ଗ ଦେଲେ । ସେମାନେ ଦୁଇଟି ହାତୀ, ଦୁଇଟି କମାଣ ଛାଡିଦେଇଗଲେ । ସେନାର ପୃଷ୍ଠ ଭାଗରୁ ଗୋଟିଏ ହାତୀ ଉପରେ ବସି 'ତାନ୍ତ୍ୟା ଟୋପେ' ଆସୁଥିଲେ । ମଡ୍(Maude)ଙ୍କର ଗୋଳା ତାଙ୍କ ହାତୀର ଲାଞ୍ଜବାଟ ଦେଇ ଛାତିବାଟେ ବାହାରିଗଲା । ଫଳରେ ଆରୋହୀଙ୍କୁ ପକାଇ ଦେଇ ହାତୀଟି ଭୂପତିତ ହେଲା । ଇଂରାଜିମାନେ ଆଗେଇବା ସଙ୍ଗେ ସଙ୍ଗେ, ନାନାସାହେବଙ୍କ ବାହିନୀର କମାଣମାନ ହସ୍ତଗତ କଲେ ।

ଇଂରାଜିସୈନ୍ୟମାନେ 'ଫତେପୁର' ସହରଭିତରେ ପଶି ନାନାଙ୍କର ସୈନ୍ୟମାନଙ୍କୁ ଘଉଡାଇବାକୁ ଲାଗିଲେ ଓ ଅବଶିଷ୍ଟ ସେନା ଫତେପୁରଠାରୁ ଏକମାଇଲ ଦୂରରେ ରହିଲେ । ପ୍ରାୟ ଦିନ ଗୋଟାଏ ବେଳକୁ 'ଫତେପୁର' ସହର ଇଂରାଜିମାନଙ୍କର ସମ୍ପୂର୍ଣ୍ଣ ଅଧିକାରକୁ ଚାଲିଆସିଲା । 'ମଡ୍'ଙ୍କର କମାଣ 'ନାନାସାହେବ'ଙ୍କ ବାହିନୀର ବହୁ କ୍ଷତି କରିଥିଲା । ସେମାନେ ବାରଟି କମାଣ ହରାଇଥିଲେ । ଇଂରାଜି ସୈନ୍ୟମାନେ ସହର ଭିତରକୁ ପଶିବା ମାତ୍ରେ ବିଦ୍ରୋହୀ ମାନଙ୍କ ଦ୍ୱାରା ସହରରେ ଗଚ୍ଛିତ ଥିବା ବହୁ ଗୁଳିଗୋଳା, ବନ୍ଧୁକ, କମାଣ, ପୋଷାକ ପତ୍ର ଓ ଅନ୍ୟାନ୍ୟ ଆବଶ୍ୟକୀୟ ଦ୍ରବ୍ୟାଦି ଦଖଲକୁ ନେଲେ । ଏହାପରେ 'ହାଭଲକ୍'ଙ୍କର ବାହିନୀ 'ନାନାସାହେବ'ଙ୍କ ସୈନ୍ୟମାନଙ୍କ ପଛରେ ନଯାଇ 'ଫତେପୁର' ସହରରେ ଲୁଟତରାଜ ଆରମ୍ଭ କଲେ । ପୂର୍ବରୁ ବିଦ୍ରୋହର ନେତୃତ୍ୱ ନେଉଥିବା 'ହିକ୍‌ମତ୍‌ଉଲ୍ଲା'ଙ୍କୁ ହତ୍ୟା କରାଗଲା । ଇଂରାଜିମାନଙ୍କ ସହିତ ଥିବା

ଶିଖ୍ ସୈନ୍ୟମାନଙ୍କୁ ସମସ୍ତ ଗୃହରେ ଅଗ୍ନି ସଂଯୋଗ କରିବାକୁ ଆଦେଶ ଦିଆଗଲା । ବିଦ୍ରୋହ ସମୟରେ କୌଣସି ପ୍ରକାରେ ପ୍ରାଣ ରକ୍ଷା କରିଥିବା 'ଫତେପୁର'ର ପୂର୍ବତନ ଇଂରାଜି ମାଜିଷ୍ଟ୍ରେଟ ଶେରେର୍ (Sherer) ସହରର ଦାୟିତ୍ୱ ଗ୍ରହଣ କରି ପୂର୍ବ ପ୍ରତିଶୋଧ ନେବାକୁ ଲାଗିଲେ ।

'ଫତେପୁର' ସହର ଇଂରାଜି ମାନଙ୍କ ଦ୍ୱାରା ଭସ୍ମୀଭୂତ ହେବା ଖବର 'କାନପୁର'ରେ 'ନାନାସାହେବ'ଙ୍କ ପାଖରେ ପହଞ୍ଚିଲା । 'କାନପୁର' ଦରବାରରେ ପ୍ରବଳ ଉତ୍ତେଜନା ଦେଖାଦେଲା । ନାନାସାହେବଙ୍କ ନିର୍ଦ୍ଦେଶରେ ଏକ ବାହିନୀ ଯାଇ ପାଣ୍ଡୁ ନଦୀ ପାଖରେ ଇଂରାଜି ବାହିନୀ ସହ ମୁକାବିଲା କରି ସେମାନଙ୍କର ଗତିକୁ ପ୍ରତିହତ କରିବାପାଇଁ ଆଗେଇଗଲେ । ଏହା ସହିତ ଇଂରାଜି ଗୁପ୍ତଚର ଓ ଇଂରାଜି ବାହିନୀ ସହିତ ଗୁପ୍ତରେ ସଂପୃକ୍ତ ଥିବା ବ୍ୟକ୍ତିମାନଙ୍କୁ ଖୋଜି ଖୋଜି ହତ୍ୟା କରାଗଲା । ଅନୁସନ୍ଧାନରୁ ଜଣାପଡିଲାଯେ 'ବିବିଘର'ରେ ଥିବା ବନ୍ଦୀ ଇଂରାଜି ମହିଳାମାନେ, କିଛି ବ୍ୟକ୍ତିଙ୍କୁ ହାତ କରି ବାହାରେ ଥିବା ଇଂରାଜି ମାନଙ୍କ ସହିତ ଗୁପ୍ତ ପତ୍ର ବିନିମୟ କରୁଛନ୍ତି । ଏହା ଜଣାପଡିବା ମାତ୍ରେ, ସଂପୃକ୍ତ ବ୍ୟକ୍ତିମାନଙ୍କୁ ଓ ଅବଶିଷ୍ଟ ଆଶ୍ରିତ ଇଂରାଜିମାନଙ୍କୁ ହତ୍ୟା କରାଗଲା । ଏହାପରେ 'ବିବିଘର'କୁ ଘାତକମାନଙ୍କୁ ପଠାଇ, ସେଠାରେ ଥିବା ସମସ୍ତ ବନ୍ଦୀମାନଙ୍କୁ ନିର୍ମମ ଭାବରେ ହତ୍ୟାକରାଗଲା ।

ଚବିଶି ଘଣ୍ଟା ବିଶ୍ରାମ ପରେ 'ହାଭଲକ୍'ଙ୍କର ବାହିନୀ, 'କାନପୁର' ଦିଗକୁ ଆଗେଇ ଚାଲିଲେ । 'ଫତେପୁର'ରୁ ପ୍ରାପ୍ତ ଗୁଳିଗୋଳା ଓ କମାଣ ଆଦି ସେମାନଙ୍କ ମାନସିକ ବଳ ବଢାଇଦେଇଥିଲା । ସେମାନେ 'ପାଣ୍ଡୁ ନଦୀ' ତୀରକୁ ଯିବା ବେଳକୁ ଖବର ପାଇଲେ ଯେ ନିକଟସ୍ଥ 'ଆଓଙ୍ଗ' ଗ୍ରାମରେ ନାନାସାହେବଙ୍କର ସୈନ୍ୟମାନେ ପଥର ଉଭୟ ପାର୍ଶ୍ୱରେ ରହିଅଛନ୍ତି ଓ ସେମାନଙ୍କର ଦୁଇଟି କମାଣ ମଧ ମୁକାବିଲା ପାଇଁ ପ୍ରସ୍ତୁତ ଅଛି । 'ଆଓଙ୍ଗ'ରେ ଦୁଇଘଣ୍ଟା ଧରିଯୁଦ୍ଧ ହେବା ପରେ ନାନାଙ୍କ ଘୋଡସବାର ବାହିନୀ ଇଂରାଜିମାନଙ୍କର ଆବଶ୍ୟକୀୟ ସାମଗ୍ରୀ ଓ ଗୁଳିଗୋଳା ଆଦି ଲୁଟ୍ କରିବାକୁ ଚେଷ୍ଟା କରିଥିଲେ, କିନ୍ତୁ 'ମଡ୍'(Maude)ଙ୍କର କମାଣ ଆଗରେ ତିଷ୍ଠି ପାରିଲେ ନାହିଁ । ମଧ୍ୟାହ୍ନ ପୂର୍ବରୁ 'ଆଓଙ୍ଗ' ଇଂରାଜି ମାନଙ୍କ ଦ୍ୱାରା ଅଧିକୃତ ହେଲା । ମଡ୍ ଓ କ୍ୟାପଟେନ୍ ଫ୍ରାସର (Fraser) ସାଂଘାତିକ ଭାବରେ ଆହତ ହୋଇଥିଲେ ।

କିଛି ସମୟ ବିରତି ପରେ ଅଳ୍ପ କିଛି ଦୂରରେ ଥିବା 'ପାଣ୍ଡୁ ନଦୀ' ତୀରକୁ ହାଭଲକ୍, ତା'ଙ୍କର ବାହିନୀ ସହିତ ଆଗେଇଗଲେ । ଏହି ନଦୀର ଶଯ୍ୟା ସତୁରୀ ଫୁଟ

ଓସାର ଥିଲା । ବର୍ଷା ଜଳରେ ତାହା ଫୁଲି ଉଠିଥିଲା । ନଦୀ ପାରିହେବାର ଉପଯୁକ୍ତ ଉପକରଣ 'ହାଭଲକ୍'ଙ୍କ ପାଖରେ ନଥିଲା । ତେଣୁ ସେ, ବାହିନୀକୁ ଏକମାତ୍ର ଥିବା ସଂକୀର୍ଣ୍ଣ ପୋଲ ଦେଇ ନଦୀ ପାରିହେବାକୁ ନିର୍ଦ୍ଦେଶ ଦେଲେ । ନାନାସାହେବଙ୍କର ବାହିନୀ ଦୁଇଟି କମାଣ ସହିତ ନିକଟରେ ବ୍ରେଞ୍ଚ ଖୋଳି ରହିଥିଲେ । ଦୁଇଘଣ୍ଟା ଯାତ୍ରା ପରେ 'ହାଭଲକ୍'ଙ୍କ ବାହିନୀ ନଦୀର ନିକଟବର୍ତ୍ତୀ ହେଲେ । ହଠାତ୍ କିଛି ଚବିଶ ପାଉଣ୍ଡିଆ ଗୋଳା ବାହିନୀ ଉପରେ ପଡିଲା ଓ ଏଥିରେ ଦୁଇ ତିନି ଜଣ ପଦାତିକ ମୃତ୍ୟୁ ବରଣ କଲେ । 'ମଡ୍' ନଦୀର ଅପର ଦିଗକୁ ମୁହାଁଇ ଏକ କମାଣ ଖଞ୍ଜିଲେ ଓ ପୋଲର ଦୁଇ ପାର୍ଶ୍ୱରେ ଦୁଇ ଦିଗକୁ ମୁହଁ କରି ଦୁଇଟି କମାଣ ଖଞ୍ଜିଲେ । ପଦାତିକ ବାହିନୀର କିଛି ସୈନ୍ୟ ରାସ୍ତାର ଧାରରେ ଲାଇନ୍ କରି ଛିଡା ହୋଇ 'ନାନା'ଙ୍କର ସୈନ୍ୟମାନଙ୍କ ଆଡକୁ ଗୁଳିବର୍ଷଣ କଲେ । ଏହା ମଧ୍ୟରେ ସମୁଦାୟ ବାହିନୀ ଅସ୍ତ୍ରଶସ୍ତ୍ର ସହ ପୋଲ ପାରିହେବାକୁ ଲାଗିଲେ । ହଠାତ୍ ନାନାଙ୍କ ବାହିନୀର ଦୁଇଟି କମାଣ ଇଂରାଜିମାନଙ୍କର ହସ୍ତଗତ ହେଲା ଓ ସେମାନେ ପୋଲ ପାରି ହୋଇଯାଇ 'କାନପୁର' ସହରର କୋଡିଏ ମାଇଲ ପରିଧି ଭିତରକୁ ଚାଲିଆସିଲେ । 'ହାଭଲକ୍'ଙ୍କ ବାହିନୀରେ ବହୁ ସୈନ୍ୟ ଯୁଦ୍ଧରେ ମୃତ ହୋଇଥିଲେ ଓ ଅନ୍ୟମାନେ ପ୍ରବଳ ଖରା ଓ ଗରମ ତଥା ହଇଜାରେ ଆକ୍ରାନ୍ତ ହୋଇ ମୃତ୍ୟୁ ବରଣ କରିଥିଲେ । ଏହିପରି ଭାବରେ ତାଙ୍କର ସୈନ୍ୟମାନଙ୍କ ସଂଖ୍ୟା ଧୀରେ ଧୀରେ କମିବାକୁ ଲାଗିଲା ।

ଏଣୁ 'ହାଭଲକ୍', 'ନେଲ୍'ଙ୍କୁ ପ୍ରାୟ ୩୦୦ ସୈନ୍ୟ ଦେଇ 'କାନପୁର' ଆସିବାକୁ ନିର୍ଦ୍ଦେଶ ଦେଲେ । 'ନେଲ୍', ୨୮୭ଜଣ ସୈନ୍ୟଙ୍କୁ ନେଇ 'କାନପୁର' ଅଭିମୁଖେ ଯାତ୍ରା କଲେ ।

'ପାଣ୍ଡୁ ନଦୀ' ଯୁଦ୍ଧରେ ପରାସ୍ତ ହୋଇ 'ନାନାସାହେବ', 'କାନପୁର'ରେ ସେନାପତିମାନଙ୍କର ମନ୍ତ୍ରଣା ସଭା ଡକାଇଲେ । 'ପାଣ୍ଡୁ ନଦୀ' ଯୁଦ୍ଧରେ ତାଙ୍କ ଭ୍ରାତା 'ବାଳାସାହେବ ପେଶୱା'ଙ୍କ କାନ୍ଧରେ ଗୁଳିମାଡ ହୋଇଥିଲା । 'ଯୁଦ୍ଧ ମନ୍ତ୍ରଣା ସଭା'ରେ ସ୍ଥିର ହେଲା ଯେ ଇଂରାଜି ଆକ୍ରମଣ କୁ ସମସ୍ତ ପ୍ରକାରେ ପ୍ରତିହତ କରାଯିବ ।

'ହାଭଲକ୍', କ୍ରମେ କାନପୁରଠାରୁ ଛଅମାଇଲ ଦୂରରେ ଥିବା ମହାରାଜପୁରରେ ଆସି ପହଞ୍ଚିଲେ । ସେଠାରେ ସେ ଗୁପ୍ତଚରମାନଙ୍କ ହାତରୁ ଖବର ପାଇଲେ ଯେ, 'ନାନାସାହେବ' 'କାନପୁର' ପ୍ରବେଶ ପଥରେ, ପାଞ୍ଚହଜାର ସୈନ୍ୟଙ୍କ ସହ ପ୍ରତିରୋଧ ପାଇଁ ପ୍ରସ୍ତୁତ ହୋଇ ରହିଛନ୍ତି । ଗ୍ରାଣ୍ଡ ଟ୍ରଙ୍କ ରୋଡ ଓ କାଣ୍ଟନମେଣ୍ଟ

ରୋଡର ମିଳନ ସ୍ଥଳଠାରୁ ଆଠଶହ ଗଜ ପଛରେ ଟ୍ରେଞ୍ଚ ଖୋଳି 'ନାନାସାହେବ', ସୈନ୍ୟମାନଙ୍କ ସହ ଅବସ୍ଥାପିତ ହୋଇଥିଲେ। ତାଙ୍କର ସମ୍ମୁଖ ଭାଗରେ କିଛି ଗ୍ରାମମାନ ଥିଲା ଓ ବାମଦିଗରେ, ଗଙ୍ଗାନଦୀର ଦକ୍ଷିଣରେ ଏକ ମାଇଲ ଦୂରରେ କିଛି ସେନାନୀ ଚବିଶ ପାଉଣ୍ଡିଆ କମାଣ ସହ ଅବସ୍ଥାପିତ ହୋଇଥିଲେ। ସେନାର ମଧ୍ୟଭାଗ ବାମ ଦିଗରୁ ପୃଥକ୍ ରହି ଗ୍ରାମରେ ଅବସ୍ଥାପିତ ହୋଇଥିଲା । ଏଠାରେ 'ନାନାସାହେବ' ଚବିଶ ପାଉଣ୍ଡିଆ ଓ ଛଅ ପାଉଣ୍ଡିଆ କମାଣ ରଖିଥିଲେ ।

'ନାନା'ଙ୍କର ସେନାର ମଧ୍ୟଭାଗ ଓ ଦକ୍ଷିଣ ଭାଗର ମଝିରେ ଗ୍ରାଣ୍ଡଟ୍ରଙ୍କ୍ ରୋଡ ଯାଇଥିଲା । ଏହାକୁ ରକ୍ଷା କରିବା ପାଇଁ ଏକ ଗ୍ରାମରେ ଦୁଇଟି ନଅ ପାଉଣ୍ଡିଆ କମାଣ ରଖାଯାଇଥିଲା । ବାମ ଓ ଦକ୍ଷିଣ ଦିଗର ସେନା, ମଧ୍ୟ ଭାଗଠାରୁ କିଛି ଆଗରେ ଥିଲେ । ଏଣୁ ନାନାସାହେବଙ୍କର ଏହି ବ୍ୟୂହ ରଚନା ଅର୍ଦ୍ଧଚନ୍ଦ୍ରାକାର ହୋଇଥିଲା । ବାମ ଭାଗର କିଛି ଉତ୍ତର ଦିଗକୁ 'ନାନାସାହେବ' ତାଙ୍କର ଘୋଡାସବାର ବାହିନୀ ଓ ପଦାତିକ ବାହିନୀକୁ ଅବସ୍ଥାପିତ କରିଥିଲେ ।

'ନାନାସାହେବ'ଙ୍କର ବ୍ୟୂହରଚନା ଦେଖି 'ହାଭଲକ୍' ଅନୁଭବ କଲେ ଯେ ସିଧାସଳଖ ଲଢାଇରେ ଶତ୍ରୁକୁ ଜିଣିବା ଅସମ୍ଭବ । ଏଣୁ, ସେ ବାମଦିଗରୁ ଆକ୍ରମଣ ଆରମ୍ଭ କରିବା ସ୍ଥିର କଲେ। ଅପରାହ୍ନ ୧.୩୦ ମିନିଟ୍‌ରେ 'ହାଭଲକ୍', ନିଜର ବାହିନୀ ସହିତ ଆଗେଇଚାଲିଲେ । ଦୁଇଟି କମାଣ ସହିତ ପ୍ରଥମେ ମାଡ୍ରାସ କମାଣ ବାହିନୀ, ପଛରେ 'ମଡ୍'ଙ୍କର ଅସ୍ତ୍ରଶସ୍ତ୍ରସମ୍ଭାର ସହ ଛଅଟି କମାଣ ଓ ପଦାତିକ ବାହିନୀ ଏବଂ ଏହାସହିତ ୬୪ତମ ଓ ୮୪ତମ ପଦାତିକ ବାହିନୀ ତଥା 'ଫିରୋଜପୁର' ରେଜିମେଣ୍ଟ ଥିଲେ ।

'ନାନାସାହେବ'ଙ୍କ ବ୍ୟୂହ ରଚନାସ୍ଥାନ ଠାରୁ ଏକ ମାଇଲ ପାଖାପାଖି, ହାଭଲକ୍‌ଙ୍କର ବାହିନୀ ଆଗେଇ ଆସିଲେ ଏବଂ ହଠାତ୍ ଦକ୍ଷିଣ ଦିଗକୁ ମୁହାଁଇଲେ । ହାଭଲକଙ୍କର ଘୋଡାସବାର ବାହିନୀ ରାସ୍ତାଉପରେ ସିଧାସଳଖ ଆଗେଇବାକୁ ଲାଗିଲେ । ଏହା ଶତ୍ରୁମାନଙ୍କ ମଧ୍ୟରେ ଇଂରାଜିମାନେ ସିଧାସଳଖ ସମ୍ମୁଖ ଦିଗରୁ ଆକ୍ରମଣ କରିବା ଧାରଣା ସୃଷ୍ଟି କରାଇବା ଉଦ୍ଦେଶ୍ୟରେ କରାଯାଇଥିଲା । ପୂର୍ବଭାଗର ସୈନ୍ୟମାନେ ଧୀରେ ଧୀରେ ନିକଟସ୍ଥ ଆମ୍ବ ଜଙ୍ଗଲରେ ପ୍ରବେଶ କରିବାକୁ ଲାଗିଲେ। ଶତ୍ରୁ ଗୁଳିଠାରୁ ବଞ୍ଚାଇବା ପାଇଁ ଏହା ପ୍ରକୃଷ୍ଟ ସ୍ଥାନ ଥିଲା । ବର୍ତ୍ତମାନ ନାନାସାହେବ ଶତ୍ରୁଙ୍କର ଆକ୍ରମଣର ଯୋଜନା ଅନୁମାନ କରିନେଲେ। ଏଣୁ 'ନାନାସାହେବ', କମାଣରୁ

ଗୁଳିବର୍ଷଣର ନିର୍ଦ୍ଦେଶ ଦେଇ ଘୋଡାସବାର ବାହିନୀକୁ ଆଗକୁ ଆକ୍ରମଣ ପାଇଁ ପଠାଇଦେଲେ । ଇଂରାଜି ବାହିନୀ ଆଗେଇଯାଇ ବାମ ଦିଗରେ ଥିବା 'ନାନା'ଙ୍କ ବାହିନୀକୁ ହଠାତ୍ ଆକ୍ରମଣ କଲେ । 'ନାନାସାହେବ'ଙ୍କ ସେନାପତି ମାନଙ୍କୁ ଏହା ଅଡୁଆରେ ପକାଇଦେଲା, କାରଣ ସେମାନେ ତାଙ୍କ ଦକ୍ଷିଣ ଓ ମଧ୍ୟ ଭାଗରେ ଥିବା କମାଣ ଗୁଡିକ ବାମ ଦିଗରେ ଥିବା ବାହିନୀର କ୍ଷତି ହେବା ଭୟରେ ଚାଳନା କରିପାରିଲେ ନାହିଁ । 'ହାଭଲକ୍'ଙ୍କର ତୋପଗୁଡିକ ମଧ୍ୟ ଆବୁଡା ଖାବୁଡା ରାସ୍ତାରେ ଆଗେଇ ନେବାରେ ବିଳମ୍ବ ଘଟିଲା । 'ନାନାସାହେବ'ଙ୍କ ସେନାପତି ମାନେ ଏହି ବିଳମ୍ବର ସଦ୍‌ବ୍ୟବହାର କଲେ ଓ ସେମାନେ ସମସ୍ତ କମାଣ ଏକତ୍ରିତ କରି ତାହା ଇଂରାଜିମାନଙ୍କ ଉପରକୁ ଚାଳନା କଲେ ।

'ହାଭଲକ୍' ୭୮ତମ ଇଂରାଜି ବାହିନୀକୁ କର୍ଣ୍ଣେଲ ହାମିଲଟନ୍ (Colonel Hamilton) ଙ୍କ ନେତୃତ୍ୱରେ ସଙ୍ଗୀନ ମୂନରେ ଆକ୍ରମଣ କରିବାକୁ ଆଦେଶ ଦେଲେ । ସେମାନେ ତୁରନ୍ତ ଏକ ଗ୍ରାମ ଦଖଲକୁ ନେଲେ ଓ ଶତ୍ରୁ ପକ୍ଷର କିଛି କମାଣ ଜବତ୍ କଲେ । ସେହି ସମୟରେ ୬୪ତମ ଇଂରାଜି ବାହିନୀ ଦ୍ୱାରା ଅନ୍ୟ ଏକଗ୍ରାମ ମଧ୍ୟ ଅଧିକୃତ ହେଲା । ନାନାସାହେବଙ୍କର ଦଳେ ସୈନ୍ୟ ଅନନ୍ୟୋପାୟ ହୋଇ 'ରାମପୁର' ଆଡକୁ ପଳାଇଗଲେ । ଆଉ ଏକ ଦଳ ସୈନ୍ୟ ଆସି ମଧ୍ୟ ଭାଗରେ କମାଣ ସହିତ ପ୍ରସ୍ତୁତ ହୋଇ ରହିଲେ । କିନ୍ତୁ ସେମାନଙ୍କୁ ଇଂରାଜି ୭୮ତମ ଓ ୬୪ତମ ବାହିନୀ ସେଠାରୁ ଘଉଡାଇ ଦେଲେ । 'ମଡ୍' ତାଙ୍କର କମାଣ ଦ୍ୱାରା ଅନ୍ୟ କମାଣ ଗୁଡିକୁ ନୀରବ କରିଦେଲେ । ଏହିପରି ଚତୁର୍ଦ୍ଦିଗରୁ ନାନାସାହେବଙ୍କର ବାହିନୀର ପ୍ରତିରୋଧକୁ ଭଙ୍ଗ କରାଗଲା ।

ନାନାସାହେବଙ୍କର ସୈନ୍ୟମାନେ ପଛଘୁଞ୍ଚା ଦେବା ସମୟରେ ହଠାତ୍ ଏକ ଚବିଶ ପାଉଣ୍ଡିଆ ଗୋଳା ଇଂରାଜି ବାହିନୀ ଉପରେ ପଡିଲା ଓ ନାନାସାହେବଙ୍କର ପଦାତିକ ଓ ଘୋଡସବାର ବାହିନୀ ସଙ୍ଗେ ସଙ୍ଗେ ଏକତ୍ରିତ ହୋଇଗଲେ । ଇଂରାଜି ବାହିନୀକୁ ଖୋଲା ଯାଗାରେ ସମ୍ମୁଖ ଭାଗରୁ ସେମାନେ ଗୁଳି ଚଳାଇବାକୁ ଲାଗିଲେ । ଏହା ଦ୍ୱାରା ବହୁ ଇଂରାଜି ସୈନ୍ୟ ମୃତାହତ ହେଲେ । ଏଣୁ, ପଦାତିକ ବାହିନୀର ସୁରକ୍ଷା ପାଇଁ, ହାଭଲକ୍, 'ମଡ୍'ଙ୍କୁ କମାଣ ସହ ଆଗେଇଯିବା ପାଇଁ ନିର୍ଦ୍ଦେଶ ଦେଲେ । ନାନାସାହେବଙ୍କ କମାଣକୁ ନୀରବ କରିବା ପାଇଁ ପ୍ରବଳ ଗୋଳାବର୍ଷଣ ହେଲା ଓ ଇଂରାଜି ବାହିନୀ, ଗୋଳା ବର୍ଷଣର ଛାୟା ତଳେ ତଳେ 'ନାନାସାହେବ'ଙ୍କର ବାହିନୀ ଆଡକୁ ଦୃଢଭାବରେ ଆଗେଇବାକୁ ଲାଗିଲେ । ସେମାନଙ୍କ ମଧ୍ୟରୁ ଅନେକ ମୃତାହତ

ହେଉଥିଲେ । ଜେନେରାଲଙ୍କର ଘୋଡାଟି ମଧ୍ୟ ଗୋଳା ବର୍ଷଣରେ ମୃତ୍ୟୁ ବରଣ କଲା । ଏସମସ୍ତ ସତ୍ତ୍ୱେ ସେମାନେ ଦୃଢତାର ସହିତ ଆଗେଇଯାଇ, ବିଦ୍ରୋହୀ ବାହିନୀକୁ ସଙ୍ଗୀନରେ ଚାର୍ଜ କରିବାକୁ ଲାଗିଲେ ଓ ସେମାନଙ୍କୁ ହତ୍ୟା କରିବାକୁ ଲାଗିଲେ । ଅବସ୍ଥା ଦୃଷ୍ଟିରୁ 'ନାନାସାହେବ' ବାହିନୀ ସହ 'ବ୍ରହ୍ମାବର୍ତ୍ତ' ଦିଗରେ ପଳାୟନ କଲେ । କିନ୍ତୁ ଉକ୍ତ ଯୁଦ୍ଧରେ ତାଙ୍କର ସୈନ୍ୟମାନଙ୍କର ବୀରତ୍ୱ, ଗୁଳି ଗୋଳା ଚାଳନା ଓ ରଣସଜ୍ଜା ଅତୁଳନୀୟ ଥିଲା ବୋଲି ସ୍ୱୟଂ 'ହାଭଲକ୍' ମଧ୍ୟ ପରକ୍ଷଣରେ ସ୍ୱୀକାର କରି ଭୂୟସୀ ପ୍ରଶଂସା କରିଛନ୍ତି । 'ହାଭଲକ୍'ଙ୍କ ଭାଷାରେ, "At Pandu Nadi the battle was short but spirited, At the battle of Kanpur, except for first few moments, Nana Sahib's men fought every inch of the ground and pushed back by the High Landes, tried to reform three times, and "fired with such precision and determination ' as was seldom witnessed,"(Forrest, state papers, ii,88)

ଜୁଲାଇ ମାସ ସତର ତାରିଖ ଦିନ 'ହାଭଲକ୍', ନିଜ ବାହିନୀ ସହ 'କାନପୁର' ସହର ମଧ୍ୟରେ ଅବସ୍ଥାପିତ ହୋଇ, ସମଗ୍ର ସହରକୁ ଲୁଟ୍ କରିବା ପାଇଁ ସୈନ୍ୟମାନଙ୍କୁ ଆଦେଶ ଦେଲେ । ସୈନ୍ୟମାନେ କ୍ଷୁଧିତ ପଶୁ ପରି ନିରୀହ ନାଗରିକମାନଙ୍କ ଉପରକୁ ଝାମ୍ପି ପଡିଲେ । ବିଦ୍ରୋହୀମାନଙ୍କୁ ଠାବ କରି ଫାଶୀ ଦିଆଗଲା । ନାନାସାହେବଙ୍କ ଅଧିନରେ କାମ କରୁଥିବା କାନପୁରର ମାଜିଷ୍ଟ୍ରେଟଙ୍କୁ ଧରାଯାଇ ଅଣାଗଲା । ତାଙ୍କର ବିଚାର ହୋଇ ଫାଶୀ ହୁକୁମ ହେଲା । ସେ ନିର୍ବିକାର, ଶାନ୍ତ ଓ ଉଦାସୀନ ଭାବରେ ଯାଇ ଫାଶୀ ବରଣ କଲେ । ଏହି ପ୍ରକାରେ ସହରରେ ନିର୍ବିଚାରରେ ହତ୍ୟା ଓ ଲୁଟ୍ ତରାଜର ଲୀଳା ଚାଲିଲା । 'ବିବିଘର'ରେ ପଡିଥିବା ଶୃଙ୍ଖଳା ରକ୍ତରୁ, ପୂର୍ବରୁ ଆଶ୍ରିତ ଇଂରାଜି ମହିଳା ଓ ପୁରୁଷମାନଙ୍କୁ ହତ୍ୟା କରାଯାଇଥିବା, ସେମାନେ ଅନୁମାନ କରି, ତୁରନ୍ତ କାନପୁରର ବ୍ରାହ୍ମଣମାନଙ୍କୁ ଧରିଆଣି, ଉକ୍ତ ରକ୍ତଦାଗ ଗୁଡିକୁ ଚାଟି ସଫା କରିବାକୁ ଆଦେଶ ଦେଲେ । ପରେ ପରେ ସେହି ବ୍ରାହ୍ମଣ ମାନଙ୍କୁ ସେହିଠାରେ ନିର୍ମମ ଭାବରେ ହତ୍ୟା କରାଗଲା । ଏହି ପ୍ରକାରେ ଇଂରାଜିମାନେ ଚରମ ପ୍ରତିଶୋଧ ନେବାକୁ ଲାଗିଲେ । ଜୁଲାଇ ଚଉଦରେ 'ନେଲ୍'ଙ୍କୁ ବ୍ରିଗେଡିୟ ଜେନେରାଲ ପଦବୀ ମିଳିଲା । ସେ ଷୋହଳ ତାରିଖ ଦିନ ନିଜର ବାହିନୀ ସହ ଆଲ୍ହାବାଦରୁ ଆସି କାନପୁର ଅଭିମୁଖେ ଯାତ୍ରାକଲେ ଓ ୨୦ତାରିଖରେ କାନପୁରରେ ପହଞ୍ଚିଲେ । ହାଭଲକ୍‌ଙ୍କ ସହ ସେ ସମକ୍ଷମତା ସମ୍ପନ୍ନ ହୋଇଥିବାରୁ ବାହିନୀର ନେତୃତ୍ୱ କ୍ଷେତ୍ରରେ ଦ୍ୱନ୍ଦ ଉପୁଜିବା ଆଶଙ୍କା କରି 'ହାଭଲକ୍' ଶୃଙ୍ଖଳା ଦୃଷ୍ଟିରୁ 'ନେଲ'ଙ୍କୁ କୌଣସି ଆଦେଶ ଦେବାକୁ ନିଷେଧ କଲେ, ଓ ପରେ ସେ ତାଙ୍କ ହାତରେ କମାଣ୍ଡ ଅର୍ପଣ କରି, ଲକ୍ଷ୍ନୌ ଅଭିମୁଖେ ଯାତ୍ରା କରିବାକୁ ମନସ୍ଥ କଲେ ।

ପୂର୍ବରୁ 'ହାଭଲକ୍' କାନପୁର ସହରକୁ ନାନାସାହେବଙ୍କର ଭବିଷ୍ୟତ ଆକ୍ରମଣରୁ ବଞ୍ଚାଇବା ପାଇଁ ଗ୍ରାଣ୍ଡ ଟ୍ରଙ୍କ ରୋଡ ଓ କାନପୁରର ସେନା ଛାଉଣୀକୁ ପଡିଥିବା ରାସ୍ତାର ମିଳନ ସ୍ଥଳ 'ନବାବଗଞ୍ଜ' ନାମକ ସ୍ଥାନରେ ନିଜର ସାମରିକ ଆସ୍ଥାନ ଦୃଢ କରିଥିଲେ । 'ହାଭଲକ୍' ଖବର ପାଇଥିଲେ ଯେ, 'ନାନା' ସୈନ୍ୟସଂଗ୍ରହ କରି ଆକ୍ରମଣ ପାଇଁ ଏକ ବିରାଟ ବାହିନୀ ପ୍ରସ୍ତୁତ କରୁଛନ୍ତି । ସେ ଏ ବିଷୟ ଅଠର ତାରିଖ ଦିନ କମାଣ୍ଡର-ଇନ୍-ଚିଫ୍‌କୁ ଟେଲିଗ୍ରାମ ଦ୍ୱାରା ଜଣାଇଥିଲେ । କିନ୍ତୁ କିଛି ଦିନ ଅପେକ୍ଷା କରିବା ପରେ ଏହା ଭିତ୍ତିହୀନ ମନେ ହେଲା ।

ଏ ମଧ୍ୟରେ 'ନାନାସାହେବ', ଗଙ୍ଗା ପାରି ହୋଇ ଅବଧ ଯିବାକୁ ମନସ୍ଥ କଲେ । ଗଙ୍ଗାରେ ବୁଡି ଆତ୍ମହତ୍ୟା କରିବେ ବୋଲି  ସେ ତାଙ୍କ ସ୍ତ୍ରୀ ଓ ପରିବାରର ମହିଳା ମାନଙ୍କ ସହିତ ଏକ ଡଙ୍ଗାରେ ବସିଲେ । ଡଙ୍ଗାଟି ଗଙ୍ଗା ମଝିରେ ହେବା ବେଳକୁ ତାହାର ଆଲୋକ ଲିଭାଇ ଦିଆଗଲା । ତାହାପରେ ପରେ ଏକ ଚିତ୍କାର କରି 'ନାନାସାହେବ' ଗଙ୍ଗା ମଝିକୁ ଡେଇଁ ପଡିଲେ ଓ ପହଁରି ପହଁରି ଅପର ପାର୍ଶ୍ୱରେ ପହଞ୍ଚିଲେ । ଏହା ଫଳରେ 'ନାନାସାହେବ' ଆତ୍ମହତ୍ୟା କରିଛନ୍ତି ବୋଲି କିଛି କାଳ ବିଶ୍ୱାସ କରାଗଲା । ନାନାସାହେବ କିନ୍ତୁ ଏହା କେବଳ ଇଂରାଜିମାନଙ୍କୁ ବିଭ୍ରାନ୍ତ କରିବାକୁ ହିଁ କରିଥିଲେ ।

ଏହା ପରେ ପରେ 'ବିଥୁର'ରେ ଥିବା 'ନାନା' ଙ୍କର ପୁତ୍ର 'ନାରାୟଣ ରାଓ' 'ହାଭଲକ୍'ଙ୍କୁ ସମ୍ବାଦ ପ୍ରେରଣ କଲେ ଯେ ନାନାସାହେବ 'ବିଥୁର' ତ୍ୟା ଗ କରିଛନ୍ତି । ଏହା ସହିତ ସେ, 'ବିଥୁର' ଆସି ଦଖଲ ନେବାକୁ ମଧ୍ୟ 'ହାଭଲକ୍'ଙ୍କୁ ଆମନ୍ତ୍ରଣ ଜଣାଇଲେ । ୧ ୯ ତାରିଖ ଦିନ ସକାଳେ ମେଜର ଷ୍ଟିଭେନ୍‌ସନ୍ (Major Stevenson) ଏକ ଦଳ ସୈନ୍ୟ ନେଇ ବିଥୁର ଅଭିମୁଖେ ଯାତ୍ରା କଲେ ଓ ଉପର ବେଳା ବିନା ବାଧାରେ ତାହା ଦଖଲ ନେଲେ । ସହରଟିକୁ ସେମାନେ ଲୁଟ୍ କଲେ ଓ ସହରରେ ମହଜୁଦ୍ ଥିବା ଷୋହଳଟି କମାଣ ଓ କିଛି ପଶୁ ଦଖଲକୁ ନେଲେ । ଏହା ବ୍ୟତୀତ ସେମାନେ 'ବିଥୁର'ରେ ଥିବା 'ନାନା'ଙ୍କର ପ୍ରାସାଦକୁ ଲୁଟ୍ କରିସାରି ସେଥିରେ ନିଆଁ ଲଗାଇ ଦେଲେ । ସେଠାରୁ ନାନାସାହେବଙ୍କର ଏକ ପୋଷା ମାଙ୍କଡ ଉଦ୍ଧାର କରି ସେମାନେ ତାହାକୁ ଲଣ୍ଡନର ଚିଡିଆଖାନାକୁ ପଠାଇଦେଲେ ।

ଏ ମଧ୍ୟରେ 'କାନପୁର'ରେ ଥାଇ 'ହାଭଲକ୍' ଗଙ୍ଗା ପାରି ହୋଇ 'ଅବଧ'ରେ ପ୍ରବେଶ କରିବାକୁ ସମସ୍ତ ପ୍ରକାର ଆୟୋଜନ କରୁଥିଲେ । ସେ ନାନାଙ୍କର ଆତ୍ମହତ୍ୟା ସମ୍ବାଦରେ ଆସ୍ଥା ରଖୁନଥିଲେ ଓ  ତାଙ୍କର 'ଅବଧ' ଯାତ୍ରା ପରେ 'ନାନାସାହେବ'

'କାନପୁର' ଆକ୍ରମଣ କରିବାର ସମ୍ଭାବନା ଥିବାରୁ ପ୍ରତିରକ୍ଷା ମୂଳକ ବ୍ୟବସ୍ଥା ହିସାବରେ ସେ 'ବଛିଘାଟ ' ନାମକ ଏକ ଗୁରୁତ୍ୱ ପୂର୍ଣ୍ଣ ସ୍ଥାନରେ ଟ୍ରେଞ୍ଚ ଖୋଳି ସୈନ୍ୟମାନଙ୍କୁ ମୁତୟନ କରିବାର ବ୍ୟବସ୍ଥା କରୁଥିଲେ । ଉଣେଇଶ ତାରିଖ ଦିନ କିଛି ନୌକା ଯୋଗାଡ କରି ହାଭଲକ୍ ନିଜର ସେନା ସହ ନଦୀ ପାରି ହୋଇ 'ଅବଧ' ଯିବାକୁ ଉପକ୍ରମ କଲେ ।

ଏକୋଇଶ ତାରିଖ ଦିନ ଏକ କମ୍ପାନୀ ସୈନ୍ୟ ତିନୋଟି କମାଣ ସହ ଗଙ୍ଗା ପାରି ହେଲେ । ବାଇଶ ତାରିଖ ଦିନ ପ୍ରବଳ ବର୍ଷା ଭିତରେ ଶିଖ୍ ଓ ଅନ୍ୟ ଇଂରାଜି ବାହିନୀ ଗଙ୍ଗା ପାରିହୋଇଗଲେ । ପଚିଶ ତାରିଖ 'ହାଭଲକ୍' ଅବଶିଷ୍ଟ ସୈନ୍ୟ ସହ ଗଙ୍ଗା ପାରିହୋଇ 'ଅବଧ'ରେ ପ୍ରବେଶ କଲେ । ପ୍ରବଳ ବର୍ଷା ଭିତରେ ସେ ଲକ୍ଷ୍ନୌ ଆଡକୁ ମୁହାଁଇଲେ । ନାନାସାହେବ ଦେଖା ନଗଲେ ମଧ୍ୟ ତାଙ୍କ ସୈନ୍ୟମାନେ ଅବଧ ସୈନ୍ୟ ମାନଙ୍କ ସହିତ ମିଶି ହାଭଲକ୍‌ଙ୍କୁ ସ୍ଥାନେ ସ୍ଥାନେ ଆକ୍ରମଣ କଲେ । ଏ ମଧ୍ୟରେ 'ହାଭଲକ୍'ଙ୍କର ସୈନ୍ୟମାନଙ୍କ ଭିତରେ ହଇଜା ଓ ଡିସେଣ୍ଟ୍ରି ରୋଗ ବ୍ୟାପିବାକୁ ଲାଗିଲା । ବିଦ୍ରୋହୀଙ୍କର ଅଚାନକ ଆକ୍ରମଣ ଓ ରୋଗ ବ୍ୟାଧି, ଏହି ଉଭୟରେ 'ହାଭଲକ୍'ଙ୍କର ପ୍ରଭୂତ ସୈନ୍ୟ କ୍ଷୟ ହେବାକୁ ଲାଗିଲା । କିନ୍ତୁ ସମସ୍ତ ବାଧା ସତ୍ୱେ 'ହାଭଲକ୍' ଜୁଲାଇ ଅଣତିରିଶ ତାରିଖ ଦିନ 'ଉନାଓ' ନାମକ ସ୍ଥାନକୁ ବିଦ୍ରୋହୀମାନଙ୍କ ହାତରୁ ମୁକ୍ତ କରି ସେହିଠାରୁ ଆଠ ମାଇଲ ଦୂରରେ ଥିବା 'ବସିରହାଟଗଞ୍ଜ' ନାମକ ସ୍ଥାନକୁ ମଧ୍ୟ ଦଖଲ କଲେ । ହାଭଲକ୍‌ଙ୍କର ସୈନ୍ୟ କ୍ଷୟ ହେତୁ ଓ ପୃଷ୍ଠଭାଗରୁ ନାନାସାହେବଙ୍କର ଆକ୍ରମଣର ସମ୍ଭାବନା ଥିବାରୁ ଏବଂ ଆଖ ପାଖ ସ୍ଥାନରୁ କୌଣସି ସାହାଯ୍ୟର ଆଶା ନଥିବାରୁ 'ହାଭଲକ୍', 'କାନପୁର' ଫେରିବାକୁ ମନସ୍ଥ କଲେ । ଅବଶେଷରେ ସେ 'ମଙ୍ଗଲୱାର' ନାମକ ସ୍ଥାନକୁ ୧୩୬୪ ଜଣ ମାତ୍ର ସୈନ୍ୟ ନେଇ ଫେରିଆସିଲେ । ସେ କମାଣ୍ଡର-ଇନ୍-ଚିଫ୍‌ଙ୍କୁ ଆଉ ଅଧିକ ୧୦୦୦ ଇଂରାଜି ସୈନ୍ୟ ପଠାଇବା ପାଇଁ ଅନୁରୋଧ ଜଣାଇ ବାର୍ତ୍ତା ପ୍ରେରଣ କଲେ । ଅଗଷ୍ଟ ଚାରି ତାରିଖରେ 'ଲେଫଟନାଣ୍ଟ ସ୍ମିଥେଟ୍' (Lieutenant Smithett)ଙ୍କ ଅଧିନରେ ଥିବା ସୈନ୍ୟ ଓ 'ଓଲଫେଣ୍ଟ' (Olphent)ଙ୍କ ବାହିନୀର ଅର୍ଦ୍ଧେକ 'ହାଭଲକ୍'ଙ୍କ ବାହିନୀ ସହିତ ମିଳିତ ହେଲେ ।

'ନେଲ୍' ଓ 'ହାଭଲକ୍'ଙ୍କର, ପୂର୍ବରୁ ଚାକିରୀ କ୍ଷେତ୍ରରେ ପ୍ରତିଦ୍ୱନ୍ଦିତା ଥାଇ ସାମାନ୍ୟ ମନୋମାଳିନ୍ୟ ଥିଲା । ହାଭଲକ୍‌ଙ୍କ ପରେ ପରେ 'ନେଲ୍' ବାହିନୀର ଦ୍ୱିତୀୟ ମୁଖ୍ୟ ଥିଲେ । 'ହାଭଲକ୍' 'ଲକ୍ଷ୍ନୌ' ଯାତ୍ରାରେ ଅସଫଳ ହୋଇ ଫେରି ଆସିବା ଫଳରେ 'ନେଲ୍' ତାଙ୍କୁ ପରାମର୍ଶ ଦେଇ ଚିଠି ଲେଖିଲେ । ଏଥିରେ 'ହାଭଲକ୍' ଉତ୍‌କ୍ଷିପ୍ତ ହୋଇ 'ନେଲ୍'ଙ୍କୁ ତାଙ୍କ ପଦବୀ ଦୃଷ୍ଟିରୁ ଭବିଷ୍ୟତରେ ଆଉ ପରାମର୍ଶ ନଦେବାକୁ ସାବଧାନ

କରିଦେଲେ । ଅଗଷ୍ଟ ପାଞ୍ଚ ତାରିଖ ଦିନ 'ହାଭଲକ୍' ପୁନର୍ବାର 'ବସିରହାଟଗଞ୍ଜ'କୁ ଆକ୍ରମଣ କରି ଦଖଲ କଲେ । କାରଣ, ସେ ତାହା ଛାଡିବା ପରେ ପରେ ତାହାକୁ ନାନାଙ୍କର ସୈନ୍ୟମାନେ ଦଖଲ କରିନେଇଥିଲେ । ବର୍ତ୍ତମାନ 'ହାଭଲକ୍' ସେମାନଙ୍କୁ ସେଠାରୁ ଘଉଡାଇଦେଲେ ।

ଏହା ପରେ 'ହାଭଲକ୍' ନିଜ ଅଧିନରେ ଥିବା ସେନାପତିମାନଙ୍କ ମଧ୍ୟରେ ପରାମର୍ଶ କରି, 'ଲକ୍ଷ୍ନୌ' ଯିବାରେ ଅଯଥା ସୈନ୍ୟ କ୍ଷୟ ହେବାର ସମ୍ଭାବନା ଅନୁଭବ କରି, ତାହା ତାରବାର୍ତ୍ତାରେ କମାଣ୍ଡର-ଇନ୍-ଚିଫ୍‌କୁ ଜଣାଇଦେଲେ । ଏଗାର ତାରିଖ ଦିନ ସେ କାନପୁର ଯିବାପାଇଁ ଆୟୋଜନ କଲେ । ପଥ ମଧ୍ୟରେ 'ବୁଡିଆ-କା-ଚୌକି' ନାମକ ସ୍ଥାନରେ ସେ 'ବସିରହାଟଗଞ୍ଜ'କୁ ଯାଉଥିବା ଓ ନିକଟରେ ଟ୍ରେଞ୍ଚ ଖୋଳି ରହିଥିବା ପାଞ୍ଚଟି କମାଣ ସହ ଚାରିହଜାର ବିଦ୍ରୋହୀ ସୈନ୍ୟଙ୍କର ସହିତ ମୁକାବିଲା କଲେ । ଏହି ଯୁଦ୍ଧରେ ଇଂରାଜିମାନେ ବିଦ୍ରୋହୀ ମାନଙ୍କ ଠାରୁ କିଛି କମାଣ ଦଖଲ କଲେ । ଏହାପରେ 'ହାଭଲକ୍' ମଙ୍ଗଳୱାର ଆଡକୁ ଚାଲିଲେ । ତେର ତାରିଖ ଦିନ ନଦୀ ପାରି ହୋଇ 'କାନପୁର'ରେ ପହଞ୍ଚିବାରେ ସେମାନେ କୌଣସି ବାଧାର ସମ୍ମୁଖୀନ ହେଲେ ନାହିଁ । ସନ୍ଧ୍ୟା ପାଞ୍ଚଟା ବେଳକୁ 'ହାଭଲକ୍'ଙ୍କର ସମସ୍ତ ବାହିନୀ 'କାନପୁର'ରେ ପହଞ୍ଚିଲା । ସେତେବେଳକୁ ତାଙ୍କ ସୈନ୍ୟ ସଂଖ୍ୟା ଥିଲା ୧୪୧୫ ଓ ତନ୍ମଧ୍ୟରୁ ୩୩୫ ଜଣ ପୀଡିତ ଥିଲେ ।

'ନାନାସାହେବ' ନଦୀ ଅତିକ୍ରମ କରି 'ଅବଧ'କୁ ଯାଉଥିଲେ । ତାଙ୍କର ଗତିପଥ ଜାଣିବା ଇଂରାଜିମାନଙ୍କ ପକ୍ଷରେ ଦୁଷ୍କର ଥିଲା । ହାଭଲକ୍‌ଙ୍କର ଅବଧ ଯାତ୍ରା ସମୟରେ, ନାନାଙ୍କର ସୈନ୍ୟମାନେ ଅବଧବିଦ୍ରୋହୀମାନଙ୍କ ସହିତ ମିଶି, ପଥ ମଧ୍ୟରେ ବାଧା ପ୍ରଦାନ କରିଥିବା ବିଷୟ ପୂର୍ବରୁ ବର୍ଣ୍ଣନା କରାହୋଇଛି । 'ଉନାଓ'ରେ ଯୁଦ୍ଧ ସମୟରେ ମଧ୍ୟ ନାନାଙ୍କର ସୈନ୍ୟମାନେ 'ହାଭଲକ୍'ଙ୍କୁ ବାମଦିଗରୁ ପ୍ରବଳ ଆକ୍ରମଣ କରିଥିଲେ । ଅଗଷ୍ଟ ତେର ୧୩ତାରିଖ ଦିନ ହାଭଲକ୍ କାନପୁର ଯାତ୍ରା କରିବା ପରେ ପରେ, 'ନାନାସାହେବ' ତାଙ୍କର ସୈନ୍ୟମାନଙ୍କୁ 'ବିଥୁର'ରେ ଏକତ୍ରିତ କଲେ ।

ଅଗଷ୍ଟ ଷୋହଳ ତାରିଖ ଭୋର ଚରିଟା ବେଳକୁ 'ହାଭଲକ୍', ତାଙ୍କର ବାହିନୀ ସହ ପୁନଶ୍ଚ 'ବିଥୁର' ଅଭିମୁଖେ ଯାତ୍ରା କଲେ । ତାଙ୍କ ସହିତ ୧୪୦୦ ସୈନ୍ୟ ଓ ୧୪ଟି କମାଣ ଥିଲା । ତାହା ଆଠ ଘଣ୍ଟାର ଦୀର୍ଘ ଯାତ୍ରାଥିଲା । ସେମାନେ ବିଥୁର ସହରରେ ପ୍ରବେଶ କରିବା ସମୟରେ ସେମାନଙ୍କର ବାମ ଦିଗରେ ପ୍ରାୟ ଶହେ ଜଣ ଘୋଡସବାର

ବାହିନୀ ଦେଖାଗଲେ । 'ହାଭଲକ୍' ଆଗେଇଗଲେ । ଉଭୟ ଦିଗରୁ ଗୁଳି ଗୋଳା ବର୍ଷଣ ହେଲା । ହାତା ହାତି ଯୁଦ୍ଧ ହେଲା । ପରେ ବିଦ୍ରୋହୀମାନେ ସହରର ପାଚେରୀ ଭିତରେ ପ୍ରବେଶ କରି ପ୍ରାଚୀର ଓ ଗ୍ରାମର ଆଢୁଆଳରେ ରହି ଇଂରାଜି ବାହିନୀ ଉପରକୁ ପ୍ରବଳ ଗୁଳି ଗୋଳା ନିକ୍ଷେପ କରିବାକୁ ଲାଗିଲେ । ପରିଶେଷରେ ଇଂରାଜି ମାନେ ଆଗେଇଯାଇ ସଙ୍ଗୀନରେ ଚାର୍ଜ କରି 'ବିଥୁର' ଦଖଲ ନେଲେ । ବିଦ୍ରୋହୀ ମାନଙ୍କ ମଧ୍ୟରୁ ଦୁଇଶହ ପଚାଶ ଜଣ ମୃତାହତ ହେଲେ । 'ହାଭଲକ୍'ଙ୍କର ସୈନ୍ୟମାନେ ଅତ୍ୟନ୍ତ କ୍ଳାନ୍ତ ହୋଇପଡିଥିଲେ । ଏଣୁ, ବିଦ୍ରୋହୀମାନଙ୍କୁ ଅନୁସରଣ ନକରି ସେମାନେ 'କାନପୁର' ଅଭିମୁଖେ ଯାତ୍ରା କଲେ । ତା'ପର ଦିନ ଅପରାହ୍ଣରେ ସେମାନେ କାନପୁରରେ ପହଞ୍ଚିଲେ । ଏହି ଯୁଦ୍ଧରେ 'ହାଭଲକ୍' ବିଦ୍ରୋହୀଙ୍କଠାରୁ ଦୁଇଟି କମାଣ ଦଖଲ କରିଥିଲେ ଓ 'ବିଥୁର' ସହରର ଏକ ଅଂଶକୁ ସମ୍ପୂର୍ଣ୍ଣ ଧ୍ୱଂସ କରିଦେଇଥିଲେ । ତାଙ୍କ ବାହିନୀରୁ ଅଣଚାଶ ସୈନ୍ୟ ଏହି ଯୁଦ୍ଧରେ ପ୍ରାଣ ହରାଇଥିଲେ ।

'ହାଭଲକ୍' ହଠାତ୍ ଖବର ପାଇଲେ ଯେ, 'ଗୋଆଲିଅର'ର 'ସିନ୍ଧିଆ'ଙ୍କର ସୈନ୍ୟ ବାହିନୀର ଏକ ଅଂଶ, 'ତାନ୍ତ୍ୟା ଟୋପେ'ଙ୍କର ନେତୃତ୍ୱରେ ବିଦ୍ରୋହୀ ହୋଇଉଠିଛନ୍ତି ଓ ସେମାନେ ଯାତ୍ରା କରିଛନ୍ତି । ଏଣୁ,ସେମାନଙ୍କର 'କାନପୁର' ଆକ୍ରମଣ କରିବାର ଯଥେଷ୍ଟ ସମ୍ଭାବନା ଥିଲା । ପୁନଶ୍ଚ ବାମ ଦିଗରୁ 'ଅବଧର' ସୈନ୍ୟ ବାହିନୀ ଓ ଅପରଦିଗରୁ 'ଗୋଆଲିୟର' ସୈନ୍ୟ ବାହିନୀ ଓ ଏହା ବ୍ୟତୀତ ରହସ୍ୟମୟ ଭାବରେ ଇଂରାଜି ସେନାର ଚତୁର୍ଦ୍ଦିଗରେ ଘୂରି ବୁଲୁଥିବା 'ନାନାସାହେବ'ଙ୍କର ସୈନ୍ୟ ବାହିନୀ ଠାରୁ ପ୍ରତି ମୁହୂର୍ତ୍ତରେ ଆକ୍ରମଣର ଆଶଙ୍କା ଥିଲା । ସେତେବେଳେ ବହୁ ଆକ୍ରମଣର ସମ୍ମୁଖୀନ ହୋଇ 'ହାଭଲକ୍'ଙ୍କର ମାତ୍ର ନଅଶହ ସୈନ୍ୟ ଥିଲେ ଓ ତନ୍ମଧ୍ୟରୁ ସାତଶହ ସୈନ୍ୟ ଯୁଦ୍ଧ ଭୂମି ନିମିତ୍ତ ସକ୍ଷମ ଥିଲେ । ଗୋଆଲିୟର ବାହିନୀର ପାଞ୍ଚ ହଜାର ସୈନ୍ୟଙ୍କ ସହିତ ପ୍ରାୟ କୋଡିଏ ତିରିଶଟି କମାଣ ଥିବା ଖବର 'ହାଭଲକ୍' ପାଇଥିଲେ । ଏଣୁ ସେ ବିବ୍ରତ ବୋଧ କରି, ଅଗଷ୍ଟ ୧୯ତାରିଖ ଦିନ ଏକ ଚିଠିରେ ଏ ବିଷୟ କମାଣ୍ଡର-ଇନ୍-ଚିଫ୍‌ଙ୍କୁ ଜଣାଇ, ତାଙ୍କଠାରୁ ସୈନ୍ୟ ବାହିନୀ ଓ ଅସ୍ତ୍ରଶସ୍ତ୍ର ପ୍ରାର୍ଥନା କଲେ ।

ଅଗଷ୍ଟ ଚବିଶ ତାରିଖ ଦିନ ନେଲ୍, ତାଙ୍କର ଛାଉଣୀ ଠାରୁ ୧୫୦ ଗଜ ଦୂରରେ ଅଠର ପାଉଣ୍ଡିଆ କମାଣ ସହ ବିଦ୍ରୋହୀମାନଙ୍କୁ ଦେଖିବାକୁ ପାଇଥିଲେ । ଏହା ବ୍ୟତୀତ 'କାନପୁର' ସହରରେ ରାତ୍ରି ସମୟରେ ଘୋଡାମାନଙ୍କର ଟାପୁ ଶବ୍ଦ ଓ ଗୁଳି ଶବ୍ଦ ଶୁଣା ଯାଉଥିଲା । ଏହା ବିଦ୍ରୋହୀମାନଙ୍କର ହୋଇଥିବାର ସମସ୍ତେ ଆଶଙ୍କା କରୁଥିଲେ । କିନ୍ତୁ କିଛିମାସ ଧରି କୌଣସିଆକ୍ରମଣ ହେଲା ନାହିଁ ।

ଏହିପରି ଅବସ୍ଥାରେ 'ସାର୍ କଲିନ୍ କ୍ୟାମ୍ପବେଲ୍', (Sir Colin Campbell), 'ସାର୍ ପାଟ୍ରିକ୍ ଗ୍ରାଣ୍ଟ' (Sir Patrict Grant)ଙ୍କ ପରିବର୍ତ୍ତେ ସେନା ବାହିନୀର ମୁଖ୍ୟ ବା କମାଣ୍ଡର-ଇନ୍-ଚିଫ୍ ହେଲେ । ତାଙ୍କ ଆଦେଶ ବଳରେ 'ଦିନାପୁର' ଓ 'କାନପୁର' ଡିଭିଜନକୁ ମିଶାଇଦେଇ ଆଉଟ୍ ରାମ ତାହାକୁ 'ସାର ଜେମ୍ସ୍ ଆଉଟ୍ରାମ'ଙ୍କ ଅଧିନରେ ରଖାଗଲା । ଏତଦ୍ୱାରା 'ହାଭଲକ୍'ଙ୍କର କ୍ଷମତା କିଛି କ୍ଷୁର୍ଣ୍ଣ ହେଲା । ଆଉଟ୍ରାମ୍ ସେପ୍ଟେମ୍ବର ପନ୍ଦର ତାରିଖରେ କାନପୁରରେ ପହଞ୍ଚିଲେ । ସେଠାରେ ସେ 'ହାଭଲକ୍'ଙ୍କ ଉପରେ କ୍ଷମତା ଜାହିର କରିବା ବଦଳରେ ଘୋଷଣା କଲେ ଯେ କାନପୁର ଚିଫ୍ କମିଶନ ହିସାବରେ ସେ 'ହାଭଲକ୍'ଙ୍କ ବାହିନୀ ସହିତ ସ୍ୱେଚ୍ଛାସେବକ ଭାବରେ ଲକ୍ଷ୍ନୌ ଯାତ୍ରା କରିବେ । ଏହା 'ହାଭଲକ୍'ଙ୍କର ମନୋବଳକୁ ଯଥେଷ୍ଟ ବଢାଇଦେଲା ।

ବର୍ତ୍ତମାନ ତାଙ୍କ ଅଧିନରେ ତିନିହଜାର ସୁଦକ୍ଷ ସୈନ୍ୟ, ବହୁ କମାଣ ଓ ଗୁଳିଗୋଳା ଆଦି ଯୁଦ୍ଧୋପକରଣ ତଥା 'ଆଉଟ୍ରାମ' ଓ 'ନେଲ'ଙ୍କ ପରି ପ୍ରବୀଣ ସେନାପତି ମାନେ ଥିଲେ । ସେପ୍ଟେମ୍ବର ୧୯ତାରିଖ ଦିନ 'ହାଭଲକ୍' ନିଜର ବାହିନୀ ସହ କାନପୁରରୁ ଯାତ୍ରା ଆରମ୍ଭ କରି ୨୫ତାରିଖ ଦିନ 'ଲକ୍ଷ୍ନୌ'ର ରାସ୍ତାରେ ଯୁଦ୍ଧରେ ବ୍ୟାପୃତ ରହିଲେ ଓ ରେସିଡେନ୍ସିରେ ପହଞ୍ଚିଗଲେ ।



# ଲକ୍ଷ୍ନୌ

ପୂର୍ବରୁ ଅବଧରେ ବିଦ୍ରୋହୀମାନଙ୍କ ଦ୍ୱାରା 'ଫୈଜାବାଦ' ଅଧିକାର ଓ 'ମୌଲବୀ ଅହମ୍ମଦ ଶାହା'ଙ୍କୁ ବନ୍ଦୀଶାଳାରୁ ମୁକ୍ତ ତଥା ନେତା ରୂପେ ସ୍ୱୀକାର କରାଯିବା ବିଷୟ ବର୍ଣ୍ଣନା କରାହୋଇଛି । 'ଫୈଜାବାଦ' ସ୍ୱାଧୀନ ହେବା ସଙ୍ଗେ ସଙ୍ଗେ ଆଖ ପାଖ ଜିଲ୍ଲା ଗୁଡିକ ମଧ ସ୍ୱାଧିନତା ଘୋଷଣା କଲେ । ଏହି ସମ୍ମିଳିତ ବିଦ୍ରୋହୀ ସେନାଙ୍କ ସହିତ 'ଅବଧ'ର ଜମିଦାର, ଇଲାକାଦାର ଓ ରାଜା ଆଦି ମଧ ଇଂରାଜିଙ୍କ ବିରୁଦ୍ଧରେ ଯୋଗଦାନ କଲେ । ଏହି ସେନା ପ୍ରଥମେ ଦିଲ୍ଲୀ ଆଡକୁ ଯିବାକୁ ସ୍ଥିର କଲା । କିନ୍ତୁ ବହୁ ବିଚାର ବିମର୍ଶ ପରେ ସ୍ଥିର ହେଲା ଯେ ସର୍ବ ପ୍ରଥମେ 'ଅବଧ'ର ରାଜଧାନୀ 'ଲକ୍ଷ୍ନୌ'କୁ ସ୍ୱାଧିନ କରାଯାଇ ପରେ 'ଦିଲ୍ଲୀ' ଆଡକୁ ଯାତ୍ରା କରାଯିବ । 'ଫୈଜାବାଦ'ର ଶାସନ ଭାର 'ମାନସିଂହ'ଙ୍କ ଉପରେ ଅର୍ପଣ କରି ସେନା 'ଲକ୍ଷ୍ନୌ' ଅଭିମୁଖେ ପ୍ରସ୍ଥାନ କଲା ।

'ଲକ୍ଷ୍ନୌ'ର ଚିଫ୍‌କମିଶନର 'ହେନେରୀ ଲରେନ୍ସ' (Henery Lawrens)ଖବର ପାଇଲେ ଯେ 'ଫୈଜାବାଦ'ରୁ ସାତଟି କମ୍ପାନୀ ସୈନ୍ୟ, ଦୁଇଟି ବଡ ଓ ଚାରୋଟି ଛୋଟ ତୋପ ଓ ଏକ ଘୋଡା ସବାର ବାହିନୀ 'ଲକ୍ଷ୍ନୌ'ଠାରୁ ଦୁଇକୋଶ ଦୂର 'ଆଲିଗଞ୍ଜ' ଗ୍ରାମର ବାହାରେ ଜମା ହୋଇଛନ୍ତି ଓ ସେମାନେ ସେଠାରୁ 'ଚିନ୍‌ହଟ୍' ପର୍ଯ୍ୟନ୍ତ ବ୍ୟାପି କରି ଅଛନ୍ତି ।

'ହେନେରୀ ଲରେନ୍ସ' ତୁରନ୍ତ ଶହେ ଜଣ ଶିଖ୍ ଘୋଡସବାର, ବାରଶହ ପଦାତିକ ସୈନ୍ୟ ଓ ଏଗାରଟି ତୋପ 'ମେଜର କାର୍ଣ୍ଣେଗୀ'ଙ୍କ ନେତୃତ୍ୱରେ 'ଚିନ୍‌ହଟ୍' ଦିଗକୁ ବିଦ୍ରୋହୀମାନଙ୍କୁ ପ୍ରତିହତ କରିବା ପାଇଁ ପଠାଇଲେ । 'ଲରେନ୍ସ' ଏହି ବାହିନୀର ସହାୟତା ପାଇଁ ତାହା ପଛେ ପଛେ ଏକ ଇଂରାଜି ବାହିନୀ ମଧ ପଠାଇଲେ । ବିଦ୍ରୋହୀ ସେନା ଏହାହିଁ ଆଶା କରିଥିଲେ ।ତେଣୁ, ସେମାନେ ପୂର୍ବରୁ ପ୍ରସ୍ତୁତ ହୋଇ ରହିଥିଲେ । ଇଂରାଜି ସେନା ପହଞ୍ଚିବା ମାତ୍ରେ ବିଦ୍ରୋହୀ ମାନଙ୍କ ଉପରକୁ ସେମାନଙ୍କର ତୋପରୁ ତିନୋଟି ଗୋଳା ପ୍ରକ୍ଷେପ କଲେ । ଏହା ପରେ ଲଢାଇ ଆରମ୍ଭ ହୋଇଗଲା । କିନ୍ତୁ, ଇଂରାଜି ସେନା ବିଦ୍ରୋହୀମାନଙ୍କର ପ୍ରବଳ ଆକ୍ରମଣ ସମ୍ମୁଖରେ ବେଶୀ ସମୟ ତିଷ୍ଠି ରହି ପାରିଲେ ନାହିଁ । ଏଣୁ, ସେମାନେ ପଡୋଶୀ ଗ୍ରାମ 'ଇସମାଇଲ ଗଞ୍ଜ'ରେ ରହି ଆକ୍ରମଣର ମୁକାବିଲା କରିବାକୁ ମନସ୍ଥ କଲେ, କିନ୍ତୁ ସେଠାକୁ ଯିବାର ରାସ୍ତା ବିଦ୍ରୋହୀ ସୈନ୍ୟମାନଙ୍କ ଦ୍ୱାରା ପୂର୍ବରୁ ବନ୍ଦ କରିଦିଆଯାଇଥିଲା । ଅନନ୍ୟୋପାୟ ହୋଇ ଇଂରାଜି

ସେନା 'ଲକ୍ଷ୍ନୌ'ରେ ଥିବା ରେସିଡେନ୍ସି ଆଡକୁ ପଳାୟନ କଲେ ଓ ବିଦ୍ରୋହୀ ସେନା ସେମାନଙ୍କର ପଶ୍ଚାତ୍‌ଧାବନ କଲେ । କୌଣସି ପ୍ରକାରେ ସେମାନେ ରେସିଡେନ୍ସିର ଫାଟକ ପାର ହୋଇ ପ୍ରାଣ ରକ୍ଷା କଲେ । ସେତେବେଳେ ରେସିଡେନ୍ସିରେ ଦୁଇହଜାର ସାତଶହ ଇଂରାଜି ସୈନ୍ୟ ଥିଲେ ।

ବିଦ୍ରୋହୀମାନେ ପଶ୍ଚାତ ଧାବନ କରି ରେସିଡେନ୍ସିର ନିକଟବର୍ତ୍ତୀ ହେବା ବେଳକୁ 'ମଛି ଭବନ'ରୁ ସେମାନଙ୍କ ଉପରକୁ ଗୋଳା ବର୍ଷଣ ହେଲା । ଏଣୁ ବିଦ୍ରୋହୀସେନା ସଚେତ ହୋଇ 'ମଛି ଭବନ' ଦିଗକୁ ମୁହଁ କରି ତୋପରୁ ପ୍ରବଳ ଗୋଳା ବର୍ଷଣ କଲେ । ଅନ୍ୟ କିଛି ବିଦ୍ରୋହୀ ସୈନ୍ୟ ସହର ମଧ୍ୟକୁ ପ୍ରବେଶ କରିଗଲେ । 'ଅହମ୍ମଦ ଶାହ' ମଧ୍ୟ ସହର ମଧ୍ୟକୁ ଆସିଗଲେ । ବିଦ୍ରୋହୀସୈନ୍ୟମାନଙ୍କର ପ୍ରବଳ ଗୋଳା ବର୍ଷଣରେ 'ମଛି ଭବନ'ର ତୋପ ବନ୍ଦ ହୋଇଗଲା । କ୍ରମେ ସନ୍ଧ୍ୟା ଘନେଇ ଆସିଲା । 'ମଛିଭବନ'ର କିଲ୍ଲା ଭିତରେ ପ୍ରାୟ ଶହେ ଜଣ ଇଂରାଜି ସପରିବାରେ ଥିଲେ । ବିଦ୍ରୋହୀମାନଙ୍କର ତୋପମାଡରେ ସେମାନେ ଅତ୍ୟନ୍ତ ଭୟଭୀତ ହୋଇଯାଇଥିଲେ । 'ହେନେରୀ ଲରେନ୍ସ', 'ମଛି ଭବନ'ରେ ଥିବା ସମସ୍ତ ଇଂରାଜି ମାନଙ୍କୁ ରାତି ଅଧରେ ଛଦ୍ମବେଶରେ ରେସିଡେନ୍ସିକୁ ଚାଲିଯିବା ପାଇଁ ଗୁପ୍ତ ନିର୍ଦ୍ଦେଶ ପଠାଇଲେ ।ଏହି ନିର୍ଦ୍ଦେଶ ମତେ ସେମାନେ ଅର୍ଦ୍ଧ ରାତ୍ରରେ ବିଭିନ୍ନ ଛଦ୍ମବେଶରେ 'ମଛି ଭବନ' ତ୍ୟାଗ କଲେ । କିନ୍ତୁ କେବଳ ଜଣେ ଇଂରାଜି ଯୁବକ ସ୍ୱେଚ୍ଛାପୂର୍ବକ ସେଠାରେ ରହିଲେ । 'ମଛିଭବନ' କିଲ୍ଲାର ସୁଡଙ୍ଗ ମଧ୍ୟରେ ଗୁଳିଗୋଳା ବାରୁଦର ଏକ ଭଣ୍ଡାର ଥିଲା । ସମସ୍ତେ ଚାଲିଯିବା ପରେ ସେ ଇଂରାଜି ଜଣକ, ଜୀବନର ସମସ୍ତ ମାୟା ତ୍ୟାଗ କରି, ଉକ୍ତ ଭଣ୍ଡାରରେ ନିଆଁ ଲଗାଇଦେଲେ । ଏକ ପ୍ରଚଣ୍ଡ ବିସ୍ଫୋରଣ ସହ 'ମଛିଭବନ' ଉଡିଗଲା ।

'ଲକ୍ଷ୍ନୌ' ନଗରୀରେ ସେତେବେଳେ ଇଂରାଜି ଶାସନ ଲୋପହୋଇଥିଲା । ନଗରୀ ସମ୍ପୂର୍ଣ୍ଣ ଭାବରେ ବିଦ୍ରୋହୀ ମାନଙ୍କର କରାୟତ୍ତ ହୋଇଥିଲା । ନଗରୀରେ ଶାସନ କିଛି ନଥିଲା । କିଛି ସୈନ୍ୟ ବଜାର ତଥା ବ୍ୟବସାୟୀମାନଙ୍କୁ ଲୁଟ୍ କରୁଥିଲେ । 'ଅହମଦ୍ ଶାହ' ଏହା ଦେଖି ସୈନ୍ୟମାନଙ୍କୁ ଶୃଙ୍ଖଳିତ କରିବା ପାଇଁ ହୁକୁମନାମା ଜାରିକଲେ ଓ ଦଣ୍ଡର ବ୍ୟବସ୍ଥା କଲେ । ଏଥିରେ କିଛି ସର୍ଦ୍ଦାର ଅସନ୍ତୁଷ୍ଟ ହେଲେ । ଫଳରେ ସେମାନଙ୍କ ମଧ୍ୟରେ ଦୁଇଟି ଦଳ ହୋଇଗଲା । ପରିଶେଷରେ ଭବିଷ୍ୟତରେ କାର୍ଯ୍ୟପନ୍ଥା ନିର୍ଦ୍ଧାରଣ ପାଇଁ ସେମାନଙ୍କର ଏକ ବୈଠକ ବସିଲା । ରାଜା 'ଜୟଲାଲ ସିଂହ' ମଧ୍ୟ ଉକ୍ତ ବୈଠକରେ ଯୋଗଦେଲେ । ସେ 'ଚିନ୍‌ହଟ୍' ଯୁଦ୍ଧଠାରୁ ସିପାହୀମାନଙ୍କର ସହାୟତା କରୁଥିଲେ । ସେ ଲକ୍ଷ୍ନୌର ପୂର୍ବତନ ନବାବ 'ବାଜିଦ ଅଲି ଶାହ'ଙ୍କର ଖୁବ୍ ବିଶ୍ୱସ୍ତ ଥିଲେ । ବୈଠକରେ

ବର୍ତ୍ତମାନର 'ନବାବ ଵାଜିଦ ଅଲି ଶାହ' ଇଂରାଜିଙ୍କ ଦ୍ୱାରା ବନ୍ଦୀ ହୋଇଥିବାରୁ ତାଙ୍କର କୌଣସି ଏକ ପୁତ୍ରକୁ ଗାଦିନସୀନ କରି ଶାସନ ଭାର ଅର୍ପଣ କରିବାର ସ୍ଥିରକରାଗଲା ।

ବହୁତ ବିଚାର ବିମର୍ଶ ପରେ ନବାବଙ୍କର ସବୁଠାରୁ ପ୍ରିୟ ଓ ସୁନ୍ଦରୀ ବେଗମ୍ 'ହଜରତ୍ ମହଲ'ଙ୍କ ପୁତ୍ର 'ଶାହାଜାଦା ବିରଜି ସିକନ୍ଦର'କୁ ଗାଦିନସୀନ କରାଯିବାର ସ୍ଥିର ହେଲା । ସେ ମାତ୍ର ଏଗାର ବର୍ଷ ବୟସର ବାଳକ ହୋଇଥିବାରୁ, ତାଙ୍କର ଅଭିଭାବକ ହିସାବରେ 'ବେଗମ୍ ହଜରତ୍ ମହଲ'ଙ୍କୁ ଶାସନ ଭାର ଅର୍ପଣ କରାଗଲା । 'ହଜରତ୍ ମହଲ' ଜଣେ ସୁଶାସିକା ଓ ବୁଦ୍ଧିମତୀ ରମଣୀ ଥିଲେ । ସେ ଅତ୍ୟନ୍ତ ଚତୁରତାର ସହ ନଗରୀରେ ଶାସନ ବ୍ୟବସ୍ଥାର ପ୍ରବର୍ତ୍ତନ କଲେ ଓ ସହରର ସ୍ୱଭାବିକ ଜୀବନ ଯାତ୍ରା ଫେରାଇ ଆଣିଲେ ।

ଜୁଲାଇ କୋଡିଏ ତାରିଖ ଦିନ ବିଦ୍ରୋହୀମାନେ ରେସିଡେନ୍ସି ଉପରେ ଆକ୍ରମଣ ଚଳାଇଲେ । 'ଅହମଦ ଶାହ' ପ୍ରବଳ ବେଗରେ ଆକ୍ରମଣ କଲେ । ଏହି ଆକ୍ରମଣରେ ରେସିଡେନ୍ସି ମଧ୍ୟରେ ଥିବା ଇଂରାଜିମାନେ ବିବ୍ରତ ହୋଇପଡିଲେ । ସେତେବେଳେ ସମୟ ସକାଳ ସାଢେ ଆଠଟା ଥିଲା । ରେସିଡେନ୍ସି ଭିତରେ ନିଜ ଦପ୍ତର ମଧ୍ୟରେ ବସି ଚିଫ୍‌କମିଶନର 'ଲରେନ୍ସ' କାର୍ଯ୍ୟବ୍ୟସ୍ତ ଥିଲେ । ହଠାତ୍ ଏକ ଗୋଳା ଉକ୍ତ ଦପ୍ତରରେ ପଡିଲା ଓ ଲରେନ୍ସ ଛିଟିକି ପଡି ବେହୋସ ହୋଇଗଲେ । ଚିକିତ୍ସା ପରେ ତାଙ୍କର ଚେତା ଆସିଲା, କିନ୍ତୁ ସେ ଦୁଇ ଘଣ୍ଟା ପରେ ମୃତ୍ୟୁ ବରଣ କଲେ । ଏ ଖବର ବାହାରେ ରହି ଆକ୍ରମଣ କରୁଥିବା ବିଦ୍ରୋହୀ ସେନାମାନେ ଜାଣିନଥିଲେ । ତେଣୁ, ସେମାନେ ଆକ୍ରମଣ ଜାରି ରଖିଥିଲେ ଓ ପ୍ରବଳ ଗୋଳା ବର୍ଷଣ କରୁଥିଲେ । ଏହା ସଙ୍ଗେ ସଙ୍ଗେ ସେମାନେ ରେସିଡେନ୍ସିର ଚାରି ଦିଗରୁ ସୁଡଙ୍ଗ ଖୋଳି ସେଥିରେ ଗୋଳା ବିସ୍ଫୋରଣ କରୁଥିଲେ । ଏଥିରେ ରେସିଡେନ୍ସି ମଧ୍ୟରେ ଥିବା କିଛି କୋଠି ଧୂଳିସାତ୍ ହୋଇଗଲା । ବହୁ ଇଂରାଜି ମୃତାହତ ହେଲେ । ପରିଶେଷରେ ବିଦ୍ରୋହୀ ସେନାମାନଙ୍କର ଗୁଳିଗୋଳା ସରିଯିବାରୁ ସେମାନେ ତାହା ମଗାଇଲେ ଓ ଠିକ୍ ସମୟରେ ତାହା ନପହଞ୍ଚିବାରୁ ସେମାନେ ଆକ୍ରମଣ ପ୍ରତ୍ୟାହାର କରିବାକୁ ବାଧ ହେଲେ ।

ବିଦ୍ରୋହୀମାନେ ରେସିଡେନ୍ସି ଚାରିପଟେ ଯୁଦ୍ଧ ମଞ୍ଚା ପ୍ରସ୍ତୁତ କରି ଘେରି ରହିଥିଲେ ଓ ସମୟ ସମୟରେ ଆକ୍ରମଣ କରୁଥିଲେ । 'ହେନେରୀ ଲରେନ୍ସ'ଙ୍କ ମୃତ୍ୟୁ ପରେ 'ମେଜର ବାଙ୍କ୍ସ' (Major Banks) ମଧ୍ୟ ପରିଶେଷରେ ଗୁଳିର ଶିକାର ହୋଇ ପ୍ରାଣ ତ୍ୟାଗ କଲେ । ଏହା ପରେ 'ବ୍ରିଗେଡିୟର ଇଙ୍ଗ୍ଲିଶ୍' (Brigadier Inglis) ଚିଫ୍

କମିଶନର ପଦ ଗ୍ରହଣ କଲେ । ରେସିଡେନ୍ସି ଭିତରେ ମୃତମାନଙ୍କର ସତ୍କାର, ଆହତମାନଙ୍କର ଚିକିତ୍ସା ଓ ଖାଦ୍ୟାଭାବ, ଏକ ନିରାଶାଜନକ ପରିସ୍ଥିତି ସୃଷ୍ଟି କରିଥିଲା । ଏହିପରି ସମୟରେ ଦିନେ ରାତ୍ରି କାଳରେ, ଗୁପ୍ତ ଭାବରେ, 'ଅଙ୍ଗଦ' ନାମକ ଏକ ଇଂରାଜି ନିଯୁକ୍ତ ଗୁପ୍ତଚର ରେସିଡେନ୍ସି ଫାଟକ ନିକଟରେ ପହଞ୍ଚିଲା । ଅଙ୍ଗଦ, ପୂର୍ବରୁ ଇଂରାଜି ବାହିନୀରେ ଯୋଗ ଦେଇ କିଛି ଯୁଦ୍ଧରେ ଲଢିଥିଲା ଓ ବର୍ତ୍ତମାନ ସେ ଚାକିରୀରୁ ଅବସର ଗ୍ରହଣ କରି ପେନ୍‌ସନ୍ ଭୋଗ କରୁଥିଲା । ଇଂରାଜିମାନେ ଖବର ନେଇଯିବା ନିରାପଦ ନଥିବାରୁ ତାହାକୁ ସମ୍ବାଦ ବାହକ ରୂପେ ନିଯୁକ୍ତ କରାଯାଇଥିଲା । ଫାଟକ ପାଖରେ ନିଜର ପରିଚୟ ଦେବା ଫଳରେ ତା'କୁ ଭିତରକୁ ନିଆଗଲା ଓ ସେ ଚିଫ୍‌କମିଶନରଙ୍କୁ, କାନପୁରରୁ 'ହାଭଲକ୍' ତା'ଙ୍କର ବାହିନୀ ସହିତ ସାହାଯ୍ୟ ପାଇଁ ଲକ୍ଷ୍ନୌ ଦିଗରେ ଆସୁଥିବା ଖବର ଜଣାଇଲା । ଏହି ଖବର ପାଇବା ମାତ୍ରେ ରେସିଡେନ୍ସିରେ ଥିବା ଇଂରାଜିମାନଙ୍କର ମନୋବଳ ବୃଦ୍ଧି ପାଇଲା ଓ ବହୁ ଘାତ ପ୍ରତିଘାତ ସତ୍ତ୍ୱେ ସେମାନଙ୍କର ମନରେ ଆଶା ଓ ଆନନ୍ଦର ସଞ୍ଚାର ହେଲା ।

ସେପ୍ଟେମ୍ବର ତେଇଶ ତାରିଖରେ 'ହାଭଲକ୍', ଲକ୍ଷ୍ନୌ ନଗରୀର ପ୍ରବେଶ ପଥରେ ଥିବା 'ଆଲାମବାଗ'ରେ ପହଞ୍ଚିଲେ । ସେଠାରେ ଦଳେ ବିଦ୍ରୋହୀ ସେନା ମୁତୟନ ଥିଲେ । 'ହାଭଲକ୍' ତୁରନ୍ତ ସେମାନଙ୍କୁ ଆକ୍ରମଣ କଲେ । ସାରାଦିନ ପ୍ରବଳ ଯୁଦ୍ଧ ହେଲା । ଏହି ଯୁଦ୍ଧରେ ପ୍ରଥମେ ଇଂରାଜିମାନେ, ବିଦ୍ରୋହୀ ବାହିନୀ ଠାରୁ ପାଞ୍ଚୋଟି କମାଣ ଦଖଲ କରିଥିଲେ ଓ ବିଦ୍ରୋହୀ ସୈନ୍ୟମାନେ, ତାହାର ପୁନର୍ଦଖଲକୁ ନେଇଗଲେ । ଉଭୟ ପକ୍ଷ ସେଦିନ ସମର କ୍ଷେତ୍ରରେ ହିଁ ରାତ୍ରିଯାପନ କଲେ । ବିଶ୍ରାମ କାଳରେ ବିଦ୍ରୋହୀ ବାହିନୀ, ହଠାତ୍ ଇଂରାଜି ବାହିନୀକୁ ଆକ୍ରମଣ କଲେ । ସେ ଦିନ ବର୍ଷଣ ମୁଖର ରାତ୍ରି ଥିଲା । କିନ୍ତୁ ଦିଲ୍ଲୀ ପତନର ସମ୍ବାଦ ଇଂରାଜି ବାହିନୀ ନିକଟରେ ପହଞ୍ଚି ଯିବା ଫଳରେ ସେମାନଙ୍କର ମନୋବଳ ଯଥେଷ୍ଟ ବୃଦ୍ଧି ପାଇଥିଲା ।

ପଚିଶ ତାରିଖ ସକାଳେ ଦେଖାଗଲା ଯେ 'ହାଭଲକ୍'ଙ୍କର ବାହିନୀ ଲକ୍ଷ୍ନୌ ନଗରୀକୁ ପଡିଥିବା ସାଧାରଣ ମାର୍ଗ ତ୍ୟାଗ କରି ଅନ୍ୟ ଏକମାର୍ଗ ଦେଇ ରେସିଡେନ୍ସି ଦିଗରେ ଆଗେଇଯାଉଛନ୍ତି । ଏହା ଦେଖିବା ମାତ୍ରେ ବିଦ୍ରୋହୀ ବାହିନୀ ସେମାନଙ୍କ ଉପରକୁ ପ୍ରବଳ ଗୁଳି ବର୍ଷଣ କଲେ । ଏହି ଗୁଳି ବର୍ଷଣ ମଧ୍ୟରେ 'ହାଭଲକ୍'ଙ୍କ ବାହିନୀ 'ଆଲାମବାଗ'ରୁ 'ଚାରବାଗ'କୁ ଆସିଲେ । ସେଠାରେ ଏକ ପୋଲ ଥିଲା ଓ ଏହି ପୋଲଟି ନଗରୀ ମଧ୍ୟକୁ ପ୍ରବେଶ ମାର୍ଗ ଥିଲା । ବିଦ୍ରୋହୀ ସୈନ୍ୟମାନେ ଇଂରାଜିଙ୍କ ଆଡକୁ ମୁହାଁଇ ତୋପ ଖଞ୍ଜି ପ୍ରବଳ ଗୋଳାବର୍ଷଣ କଲେ । କ୍ୟାପ୍‌ଟେନ 'ମଡ'

(Captain Maude) ପୋଲ ଉପରକୁ ଅଧଘଣ୍ଟାଏ ପାଇଁ ପ୍ରବଳ ଗୁଳି ବର୍ଷଣ କରିବା ପାଇଁ ଆଦେଶ ଦେଲେ । କିନ୍ତୁ ଏହା ସତ୍ତ୍ୱେ ପୋଲଟି ଖାଲି କରି ହେଲା ନାହିଁ ପରନ୍ତୁ ବିଦ୍ରୋହୀଙ୍କର ଆକ୍ରମଣରେ ବହୁ ଇଂରାଜି ସୈନ୍ୟ କ୍ଷୟ ହେଲେ ।

ଏହି ଅବସ୍ଥାରେ 'ମଡ୍' (Maude) ନିକଟରେ ଛିଡା ହୋଇଥିବା, 'ହାଭଲକ୍'ଙ୍କର ଯୁବା ପୁତ୍ରଙ୍କୁ, ଚେଷ୍ଟା କରିବାକୁ କହିଲେ । ଉକ୍ତ ଯୁବକ ପୋଲ ଉପରେ ସିଧାସଳଖ ଆକ୍ରମଣର ପରାମର୍ଶ ଦେଲେ । କିନ୍ତୁ 'ନେଲ୍'ଙ୍କର ବିନା ପରାମର୍ଶରେ 'ମଡ୍'ଙ୍କ ପକ୍ଷରେ ଏହା କାର୍ଯ୍ୟକାରୀ କରିବା ସମ୍ଭବପର ନଥିଲା । 'ନେଲ୍' ମଧ 'ହାଭଲକ୍'ଙ୍କ ବିନା ପରାମର୍ଶରେ ଏହା କାର୍ଯ୍ୟକାରୀ କରିବାକୁ ସମ୍ମତି ଦେଲେ ନାହିଁ । ଫଳରେ 'ନେଲ୍'ଙ୍କ ସାମନାରେ ଯୁବ ହାଭଲକ୍ ଘୋଡାରେ କିଛି ଦୂରରେ ଅବସ୍ଥାନ କରୁଥିବା 'ହାଭଲକ୍'ଙ୍କ ପାଖକୁ ଯାଇ ଫେରିଆସିଲେ ଓ ନେଲ୍‌ଙ୍କୁ ହାଭଲକ୍‌ଙ୍କ ସମ୍ମତି ଥିବା ବିଷୟ ପ୍ରକାଶ କଲେ । 'ନେଲ୍' ଏଥିରେ ବିଶ୍ୱାସ କରି ଗଲେ ଓ ପୋଲ ଉପରେ ସିଧାସଳଖ ଆକ୍ରମଣ କରିବାକୁ ଆଦେଶ ଦେଲେ । କିନ୍ତୁ, ବିଦ୍ରୋହୀ ମାନଙ୍କର ଗୁଳିମାଡରେଇଂରାଜ ସୈନ୍ୟମାନେ ଦୁଇ ତିନି ମିନିଟ୍ ମଧରେ ଧରାଶାୟୀ ହେଲେ । ଏହା ପରେ 'ଯୁବ ହାଭଲକ୍' ପୋଲ ଦେଇ ଆଗେଇ ଚାଲିଲେ । ଏହି ସମୟରେ ଅପର ଦିଗରୁ ଏକ ସିପାହୀ ତାଙ୍କ ଉପରକୁ ଗୁଳି ଚଳାଇଲା ଓ ତାହା ତାଙ୍କର ମୁଣ୍ଡ ଠାରୁ ଅଧଇଞ୍ଚ ବା ଇଞ୍ଚେ ବ୍ୟବଧାନରେ ଯାଇ ପିନ୍ଧିଥିବା ଟୋପିଟି କଣା କରିଦେଲା । ସେହି ସିପାହୀଟି ଅବିଚଳିତ ଭାବରେ ସେଠାରେ ଠିଆ ହୋଇ ପୁନର୍ବାର ଗୁଳି ଭର୍ତ୍ତି କରୁଥିବା ସମୟରେ 'ଯୁବ ହାଲକ୍'ଙ୍କ ଗୁଳିରେ ପ୍ରାଣ ହରାଇଲା ।

କିଛି ସମୟ ପରେ ଇଂରାଜି ବାହିନୀ ପୋଲବାଟ ଦେଇ ନଗରୀକୁ ପ୍ରବେଶ କଲେ ଓ ବିଦ୍ରୋହୀ ସୈନ୍ୟମାନେ ପ୍ରତିଆକ୍ରମଣ କରି କରି ପଛଘୁଞ୍ଚା ଦେବାକୁ ଲାଗିଲେ । ଇଂରାଜି ବାହିନୀ ଆଗେଇବାକୁ ଲାଗିଲେ । ଏପରିକି ସନ୍ଧ୍ୟା ପରେ ମଧ ସେମାନେ ବିଶ୍ରାମ ପାଇଁ ପ୍ରସ୍ତୁତି ନକରି ପ୍ରତିଆକ୍ରମଣର ମୁକାବିଲା କରି କରି ଆଗେଇ ଚାଲିଥିଲେ । ଇଂରାଜିମାନଙ୍କ ଦୁର୍ଭାଗ୍ୟକୁ ସେମାନେ କ୍ରମେ ଅନ୍ଧକାରରେ ପଥ ହୁଡି ବିଦ୍ରୋହୀ ବାହିନୀ ନିକଟକୁ ଆଗେଇବାରେ ଲାଗିଲେ । ଏହିପରି ଭାବରେ ସେମାନେ ଖାସବଜାରର ତୋରଣ ନିକଟକୁ ଚାଲିଆସିଲେ । ଜେନେରାଲ ନେଲ ଦେଖିଲେ ଯେ କମାଣ ବାହିନୀ ବହୁତ ପଛରେ ପଡିଯାଇଛି । ତେଣୁ ସେ ଘୋଡାରେ ବସି କମାଣ ବାହିନୀ ଆଡକୁ ମୁହଁ ବୁଲାଇ ଦେଖୁଥିଲେ । ତତ୍‌କ୍ଷଣାତ ତୋରଣର ପହରାରେ ଥିବା ସିପାହୀ ତାଙ୍କୁ ଲକ୍ଷ କରି ଗୁଳି ଚଳାଇବା ଫଳରେ ଗୁଳି ତାଙ୍କର ଗ୍ରୀବା ଭେଦ କଲା ଓ ସେ ସେହିଠାରେ

ଘୋଡା ଉପରୁ ପଡି ପ୍ରାଣ ତ୍ୟାଗ କଲେ । ଏହା ସତ୍ତ୍ୱେ ଇଂରାଜି ବାହିନୀ ଅବିଚଳିତ ଭାବରେ ଗୁଳିବର୍ଷଣ ଭିତରେ 'ଖାସବଜାର' ମଧ୍ୟ ଦେଇ ଆଗେଇ ଚାଲିଲେ । ଅଦୂରରେ ସେମାନେ 'ରେସିଡେନ୍ସି' ମଧ୍ୟରେ ଥିବା ଇଂରାଜିମାନଙ୍କର ଆନନ୍ଦ ଉଲ୍ଲାସ ଧ୍ୱନି ଶୁଣିବାକୁ ପାଇଲେ । କ୍ରମେ ସେମାନେ 'ରେସିଡେନ୍ସି' ମଧ୍ୟରେ ପ୍ରବେଶ କରି ଅନ୍ୟମାନଙ୍କ ସହିତ ମିଳିତ ହେଲେ । ଆହତମାନଙ୍କର ଚିକିତ୍ସା ପାଇଁ ବ୍ୟବସ୍ଥା କରାଗଲା । 'ରେସିଡେନ୍ସି'ରେ ଥିବା ଇଂରାଜିମାନେ, ଗତ ସତାଅଶୀ ଦିନ ହେବ ବିଦ୍ରୋହୀମାନଙ୍କର ଆକ୍ରମଣର ମୁକାବିଲା କରୁଥିଲେ । ଆକ୍ରମଣ ଫଳରେ ସେମାନଙ୍କ ମଧ୍ୟରୁ ସାତଶହ ଜଣ ମୃତ୍ୟୁ ବରଣ କରିଥିଲେ । ସେମାନଙ୍କ ମଧ୍ୟରୁ କେବଳ ପାଞ୍ଚଶହ ଇଂରାଜି, ଚାରିଶହ ଭାରତୀୟ ଜୀବିତ ଥିଲେ । 'ହାଭଲକ୍'ଙ୍କର ବାହିନୀରୁ ମଧ୍ୟ ସାତଶହ ବାସ୍ତରୀ ଜଣ ମୃତ୍ୟୁ ବରଣ କରିଥିଲେ ।

ଜେନେରାଲ ହାଭଲକ୍ ରେସିଡେନ୍ସି ଭିତରେ ମାତ୍ର ଚାରି ପାଞ୍ଚ ଘଣ୍ଟା ରହିଥିଲେ । ଗଭୀର ରାତ୍ରିରେ ଅତି ସନ୍ତର୍ପଣରେ ସେ ନିଜର ବାହିନୀ ସହିତ ଆଲମବାଗକୁ ଚାଲିଆସିଥିଲେ । 'ରେସିଡେନ୍ସି'ରେ ରହିଥିବା ଇଂରାଜିମାନଙ୍କ ସନ୍ତୋଷ ବିଧାନ ପାଇଁ 'ଆଉଟ୍‌ରାମ'ଙ୍କୁ ସେମାନଙ୍କ ପାଖରେ ଛାଡିଦେଇଥିଲେ ।

ଏହି ସମୟରେ 'ସାର୍ କଲିନ୍ କାମ୍ପବେଲ୍' (Sir Colin Campbell), ନୂତନ ଇଂରାଜି ସେନାଧକ୍ଷ ରୂପେ ନିଯୁକ୍ତି ପାଇ ଅଗଷ୍ଟ ତେର ତାରିଖ ଦିନ କଲିକତାରେ ପହଞ୍ଚିଲେ । ସେହିଦିନ ଠାରୁ ଅଗଷ୍ଟ ସତେଇଶ ତାରିଖ ପର୍ଯ୍ୟନ୍ତ ସେ ଏକ ବିରାଟ ବାହିନୀର ସଂଗଠନ କରି ଆକ୍ରମଣ ମସୁଧା ଚଳାଇଲେ । ମାଡ୍ରାସ, ଶ୍ରୀଲଙ୍କା, ଚୀନା ଆଦି ଦେଶରୁ ଆସୁଥିବା ଇଂରାଜି ସୈନ୍ୟମାନଙ୍କୁ ସେ ସଂଗଠିତ କଲେ । କଲିକତାର 'କାଶୀମବଜାର'ରେ ଏକ ନୂତନ ଅସ୍ତ୍ରଶସ୍ତ୍ର ଓ ଗୋଳାବାରୁଦ ନିର୍ମାଣ କାରଖାନା ଓ ଭଣ୍ଡାର ବସାଇଲେ । ଏହିପରି ପ୍ରସ୍ତୁତିରେ ଦୁଇମାସ ବିତିଗଲା । ଏ ମଧ୍ୟରେ ସେ ଲକ୍ଷ୍ନୌ ଖବର ମଧ୍ୟ ଅବଗତ ହେଲେ ଓ ବ୍ୟକ୍ତିଗତ ଭାବରେ 'ଲକ୍ଷ୍ନୌ' ଅଧିକାର କରିବା ମନସ୍ଥ କରି ନିଜର ବାହିନୀ ସହିତ ଯାତ୍ରା ଆରମ୍ଭ କଲେ ।

'କଲିନ୍'ଙ୍କ ନିର୍ଦ୍ଦେଶ ମତେ 'କର୍ଣ୍ଣେଲ ପାଓ୍ୱେଲ୍' (Colonel Powell) ଓ 'କାପ୍‌ଟେନ୍ ଉଇଲିୟମ୍‌ପିଲ୍' (Captain William Peal)ଙ୍କ ଅଧିନାୟକତ୍ୱରେ ଏକ ନୌବାହିନୀ ନଦୀ ପଥରେ 'ଏଲ୍‌ହାବାଦ' ଅଭିମୁଖେ ଯାତ୍ରା ଆରମ୍ଭ କଲା । କଲିକତାରୁ ଏଲ୍‌ହାବାଦ ଓ କାନପୁରର ପଥ ସେହି ପରିସ୍ଥିତିରେ ଅତ୍ୟନ୍ତ ବିପଦ ସଙ୍କୁଳ ଥିଲା ।

ବିଦ୍ରୋହୀ ସିପାହୀମାନେ ପଥ ମଧ୍ୟରେ ଗରିଲା କୌଶଳରେ ଆକ୍ରମଣ କରୁଥିଲେ ଓ ଗୁଳି ବର୍ଷଣ କରୁଥିଲେ । ସେ ସମୟରେ ଗାଡି ଯୋଗାଡ କରିବା ମଧ୍ୟ ଅତ୍ୟନ୍ତ ଦୁରୂହ ବ୍ୟାପାର ଥିଲା । ଏକ ବିଦ୍ରୋହୀ ଦଳର ଆକ୍ରମଣର ମୁକାବିଲା କରିବାକୁ ଯାଇ ନୌବାହିନୀର କର୍ଣ୍ଣେଲ ପ୍ରାଣ ହରାଇଲେ । ସେନାଧ୍ୟକ୍ଷ 'କଲିନ୍ କ୍ୟାମ୍ପବେଲ' କୌଣସି ପ୍ରକାରେ ସଂଗୃହୀତ ହୋଇଥିବା ଏକ ତୃତୀୟ ଶ୍ରେଣୀର ଗାଡିରେ ଯାତ୍ରା କରୁଥିଲେ । 'ଶେରଘାଟୀ' ନିକଟରେ ଦଳେ ବିଦ୍ରୋହୀ ସୈନ୍ୟ, ଏହାକୁ ଅତିକ୍ରମ କଲେ ମଧ୍ୟ ଏକ ତୃତୀୟ ଶ୍ରେଣୀ ଗାଡି ପ୍ରତି ସୌଭାଗ୍ୟକୁ ସେମାନେ କୌଣସି ଗୁରୁତ୍ୱ ଦେଇନଥିଲେ । ସୁତା ଖିଅକେ 'କଲିନ୍'ଙ୍କର ପ୍ରାଣ ରକ୍ଷା ହୋଇଗଲା । କିନ୍ତୁ 'କଲିନ୍' ବିପଦର ଆଶଙ୍କା କରି ରାସ୍ତା ବଦଳାଇ 'କାନପୁର' ଅଭିମୁଖେ ଯାତ୍ରା କଲେ ।

'କଲିନ୍', 'କାନପୁର'ରେ ନଭେମ୍ବର ତିନି ତାରିଖ ଦିନ ପହଞ୍ଚିଲେ । କାନପୁରରେ 'ବ୍ରିଗେଡିୟର ଗ୍ରାଣ୍ଟ'ଙ୍କ ଅଧିନାୟକତ୍ୱରେ ଏକ ଏକ ବିଶାଳ ବାହିନୀ ଅପେକ୍ଷାମାଣ ଥିଲେ । ନୌବାହିନୀ ମଧ୍ୟ କାନପୁରରେ ପହଞ୍ଚିଯାଇଥିଲେ । 'ଗ୍ରୀଥେଡ୍' ମଧ୍ୟ ନିଜର ବାହିନୀ ସହିତ ଦିଲ୍ଲୀ ପତନ ପରେ ପଥ ମଧ୍ୟରେ ବିଦ୍ରୋହୀ ସୈନ୍ୟ ନିପାତ କରି କରି କାନପୁରରେ ଆସି ମିଳିତ ହେଲେ । 'ଗ୍ରାଣ୍ଟ'ଙ୍କର ବାହିନୀରେ ପାଞ୍ଚ ହଜାର ସୈନ୍ୟ ଓ ପ୍ରାୟ ଶହେ ଓଟ ଅନ୍ୟାନ୍ୟ ଉପକରଣାଦି ଥିଲା । 'ଗ୍ରାଣ୍ଟ' ଯାତ୍ରା ଆରମ୍ଭ କରି 'ଲକ୍ଷ୍ନୌ' ଠାରୁ ସାତକୋଶ ଦୂରରେ ଥିବା 'ଫିରୋଜଗଞ୍ଜ'ରେ ଛାଉଣୀ ପକାଇ ରହିଥିଲେ । ସେ 'ଆଲାମବାଗ'ରେ ପହଞ୍ଚିବାର ଯୋଜନା କରୁଥିଲେ ।

ଏ ମଧ୍ୟରେ ସଦ୍ୟ ଆଗତ  ଇଂରାଜି ବାହିନୀର ସମ୍ବାଦ 'ବେଗମ୍ ହଜରତ୍ ମହଲ' ପାଇ ସାରିଥିଲେ । ଏଣୁ ତାଙ୍କ ଆଦେଶରେ 'ମାଧୋସିଂହ' ହଠାତ୍ 'ଗ୍ରାଣ୍ଟ'ଙ୍କ ସେନା ଉପରକୁ ସସୈନ୍ୟ ଆକ୍ରମଣ କଲେ । ସେ ଅତ୍ୟନ୍ତ ପରାକ୍ରମ ସହକାରେ ଏପରି ଆକ୍ରମଣ କଲେ ଯେ ଗ୍ରାଣ୍ଟଙ୍କ ବାହିନୀ ମଧ୍ୟରେ ହଇଚଇ ସୃଷ୍ଟି ହୋଇଗଲା । କିନ୍ତୁ ପରିଶେଷରେ 'ମାଧୋସିଂହ'ଙ୍କର ବହୁ ସୈନ୍ୟ ଭୂତଳଶାୟୀ ହୋଇଯିବା ଫଳରେ ସେ ବାଧ୍ୟ ହୋଇ ପଛଘୁଞ୍ଚା ଦେଲେ ଓ ଏହାପରେ ରାଜା ମାନସିଂହ ତାଙ୍କ ବାହିନୀ ସହ ଇଂରାଜିମାନଙ୍କୁ ଆକ୍ରମଣ କଲେ ଓ ସମଦଶା ପ୍ରାପ୍ତ ହୋଇ ପଳାୟନ କଲେ ଓ 'ଗ୍ରାଣ୍ଟ'ଙ୍କର ବାହିନୀ ଉତ୍ସାହ ସହକାରେ 'ଆଲମବାଗ'ରେ ପହଞ୍ଚି 'ହାଭଲକ୍'ଙ୍କ ବାହିନୀ ସହିତ ମିଳିତ ହେଲେ ।

ସେହି ରାତ୍ରିରେ 'କାନପୁର'ରୁ ସେନାଧ୍ୟକ୍ଷ 'କଲିନ୍'ଙ୍କ ପ୍ରେରିତ ଆଉ ଏକ ବ୍ରିଗେଡ ୩/୪ ହଜାର ସୈନ୍ୟସହ 'ଆଲାମବାଗ'ରେ ମିଳିତ ହେଲେ । ଏହା ଦ୍ୱାରା

ଆଲାମବାଗରେ ସମ୍ମିଳିତ ଇଂରାଜି ବାହିନୀର ସଂଖ୍ୟା ଓ ମନୋବଳ ଯଥେଷ୍ଟ ବୃଦ୍ଧି ପାଇଲା । ଏହି ଖବର ପ୍ରାପ୍ତ ହୋଇ 'କଲିନ୍' କାନପୁର ତ୍ୟାଗ କରି, ଗଙ୍ଗା ନଦୀ ଅତିକ୍ରମ କରି, 'ଲକ୍ଷ୍ନୌ' ଦିଗରେ, ଆଗେଇ ଚାଲିଲେ । କାନପୁରରେ, ପୂର୍ବରୁ ବିଭିନ୍ନ ସମରକ୍ଷେତ୍ରରେ କୃତିତ୍ୱ ଅର୍ଜନ କରିଥିବା ସେନାପତି 'ୱିଣ୍ଡହାମ୍'ଙ୍କ ନେତୃତ୍ୱରେ କିଛି ଇଂରାଜି ସୈନ୍ୟ ଓ ଶିଖ୍ ସୈନ୍ୟ ତଥା କିଛି କମାଣ ଓ ଗୁଳିଗୋଳା ଆଦି ରହିଲା ।

ନଭେମ୍ବର ନଅତାରିଖ ଦିନ 'କଲିନ୍' ଲକ୍ଷ୍ନୌର 'ଆଲାମବାଗ'ରେ ପହଞ୍ଚି ମୁଖ୍ୟ ବାହିନୀ ସହିତ ମିଳିତ ହେଲେ ଓ ନଭେମ୍ବର ଚଉଦ ତାରିଖ ଦିନ ସେ 'ଲକ୍ଷ୍ନୌ' ଆକ୍ରମଣ କରିବା ପାଇଁ ଆଦେଶ ଦେଲେ । ଏଥିପୂର୍ବରୁ 'କାଭେନାଗ୍' (Cavenagh) ନାମକ ଏକ ସାହସୀ ଇଂରାଜି, 'କଲିନ୍'ଙ୍କର ଆଦେଶ କ୍ରମେ, ବାହିନୀରେ ଥିବା ଦେଶୀ ସିପାହୀ ପହରାଦାର ସହିତ ମୁହଁରେ କଳା ବୋଳି ହୋଇ ଭାରତୀୟ ପୋଷାକରେ ରାତ୍ରିରେ ଗୁପ୍ତ ଭାବରେ ରେସିଡେନ୍ସିରେ ପ୍ରବେଶ କରି, ତନ୍ମଧ୍ୟରେ ଥିବା ବାହିନୀର ସେନାଧକ୍ଷ 'ଆଉଟରାମ୍'ଙ୍କୁ 'କଲିନ୍'ଙ୍କର ଆକ୍ରମଣର ଯୋଜନା ଅନୁସାରେ, 'ଆଲାମବାଗ'ରୁ ଆକ୍ରମଣ ଆରମ୍ଭ ହେବା ମାତ୍ରେ 'ଆଉଟରାମ୍' (Outram) ରେସିଡେନ୍ସି ମଧ୍ୟରୁ ବାହାରି ନିଜର ସେନାମାନଙ୍କ ସହ ଅପରଦିଗରୁ ଆକ୍ରମଣ କରିବା ସ୍ଥିର ହେଲା ଓ ଏହିପଦ୍ଧତିରେ ଉଭୟ ସେନା ମିଳିତ ହୋଇ ଲକ୍ଷ୍ନୌକୁ ସମ୍ପୂର୍ଣ୍ଣ ଭାବରେ ଅଧିକାର କରିବା ମଧ୍ୟ ସ୍ଥିର ହେଲା ।

ଏହି ସମ୍ମିଳିତ ଶ୍ରେଷ୍ଠ ଓ ଦୁର୍ଦ୍ଧର୍ଷ ସେନାଧକ୍ଷ ସମ୍ବଳିତ ବିଶାଳ ବାହିନୀର ଆଲାମବାଗରେ ଅବସ୍ଥିତି ଓ ଲକ୍ଷ୍ନୌ ଆକ୍ରମଣର ଯୋଜନା, 'ବେଗମ ହଜରତ୍‌ମହଲ', ନଗରୀ ମଧ୍ୟସ୍ଥ 'କେଶରବାଗ'ରେ ଥାଇ, ଅବଗତ ହେଲେ । ସେ ତତ୍‌କ୍ଷଣାତ ନିଜର ସେନାଧକ୍ଷ ମାନଙ୍କୁ ସମ୍ମିଳିତ ଭାବରେ ପ୍ରଚଣ୍ଡ ଆକ୍ରମଣ କରି, 'ଆଲାମବାଗ'ରୁ ଇଂରାଜିମାନଙ୍କୁ ଘଉଡାଇ ଦେବାପାଇଁ ଆଦେଶ ଦେଲେ ।

ବେଗମଙ୍କର ଆଦେଶ ମତେ ବିଦ୍ରୋହୀ ସେନା, ଶାହୀଫୌଜ ଓ ରାଜା ଜମିଦାର, ଇଲାକାଦାର ଆଦି ମାନଙ୍କର ସମ୍ମିଳିତ ଫୌଜ, ଏକତ୍ରିତ ହୋଇ ବିଭିନ୍ନ ସ୍ଥାନରେ ଯୁଦ୍ଧ ମଞ୍ଚା ପ୍ରସ୍ତୁତ କରିବାକୁ ଲାଗିଲେ । ରାଜା ଜୟଲାଲ ସିଂହ, କରବଲା ଖୁଦାବକ୍ସ ଓ ଆଲମାସ ଅଲି ଖାଁଙ୍କର ବଗିଚା ତଥା ତାହାର ପଡୋଶୀ ସ୍ଥାନରେ ତୋପମାନ ଖଞ୍ଜାଯାଇ ଯୁଦ୍ଧମଞ୍ଚାମାନ ପ୍ରସ୍ତୁତ ହୋଇଗଲା । କ୍ରାନ୍ତିକାରୀ ଫୌଜ 'ଜଲାଲପୁର' ମୈଦାନରୁ 'ଆଲମବାଗ' ନିକଟକୁ ଆଗେଇ ଚାଲିଲେ । ହଠାତ୍ କିଛି ଇଂରାଜି ସୈନ୍ୟ

'ଆଲମବାଗ'ରୁ ଦୁଇଟି ତୋପ ସହ ବାହାରକୁ ଆସି ବିଦ୍ରୋହୀମାନଙ୍କ ଉପରେ ପ୍ରବଳ ଗୋଳାବର୍ଷଣ କଲେ । କିନ୍ତୁ ବିଦ୍ରୋହୀମାନେ ତା'ର ତୀଖା ଜବାବ ଦେବା ଫଳରେ ସେମାନେ ଫେରିଗଲେ । ଏହି ପ୍ରତ୍ୟାକ୍ରମଣରୁ ଇଂରାଜିମାନେ ବିଦ୍ରୋହୀ ମାନଙ୍କର ଶକ୍ତିର କଳନା କରି ରେସିଡେନ୍ସିରେ ପହଞ୍ଚିବାର ସୁଚିନ୍ତିତ ଯୋଜନା କରିବାକୁ ଲାଗିଲେ । ଇଂରାଜିମାନଙ୍କ ଦିଗରୁ ଆଉ ଆକ୍ରମଣ ନହେବା ଫଳରେ ବିଦ୍ରୋହୀମାନଙ୍କର ଯୁଦ୍ଧମଞ୍ଚା କୋହଳ ହୋଇଗଲା । ଏହାର ସୁଯୋଗ ନେଇ ଇଂରାଜି ବାହିନୀ 'ଦିଲକୁଶାବାଗ'କୁ ପଡିଥିବା ରାସ୍ତାରେ 'ରମନାଶାହୀ' ମଧ୍ୟରେ ଆଗେଇ ଚାଲିଲେ ।

ଏ ଖବର ବେଗମଙ୍କର ବିଶ୍ୱସ୍ତ 'ମମ୍ମୁଖାଁ' ପ୍ରାପ୍ତ ହୋଇ ତୁରନ୍ତ ସୈନ୍ୟ ସଂଗ୍ରହ କରି ଇଂରାଜି ବାହିନୀର ପଥରୋଧ କରିବା ପାଇଁ ଆଗେଇଗଲେ । କିନ୍ତୁ, ଏହା ବିଶେଷ ଫଳଦାୟକ ହେଲା ନାହିଁ, କାରଣ ଇଂରାଜି ବାହିନୀ, ବିଦ୍ରୋହୀମାନଙ୍କର ଗୋଟାକ ପରେ ଗୋଟାଏ ଯୁଦ୍ଧ ମଞ୍ଚା ଭଙ୍ଗ କରି, ପ୍ରାୟ ମଧ୍ୟାହ୍ନ ବେଳକୁ ଲକ୍ଷ୍ନୌ ନଗରୀ ମଧ୍ୟରେ ପ୍ରବେଶ କରିଗଲେ । 'ମମ୍ମୁଖାଁ' ଦିଲ୍ଲୀରୁ ଆଗତ ବିଦ୍ରୋହୀ ବାହିନୀକୁ ଓ ଅହମଦ ଶାହଙ୍କୁ ଇଂରାଜିମାନଙ୍କର ପଥରୋଧ କରିବା ପାଇଁ ନିର୍ଦ୍ଦେଶ ଦେଲେ । 'ଅହମଦଶାହ', ନିଜର ଚିରାଚରିତ ରୀତିରେ ଡଙ୍କା ବଜାଇ ବଜାଇ ଇଂରାଜି ସୈନ୍ୟମାନଙ୍କ ଉପରେ ପ୍ରବଳ ଆକ୍ରମଣ କଲେ । ପ୍ରତି ପଦକ୍ଷେପରେ ଯୁଦ୍ଧ ଚାଲିଲା । ଇଂରାଜିମାନଙ୍କ ଶବରେ ଲକ୍ଷ୍ନୌର ପଥପୂର୍ଣ୍ଣ ହୋଇଗଲା । କିନ୍ତୁ ତଥାପି, ତାହା ଖାତିର ନକରି ଇଂରାଜି ବାହିନୀ ପ୍ରଚଣ୍ଡ ଆକ୍ରମଣ ଅବ୍ୟାହତ ରଖି ଆଗେଇବାକୁ ଲାଗିଲେ । ଧୀରେ ଧୀରେ ଇଂରାଜି ବାହିନୀ 'ସିକନ୍ଦରାବାଗ'କୁ ଘେରିଗଲେ ଓ ସେଠାରେ ଥିବା ବିଦ୍ରୋହୀଙ୍କ ସହିତ ପ୍ରବଳ ସଂଗ୍ରାମ ପରେ ତାହା ଅଧିକାର କଲେ । ଏହାପରେ ଇଂରାଜି ସେନା 'ହଜରତଗଞ୍ଜ'ରେ ପହଞ୍ଚିଗଲେ । ସେଠାରେ 'ଅହମଦଶାହ', ନିଜର ବାହିନୀ ସହିତ ଉପସ୍ଥିତ ଥିଲେ । ସେ, ଇଂରାଜି ବାହିନୀକୁ ପ୍ରବଳ ପରାକ୍ରମରେ ଆକ୍ରମଣ କଲେ । କିନ୍ତୁ ଦୁର୍ଭାଗ୍ୟକୁ ସେ, ହଠାତ୍ ଆହତ ହୋଇ ତଳେ ପଡିଗଲେ ଓ ବିଦ୍ରୋହୀସିପାହୀମାନେ ତାଙ୍କୁ ଏକ ଦୋଳାରେ ବସାଇ ନେଇଗଲେ ।

ଅପରଦିଗରୁ ଜେନେରାଲ 'ଆଉଟ୍‌ରାମ୍', ରେସିଡେନ୍ସିରୁ ନିଜ ବାହିନୀ ସହ ବାହାରି ଆସି 'ମୋତିମହଲ' ପର୍ଯ୍ୟନ୍ତ ଦଖଲ ନେଇଯାଇଥିଲେ । ବର୍ତ୍ତମାନ ବିଦ୍ରୋହୀମାନଙ୍କର ପ୍ରାୟ ସମସ୍ତ ଯୁଦ୍ଧମଞ୍ଚା ଭଙ୍ଗ ହୋଇଥିଲା । କେବଳ 'ଛତର ମଞ୍ଜିଲ'ରେ ବିଦ୍ରୋହୀମାନଙ୍କର ଏକ ଯୁଦ୍ଧ ମଞ୍ଚା ଥିଲା । ଜେନେରାଲ 'ହାଭଲକ୍' ତୁରନ୍ତ ସଂଘର୍ଷ କରି ତାହା ଦଖଲନେଇଗଲେ ଓ ଜେନେରାଲ ଆଉଟ୍‌ରାମ୍‌ଙ୍କ ସହିତ ମିଳିତ

ହେଲେ । ଏହିପରି ଭାବରେ 'ଦିଲ୍‌କୁଶାବାଗ' ଠାରୁ 'ଛତରମଞ୍ଜିଲ୍' ପର୍ଯ୍ୟନ୍ତ ଇଂରାଜିମାନଙ୍କର ଅଧିକାରରେ ରହିଲା । ଏହା ସତ୍ତ୍ୱେ ଇଂରାଜି ବାହିନୀ ବିଶ୍ରାମ ନନେଇ ଅତ୍ୟନ୍ତ ତତ୍ପରତାର ସହିତ 'ନସରତ୍‌ବାଗ'କୁ ଦଖଲ ନେଇ 'ଗୋମତୀ' ପର୍ଯ୍ୟନ୍ତ ରାସ୍ତା ତିଆରି କଲେ ଏବଂ କେଶରବାଗକୁ ଲକ୍ଷ୍ୟକରି ତିନୋଟି ତୋପ ଖଞ୍ଜିଦେଲେ । ସେଥିରୁ ଦୁଇଚାରିଥର ଗୋଳା ବର୍ଷଣ ପରେ ଇଂରାଜିମାନେ ହଠାତ୍ ରହସ୍ୟମୟ ଭାବରେ ନୀରବ ରହିଲେ ।

ଏହି ସମୟରେ ଦିନେ ସନ୍ଧ୍ୟା ବେଳେ, 'ଛତରମଞ୍ଜିଲ'ର ବାହାର ପାଚେରୀରେ ଏକ ଉର୍ଦ୍ଦୁ ଘୋଷଣାନାମା ଦେଖାଗଲା । ତାହା ଇଂରାଜିମାନଙ୍କର ଥିଲା । ସେ ଘୋଷଣାନାମାରେ ସେମାନେ ଜଣାଇଥିଲେ ଯେ, ସେମାନେ ନିଜର ଦଖଲ କରିଥିବା ସ୍ଥାନକୁ ସ୍ୱଇଚ୍ଛାରେ ତ୍ୟାଗକରି ଯାଉଛନ୍ତି । ଏହି ଇସ୍ତାହାର ଦେଖିବା ପରେ ପରେ 'ହଜରତ୍ ମହଲ'ଙ୍କର ଦରବାରରେ ମନ୍ତ୍ରଣା ସଭା ବସିଲା । ଏହି ସଭାରେ 'ହଜରତ୍‌ମହଲ', ଇଂରାଜିମାନେ ସ୍ୱଇଚ୍ଛାରେ ସ୍ଥାନ ତ୍ୟାଗ କରି ଯାଉଥିବା ବେଳେ ସେମାନଙ୍କୁ ଆକ୍ରମଣ କରିବା ଉଚିତ୍ ହେବ ନାହିଁ ବୋଲି ମତବ୍ୟକ୍ତ କଲେ । ସଭାରେ ତାହାହିଁ ସ୍ଥିର କରାଗଲା ।

ସକାଳେ ରେସିଡେନ୍ସିରୁ ଇଂରାଜିମାନେ ଗୋମତୀର ତୀରରେ ଅଗ୍ରସର ହୋଇ 'ସୁଲତାନଗଞ୍ଜ' ରାସ୍ତାରେ 'ଦିଲକୁଶବାଗ' ଆଡକୁ ଆଗେଇଯାଉଥିଲେ । ଆଗରେ ତୋପଖାନା ଓ ପଞ୍ଜାବୀ ଫୌଜ ଥିଲେ । ଡାହାଣ ଓ ବାମ ଦିଗରେ ଇଂରାଜି ଫୌଜ ଯାଉଥିଲେ । ମଝିରେ ଇଂରାଜିମାନଙ୍କର ପରିବାରର ପୁରୁଷ, ସ୍ତ୍ରୀ ତଥା ଶିଶୁମାନେ ଥିଲେ । ସମସ୍ତେ ନିଜ ନିଜର ଦ୍ରବ୍ୟ ସାମଗ୍ରୀ ନିଜ ମସ୍ତକରେ ବହନ କରିଥିଲେ । ପଥ ମଧ୍ୟରେ ବିଭିନ୍ନ ସ୍ଥାନରେ 'ଶାହୀ ଫୌଜ'ଙ୍କର ଯୁଦ୍ଧମଞ୍ଚାମାନ ଥିଲା । ସେମାନଙ୍କ ହାତରେ ବନ୍ଧୁକ ଥିଲା । କିନ୍ତୁ, ବେଗମ ହଜରତମହଲଙ୍କର ଆଦେଶ ହେତୁ ସେମାନେ ନୀରବ ଦ୍ରଷ୍ଟା ହୋଇ ରହିଥିଲେ । ବିଦ୍ରୋହୀ ସିପାହୀମାନେ ଯୁଦ୍ଧ ମଞ୍ଚାରୁ ଆଗ୍ରହର ସହିତ ଇଂରାଜିମାନଙ୍କର ପ୍ରତ୍ୟାବର୍ତ୍ତନ ଦେଖୁଥିଲେ । ହଠାତ୍ ଜଣେ ସୈନ୍ୟ ଗୁଳିଚଳାଇବା ଫଳରେ ଇଂରାଜିମାନଙ୍କ ମଧ୍ୟରୁ ଜଣେ ଯୁବତୀ ଟଳି ପଡିଲେ । ଏହା ସତ୍ତ୍ୱେ ଇଂରାଜିମାନେ ନିର୍ବିକାର ଭାବରେ ଶାନ୍ତିର ସହିତ ଆଗେଇ ଚାଲିଲେ ।

ରେସିଡେନ୍ସି ଖାଲି କରିସାରି ଜେନେରାଲ ଆଉଟ୍‌ରାମ୍, ଇଂରାଜିମାନଙ୍କ ସହିତ 'ଆଲାମବାଗ'ରେ ଦିନେ ରହିଲେ, ତା'ପର ଦିନ ସକାଳୁ ସମସ୍ତଙ୍କୁ ନେଇ 'କାନପୁର'

ଅଭିମୁଖେ ରମାନା ହେଲେ । ଇଂରାଜି ସ୍ତ୍ରୀ, ବୃଦ୍ଧ ଓ ଶିଶୁ ତଥା ବେସାମରିକ ବ୍ୟକ୍ତିମାନଙ୍କୁ କାନପୁରରେ ପହଞ୍ଚାଇ ଦେଇ ସୁରକ୍ଷିତ କରିବା 'ଆଉଟ୍‌ରାମ୍'ଙ୍କର ମୁଖ୍ୟ ଧେୟ ଥିଲା । କିନ୍ତୁ ଆଉଟ୍‌ରାମଙ୍କୁ ଜଣାନଥିଲା ଯେ 'ମୁରାର' ଛାଉଣୀର ବିଦ୍ରୋହୀସୈନ୍ୟମାନଙ୍କୁ ନେଇ 'ତାନ୍ତ୍ୟାଟୋପେ' ଆକ୍ରମଣ ଉଦ୍ଦେଶ୍ୟରେ ଆସିଯାଇଥିଲେ ଓ 'ଫତେହପୁର ଚୌରସୀ'ରୁ 'ନାନାସାହେବ' ମଧ୍ୟ ନିଜର ବାହିନୀ ସହିତ ତାନ୍ତ୍ୟା ଟୋପେଙ୍କ ସହିତ ମିଳିତ ହୋଇଥିଲେ । ପୂର୍ବରୁ 'କଲିନ୍' 'ଆଲାମବାଗ'ରୁ ନିଜର ବାହିନୀ ସହିତ କାନପୁର ଯାଇଥିଲେ ଓ ତାଙ୍କର ନାନାସାହେବ ଓ 'ତାନ୍ତ୍ୟାଟୋପେଙ୍କ ସହ ଜୋର ସଂଗ୍ରାମ ଚାଲିଥିଲା ।

ଏ ଖବର ଲକ୍ଷ୍ନୌରେ 'ବେଗମ ହଜରତମହଲ' ପାଇବା ମାତ୍ରେ ତୁରନ୍ତ ମନ୍ତ୍ରଣା ସଭା ଡକାଇଲେ । ମନ୍ତ୍ରଣାରେ ସ୍ଥିର ହେଲା ଯେ 'କଲିନ୍' କାନପୁରରେ 'ନାନାସାହେବ' ଓ 'ତାନ୍ତ୍ୟା ଟୋପେ'ଙ୍କ ସହ ଯୁଦ୍ଧରେ ବ୍ୟସ୍ତ ଥିବା ଓ 'ଆଉଟ୍‌ରାମ' 'ଆଲାମବାଗ'ରୁ ଚାଲିଯିବା ଫଳରେ ଲକ୍ଷ୍ନୌ ସମ୍ପୂର୍ଣ୍ଣ ଭାବରେ ସ୍ୱାଧିନ ହୋଇଛି । ଏହି ଦୃଷ୍ଟିରୁ 'ଲକ୍ଷ୍ନୌ'ରୁ 'କାନପୁର'କୁ ଯାଉଥିବା ଇଂରାଜିମାନଙ୍କୁ ଲୁଟ୍ କରି ହତ୍ୟା କରାଯିବା ସ୍ଥିର ହେଲା । ଏହି କ୍ରମରେ ଲକ୍ଷ୍ନୌରୁ କାନପୁର ଯିବା ରାସ୍ତାର ପାର୍ଶ୍ୱରେ ଥିବା ଗ୍ରାମବାସୀ ତଥା ଜମିଦାର, ରାଜା ଓ ଇଲାକାଦାରମାନଙ୍କୁ, 'କାନପୁର' ଯାଉଥିବା ଇଂରାଜିମାନଙ୍କ ପାଖରେ ଥିବା ପ୍ରଚୁର ଧନ ଓ ଦ୍ରବ୍ୟାଦି ଲୁଟ୍ କରି ବେଗମଙ୍କ ପାଖକୁ ପଠାଇବାକୁ ଓ ସେମାନଙ୍କୁ ହତ୍ୟା କରିବାକୁ ନିର୍ଦ୍ଦେଶ ଦିଆହୋଇଥିଲା । ଅପରପକ୍ଷରେ, 'ଆଲାମବାଗ'ରେ ଥିବା ଅବଶିଷ୍ଟ ଇଂରାଜି ସୈନ୍ୟଙ୍କୁ ଆକ୍ରମଣ କରିବାର ପ୍ରସ୍ତୁତି ମଧ୍ୟ କରାଗଲା । ଦିଲ୍ଲୀରୁ ଆସିଥିବା ଆଠହଜାର ବିଦ୍ରୋହୀ ସୈନ୍ୟ ଏଥିରେ ସାମିଲ ହେଲେ । 'କଲିନ୍', 'କାନପୁର'ରେ 'ତାନ୍ତ୍ୟା ଟୋପେ' ଓ 'ନାନାସାହେବ'ଙ୍କ ମୁକାବିଲା କରୁଥିବା ଦୃଷ୍ଟିରୁ, 'ଆଉଟ୍‌ରାମ'ଙ୍କୁ 'ଆଲାମବାଗ'ରେ ଇଂରାଜୀବାହିନୀର ସୁରକ୍ଷା ପାଇଁ ପୁନର୍ବାର ଲକ୍ଷ୍ନୌ ପଠାଇଲେ । 'ଆଉଟ୍‌ରାମ' ହଜାରେ ଇଂରାଜି ସୈନ୍ୟ ପଞ୍ଜାବ ବାହିନୀ ତଥା ବହୁ କମାଣ ଓ ଆବଶ୍ୟକୀୟ ଦ୍ରବ୍ୟାଦି ସହ ନିର୍ଦ୍ଦେଶ ମତେ 'ଆଲାମବାଗ'ରେ ପହଞ୍ଚିଲେ ।

ଏଦିଗରେ ଇଂରାଜି ଆକ୍ରମଣର ମୁକାବିଲା ପାଇଁ ଲକ୍ଷ୍ନୌ ନଗରୀରେ ପ୍ରସ୍ତୁତି ଚାଲିଥିଲା । ବେଗମ୍, ଏହି କାର୍ଯ୍ୟ ନିଜର ବିଶ୍ୱସ୍ତ ସେନାପତି 'ମମ୍ମୁଖାଁ'ଙ୍କ ହସ୍ତରେ ସମର୍ପଣ କଲେ । 'ମମ୍ମୁଖାଁ' ଦିନ ରାତି ଅକ୍ଲାନ୍ତ ପରିଶ୍ରମ କରି ସମସ୍ତ ପ୍ରତିରକ୍ଷାମୂଳକ ବ୍ୟବସ୍ଥା କଲେ । ବଡ ବଡ ପାଚେରୀ ନିର୍ମାଣ କରାଗଲା । ଗଭୀର ଖାଇମାନ

ଖୋଳାହେଲା । କେଶରବାଗର ଚାରି ଦ୍ୱାରରେ, ବିଶାଳ ଅବରୋଧମାନ ନିର୍ମାଣ କରାଯାଇ ତା'ଉପରେ ତୋପମାନ ଖଞ୍ଜିଦିଆଗଲା । ସବୁ ସ୍ଥାନରେ ସୈନ୍ୟମାନଙ୍କୁ ମୁତୟନ କରାଗଲା । ଚାରୋଟି ବିଶାଳ ଖାଇ ନିର୍ମାଣ କରାଗଲା । ତନ୍ମଧ୍ୟରୁ ଗୋଟାଏ ଖାଇ 'ଛତରମଞ୍ଜିଲ' କୋଠିରୁ 'ଜହୁରବକ୍ସ' କୋଠି ପର୍ଯ୍ୟନ୍ତ ଓ ଦ୍ୱିତୀୟଟି 'ଚୌଲକ୍ଷୀମହଲ'ରୁ ରୋଶନ ଅଲି ଖାଁଙ୍କ ଗୃହ ପର୍ଯ୍ୟନ୍ତ ଥିଲା । ଚତୁର୍ଥଟି 'କେଶରବାଗ'ର ପଶ୍ଚିମରେ ଥିବା 'କୈସରପସନ୍ଦ' କୋଠାର ଦ୍ୱାର ଆଡକୁ ଥିଲା । ଏତଦ୍‌ବ୍ୟତୀତ ଏଗାରଟି ସୁଡଙ୍ଗ ମଧ୍ୟ ଖୋଳା ହେଲା ଓ ତାହା ବାରୁଦ ଓ ଗୋଳା ଆଦିରେ ପୂର୍ଣ୍ଣ କରାଗଲା । ଏକ ସୁଡଙ୍ଗ 'ଚୀନ ବଜାର'ର ଦ୍ୱାର ଦିଗକୁ ଦ୍ୱିତୀୟଟି 'ତାରାବାଲି କୋଠି'ର ଦ୍ୱାରର ନିମ୍ନ ଭାଗରେ ଓ ତୃତୀୟଟି ବଶୀରଦୌଲ୍ଲା ଖ୍ୱାଜାସରାଙ୍କ ଗୃହ ଅତିକ୍ରମ କରିଥିଲା । ସେହିପରି ଚତୁର୍ଥ ସୁଡଙ୍ଗଟି 'ଲାଲବାରହଦରୀ ଦ୍ୱାର' ଦିଗରେ ଓ ପଞ୍ଚମଟି 'ତାଜମହଲ ବେଗମ'ଙ୍କ ଗୃହ ଦିଗରେ ଥିଲା । ଷଷ୍ଠ ସୁଡଙ୍ଗ 'ଅଞ୍ଜୁମୁଦୌଲ୍ଲା'ଙ୍କ ଗୃହରେ ଓ ସପ୍ତମଟି 'ରୋଶନ ଅଲିଖାଁ'ଙ୍କ ଗୃହ ଦିଗରେ ଥିଲା । ଅଷ୍ଟମଟି 'ରକାବଗଞ୍ଜ' ଦରବାଜା ଦିଗରେ ଥିଲା ଓ ନବମଟି 'ଲୋହେକାପୁଲ' ଦିଗରେ ଥିଲା । ଦଶମ ସୁଡଙ୍ଗଟି 'ପୁଖ୍‌ତାପୁଲ' ଦିଗରେ ଓ ଏକାଦଶ ସୁଡଙ୍ଗଟି ରେସିଡେନ୍ସିର ପୃଷ୍ଠ ଭାଗରେ ଥିଲା । ଏତଦ୍‌ବ୍ୟତୀତ 'ସୁବେଦାର ଦୁର୍ଗାସିଂହ' ମଧ୍ୟ ବହୁତ ସୁଡଙ୍ଗ ନିର୍ମାଣ କରିଥିଲେ ।ଏହି ସମସ୍ତ ଗୋଳାବାରୁଦରେ ପୂର୍ଣ୍ଣ ସୁଡଙ୍ଗମାନ ଇଂରାଜିମାନଙ୍କର ନଗରୀକୁ ପ୍ରବେଶ ପଥରେ ଅବସ୍ଥିତ ଥିଲା ।

ଏହି ସମୟରେ ଦିନେ 'ନାନାସାହେବ'ଙ୍କର ଦୂତ, 'ହଜରତମହଲ'ଙ୍କ ପାଖକୁ ନାନାଙ୍କର ବାର୍ତ୍ତାନେଇ ଆସିଲା । ଉକ୍ତ ବାର୍ତ୍ତାରେ 'ନାନାସାହେବ' ୧୦ଟି କମାଣ ପାଇଁ ଅନୁରୋଧ କରିଥିଲେ । କିନ୍ତୁ ଅବସ୍ଥା ଦୃଷ୍ଟିରୁ 'ହଜରତ୍‌ମହଲ' ନିଜର ଅକ୍ଷମତା ପ୍ରକାଶ କରି ତାଙ୍କୁ 'ଆଲାମବାଗ' ଆକ୍ରମଣ କରିବା ପାଇଁ ଅନୁରୋଧ ଜଣାଇଥିଲେ ଓ ସେଠାରୁ ଇଂରାଜିମାନେ ବିତାଡିତ ହେବାପରେ ସେ 'ନାନା'ଙ୍କୁ ଦଶଟି କମାଣ ଯୋଗାଇଦେବାର ପ୍ରତିଶ୍ରୁତି ଦେଇଥିଲେ । ହଠାତ୍ 'ଦିଲ୍ଲୀ'ର ଜଣେ 'ଶାହାଜାଦା ଫିରୋଜଶାହା' ଦୁଇଶହ ଘୋଡାସବାର ତଥା ପାଞ୍ଚଶହ ପଦାତିକ ସୈନ୍ୟଙ୍କ ସହ ଲକ୍ଷ୍ନୌରେ ପହଞ୍ଚିଲେ । ଦିଲ୍ଲୀର ବିଦ୍ରୋହ ସମୟରେ ସେ ହଜ୍ କରିବାକୁ ବିଦେଶ ଗମନ କରିଥିଲେ । ସ୍ୱଦେଶ ପ୍ରତ୍ୟାବର୍ତ୍ତନପରେ ସେ, ସାରା ଦେଶରେ ଚାଲିଥିବା ସ୍ୱାଧିନତା ସଂଗ୍ରାମ ବିଷୟରେ ଅବଗତ ହେଲେ । ପଥ ମଧ୍ୟରେ ଭେଟୁଥିବା ଇଂରାଜିମାନଙ୍କୁ ହତ୍ୟା କରି କରି 'ଗୋଓ୍ୱାଲିୟର', 'ମୁରାର' ହୋଇ ସେ 'ଧବଳପୁର'ରେ ପହଞ୍ଚିଲେ । ଏହିଠାରେ ସେ

'ଦିଲ୍ଲୀ' ପତନର ସମ୍ବାଦ ପାଇଲେ । ଏଣୁ ସେ କିଛି ସୈନ୍ୟ ସଂଗ୍ରହ କରି ଏକ ବାହିନୀ ଗଠନ କରି 'ଆଗ୍ରା'ରେ ପହଞ୍ଚି ଇଂରାଜିମାନଙ୍କୁ ଆକ୍ରମଣ କରିଥିଲେ । ପରେ 'ଫରୁଖାବାଦ' ଦେଇ 'ଲକ୍ଷ୍ନୌ'ରେ ପହଞ୍ଚିଲେ । 'ହଜରତ୍‌ମହଲ' ତାଙ୍କର ଆଗମନର ସମ୍ବାଦ ପାଇ ତାଙ୍କୁ ଉପଯୁକ୍ତ ସମ୍ମାନ ଓ ସମ୍ବର୍ଦ୍ଧନା ଦେଇ ଉପଯୁକ୍ତ ଗୃହରେ ରହିବାର ବ୍ୟବସ୍ଥା କରିଦେଲେ । ପରେ 'ଶାହାଜାଦା', 'ବେଗମ'ଙ୍କ ଅନୁରୋଧରେ 'ଆଲାମବାଗ' ଆକ୍ରମଣ କରିବାରେ ସହାୟତା କରିବାକୁ ସମ୍ମତି ପ୍ରଦାନ କଲେ ।

'ମନ୍‌ସୁର୍ ନଗର ମୋହଲ୍ଲା'ରେ ଦୁଇଜଣ ଇଂରାଜି ମହିଳା 'ମୀର ବାଜିଦ ଅଲି'ଙ୍କ ସହାୟତାରେ ଆଠ ଜଣ ବେଗମଙ୍କ ମଧ୍ୟରେ ଗୁପ୍ତ ଭାବରେ ରହିଥିଲେ । 'ଆଉଟ୍‌ରାମ' ପୁନର୍ବାର ସେନା ସହ 'ଆଲାମବାଗ'ରେ ପହଞ୍ଚିବା ଖବର ସେମାନେ 'ମୀର ବାଜିଦ ଅଲି'ଙ୍କଠାରୁ ଜାଣିବାକୁ ପାଇଲେ । 'ମୀର ବାଜିଦ ଅଲି' ଅନ୍ତରରେ ଜଣେ ଇଂରାଜି ଭକ୍ତ ଥିଲେ । ଏଣୁ, ସେ ଦୂତ ମାଧ୍ୟମରେ 'ଆଉଟ୍‌ରାମ'ଙ୍କୁ ତାଙ୍କର ଓ ଆଠ ବେଗମଙ୍କର ପ୍ରାଣରକ୍ଷା ପାଇଁ ନିବେଦନ କରି ଦୁଇ ଇଂରାଜି ମହିଳାଙ୍କ ସହିତ ଇଂରାଜି ବାହିନୀରେ ଯୋଗଦେବା ପ୍ରତିଶ୍ରୁତି ଦେଲେ ଏବଂ ଏହି ସହାୟତା ପାଇଁ ଇଂରାଜିମାନଙ୍କ ଠାରୁ ୧ ଲକ୍ଷ ଟଙ୍କା ପାଇବାର ପ୍ରତିଶ୍ରୁତି ମଧ୍ୟ ଚାହିଁଲେ । ଏ ଚିଠି 'ଆଉଟ୍‌ରାମ'ଙ୍କ ହାତରେ ନପଡି ସେତେବେଳେ ଇଂରାଜିଙ୍କ ସହାୟତା ପାଇଁ ଆସିଥିବା ନେପାଳର ରାଜା ଜଙ୍ଗବାହାଦୂରଙ୍କ ହାତରେ ପଡିଲା । ପରଦିନ ଅର୍ଦ୍ଧରାତ୍ରିରେ 'ଜଙ୍ଗବାହାଦୂର' ଦୁଇଟି କମ୍ପାନୀ ନେପାଳୀ ସୈନ୍ୟଙ୍କୁ ନେଇ ଆସିଗଲେ । ସେ ଦୁଇଜଣ ଇଂରାଜି ମହିଳାଙ୍କୁ ନେଇ 'ଆଲାମବାଗ'ରେ ପହଞ୍ଚିଲେ । ଏହି ଘଟଣାର ଦୁଇଘଣ୍ଟା ପରେ ଉକ୍ତ ପ୍ରାସାଦକୁ ସିପାହୀମାନେ ଘେରିଗଲେ । କିନ୍ତୁ ସେଠାରେ ଥିବା ଗୋରଖା ସିପାହୀମାନେ ଛାତ ଉପରେ ଚଢି ପ୍ରବଳ ଗୁଳି ବର୍ଷଣ କରିବା ଫଳରେ ବିଦ୍ରୋହୀମାନେ ଛତ୍ରଭଙ୍ଗ ଦେଲେ । ଇଂରାଜି ମହିଳା ଦ୍ୱୟ 'ଆଲାମବାଗ'ରେ ପହଞ୍ଚି 'ଆଉଟ୍‌ରାମ'ଙ୍କୁ ମୀରବାଜିଦ ଅଲି ତଥା ବେଗମମାନଙ୍କର ସାହାଯ୍ୟ ଓ ବିଶ୍ୱସ୍ତତା କଥା କହି ସେମାନଙ୍କର ନିରାପରା ପ୍ରାର୍ଥନା କଲେ । ଫଳରେ ସେହି ରାତିରେ ଦୁଇଦଳ ଇଂରାଜି ସୈନ୍ୟ 'ମନ୍‌ସୁର ନଗର ମୋହଲ୍ଲା'କୁ ଆସି ମୀରବାଜିଦ ଅଲି ଓ ଆଠଜଣ ବେଗମଙ୍କୁ ଉଦ୍ଧାର କରି ନେଇଗଲେ ।

'ଆଉଟ୍‌ରାମ', 'ଆଲାମବାଗ' ଫେରିଆସିବା ପରେ 'ଅହମଦଶାହ', 'ଆଲାମବାଗ'କୁ ତୁରନ୍ତ ଆକ୍ରମଣ କରି ଦଖଲ କରିବା ପାଇଁ ସମସ୍ତଙ୍କୁ ଉତ୍ତେଜିତ କରୁଥିଲେ । ତାହାହିଁ ଆକ୍ରମଣର ଉପଯୁକ୍ତ ସମୟ ବୋଲି ସେ 'ହଜରତ୍‌ମହଲ'ଙ୍କ

ଆଗରେ ବାରମ୍ବାର ଯୁକ୍ତି ଉପସ୍ଥାପନ କରୁଥିଲେ । ଦରବାରରେ ତାଙ୍କ ମୁଖ୍ୟ ପ୍ରତିଦ୍ୱନ୍ଦୀ ଥିଲେ, ହଜରତ୍ ମହଲଙ୍କର ବିଶ୍ୱସ୍ତ ସେନାପତି 'ମମ୍ମୁଖାଁ' । ସେ ମୂଳରୁ 'ଅହମଦ ଶାହ'ଙ୍କ ଉପରେ, ତାଙ୍କର ଜନପ୍ରିୟତା ତଥା ବାହିନୀରେ ସମ୍ମାନ ନେଇ ଈର୍ଷାନ୍ୱିତ ହୋଇପଡିଥିଲେ । ଦରବାରରେ ଓ ବଜାରରେ 'ଅହମଦଶାହ' ତାଙ୍କର ଜ୍ୱାଳାମୟୀ ଭାଷଣରେ ଅତ୍ୟନ୍ତ ଜନପ୍ରିୟ ଓ ପ୍ରଭାବଶାଳୀ ହୋଇଯିବାଫଳରେ, 'ମମ୍ମୁଖାଁ' 'ହଜରତମହଲ'ଙ୍କୁ କୁପରାମର୍ଶ ଦେଇ ତାଙ୍କୁ ବନ୍ଦୀ କଲେ । କିନ୍ତୁ ମୌଲବୀଙ୍କର ଅତ୍ୟନ୍ତ ଜନପ୍ରିୟତା ଥିଲା ଏବଂ ସିପାହୀମାନେ ତା'ଙ୍କୁ ଖୁବ୍ ଶ୍ରଦ୍ଧା ଓ ବିଶ୍ୱାସ କରୁଥିଲେ । 'ଦିଲ୍ଲୀ'ରୁ ଆସିଥିବା ସମସ୍ତ ସିପାହୀ ତାଙ୍କର ଅନୁଗତ ଥିଲେ । ଏଣୁ, ସମସ୍ତଙ୍କର ପ୍ରବଳ ଚାପ ଫଳରେ 'ବେଗମ' ତାହାଙ୍କୁ ତୁରନ୍ତ ଖଲାସ କରିବାକୁ ବାଧ ହେଲେ ।

'ଅହମଦଶାହ' ଅନ୍ତରରେ ଜଣେ ଉଗ୍ର ଦେଶପ୍ରେମୀ ଥିଲେ । ଏସମସ୍ତ ଘଟଣାକୁ ସେ କୌଣସି ଗୁରୁତ୍ୱ ଦେଲେ ନାହିଁ । ସେ ଖଲାସ ହେବା ମାତ୍ରେ ପୁନର୍ବାର ସୈନ୍ୟମାନଙ୍କୁ ସଂଗଠିତ କରି ଇଂରାଜିମାନଙ୍କ ମୁକାବିଲା ପାଇଁ ପ୍ରସ୍ତୁତ ହୋଇ ରହିଲେ । କିନ୍ତୁ ସେ କେବଳ ଏତିକି କହିଲେ ଯେ ଆକ୍ରମଣର ଉପଯୁକ୍ତ ସମୟ ବିଗତ ହୋଇଯାଇଛି ଏବଂ କେବଳ କର୍ତ୍ତବ୍ୟ ବୋଧରେ ଆମେ ଆକ୍ରମଣ କରିବୁ । 'ଆଲାମବାଗ' ଉପରେ ବାରମ୍ବାର ଆକ୍ରମଣ କରାଗଲା । ବିଦ୍ରୋହୀମାନେ ମନେ କରିଥିଲେ ଯେ 'ଆଲାମବାଗ'ରେ ବିଶେଷ କିଛି ଇଂରାଜି ସୈନ୍ୟ ନଥିବେ । କିନ୍ତୁ ସେମାନଙ୍କର ଧାରଣା ଆକ୍ରମଣ ପରେ ଭୁଲ ବୋଲି ପ୍ରମାଣିତ ହେଲା । 'ଆଲାମବାଗ'ରେ ଚାରିହଜାର ସୈନ୍ୟ ମହଜୁଦ ଥିଲେ । ସେମାନେ ବିଦ୍ରୋହୀ ମାନଙ୍କର ଗୁଳିଗୋଳାର ଉପଯୁକ୍ତ ଜବାବ ଦେଲେ । ପ୍ରାୟ ସମସ୍ତ ଆକ୍ରମଣରେ 'ଅହମଦଶାହ' ହିଁ ନେତୃତ୍ୱ ନେଉଥିଲେ ।

ଡିସେମ୍ବର ବାଇଶ ତାରିଖ ଦିନ 'ଅହମଦଶାହ' ଏକ ନୂତନ କୌଶଳର ଯୋଜନା କଲେ । ଏହି ଯୋଜନା ଅନୁସାରେ ଏକ ବାହିନୀ ଇଂରାଜିଙ୍କର ମୁହାଁ ମୁହିଁ ହୋଇ ସମ୍ମୁଖ ଦିଗରୁ ଆକ୍ରମଣ କରିବାର ସ୍ଥିର ହେଲା ଏବଂ ଅହମଦଶାହା ତାଙ୍କର ନିଜର ବାହିନୀ ସହିତ କୌଶଳରେ ଓ ଗୋପନରେ 'ଆଲାମବାଗ'ର ଇଂରାଜି ଛାଉଣୀ ଅତିକ୍ରମ କରି 'କାନପୁର' ରାସ୍ତା ଧରି ହଠାତ୍ ଇଂରାଜି ବାହିନୀକୁ ପଶ୍ଚାତ୍ ଦିଗରୁ ଆକ୍ରମଣ କରିବାର ସ୍ଥିର ହେଲା । ଏହିପରି ଉଭୟ ଦିଗରୁ ଆକ୍ରମଣ କରି ଇଂରାଜି ସେନାକୁ ପରାସ୍ତ କରିବାର ଯୋଜନା ହେଲା । ଯୋଜନା ଅନୁସାରେ କାମ ମଧ୍ୟ ହେଲା । 'ଅହମଦଶାହ' ପ୍ରବଳ ବେଗରେ ପଶ୍ଚାତ ଦିଗରୁ ଆକ୍ରମଣ କଲେ ମଧ୍ୟ ସମ୍ମୁଖ ଦିଗରେ ଥିବା ସୈନ୍ୟମାନଙ୍କର ସହଯୋଗ, ଉତ୍ସାହ ଓ ଶୃଙ୍ଖଳାର ଅଭାବରୁ , ଯୋଜନା ପଣ୍ଡ

ହୋଇଗଲା । କିନ୍ତୁ ମୌଲବୀଙ୍କ ଉତ୍ସାହ ଏଥିରେ ସ୍ତିମିତ ହେଲାନାହିଁ । ପରନ୍ତୁ ସେ ପୂର୍ବପରି ବାରମ୍ବାର 'ଆଲାମବାଗ'କୁ ଆକ୍ରମଣ କରିବାକୁ ଲାଗିଲେ ।

ଜାନୁଆରୀ ପନ୍ଦର ତାରିଖ ଦିନ ବିଦ୍ରୋହୀମାନେ ଖବର ପାଇଲେ ଯେ, 'କଲିନ୍', ପ୍ରଚୁର ସୈନ୍ୟ, କମାଣ, ଗୁଳିଗୋଳା ଓ ରସଦ୍ ଆଦି ଆବଶ୍ୟକୀୟ ସାମଗ୍ରୀ ସହ 'କାନପୁର'ରୁ 'ଆଲାମବାଗ' ଦିଗକୁ ଅଗ୍ରସର ହେଉଛନ୍ତି । ଏ ଖବର ପାଇବାମାତ୍ରେ ବିଦ୍ରୋହୀମାନେ ପଥମଧ୍ୟରେ ତାଙ୍କର ଅଗ୍ରଗତିକୁ ରୋକି ଦ୍ରବ୍ୟ ସାମଗ୍ରୀ ଆଦି ଲୁଟ୍ କରିବାକୁ ବିଚାର କଲେ । କିନ୍ତୁ ଏହି ଯୋଜନାରେ କେହି ଏକମତ ନହେବା ଫଳରେ ଯୋଜନା ଯୋଜନାରେହିଁ ରହିଗଲା । କିନ୍ତୁ 'ଅହମଦଶାହ' ଆକ୍ରମଣ ପାଇଁ 'କାନପୁର' ରାସ୍ତାରେ ଅଗ୍ରସର ହେଲେ । 'ଆଲାମ ବାଗ'ରେ ଥିବା 'ଆଉଟ୍ରାମ', 'ଅହମଦଶାହ'ଙ୍କର ଯୋଜନା ଓ ଅଗ୍ରଗତିର ଖବର ନିଜର ଗୁପ୍ତଚର ଜରିଆରେ ପାଇବା ମାତ୍ରେ ତା'ଙ୍କୁ ଆକ୍ରମଣ କରିବା ପାଇଁ ଏକ ବାହିନୀ ପଠାଇଲେ । ପ୍ରବଳ ଯୁଦ୍ଧ ହେଲା । କିନ୍ତୁ ଦୁର୍ଭାଗ୍ୟ ବଶତଃ 'ଅହମଦଶାହ'ଙ୍କର ହାତରେ ଏକ ଗୁଳି ବାଜିବା ଫଳରେ ସେ ଆହତ ହେଲେ ଓ ସିପାହୀମାନେ ତାହାଙ୍କୁ ଏକ ଦୋଳାରେ ନେଇଗଲେ । ଏହିପରି ଏ ଆକ୍ରମଣର ଅସଫଳ ସମାପ୍ତି ଘଟିଲା ।

ଜାନୁଆରୀ ସତର ତାରଖ ଦିନ 'ବିଦେହୀ ହନୁମାନ' ନାମକ ଏକ ସାହସୀ ବ୍ରାହ୍ମଣ, ବିଦ୍ରୋହୀ ସିପାହୀମାନଙ୍କର ନେତୃତ୍ୱ ନେଲେ । ସକାଳ ଦଶଟା ଠାରୁ ସନ୍ଧ୍ୟା ଛଅଟା ପର୍ଯ୍ୟନ୍ତ ସେ କ୍ରମାଗତ ଭାବରେ ଯୁଦ୍ଧ କଲେ । କିନ୍ତୁ ସନ୍ଧ୍ୟା ବେଳକୁ ସେ ଭୀଷଣ ଭାବରେ ଆହତ ହୋଇ ବନ୍ଦୀ ହେଲେ । ସିପାହୀମାନେ ମଧ୍ୟ କ୍ରମେ ବିଶୃଙ୍ଖଳ ହୋଇ ଉଠୁଥିଲେ । ଏହି ସମୟରେ ବେଗମଙ୍କର ରାଜସ୍ୱମନ୍ତ୍ରୀ 'ରାଜା ବାଳକୃଷ୍ଣ ସିଂହ'ଙ୍କର ମୃତ୍ୟୁ ଘଟିଲା । 'ଅହମଦଶାହା' ସାମାନ୍ୟ ସୁସ୍ଥ ହେବାପରେ ପୁନର୍ବାର ପ୍ରବଳ ପରାକ୍ରମରେ ଆକ୍ରମଣ ଜାରି ରଖିଲେ । କିନ୍ତୁ ସୈନ୍ୟମାନଙ୍କର ସହଯୋଗ ଓ ଶୃଙ୍ଖଳାର ଅଭାବ ହେତୁ, ସେ ସମସ୍ତ ଆକ୍ରମଣରେ ଅସଫଳ ହେଲେ ।



# ତାନ୍ତ୍ୟା ଟୋପେ

ଜୁଲାଇ ଷୋହଳ ତାରିଖ ଦିନ ବିଦ୍ରୋହୀ ସେନା 'କାନପୁର'ରେ ପରାଜୟ ବରଣ କରିବା ଫଳରେ 'ନାନାସାହେବ', 'କାନପୁରରୁ' 'ବ୍ରହ୍ମାବର୍ତ୍ତ' ଯାତ୍ରା କଲେ । ସେହି ରାତ୍ରିରେ 'ନାନାସାହେବ', 'ବ୍ରହ୍ମାବର୍ତ୍ତ'ର ପ୍ରାସାଦରେ ଥାଇ ଭବିଷ୍ୟତର ଯୋଜନା କରିବାକୁ ଲାଗିଲେ । ତା'ପର ଦିନ ସକାଳେ 'ନାନାସାହେବ'ଙ୍କୁ ତାଙ୍କର ଭ୍ରାତା ବାଳା ସାହେବ, ପୁତୁରା ରାଓ ସାହେବ, ସ୍ତ୍ରୀ ଓ ପରିବାର ବର୍ଗ ତଥା ବିଶିଷ୍ଟ ପାର୍ଶ୍ୱସହଚର 'ତାନ୍ତ୍ୟା ଟୋପେ'ଙ୍କ ସହ ସମସ୍ତ ଅର୍ଥ ଓ ଦ୍ରବ୍ୟାଦି ସାଥିରେ ନେଇ ଗଙ୍ଗା ନଦୀରେ ନୌକା ଆରୋହଣ କରି ଯିବାର ଦେଖାଗଲା । 'ନାନାସାହେବ' ଲକ୍ଷ୍ନୌ ପ୍ରଦେଶାନ୍ତର୍ଗତ 'ଫତେପୁର'କୁ ଗଲେ । ସେଠାରେ ଚୌଧୁରୀ ଭୋପାଳ ସିଂହ ନାମକ ତାଙ୍କର ଜଣେ ଘନିଷ୍ଠ ବନ୍ଧୁ ଥିଲେ । ବନ୍ଧୁ ଜଣକ ତାଙ୍କୁ ସାଦରେ ଗ୍ରହଣ କଲେ । ଯେତେବେଳେ 'ହାଭଲକ୍' ଲକ୍ଷ୍ନୌ ଯାତ୍ରାରେ ବ୍ୟସ୍ତ ଥିଲେ, ସେତେବେଳେ 'ନାନାସାହେବ' ମନ୍ତ୍ରଣା ସଭାରେ ଭବିଷ୍ୟତ ଆକ୍ରମଣର ଯୋଜନା କରୁଥିଲେ ।

'ତାନ୍ତ୍ୟା ଟୋପେ', 'ନାନାସାହେବ'ଙ୍କର ଦରବାରରେ ପ୍ରଥମେ ଜଣେ କିରାଣୀ ରୂପେ ନିଯୁକ୍ତି ପାଇଥିଲେ । ସେ ଜଣେ ତୀକ୍ଷ୍ଣଧୀ ସମ୍ପନ୍ନ ବ୍ରାହ୍ମଣ ଥିଲେ । ତାଙ୍କ ସୁଚିନ୍ତିତ ବାସ୍ତବ ବିଚାର ଓ ତୀକ୍ଷ୍ଣ ବୁଦ୍ଧି ବଳରେ ସେ କ୍ରମେ 'ନାନାସାହେବ'ଙ୍କର ବିଶିଷ୍ଟ ପରାମର୍ଶଦାତା ରୂପେ ଗଣା ହୋଇଥିଲେ । ଏହି ବିପଦ ସମୟରେ ଧୈର୍ଯ୍ୟ ନହରାଇ ବିଶୃଙ୍ଖଳିତ ଓ ପରାଜିତ ସୈନ୍ୟମାନଙ୍କୁ ସେ ସଂଗଠିତ କରିବାକୁ ଲାଗିଲେ । ଏହି ସୈନ୍ୟମାନଙ୍କ ସାହାଯ୍ୟରେ ପୁନର୍ବାର କାନପୁର ଦଖଲ କରିବା ତାଙ୍କର ଲକ୍ଷ୍ୟ ଥିଲା । ତା'ଙ୍କର ସୁଚିନ୍ତିତ ବିଚାର, ଅକାଟ୍ୟ ଯୁକ୍ତି, ଦୃଢ଼ ବ୍ୟକ୍ତିତ୍ୱ, ଚରିତ୍ରବତ୍ତା ଓ ବୀରଜନୋଚିତ ନିର୍ଭୀକତାର ଏପରି ପ୍ରଭାବ ଥିଲାଯେ, ତାହା ବଳରେ ଦିନକ ଭିତରେ ସମସ୍ତ ସୈନ୍ୟଙ୍କ ମଧରେ ଏକତା ଓ ଶୃଙ୍ଖଳା ପ୍ରତିଷ୍ଠିତ ହୋଇଗଲା । ସୈନ୍ୟ ସଂଖ୍ୟା ବୃଦ୍ଧି କରିବାର ଆବଶ୍ୟକତା ହେବାରୁ 'ତାନ୍ତ୍ୟା' ତୁରନ୍ତ 'ସେଓରାଜପୁର' ଯାଇ, ସେଠାରେ ଥିବା ୪୨ତମ ବାହିନୀକୁ ନିଜର ବାହିନୀ ସହିତ ସାମିଲ କରାଇଲେ ।

ଏହି ସମୟରେ 'ହାଭଲକ୍', ଗଙ୍ଗା ଅତିକ୍ରମ କରି ଲକ୍ଷ୍ନୌ ଦିଗରେ ଯିବାକୁ ଚେଷ୍ଟା କରୁଥିଲେ । ଏଣୁ 'ତାନ୍ତ୍ୟା', ତାଙ୍କୁ ହଇରାଣରେ ପକାଇ ଅସ୍ତବ୍ୟସ୍ତ କରିଦେବା ପାଇଁ, ପଶ୍ଚାତ ଦିଗରୁ ଆକ୍ରମଣ କରିବାର ଯୋଜନା କଲେ । ଫଳରେ 'ହାଭଲକ୍'ଙ୍କୁ

କାନପୁର ଫେରିଯିବାକୁ ପଡିଲା । ପରେ କିପରି 'ହାଭଲକ୍', ବ୍ରହ୍ମାବର୍ତ୍ତରେ 'ନାନାସାହେବ' ରାଜତ୍ୱ କରୁଥିବାର ସମ୍ବାଦ ପାଇ ଆକ୍ରମଣ କରିବା ପାଇଁ ସେ ଦିଗକୁ ଯାଇଥିଲେ ଓ ଅଗଷ୍ଟ ୧୬ତାରିଖ ଦିନ କିପରି ସେ ବିଦ୍ରୋହି ବାହିନୀକୁ ପରାସ୍ତ କରିଥିଲେ, ତାହା ପୂର୍ବରୁ ବର୍ଣ୍ଣନା କରାଯାଇଛି ।

ଏହି ପରାଜୟ ପରେ 'ତାନ୍ତ୍ୟା ଟୋପେ', ନିଜର ବାହିନୀ ସହ ଗଙ୍ଗା ନଦୀକୁ ସନ୍ତରଣ କରି ପାରି ହୋଇ, 'ନାନାସାହେବ'ଙ୍କ ସହ 'ଫତେପୁର'ରେ ମିଳିତ ହେଲେ । ସେଠାରେ ପୁନରାକ୍ରମଣ ପାଇଁ ଅଧିକ ସୈନ୍ୟ ନିଯୁକ୍ତି ଦେବାର ଆବଶ୍ୟକତା ପଡିଲା । 'ତାନ୍ତ୍ୟା' ଏହି କାର୍ଯ୍ୟରେ ତୁରନ୍ତ 'ଗୋଆଲିଅର' ଗଲେ । ତାଙ୍କର ବ୍ୟକ୍ତିତ୍ୱ, ବୀରତ୍ୱ ଓ ଚରିତ୍ରର ପ୍ରଭାବରେ 'ଗୋଆଲିଅର'ରେ ଥିବା ସମସ୍ତ ପଦାତିକବାହିନୀ, ଘୋଡସବାର ବାହିନୀ ଓ କମାଣ ବାହିନୀ ତାଙ୍କ ସହିତ ଏକମତ ହୋଇ ସାମିଲ ହୋଇଗଲେ । ଏପରିକି 'ତାନ୍ତ୍ୟା', ସେମାନଙ୍କୁ ସୁସଂଗଠିତ କରି ଶୃଙ୍ଖଳାବଦ୍ଧ ଭାବରେ 'କାଲ୍‌ପୀ' ପର୍ଯ୍ୟନ୍ତ ନେଇ ଆସିଲେ । ସାମରିକ ଦୃଷ୍ଟି କୋଣରୁ 'କାଲ୍‌ପୀ' ଏକ ଗୁରୁତ୍ୱ ପୂର୍ଣ୍ଣ ସ୍ଥାନ ଥିଲା । କାରଣ 'କାଲ୍‌ପୀ' ଓ 'କାନପୁର' ମଧ୍ୟରେ ଯମୁନା ନଦୀ ପ୍ରବାହିତ ହେଉଥିଲା । ଏଣୁ ଏଠାରେ ଇଂରାଜିମାନଙ୍କର ଅପ୍ରତ୍ୟାଶିତ ଆକ୍ରମଣର ସମ୍ଭାବନା ନଥିଲା । 'ତାନ୍ତ୍ୟା'ଙ୍କର ପରାମର୍ଶ ଫଳରେ ନାନାସାହେବ ସେହି ସମୟରେ 'କାଲ୍‌ପୀ'କୁ ମୂଳଘାଟୀ ରୂପେ ଗ୍ରହଣ କରିନେଲେ ଏବଂ ତାଙ୍କର ପ୍ରତିନିଧି ସ୍ୱରୂପ 'ବାଳାସାହେବ'ଙ୍କୁ ସେଠାକୁ ପ୍ରେରଣ କଲେ । 'ବାଳାସାହେବ', 'କାଲ୍‌ପୀ' ଦୁର୍ଗରେ ଅବସ୍ଥାପିତ ହେବା ପରେ ତାନ୍ତ୍ୟା, ଇଂରାଜି ବାହିନୀକୁ ଆକ୍ରମଣ କରିବା ଆରମ୍ଭ କଲେ ।

ପୂର୍ବରୁ ବର୍ଣ୍ଣିତ ହୋଇଛି ଯେ, ମୁଖ୍ୟ ସେନାଧକ୍ଷ 'କଲିନ୍', 'ୱିଣ୍ଡହାମ୍'ଙ୍କ ହାତରେ 'କାନପୁର'ର ଦାୟିତ୍ୱ ଅର୍ପଣ କରି 'ଲକ୍ଷ୍ନୌ' ଅଭିମୁଖେ ଯାତ୍ରା କରିଥିଲେ । 'କଲିନ୍', 'ଲକ୍ଷ୍ନୌ' ଆକ୍ରମଣରେ ବ୍ୟସ୍ତ ଥିବା ହେତୁ ତା'ଙ୍କଠାରୁ କୌଣସି ସାହାଯ୍ୟ ପାଇବା ଆଶା 'ୱିଣ୍ଡହାମ୍'ଙ୍କ ନଥିଲା । 'ତାନ୍ତ୍ୟା'ଙ୍କ ପାଇଁ ଏହା ଏକ ସୁବର୍ଣ୍ଣ ସୁଯୋଗ ଥିଲା । ତୀକ୍ଷ୍ଣ ବୁଦ୍ଧି ସମ୍ପନ୍ନ 'ତାନ୍ତ୍ୟା', ଏହି ସମୟର ସଦ୍‌ବ୍ୟବହାର କରି ଆକ୍ରମଣ କରିବାକୁ ସ୍ଥିର କଲେ । 'ବାଳାସାହେବ', 'ତାନ୍ତ୍ୟା'ଙ୍କର ସୁଚିନ୍ତିତ ପରାମର୍ଶ ଓ ରଣକୌଶଳ ଯୋଜନାକୁ ବିନା ଦ୍ୱିଧାରେ ଅନୁମୋଦନ କଲେ । ସେ 'ତାନ୍ତ୍ୟାଟୋପେ'ଙ୍କୁ ହିଁ ସେନାଧକ୍ଷ ରୂପେ ନିଯୁକ୍ତ କଲେ । ତାନ୍ତ୍ୟା ଟୋପେ, ନଭେମ୍ବର ନଅ ତାରିଖ ଦିନ, ଗୋଆଲିଅର ସେନା ସହ 'କାଲ୍‌ପୀ'ରେ ପହଞ୍ଚିଲେ । ଇଂରାଜିମାନଙ୍କର ନିର୍ଦ୍ଦିଷ୍ଟ ଅବସ୍ଥିତି ଓ ଶକ୍ତି ସାମର୍ଥ୍ୟ ବିଷୟରେ ଖବର ସଂଗ୍ରହ କଲା ପରେ ସେ ନିଜର ବାହିନୀ ସହ ଯମୁନା ନଦୀ ଅତିକ୍ରମ କରି 'ୱିଣ୍ଡହାମ୍'ଙ୍କୁ ଆକ୍ରମଣ କଲେ ।

ତାନ୍ତ୍ୟାଙ୍କର ବାହିନୀରେ ପରାଜିତ ଓ ବିଶୃଙ୍ଖଳ ସୈନ୍ୟମାନଙ୍କ ସହିତ ଗ୍ରାମମାନଙ୍କରୁ ସାଧାରଣ ଲୋକମାନେ ମଧ୍ୟ ଆସି ଯୋଗଦାନ କରିଥିଲେ । ଏହିପରି ଏକ ବିଚିତ୍ର ବାହିନୀ ଧରି, ସୁଶିକ୍ଷିତ, ଅଭିଜ୍ଞ ଇଂରାଜି ବାହିନୀ ତଥା ଇଉରୋପର ବହୁ ଯୁଦ୍ଧରେ ଜୟ ଲାଭ କରିଥିବା ପ୍ରଖ୍ୟାତ ସେନାପତି 'ୱିଣ୍ଡହାମ୍'ଙ୍କ ସହ ଯୁଦ୍ଧ କରିବା ସହଜ ନଥିଲା । 'ତାନ୍ତ୍ୟା', ପ୍ରଥମେ 'ଜାନ୍‌ଲା' ନାମକ ଏକ ସ୍ଥାନରେ ସମସ୍ତ ଅର୍ଥରାଶି ଓ ଅନ୍ୟାନ୍ୟ ଦ୍ରବ୍ୟ ସାମଗ୍ରୀ ଜମା ରଖିଦେଇ, କାନପୁରର ଆଖପାଖ ଗ୍ରାମ ଗୁଡିକ ଦଖଲ ନେଇଗଲେ । ସେ 'ୱିଣ୍ଡହାମ୍'ଙ୍କୁ ସିଧାସଳଖ ଆକ୍ରମଣ କରି ହଠାତ୍ ଉତ୍ତେଜିତ କରିବାକୁ ଚାହୁଁନଥିଲେ । 'କଲିନ୍'ଙ୍କର 'ଲକ୍ଷ୍ନୌ' ଆକ୍ରମଣ ଆରମ୍ଭ କରିବାର ସମ୍ବାଦର ପ୍ରତୀକ୍ଷାରେ ସେଥିଲେ । କାରଣ 'କଲିନ୍' ବ୍ୟସ୍ତ ଥିବା ସମୟରେ 'ୱିଣ୍ଡହାମ୍'ଙ୍କୁ ଅପ୍ରତ୍ୟାଶିତ ଭାବରେ ଆକ୍ରମଣ କରିବା ଉପଯୁକ୍ତ ହେବ ବୋଲି 'ତାନ୍ତ୍ୟାଟୋପେ' ବିବେଚନା କରିଥିଲେ । ତାନ୍ତ୍ୟାଙ୍କର ବାହିନୀ କାନପୁରର ପନ୍ଦର ମାଇଲ ପରିସର ମଧ୍ୟକୁ ଆସିଗଲେ ।

'ୱିଣ୍ଡହାମ୍', ଏହି ଖବର ପାଇବା ମାତ୍ରେ, ମୁଖ୍ୟ ସେନାଧକ୍ଷଙ୍କୁ, ଆକ୍ରମଣ କରିବା ପାଇଁ ଅନୁମତି ପ୍ରାର୍ଥନା କଲେ । ନଭେମ୍ବର ଏକୋଇଶ ତାରିଖ ଦିନ ସେ ଗଭର୍ଣ୍ଣର ଜେନେରାଲଙ୍କୁ, ଗୋଆଲିଅର ବାହିନୀ ଯମୁନା ଅତିକ୍ରମ କରୁଥିବାର, ଖବର ଜଣାଇଲେ । ତେଇଶ ତାରଖ ଦିନ ଅନ୍ୟ ଏକ ସମ୍ବାଦରେ ସେ ଗଭର୍ଣ୍ଣଲ ଜେନେରାଲଙ୍କୁ ଜଣାଇଲେ, ''ଅର୍ଦ୍ଧେକ ଗୋଆଲିଅର ବାହିନୀ ଯମୁନା ଅତିକ୍ରମ କରିସାରିଲେଣି ।. ପଚିଶ ତାରିଖ ଦିନ ଅନ୍ୟ ଏକ ଟେଲିଗ୍ରାଫ ଦ୍ୱାରା ସେ ଜଣାଇଲେ, ''ହଜାରେ ସୈନ୍ୟ ଓ ବାରୋଟି ତୋପ ସହ ଗୋଆଲିଅର ବାହିନୀ ସିକନ୍ଦରରେ ପହଞ୍ଚିଗଲେଣି ।'' 'ୱିଣ୍ଡହାମ୍'ଙ୍କର ଛାଉଣୀ କାନପୁରର ଛଅମାଇଲ ଦୂରରେ ଥିଲା ଓ ତାନ୍ତ୍ୟାଙ୍କର ଅବସ୍ଥିତି ଛାଉଣୀଠାରୁ ଛଅମାଇଲ ଦୂରରେ ଥିଲା । କିନ୍ତୁ 'ୱିଣ୍ଡହାମ୍', 'କଲିନ୍'ଙ୍କ ଠାରୁ କୌଣସି ନିର୍ଦ୍ଦେଶ ନପାଇବା ଫଳରେ ନିଜେ ବିଚାର କରି 'କାଲ୍‌ପୀ' ରୋଡରେ ଛଅମାଇଲ ଆଗେଇଗଲେ ।

ଏ ଦିଗରେ ପଚିଶ ତାରିଖ ଦିନ ତାନ୍ତ୍ୟା ଟୋପେ ପାଣ୍ଡୁ ନଦୀ ନିକଟରେ ପହଞ୍ଚିଲେ । ଛବିଶ ତାରିଖ ଦିନ 'ୱିଣ୍ଡହାମ୍', 'ତାନ୍ତ୍ୟା ଟୋପେ'ଙ୍କୁ ପାଣ୍ଡୁନଦୀ ନିକଟରେ ଦେଖିଲେ । 'ୱିଣ୍ଡହାମ୍', 'ତାନ୍ତ୍ୟା'ଙ୍କର ବାହିନୀ ଉପରେ ସିଧାସଳଖ ଆକ୍ରମଣ ଆରମ୍ଭ କଲେ । 'ତାନ୍ତ୍ୟା'ଙ୍କର ବାହିନୀ ନିକଟରେ ଥିବା ଏକ ଘନ ଜଙ୍ଗଲର ବୁଦା ଉହାଡରେ ରହି ଶତ୍ରୁ ଆକ୍ରମଣର ମୁକାବିଲା କରି, ସେମାନଙ୍କ ଉପରେ ପ୍ରବଳ ଗୋଳାବର୍ଷଣ

କଲେ । ଏହି ଆକ୍ରମଣ ପ୍ରତ୍ୟାକ୍ରମଣ ଭିତରେ ଇଂରାଜିମାନେ 'ତାନ୍ତ୍ୟା'ଙ୍କର ବାହିନୀ ଠାରୁ ତିନୋଟି କମାଣ ଛଡାଇ ନେଲେ । 'ୱିଣ୍ଡହାମ୍', ତାଙ୍କର ବିଜୟ ହୋଇଛି ବୋଲି ମନେ କଲେ । କିନ୍ତୁ ତାହା ଏକ ଭ୍ରମାତ୍ମକ ବିଶ୍ୱାସ ଥିଲା । କାରଣ, କିଛି ସମୟ ପରେ ତାନ୍ତ୍ୟାଙ୍କର ବାହିନୀ ପ୍ରବଳ ଆକ୍ରମଣ କରିବା ଫଳରେ 'ୱିଣ୍ଡହାମ୍' ନିଜର ଶକ୍ତିର ନ୍ୟୂନତା କଳନା କରି ଆଉ ଅଧିକ ଅଗ୍ରସର ନହୋଇ, 'କାନପୁର' ଅଭିମୁଖେ ପଳାୟନ କଲେ । 'ତାନ୍ତ୍ୟା' ତାଙ୍କ ପଛେ ପଛେ ଅନୁଧାବନ କରି 'କାନପୁର' ପର୍ଯ୍ୟନ୍ତ ଆସିଲେ । ସେ ଶତ୍ରୁକୁ ଆକ୍ରମଣ ନକରି, ଚାରିପଟେ ଚକ୍କର କାଟି କାଟି ସେମାନଙ୍କୁ ଘଉଡାଇ ଆଣିଲେ । ତାନ୍ତ୍ୟା; ଗଙ୍ଗା କେନାଲ ନିକଟରେ ଛାଉଣୀ ପକାଇଲେ । 'ୱିଣ୍ଡହାମ୍' ଏକ ବିରାଟ ଇଟାଗଦା ପଛରେ ଛାଉଣୀ ପକାଇଲେ । ଏହି ସ୍ଥାନରେ ସୁରକ୍ଷିତ ରହି ସେ ଏକ ଦିଗରେ କାନପୁର ସହର ଓ ଅନ୍ୟ ଦିଗରେ ଗଙ୍ଗା ନଦୀ ଉପରେ ଥିବା ପୋଲ, ଏହି ଉଭୟଙ୍କୁ ରକ୍ଷା କରିବା ସୁବିଧାଜନକ ବୋଲି ମନେ କରିଥିଲେ । ଏହି ପରିସ୍ଥିତିରେ 'ୱିଣ୍ଡହାମ୍', 'ଲକ୍ଷ୍ନୌ'ରୁ ପ୍ରାପ୍ତ ଏକ ପତ୍ରରୁ ଅବଗତ ହେଲେ ଯେ ଲକ୍ଷ୍ନୌରୁ 'କଲିନ୍' ତାଙ୍କୁ ସାହାଯ୍ୟ କରିବା ପାଇଁ ଆସୁଛନ୍ତି । ଏଥିରେ ସେ ଅତ୍ୟନ୍ତ ଉତ୍ସାହିତ ଅନୁଭବ କଲେ । କିନ୍ତୁ 'କଲିନ୍' ଲକ୍ଷ୍ନୌରୁ ପ୍ରତ୍ୟାବର୍ତ୍ତନ କରିବା ପୂର୍ବରୁ ତାନ୍ତ୍ୟାଙ୍କର ଆକ୍ରମଣ ଆରମ୍ଭ ହୋଇଗଲା ।

ରାତ୍ରିକାଳରେ 'ତାନ୍ତ୍ୟା', ନିଜ ବାହିନୀକୁ ଆସନ୍ତା ସକାଳେ ଆକ୍ରମଣ କରିବା ପାଇଁ ପ୍ରସ୍ତୁତ ରହିବାକୁ ଆଦେଶ ଦେଲେ, କିନ୍ତୁ ସେଓଲି ଓ 'ସେଓରାଜପୁର'ରୁ ଦୁଇଟି ବାହିନୀ ସୈନ୍ୟ ଆସି ଇଂରାଜିଙ୍କର ଦକ୍ଷିଣ ଦିଗକୁ ଆକ୍ରମଣ କରିବା ପରେ ହିଁ ନିଜ ସେନାକୁ ଆକ୍ରମଣ କରିବା ପାଇଁ ସେ ନିର୍ଦ୍ଦେଶ ଦେଇଥିଲେ । 'ୱିଣ୍ଡହାମ୍' ମଧ୍ୟ ପ୍ରଭାତ ସମୟରୁ 'ତାନ୍ତ୍ୟା'ଙ୍କର ଆକ୍ରମଣକୁ ନିଜର ବାହିନୀ ସହ ଅପେକ୍ଷା କରିଥିଲେ । କିନ୍ତୁ ସକାଳ ନଅଟା ସୁଦ୍ଧା କୌଣସି ପ୍ରକାର ଆକ୍ରମଣ, ଏପରିକି ବାହିନୀର ଚିହ୍ନବର୍ଣ୍ଣ ସୁଦ୍ଧା ନମିଳିବାରୁ ସେ ନିଜର ବାହିନୀ ସହ ଛାଉଣୀରେ ପ୍ରାତଃ ଭୋଜନ ସମାପ୍ତ କଲେ । ଏହାପରେ ସେ 'ତାନ୍ତ୍ୟା'ଙ୍କର ରହସ୍ୟମୟ ଆଚରଣର ଉଦ୍ଦେଶ୍ୟ କଣ ଥାଇପାରେ, ଏହା ନେଇ ବିବ୍ରତ ରହିଲେ । ହଠାତ୍ ନିଜର ଦକ୍ଷିଣ ଦିଗରୁ ପ୍ରବଳ ଗୋଳାବର୍ଷଣ ହେବା ଫଳରେ 'ତାନ୍ତ୍ୟା'ଙ୍କର ଉଦ୍ଦେଶ୍ୟ ସ୍ପଷ୍ଟ ହୋଇଗଲା । ସଙ୍ଗେ ସଙ୍ଗେ ସମ୍ମୁଖ ଦିଗ ମଧ୍ୟ ତାନ୍ତ୍ୟାଙ୍କ ଦ୍ୱାରା ଆକ୍ରମିତ ହେଲା । ଏହା ପରେ ପରେ 'ୱିଣ୍ଡହାମ୍', 'କାର୍‌ଥିଉ'ଙ୍କୁ (Carthew) ଛଅଟି କମାଣ ସହ 'କାନପୁର'ରୁ 'ବ୍ରହ୍ମାବର୍ତ୍ତ' ପଡିଥିବା ରାସ୍ତାରେ ରହି 'କାନପୁର'ର ସେହି ସେହି ଅଞ୍ଚଳ ଗୁଡିକ ରକ୍ଷା କରିବାକୁ ନିର୍ଦ୍ଦେଶ ଦେଲେ । ଇଂରାଜି

ବାହିନୀ ଉପରେ ପ୍ରବଳ ଗୋଳାବର୍ଷଣ ହେଲା । 'ଟାଣ୍ଟ୍ୟା', ନିଜର ବାହିନୀ ସହ ଇଂରାଜି ସେନାକୁ ଅର୍ଦ୍ଧବୃତ୍ତାକାରରେ ଆକ୍ରମଣ କରୁଥିଲେ ।

ସତେଇଶ ତାରିଖ ଦିନ ସକାଳୁ 'ଟାଣ୍ଟ୍ୟାଟୋପେ'ଙ୍କର ପ୍ରବଳ ଆକ୍ରମଣ ଫଳରେ 'ୱିଣ୍ଡହାମ୍' ମାତ୍ର ଚାରିଘଣ୍ଟା ନିଜର ସ୍ଥାନରେ କୌଣସି ପ୍ରକାରେ ତିଷ୍ଠି ରହିପାରିଲେ । ବାମଭାଗର ସୈନ୍ୟମାନେ ପ୍ରବଳ ଆକ୍ରମଣ ସହ୍ୟ କରିନପାରି ଜମାଣମାନ ତ୍ୟାଗ କରି ପଳାୟନ କଲେ । ଦକ୍ଷିଣ ଦିଗର ବାହିନୀ କିଛି ସମୟ ରହିଲେ ମଧ ପରିଶେଷରେ ପଳାୟନ କଲେ । କ୍ରମେ 'ଟାଣ୍ଟ୍ୟା'ଙ୍କ ନେତୃତ୍ୱରେ ଗୋଆଲିଅର ବାହିନୀ ସମ୍ପୂର୍ଣ୍ଣ ଭାବରେ ସହର ମଧରେ ପ୍ରବେଶ କରି, ଇଂରାଜି ମାନଙ୍କର ଟ୍ରେଞ୍ଚ ଉପରକୁ ଆକ୍ରମଣ ଆରମ୍ଭ କଲେ । 'ୱିଣ୍ଡହାମ୍' ଅନନ୍ୟୋପାୟ ହୋଇ ନିଜର ବାହିନୀକୁ ଗୁଳିଗୋଳା ଓ ଅସ୍ତ୍ରଶସ୍ତ୍ରାଦି ସହ ଟ୍ରେଞ୍ଚ ମଧରେ ପ୍ରବେଶ କରିବା ପାଇଁ ଆଦେଶ ଦେଲେ ଏବଂ ଗଙ୍ଗାମଧରେ ଥିବା ଏକ ଦ୍ୱୀପରେ ଆବଶ୍ୟକୀୟ ଦ୍ରବ୍ୟାଦି ଓ ଛାଉଣୀର ଆସବାସ ପତ୍ର ଆଦି ରଖିବାକୁ ଆଦେଶ ଦେଲେ । କିନ୍ତୁ ଛାଉଣୀରେ ସେବାରତ କର୍ମଚାରୀମାନେ 'ଟାଣ୍ଟ୍ୟା'ଙ୍କର ପ୍ରବଳ ଆକ୍ରମଣକୁ ଭୟ କରି ପୂର୍ବରୁ ପଳାୟନ କରିଥିଲେ । ଏଣୁ ଛାଉଣୀର ଆସବାବ ପତ୍ର ତଥା ଆବଶ୍ୟକୀୟ ଦ୍ରବ୍ୟ ଉପକରଣାଦି ସେହିଠାରେ ତ୍ୟାଗ କରି ଆତ୍ମରକ୍ଷା ନିମନ୍ତେ 'ୱିଣ୍ଡହାମ୍' ସହର ମଧରେ ଥିବା ଟ୍ରେଞ୍ଚ ଭିତରକୁ ପଳାୟନ କଲେ । 'ୱିଣ୍ଡହାମ୍' ଏହି ଅର୍ଦ୍ଧବୃତ୍ତାକାର ବ୍ୟୂହକୁ ଭାଙ୍ଗିଦେବା ପାଇଁ ପ୍ରବଳ ଚେଷ୍ଟା ଚଳାଇଲେ । କିନ୍ତୁ ବିଦ୍ରୋହୀ ମାନଙ୍କର ପ୍ରବଳ ଗୋଳାବର୍ଷଣ ଫଳରେ ଏକ ଇଞ୍ଚ ମଧ ଆଗେଇ ପାରିଲେ ନାହିଁ । ବାଧହୋଇ ସେ ନିଜର ବିଶୃଙ୍ଖଳିତ ଓ ହତୋତ୍ସାହିତ ବାହିନୀ ସହ ପଳାୟନ କଲେ । ଛାଉଣୀର ସମସ୍ତ ଦ୍ରବ୍ୟ 'ଟାଣ୍ଟ୍ୟା'ଙ୍କର ହସ୍ତଗତ ହେଲା । ବର୍ତ୍ତମାନ 'ଟାଣ୍ଟ୍ୟା' ଙ୍କର ହାତରେ କାନପୁର ସହରର ଅର୍ଦ୍ଧେକ ଥିଲା ।

ଅଠେଇଶ ତାରିଖ ଦିନ ସକାଳୁ 'ଟାଣ୍ଟ୍ୟା' ଗୋଆଲିର ବାହିନୀ ସହ, 'ନବାବାଗଞ୍ଜ' ବାଟ ଦେଇ, ଚର୍ଚ୍ଚ ଅତିକ୍ରମ କରି, ଇଂରାଜିମାନଙ୍କର ଟ୍ରେଞ୍ଚ ଉପରକୁ ପ୍ରବଳ ଆକ୍ରମଣ ଚଳାଇଲେ । ପୂର୍ବରାତ୍ରିରୁ 'ୱିଣ୍ଡହାମ୍', 'କର୍ଣ୍ଣେଲ ୱାଲପୋଲ୍' (Walpole)ଙ୍କୁ କେନାଲର ବାମ ଦିଗରେ ଥିବା ସହରର ସମ୍ମୁଖ ଭାଗକୁ ରକ୍ଷା କରିବାକୁ, ବ୍ରିଗେଡିଅର ଉଇଲସନଙ୍କୁ (Wilson) ବାପ୍‌ଟିଷ୍ଟ ଚର୍ଚ୍ଚ ନିକଟରେ ଟ୍ରେଞ୍ଚ ଖୋଳି ପ୍ରହରୀ ଦେବାକୁ ଓ 'ବ୍ରିଗେଡିୟ କାରଥ୍ୟୁ'ଙ୍କୁ ଚର୍ଚ୍ଚ ଆଗରେ ଥିବା 'ବିଥୁର' ରାସ୍ତାକୁ ରକ୍ଷା କରିବାକୁ ନିର୍ଦ୍ଦେଶ ଦେଇଥିଲେ । ସେ କର୍ଣ୍ଣେଲ 'ମାକ୍ସୱେଲ୍'ଙ୍କ ସହ କେନାଲର ବାମ ଦିଗରେ ରହି ଗଙ୍ଗା ନିକଟବର୍ତ୍ତୀ କାନପୁର ସହରାଞ୍ଚଳକୁ ରକ୍ଷା କରିବା ପାଇଁ ମଧ ବ୍ୟବସ୍ଥା

କରିଥିଲେ । 'କାରଥିଉ', ସକାଳୁ ନିର୍ଦ୍ଦେଶ ମୁତାବକ ନିଜର ସ୍ଥାନକୁ ଯିବାପରେ ପରେ 'ଓ୍ଵିଣ୍ଡହାମ୍' ତାଙ୍କୁ ସେଠାରୁ ଆସି ପୋଲରକ୍ଷା କରିବା ପାଇଁ ନିର୍ଦ୍ଦେଶ ଦେଲେ ।

ପ୍ରାୟ ମଧ୍ୟାହ୍ନ ସମୟକୁ 'ଓ୍ଵିଣ୍ଡହାମ୍', 'କାରଥିଉ'ଙ୍କୁ ଆଗେଇଯିବା ପାଇଁ ଆଦେଶ ଦେଲେ ଏବଂ 'ଉଇଲସନ'ଙ୍କୁ 'କାରଥିଉ'ଙ୍କର ବାମ ଭାଗରେ ସମାନ୍ତରାଳ ଭାବରେ ଆଗେଇଯିବାପାଇଁ ଆଦେଶ ଦେଲେ । ବିଦ୍ରୋହୀ ବାହିନୀର ସଂଖ୍ୟା ଗରିଷ୍ଠତା ସତ୍ତ୍ୱେ 'କାରଥିଉ' ଆଗେଇଗଲେ ଓ ବିଦ୍ରୋହୀମାନଙ୍କର ଯୁଦ୍ଧ ମଞ୍ଚା ମଧ୍ୟରୁ ଆସୁଥିବା ଗୁଳି ଗୋଳାକୁ ନୀରବ କରିଦେଲେ । କିନ୍ତୁ 'ଉଇଲସନ' ଓ ଅନ୍ୟ ସେନାଧ୍ୟକ୍ଷମାନେ ଆଗେଇଯିବା ବେଳେ ମୃତ୍ୟୁ ବରଣ କଲେ । 'କାରଥିଉ'ଙ୍କର ଦକ୍ଷିଣ ଦିଗ ସମ୍ପୂର୍ଣ୍ଣ ଭାବରେ ଆକ୍ରମିତ ହୋଇଗଲା । ଏଣୁ ସେ ପୋଲକୁ ପଳାୟନ କରି ନିଜର ପୂର୍ବ ସ୍ଥାନରେ ରହିଲେ । କିନ୍ତୁ ସେଠାରେ ଏକା ପଡିଯିବା ଓ କୌଣସି ଦିଗରୁ ସାହାଯ୍ୟ ନପାଇବା ଫଳରେ ସେ ବାଧ୍ୟ ହୋଇ ଆତ୍ମରକ୍ଷା ପାଇଁ ଟ୍ରେଞ୍ଚମଧ୍ୟକୁ ପଳାୟନ କଲେ । ବର୍ତ୍ତମାନ 'କାନପୁର' ଉପରେ 'ତାନ୍ତ୍ୟାଟୋପେ' ସମ୍ପୂର୍ଣ୍ଣ ବିଜୟ ହାସଲ କରିସାରିଥିଲେ ।

'ସାର୍ କଲିନ୍ କ୍ୟାମ୍ପବେଲ', ଲକ୍ଷ୍ନୌରେ ଆକ୍ରମଣରେରତଥିଲେ ମଧ୍ୟ ୧୯ତାରିଖ ଠାରୁ 'ଓ୍ଵିଣ୍ଡହାମ୍'ଙ୍କ ଠାରୁ କୌଣସି ସମ୍ବାଦ ନପାଇ, ବିବ୍ରତ ହୋଇଯାଇଥିଲେ । ଏଣୁ, ୨୭ତାରିଖ ଦିନ ଚାରିହଜାର ସୈନ୍ୟ ସହ ସେ ଲକ୍ଷ୍ନୌ ତ୍ୟାଗ କରି କାନପୁର ଅଭିମୁଖେ ରମାନା ହେଲେ । ସନ୍ଧ୍ୟା ସମୟରେ ସେ 'ବାଣୀପୋଲ' ନିକଟରେ ପହଞ୍ଚି, ଗୁଳିଗୋଳାର ଶବ୍ଦ ଶୁଣିବାକୁ ପାଇଲେ । ଦ୍ୱିତୀୟ ଦିନ ଅପରାହ୍ନରେ, ସେ ଖବର ପାଇଲେ ଯେ, କାନପୁର ଉପରେ ଆକ୍ରମଣ ହୋଇଛି ଓ 'ଓ୍ଵିଣ୍ଡହାମ୍' ଆତ୍ମରକ୍ଷା ନିମିତ୍ତ, ନିଜର ବାହିନୀ ସହ ଟ୍ରେଞ୍ଚ ଭିତରେ ଅଛନ୍ତି, ଏବଂ କାନପୁରର ଟ୍ରେଞ୍ଚ ମଧ୍ୟରେ ଥିବା ଇଂରାଜି ବାହିନୀର ସାହାଯ୍ୟର ଏକାନ୍ତ ଆବଶ୍ୟକତା ରହିଛି । ଏହି ଖବର ପାଇବା ମାତ୍ରେ 'କଲିନ୍' ନିଜର କିଛି ବ୍ୟକ୍ତିଗତ ଅନୁଚରଙ୍କ ସହିତ ଗଙ୍ଗା ପାରି ହୋଇ, ଟ୍ରେଞ୍ଚରେ ପହଞ୍ଚିଲେ । ତା'ପର ଦିନ ସକାଳେ 'ଅବଧ' ପଟେ ଥିବା ତାଙ୍କର ବାହିନୀ ନଦୀ ଅତିକ୍ରମ କରିବାକୁ ଉଦ୍ୟମ କଲେ । 'ତାନ୍ତ୍ୟାଟୋପେ' ଏହାର ନିରାକରଣ ପାଇଁ ପୋଲଟିକୁ ଧ୍ୱଂସ କରିଦେଲେ । କିନ୍ତୁ ପ୍ରବଳ ଗୁଳିଗୋଳା ସତ୍ତ୍ୱେ ଇଂରାଜି ବାହିନୀ ନଭେମ୍ବର ୩୦ତାରିଖ ଦିନ ଗଙ୍ଗା ଅତିକ୍ରମ କଲେ ।

ଏ ଦିଗରେ 'ତାନ୍ତ୍ୟାଟୋପେ'ଙ୍କର ଛାଉଣୀରେ ନାନାସାହେବ ଓ କୁନ୍ୱାର୍ ସିଂହ ଆସି ପହଞ୍ଚିଗଲେ । 'ତାନ୍ତ୍ୟା', ନିଜର ବାହିନୀର ବାମ ଭାଗକୁ, କାନପୁର ଓ

ଗଙ୍ଗା ମଝିରେ ଅବସ୍ଥାପିତ କରାଇଲେ । ତାଙ୍କର ବାହିନୀର ମଧ ଭାଗ, କାନପୁର ସହରର ମଧ ଭାଗରେ ଅବସ୍ଥାପିତ ହେଲା । ଦକ୍ଷିଣ ଭାଗର ବାହିନୀ ଗଙ୍ଗା କେନାଲର ପଛପଟେ ରହିଲେ ଓ ସେଠାରେ ଥିବା ପୋଲଟିକୁ ଆୟତ୍ତରେ ରଖିଲେ । 'ତାନ୍ତ୍ୟା'ଙ୍କର ବାହିନୀରେ ଦଶହଜାର ସୁଶିକ୍ଷିତ ସୈନ୍ୟଥିଲେ । ସେ ଡିସେମ୍ବର ଏକ ଓ ଦୁଇ ତାରିଖ, 'କଲିନ୍'ଙ୍କୁ ଆକ୍ରମଣରେ ବ୍ୟସ୍ତ ରଖିଲେ । ଦୁଇତାରିଖ ଦିନ ସେ ସିଧାସଳଖ 'କଲିନ୍'ଙ୍କର ତମ୍ବୁ ଆଡକୁ ଗୁଳି ଚଳାଇଲେ । ତିନି ତାରିଖ ଦିନ 'କଲିନ୍' ସ୍ତ୍ରୀ, ଶିଶୁ, ରୋଗୀ ଓ ଆହତ ଆଦିମାନଙ୍କୁ ଆଲ୍‌ହାବାଦ ପଠାଇଦେଲେ ଏବଂ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ରହିଲେ । 'ଓ୍ୱିଣ୍ଡହାମ୍'ଙ୍କ ଉପରେ ବିଜୟ ପ୍ରାପ୍ତି କରି 'ତାନ୍ତ୍ୟା'ଙ୍କର ବାହିନୀ ଅତ୍ୟନ୍ତ ସବଳ ହୋଇଉଠିଥିଲେ । ତାଙ୍କର ବାହିନୀ ଅର୍ଦ୍ଧବୃତ୍ତାକାରରେ 'କାନପୁର' ସହରକୁ ଘେରି ରହିଥିଲେ ଓ ସମଗ୍ର ସହର ସେମାନଙ୍କର ଦଖଲରେ ଥିଲା ।

'କଲିନ୍'ଙ୍କର ସେନାରେ ସାତହଜାର ସୈନ୍ୟ ଥିଲେ । ବିଦ୍ରୋହୀ ସେନାର ଦକ୍ଷିଣ ଭାଗ ସୁରକ୍ଷିତ ନଥିବା ହେତୁ 'କଲିନ୍' ଦକ୍ଷିଣଭାଗକୁ ଆକ୍ରମଣ କରିବାର ଯୋଜନା କଲେ । ଏଣୁ ଶତ୍ରୁର ଦୃଷ୍ଟି ଦକ୍ଷିଣ ଭାଗରୁ ଅନ୍ୟ ଦିଗକୁ ନିକ୍ଷେପ କରିବା ପାଇଁ, ଛଅତାରିଖ ସକାଳୁ, ଇଂରାଜି ବାହିନୀ, ବିଦ୍ରୋହୀ ବାହିନୀର ବାମଭାଗକୁ ଆକ୍ରମଣ କଲେ ଓ ତା'ର ଉପଯୁକ୍ତ ଜବାବ୍ ପାଇଲେ । 'ଗ୍ରୀଥେଡ୍', ଶତ୍ରୁକୁ ବିଭ୍ରାନ୍ତ କରିବାକୁ, ମଧଭାଗକୁ ଆକ୍ରମଣ କଲେ । ଏଣୁ ବିଦ୍ରୋହୀମାନେ, ବାମ ଓ ମଧ ଭାଗରେ ସମସ୍ତ ଶକ୍ତି ପ୍ରୟୋଗ କଲେ । ଯେତେବେଳେ ବାମଭାଗ ଇଂରାଜିମାନଙ୍କର ପ୍ରବଳ ଗୋଳାବର୍ଷଣର ଶିକାର ହେଲା, ଇଂରାଜି ବାହିନୀ ହଠାତ୍ ଦକ୍ଷିଣଭାଗକୁ ଆକ୍ରମଣ କଲେ । ଦକ୍ଷିଣଭାଗର ସେନା ସହିତ 'ତାନ୍ତ୍ୟା'ଥିଲେ ଓ ସେ ଆକ୍ରମଣର ଉପଯୁକ୍ତ ଜବାବ୍ ଦେଲେ । କିନ୍ତୁ ସେ ସମ୍ମୁଖରେ ଶିଖ୍ ବାହିନୀ ଓ ତା ପଛରେ ଇଂରାଜି ବାହିନୀର ଗୁଳିବର୍ଷଣର ଶିକାର ହେଲେ । ଫଳରେ ତାଙ୍କର ସେନା ଛିନ୍ନଛତ୍ର ହୋଇଗଲେ ଓ ସେମାନଙ୍କର କମାଣ ଗୁଡିକ ଇଂରାଜିମାନଙ୍କର ହସ୍ତଗତ ହେଲା ଏବଂ ବିଦ୍ରୋହୀ ସେନା, 'କାଲ୍‌ପୀ' ରାସ୍ତା ବାଟେ ଛତ୍ରଭଙ୍ଗ ଦେବାବେଳେ ଇଂରାଜି ବାହିନୀ ସେମାନଙ୍କୁ ଅନୁସରଣ କଲେ । ଏହିପରି ବିଦ୍ରୋହୀ ସେନାର ଦକ୍ଷିଣ ଭାଗ ଉପରେ 'କଲିନ୍' ସମ୍ପୂର୍ଣ୍ଣ ବିଜୟ ପ୍ରାପ୍ତ ହେଲେ । କିନ୍ତୁ, ସେ ସେତିକିରେ ସନ୍ତୁଷ୍ଟ ହେଲେ ନାହିଁ । ସେ 'ତାନ୍ତ୍ୟା'ଙ୍କୁ ବନ୍ଦୀ କରିବାକୁ ମନସ୍ଥ କରି ତାଙ୍କର ବାମ ଦିଗରେ ଥିବା 'ବ୍ରହ୍ମାବର୍ତ୍ତ' ଯିବା ରାସ୍ତାକୁ ଅବରୋଧ କରିବା ପାଇଁ 'ମାନ୍‌ସଫିଲଡ୍' (Mansfield)ଙ୍କୁ ପଠାଇଲେ । ଶତ୍ରୁମାନଙ୍କର ବାମଦିଗକୁ 'ଗ୍ରୀଥେଡ୍' ଆକ୍ରମଣ କଲେ । କିନ୍ତୁ ଏ ଆକ୍ରମଣ ଦୁର୍ବଳଥିବାରୁ ବିଦ୍ରୋହୀମାନେ ତା'ଙ୍କୁ

ଅକ୍ଳେଶରେ ପ୍ରତିହତ କଲେ । ଅପରଦିଗରେ 'ମାନ୍‌ସଫିଲଡ୍' ଅଗ୍ରସର ହେଲେ ମଧ୍ୟ, ତା'ଙ୍କର ଗତି ଅତ୍ୟନ୍ତ ମନ୍ଥର ଥିଲା । ନାନା, ସେନାର ବାମଭାଗରେ ଥିଲେ । ସେ, 'ମାନ୍‌ସଫିଲଡ୍'ଙ୍କର ମନ୍ଥର ଗତିର-ସମ୍ପୂର୍ଣ୍ଣ ସୁଯୋଗ ନେଲେ । ଏହି ପରିଭାବରେ 'ତାନ୍ତ୍ୟାଟୋପେ'ଙ୍କୁ ବନ୍ଦୀ କରିବାର ଆଶା, ଆଶାରେହିଁ ରହିଗଲା । 'ନାନାସାହେବ', 'ମାନ୍‌ସଫିଲଡ୍'ଙ୍କୁ 'ବ୍ରହ୍ମାବର୍ତ୍ତ' ପର୍ଯ୍ୟନ୍ତ ଘଉଡ଼ାଇନେଲେ । ଯଦିଚ୍ 'ତାନ୍ତ୍ୟାଟୋପେ' ଇଂରାଜି ବାହିନୀ ହାତରୁ ବର୍ତ୍ତି ଯାଇଥିଲେ, କିନ୍ତୁ 'ହୋପଗ୍ରାଣ୍ଟ' ତାଙ୍କୁ ଅନୁସରଣ କରୁଥିଲେ । ନଅ ତାରିଖ ଦିନ, 'ସେଓରାଜପୁର' ନିକଟରେ ଇଂରାଜି ବାହିନୀ ସହ 'ତାନ୍ତ୍ୟା'ଙ୍କର ପ୍ରବଳ ଯୁଦ୍ଧ ହେଲା । 'ତାନ୍ତ୍ୟା' ଖସି ଚାଲିଗଲେ ମଧ୍ୟ ତାଙ୍କର ପନ୍ଦରଟି କମାଣ ଇଂରାଜି ବାହିନୀ ହାତରେ ପଡ଼ିଲା ।

'ହୋପଗ୍ରାଣ୍ଟ' ଏହାପରେ 'ବିଥୁର'କୁ ଯାଇ ସଠାରେ ଧ୍ୱଂସ ଲୀଳାର ତାଣ୍ଡବ ସୃଷ୍ଟି କଲେ । ସେ 'ନାନା'ଙ୍କର ପ୍ରାସାଦକୁ ମାଟିରେ ମିଶାଇ ଦେଲେ । ମନ୍ଦିରମାନ ଜଳାଇଦେଲେ । ପ୍ରାସାଦର ସମସ୍ତ ଆସବାବପତ୍ର ଧ୍ୱଂସ କରିଦିଆଗଲା । କିନ୍ତୁ ଶତ୍ରୁ ଆଗମନର ସନ୍ଧାନ ପୂର୍ବରୁ ପାଇ 'ନାନାସାହେବ' ନିଜର ଅଧିକାଂଶ ଅର୍ଥଆଦି ସମ୍ପତ୍ତି ସହ ପଳାୟନ କରିଥିଲେ । ତାଙ୍କର ସମ୍ପତ୍ତିର କିଛି ଅଂଶ ବୟାଳିଶ ଫୁଟର ଗଭୀର ପାଣିଥିବା ଏକ କୂପମଧ୍ୟରୁ ଉଦ୍ଧାର କରାଗଲା । ତହିଁରୁ ବହୁ ସୁନାରୂପାର ବିଭିନ୍ନ ଅଳଙ୍କାର ସହ ସ୍ୱର୍ଣ୍ଣ ନିର୍ମିତ ଥାଳି, ବାସନ ଓ ଗରାମାନ ମଧ୍ୟ ଉଦ୍ଧାର କରାଗଲା । ତନ୍ମଧ୍ୟରୁ ଏକ ସ୍ୱର୍ଣ୍ଣପାତ୍ରର ଓଜନ ବୟାଳିଶ ପାଉଣ୍ଡ ଥିଲା । ସେହିପରି ଜାନୁଆରୀ ତିନି ତାରିଖ ଦିନ, ଆଉ ଦଳେ ଇଂରାଜି ସୈନ୍ୟ, ସେହି କୂପ ମଧ୍ୟରେ ଏତେ ପରିମାଣରେ ସୁନା ଓ ରୂପା ପାଇଲେ ଯେ ତାହା ଜଣଙ୍କ ପକ୍ଷରେ ବହନ କରିବା ସମ୍ଭବ ନଥିଲା ।

'ନାନାସାହେବ', ଏଠାରୁ କେଉଁ ଦିଗକୁ ଗଲେ ତାହା କେହି କହିପାରିଲେ ନାହିଁ । କିନ୍ତୁ ବନ୍ଦୀ ହେବା ପରେ 'ତାନ୍ତ୍ୟା'ଙ୍କୁ ପଚରାଯିବାରେ ସେ କହିଥିଲେ ଯେ ନାନା ସେତେବେଳେ 'କାଲ୍‌ପୀ'କୁ ଯାଇଥିଲେ । ପରିଶେଷରେ 'କାନପୁର' ଅଧିକାରର ଆଶା ଛାଡ଼ି 'ତାନ୍ତ୍ୟାଟୋପେ', ଝାନ୍‌ସୀ ରାଣୀଙ୍କ ସହିତ ଯୋଗଦାନ କରିବା ପାଇଁ ଯାତ୍ରା କଲେ ।



# ଲକ୍ଷ୍ନୌର ପତନ

'ଟାନ୍ତ୍ୟାଟୋପେ'ଙ୍କୁ 'କାନପୁର'ରୁ ବିତାଡ଼ିତ କଲାପରେ 'ସାର୍ କ୍ୟାମ୍ପବେଲ', ଆଖପାଖ ବିଦ୍ରୋହୀ ବାହିନୀ ଅଧିକାର ଭୁକ୍ତ ଇଲାକା ଗୁଡ଼ିକୁ, ଦଖଲ କରିବାକୁ ଲାଗିଲେ । ଏ ମଧ୍ୟରେ 'ସିଟନ୍' (Seaton) ମନ୍ଥର ଗତିରେ ନିଜର ବାହିନୀ ସହିତ ଆସି 'ଆଲିଗଡ଼'ରେ ପହଞ୍ଚିଗଲେ । ଏଣୁ 'ୱାଲ୍‌ପୋଲ୍'ଙ୍କୁ 'କାଲ୍‌ପୀ' ରାସ୍ତାରେ ପଠାହୋଇ 'ଆଲିଗଡ଼'ଠାରୁ 'କାନପୁର' ପର୍ଯ୍ୟନ୍ତ ବିଦ୍ରୋହୀମାନଙ୍କୁ ନିର୍ମୂଳ କରିବାକୁ ଆଦେଶ ଦିଆଗଲା । ୱାଲ୍‌ପୋଲ୍, କାନପୁରରୁ ନିଜର ବାହିନୀ ସହ ଆଲିଗଡ଼ଦିଗରେ ଆଗେଇଗଲେ । ସେହିପରି 'ସିଟନ୍' ମଧ୍ୟ 'ଆଲିଗଡ଼'ଠାରୁ ନିଜର ବାହିନୀ ସହ 'କାନପୁର' ଦିଗରେ ଆଗେଇଗଲେ । ଉଭୟ ବାହିନୀ, 'ମିନ୍‌ପୁରୀ'ରେ ପରସ୍ପରକୁ ଭେଟିଲେ । ସେମାନେ ଯମୁନା ନଦୀର ତୀରବର୍ତ୍ତୀ ଅଞ୍ଚଳ ଓ 'ଦୋବ' ଅଞ୍ଚଳକୁ ଅଧିକାର କରିବାର ଯୋଜନା କଲେ । 'ସାର୍ କ୍ୟାମ୍ପବେଲ' ମଧ୍ୟ 'କାନପୁର' ଠାରୁ 'ଲକ୍ଷ୍ନୌ' ଆଡ଼କୁ ନିଜର ବିଶାଳ ବାହିନୀ ସହ ଆଗେଇ ଆସିଲେ । ପୂର୍ବରୁ ଯୋଜନାଥିଲା ଯେ- 'ଦୋବ' ଅଞ୍ଚଳକୁ ଅଧିକାର କରି, ସେହିଠାରୁ ବିଦ୍ରୋହୀ ସୈନ୍ୟମାନଙ୍କୁ ଘଉଡ଼ାଇ ନେଲେ, ସେମାନେ ଆତ୍ମରକ୍ଷା ପାଇଁ ଫତେଗଡ଼ରେ ଆଶ୍ରୟ ନେବେ । ଏଣୁ ଫତେଗଡ଼ ପାଖାପାଖି ଅଞ୍ଚଳରେ ଉପରୋକ୍ତ ତିନୋଟି ବାହିନୀ ମିଳିତ ହେବେ, ଏବଂ ସମ୍ମିଳିତ ଭାବରେ 'ଫତେଗଡ଼' ଆକ୍ରମଣ କରିବେ ।

'ୱାଲପୋଲ', ଡ଼ିସେମ୍ବର ୪ଠର ତାରିଖ ଦିନ 'କାନପୁର'ରୁ ଯାତ୍ରା ଆରମ୍ଭ କଲେ । ପଥ ମଧ୍ୟରେ ସେ ନିର୍ମମ, ନିର୍ବିଚାର, ହତ୍ୟା ଓ ଧ୍ୱଂସ ଲୀଳା ସଂଘଟିତ କରି କରି 'ଇଟାୱା' ପର୍ଯ୍ୟନ୍ତ ଆଗେଇ ଆସିଲେ । 'ଇଟାୱା'ରୁ ସମସ୍ତ ବ୍ୟକ୍ତି ପଳାୟନ କରିଥିବା ହେତୁ ତାହା ଶୂନ୍‌ଶାନ୍ ଥିବା ସତ୍ତ୍ୱେ 'ୱାଲପୋଲ' ବାଧା ପାଇଲେ । ତାଙ୍କୁ ଅଟକିବାକୁ ହେଲା । ବିଦ୍ରୋହୀ ସେନା ତଥା ନାଗରିକମାନେ 'ଇଟାୱା' ତ୍ୟାଗ କରିବା ସତ୍ତ୍ୱେ, ମାତ୍ର ପଚିଶ ଜଣ ଉଗ୍ର ଦେଶପ୍ରେମୀ ଛାତ ଉପରେ ଥିବା ପାଚେରୀ ମଧ୍ୟରେ ଛିଦ୍ର କରି ତନ୍ମଧ୍ୟରୁ ଇଂରାଜି ବାହିନୀକୁ ପ୍ରବଳ ଗୁଳିବର୍ଷଣ କଲେ । ମାତ୍ର ପଚିଶ ଜଣ ସ୍ୱଦେଶ ପ୍ରେମୀ ନିଜର ଅଦମ୍ୟ ସାହସ ଓ ବୀରତ୍ୱ ବଳରେ ଏକ ବିଶାଳ ସୁଶିକ୍ଷିତ, ସଶୃଙ୍ଖଳ ଓ ସମର୍ଥ ଇଂରାଜି ବାହିନୀକୁ ଅଟକାଇ ଦେଇ ପାରିଥିଲେ । ଏମାନଙ୍କର ଅବିଶ୍ରାନ୍ତ ଗୁଳିବର୍ଷଣ ଫଳରେ ଇଂରାଜି ବାହିନୀ ହଠାତ୍ ସହର ମଧ୍ୟକୁ ପ୍ରବେଶ କରିବାକୁ ସାହସ କରିପାରିଲେ ନାହିଁ । ଇଂରାଜି ବାହିନୀ ବହୁ ସମୟ ଧରି ସହର ବାହାରେ ଅପେକ୍ଷା

କରି ରହିଲେ । କୌଣସି ସୁଫଳ ନହେବାରୁ ସେମାନଙ୍କ ଆଡୁ ଆକ୍ରମଣ ଆରମ୍ଭ ହେଲା । ସର୍ବ ପ୍ରଥମେ କମାଣ ବାହିନୀ ଦ୍ୱାରା ସେମାନଙ୍କୁ ଉଡ଼ାଇଦିଆଯିବାର ସ୍ଥିର କରାଗଲା । ପରିଶେଷରେ ବିଦ୍ରୋହୀମାନେ ଥିବାର ଗୃହ ଗୁଡ଼ିକୁ ଡ଼ିନାମାଇଟ୍‌ରେ ଉଡ଼ାଇଦିଆଗଲା । ଏହି ମହାନ୍ ଦେଶ ପ୍ରେମୀମାନେ ଶହୀଦ ହେଲେ । 'ସିଟନ୍' ମଧ୍ୟ ପଥମଧ୍ୟରେ ସଂଗ୍ରାମ କରି କରି କାଶ୍‌ଗଞ୍ଜ ଦେଇ ମିନ୍‌ପୁରୀରେ ପହଞ୍ଚିଲେ । ସେଠାରେ ସେ ୱାଲ୍‌ପୋଲ୍‌ଙ୍କୁ ୧୮୫୮ ମସିହା ଜାନୁୟାରୀ ୪ଠର ତାରିଖ ଦିନ ଭେଟିଲେ । ଏହିପ୍ରକାରେ ଯମୁନା ତୀରରେ ଥିବା 'ଦୋବ' ଅଞ୍ଚଳକୁ ନେଇ, ଏକ ଦିଗରେ ଦିଲ୍ଲୀ ମିରଟ୍ ତଥା ଅପର ଦିଗରେ ଆଲ୍‌ହାବାଦ ପର୍ଯ୍ୟନ୍ତ ଅଞ୍ଚଳ ଇଂରାଜିମାନଙ୍କର ଅଧିକାର ଭୁକ୍ତ ହୋଇସାରିଥିଲା ।

'ସାର୍ କ୍ୟାମ୍ପବେଲ୍' ମଧ୍ୟ ଗଙ୍ଗା ତୀରରେ ଆଗେଇ ଆସୁଥିଲେ । ସେ ପଥ ମଧ୍ୟରେ 'ଫତେଗଡ଼'ର ନବାବଙ୍କୁ ପରାସ୍ତ କଲେ ଏବଂ 'ଫତେଗଡ଼' ଦିଗରେ ଆଗେଇ ଚାଲିଲେ । 'ଫରୁକାବାଦ'ର ନବାବ 'ଫତେଗଡ଼'ରେ ତାଙ୍କର ସ୍ୱାଧୀନତା ଘୋଷଣା କରିଥିଲେ । ଏଣୁ 'ଦୋବ'ର ବିଦ୍ରୋହୀ ସୈନ୍ୟମାନେ 'ଫତେଗଡ଼' ଚାଲିଆସିଥିଲେ । କିନ୍ତୁ, ଏହି ମିଳିତ ବାହିନୀରେ କୌଣସି ଶୃଙ୍ଖଳା ନଥିଲା । ସେମାନଙ୍କୁ ଇଂରାଜି ବାହିନୀ ଘଉଡ଼ାଇ ନେଲା ବେଳେ ସାତଶହ, ଆଠଶହ ବା ବେଳେ ବେଳେ ହଜାରେ ସଂଖ୍ୟାରେ ହତ୍ୟା କରୁଥିଲେ । ଏହି ବିଶୃଙ୍ଖଳ ସୈନ୍ୟମାନଙ୍କୁ ନେଇ 'ଫରୁକାବାଦ'ର ନବାବ ବଡ଼ ବିପଦରେ ପଡ଼ିଲେ । ସୈନ୍ୟମାନଙ୍କର ବିଶୃଙ୍ଖଳ ଆଚରଣ ହେତୁ କ୍ରମେ ତାଙ୍କ ରାଜଧାନୀ ଓ ସମସ୍ତ ଦୁର୍ଗମାନ ଇଂରାଜିମାନଙ୍କ ହାତରେ ପଡ଼ିଲା । ଏପରିକି ତାଙ୍କର ଯୁଦ୍ଧ ଦ୍ରବ୍ୟାଦି ଯୋଗାଣ ମଧ୍ୟ ଇଂରାଜିମାନଙ୍କ ହାତରେ ପଡ଼ିଲା । ଏଣୁ ସେ ବିଦ୍ରୋହୀ ସେନା ସହିତ ବାଧ୍ୟ ହୋଇ ଗଙ୍ଗା ଦେଇ 'ରୋହିଲାଖଣ୍ଡ'ରେ ପହଞ୍ଚିଲେ ।

ବ୍ରିଟିଶ୍ ମାନଙ୍କର ଚରମଶତ୍ରୁ ତଥା ପୂର୍ବରୁ 'ନାନା'ଙ୍କର ବାହିନୀରେ ରହି ଇଂରାଜିଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିବା ଦୁର୍ଦ୍ଧର୍ଷ ସେନାପତି 'ନାଜିର ଖାଁ', ଏହି ଯୁଦ୍ଧରେ ଇଂରାଜିମାନଙ୍କ ହାତରେ ବନ୍ଦୀ ହୋଇଥିଲେ । ଇଂରାଜିମାନେ ତହାଙ୍କୁ ଫାଶୀ ଦେଲେ । ଫାଶୀରେ ମୁଣ୍ଡ ଗଳାଇବା ଆଗରୁ ଉଚ୍ଚ ସ୍ୱରରେ ସମସ୍ତ ଭାରତବାସୀଙ୍କୁ ଇଂରାଜିମାନଙ୍କୁ ସ୍ୱଦେଶରୁ ହଟାଇବା ପାଇଁ, ଭୟଙ୍କର ପ୍ରତିଜ୍ଞା କରିବାକୁ ଉଦ୍‌ବୋଧନ ଦେଲେ

ଜାନୁଆରୀ ଚାରି ତାରିଖ ଦିନ 'ସାର୍ କ୍ୟାମ୍ପବେଲ', 'ଫତେଗଡ଼'ରେ ପ୍ରବେଶ କଲେ । ଫଳରେ 'ବନାରସ'ର ଉର୍ଦ୍ଧ୍ୱ ଭାଗରୁ ଆରମ୍ଭ କରି, 'ମିରଟ୍' ପର୍ଯ୍ୟନ୍ତ ସମସ୍ତ ଅଞ୍ଚଳ ଉଣା ଅଧିକେ ଇଂରାଜିମାନଙ୍କର ଅଧିକାର ଭୁକ୍ତ ହେଲା । କିନ୍ତୁ 'ଅଯୋଧ୍ୟା' ଓ

'ରୋହିଲାଖଣ୍ଡ' ସମ୍ପୂର୍ଣ୍ଣ ଭାବରେ ବିଦ୍ରୋହୀମାନଙ୍କର ଅଧିକାର ଭୁକ୍ତ ଥିଲା । ଏଣୁ 'କ୍ୟାମ୍ପବେଲ' ରୋହିଲାଖଣ୍ଡ ଅଧିକାର କରି ଲକ୍ଷ୍ନୌ ଅଭିମୁଖେ ଯାତ୍ରା କରିବାକୁ ମନସ୍ଥ କଲେ । କିନ୍ତୁ ବାର୍ତ୍ତା ଯୋଗେ ପାଇଥିବା 'ଲର୍ଡକ୍ୟାନିଂ'ଙ୍କ ନିର୍ଦ୍ଦେଶ କ୍ରମେ ସେ ସର୍ବପ୍ରଥମେ 'ଲକ୍ଷ୍ନୌ' ଆକ୍ରମଣ କରିବାକୁ ସ୍ଥିର କଲେ । କାରଣ 'କ୍ୟାନିଂ', ତାଙ୍କର ବାର୍ତ୍ତାରେ ବିଦ୍ରୋହର କେନ୍ଦ୍ରସ୍ଥଳ 'ଲକ୍ଷ୍ନୌ'କୁ ଅଧିକାର କରିନେଲେ, ଅନ୍ୟାନ୍ୟ ଇଲାକାମାନ ଅଧିକାର କରିନେବା ସହଜ ହେବ ବୋଲି ସର୍ବ ପ୍ରଥମେ ଲକ୍ଷ୍ନୌ ଆକ୍ରମଣ ପାଇଁ ପରାମର୍ଶ ଦେଇଥିଲେ । 'ସିଟନ୍', 'ୱାଲପୋଲ' ଓ 'କ୍ୟାମ୍ପବେଲ'ଙ୍କର ସମ୍ମିଳିତ ବାହିନୀର ସଂଖ୍ୟା ପ୍ରାୟ ଦଶ, ଏଗାର ହଜାର ଥିଲା । 'ଆଗ୍ରା'ରୁ ଅନ୍ୟ ଏକ ବାହିନୀ ଆସି ମଧ୍ୟ ସେମାନଙ୍କ ସହିତ ମିଳିତ ହେଲେ । ଏହି ସମ୍ମିଳିତ ବିଶାଳ ବାହିନୀ 'ଲକ୍ଷ୍ନୌ' ଅଭିମୁଖେ ଆଗେଇ ଚାଲିଲେ । ଏହି ବାହିନୀ ସର୍ବସମ୍ପୂର୍ଣ୍ଣ ଥିଲା । ଏହି ବିଶାଳ ବାହିନୀରେ ଇଞ୍ଜିନିୟର ବାହିନୀ, କମାଣ ବାହିନୀ, ଘୋଡ଼ାସବାର ବାହିନୀ, ପଦାତିକ ବାହିନୀ, ଖାଦ୍ୟ ସାମଗ୍ରୀ ତଥା ଆବଶ୍ୟକୀୟ ଦ୍ରବ୍ୟାଦିରେ ପୂର୍ଣ୍ଣ ଯାନବାହନ, ଛୋଟ ଓ ବଡ ଅନେକ ତମ୍ବୁ ତଥା ଛାଉଣୀର ପରିଚାରକ ମାନେ ଥିଲେ । ଏହାଛଡ଼ା ଏଥିରେ ସତରଟି ବାଟାଲିୟନ୍ ସୈନ୍ୟଙ୍କ ମଧ୍ୟରୁ ପନ୍ଦରଟି ବାଟାଲିୟନ୍ କେବଳ ଇଂରାଜି ସୈନ୍ୟ ଥିଲେ ଓ ୨୮ଟି ସ୍କାର୍ଡ୍ରନ୍ ଘୋଡ଼ାସବାର ବାହିନୀ ମଧ୍ୟରୁ କେବଳ ଚାରୋଟି ରେଜିମେଣ୍ଟରେ ଇଂରାଜି ଥିଲେ । ଏହା ସହିତ ୫୪ଟି ହାଲୁକା କମାଣ ତଥା ୮୦ଟି ଓଜନଦାର କମାଣ ମଧ୍ୟ ଥିଲା ।

୧୮୫୮ ମସିହା ଫେବ୍ରୁଆରୀ ତେଇଶ ତାରିଖ ଦିନ 'କ୍ୟାମ୍ପବେଲ' ଏହି ବିଶାଳ ବାହିନୀ ସହିତ ଗଙ୍ଗା ପାରି ହୋଇ 'ଲକ୍ଷ୍ନୌ' ଦିଗରେ ଯୁଦ୍ଧ ଯାତ୍ରା କଲେ । 'କ୍ୟାମ୍ପବେଲ୍' ଗଙ୍ଗା ପାରି ହେଉଥିବା ସମୟରେ ନେପାଳର 'ରାଜା ଜଙ୍ଗବାହାଦୂର', ଇଂରାଜିମାନଙ୍କ ସହାୟତା ପାଇଁ ନିଜର ଗୋର୍ଖା ବାହିନୀ ସହ 'ଲକ୍ଷ୍ନୌ' ଦିଗକୁ ଆଗେଇ ଆସୁଥିଲେ । 'ଜଙ୍ଗବାହାଦୂର' ଇଂରାଜିମାନଙ୍କର ମିତ୍ର ଥିଲେ । ୧୮୫୭ ମସିହାର ଅଳ୍ପ କିଛି ସମୟ ପୂର୍ବରୁ ସେ ଇଂଲଣ୍ଡ ଭ୍ରମଣରେ ଯାଇଥିଲେ । ସେଠାରେ ସେ ଇଂରାଜିମାନଙ୍କର ଶକ୍ତିର କଳନା କରି ସେମାନଙ୍କ ସହିତ ଶତ୍ରୁତା କରିବାକୁ ସାହସ ନକରି ସେମାନଙ୍କ ସହିତ ମିତ୍ରତା ପାଶରେ ଆବଦ୍ଧ ହୋଇଥିଲେ । ଏଣୁ, ପ୍ରଥମେ ସେ ଅଗଷ୍ଟମାସର ପ୍ରାରମ୍ଭରେ, ଇଂରାଜିଙ୍କ ସହାୟତା ପାଇଁ 'କାଠମାଣ୍ଡୁ'ରୁ ତିନି ହଜାର ଗୋର୍ଖା ସୈନ୍ୟ ପଠାଇଲେ । ସେମାନେ 'ଆଜମଗଡ଼' ଓ 'ଜବାନପୁର' ଦିଗକୁ ମାଡ଼ି ଆସିଲେ । 'ଗୋରଖପୁରର' ବିଦ୍ରୋହୀ ସେନାପତି ମହମ୍ମଦ ହୁସେନ' ସେମାନଙ୍କ ସହ ମୁକାବିଲା ପାଇଁ ପ୍ରସ୍ତୁତ ହୋଇ ରହିଲେ । ଇଂରାଜିବାହିନୀ 'ଦୋଦ' ଅଞ୍ଚଳକୁ ଅଧିକାର ଭୁକ୍ତ କରିବା ସମୟରେ, 'ରାଜା

ବେଣୀ ମାଧବ', 'ମହମ୍ମଦ ହୁସେନ' ଓ 'ରାଜା ନାଦର ଖାଁ' ସମ୍ମିଳିତ ଭାବରେ 'ବନାରସ'ର ଆଖପଅଖ ଅଞ୍ଚଳ ତଥା 'ଅଯୋଧ୍ୟା'ର ପୂର୍ବ ଦିଗ, ନିଜର ଅଧିକାର ଭୁକ୍ତ କରିଥିଲେ । କିନ୍ତୁ ବର୍ତ୍ତମାନ ପରିସ୍ଥିତିରେ ଇଂରାଜିମାନଙ୍କର 'ଅବଧ'ରେ ଆକ୍ରମଣ ଆରମ୍ଭ କରିବା ପୂର୍ବରୁ ଗୋର୍ଖା ସୈନ୍ୟମାନେ ବିଦ୍ରୋହୀମାନଙ୍କୁ 'ଅବଧ' ଦିଗକୁ ଘଉଡ଼ାଇନେଲେ ।

୧୮୫୭ମସିହା ଡ଼ିସେମ୍ବର ୨୩ତାରିଖ ଦିନ 'ଜଙ୍ଗ୍ ବାହାଦୂର' ନଅହଜାର ଗୋର୍ଖା ସୈନ୍ୟଙ୍କ ସହ ଆକ୍ରମଣ ଅଭିଯାନ ଆରମ୍ଭ କଲେ । ଅନ୍ୟ ଦିଗରୁ 'ଜେନେରାଲ ଫ୍ରାଙ୍କସ'୍ ଓ 'ରୋକ୍ରଫ୍ଟ, (Franks & Rowcroft) ପ୍ରତ୍ୟେକ ଏକ ଏକ ଡ଼ିଭିଜନ୍ ସୈନ୍ୟ ସହ ବିଦ୍ରୋହୀମାନଙ୍କୁ ପରାସ୍ତ କରି 'ଜଙ୍ଗବାହାଦୂର'ଙ୍କ ବାହିନୀ ସହ ମିଳିତ ହେଲେ । ଏହି ତିନୋଟି ସମ୍ମିଳିତ ବାହିନୀ 'ଅବଧ'ରେ ପ୍ରବେଶ କରିବାର ଉପକ୍ରମ କଲେ । ଏହି ସମ୍ମିଳିତ ବାହିନୀ ୧୮୫୮ ମସିହା ଫେବୃଆରୀ ୨୫ତାରିଖ ଦିନ 'ଘୋଗ୍ରା' ଅତିକ୍ରମ କରି 'ଅମ୍ବରପୁର' ଦିଗକୁ ଯାତ୍ରା କଲେ । ପଥମଧ୍ୟରେ ନିଘଞ୍ଚ ଅରଣ୍ୟାନୀ ଭିତରେ ଏକ ଦୁର୍ଗମ ଦୁର୍ଗ ପଡ଼ିଲା । ଏହା ସାମରିକ ଦୃଷ୍ଟି କୋଣରୁ ଗୁରୁତ୍ୱ ପୂର୍ଣ୍ଣ ଥିଲା । ଏଣୁ ଗୋର୍ଖା ବାହିନୀ ଏହି ଦୁର୍ଗ ଉପରେ ଆକ୍ରମଣ ଆରମ୍ଭ କଲେ । ଆକ୍ରମଣର ଜବାବ ପ୍ରତ୍ୟାକ୍ରମଣରେ ଦିଆଗଲା । ଏହି ଦୁର୍ଗରେ ମାତ୍ର ୩୪ଜଣ ସୈନ୍ୟ ଥିଲେ । କିନ୍ତୁ ଉଗ୍ରସ୍ୱଦେଶ ପ୍ରେମ ହିଁ ସେମାନଙ୍କୁ ଏହି ବିଶାଳ ବାହିନୀକୁ ଅଟକାଇବାର ପ୍ରେରଣା ଯୋଗାଇଥିଲା । ଏହି ଦୁର୍ଗଟି 'ଅମ୍ବରପୁର' ଥିଲା । ଉପରୋକ୍ତ ୩୪ଜଣ ସୈନ୍ୟ ପ୍ରବଳ ପରାକ୍ରମରେ ବିଶାଳ ଶତ୍ରୁ ବାହିନୀ ଉପରେ ପ୍ରତ୍ୟାକ୍ରମଣ ଜାରିରଖିଲେ ଓ ନିଜ ନିଜର ଆସ୍ଥାନରୁ ଇଞ୍ଚେ ମାତ୍ର ଘୁଞ୍ଚିଲେ ନାହିଁ । ସେମାନଙ୍କର ଆକ୍ରମଣ ଫଳରେ ସମ୍ମିଳିତ ବାହିନୀର ସାତଜଣ ନିହତ ଓ ୪୩ଜଣ ଆହତ ହେଲେ । ଉଭୟ ଦିଗରୁ ଅବିରାମ ଭାବରେ ଲଢେଇ ଚାଲିଲା । କେବଳ ୩୪ତମ ବିଦ୍ରୋହୀ ସୈନ୍ୟର ମୃତ୍ୟୁ ପରେହିଁ ଇଂରାଜି ଓ ଗୋର୍ଖା ବାହିନୀ 'ଅମ୍ବରପୁର' ଦୁର୍ଗ ମଧ୍ୟରେ ପ୍ରବେଶ କରିବାକୁ ସକ୍ଷମ ହେଲେ । ବିଦ୍ରୋହୀମାନେ ମୃତ୍ୟୁ ବରଣ କରିଥିଲେ ମଧ୍ୟ ନିଜର ସ୍ଥାନତ୍ୟାଗ କରିନଥିଲେ ।

'ଜେନେରାଲ ଫ୍ରାଙ୍କ୍', 'ନାଜିମ୍‌ମହମ୍ମଦ ହୁସେନ୍' ଓ 'କମାଣ୍ଡର ବାନ୍ଧୀ ହୁସେନ'ଙ୍କୁ 'ସୁଲତାନପୁର', ବୁଦୟାଁ ଓ ଅନ୍ୟାନ୍ୟ ସ୍ଥାନରେ ପରାସ୍ତ କରି 'ଅବଧ' ଦିଗରେ ଆଗେଇ ଚାଲିଲେ । ଲକ୍ଷ୍ନୌର ଦରବାର, ଜେନେରାଲ 'ଫ୍ରାଙ୍କ'ଙ୍କ ସହ ମୁକାବିଲା କରିବା ପାଇଁ, କମାଣ ବାହିନୀର ମୁଖ୍ୟ 'ଗଫୁର ବେଗ'ଙ୍କୁ 'ମୀର ବାଜିଦ୍ ଅଲିଙ୍କ' ସହିତ ପଠାଇଲେ । କିନ୍ତୁ 'ସୁଲତାନପୁର'ରେ ସେ ଫେବୃଆରୀ ତିନି ତାରିଖ ଦିନ

ପରାଜୟ ବରଣ କଲେ । ଏହି ସମସ୍ତ ବାହିନୀ 'ଜେନେରାଲକ୍ୟାମ୍ପବେଲ୍'ଙ୍କ ସହ ମିଳିତ ହେବାକୁ ଲକ୍ଷ୍ନୌ ଦିଗକୁ ଆଗେଇଯାଉଥିଲେ । 'ଜେନେରାଲଫ୍ରାଙ୍କ୍'· 'ଦାଉରାରା' ର ଦୁର୍ଗ ଅଧିକାର କରିବା ଉଦ୍ଦେଶ୍ୟରେ ଆକ୍ରମଣ କଲେ କିନ୍ତୁ ପ୍ରବଳ ପ୍ରତିଆକ୍ରମଣ ଫଳରେ ପରାଜୟ ସ୍ୱୀକାର କରି ତହିଁରୁ ନିବୃତ୍ତ ରହିଲେ । ବର୍ତ୍ତମାନ ଅବସ୍ଥାରେ ପଶ୍ଚିମ ଦିଗରୁ 'କ୍ୟାମ୍ପବେଲ' ନିଜର ବାହିନୀ ସହ ଆଗେଇ ଆସୁଥିବା ବେଳେ ପୂର୍ବଦିଗରୁ 'ଜଙ୍ଗବାହାଦୂର' ଓ 'ଫ୍ରାଙ୍କ୍'ଙ୍କର ବାହିନୀ ଆଗେଇ ଆସୁଥିଲେ । ମାର୍ଚ୍ଚ ଏଗାର ତାରିଖ ପୂର୍ବରୁ ଏହି ଉଭୟ ବାହିନୀ ମିଳିତ ହେଲେ ।

'କଲିନ୍', ସମସ୍ତ ବାହିନୀ ସହ ପରିଶେଷରେ 'ଆଲାମବାଗ'ରେ ପହଞ୍ଚିଲେ । ସେଠାରେ ପୂର୍ବରୁ 'ହାଭଲକ୍' ଓ 'ଆଉଟ୍‌ରାମ' ଥିଲେ । ବର୍ତ୍ତମାନ 'ଲକ୍ଷ୍ନୌ' ଆକ୍ରମଣ କରିଅଧିକାର କରିବାର ପ୍ରଚେଷ୍ଟା ଚାଲିଲା । ଇଂରାଜିମାନେ ନିଜର ସମସ୍ତ ଶକ୍ତିକୁ 'ଲକ୍ଷ୍ନୌ'ରେ ହିଁ କେନ୍ଦ୍ରୀଭୂତ କରିଥିଲେ । 'ଅବଧ'ର ସମସ୍ତ ବିଦ୍ରୋହୀ ସେନା ତଥା ରାଜା, ଜମିଦାର, ଇଲାକାଦାର ତଥା ପ୍ରତ୍ୟେକ ଗ୍ରାମରୁ ଗ୍ରାମୀଣ ପ୍ରଜାମାନେ ମଧ ଇଂରାଜିଙ୍କ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ଲକ୍ଷ୍ନୌରେ ଏକତ୍ରିତ ହୋଇଥିଲେ । ବିଦ୍ରୋହୀ ବାହିନୀରେ ତିନିହଜାର ସୈନ୍ୟ ଓ ପାଞ୍ଚହଜାର ସ୍ୱେଚ୍ଛାସେବକ ଥିଲେ । ଏହିପରି ସମଗ୍ର ନଗରୀରେ ସମସ୍ତ ଆଠହଜାର ଜଣ ମୁତୟନ ହୋଇ ସଜାଗ ଥିଲେ । ରାସ୍ତାମାନଙ୍କରେ ଓ ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କରେ ଅବରୋଧ ତଥା ବ୍ରେଞ୍ଚମାନ ସୃଷ୍ଟି କରାହୋଇ ସମସ୍ତ ପ୍ରକାର ପ୍ରତିରକ୍ଷା ମୂଳକ ବ୍ୟବସ୍ଥା ଗ୍ରହଣ କରାଯାଇଥିଲା । ଏପରିକି ଗୃହମାନଙ୍କର ଛିଦ୍ରରେ କମାଣ ଓ ବନ୍ଧୁକ ଆଦି ଖଞ୍ଜା ହୋଇରହିଥିଲା । କେବଳ ନଗରୀର ଉତ୍ତରପାର୍ଶ୍ୱ ଛାଡ଼ି ଦେଲେ ଅନ୍ୟ ସମସ୍ତ ଦିଗରେ ଦୃଢ଼ ପ୍ରତିରକ୍ଷାମୂଳକ ବ୍ୟୂହମାନ ରଚନା କରାଯାଇଥିଲା ।

'ସାର୍ କଲିନ୍', ଉତ୍ତର ଦିଗରେ ଶତ୍ରୁର ବ୍ୟବସ୍ଥା ଦୁର୍ବଳ ଥିବାର ଲକ୍ଷ୍ୟ କରିଥିଲେ । ସେ ଦିଗରେ 'ଗୌତମୀ' ନଦୀ ପ୍ରବାହିତ ହେଉଥିବାରୁ ପ୍ରତିରକ୍ଷାର ବିଶେଷ ଆବଶ୍ୟକତା ବିଦ୍ରୋହୀମାନେ ଅନୁଭବ କରିନଥିଲେ । ଫଳରେ 'କଲିନ୍' ଏହି ଦୁର୍ବଳତାର ସୁଯୋଗ ନେବାକୁ ବସିଲେ ।

ମାର୍ଚ୍ଚ ଛଅ ତାରିଖ ଦିନ ଇଂରାଜିମାନେ ଆଉଟ୍‌ରାମଙ୍କ ନେତୃତ୍ୱରେ ଉତ୍ତର ଦିଗରୁ ପ୍ରବଳ ଆକ୍ରମଣ ଆରମ୍ଭ କଲେ । କିଛି ସମୟ ପରେ କଲିନ୍‌ଙ୍କର ସୈନ୍ୟ ସଂଖ୍ୟା ତିନିହଜାରକୁ ବୃଦ୍ଧି ପାଇବା ଫଳରେ ଉତ୍ତର ଓ ପୂର୍ବଦିଗରୁ ଆକ୍ରମଣ କରାଗଲା ।

ବିଦ୍ରୋହୀମାନେ ଏହିପ୍ରକାର ଆକ୍ରମଣ ପାଇଁ ପ୍ରସ୍ତୁତ ନଥିଲେ । ତଥାପି ଏପ୍ରକାର ଅତର୍କିତ ଆକ୍ରମଣକୁ ସେମାଦେ ରାତି ଦିନ ଲାଗିପଡ଼ି ସାହସର ସହ ମୁକାବିଲା କଲେ । ଛଅ ତାରିଖରୁ ପନ୍ଦର ତାରିଖ ପର୍ଯନ୍ତ ସେମାନେ ଦୃଢ଼ ଭାବରେ 'କଦମରସୁଲ,' 'ଶାହନଜୀଫ୍', 'ବେଗମକୋଠି' ଓ ଅନ୍ୟାନ୍ୟ ସ୍ଥାନ ଅଧିକାରଭୁକ୍ତ କରି ଆଗେଇ ଚାଲିଲେ । ଦଶ ତାରିଖ ଦିନ ଇଂରାଜି ମାନଙ୍କର ଶ୍ରେଷ୍ଠ ଓ ଦୁର୍ଦ୍ଧର୍ଷ ସେନାପତି 'ହଡ୍‌ସନ୍' ବିଦ୍ରୋହୀ ସୈନ୍ୟମାନଙ୍କର ଗୁଳିରେ ପ୍ରାଣ ହରାଇଲେ । ଚଉଦ ତାରିଖ ଦିନ ଇଂରାଜି ସୈନ୍ୟ 'କେଶରବାଗ'ର ପ୍ରାସାଦରେ ପଶିଯିବାର ଉପକ୍ରମ କଲେ । ଏହା ଦେଖି 'ହଜରତମହଲ', ସମସ୍ତ ସୁନାମୋହର ଓ ମୂଲ୍ୟବାନ୍ ହୀରାଆଦି ଜବାହାରାତ୍, ଏକ ସିନ୍ଧୁକରେ ଭର୍ତ୍ତିକରି ନିଜ ପୁତ୍ର ଓ ଅନ୍ୟାନ୍ୟ ବେଗମମାନଙ୍କୁ ନେଇ ନିରାପଦ ଥିବା 'ଘାସମଣ୍ଡିଦରବାଜା' ବାଟେ ନିଜର ବିଶ୍ୱସ୍ତ ସେନାପତି ଓ ପାର୍ଶ୍ୱଚରମାନଙ୍କ ସହ ବାହାରି ଯାଇ, ଗଳିକନ୍ଦିରେ ଲୁଚି ଲୁଚି, ମୌଲବୀଗଞ୍ଜରେ ପହଞ୍ଚିଲେ । ପୂର୍ବରୁ 'ମମ୍ମୁଖାଁ'ଙ୍କର ନିର୍ଦ୍ଦେଶରେ 'କାସିମ୍ ଅଲିଖାଁ' ଓ 'ଜବାହର ଅଲିଖାଁ' ସବାରୀମାନ ପ୍ରସ୍ତୁତ କରିରଖିଥିଲେ । ସବାରୀ 'ୟାହିଆଗଞ୍ଜ', 'ନବାବ ଚୌକ' ବାଟ ଦେଇ 'ରାଜା ଜଗନ୍ନାଥ' ଓର୍ଫ 'ଗୁଲାମ ରଜାଖାଁ'ଙ୍କର ଗୃହ ଦିଗକୁ ଯାତ୍ରା କଲା । କିନ୍ତୁ ସେଠାରେ ଆଶ୍ରୟ ନେବା ନିରାପଦ ନଥିଲା । ଏଣୁ ସବାରୀକୁ 'ହୁସୈନାବାଦ'ର ମହଲସରାକୁ ନିଆଗଲା । ସନ୍ଧ୍ୟା ସମୟକୁ ବିଦ୍ରୋହୀ ସୈନ୍ୟମାନେ 'ମହଲସରା'ରେ ପହଞ୍ଚି ଯିବା ପରେ 'ବେଗମ'ଙ୍କର ପ୍ରତିରକ୍ଷା ବ୍ୟବସ୍ଥା ସମ୍ପୂର୍ଣ୍ଣ ହେଲା । ସେଠାରେ 'ହଜରତ୍‌ମହଲ' ନିଜର ବିଶ୍ୱସ୍ଥ ସେନାପତିଙ୍କ ସହ ମନ୍ତ୍ରଣା ସଭାରେ ବସିଲେ ।

'ଆଉଟ୍‌ରାମ' 'କେଶରବାଗ' ଦଖଲ ନେଇ 'ହଜରତ୍‌ମହଲ'ଙ୍କର କୌଣସି ସମ୍ବାଦ ପାଇଲେ ନାହିଁ । ପରେ ଗୁପ୍ତଚର ଜରିଆରେ 'ବେଗମ' ମହଲସରାରେ ରହିଥିବାର ସନ୍ଧାନ ପାଇଲେ । 'ଆଉଟ୍‌ରାମ'ଙ୍କର 'ବେଗମ'ଙ୍କ ସହିତ କୌଣସି ବିରୋଧ ନଥିଲା । ତାଙ୍କର ଧାରଣା ଥିଲା ଯେ କେବଳ ସିପାହୀ ମାନଙ୍କର ବାଧ ବାଧକତାରେ ହିଁ 'ବେଗମ' ଇଂରାଜିମାନଙ୍କ ବିରୁଦ୍ଧରେ ଛିଡ଼ାହୋଇଛନ୍ତି । ଏଣୁ ସେ ଦୂତ ହାତରେ 'ବେଗମ'ଙ୍କ ନିକଟକୁ ସମ୍ବାଦ ଦେଇ ପଠାଇଲେ ଯେ, 'ବେଗମ'ଙ୍କ ସହିତ ଇଂରାଜିଙ୍କର କୌଣସି ଶତ୍ରୁତା ନାହିଁ ଏଣୁ ସେ ନିରାପଦରେ ନିଜର ଜୀବନ ବିତାଇପାରନ୍ତି । କିନ୍ତୁ ଇଂରାଜିମାନେ ବିଦ୍ରୋହୀ ସୈନ୍ୟମାନଙ୍କୁ ସମ୍ପୂର୍ଣ୍ଣ ଭାବରେ 'ଲକ୍ଷ୍ନୌ'ରୁ ବାହାର କରିଦେବେ । ଏଣୁ 'ବେଗମ'ଙ୍କର ଭୟଭୀତା ହୋଇ ପଳାୟନ କରିବାର କୌଣସି କାରଣ ନାହିଁ । ଅପର ପକ୍ଷରେ 'ବେଗମ' ସୁସ୍ଥ ଓ ନିରାପଦ ଭାବରେ ଜୀବନ ବିତାଇବାକୁ

ଚାହିଁଲେ ଇଂରାଜି ସରକାର ମାସକୁ ୨୫୦୦୦ଟଙ୍କା ପେନ୍‌ସନ୍ ଦେବା ପାଇଁ ପ୍ରସ୍ତୁତ ଅଛନ୍ତି । କିନ୍ତୁ ଏହି ସମୟରେ ବେଗମ୍ ଖବର ପାଇଲେ ଯେ ବିଦ୍ରୋହୀମାନେ ଇଂରାଜିଙ୍କ ହାତରୁ 'ବାଦଶା ବାଗ' ତଥା ଚାରିଗୋଟି ତୋପ ନିଜର ଅଧିକାରକୁ ନେଇଛନ୍ତି । ଏଣୁ ବିଜୟର ସାମାନ୍ୟତମ ଆଶା ଦେଖାଯିବାରୁ 'ବେଗମ୍' 'ଆଉଟ୍‌ରାମ'ଙ୍କର ଦୂତକୁ ନାସ୍ତିସୂଚକ ବାକ୍ୟରେ ଫେରାଇ ଦେଲେ ।

ସନ୍ଧ୍ୟା ବେଳକୁ 'ବେଗମ' ଖବର ପାଇଲେ ଯେ ଇଂରାଜି ମାନେ ନଗରୀର ସମସ୍ତ ସ୍ଥାନ ଦଖଲକୁ ନେଇ ବିଦ୍ରୋହୀ ସୈନ୍ୟମାନଙ୍କୁ ସମ୍ପୂର୍ଣ୍ଣ ଭାବରେ ପରାସ୍ତ କରି 'ହୁସୈନାବାଦ' ଦିଗକୁ ଆଗେଇ ଆସୁଛନ୍ତି । ସଙ୍ଗେ ସଙ୍ଗେ ସବାରୀରେ ନିଜ ପୁତ୍ର ଓ ଅର୍ଥ ଭରା ସିନ୍ଧୁକ ସହ ବସି 'ବେଗମହଜରତମହଲ,' 'ହୁସୈନାବାଦ'ର ମହଲ ତ୍ୟାଗ କଲେ । ଆଲାମବାଗରେ ଅଳ୍ପ କିଛି ସୈନ୍ୟ ଥିଲେ ଓ ଅଧିକାଂଶ 'ଲକ୍ଷ୍ନୌ' ନଗରୀ ମଧ୍ୟରେ ଥିଲେ । 'ଆଲାମବାଗ' ପହରା ଦେଉଥିବା ଅଳ୍ପ ସଂଖ୍ୟକ ଇଂରାଜିମାନଙ୍କୁ 'ରାଜା ଜୟଲାଲ ସିଂହ' ଜଗି କରି ରହିବା ଭିତରେ ବେଗମଙ୍କର ସବାରୀ ନିରାପଦରେ 'ଆଲାମବାଗ' ଅତିକ୍ରମ କରିଥିଲା । ସବାରୀ ସାରା ରାତ୍ରି ଯାତ୍ରା କରି ଦିନ ବେଳକୁ ଖୈରାବାଦରେ ପହଞ୍ଚିଲା । 'ଖୈରାବାଦ'ର ନାଜିମଙ୍କୁ 'ହଜରତ୍‌ମହଲ'ଙ୍କର ଆଗମନର ବାର୍ତ୍ତା ମିଳିବା ଫଳରେ ସେ ଯଥୋପଯୁକ୍ତ ଅଭ୍ୟର୍ଥନା ଓ ସତ୍କାରର ବ୍ୟବସ୍ଥା କଲେ । 'ବେଗମ'ଙ୍କୁ 'ବନ୍ଦାଅଲିବେଗ'ଙ୍କର ଇମାମବାଡ଼ାରେ ରଖାଗଲା । ତା'ଙ୍କର ସମ୍ମାନ ପାଇଁ ୨୧ଥର ତୋପ ଧ୍ୱନି କରାଗଲା । ଦିନେ ଖଣ୍ଡେ ସେଠାରେ ରହି ନିଜର ଶାନ୍ତି ଦୂର କରିବା ପରେ ବେଗମ ପୂନର୍ବାର ଯାତ୍ରା କରି ରାଜା ମହମୁଦାବାଦ ନବାବ ଅଲିଖାଁଙ୍କର ଅତିଥି ଥିଲେ । ସେଠାରୁ ଯାଇ ସେ 'ରାଜା ମନବା'ଙ୍କର ଗଡ଼ରେ ରହିଲେ । ତତ୍‌ପରଦିନ ସକାଳୁ 'ହଜରତ୍‌ମହଲ' ନିଜର ସାଥିମାନଙ୍କ ସହିତ 'ବୁନ୍ଦି'କୁ ଚାଲିଗଲେ ।

ବେଗମ ବୁନ୍ଦିରେ ପହଞ୍ଚିଯିବା ପରେ, 'ଲକ୍ଷ୍ନୌ'ର ସମସ୍ତ କର୍ମଚାରୀ ତଥା ବିଦ୍ରୋହୀ ସିପାହୀମାନେ ଆସି ବୁନ୍ଦିରେ ଏକତ୍ରିତ ହେଲେ । ଏତଦ୍‌ବ୍ୟତୀତ, 'ଲକ୍ଷ୍ନୌ'ର ଦୋକାନ ବଜାର, ବଣିଆ ତଥା ସମସ୍ତ ପ୍ରକାର ଲୋକ, ବୁନ୍ଦିରେ ଏକତ୍ରିତ ହୋଇଗଲେ । ସମସ୍ତେ ସ୍ୱତଃପ୍ରବୃତ୍ତ ହୋଇ ବର୍ଷକର ଖଜଣା ବେଗମଙ୍କ ପାଖରେ ଜମା ଦେଲେ । ବିଭିନ୍ନ ରାଜା, ଜମିଦାର, ଇଲାକାଦାର ମାନେ ମଧ୍ୟ ବେଗମଙ୍କ ପାଖରେ ଏକତ୍ରିତ ହୋଇ ସମସ୍ତ ପ୍ରକାର ସହାୟତା ଦେବାକୁ ବୁନ୍ଦିରେ ପହଞ୍ଚି ଗଲେ । ବେଗମ ଅର୍ଥ ତଥା ସହାୟତା ବଳରେ 'ବୁନ୍ଦି'ରେ ସ୍ୱତନ୍ତ୍ର ସରକାର ଆରମ୍ଭ କଲେ । ଦିନ ପରେ ଦିନ ଗଡ଼ି ଚାଲିଲା । 'ବୁନ୍ଦି'ରେ ଥାଟବାଟରେ ରହି ସମସ୍ତେ ନିଶ୍ଚିନ୍ତ ରହିଥିଲେ । କିନ୍ତୁ ଏକମାତ୍ର 'ହଜରତ୍‌ମହଲ' ଭବିଷ୍ୟତ ଚିନ୍ତାରେ ନିମଗ୍ନ ଥିଲେ ।

ଇଂରାଜିମାନେ ଦେଖିଥିଲେ ଯେ 'ବେଗମ'ଙ୍କର ଯିବା ରାସ୍ତା ସବୁଆଡୁ ବନ୍ଦ । ନେପାଳ ଯିବାକୁ ହିଁ ଏକମାତ୍ର ପଥଥିଲା । ନେପାଳର ରାଜା ଇଂରାଜିମାନଙ୍କର ବନ୍ଧୁ ହୋଇଥିବା ଦୃଷ୍ଟିରୁ ସେମାନେ ନିଶ୍ଚିନ୍ତ ଥିଲେ। ବର୍ଷାଦିନ ମଧ୍ୟ ଆରମ୍ଭ ହୋଇଯାଇଥିଲା । ଏଣୁ ଇଂରାଜିମାନେ ବର୍ଷାଦିନ ସରିବା ପର୍ଯ୍ୟନ୍ତ 'ବୁନ୍ଦି' ଦିଗରେ ନଜର ଦେଇନଥିଲେ । ହଠାତ୍ ଦିନେ 'ଜେନେରାଲ୍ କ୍ଲାଇଡ୍' ଏକ ବିଶାଳ ଇଂରାଜି ସେନା ନେଇ 'ଗୋଣ୍ଡା' ଓ 'ବାରହାଇଚ୍' ରେ ରକ୍ତ ନଦୀ ବୁହାଇ ଘାଟି ପରେ ଘାଟି ଦଖଲ କରି, 'ବୁନ୍ଦି'ର ନିକଟବର୍ତ୍ତୀ ହୋଇଗଲେ । 'ବେଗମହଜରତ୍‌ମହଲ', 'ମମ୍ମୁଖାଁ'ଙ୍କ ଠାରୁ ଏ ସମ୍ବାଦ ପ୍ରାପ୍ତ ହୋଇ ତାଙ୍କ ଅଧିନରେ ଥିବା ସମସ୍ତ ସୈନ୍ୟ ତଥା ମମ୍ମୁଖାଁ ଓ ଅନ୍ୟ ସେନାପତିମାନଙ୍କୁ 'ରାଣା ବେଣୀ ମାଧୋ'ଙ୍କ ନେତୃତ୍ୱରେ, 'କ୍ଲାଇଡ୍'ଙ୍କ ସହ ଲଢ଼ିବା ପାଇଁ ପଠାଇଲେ । 'ବେଣୀମାଧୋ' ପ୍ରବଳ ପରାକ୍ରମରେ ଲଢ଼ିଲେ ମଧ୍ୟ ଇଂରାଜିଙ୍କ ଗୁଳିରେ ଧରାଶାୟୀ ହେଲେ ଓ ବିଦ୍ରୋହୀ ସେନା ଛତ୍ରଭଙ୍ଗ ଦେଲେ ।

'ହଜରତ୍‌ମହଲ' ସେନାଙ୍କର ଛତ୍ରଭଙ୍ଗର ସମ୍ବାଦ ପାଇଁ ତୁରନ୍ତ ନିଜର ଅନୁଚର ବର୍ଗ ଓ ଆବଶ୍ୟକୀୟ ଦ୍ରବ୍ୟାଦି ସହ 'ତୁଳସୀପୁର' ଯାତ୍ରା କଲେ । ସେହି ଗଡ଼ରେ ସେ ଛାଉଣୀ ପକାଇଲେ । ସେଠାରେ ରହି ସେ ସମସ୍ତ ପଳାତକ ସୈନ୍ୟମାନଙ୍କୁ ଏକତ୍ରିତ କରି ଇଂରାଜି ବାହିନୀକୁ ପୁନର୍ବାର ଆକ୍ରମଣ କରିବାକୁ ବିଶ୍ୱସ୍ତ ସେନାପତି ମମ୍ମୁଖାଁ କୁ ପରାମର୍ଶ ଦେଲେ । କିନ୍ତୁ 'ମମ୍ମୁଖାଁ' ବହୁ ଚେଷ୍ଟା କଲେ ମଧ୍ୟ ସେହି ବିଶୃଙ୍ଖଳ ପରିସ୍ଥିତିରେ ସୈନ୍ୟମାନଙ୍କୁ ସଂଗଠିତ କରିପାରିଲେ ନାହିଁ । ଏହିପରି ଦୁଇଦିନ ବିତି ଗଲା । ଇଂରାଜୀମାନଙ୍କର 'ତୁଳସୀପୁର' ଦିଗକୁ ଆସୁଥିବାର ଜାଣି 'ବେଗମ', ନିଜର ଦ୍ରବ୍ୟାଦି ସହ 'ସନାର' ପାହାଡ଼ ପାରିହୋଇ 'ବଟୋଳ' ନାମକ ସ୍ଥାନରେ ପହଞ୍ଚିଲେ । ସେଠାରେ 'ନବାବଆସଫୁଦ୍ଦୌଲା'ଙ୍କର ନିର୍ମିତ ଏକ ଗଡ଼ ଥିଲା । ସେଠାରେ 'ବେଗମ' ଛାଉଣୀ ପକାଇଲେ । ଏହି ସମୟରେ ନେପାଳରାଜାଙ୍କର ଜଣେ କ୍ୟାପ୍‌ଟେନ 'ନିରଞ୍ଜନ ମାଝି' ଆସି ରାଣୀଙ୍କୁ ଦେଖାକଲେ ଓ 'ରାଜା ଜଙ୍ଗବାହାଦୂର'ଙ୍କର ଏକ ଚିଠି ଦେଲେ । ଉକ୍ତ ଚିଠିରେ 'ଜଙ୍ଗବାହାଦୂର' 'ବେଗମ'ଙ୍କୁ ନେପାଳର ଇଲାକା ଭିତରେ ଥିବା କଥା ସୂଚାଇଥିଲେ ଓ ସେ ଇଂରାଜିଙ୍କର ବନ୍ଧୁଥିବା ଦୃଷ୍ଟିରୁ ବେଗମଙ୍କୁ କୌଣସି ସାହାଯ୍ୟ ଦେଇପାରିବେ ନାହିଁ ବୋଲି ସ୍ପଷ୍ଟ ଉଲ୍ଲେଖ କରିଥିଲେ ଏବଂ ଇଂରାଜିମାନଙ୍କ ସହିତ ସନ୍ଧି ସ୍ଥାପନ କରିବାକୁ ସେ ବେଗମଙ୍କୁ ଉକ୍ତ ଚିଠିରେ ପରାମର୍ଶ ଦେଇଥିଲେ । କିନ୍ତୁ ବେଗମ କୌଣସି ପରିସ୍ଥିତିରେ ମଧ୍ୟ ଇଂରାଜିମାନଙ୍କ ସହିତ ସନ୍ଧି କରିବାକୁ ରାଜି ନହେବା ଫଳରେ କ୍ୟାପ୍‌ଟେନ ଫେରିଗଲେ ।

କ୍ରମେ ଆଖପାଖ ଗ୍ରାମରୁ 'ବେଗମ'ଙ୍କ ପାଖକୁ ଖାଦ୍ୟ ଓ ଆବଶ୍ୟକୀୟ ଦ୍ରବ୍ୟାଦି ଆସିବା ବନ୍ଦ ହୋଇଗଲା । କାରଣ ପ୍ରତି ଗ୍ରାମରେ ଗୋର୍ଖା ସୈନ୍ୟ ପ୍ରହାରରତ ଥିଲେ । 'ବେଗମ' ବର୍ତ୍ତମାନ ଏକ ବିପଜ୍ଜନକ ପରିସ୍ଥିତିରେ ପଡ଼ିଲେ । ତିନିଦିନ ପରେ 'ରାଜା ଜଙ୍ଗବାହାଦୂର, ନିଜେ 'ବେଗମ'ଙ୍କୁ ଦେଖା କରିବାକୁ ଆସିଲେ । 'ବେଗମ' ତାଙ୍କର ଉପଯୁକ୍ତ ସମ୍ମାନ କଲେ ଓ ତାଙ୍କୁ ବହୁ ମୂଲ୍ୟ ଉପହାର ପ୍ରଦାନ କଲେ । ଏଥିରେ ନେପାଳର ରାଜା ଅତ୍ୟନ୍ତ ପ୍ରୀତ ହୋଇ ଗଲେ ଓ ପରେ ପରେ 'କ୍ୟାପ୍‌ଟେନ ନିରଞ୍ଜନ ମାଝି'ଙ୍କୁ ସବାରୀ ସାଥିରେ ପଚାଶ ଜଣ ଗୋର୍ଖା ସୈନ୍ୟ ଦେଇ ପଠାଇଲେ । ସେଥିରେ ବେଗମ ନିଜର ଅନୁଚର ଆଦିଙ୍କ ସହିତ ଯାଇ 'ନୟାକୋଟ'ରେ ପହଞ୍ଚିଲେ ।

ନେପାଳରେ 'ହଜରତ୍‌ମହଲ' ପ୍ରାୟ ଏକୋଇଶ ବାଇଶି ବର୍ଷ ଜୀବିତ ଥିଲେ । ମଝିରେ ଜଣେ ଇଂରାଜି ଦୂତ ଆସି 'ହଜରତ୍‌ମହଲ'ଙ୍କୁ, ଇଂରାଜି ସରକାରଙ୍କ ଠାରୁ ବଡ଼ ଆକାରରେ ପେନ୍‌ସନ୍ ନେଇ, ଲକ୍ଷ୍ନୌ ବା ତାଙ୍କ ଇଚ୍ଛାମତ ସ୍ଥାନରେ ରହିବା ପାଇଁ ପରାମର୍ଶ ଦେଲେ ମଧ୍ୟ ସ୍ୱାଭିମାନୀ ହଜରତ୍‌ମହଲ ତାହା ପ୍ରତ୍ୟାଖ୍ୟାନ କରି ନେପାଳର ହିନ୍ଦୁରାଜାଙ୍କ ଅଧିନରେ ମାସକୁ ପାଞ୍ଚହଜାର ଟଙ୍କା ପେନ୍‌ସନ୍ ପାଇ ରହିବାପାଇଁ ଇଚ୍ଛା ପ୍ରକାଶ କଲେ । କିନ୍ତୁ ହଜରତ୍‌ମହଲଙ୍କର ମୃତ୍ୟୁ ପରେ, ତାଙ୍କର ପୁତ୍ର ନେପାଳ ତ୍ୟାଗ କରି ଇଂରାଜି ସରକାରଙ୍କ ସହାୟତାରେ କଲିକତାରେ ଦୁଇବର୍ଷ ମାତ୍ର ରହିଲେ । ଏ ମଧ୍ୟରେ ଏକ ଭୋଜିରେ ତାଙ୍କର କୌଣସି ସମ୍ବନ୍ଧୀ ଖାଦ୍ୟରେ ବିଷ ଦେବା ଫଳରେ ସେ ମୃତ୍ୟୁ ବରଣ କରିଥିଲେ । 'ମମ୍ମୁଖାଁ' ଆଦି ସେନାପତିମାନେ ଇଂରାଜି ମାନଙ୍କର ହାତରେ ଧରାପଡ଼ି କେହି ଫାଶୀ ଦଣ୍ଡ କେହି ବା କଳାପାଣି ଦଣ୍ଡପାଇଲେ । କିନ୍ତୁ ତନ୍ମଧ୍ୟରୁ ଇଂରାଜିଙ୍କର ମିତ୍ର ବୋଲାଉଥିବା 'ମୀରବାଜିଦ ଅଲି, ଇଂରାଜିଙ୍କ ଠାରୁ ଲକ୍ଷେ ଟଙ୍କା ଓ କିଛି ଗ୍ରାମ ପାଇଲେ ।



# ନାନା ସାହେବ

'କାନପୁର', ଇଂରାଜିମାନଙ୍କ-ଦ୍ୱାରା ଅଧିକୃତ ହେବା ପରେ, 'ନାନାସାହେବ'ଙ୍କର ଗନ୍ତବ୍ୟ ସ୍ଥଳ, ଯୋଜନା, ଆଦି ବିଷୟରେ କୌଣସି ସମ୍ବାଦ ପ୍ରାପ୍ତ ହେବା ଇଂରାଜିମାନଙ୍କ ପକ୍ଷରେ ସମ୍ଭବ ନଥିଲା । 'ନାନାସାହେବ', ଇଂରାଜିମାନଙ୍କ ନିକଟରେ ଜଣେ ରହସ୍ୟମୟ ପୁରୁଷ ହୋଇ ରହିଲେ । ୧୮୫୮ ମସିହା ଜାନୁଆରୀ ମାସଠାରୁ ମାର୍ଚ୍ଚମାସ ପର୍ଯ୍ୟନ୍ତ 'ନାନା'ଙ୍କର କୌଣସି ସମ୍ବାଦ ମିଳିଲା ନାହିଁ । ଇଂରାଜି ଗୁପ୍ତଚରମାନଙ୍କ ଠାରୁ ପ୍ରାପ୍ତ ସମ୍ବାଦମାନ ପରସ୍ପର-ବିରୋଧି ହେବା ଫଳରେ ତାହା ଇଂରାଜି ସେନାପତିମାନଙ୍କର ଗ୍ରହଣ ଯୋଗ୍ୟ ହେଲା ନାହିଁ ।

ସର୍ବ ପ୍ରଥମେ 'ନାନାସାହେବ', ବଙ୍ଗଳାରେ ଥିବା ଫ୍ରାନ୍ସ ଉପନିବେଶ 'ଚନ୍ଦନ ନଗର'କୁ ଯିବାକୁ ଚାହିଁଲେ । ସେଠାରେ ପହଞ୍ଚି, ସେ ସେଠାକାର ଗଭର୍ଣ୍ଣରଙ୍କ ଜରିଆରେ ତତ୍‌କାଳୀନ ଫ୍ରାନ୍ସର ସମ୍ରାଟ ତୃତୀୟ ନେପୋଲିୟନଙ୍କର ସାହାଯ୍ୟ ପାଇଁ ଅନୁରୋଧ ଜଣାଇବା ତାଙ୍କର ଅଭିପ୍ରାୟ ଥିଲା । କାରଣ, ତାଙ୍କର ପୂର୍ବଜମାନେ ଫ୍ରାନ୍ସର ରାଜ ପରିବାର ସହ ଘନିଷ୍ଠତାସୂତ୍ରରେ ଆବଦ୍ଧ ଥିଲେ । ପୁନଶ୍ଚ, ବିଶେଷ ଭାବରେ ଭାରତରେ ଫ୍ରାନ୍ସ, ଇଂରାଜିମାନଙ୍କର ପ୍ରତିଦ୍ୱନ୍ଦୀ ହୋଇଥିବା ଦୃଷ୍ଟିରୁ ସେଠାରୁ ସାହାଯ୍ୟ ମିଳିବାର ଆଶାଥିଲା । କିନ୍ତୁ ପଥମଧ୍ୟରେ ଅସଂଖ୍ୟ ଇଂରାଜି ଛାଉଣୀର ସତର୍କ ଦୃଷ୍ଟି ଏଡ଼ାଇ 'ଚନ୍ଦନନଗର'ରେ ପହଞ୍ଚିବା ଏକ ଦୁରୂହ ବ୍ୟାପାର ଥିଲା । ଏଣୁ ସେ ତାଙ୍କର ଦୁଇ ଜଣ ବିଶ୍ୱସ୍ତ ଦୂତଙ୍କୁ 'ଚନ୍ଦନନଗର' ପଠାଇ, 'ଏମ.ମୋରାସ୍' (M.Moras)ଙ୍କ ସହ ସମ୍ପର୍କ ରଖି, ତାଙ୍କ ମାଧ୍ୟମରେ 'ତୃତୀୟ ନେପୋଲିୟନ'ଙ୍କୁ ପତ୍ର ପ୍ରେରଣ କରିବାର ବିଚାର କଲେ ଓ ତାହା କାର୍ଯ୍ୟକାରୀ ହେଲା । କିନ୍ତୁ, ସେ ଉକ୍ତ ପତ୍ରର କୌଣସି ଉତ୍ତର ପାଇନଥିଲେ । ଏଣୁ, ମୃତ୍ୟୁ ପର୍ଯ୍ୟନ୍ତ 'ନାନାସାହେବ'ଙ୍କର ଧାରଣା ଥିଲା ଯେ 'ତୃତୀୟ ନେପୋଲିୟନ', ତାଙ୍କ ପତ୍ର ପାଇ ନାହାନ୍ତି । କାରଣ ୧୮୫୮ ମସିହା ଏପ୍ରିଲମାସରେ ନେପାଳରେ ଥିଲାବେଳେ ଇଂରାଜିମାନଙ୍କ ପାଖକୁ ପଠାଇଥିବା ଏକ ପତ୍ରରେ 'ନାନାସାହେବ' ଏହା ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛନ୍ତି :-

"I sent a letter to Chandannagar but it didnot reach, this has disappointed me, or you would have seen what I could do------"(Foreign Department Political proceding, 27 May 1859 (66)

''ମୁଁ ଚନ୍ଦନନଗରକୁ ଏକ ପତ୍ର ପଠାଇଥିଲି କିନ୍ତୁ ତାହା ପହଞ୍ଚିଲା ନାହିଁ । ଏଥିରେ ମୋର ଅସନ୍ତୋଷ ହେଲା । ନଚେତ୍ ତୁମେ ଦେଖିଥାଆନ୍ତ ମୁଁ କଣ କରିପାରିଥାଆନ୍ତି—
——।'' (ଫରେନ୍ ଡ଼ିପାର୍ଟମେଣ୍ଟ ପଲିଟିକାଲ ପ୍ରୋସିଡ଼ିଂ, ମେ୨୭, ୧୮୫୯(66)

ପ୍ରକୃତ ପକ୍ଷରେ ନାନାସାହେବଙ୍କର ଚିଠି, ସମ୍ରାଟ ତୃତୀୟ ନେପୋଲିୟନଙ୍କର ହସ୍ତଗତ ହୋଇଥିଲା । ଏହି ଘଟଣାର ବହୁ ବର୍ଷ ପରେ ୧୮୭୧ମସିହାରେ 'ଲର୍ଡ଼କ୍ୟାନିଂ'ଙ୍କର ପ୍ରାଇଭେଟ ସେକ୍ରେଟାରୀ 'ଏଲ୍,ବି,ବୋରିଙ୍ଗ୍,' (L.B.Bouring) ଏହା କଥା ପ୍ରସଙ୍ଗରେ ତୃତୀୟ ନେପୋଲିୟନଙ୍କର ମୁହଁରୁ ଶୁଣିଥିଲେ । ଲଣ୍ଡନରୁ ପ୍ରକାଶିତ 'ଟାଇମ୍ସ୍' ସମ୍ବାଦ ପତ୍ରରେ 'ବୋରିଙ୍ଗ୍' ବିବୃତି ଦେଇ କହିଥିଲେ ଯେ, ୧୮୭୧ ମସିହାରେ ସେ ତୃତୀୟ ନେପୋଲିୟନଙ୍କୁ ସାକ୍ଷାତ କରିବା ସମୟରେ ସ୍ୱୟଂ 'ତୃତୀୟ ନେପୋଲିୟନ' ତାଙ୍କୁ କହିଥିଲେ ଯେ, ଭାରତବର୍ଷରେ ବିଦ୍ରୋହ ଆରମ୍ଭ ପରେ ପରେ ସେଠାରୁ 'ନାନାସାହେବ'ଙ୍କର ଏକ ପତ୍ର ତାଙ୍କର ହସ୍ତଗତ ହୋଇଥିଲା । ଉକ୍ତ ପତ୍ରରେ 'ନାନାସାହେବ' 'ତୃତୀୟ ନେପୋଲିୟନ'ଙ୍କୁ ଇଂରାଜିମାନଙ୍କ ବିରୁଦ୍ଧରେ ସାହାଯ୍ୟ ପ୍ରାର୍ଥନା କରିଥିଲେ । (ଦି ଟାଇମ୍ସ୍, ୩୧ ଅକ୍ଟୋବର ୧୮୭୪) ଏହି ପତ୍ରଟିରେ 'ଦୁର୍ଗା ପ୍ରସାଦ' ଓ 'ଭଗବାନ ଦାସ' ନାମକୁ ଦୁଇ ଜଣ ବ୍ୟକ୍ତିଙ୍କର ସ୍ୱାକ୍ଷର ଥିଲା । ସେମାନେ 'ନାନାସାହେବ'ଙ୍କର ଅତ୍ୟନ୍ତ ବିଶ୍ୱସ୍ତ ଥିଲେ ଓ ପ୍ରତିନିଧି ରୂପେ କାର୍ଯ୍ୟ କରୁଥିଲେ । ପଣ୍ଡିଚେରୀରେ ଥିବା ଭାରତବର୍ଷର ଫ୍ରାନ୍ସ ଉପନିବେଶର ଗଭର୍ଣ୍ଣର ଏହାପ୍ରାପ୍ତ ହୋଇ, ଏହି ଚିଠିରୁ କିଛି ସାରାଂଶ ବୋଧଗମ୍ୟ ନହେବା ଫଳରେ, ତାଙ୍କର ମତାମତ ନୌବିଭାଗୀୟ ମନ୍ତ୍ରୀ (Minister for Naval affairs)ଙ୍କୁ ଜଣାଇ ଦେଇଥିଲେ । ବୋଧହୁଏ ଏହି ଦୃଷ୍ଟିରୁ ଏହି ଚିଠିର ଉତ୍ତର ଦିଆହୋଇନଥିଲା । ସେ ସମୟରେ 'ନାନା'ଙ୍କର ଏ କ୍ରିୟା କଳାପ ବିଷୟ ଇଂରାଜିମାନଙ୍କର ଅଜ୍ଞାତ ଥିଲା ।

'ଫ୍ରାନ୍ସ' ଉପନିବେଶର ଗଭର୍ଣ୍ଣର, ୧୮୫୮ ମସିହା ମାର୍ଚ୍ଚ ଏକତିରିଶ ତାରିଖ ଦିନ ଏହି ପତ୍ରକୁ 'ତୃତୀୟ ନେପୋଲିୟନ'ଙ୍କ ପାଖକୁ ତାଙ୍କର ମତାମତର ସହ ପ୍ରେରଣ କରିଥିଲେ । ତାଙ୍କ ମତରେ ଥିଲା, ''କାନପୁରରୁ ବିଦ୍ରୋହୀମାନେ ପ୍ରାୟ ଲକ୍ଷ୍ନୌ ପଳାଇଯାଇଛନ୍ତି । ପଥ ମଧ୍ୟରେ ଘନଜଙ୍ଗଲମଧ୍ୟରୁ ବାରମ୍ବାର ବିଦ୍ରୋହୀମାନେ ଇଂରାଜି ବାହିନୀକୁ ଗରିଲା କୌଶଳରେ ଆକ୍ରମଣ କରିବା ଫଳରେ ସେମାନଙ୍କର ଗତି ମନ୍ଥର ହେବା ସଙ୍ଗେ ସଙ୍ଗେ ଖାଦ୍ୟ ଦ୍ରବ୍ୟାଦି ସରବରାହର ଅସୁବିଧା ସହିତ ବିଭିନ୍ନ ରୋଗ ଆଦିରେ ଇଂରାଜି ବାହିନୀର ସଂଖ୍ୟା କମିଯିବା ଫଳରେ ବିଦ୍ରୋହୀମାନଙ୍କର ସମ୍ମିଳିତ ବାହିନୀର ଆକ୍ରମଣର ମୁକାବିଲା ନକରିପାରି ସେମାନେ ସମ୍ପୂର୍ଣ୍ଣ ଭାବରେ ଧ୍ୱଂସ

ହେବେ ।'' ଫ୍ରାନ୍ସର ପ୍ୟାରିସ ନଗରୀରେ ଥିବା 'Billiothique National'ରେ 'ନାନାସାହେବ'ଙ୍କର ପ୍ରତିନିଧିଙ୍କ ଦ୍ୱାରା ୧୮୫୭ ଅକ୍ଟୋବର ଠାରୁ ଅଗଷ୍ଟ ପର୍ଯ୍ୟନ୍ତ ଦିଆଯାଇଥିବା ଏକଗୁଚ୍ଛ ପତ୍ର ରହିଛି । ସେଥିରୁ ଗୋଟିଏ ପତ୍ର ତୃତୀୟ ନେପୋଲିୟନଙ୍କୁ ଦିଆଯାଇଥିଲା । ଦୁଇଟି ପତ୍ର ମୋରାସ୍ (Moras)ଙ୍କ ପାଖକୁ ଦିଆଯାଇଥିଲା ଓ ଅନ୍ୟ ଦୁଇଟି ଚନ୍ଦନନଗର ଗଭର୍ଣ୍ଣରଙ୍କ ପାଖକୁ ପଠାଯାଇଥିଲା । ସେହି ମୂଳ ପତ୍ରର ଅବିକଳ ନକଲ ଦିଲ୍ଲୀରେ ଥିବା ଜାତୀୟ ଅଭିଲେଖାଗାର (National Archieves)ରେ ସଂରକ୍ଷିତ ଅଛି । 'ଚନ୍ଦନନଗର'ରେ ଥିବା ଗଭର୍ଣ୍ଣରଙ୍କୁ ଦେଇଥିବା ପତ୍ରରେ 'ନାନାସାହେବ' ଇଂରାଜିମାନଙ୍କର ବୈଷମ୍ୟବାଦୀ ଶାସନ ଓ ଅତ୍ୟାଚାର ବିଷୟରେ ବର୍ଣ୍ଣନା କରି ଫ୍ରାନ୍ସ ସରକାର ଜଣେ ଡେପୁଟୀଙ୍କୁ ପଠାଇ ଇଂରାଜିମାନଙ୍କର ଅନ୍ୟାୟ ଓ ଅତ୍ୟାଚାରମୂଳକ ଶାସନବ୍ୟବସ୍ଥାର ଏକ ତଦନ୍ତ କରାଇବାର ଆଶା ପ୍ରକାଶ କରିଥିଲେ । ପୁନଶ୍ଚ, ଏହି ପତ୍ରରେ ହିନ୍ଦୁସ୍ଥାନକୁ ଇଂରାଜିମାନଙ୍କର ଅନ୍ୟାୟ ଓ ଅତ୍ୟାଚାରିତ ଶାସନର କବଳରୁ ରକ୍ଷା କରିବା ପାଇଁ ସହାୟତା ପ୍ରାର୍ଥନା କରାଯାଇଥିଲା । ଏଥିରେ 'ନାନାସାହେବ'ଙ୍କର ପୂର୍ବଜମାନଙ୍କର ଫ୍ରାନ୍ସ ରାଜ ପରିବାର ସହିତ ଥିବା ପୁରାତନ ସୁସମ୍ପର୍କ ବିଷୟରେ ମଧ୍ୟ ସୂଚିତ କରାଯାଇଥିଲା । 'ନାନାସାହେବ' ଫ୍ରାନ୍ସ ସରକାର ଏକ ଦୂତ ପଠାଇ ତାଙ୍କର ଅବସ୍ଥା ସ୍ୱଚକ୍ଷୁରେ ଦେଖିଯିବା ପାଇଁ ମଧ୍ୟ ଅନୁରୋଧ ଜଣାଇଥିଲେ । ଅନ୍ୟ ଏକ ପତ୍ରରେ ସେ, ଫ୍ରାନ୍ସ ସରକାର, 'ଚନ୍ଦନନଗର' ଇଂରାଜିମାନଙ୍କୁ ଛାଡ଼ି ଦେଉଥିବାର ଉଡ଼ାଖବରରେ ଆଶଙ୍କା ପ୍ରକାଶ କରି, ତଜ୍ଜନୀତ ନିଜର ଉଦ୍‌ବିଗ୍ନତା ମଧ୍ୟ ପ୍ରକାଶ କରିଥିଲେ ।

ସିନ୍ଧିଆଙ୍କର ମନ୍ତ୍ରୀ 'ଦିନକର ରାଓ'ଙ୍କଠାରୁ ଜଣାପଡ଼େ ଯେ ବର୍ଷର ପ୍ରଥମ ଭାଗରେ ନାନାସାହେବ ସପରିବାର ଓ ସସୈନ୍ୟ 'ଦୁଲ୍‌ଦୁଲ୍' ନାମକ ସ୍ଥାନରେ, ଏକ ଜଙ୍ଗଲଭଣ୍ଡାର ପାର୍ଶ୍ୱରେ ଥିବା ଗଡ଼ରେ ଥିଲେ । ଏହା ଲକ୍ଷ୍ନୌଠାରୁ ଚାଳିଶମାଇଲ ଦୂରରେ ଥିଲା । ତାଙ୍କ ସହିତ ଦୁଇଟି ବୃହଦ୍ ପଲଟନ୍‌ର ସିପାହୀ, ଦଶହଜାର ଜମିଦାର ଓ ଅନ୍ୟମାନେ ଥିଲେ । ସେ 'ଲକ୍ଷ୍ନୌ'ରୁ ଖର୍ଚ୍ଚ ଚଳାଇବା ପାଇଁ ଅର୍ଥ ପ୍ରାପ୍ତ ହେଉଥିଲେ । (Foreign Department Secret proceeding 28May 1858 (177-9) 'କାଲ୍‌ପୀ'ରେ ଥିବା 'ତାନ୍ତ୍ୟାଟୋପେ 'ନାନା'ଙ୍କର ମୋହର ଓ ନିଜର ସ୍ୱାକ୍ଷର ଥାଇ, ଇଂରାଜିମାନଙ୍କ ବିରୁଦ୍ଧରେ ବିଦ୍ରୋହ କରି ସେମାନଙ୍କୁ ଧ୍ୱଂସ କରିବା ପାଇଁ, ପତ୍ରମାନ ଲେଖି ବିଭିନ୍ନ ଆଡ଼କୁ ବିଭିନ୍ନ ଲୋକଙ୍କର ଠିକଣାରେ ପଠାଇଥିଲେ । (Foreign Department Secret preceeding) ସେଥିରୁ କେତୋଟି ଇଂରାଜିମାନଙ୍କର ହସ୍ତଗତ ହୋଇଥିଲା ।

ଫେବୃଆରୀ ଦଶ ତାରିଖ ଦିନ ବିଦ୍ରୋହୀମାନଙ୍କର ପାଞ୍ଚଶହ ସୈନ୍ୟ ବିଶିଷ୍ଟ ଏକ ଦଳ, 'ସେଓଟସର'ଠାରେ ଗଙ୍ଗାନଦୀ ଅତିକ୍ରମ କଲେ । ସେମାନେ ପୁନଶ୍ଚ 'ବିଥୁର' ଓ 'ସେଓରାଜପୁର ମଧରେ ଯାଇଥିବା 'ଗ୍ରାଣ୍ଡଟ୍ରଙ୍କ' ରୋଡ୍‌କୁ ମଧ ଅତିକ୍ରମ କରିଗଲେ । ଏବଂ ସେଠାରେ ଥିବା ଇଂରାଜିମାନଙ୍କର ଏକ ଥାନାକୁ ଧ୍ୱଂସ କଲେ । ଏହି ସମୟରେ ଦୁଇଟି ପାଲିକି ଯିବାର ଦେଖାଗଲା । ଇଂରାଜିମାନେ ସେଥିରେ 'ନାନାସାହେବ' ଯାଉଥିବାର ସନ୍ଦେହ କରିଥିଲେ । କିନ୍ତୁ ପରେ ଜଣାପଡ଼ିଲା 'ନାନାସାହେବ' ସେତେବେଳେ ଅବଧରେ ଥିଲେ ଓ ବାହିନୀ ସହ ପାଲିକିରେ ଯାଉଥିବା ବ୍ୟକ୍ତି 'ନାନାସାହେବ'ଙ୍କର ପୁତୁରା ରାଓ ସାହେବ' ଥିଲେ । (Foreign Department Secret preceeding) ହଠାତ୍ ଇଂରାଜିମାନେ 'ଫତେଗଡ଼'ରୁ ସମ୍ବାଦ ପ୍ରାପ୍ତ ହେଲେ ଯେ, 'ନାନାସାହେବ' ଗଙ୍ଗା ଅତିକ୍ରମ କରି 'ବୁନ୍ଦେଲଖଣ୍ଡ'ରେ ପ୍ରବେଶ କରିବା ମାନସରେ 'ଦୋବ' ଅଞ୍ଚଳରେ ପ୍ରବେଶ କରିଛନ୍ତି । ଅନ୍ୟ ଏକ ଖବର ମଧ ମିଳିଲା ଯେ, ସେ ଗଙ୍ଗା ଅତିକ୍ରମ କରିନାହାନ୍ତି ଓ ପୂର୍ବ ସମ୍ବାଦ ଭ୍ରମାତ୍ମକ । (Foreign Department Secret preceeding 26March 1858 (274) (289)

'ଉନାଓ'ରେ ଥିବା ରବର୍ଟ ନାମକ ଜଣେ ଇଂରାଜି ଫେବୃଆରୀ ଆଠ ତାରିଖ ଦିନ ଜଣାଇଥିଲେ ଯେ, 'ନାନାସାହେବ'ଙ୍କ ସମ୍ବନ୍ଧରେ ବହୁ ପ୍ରକାର ପରସ୍ପର ବିରୋଧି ଉଡ଼ାଖବର ଶୁଣାଯାଉଥିଲେ ମଧ, ସୈନ୍ୟମାନେ ଗୋପନରେ ପଚିଶମାଇଲ ଦୂରରେଥିବା ଏକ କ୍ଷୁଦ୍ର ଦୁର୍ଗରେ 'ନାନାସାହେବ' ଆତ୍ମଗୋପନ କରିଥିବା ସ୍ୱଚକ୍ଷୁରେ ଦେଖିଆସିଛନ୍ତି । ଏହି ସ୍ଥାନ 'ଫତେପୁର ଚୌରାସୀ' ଥିଲା । ଏହି ଦୁର୍ଗ ଗଙ୍ଗା ତୀରରେ ଅବସ୍ଥିତ ଥିଲା । 'ହୋପ୍ ଗ୍ରାଣ୍ଟ', 'ଜେନେରାଲ ମାକ୍ସ ଫିଲ୍ଡ଼୍‌ଙ୍କର ଠାରୁ ଆଦେଶ ନେଇ ଫ୍ରେବୃଆରୀ ପନ୍ଦର ତାରିଖ ଦିନ ସେହି ଦିଗରେ ଯାତ୍ରା କଲେ । ସେମାନଙ୍କର ଅଗ୍ରଗତି ମନ୍ଥର ଥିଲା । କାରଣ ଉପଯୁକ୍ତ ପଥ ନଥିବାରୁ ଏବଂ ବିଭିନ୍ନ ସ୍ଥାନରେ ଅସଂଖ୍ୟ ନଳା ଓ ଜଳପ୍ରପାତ ଥିବାରୁ ସେମାନଙ୍କର ଅଗ୍ରଗତି ସମୟରେ ସ୍ଥାନେ ସ୍ଥାନେ ପଥ ଓ ପୋଲ ଆଦି ନିର୍ମାଣ କରି ସେମାନଙ୍କୁ ଅଗ୍ରସର ହେବାକୁ ପଡୁଥିଲା । 'ଫତେପୁର'ରେ ପହଞ୍ଚିଲା ପରେ 'ଗ୍ରାଣ୍ଟ' ଜାଣିବାକୁ ପାଇଲେ ଯେ, ସେହିଦିନ ହିଁ ପ୍ରଭାତ ପୂର୍ବରୁ, 'ନାନାସାହେବ' ସେ ସ୍ଥାନ ତ୍ୟାଗ କରିଛନ୍ତି । ଫ୍ରେବୃଆରୀରେ 'ରୋହିଲାଖଣ୍ଡ'ର ସୀମାନ୍ତରେ ଥିବା 'ବିର୍‌ମାର୍'ରେ 'ନାନାସାହେବ' ଥିବାର ବିଶ୍ୱାସ କରାଯାଉଥିଲା । ଏହା ଗଙ୍ଗାଠାରୁ ପଚାଶ ମାଇଲ ଦୂରରେ ଥିଲା । ପୁନଶ୍ଚ ଗୁଜବ ଉଠିଥିଲା ଯେ 'ନାନା, କାଲ୍‌ପୀ' ଠାରେ ୧୬ଟି କମାଣ ଓ ନିଜର ବାହିନୀ ସହ ରହିଛନ୍ତି । କିନ୍ତୁ ଏ ସମ୍ବାଦ ପରିଶେଷରେ ମିଥ୍ୟା

ବୋଲି ପ୍ରମାଣିତ ହେଲା । ମାର୍ଚ୍ଚମାସ ପ୍ରଥମ ଭାଗରେ 'ନାନାସାହେବ', 'ଗୋଗ୍ରା' 'ନଦୀ' ଆଡ଼କୁ ଯାଉଥିବାର ସମ୍ବାଦ 'କାନପୁର'ରୁ ମିଳିଥିଲା । ଆଉ ଏକ ସମ୍ବାଦରେ ସେ ସେଓଘାଟଠାରେ ତିନିହଜାର ସୈନ୍ୟ ସହିତ ନଦୀ ଅତିକ୍ରମ କରୁଥିବା ଜଣାଯାଇଥିଲା । ଏଗାର ତାରିଖ ଦିନ ସେ ଶାହାଜାହାନପୁରରେ ଥିବାର ସମ୍ବାଦ ମିଳିଥିଲା । ତାଙ୍କର ସୈନ୍ୟମାନେ ଜିଲ୍ଲାମାନଙ୍କ ଭିତରେ ବିଛେଇ ହୋଇ ରହିଥିଲେ । ସେ 'ଶାହାଜାହାନପୁର'ରେ ପନ୍ଦର ତାରିଖ ପର୍ଯ୍ୟନ୍ତ ରହିଥିବା ଜଣାଯାଏ ।

ମାର୍ଚ୍ଚମାସର ଶେଷ ଭାଗରେ 'ନାନାସାହେବ' 'ବରେଲୀ'ରେ ପହଞ୍ଚିଲେ ଓ ସେଠାରେ 'ଖାଁ ବାହାଦୂର ଖାଁ'ଙ୍କର ସମ୍ପର୍କରେ ଆସିଲେ । 'ଖାଁବାହାଦୂରଖାଁ' 'ନାନାସାହେବ'ଙ୍କୁ ନିଜର ସୈନ୍ୟ ବାହିନୀର ନେତୃତ୍ୱ ଅର୍ପଣ କଲେ । ଅପ୍ରେଲମାସରେ 'ନାନାସାହେବ' 'ବିଥୁର' ପାଖରେ ପାଞ୍ଚଶହ ଅଶ୍ୱାରୋହୀଙ୍କ ସହ ଗଙ୍ଗା ଅତିକ୍ରମ କରି ଯମୁନାଆଡ଼କୁ ଆଗେଇଲେ । କିନ୍ତୁ ପଶ୍ଚାତ୍ ଦିଗରୁ 'ଗ୍ରାଣ୍ଟ'ଙ୍କ ଆଡୁ ଆକ୍ରମଣ ହେବା ଫଳରେ, ସେ 'ରୋହିଲାଖଣ୍ଡ' ଭିତରେ ପ୍ରବେଶ କଲେ । ଏପ୍ରିଲମାସ ଶେଷଭାଗରେ ସେ 'ଶାହାଜାହାନପୁର'ରେ ଥିଲେ, କିନ୍ତୁ ଏକ ଇଂରାଜିବାହିନୀ 'ରାମଗଙ୍ଗା' ଅତିକ୍ରମ କରି ସେଠାରେ ପହଞ୍ଚିଯିବା ଫଳରେ ସେ ଉକ୍ତ ସ୍ଥାନ ତ୍ୟାଗ କରିଥିଲେ । କିଛିଦିନ ଧରି 'ନାନାସାହେବ'ଙ୍କର କୌଣସି ସମ୍ବାଦ ମିଳିଲା ନାହିଁ । କିନ୍ତୁ 'କଲିନ୍,' 'ବରେଲୀ' ଆକ୍ରମଣ କରିବା ସମୟରେ, ତାଙ୍କ ସହ ଲଢ଼ିବା ପାଇଁ ନାନାସାହେବ ଏକ ବାହିନୀ ସୈନ୍ୟ ପ୍ରେରଣ କରିଥିଲେ । ଗୋଆଲିୟର ସିପାହୀଙ୍କର ବିଦ୍ରୋହ ଓ ସିନ୍ଧିଆଙ୍କର 'ଆଗ୍ରା'କୁ ଆତ୍ମରକ୍ଷା ପାଇଁ ପଳାୟନ, ନାନାସାହେବଙ୍କର ସ୍ଥିତିକୁ ସେହିପରିସ୍ଥିତିରେ ସୁଦୃଢ଼ କରିଦେଇଥିଲା ।

୧୮୫୮ମସିହା ଜୁନ୍‌ମାସରେ ଝାନ୍‌ସୀରରାଣୀ, ଏକ ସୈନ୍ୟ ବାହିନୀର ନେତୃତ୍ୱ ନେଇ ଗୋଆଲିୟର ଯାଇ 'ନାନାସାହେବ'ଙ୍କୁ ପେଶବା ଘୋଷଣା କରିଥିଲେ । କିନ୍ତୁ ସେହି ସ୍ଥିତିରେ 'ନାନାସାହେବ' ରହିପାରିଲେ ନାହିଁ । ଡ଼ିସେମ୍ବର ମାସରେ ସେ 'ଅବଧର' ବେଗମ ହଜରତ୍‌ମହଲ'ଙ୍କ ସହିତ 'ବାର୍‌ହାଇଚ୍' ସହରରେ ରହିଥିବାର ସମ୍ବାଦ ମିଳିଲା । ଏ ଖବର ପ୍ରାପ୍ତ ହୋଇ ଡ଼ିସେମ୍ବର ୧୭ତାରିଖଦିନ ଫୈଜାବାଦଠାରେ 'ଲର୍ଡ଼ କ୍ଲାଇଡ଼' 'ଗୋଗ୍ରା' ନଦୀ ଅତିକ୍ରମ କରି ବାର୍‌ହାଇଚ୍ ସହରରେ ପ୍ରବେଶ କଲେ । 'ନାନାସାହେବ' ତତ୍‌କ୍ଷଣାତ୍ ଖସିପଳାଇଗଲେ । ଛବିଶ ତାରିଖରେ ଇଂରାଜିବାହିନୀ, 'ଇକ୍‌ଥାଗ୍ରାମ' ପର୍ଯ୍ୟନ୍ତ ତାଙ୍କର ଅନୁଧାବନ କଲେ । 'ବାର୍‌ହାଇଚ୍' ଠାରୁ ତାହା ସତର ମାଇଲ ଦୂରରେ ଥିଲା । ଏହାପରେ 'ନାନା'ଙ୍କର ଅନ୍ୱେଷଣରେ ଇଂରାଜି ବାହିନୀ 'ବୁରିଦିହା' ନାମକ ଗ୍ରାମ ପାର୍ଶ୍ୱରେ ଥିବା ଗଡ଼କୁ ଗଲେ । 'ନାନାସାହେବ' ସେଠାରେ କିଛି ସପ୍ତାହ ରହିଥିଲେ ।

ସେ ସମୟରେ ଲଣ୍ଡନରୁ ପ୍ରକାଶିତ ହେଉଥିବା 'ଟାଇମ୍ସ୍' ପତ୍ରିକା ତରଫରୁ 'ରସେଲ' (Russel) ନାମକ ଜଣେ ସାମ୍ବାଦିକ ଭାରତବର୍ଷରେ ରହି ତତ୍‌କାଳୀନ ଯାବତୀୟ ସମ୍ବାଦ ଉକ୍ତ ପତ୍ରିକାକୁ ପଠାଉଥିଲେ । ତାଙ୍କର ଡ଼ାଏରୀରେ ସେ ନିଜର ଅନୁଭୂତି ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି ଯେ, ସେହି ସମୟରେ ଥରେ ମୁଖ୍ୟ ସେନାଧକ୍ଷଙ୍କ ସହିତ ସେ ଏକ ଗ୍ରାମକୁ ଯାଉଥିବା ବେଳେ, ସେଠାରେ ରହୁଥିବା ଜଣେ ସାଧାରଣ ଗ୍ରାମବାସୀଙ୍କୁ 'ନାନା'ଙ୍କ ବିଷୟ ପଚାରିବା ଫଳରେ ସେ କହିଲା, ସେ 'ନାନାସାହେବ'ଙ୍କୁ ଏଠାରେ ରହିବାର ଦେଖିଛି । ସେ ବଗିଚାରେ ବୁଲିଲା ବେଳେ ପାଖରେ ଛିଡ଼ାହୋଇଥିବା ଲୋକମାନଙ୍କୁ ସେଠାରୁ ବାହାର କରିଦିଆଯାଉଥିଲା । ସତେଇଶ ତାରିଖ ଦିନ ଇଂରାଜି ଦଳ 'ନାନା'ଙ୍କୁ ଅନୁଧାବନ କରି ମଧାହ୍ନରେ 'ମେଜିଦିହା'ରେ ଥିବା ଦୁର୍ଗରେ ପହଞ୍ଚିଲେ । ସେମାନେ ସେହି ଦୁର୍ଗକୁ ଆକ୍ରମଣ କଲେ ଏବଂ ପ୍ରାୟ ଅପରାହ୍ନ ବେଳକୁ ସେହି ଦୁର୍ଗଟି ପରିତ୍ୟକ୍ତ ହୋଇ ଜନଶୂନ୍ୟ ହୋଇପଡ଼ିଥିଲା ।

ଇଂରାଜିମାନେ ପୁନଶ୍ଚ ଖବର ପାଇଲେ ଯେ 'ନାନାସାହେବ' 'ଚୁର୍ଦ୍ଧା' ନାମକ ସ୍ଥାନରେ ଅଛନ୍ତି । ଏ ଖବର ପାଇ 'ଲର୍ଡ଼କ୍ଲାଇଡ଼' (Lord clyde) ସେଠାରୁ ଦଶମାଇଲ ଦୂରରେ ଥିବାର 'ନାନପଡ଼ା'ରେ ଛାଉଣୀ ପକାଇଲେ ମଧ୍ୟ ତାହାର ବହୁତ ପୂର୍ବରୁ 'ନାନାସାହେବ' ଖସି ପଳାଇଥିଲେ । ଇଂରାଜି ମୁଖ୍ୟ ସେନାଧକ୍ଷ 'କଲିନ୍'ଙ୍କ କାନରେ ମଧ୍ୟ ନାନାସାହେବଙ୍କର ରହସ୍ୟମୟ ଗତିବିଧିର ଖବର ପହଞ୍ଚିଲା । ସେ ଏ ମଧ୍ୟରେ ଖବର ପାଇଲେ ଉତ୍ତର ଦିଗରେ କୋଡ଼ିଏ ମାଇଲ ଦୂରରେ ଥିବା 'ବାଙ୍କୀ' ନାମକ ସ୍ଥାନରେ 'ନାନାସାହେବ' କିଛି ହଜାର ସୈନ୍ୟ ସଂଗ୍ରହ କରି ସେମାନଙ୍କ ସହିତ ସେଠାରେ ଅଛନ୍ତି । ଇଂରାଜିମାନେ ନାନାଙ୍କୁ ଅତର୍କିତ ଭାବରେ କବଳିତ କରି ବନ୍ଦୀକରିବାକୁ ଯୋଜନା କଲେ ।

ଅଳ୍ପ କିଛି ଘଣ୍ଟା ମଧ୍ୟରେ ରାତ୍ରୀକାଳୀନ ଗୋପନ ଯାତ୍ରା ପାଇଁ ସମସ୍ତ ବାହିନୀ ପ୍ରସ୍ତୁତ ହୋଇଗଲେ । ଏହି ଯାତ୍ରା ବିଷୟ, ଅତ୍ୟନ୍ତ ଗୋପନୀୟ ରଖାଗଲା । 'ନାନାସାହେବ', ଇଂରାଜିମାନଙ୍କର ଏ ଆକ୍ରମଣ ଯୋଜନା ବିଷୟରେ ଅବଗତ ନଥିଲେ । ରାତ୍ରୀ କାଳରେ ଇଂରାଜିବାହିନୀ କୋଡ଼ିଏମାଇଲ ଅତିକ୍ରମ କରି 'ବାଙ୍କୀ'ରେ ମୁହଁ ଅନ୍ଧାର ବେଳକୁ ପହଞ୍ଚିଲେ । ସକାଳ ସମୟରେ ଇଂରାଜି ସେନା, ବିଦ୍ରୋହୀ ବାହିନୀର ଏକ ଘୋଡ଼ାସବାର ଦଳ ଆସୁଥିବାର ଦେଖିଲେ । କିନ୍ତୁ ଇଂରାଜିମାନଙ୍କୁ ଦେଖିବା ମାତ୍ରେ ସେମାନେ କେଉଁଆଡ଼େ ଉଭାନ ହୋଇଗଲେ । ପ୍ରାୟ ଏକ ଘଣ୍ଟା ପରେ

ଇଂରାଜି ବାହିନୀ 'ନାନା'ଙ୍କର ନିକଟତର ହେଲେ । 'ନାନାସାହେବ' ତାଙ୍କର ବାହିନୀକୁ ପଶ୍ଚାତ୍ ଦିଗରେ ଏକ ଘଞ୍ଚଜଙ୍ଗଲର ପ୍ରାଚୀର ଓ ସମ୍ମୁଖରେ ଏକ ସୁଦୀର୍ଘ ଓ ଗଭୀର ପଙ୍କିଳ ଭୂମିର ମଧ୍ୟ ଭାଗରେ ଅବସ୍ଥାପିତ କରିଥିଲେ । ଇଂରାଜିସେନାକୁ ଦେଖି 'ନାନା'ଙ୍କର ବାହିନୀ ଦ୍ରୁତ ଗତିରେ 'ରାପ୍ତି' ନଦୀ ଆଡ଼କୁ ଧାବମାନ ହେଲେ । ନଦୀର ଅପରପାର୍ଶ୍ୱରୁ ଏକ ସହାୟକ କମାଣ ବାହିନୀ, ଇଂରାଜିମାନଙ୍କ ଉପରେ ଗୋଳା ବର୍ଷଣ କରିବା ଫଳରେ, 'ନାନା'ଙ୍କର ବାହିନୀ ନିରାପଦରେ ନଦୀ ଅତିକ୍ରମ କରିଗଲେ । କିନ୍ତୁ ବାହିନୀର କିଛି ଅଂଶ ପଛରେ ପଡ଼ିଯାଇ ନଦୀମଧ୍ୟରେ ଥିବା ଅବସ୍ଥାରେ ଇଂରାଜିମାନଙ୍କର ଆକ୍ରମଣର ଶିକାର ହେଲେ ।

ନାନାସାହେବଙ୍କର ଭ୍ରାତା 'ବାଳା ରାଓ' ମଧ୍ୟ 'ଗ୍ରାଣ୍ଟ'ଙ୍କ ଦ୍ୱାରା 'ଅବଧ'ର ସୀମାନ୍ତ ଇଲାକାରୁ ବିତାଡ଼ିତ ହେଲେ । 'ଗ୍ରାଣ୍ଟ' 'ବଲରାମପୁର'ରେ ପହଞ୍ଚି ଖବର ପାଇଲେ ଯେ 'ବାଳା ରାଓ', ଚଉଦମାଇଲ ଦୂରରେ ଥିବା ତୁଳସୀପୁର ଦୁର୍ଗରେ ରହିଛନ୍ତି ଏବଂ ତାଙ୍କ ସହିତ 'ଗୋରଖପୁର'ର 'ମହମ୍ମଦ ହୁସେନ' ମଧ୍ୟ ଯୋଗଦାନ କରିଛନ୍ତି । 'ଗ୍ରାଣ୍ଟ'ଙ୍କ ଆଦେଶ କ୍ରମେ ରୋକ୍ରାଫ୍ଟ (Rowcraft), 'ଗୋରଖପୁର'ର 'ହିର୍' ନାମକ ସ୍ଥାନରୁ ଅଭିଯାନ ଆରମ୍ଭ କରି 'ବାଳା ରାଓ'ଙ୍କ ବାହିନୀର ସମ୍ମୁଖୀନ ହେଲେ ଓ ତାଙ୍କୁ ଅକ୍ଳେଶରେ ପରାସ୍ତ କଲେ । 'ବାଳାରାଓ', ଛଅହଜାର ସୈନ୍ୟ ଓ ପନ୍ଦରଟି କମାଣ ସହ, ପୂର୍ବଦିଗରେ ଥିବା 'କନ୍ଦକୋଟ' ନାମକ ଏକ ଅର୍ଦ୍ଧଭଗ୍ନ ଦୁର୍ଗକୁ ପଳାୟନ କଲେ । ଏହା ଦୁଇଟି ନଦୀର ମଧ୍ୟସ୍ଥଳରେ ଅବସ୍ଥିତ ଥିଲା ଓ ଏହାର ପଶ୍ଚାତ୍‌ଭାଗରେ ଏକ ଜଙ୍ଗଲଥିଲା । ଜାନୁଆରୀ ୪ତାରିଖରେ ରୋକ୍ରୋଫ୍ଟ 'ବାଳାରାଓ'ଙ୍କୁ ଆକ୍ରମଣ କଲେ । ଏହି ଆକ୍ରମଣ ଫଳରେ 'ବାଳାରାଓ' ପନ୍ଦରଟି କମାଣ ଯୁଦ୍ଧକ୍ଷେତ୍ରରେ ତ୍ୟାଗ କରି ପଳାୟନ କଲେ । 'ନାନାସାହେବ' ମଧ୍ୟ ସମସ୍ତ ଅବସ୍ଥା ଅନୁଧ୍ୟାନ କରି 'ନେପାଳ' ପଳାୟନ କଲେ ।



# କୁନ୍‌ୱାର ସିଂହ ଓ ଅମର ସିଂହ

'ଜେନେରାଲ ଆଇରେ'ଙ୍କର ଆକ୍ରମଣ ଫଳରେ କୁନ୍‌ୱାରସିଂହ ଗଭୀର ଅରଣ୍ୟ ମଧ୍ୟରେ ଇତସ୍ତତଃ ଭ୍ରମଣ କରୁଥିଲେ । କିନ୍ତୁ ସେ ଇଂରାଜିମାନଙ୍କର ଗତିବିଧିର ଖବର ରଖୁଥିବା ବେଳେ, ସତର୍କତାର ସହ ଶତ୍ରୁର ଦୁର୍ବଳ ସ୍ଥାନକୁ ଅଚାନକ ଆକ୍ରମଣ ପାଇଁ ପ୍ରସ୍ତୁତ ରହିଥିଲେ । ରାଣା କୁନ୍‌ୱାର ସିଂହଙ୍କ ନେତୃତ୍ୱରେ ତାଙ୍କର ଭାଇ 'ରାଣା ଅମରସିଂହ' ଏବଂ 'ନିଶୱାରସିଂହ' ଓ 'ଯବାନ ସିଂହ' ନାମକ ଦୁଇ ଜଣ ସେନାପତି, ତାଙ୍କ ସହିତ ମିଳିତ ହେଲେ । ଏହି ସମ୍ମିଳିତ ବାହିନୀ ଅରଣ୍ୟ ମଧ୍ୟରେ ପ୍ରତୀକ୍ଷାରତ ଥିଲେ । ରାଣା କୁନ୍‌ୱାର ସିଂହ ଗୋପନରେ ନିଜର ବିଶାଳ ବାହିନୀ ସହ ସୋନନଦୀର କୂଳେ କୂଳେ ପଶ୍ଚିମ ବିହାରକୁ ଯାତ୍ରାକଲେ । ଏହି ଯାତ୍ରା ମଧ୍ୟରେ ସେ, ଶତ୍ରୁମାନଙ୍କର ସମସ୍ତ ଦୁର୍ବଳ ସ୍ଥାନକୁ ଲକ୍ଷ୍ୟ କରିଥିଲେ ।

ଏହି ସମୟରେ କୁନ୍‌ୱାରସିଂହ, ଇଂରାଜି ଓ ନେପାଳୀ ବାହିନୀ 'ଆଜମଗଡ଼'ରୁ 'ଲକ୍ଷ୍ନୌ' ଆକ୍ରମଣ ପାଇଁ, 'ଅବଧ' ମଧ୍ୟରେ ପ୍ରବେଶ କରିଥିବାର ଖବର ପାଇଲେ । କୁନ୍‌ୱାରସିଂହ ଗରିଲା କୌଶଳରେ ପ୍ରବୀଣ ଥିଲେ । ସେ ଏହି କୌଶଳ ଅବଲମ୍ବନ କରି, ନିଜର ବାହିନୀ ସହିତ 'ପୂର୍ବଅବଧ' ପଳାଇଲେ । ସେତେବେଳେ ଇଂରାଜିମାନଙ୍କର ସମସ୍ତ ଶକ୍ତି 'ଲକ୍ଷ୍ନୌ'ରେ କେନ୍ଦ୍ରୀଭୂତ ହେବା ଫଳରେ, 'ପୂର୍ବଅବଧ'ରେ ସେମାନଙ୍କର ନିରାପତ୍ତା ବ୍ୟବସ୍ଥା ଦୁର୍ବଳ ଥିଲା । ଏଣୁ ସେଠାରେ ପୂର୍ବଅବଧର ବିକ୍ଷୁରିତ ବିଦ୍ରୋହୀ ବାହିନୀକୁ ଏକତ୍ରିତ କରି, 'ଆଜ୍‌ମଗଡ଼' ଅଧିକାର କରିବା ସୁବିଧାଜନକ ଥିଲା । ପୁନଶ୍ଚ, ସେଠାରୁ 'ବନାରସ' ଅଧିକାର କଲେ 'କଲିକତା' ଓ 'ଏଲାହାବାଦ' ମଧ୍ୟରେ ଯୋଗସୂତ୍ର ଛିନ୍ନ ହୋଇଯିବା ଫଳରେ, 'ଲକ୍ଷ୍ନୌ'ରେ ଇଂରାଜିମାନେ ଅବରୁଦ୍ଧ ପ୍ରାୟ ହୋଇ ଯିବାର ପୂର୍ଣ୍ଣ ସମ୍ଭାବନା ଥିଲା । ଏହାହିଁ କୁନ୍‌ୱାର ସିଂହଙ୍କର ବିଚାର ଥିଲା । ମାର୍ଚ୍ଚ ୨୦ରେ ତାରିଖରେ 'ବିଭା'ରେ ଥିବା ସିପାହୀମାନେ ତାଙ୍କ ସହିତ ଯୋଗଦାନ କଲେ । ଏହି ସମ୍ମିଳିତ ବାହିନୀ 'ଆତ୍ରୋଲିଆ' ନାମକ ସ୍ଥାନପାର୍ଶ୍ୱରେ ଛାଉଣୀ ପକାଇଲେ ।

'ଆତ୍ରୋଲିଆ'ଠାରୁ 'ଆଜ୍‌ମଗଡ଼'ର ଦୂରତା ପଚିଶ ମାଇଲ ଥିଲା । କୁନ୍‌ୱାର ସିଂହ 'ଆଜମଗଡ଼' ଆକ୍ରମଣ କରିବାର ଯୋଜନା କରୁଥିବା ସମୟରେ 'ମିଲ୍‌ମାନ୍‌', (Milman) ଏହି ଆକ୍ରମଣର ଆଶଙ୍କା କରି, 'ଆତ୍ରୋଲିଆ' ଅଭିମୁଖେ ତିନି ଶହ ପଦାତିକ ଓ ଘୋଡ଼ସବାର ବାହିନୀ ଓ ଦୁଇଟି କମାଣ ସହ ଯାତ୍ରା କଲେ । ମାର୍ଚ୍ଚ

୨୨ତାରିଖ ଦିନ ଇଂରାଜି ସେନା' ଆତ୍ରୋଲିଆ'ରେ ପହଞ୍ଚିଲେ । ବିଦ୍ରୋହୀ ସେନା, ଇଂରାଜି ମାନଙ୍କର ଅପ୍ରତ୍ୟାଶିତ ଆବିର୍ଭାବରେ ପ୍ରଥମେ ହତବାକ୍ ହୋଇଗଲେ । ସେମାନଙ୍କୁ ସ୍ୱାଭାବିକ ଅବସ୍ଥାକୁ ଆସିବାକୁ ସୁଯୋଗ ନଦେଇ, 'ମିଲ୍‌ମାନ' ତତ୍‌କ୍ଷଣାତ୍ ଆକ୍ରମଣର ଆଦେଶ ଦେଲେ । ସାରା ରାତ୍ରି ପଦବ୍ରଜରେ ଆସିଥିବା ଇଂରାଜି ସୈନ୍ୟମାନେ କିନ୍ତୁ ଖୁବ୍ ପରାକ୍ରମ ଦେଖାଇଲେ ଓ ପରିଶେଷରେ ବିଦ୍ରୋହୀସେନା ଛତ୍ରଭଙ୍ଗ ଦେଲେ । ମାତ୍ର 'କୁନ୍‌ୱାର ସିଂହ'ଙ୍କ ପକ୍ଷରେ ଏ ପରାଜୟ ଏକ ନକଲି ପରାଜୟ ଥିଲା । କାରଣ ଇଂରାଜିମାନେ ବିଦ୍ରୋହୀମାନଙ୍କର କୌଣସି ଚିହ୍ନ ବର୍ଣ୍ଣ ନଦେଖି ନିଶ୍ଚିନ୍ତରେ ଏକ ଆମ୍ବ ବଗିଚାରେ ପ୍ରାତଃ ଭୋଜନ ଆରମ୍ଭ କଲା ବେଳକୁ ନିକଟରେ ଚତୁର୍ଦ୍ଦିଗରେ ଗରିଲା କୌଶଳ ଅବଲମ୍ବନ କରି ଲୁଚିଥିବା କୁନ୍‌ୱାର ସିଂହଙ୍କର ସୈନ୍ୟମାନେ ତୁରନ୍ତ ଆକ୍ରମଣ ଆରମ୍ଭ କଲେ । 'କୁନ୍‌ୱାରସିଂହ'ଙ୍କ ସୈନ୍ୟ ବାହିନୀର ସଂଖ୍ୟା 'ମିଲ୍‌ମାନ'ଙ୍କର ବାହିନୀଠାରୁ ପାଞ୍ଚ ଛଅ ଗୁଣ ଅଧିକ ଥିଲା । ନିକଟରେ ଥିବା ଆମ୍ବ ଗଛ ଓ ଆଖୁ କିଆରୀ ଭିତରୁ ବିଦ୍ରୋହୀ ସୈନ୍ୟମାନେ ଇଂରାଜିମାନଙ୍କ ଉପରେ ପ୍ରବଳ ଗୁଳିବର୍ଷଣ କରି କରି କ୍ରମଶଃ ଆଗେଇ ଆସିଲେ । 'ମିଲ୍‌ମାନ'ଙ୍କର ସେନା ନିଜର ଦୁର୍ବଳତା ଅନୁଭବ କରିପାରି ତତ୍‌କ୍ଷଣାତ୍ ପଶ୍ଚାତ ଦିଗରେ ଛତ୍ରଭଙ୍ଗ ଦେଲେ । କୁନ୍‌ୱାର ସିଂହଙ୍କର ବାହିନୀ, ସେମାନଙ୍କର ପଶ୍ଚାତ୍‌ଧାବନ କରି କରି ସେମାନଙ୍କୁ ତାଙ୍କର ଆସିବା ସ୍ଥାନ 'କୋଶିଲା ଛାଉଣୀ' ପର୍ଯ୍ୟନ୍ତ ତଡ଼ିନେଲେ । ପୂର୍ବରୁ ଉକ୍ତ ଛାଉଣୀରେ ଇଂରାଜି ନିଯୁକ୍ତ ଭାରତୀୟ ଭୃତ୍ୟମାନେ ବହୁ ପୂର୍ବରୁ ସେମାନଙ୍କର ପରାଜୟ ବାର୍ତ୍ତା ଶୁଣି ପଳାୟନ କରିଥିଲେ । କୁନ୍‌ୱାର ସିଂହ ସେମାନଙ୍କର ପିଛା ଛାଡ଼ିଲେ ନାହିଁ । ଏଣୁ, ଏହି ପ୍ରକାର ପରିସ୍ଥିତି ମଧ୍ୟରେ କୌଣସି ଦିଗରୁ କୌଣସି ପ୍ରକାର ସାହାଯ୍ୟର ଆଶା ନଦେଖି ,ନିଜର ଛାଉଣୀ ଓ ଆସବାବ ପତ୍ର ତ୍ୟାଗ କରି 'ମିଲ୍‌ମାନ୍' ନିଜର ବାହିନୀ ସହ ପଳାୟନ କଲେ । 'କୁନ୍‌ୱାର ସିଂହ'ଙ୍କର ବାହିନୀ ସେମାନଙ୍କୁ ଆଜମଗଡ଼ ପର୍ଯ୍ୟନ୍ତ ତଡ଼ିନେଲେ ।

'ଆଜମଗଡ଼'ରେ 'ମିଲ୍‌ମାନ୍'ଙ୍କର ସହାୟତା ପାଇଁ 'ବନାରସ' ଓ 'ଘାଜିପୁର'ରୁ ତିନିଶହପଚାଶ ଜଣ ସୈନ୍ୟ ଆସିବା ଫଳରେ ସେଠାରେ ଥିବା ଇଂରାଜି ବାହିନୀର ଶକ୍ତି ଦ୍ୱିଗୁଣିତ ହେଲା । 'କର୍ଣ୍ଣେଲ ଡ଼େମ୍‌ସ୍' (Colonel Dames), ଏହି ସମ୍ମିଳିତ ବାହିନୀର ନେତୃତ୍ୱ ନେଇ, ଆଜମଗଡ଼ରୁ ବହିର୍ଗତ ହୋଇ, ମାର୍ଚ୍ଚ ଅଠେଇଶ ତାରିଖ ଦିନ କୁନ୍‌ୱାର ସିଂହ'ଙ୍କୁ ଆକ୍ରମଣ କଲେ । କିନ୍ତୁ, ବିଦ୍ରୋହୀମାନେ ଏପରି ପ୍ରଚଣ୍ଡ ଭାବରେ ଆକ୍ରମଣର ଜବାବ ଦେଲେ ଯେ ଇଂରାଜିମାନେ କୌଣସି ପ୍ରକାରେ ଆତ୍ମରକ୍ଷା କରି ଆଜମଗଡ଼ ଦୁର୍ଗ ମଧ୍ୟକୁ ପଳାୟନ କଲେ । ଦୁର୍ଗ ମଧ୍ୟରେ ଇଂରାଜି ବାହିନୀ

ଥାଉଥିବା ସମୟରେ, 'କୁନ୍ୱାର ସିଂହ'ଙ୍କ ବାହିନୀ ଅପ୍ରତ୍ୟାଶିତ ଆକ୍ରମଣ କରି ଆଜମଗଡ଼ରେ ପ୍ରବେଶ କଲେ । ଆଜମଗଡ଼ କୁନ୍ୱାର ସିଂହଙ୍କର ଅଧିକାର ଭୁକ୍ତ ହେଲା । ରାଣା କୁନ୍ୱାର ସିଂହ ଆଜମଗଡ଼ରେ ରହି ନିଜର ବାହିନୀକୁ ଅଧିକ ଶକ୍ତିଶାଳୀ ଓ ସୁସଂଗଠିତ କଲେ । ସେ 'ଦିଲ୍ଲୀ' ଓ 'ଲକ୍ଷ୍ନୌ'ରୁ ପଳାଇ ଆସୁଥିବା ବିଦ୍ରୋହୀ ସୈନ୍ୟମାନଙ୍କୁ ଉତ୍ସାହିତ କରି ନିଜର ବାହିନୀ ସହ ସାମିଲ କରାଇ ଏକ ବିଶାଳ ବାହିନୀ ସୃଷ୍ଟିକଲେ ।

ଏହି ସମୟରେ 'ଗଭର୍ଣ୍ଣର ଜେନେରାଲ ଲର୍ଡ଼କ୍ୟାନିଂ' ଆଲ୍ଲାହାବାଦରେ ଥିଲେ । ସେ ଇଂରାଜିମାନଙ୍କର ପରାଜିତ ହେବାର ଖବର ପାଇବା ମାତ୍ରେ ସଙ୍ଗେ ସଙ୍ଗେ 'ଲର୍ଡ଼ ମାର୍କ କେର୍'ଙ୍କୁ (Lord Mark kerr), ଯଥା ଶୀଘ୍ର ସହାୟତା ଦେବା ପାଇଁ ଆଦେଶ ଦେଲେ । ପୂର୍ବରୁ 'ମାର୍କ କେର୍' କ୍ରିମିଆ ଯୁଦ୍ଧରେ ଜଣେ ପ୍ରବୀଣ ସେନାପତି ଥିଲେ ତଥା ଭାରତୀୟ ଭୂମିରେ ମଧ୍ୟ ଜଣେ ସମର ବିଶାରଦ ରୂପେ ପରିଗଣିତ ହେଉଥିଲେ । ସେ ଆଦେଶ କ୍ରମେ, ଅପ୍ରେଲ ଛଅତାରିଖ ଦିନ ପାଞ୍ଚଶହ ସୈନ୍ୟ ଓ ଆଠଟି କମାଣ ସହ 'ଆଜମଗଡ଼'ଠାରୁ ଆଠମାଇଲ ଦୂରରେ ପହଞ୍ଚିଗଲେ । ସେଠାରେ ସାମାନ୍ୟବିଶ୍ରାମ କରି ସେ ପୁନର୍ବାର ଆଗେଇଲେ ।

ପ୍ରାୟ ସକାଳ ଛଅଟା ବେଳକୁ ସେ ଖବର ପାଇଲେ ଯେ, କୁନ୍ୱାର ସିଂହଙ୍କର ସୈନ୍ୟମାନେ ଚତୁର୍ଦ୍ଦିଗରେ ଲୁଚି ଛପି ତାଙ୍କର ଗତିବିଧି ଲକ୍ଷ୍ୟ କରୁଛନ୍ତି । 'ମାର୍କକେର୍' ଆଗେଇ ଆସି କୁନ୍ୱାର ସିଂହଙ୍କ ବାହିନୀର ବାମ ଭାଗକୁ ଆକ୍ରମଣ କଲେ । ଆକ୍ରମଣର ଜବାବ ଦେଇ ବିଦ୍ରୋହୀ ବାହିନୀରୁ ପ୍ରବଳ ଗୁଳି ବର୍ଷଣ ହେଲା । 'କୁନ୍ୱାର ସିଂହ' ଲକ୍ଷ କଲେ ଯେ, ଶତ୍ରୁମାନେ ସଂଖ୍ୟାରେ ଅଧିକ ଅଛନ୍ତି । ଏଣୁ ସେ ବୁଝିଥିଲେ ଏତେ ଅଳ୍ପ ସଂଖ୍ୟକ ସୈନ୍ୟ ନେଇ ସମ୍ମୁଖ ଭାଗରୁ ଇଂରାଜିମାନଙ୍କୁ ଆକ୍ରମଣ କରିବା ଫଳପ୍ରଦ ନଥିଲା । କୁନ୍ୱାରସିଂହ ନିଜର ବାହିନୀକୁ ବିସ୍ତାରିତ ଭାବରେ ସଜାଇ ନେଲେ ଏପରିକି ଛାଉଣୀର ପରିଚାରକମାନଙ୍କୁ ମଧ୍ୟ ସେଥିରେ ସାମିଲ କରାଇନେଲେ । ଇଂରାଜିମାନେ ସମ୍ମୁଖରେ କମାଣ ରଖି ଗୋଳା ବର୍ଷଣ କରୁଥିଲେ । ଏହି ପରିସ୍ଥିତିରେ 'କୁନ୍ୱାରସିଂହ' ଅତ୍ୟନ୍ତ ଚତୁରତାର ସହିତ, ନିଜର ବାହିନୀକୁ ଇଂରାଜି ବାହିନୀର ପଶ୍ଚାତ ଦିଗକୁ ନେଇଗଲେ । ପଶ୍ଚାତ ଭାଗରୁ ସେ ପ୍ରବଳ ବେଗରେ ଅପ୍ରତ୍ୟାଶିତ ଆକ୍ରମଣ କରି ମାଡ଼ି ଚାଲିଲେ । ହଠାତ୍ କମାଣ ବାହିନୀ କମାଣ ବୁଲାଇ ପଶ୍ଚାତ୍ ଭାଗରୁ ଆକ୍ରମଣ କରିବା ସମ୍ଭବ ନଥିଲା । ଏବଂ କୁନ୍ୱାର ସିଂହଙ୍କ ବାହିନୀର ବିଦ୍ୟୁତ୍‌ସମ ଅଗ୍ରଗତିରେ, ପଶ୍ଚାତ ଦିଗରେ ଥିବା ଇଂରାଜି ବାହିନୀ ହତଚକିତ ହୋଇ ବିଶୃଙ୍ଖଳ ଭାବରେ ଏଣେ ତେଣେ

ପଳାୟନ କଲେ । 'ମାର୍କକେର୍' ପଶ୍ଚାତ ଦିଗରୁ ବିଜୟର ସମ୍ଭାବନା ନଦେଖି ସମ୍ମୁଖ ଭାଗ ଆକ୍ରମଣ କରି ବିଦ୍ରୋହୀମାନଙ୍କର କିଛି ଗୃହମାତ୍ର ଦଖଲ କଲେ ।

'କୁନ୍ୱାର ସିଂହ' ଇଂରାଜି ବାହିନୀର ପଶ୍ଚାତ୍ ଭାଗର ଚତୁର୍ଦ୍ଦିଗରେ ନିଆଁ ଲଗାଇ ଦେଲେ । ପଶ୍ଚାତ୍ଭାଗର ଚତୁର୍ଦ୍ଦିଗରେ ପ୍ରବଳ ଅଗ୍ନିଶିଖା ଦେଖି 'ମାର୍କକେର୍' ଅନନ୍ୟୋପାୟ ହୋଇ ଅର୍ଦ୍ଧ ରାତ୍ରିରେ 'ଆଜମଗଡ଼' ଦୁର୍ଗ ମଧ୍ୟକୁ ପ୍ରବେଶ କଲେ । କୁନ୍ୱାର ସିଂହଙ୍କର ବାରହଜାର ସୈନ୍ୟଥିଲେ । ସେ ସେହି ଅବସ୍ଥାରେ 'ଆଜମଗଡ଼' ଆକ୍ରମଣ କରିଥିଲେ ଅନାୟାସରେ ଜିଣି ପାରିଥାଆନ୍ତେ । କିନ୍ତୁ କୁନ୍ୱାରସିଂହଙ୍କ ମନରେ ଅନ୍ୟ ଯୋଜନାଥିଲା ।

ସେ ନିର୍ଭୀକ, ସାହସୀ ଓ ସର୍ବଦା ଆତ୍ମବଳୀ ଦେବାକୁ ପ୍ରସ୍ତୁତଥିବା କିଛି ଦୁର୍ଦ୍ଧର୍ଷ ସୈନ୍ୟଙ୍କୁ ନେଇ ଏକ ସ୍ୱତନ୍ତ୍ର ଦଳ ସଂଗଠନ କଲେ ଓ ସେହି ଦଳକୁ ନିକଟରେ ଥିବା 'ତନୁନଦୀ'ର ପୋଲ ଉପରେ ରହି ତାହାକୁ ରକ୍ଷା କରିବାକୁ ଆଦେଶ ଦେଲେ । କାରଣ ସେ ଖବର ପାଇଥିଲେ ଯେ ବିପନ୍ନ ଇଂରାଜି ସୈନ୍ୟମାନଙ୍କର ସହାୟତା ପାଇଁ ଜେନେରାଲ ଲୁଗାର୍ଡ଼ (General Lugard) ଆଜମଗଡ଼ ଆଡ଼କୁ ମାଡ଼ି ଆସୁଥିଲେ ଓ ତନୁ ନଦୀର ପୋଲ ହିଁ ଆଜମଗଡ଼କୁ ପ୍ରବେଶର ପଥ ଥିଲା । ଚତୁର ଓ ବିଚକ୍ଷଣ ଯୋଦ୍ଧା 'କୁନ୍ୱାରସିଂହ', ଶତ୍ରୁ ମନରେ ବିଭ୍ରାନ୍ତି ସୃଷ୍ଟି କରିବା ପାଇଁ 'ତନୁ' ନଦୀ ପୋଲ ଉପରୁ ପ୍ରଚଣ୍ଡ ଆକ୍ରମଣର ବ୍ୟବସ୍ଥା କରିଥିଲେ । କାରଣ ଏତଦ୍ୱାରା ଶତ୍ରୁ ମନରେ ଧାରଣ ହେବ ଯେ ବିଦ୍ରୋହୀ ପ୍ରାଣ ପଣେ ଆଜମଗଡ଼ ଦୁର୍ଗ ଧରିରଖିବାକୁ ଉଦ୍ଦେଶ୍ୟ ରଖିଅଛନ୍ତି ଏବଂ ସେମାନେ ନିଜର ସମସ୍ତ ଶକ୍ତି ଆଜମଗଡ଼ରେ କେନ୍ଦ୍ରୀଭୂତ କରିବେ । ଏହି ସୁଯୋଗରେ କୁନ୍ୱାରସିଂହଙ୍କର ବାହିନୀ 'ଜଗଦୀଶପୁର'କୁ ଖସିଯାଇ ତାହା ଆକ୍ରମଣ କରି ଦଖଲ ନେଇଯିବେ । ଏହା ଏକ ବିଚକ୍ଷଣ ସାମରିକ ଯୋଜନା ଥିଲା । ବିଦ୍ରୋହୀ ବାହିନୀ 'ଆଜମଗଡ଼' ଛାଡ଼ିବା ପର୍ଯ୍ୟନ୍ତ କୁନ୍ୱାରଙ୍କ ଦ୍ୱାରା ସଂଗଠିତ ଦୁର୍ଦ୍ଧର୍ଷ ଦଳଟି 'ତନୁ' ନଦୀର ପୋଲରୁ ଆକ୍ରମଣ କରି ଲୁଗାର୍ଡ଼ଙ୍କର ବାହିନୀକୁ ଅଟକାଇ ରଖିବେ ଓ ବିଦ୍ରୋହୀ ବାହିନୀ 'ଆଜମଗଡ଼' ଛାଡ଼ିବା ପରେ ତୁରନ୍ତ ସେମାନଙ୍କ ସହିତ ମିଳିତ ହେବେ । ଲୁଗାର୍ଡ଼ ନିଜର ବାହିନୀ ସହ ଆଜମଗଡ଼ରେ ପହଞ୍ଚିବା ପାଇଁ 'ତନୁନଦୀର' ପୋଲ ଉପରେ ପୂର୍ବରୁ ପ୍ରସ୍ତୁତ ହୋଇ ରହିଥିବା ଅଳ୍ପ ସଂଖ୍ୟକ ବିଦ୍ରୋହୀ ସେମାନଙ୍କ ଉପରକୁ ଆକ୍ରମଣ ଚଳାଇଲେ । ଆକ୍ରମଣର ଜବାବ ଭୟଙ୍କର ପ୍ରତ୍ୟାକ୍ରମଣରେ ଦିଆଗଲା । ଇଂରାଜିମାନଙ୍କର ପ୍ରବଳ ଗୋଳାବର୍ଷଣ ସତ୍ତ୍ୱେ ବିଦ୍ରୋହୀ ସୈନ୍ୟମାନେ ନିର୍ବିକାର ଚିତ୍ତରେ ଥାଇ ଇଞ୍ଚେ ହେଲେ ପଛକୁ ଘୁଞ୍ଚିଲେ ନାହିଁ । ପରେ କୁନ୍ୱାରସିଂହ ବାହିନୀ ସହ ଆଜମଗଡ଼

ଛାଡ଼ିବା ସଂବାଦ ସଂକେତରେ ପ୍ରେରଣ କରିବା ପରେ, ସେମାନେ ଦ୍ରୁତ ଗତିରେ ପଳାୟନ କରି ମୂଳ ବାହିନୀ ସହିତ ମିଶି ଗଲେ ।

ସେମାନେ ପଳାୟନ କଲା ପରେ 'ଲୁଗାର୍ଡ଼' ହଠାତ୍ ଦ୍ରୁତ ଗତିରେ ଦୁର୍ଗ ମଧ୍ୟକୁ ପ୍ରବେଶ କଲେ । କିନ୍ତୁ ବିଦ୍ରୋହୀ ବାହିନୀ ବହୁ ପୂର୍ବରୁ ପଳାୟନ କରିଥିଲେ ଓ ଦୁର୍ଗ ଜନଶୂନ୍ୟ ଥିଲା । 'ଲୁଗାର୍ଡ଼' ତଥାପି ଆଶା ନହରାଇ ଏକ ଘୋଡ଼ସବାର ବାହିନୀ ଓ ଅନ୍ୟ ଏକ ଅଶ୍ୱଯୁକ୍ତ କମାଣ ବାହିନୀକୁ କୁନ୍ୱାରସିଂହଙ୍କର ଅନୁଧାବନ କରିବା ପାଇଁ ପଠାଇଲେ । ଏହି ଦୁଇଟି ଦଳ ବାରମାଇଲ ପର୍ଯ୍ୟନ୍ତ ଅନୁଧାବନ କଲେ ମଧ୍ୟ ବିଦ୍ରୋହୀ ସେନାର କିଛି ଚିହ୍ନବର୍ଣ୍ଣ ପାଇଲେ ନାହିଁ । ପୁନଶ୍ଚ ଅଗ୍ରଗତି କରିବା ପରେ ପରେ, ସେମାନେ କୁନ୍ୱାରସିଂହଙ୍କର ସେନାକୁ ଅତ୍ୟନ୍ତ ସୁଦୃଢ଼ ଓ ସୁରକ୍ଷିତ ଅବସ୍ଥାରେ ରହିଥିବାର ଦେଖିଲେ । ହଠାତ୍ କୁନ୍ୱାରସିଂହଙ୍କ ବାହିନୀ ଆଡୁ ଭୟଙ୍କର ଆକ୍ରମଣ କରାଗଲା । କୁନ୍ୱାରସିଂହ ନିଜର ବାହିନୀକୁ ଚତୁଷ୍କୋଣାକାରରେ ସଜାଇ ଆକ୍ରମଣ ଜାରି ରଖିଲେ । ଇଂରାଜି ସେନା ପ୍ରବଳ ଚେଷ୍ଟା ସତ୍ତ୍ୱେ ଏହି ଚତୁଷ୍କୋଣକୁ ଭେଦ କରିପାରିଲେ ନାହିଁ । ଅପର ପକ୍ଷରେ ଇଂରାଜିଙ୍କ ପକ୍ଷରୁ ବହୁ ସୈନ୍ୟ ଓ ଅଫିସର ମୃତାହତ ହେଲେ ଓ ଆକ୍ରମଣ ତ୍ୟାଗ କରି ନିଜର ଆତ୍ମରକ୍ଷା ପ୍ରଚେଷ୍ଟାରେ ରହିଲେ । ଏହି ଯୁଦ୍ଧପରେ ପରେ କୁନ୍ୱାର ସିଂହ ଗଙ୍ଗା କୂଳକୁ ଆଗେଇଗଲେ । କାରଣ ଗଙ୍ଗା ନଦୀ ଅତିକ୍ରମ କରି 'ଜଗଦୀଶ ପୁର'ରେ ପହଞ୍ଚିବା ତାଙ୍କ ଲକ୍ଷ୍ୟ ଥିଲା ।

ଇଂରାଜିମାନଙ୍କର ପରାସ୍ତ ହେବାର ଖବର 'ଆଜମଗଡ଼'ରେ ପହଞ୍ଚିଲା । 'ଆଜମଗଡ଼'ରୁ ଇଂରାଜିମାନଙ୍କର ସହାୟତା ନିମନ୍ତେ ଜେନେରାଲ ଡ଼ଗ୍‌ଲାସ୍ (General Dougalas) ପାଞ୍ଚ/ଛଅ ଟି କମାଣ ସହ 'ନାଘାଇ' ଗ୍ରାମ ପର୍ଯ୍ୟନ୍ତ ମାଡ଼ିଗଲେ । କୁନ୍ୱାରସିଂହ ସେହି ସ୍ଥାନରେ ପୂର୍ବରୁ ପ୍ରସ୍ତୁତ ହୋଇ ରହିଥିଲେ ।

ସେ ନିଜେ ସୃଷ୍ଟି କରିଥିବା ଓ ପୂର୍ବରୁ 'ତନୁ' ନଦୀକୁ ରକ୍ଷା କରୁଥିବା ଦୁର୍ଦ୍ଧର୍ଷ ଦଳଟିକୁ, ଇଂରାଜି ସେନାକୁ ଅଟକାଇ ରଖିବାକୁ ଆଦେଶ ଦେଇ ଅବଶିଷ୍ଟ ବାହିନୀକୁ ଦୁଇ ଭାଗରେ ବିଭକ୍ତ କରି, ଦୁଇଟିଅଲଗା ରାସ୍ତାରେ ଅଗ୍ରସର ହୋଇ ଗଙ୍ଗା କୂଳରେ ମିଳିତ ହେବାକୁ ଆଦେଶ ଦେଲେ । ଏହି ଦୁର୍ଦ୍ଧର୍ଷ ସୈନ୍ୟଦଳ 'ଡ଼ଗଲାସ'ଙ୍କ ସୈନ୍ୟବାହିନୀର କମାଣ ଆକ୍ରମଣକୁ କୌଶଳରେ ବନ୍ଧୁକର ଗୁଳିଦ୍ୱାରା ପ୍ରତିହତ କଲେ । କାରଣ ବିଦ୍ରୋହୀ ସେନା ନିକଟରେ ସେତେବେଳେ କୌଣସି କମାଣ ନଥିଲା । କିନ୍ତୁ ସେମାନଙ୍କର ପ୍ରବଳ ଆକ୍ରମଣ ଫଳରେ ଇଂରାଜି ସେନା ମାତ୍ର ଚାରିମାଇଲ ଆଗେଇବା

ପରେ କ୍ଲାନ୍ତ ଓ ଅବସନ୍ନ ହୋଇଗଲେ । ଏ ମଧ୍ୟରେ କୁନ୍‌ୱାରସିଂହଙ୍କର ଦୁଇଟି ବାହିନୀ ଦୁଇ ବୀପରିତ ଦିଗରୁ ଆସି ପରସ୍ପର ସହିତ ମିଳିତ ହେଲେ ଓ ଇଂରାଜିମାନଙ୍କ ସହିତ ଯୁଦ୍ଧ କରୁଥିବା ଦୁର୍ଦ୍ଧର୍ଷ ସୈନ୍ୟ ଦଳଟି 'କୁନ୍‌ୱାରସିଂହ'ଙ୍କ ଠାରୁ ସଂକେତ ପାଇବା ମାତ୍ରେ ଯୁଦ୍ଧ ଭୂମି ତ୍ୟାଗ କରି ଅବଶିଷ୍ଟ ବାହିନୀ ସହିତ ମିଳିତ ହେଲେ । 'କୁନ୍‌ୱାରସିଂହ' ନିଜର ବାହିନୀ ସହ ଗଙ୍ଗାକୂଳକୁ ଆଗେଇ ଚାଲିଲେ । 'ଘାଜିପୁର'ଠାରେ ଗଙ୍ଗା ଅତିକ୍ରମ କରି 'ଜଗଦୀଶ' ପୁରରେ ପ୍ରବେଶ କରି ତାହା ଅଧିକାର କରିବା ତା'ଙ୍କର ଲକ୍ଷ୍ୟ ଥିଲା ।

ଅପର ଦିଗରେ ଇଂରାଜି ସେନା କ୍ଲାନ୍ତ ଶ୍ରାନ୍ତ, ଅବସ୍ଥାରେ ଅପ୍ରେଲ ୧୭ତାରିଖ ରାତ୍ରି କାଳ, 'ଅଥୁସୀ' ନାମକ ଗ୍ରାମରେ କଟାଇଲେ । ପ୍ରାତଃ କାଳରୁ 'ଡ଼ଗଲାସ' ନିଜର ବାହିନୀକୁ, ବିଦ୍ରୋହୀ ବାହିନୀର ପୁନଶ୍ଚ ଅନୁଧାବନ କରିବା ପାଇଁ ଆଦେଶ ଦେଲେ । ସେ ସମୟରେ 'କୁନ୍‌ୱାରସିଂହ' ତେର ମାଇଲ ପଥ ଅତିକ୍ରମ କରିଯାଇଥିଲେ । ଇଂରାଜି କମାଣ ବାହିନୀ ଓ ଅଶ୍ୱଯୁକ୍ତ କମାଣ ବାହିନୀ, ଡ଼ଗଲାସଙ୍କ ଆଦେଶରେ ଆଗେଇଗଲେ ମଧ୍ୟ ପଦାତିକ ବାହିନୀ ଅତ୍ୟନ୍ତ କ୍ଲାନ୍ତ ଓ ଅବସନ୍ନ ହୋଇଥିବା ଦୃଷ୍ଟିରୁ ପୁଣି ଏକ ରାତ୍ରି ବିଶ୍ରାମ ନେଲେ । 'କୁନ୍‌ୱାରସିଂହ' ଗୁପ୍ତଚରଠାରୁ ଶତ୍ରୁମାନଙ୍କର ଗତିବିଧି, ସ୍ଥିତି ଓ ଯୋଜନାର ଖବର ପାଇଲେ । ପୁନଶ୍ଚ ସେ ଗୁପ୍ତଚରମାନଙ୍କ ଠାରୁ ଇଂରାଜି ପଦାତିକ ବାହିନୀର କ୍ଲାନ୍ତ ଶ୍ରାନ୍ତ ଓ ଅବସନ୍ନତାର ଖବର ପାଇଲେ । ଏହି ସୁଯୋଗରେ 'କୁନ୍‌ୱାରସିଂହ' ନିଜର ବାହିନୀକୁ ସିଧା ସଳଖ ଭାବରେ 'ସିକନ୍ଦର ପୁର'କୁ ଆଗେଇ ନେଇ 'ଘୋଗ୍ରା' ନଦୀ ପାରି ହେଲେ । ତା ପରେ ସେ 'ମନୋହର' ନାମକ ଏକ ଗ୍ରାମରେ ପହଞ୍ଚିଲେ । ସେଠାରେ ସେ, ତାଙ୍କର ବାହିନୀ ସୁଦୀର୍ଘ ଯାତ୍ରା ଓ ନିରବିଚ୍ଛିନ୍ନ ସଂଗ୍ରାମ ହେତୁ ଅବସନ୍ନ ହୋଇ ଯିବା ଫଳରେ, ଏକ ରାତ୍ରି ଉକ୍ତ ଗ୍ରାମରେ ସାମୟିକ ବିଶ୍ରାମ ନେବାକୁ ଆଦେଶ ଦେଲେ । ସାମରିକ ଦୃଷ୍ଟି କୋଣରୁ ଉକ୍ତ ସ୍ଥାନ ଦୁର୍ବଳ ହୋଇଥିଲେ ମଧ୍ୟ ମାନବିକ ଦୃଷ୍ଟି କୋଣରୁ ନିଜର ବାହିନୀ କୁ ସେଠାରେ ବିଶ୍ରାମ କରିବାକୁ ଆଦେଶ ଦେବାର ବ୍ୟତୀତ 'କୁନ୍‌ୱାରସିଂହ'ଙ୍କର ଅନ୍ୟ କୌଣସି ଉପାୟ ନଥିଲା ।

ଏ ମଧ୍ୟରେ 'ଡ଼ଗଲାସ' 'କୁନ୍‌ୱାରସିଂହ'ଙ୍କର ସନ୍ଧାନ ପାଇ, ସଙ୍ଗେ ସଙ୍ଗେ 'ମନୋହର' ଗ୍ରାମରେ ପହଞ୍ଚି ତୁରନ୍ତ ଆକ୍ରମଣ ଆରମ୍ଭ କଲେ । ବିଦ୍ରୋହୀବାହିନୀ ଅତ୍ୟନ୍ତ କ୍ଲାନ୍ତ ଓ ଅବସନ୍ନ ଥିବା ହେତୁ, ହଠାତ୍ ଇଂରାଜି ବାହିନୀର ସମ୍ମୁଖୀନ ହେବା ପାଇଁ ସକ୍ଷମ ହୋଇପାରିଲେ ନାହିଁ । ଏଣୁ, ସେମାନେ ଏହି ଆକ୍ରମଣ ଫଳରେ କିଛି ହାତୀ ଗୁଳିଗୋଳା ଓ ଖାଦ୍ୟ ଦ୍ରବ୍ୟାଦି ହରାଇଲେ । 'କୁନ୍‌ୱାରସିଂହ' ସୁସ୍ଥ ମନରେ ପରିସ୍ଥିତିର ବିଚାର କରି, ନିଜର ବାହିନୀକୁ ଦୁଇ ଭାଗରେ ବିଭକ୍ତ କରି, ଦୁଇଟି ଭିନ୍ନ ରାସ୍ତାରେ

ଶତ୍ରୁର ଅଜ୍ଞାତ ଥିବା ଏକ ଗୁପ୍ତ ସ୍ଥାନରେ, ଏକ ନିର୍ଦ୍ଦିଷ୍ଟ ସମୟରେ ମିଳିତ ହେବା ପାଇଁ ନିର୍ଦ୍ଦେଶ ଦେଲେ। ଆଦେଶ ପ୍ରାପ୍ତି ମାତ୍ରେ ବିଦ୍ରୋହୀ ସେନା, ପ୍ରତ୍ୟକ୍ଷ ଯୁଦ୍ଧ ଭୂମିରୁ ପଳାୟନ କରି 'କୁନ୍‌ୱାରସିଂହ' ନିର୍ଦ୍ଦେଶ ପ୍ରକାରେ ଗୁପ୍ତ ସ୍ଥାନରେ ମିଳିତ ହେଲେ । ଇଂରାଜିମାନଙ୍କର ସମସ୍ତ ଯୋଜନା ପଣ୍ଡ ହେଲା । ଡ଼ଗଲାସ ବିଫଳ ମନୋରଥ ହୋଇ ମନୋହର ଗ୍ରାମରେ ଛାଉଣୀ ପକାଇ 'କୁନ୍‌ୱାରସିଂହ'ଙ୍କର ସ୍ଥିତିର ଖବର ସଂଗ୍ରହ କରିବାକୁ ଲାଗିଲେ ।

ଏ ଦିଗରେ 'କୁନ୍‌ୱାରସିଂହ'ଙ୍କର ବାହିନୀ ଗଙ୍ଗା ତୀରର ନିକଟବର୍ତ୍ତୀ ହେଉଥିଲେ । ଇଂରାଜି ବାହିନୀ ସେମାନଙ୍କର ପଶ୍ଚାତ୍‌ଧାବନ କରୁଥିଲେ । ଇଂରାଜିଙ୍କ ସହିତ ଏହି ପରିସ୍ଥିତିରେ ସିଧାସଳଖ ମୁକାବିଲା କରିବା ବିଜ୍ଞତାର କାର୍ଯ୍ୟ ହେବ ନାହିଁ ବୋଲି ବିଚାର କରି 'କୁନ୍‌ୱାରସିଂହ' ଏକ ନୂତନ କୌଶଳ ଅବଲମ୍ବନ କଲେ । ସେ ସାରା ପ୍ରଦେଶରେ ପ୍ରଚାର ଚଳାଇଲେ ଯେ ନୌକାର ଅଭାବରେ ତାଙ୍କର ବାହିନୀ ହାତୀ ଦ୍ୱାରା 'ବାଲିଲା' ନାମକ ସ୍ଥାନରେ ଗଙ୍ଗା ନଦୀ ଅତିକ୍ରମ କରିବାକୁ ଯାଉଛନ୍ତି । 'ଡ଼ଗଲାସ'ଙ୍କର ଗୁପ୍ତଚରମାନେ, ତାଙ୍କୁ ଏହି ସମ୍ବାଦ ଦେଲେ । ଏଣୁ 'ଡ଼ଗଲାସ' ଉପରୋକ୍ତ ସ୍ଥାନକୁ ବିଦ୍ରୋହୀ ବାହିନୀର ମୁକାବିଲା ପାଇଁ ଯାତ୍ରା କରି ସେଠାରେ ବାହିନୀ ସହ ଲୁଚିରହିଲେ । ପ୍ରକୃତ ପକ୍ଷରେ କିନ୍ତୁ 'କୁନ୍‌ୱାରସିଂହ' ଇଂରାଜିମାନଙ୍କୁ ବିଭ୍ରାନ୍ତ କରି, 'ଶିବପୁର'ଠାରେ ବହୁ ନୌକା ସଂଗ୍ରହ କରି, ସାତମାଇଲ ନିମ୍ନ ଭାଗରେ ଥିବା ଏକ ସ୍ଥାନରୁ ଅର୍ଦ୍ଧରାତ୍ରରେ ଗଙ୍ଗା ଅତିକ୍ରମ କଲେ । କୂଳରେ ରହି 'କୁନ୍‌ୱାରସିଂହ' ନିଜ ବାହିନୀର ନଦୀ ଅତିକ୍ରମ କାର୍ଯ୍ୟକୁ ନିରୀକ୍ଷଣ କରି ସମସ୍ତ ବାହିନୀ ନଦୀ ପାରିହେବା ପରେ ନିଜେ ଏକ ନାବରେ ଗଙ୍ଗା ନଦୀର ମଧ୍ୟ ଭାଗରେ ପହଞ୍ଚିବା ପରେ ତୀରରୁ ଶତ୍ରୁପକ୍ଷର ଏକ ଗୁଳି ଆସି ତାଙ୍କର କଚଟୀରେ ବିଦ୍ଧ ହେଲା । ପ୍ରବୀଣ ଯୋଦ୍ଧା 'କୁନ୍‌ୱାରସିଂହ' ପାଇଁ ଏ ଆଘାତ କିଛି ନଥିଲା । ମାତ୍ର ତାଙ୍କ ସମଗ୍ର ହାତ ଅକାମୀ ହୋଇଯିବା ଆଗରୁ ସେ ଉକ୍ତ ହସ୍ତକୁ କହୁଣୀ ପର୍ଯ୍ୟନ୍ତ ନିଜ ତଲବାରରେ ଛେଦନ କରି ସଭକ୍ତିରେ ସ୍ୱଧର୍ମ ଓ ସ୍ୱରାଜ୍ୟ ପ୍ରାପ୍ତି ପାଇଁ ଗଙ୍ଗା ଦେବୀଙ୍କୁ ସମର୍ପଣ କଲେ । ଇଂରାଜିମାନେ ନଦୀ ଅତିକ୍ରମ କରିନପାରି ନଦୀ ତୀରରେ ଅବସ୍ଥାନ କଲେ । 'କୁନ୍‌ୱାରସିଂହ' ତୀରର ଅପର ପାର୍ଶ୍ୱରେ ପହଞ୍ଚି 'ଶାହାବାଦା'ର ଜଙ୍ଗଲ ମଧ୍ୟରେ ପ୍ରବେଶ କଲେ । ଏପ୍ରିଲ ବାଇଶ ତାରିଖ ଦିନ ସେ 'ଜଗଦୀଶ' ପୁରରେ ପ୍ରବେଶ କଲେ । ତାଙ୍କ ପଛରେ ତାଙ୍କର ଭାଇ 'ଅମର ସିଂହ' ମଧ୍ୟ ନିଜର ସଂଗଠିତ ବାହିନୀ ସହିତ ଜଗଦୀଶ ପୁରରେ ପ୍ରବେଶ କଲେ । ଏହି ସମ୍ମିଳିତ ବାହିନୀକୁ 'କୁନ୍‌ୱାରସିଂହ' ଦୁର୍ଗର ଚତୁର୍ଦ୍ଦିଗକୁ ପ୍ରହରା ଦେବା କାର୍ଯ୍ୟରେ ନିଯୁକ୍ତ କଲେ ।

'ଜଗଦୀଶପୁର'ର ଅବସ୍ଥା ଅନୁଧାନ ତଥା ତାହାକୁ ରକ୍ଷା କରିବା ପାଇଁ 'ଆରା'ରେ ଏକ ଇଂରାଜି ବାହିନୀ ଜେନେରାଲ ଲିଗ୍ରାଣ୍ଡ(Le Grand)ଙ୍କର ଅଧିନାୟକତ୍ୱରେ ଅବସ୍ଥାପିତ ହୋଇଥିଲେ। କୁନ୍‌ୱାର ସିଂହଙ୍କର 'ଜଗଦୀଶପୁର'ରେ ପ୍ରବେଶ ଏପରି ଅପ୍ରତ୍ୟାଶିତ ଥିଲାଯେ 'ଲିଗ୍ରାଣ୍ଡ' (Le Grand) ହଠାତ୍ କୌଣସି ଖବର ପାଇନଥିଲେ । ପରେ ସେ ସମ୍ବାଦ ପ୍ରାପ୍ତ ହୋଇ ହତଚକିତ ଓ ବିସ୍ମିତ ହେଲେ । ଶତ୍ରୁର 'ଜଗଦୀଶପୁର'ରେ ସଦର୍ପେ ପ୍ରବେଶ କରି ତାହାକୁ ନିଜର ଅଧିକାର ଭୁକ୍ତ କରିବା ଘଟଣା, 'ଲିଗ୍ରାଣ୍ଡ'ଙ୍କୁ ଅତ୍ୟନ୍ତ କ୍ରୋଧାନ୍ୱିତ କଲା । ସେ, ଏପ୍ରିଲ ୨୩ତାରିଖ ଦିନ ଚାରିଶହ ଇଂରାଜି ସୈନ୍ୟ ଓ ଦୁଇଟି କମାଣ ସହ 'ଜଗଦୀଶପୁର' ଯାତ୍ରା କଲେ ।

'କୁନ୍‌ୱାରସିଂହ' ନିଜର ବାହିନୀ ସହ ଦୀର୍ଘ ଦିନ ଧରି ନିରବିଚ୍ଛିନ୍ନ ଭାବରେ ଯୁଦ୍ଧରେ ବ୍ୟାପୃତ ରହିବା ଫଳରେ ଅତ୍ୟନ୍ତ ରଣକ୍ଳାନ୍ତ ହୋଇଥିଲେ । ତାଙ୍କର ସୈନ୍ୟମାନେ ଦୁର୍ଗମଧ୍ୟରେ ପ୍ରବେଶ କରି ବିଶ୍ରାମ ନେବା ଅବସ୍ଥାରେ ଅବ୍ୟବସ୍ଥିତ ଭାବରେ ଥିଲେ । ସେମାନଙ୍କର ପାଖରେ କୌଣସି କମାଣ ନଥିଲା ଓ ଅସ୍ତ୍ରଶସ୍ତ୍ରର ଅବସ୍ଥା ମଧ୍ୟ ଅବହେଳିତ ଓ ବିଶୃଙ୍ଖଳିତ ଥିଲା । ଏହି ଅବସ୍ଥାରେ ସେମାନଙ୍କୁ, 'ଲିଗ୍ରାଣ୍ଡ'ଙ୍କ ଅଧିନରେ ଥିବା କମାଣ ଓ ଅସ୍ତ୍ରଶସ୍ତ୍ରର ସମ୍ଭାରରେ ପୂର୍ଣ୍ଣ ଏକ ସତେଜ ଓ ସକ୍ଷମ ବାହିନୀକୁ ମୁକାବିଲା କରିବାକୁ ପଡ଼ିଲା । ଗଭୀର ଆତ୍ମବିଶ୍ୱାସର ସହ ଇଂରାଜି ବାହିନୀ ଜଗଦୀଶପୁର ସହରଠାରୁ ଏକ ମାଇଲ ଦୂରରେ ଥିବା ଏକ ଜଙ୍ଗଲ ମଧ୍ୟରେ ପ୍ରବେଶ କଲେ । ସେହିଠାରେ ରହି ସେମାନେ ସହର ମଧ୍ୟକୁ କମାଣରୁ ଗୋଳାବର୍ଷଣ କଲେ । କୁନ୍‌ୱାର ସିଂହଙ୍କ ପାଖରେ କୌଣସି କମାଣ ନଥିବାରୁ ସେ ଏହାର ପ୍ରତ୍ୟୁତ୍ତର ଦେଇପାରିଲେ ନାହିଁ ।

ଏହି ସମୟରେ ଇଂରାଜିମାନେ 'ଜଗଦୀଶପୁର'କୁ ସିଧାସଳଖ ଆକ୍ରମଣ କଲେ । 'କୁନ୍‌ୱାରସିଂହ'ଙ୍କର ସୈନ୍ୟମାନେ ଏହି ଆକ୍ରମଣର ତୀଖ ଜବାବ ଦେଲେ । ହଠାତ୍ ଇଂରାଜି ସୈନ୍ୟମାନେ ଏହି ପ୍ରବଳ ପ୍ରତ୍ୟାକ୍ରମଣର ସମ୍ମୁଖୀନ ହୋଇନପାରି ପଛ ଘୁଞ୍ଚା ଦେବାକୁ ଆରମ୍ଭ କଲେ । କିନ୍ତୁ ପଛ ଘୁଞ୍ଚା ଦେବା ମଧ୍ୟ ସେମାନଙ୍କ ପକ୍ଷରେ ବିପଦପୂର୍ଣ୍ଣ ଥିଲା, କାରଣ 'କୁନ୍‌ୱାରସିଂହ'ଙ୍କର ସୈନ୍ୟମାନେ କୌଶଳ କ୍ରମେ ସେମାନଙ୍କୁ ଘେରିଯାଇଥିଲେ । ଏଣୁ ସେମାନେ କୌଣସି ପ୍ରକାରେ ପ୍ରାଣ ରକ୍ଷା କରି ଜଙ୍ଗଲ ମଧ୍ୟକୁ ପଳାୟନ କଲେ । ସେଠାରେ ମଧ୍ୟ 'କୁନ୍‌ୱାରସିଂହ'ଙ୍କର ସୈନ୍ୟମାନେ ତାଙ୍କୁ ପଶ୍ଚାତ୍‌ଦିଗରୁ ଆକ୍ରମଣ କଲେ । ଇଂରାଜିମାନେ ବହୁ ସଂଖ୍ୟାରେ ମୃତାହତ ହେଲେ । ଆହତମାନଙ୍କୁ ଷୋଳଟି ହାତୀରେ ସ୍ଥାନାନ୍ତରିତ କରିବାର ବ୍ୟବସ୍ଥା କରାଗଲା । 'ଲିଗ୍ରାଣ୍ଡ'ଙ୍କ ବକ୍ଷଦେଶରେ ଗୁଳିବିଦ୍ଧ ହେବା ଫଳରେ ସେ ତତ୍‌କ୍ଷଣାତ୍ ପ୍ରାଣ ତ୍ୟାଗ

କଲେ । ଶହେଅନେଶତ ଇଂରାଜି ସୈନ୍ୟଙ୍କ ମଧ୍ୟରୁ କେବଳ ଅଶୀଜଣ ମାତ୍ର ବଞ୍ଚି ରହିଥିଲେ । ଇଂରାଜି ଐତିହାସିକ ମଧ୍ୟ ଏହି ପରାଜୟ ସ୍ୱୀକାର କରି ଲେଖିଛନ୍ତି:-

The English sustained on this occassion a complete defeat of the worst kind,"(White's History of the Mutiny)

(ଇଂରାଜିମାନେ ଏହି ପରିପ୍ରେକ୍ଷୀରେ କଦର୍ଯ୍ୟଭାବରେ ସଂପୂର୍ଣ୍ଣ ପରାଜୟ ବରଣ କରିଥିଲେ । (ହ୍ୱାଇଟସ୍, ହିଷ୍ଟ୍ରି ଅଫ୍ ଦି ମ୍ୟୁଟିନି))

ଏଠାରେ ଲକ୍ଷ୍ୟ କରିବା କଥା ଯେ ଏହି ଯୁଦ୍ଧରେ ବହୁ ସଂଖ୍ୟାରେ ଇଂରାଜିମାନେ ମୃତ୍ୟୁ ବରଣ କରିଥିଲେ ମଧ୍ୟ ଶିଖମାନଙ୍କ ମଧ୍ୟରୁ ମାତ୍ର ନଅଜଣ ମରିଥିଲେ । ଇଂରାଜିମାନଙ୍କୁ ଅଧିକ ସଂଖ୍ୟାରେ ମୃତାହତ କରିବାକୁ ହିଁ 'କୁନ୍ୱାରସିଂହ'ଙ୍କର ନିର୍ଦ୍ଦେଶ ଥିଲା ।ଶିଖମାନେ ନିଜ ଦେଶର ହୋଇଥିବା ଦୃଷ୍ଟିରୁ ସେମାନଙ୍କୁ ବିଶେଷ ଭାବରେ ହତ୍ୟା କରାଯିବାକୁ ବାରଣ ଥିଲା । ଏହାହିଁ 'କୁନ୍ୱାରସିଂହ'ଙ୍କର ଉଗ୍ର ଦେଶ ପ୍ରେମର ପରିଚୟ ଦିଏ । 'କୁନ୍ୱାରସିଂହ' ଏହାପରେ 'ଜଗଦୀଶପୁର' ଉପରେ ନିଜର ସମ୍ପୂର୍ଣ୍ଣ କର୍ତ୍ତୃତ୍ୱ ଜାହିର କରି ସେହିଠାରେ ଅବସ୍ଥାନ କଲେ ।

ଏ ସମସ୍ତ ବିଜୟ ସତ୍ତ୍ୱେ 'କୁନ୍ୱାରସିଂହ'ଙ୍କର ଛିନ୍ନ ବାହୁର ଯନ୍ତ୍ରଣା ଅଧିକ ହେଲା ଓ ସେ ୨୬ତାରିଖ ଦିନ ନିଜର ସ୍ୱାଧୀନ ସିଂହାସନରେ ବସି ସ୍ୱାଧୀନ ପତାକା ତଳେ ପ୍ରାଣ ତ୍ୟାଗ କଲେ । 'କୁନ୍ୱାରସିଂହ'ଙ୍କର ମୃତ୍ୟୁ ପରେ ତାଙ୍କର ଭାଇ 'ଅମର ସିଂହ' ତାଙ୍କ ସ୍ଥାନ ପୂରଣ କରି ମୁହୂର୍ତ୍ତେ ମାତ୍ର ବିଳମ୍ବ ନକରି ପୁନର୍ବାର ସୈନ୍ୟବାହିନୀକୁ ସଂଗଠିତ କଲେ । ସେ ବିନା ବିଶ୍ରାମରେ 'ଆରା' ଦିଗକୁ ନିଜର ବାହିନୀ ସହ ମାଡ଼ିଚାଲିଲେ । 'ଲିଗ୍ରାଣ୍ଡ'ଙ୍କର ପରାଜୟ ବାର୍ତ୍ତା ପାଇ ଜେନେରାଲ ଲୁଗାର୍ଡ଼ ମଧ୍ୟ ତାଙ୍କ ସହିତ ମିଳିତ ହେଲେ । ସେମାନେ ମେ ତିନି ତାରିଖ ଦିନ 'ଅମର ସିଂହ'ଙ୍କ ସୈନ୍ୟବାହିନୀ ଦିଗକୁ ଆଗେଇ ଚାଲିଲେ । 'ବିଜୟା', 'ହାତମପୁର', 'ଦଲିଲପୁର' ଆଦି ସ୍ଥାନରେ, ସେମାନେ ଦିନେ ଛାଡ଼ି ଦିନେ ବିଦ୍ରୋହୀ ସୈନ୍ୟମାନଙ୍କ ଉପରେ ଆକ୍ରମଣ ଚଳାଇଲେ । ଏହି ଆକ୍ରମଣର ମୁକାବିଲା କରିବା ପାଇଁ 'ଅମର ସିଂହ' ଅନ୍ୟ କୌଶଳ ଅବଲମ୍ବନ କରି ନିଜର ବାହିନୀକୁ କ୍ଷୁଦ୍ର କ୍ଷୁଦ୍ର ଦଳରେ ବିଭକ୍ତ କଲେ । ସେ ସେହି ଦଳଗୁଡ଼ିକୁ ଗରିଲା କୌଶଳ ଅବଲମ୍ବନ କରି ବିଭିନ୍ନ ଦିଗରୁ ଆକ୍ରମଣ କରି ଶତ୍ରୁକୁ ସମ୍ପୂର୍ଣ୍ଣ ଭାବରେ ବିବ୍ରତ ଓ ବିଭ୍ରାନ୍ତ କରିବା ପରେ ଏକ ପୂର୍ବ ନିର୍ଦ୍ଧାରିତ ସ୍ଥାନରେ ମିଳିତ ହେବା ପାଇଁ ନିର୍ଦ୍ଦେଶ ଦେଲେ । ଏହି ଯୋଜନା ଫଳପ୍ରଦ ହେଲା । କାରଣ ଜଙ୍ଗଲର ଏକ ଦିଗରୁ

ଇଂରାଜିମାନେ ଆକ୍ରମଣ କରିବା ସମୟରେ 'ଅମରଙ୍କର' ସୈନ୍ୟମାନେ ଜଙ୍ଗଲର ଅପରଦିଗରେ ଦେଖାଯାଉଥିଲେ । ପୁନଶ୍ଚ ସେ ଦିଗ ଆକ୍ରମିତ ହେଲେ ତା'ର ବିପରୀତ ଦିଗରେ ଦେଖାଯାଉଥିଲେ । ଅଥଚ ଏସମସ୍ତ ମଧ୍ୟରେ ବିଭିନ୍ନ ଗୁପ୍ତସ୍ଥାନରୁ ସେମାନେ ବାରମ୍ବାର ଇଂରାଜି ବାହିନୀ ଉପରେ ଆକ୍ରମଣ ଜାରିରଖୁଥିଲେ । ଏହା ଫଳରେ ଇଂରାଜି ବାହିନୀ ନିଜର ଲକ୍ଷ୍ୟ ସ୍ଥଳ ସ୍ଥିର ନକରିପାରି ଜଙ୍ଗଲ ମଧ୍ୟରେ ବାରମ୍ବାର ବିଭ୍ରାନ୍ତ ହୋଇ ମୃତାହତ ତଥା ଅବସନ୍ନ ହୋଇପଡ଼ିଲେ । ଏହି ଅପମାନଜନକ ପରିସ୍ଥିତି ସହ୍ୟ ନକରିପାରି 'ଜେନେରାଲ ଲୁଗାର୍ଡ୍' ନିଜର ପଦତ୍ୟାଗ କରି ଇଂଲାଣ୍ଡ ପଳାୟନ କଲେ ଓ ଇଂରାଜି ବାହିନୀ ଯୁଦ୍ଧ ଭୂମି ତ୍ୟାଗକରି ନିଜର ଛାଉଣୀକୁ ପଳାଇଗଲେ । 'ଅମରସିଂହ' ଏହି ପରିସ୍ଥିତିର ସମ୍ପୂର୍ଣ୍ଣ ସୁଯୋଗ ନେଇ ନିଜର ବାହିନୀକୁ ପୁନଃ ସଂଗଠିତ କଲେ । 'ଗୟା'ରେ ଥିବା ପୁଲିସ ବାହିନୀ ମଧ୍ୟ ତାଙ୍କର ସହାୟତା କଲେ । ଇଂରାଜିମାନଙ୍କୁ ବିଭିନ୍ନ ମିଥ୍ୟା ସମ୍ବାଦରେ ବିଭ୍ରାନ୍ତ କରି 'ଅମର ସିଂହ' ନିଜର ବାହିନୀ ସହ 'ଆରା' ଆକ୍ରମଣ କରି ଅଧିକାର କଲେ ଓ 'ଜଗଦୀଶପୁର'କୁ ପ୍ରତ୍ୟାବର୍ତ୍ତନ କଲେ ।

ଏମଧ୍ୟରେ 'ଡ଼ଗଲାସ' ସାତହଜାର ସୈନ୍ୟ ସହ ପୁନର୍ବାର ନିଜର ପରାଜୟର ପ୍ରତିଶୋଧ ନେବାର ବ୍ୟବସ୍ଥା କଲେ । ସେମାନେ ଜଙ୍ଗଲ ସଫା କରି ରାସ୍ତାମାନ ନିର୍ମାଣ କଲେ ଓ ରାସ୍ତାର ବିଭିନ୍ନ ସ୍ଥାନରେ ଇଂରାଜି ଚୌକି ବସାଇବା ସଙ୍ଗେ ସଙ୍ଗେ 'ଜଗଦୀଶ'ପୁର ଅଭିମୁଖେ ଆଗେଇ ଚାଲିଲେ । କିନ୍ତୁ ଅମର ସିଂହଙ୍କର ରଣକୌଶଳ ଆଗରେ ଏ ଯୋଜନା ହାର ମାନିଲା । ଫଳରେ ଇଂରାଜିମାନେ ଜଗଦୀଶପୁର ଉପରେ ନିଜର ସମସ୍ତ ଶକ୍ତି ପ୍ରୟୋଗ କରିବା ପାଇଁ ଦୃଢ଼ ପ୍ରତିଜ୍ଞ ହେଲେ । ଇଂରାଜିମାନଙ୍କର ସାତୋଟି ଡ଼ିଭିଜନ ସୈନ୍ୟବାହିନୀ, ଜଗଦୀଶପୁରକୁ ସାତୋଟି ବିଭିନ୍ନ ଦିଗରୁ ଆକ୍ରମଣ କରିବା ଯୋଜନା କଲେ । ଛଅଟି ଡ଼ିଭିଜନର ସୈନ୍ୟମାନେ 'ଜଗଦୀଶ'ପୁରକୁ ଆଗେଇଯିବାବେଳେ ସପ୍ତମ ଡ଼ିଭିଜନର ଗତି ମନ୍ଥର ଥିବା ଦୃଷ୍ଟିରୁ ତାହା ବହୁତ ପଛରେ ପଡ଼ିଯାଇଥିଲା ଓ ପାଞ୍ଚ ଘଣ୍ଟା ବିଳମ୍ବରେ ନିର୍ଦ୍ଧାରିତ ସ୍ଥାନରେ ପହଞ୍ଚିଲା । ଅମରସିଂହ ଏହି ଦୁର୍ବଳତାର ସୁଯୋଗ ନେଇ ସେହି ଡ଼ିଭିଜନର ପାର୍ଶ୍ୱଦେଇ ନିଜର ବାହିନୀ ସହ ଗୋପନରେ ଖସି ଚାଲିଗଲେ । ଏଣୁ, ଇଂରାଜିମାନଙ୍କର ଯୋଜନା ପୁନର୍ବାର ଅସଫଳ ହେବାର ଦେଖି ଇଂରାଜି ସରକାର ଆଉ ଏକ ଡ଼ିଭିଜନ ଘୋଡ଼ାସବାର ଅମର ସିଂହଙ୍କୁ ଅନୁଧାବନ କରିବାପାଇଁ ପଠାଇଦେଲେ । ସେମାନଙ୍କ ହାତରେ ଆଧୁନିକ ଶକ୍ତିଶାଳୀ ରାଇଫଲ ଥିଲା ଏବଂ ବିଦ୍ରୋହୀମାନଙ୍କର ବନ୍ଧୁକ ତା ତୁଳନାରେ ନଗଣ୍ୟ ଥିଲା । ସେମାନେ କ୍ଷିପ୍ର ଗତିରେ ଅନୁଧାବନ କରିବା ଫଳରେ ଅମର ସିଂହ ନିଜର ବାହିନୀ ସହ ସାମାନ୍ୟ

ବିଶ୍ରାମର ମଧ୍ୟ ସୁଯୋଗ ପାଇଲେ ନାହିଁ । ଇଂରାଜି ଘୋଡ଼ସବାର ବାହିନୀର ପ୍ରବଳ ଆକ୍ରମଣ ଆଗରେ ଅମର ସିଂହଙ୍କ ବାହିନୀ ତିଷ୍ଠି ରହିବା ଅସମ୍ଭବ ହୋଇପଡ଼ିଲା । ଅକ୍ଟୋବର ୧୯ତାରିଖ ଦିନ ଇଂରାଜି ଘୋଡ଼ସବାର ବାହିନୀ 'ନୋନାଦି' ନାମକ ଗ୍ରାମରେ ବିଦ୍ରୋହୀମାନଙ୍କୁ ସମ୍ପୂର୍ଣ୍ଣ ଭାବରେ ଅବରୋଧ କଲା । ଚାରିଶହ ବିଦ୍ରୋହୀ ସୈନ୍ୟଙ୍କ ମଧ୍ୟରୁ ତିନିଶହ୍ ଜଣ ଆକ୍ରମଣ ଫଳରେ ମୃତ ହେଲେ । ଅବଶିଷ୍ଟ ଶହେ ଜଣ ସୈନ୍ୟ ଘେରରୁ ବାହାରି ଆସିବା ପାଇଁ ପ୍ରବଳ ସଂଗ୍ରାମ କଲେ । ପରିଶେଷରେ ସେମାନଙ୍କ ମଧ୍ୟରୁ ତିନିଜଣ ମାତ୍ର ଶତ୍ରୁ ଘେରରୁ ବାହାରି ଆସି ଆତ୍ମରକ୍ଷା ପାଇଁ ପଳାୟନ କରିପାରିଥିଲେ । ସେମାନଙ୍କ ମଧ୍ୟରେ 'ଅମର ସିଂହ' ମଧ୍ୟ ଜଣେ ଥିଲେ । ତଥାପି ମଧ୍ୟ ସେମାନେ ଶତ୍ରୁ ଦ୍ୱାରା ଅନୁଧାବିତ ହେଲେ । ପଥ ମଧ୍ୟରେ ଏକ ସମୟରେ, 'ଅମର ସିଂହ' ଯାଉଥିବା ହାତୀକୁ ଇଂରାଜିମାନେ ଜବତ୍ କରିଦେଇଥିଲେ । କିନ୍ତୁ ହାତୀ ଉପରୁ ତତ୍କ୍ଷଣାତ୍ ଲମ୍ଫ ପ୍ରଦାନ କରି 'ଅମରସିଂହ' କେଉଁ ଦିଗକୁ ଉଭାନ ହୋଇଗଲେ କେହି ଜାଣି ପାରିଲେ ନାହିଁ । ଏହାପରେ 'ଅମର ସିଂହ' 'କାଇମୁର' ପାହାଡ଼ରେ ପ୍ରବେଶ କଲେ । ସେଠାରେ ମଧ୍ୟ ଇଂରାଜିମାନେ ତାଙ୍କର ଅନୁଧାବନ କଲେ । କିନ୍ତୁ ସମସ୍ତ ଚେଷ୍ଟା ସତ୍ତ୍ୱେ, 'ଅମର ସିଂହ' ଆତ୍ମ ସମର୍ପଣ କଲେ ନାହିଁ କିମ୍ବା ଇଂରାଜି ମାନେ ମଧ୍ୟ ତାଙ୍କୁ ବନ୍ଦୀ କରିପାରିଲେ ନାହିଁ । ଏହିପରି ସେ ଚିର ଅଜେୟ ହୋଇ ରହିଲେ । ଜଗଦୀଶପୁରର ପତନ ପରେ 'କୁନ୍ୱୋରସିଂହ'ଙ୍କ ପରିବାରର ୧୫୦ ଜଣ ମହିଳା, ଯୁଦ୍ଧରେ ସଫଳତାର କୌଣସି ଆଶା ନଦେଖି ଇଂରାଜିମାନଙ୍କ ହାତରେ ପଡ଼ିବା ଆଗରୁ ନିଜ ବାହିନୀର କମାଣ ଆଗରେ ଛିଡ଼ା ହୋଇପଡ଼ି ସ୍ୱତଃପ୍ରବୃତ୍ତ ଭାବରେ ଆତ୍ମାହୂତି ଦେଲେ । 'ଅମରସିଂହ'ଙ୍କର ପରବର୍ତ୍ତୀ ଜୀବନ ବିଷୟରେ ଇତିହାସ ନୀରବ । ଆଜି ଇତିହାସକୁ ଅମରସିଂହ କୁଆଡ଼େ ଗଲେ?, ଏହି ପ୍ରଶ୍ନ ପଚାରିଲେ, କେବଳ ପ୍ରଶ୍ନର ପ୍ରତିଧ୍ୱନି ହିଁ ଶୁଣିବାକୁ ମିଳେ ।



# ମୌଲବୀ ଅହମଦ୍‌ଶାହ

ଇଂରାଜିମାନଙ୍କର ଲକ୍ଷ୍ନୌ ଅଧିକାର ପରେ ସେଠାରେ ଥିବା ବିଦ୍ରୋହୀ ସୈନ୍ୟମାନେ ଛତ୍ରଭଙ୍ଗ ହୋଇ 'ଅବଧ' ଓ ରୋହିଲାଖଣ୍ଡକୁ ଆଶ୍ରୟ କଲେ । ସେହି ସମୟରେ 'ବିହାର' ଓ 'ଦୋବ' ଅଞ୍ଚଳରୁ ଇଂରାଜିସେନାମାନେ ବିଦ୍ରୋହୀ ଇଲାକା ଗୁଡ଼ିକୁ ନିଜ ଅଧିକାର ଭୁକ୍ତ କରି 'ଅବଧ' ଓ 'ରୋହିଲା' ଖଣ୍ଡ ଆଡ଼କୁ ମାଡ଼ି ଆସୁଥିଲେ । ଏହିପରି ପରିସ୍ଥିତିରେ ବିଦ୍ରୋହୀସୈନ୍ୟମାନେ ସମ୍ମୁଖ ଯୁଦ୍ଧ ପରିତ୍ୟାଗ କରି ଗରିଲା କୌଶଳ ଅବଲମ୍ବନ କରିବାକୁ ସ୍ଥିର କଲେ । ସେମାନେ ବିଭିନ୍ନ ଦଳରେ ବିଭକ୍ତ ହୋଇ ସବୁ ଦିଗରେ ବିଚ୍ଛୁରିତ ହୋଇ ରହିଲେ ଓ ଇଂରାଜି ମାନଙ୍କୁ ସ୍ଥାନେ ସ୍ଥାନେ ଗରିଲା କୌଶଳରେ ଆକ୍ରମଣ କରି, ସେମାନଙ୍କର ଅଗ୍ରଗତି ପ୍ରତିହତ କରିବାକୁ ଲାଗିଲେ । ଏହିପରି ଭାବରେ 'ଅବଧ' ଓ 'ରୋହିଲାଖଣ୍ଡ'ର, ବିଦ୍ରୋହୀ ବାହିନୀର ସେନାପତିମାନେ ଯୁଦ୍ଧ ଚାଲୁରଖିଲେ । ସେସମୟରେ 'ଅହମଦଶାହ' କିପରି ନିଜର ବାହିନୀକୁ ନିର୍ଦ୍ଦେଶ ଦେଇଥିଲେ, ତାହା ତତ୍କାଳୀନ ଇଂରାଜି ସାମ୍ବାଦିକ 'ରସେଲ'ଙ୍କ ଦ୍ୱାରା ସଂଗୃହୀତ 'ଅହମଦ୍‌ଶାହ'ଙ୍କର ଘୋଷଣାନାମାରୁ ଜଣାଯାଏ ।

"Donot attempt to meet the regular columns of the infidels in open battle, because they are superior to you in discipline and they have big guns. But watch their movements, guard all the Ghats on the rivers, interupt their communications, stop their supplies,cutup their daks and posts, and keep constantly hanging about their camps. Give Feringi no rest (Russels diary)"

''ସବୁଦିନିଆ ବାହିନୀର ବିଶ୍ୱାସଘାତକମାନଙ୍କ ସହିତ ଖୋଲାଯୁଦ୍ଧ କ୍ଷେତ୍ରରେ ମୁହାଁମୁହିଁ ହେବ ନାହିଁ, କାରଣ ସେମାନେ ତୁମଠାରୁ ଶୃଙ୍ଖଳାରେ ଉନ୍ନତ ଓ ସେମାନଙ୍କର ବଡ଼ବଡ଼ ବନ୍ଧୁକ, କମାଣ ଆଦି ରହିଛି । କିନ୍ତୁ ସେମାନଙ୍କର ଗତିବିଧିକୁ ଲକ୍ଷ୍ୟ କର । ନଦୀର ସମସ୍ତ ଘାଟଗୁଡ଼ିକୁ ପହରା ଦିଅ । ସେମାନଙ୍କର ପାରସ୍ପରିକ ସମ୍ପର୍କରେ ବାଧା ସୃଷ୍ଟି କର । ସେମାନଙ୍କର ଯୋଗାଣ ବ୍ୟବସ୍ଥା ବନ୍ଦ କରିଦିଅ । ସେମାନଙ୍କର ଡ଼ାକ ବ୍ୟବସ୍ଥାକୁ ବିଚ୍ଛିନ୍ନ କର ଏବଂ ସେମାନଙ୍କର ଛାଉଣୀର ଚାରିଦିଗରେ ଘୁରିବୁଲ ।''

(ରସେଲଙ୍କର ଡାଏରୀ)

ଉପରୋକ୍ତ ଘୋଷଣାନାମାଟି 'ଅହମଦ୍‌ଶାହ'ଙ୍କ ଦ୍ୱାରା, ବିଦ୍ରୋହୀ ଫୌଜମାନଙ୍କ ମଧ୍ୟରେ ପ୍ରଚାରିତ ହୋଇଥିଲା । 'ଲକ୍ଷ୍ନୌ' ଅଧିକାର ପରେ ସମଗ୍ର ଇଂରେଜି ବାହିନୀ 'ଲକ୍ଷ୍ନୌ' ମଧ୍ୟରେ ଠୁଳ ହୋଇଥିଲେ । ଏହିପରି ଅବସ୍ଥାରେ, ଅହମଦ୍‌ଶାହ ସ୍ୱୟଂ 'ବାରି'ନାମକ ସ୍ଥାନରେ ନିଜର ଛାଉଣୀ ପକାଇଲେ । ଏହା 'ଲକ୍ଷ୍ନୌ'ରେ ଥିବା ଇଂରାଜି ଛାଉଣୀ ଠାରୁ ଅଣତିରିଶ ମାଇଲ ଦୂରରେଥିଲା । ଏହି ସମୟରେ ଲକ୍ଷ୍ନୌ ତ୍ୟାଗ କରି 'ବେଗମ ହଜରତ୍‌ମହଲ' ଛଅହଜାର ସୈନ୍ୟ ସହ 'ବିଟାଓଲି' ନାମକ ସ୍ଥାନରେ ଛାଉଣୀ ପକାଇଥିଲେ । ଏହି ଉଭୟ ବାହିନୀକୁ ଧ୍ୱଂସ କରିବା ଯୋଜନାରେ 'ହୋପଗ୍ରାଣ୍ଟ', ଲକ୍ଷ୍ନୌରୁ ତିନି ହଜାର ସୈନ୍ୟ ବିଶିଷ୍ଟ ଏକ ଟାଣୁଆ ପଦାତିକ ବାହିନୀ ଓ ଏକ ଶକ୍ତଶାଳୀ କମାଣ ବାହିନୀ ସହ ସର୍ବପ୍ରଥମେ 'ବାରି' ଅଭିମୁଖେ ଯାତ୍ରା ଆରମ୍ଭ କଲେ ।

'ଅହମଦ୍‌ଶାହ' ଏ ସମ୍ବାଦ ପ୍ରାପ୍ତ ହେଲେ । ସେ କିଛି ଗୁପ୍ତଚରଙ୍କୁ, ତୁରନ୍ତ ଇଂରାଜି ଛାଉଣୀରେ ପଶି, ସେମାନଙ୍କର ଶକ୍ତିର କଳନା କରି, ଯଥା ଶୀଘ୍ର ସମ୍ବାଦ ଦେବାପାଇଁ, ପଠାଇଲେ । ଆଦେଶ ପାଇବା ଦିନ ରାତ୍ରିକାଳରେ ଗୁପ୍ତଚରମାନେ ଇଂରାଜି ଛାଉଣୀରେ ପ୍ରବେଶ କରିବାକୁ ଗଲେ । ଛାଉଣୀର ଦ୍ୱାର ଦେଶରେ ପ୍ରହରାରତ ଥିବା ସୈନ୍ୟ, ସେମାନଙ୍କର ପରିଚୟ ମାଗିବାରୁ ସେମାନେ ନିଜକୁ ଦ୍ୱାଦଶତମ ପଦାତିକ ବାହିନୀର ସୈନ୍ୟ ବୋଲି ପରିଚୟ ଦେଲେ । ପ୍ରହରାରତ ସୈନ୍ୟ ଜଣକ, ଦ୍ୱାଦଶତମ ବାହିନୀର ସୈନ୍ୟମାନେ ବହୁ ପୂର୍ବରୁ ବିଦ୍ରୋହୀ ବାହିନୀରେ ଯୋଗ ଦେଇଥିବା କଥା, ଜାଣିନଥିଲା । ଏଣୁ, ସେ ସେମାନଙ୍କୁ ଇଂରାଜି ବାହିନୀର ବୋଲି ଭାବି ଛାଡ଼ିଦେଲା । ଏହି ଗୁପ୍ତଚରମାନେ ନିର୍ବିଘ୍ନରେ ସାରା ଛାଉଣୀ ବୁଲି ସାମରିକ ଶକ୍ତର ଏକ ସମ୍ପୂର୍ଣ୍ଣ କଳନା କରି 'ଅହମଦଶାହ'ଙ୍କ ନିକଟକୁ ଆସି ସମ୍ବାଦ ଦେଲେ । ଶତ୍ରୁର ଶକ୍ତି ସମ୍ବନ୍ଧରେ ଏକ ପୂର୍ଣ୍ଣାଙ୍ଗ ଧାରଣା ପ୍ରାପ୍ତ ହୋଇ ଅହମଦଶାହ ତଦନୁସାରେ ସାମରିକ ଯୋଜନା କଲେ । ସେ, 'ବାରି'ଠାରୁ ଚାରିମାଇଲ ଦୂରରେ ଥିବା ଏକ ଗ୍ରାମକୁ ଦଖଲ କରି ସେଠାରେ ଆସ୍ଥାନ ଜମାଇ ରହିଲେ । ସେ ଘୋଡ଼ସବାର ବାହିନୀକୁ, ଏକ ଗୁପ୍ତ ମାର୍ଗରେ ଯାଇ, ଇଂରାଜି ସେନାର ପଶ୍ଚାତ୍ ଭାଗରେ ଗୋପନରେ ରହି, ସମ୍ମୁଖଭାଗରେ ଥିବା ଅନ୍ୟଏକ ବାହିନୀର ଇଂରାଜି ସେନାକୁ ଆକ୍ରମଣର ଅପେକ୍ଷାରେ ରହିବାକୁ ନିର୍ଦ୍ଦେଶ ଦେଲେ । ସମ୍ମୁଖଭାଗ ଆକ୍ରମଣ ଆରମ୍ଭ ହେବା ପରେ ପରେ ଘୋଡ଼ାସବାର ବାହିନୀକୁ ଇଂରାଜି ସେନାର ଚତୁର୍ଦ୍ଦିଗରେ ଘୂରି ଘୂରି ଅପ୍ରତ୍ୟାଶିତ ଭାବରେ ଆକ୍ରମଣ କରିବାକୁ ନିର୍ଦ୍ଦେଶ ଦିଆଯାଇଥିଲା । ଏହା ଫଳରେ ଇଂରାଜିସେନା ବ୍ୟତିବ୍ୟସ୍ତ ଓ ବିଶୃଙ୍ଖଳ ହୋଇଯିବା

ଦ୍ୱାରା ସମ୍ମୁଖ ଭାଗର ପ୍ରବଳ ଆକ୍ରମଣରେ ପରାହିତ ହେବେ । ଏହା ଏକ ବିଚକ୍ଷଣ ରଣକୌଶଳ ଥିଲା ।

'ଅହମଦ୍‌ଶାହ' ରାତ୍ରିକାଳରେ ଘୋଡ଼ସବାର ବାହିନୀକୁ ଗୁପ୍ତ ପଥରେ ପଠାଇଦେଲେ ଓ ନିଜେ ଅବଶିଷ୍ଟ ବାହିନୀ ସହ ଏକ ଗ୍ରାମ ଦଖଲ ନେଇ, ସେଠାରେ ଗୋପନରେ ରାତ୍ରିଯାପନ କଲେ । 'ହୋପଗ୍ରାଣ୍ଟ' 'ଅହମଦଶାହ'ଙ୍କର ଏହି ଅଗ୍ରଗତି ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞାତ ଥିଲେ । ତେଣୁ ସେ ତତ୍‌ପରଦିନ ସକାଳୁ ନିଜର ବାହିନୀ ସହ ଗ୍ରାମ ପାର୍ଶ୍ୱରେ ଥିବା ନଦୀର ଅପର ଦିଗରେ ପହଞ୍ଚିଗଲେ ।

ପୂର୍ବରୁ ଗୁପ୍ତ ପଥରେ ଯାଇଥିବା ଘୋଡ଼ସବାର ବାହିନୀର ଏକ ଅଂଶ, ଇଂରାଜି ସେନାଙ୍କର ପାର୍ଶ୍ୱଦେଶରେ ଗରିଲା କୌଶଳରେ ଆତ୍ମଗୋପନ କରି ସଂକେତ ମାତ୍ରେ ଆକ୍ରମଣ ପାଇଁ ସଜାଗ ହୋଇରହିଥିଲେ । କିନ୍ତୁ, ସେମାନଙ୍କର ଦଳର ମୁଖ୍ୟ, ଆତ୍ମଗୋପନ କରିଥିବା ଅବସ୍ଥାରେ, ସମ୍ମୁଖରେ ଶତ୍ରୁ ପକ୍ଷର କିଛି କମାଣ, ପ୍ରହରୀ ବିହୀନ ଅବସ୍ଥାରେ ରହିଥିବା ଲକ୍ଷ୍ୟ କଲେ । ସେହି କମାଣ ଗୁଡ଼ିକୁ ଦଖଲକୁ ନେବାର ଲୋଭ ସେ ସମ୍ବରଣ କରିପାରିଲେ ନାହିଁ । 'ଅହମଦଶାହ'ଙ୍କର ଆଦେଶ ତାଙ୍କର ସ୍ମୃତିପଥରେ କ୍ଷୀଣ ହୋଇଗଲା । ଏଣୁ ସେ, ସେହି କମାଣ ଗୁଡ଼ିକ ନିଜର ଦଖଲକୁ ନେଇଗଲେ । ଫଳରେ ଏହା ଇଂରାଜିବାହିନୀର ଦୃଷ୍ଟି ଆକର୍ଷଣ କଲା ଓ ସେମାନେ କମାଣ ଦଖଲ ନେବା ପାଇଁ ସେହି ଦିଗକୁ ଆକ୍ରମଣ କଲେ । ପଶ୍ଚାତ୍‌ଭାଗରେ ଥିବା ଘୋଡ଼ସବାର ବାହିନୀ ଆକ୍ରମଣ ଆରମ୍ଭ କରିଦେବା ଫଳରେ 'ଅହମଦଶାହ'ଙ୍କର ଯୋଜନା ଅସଫଳ ହେଲା । ଏଣୁ 'ଅହମଦଶାହ' ବୃଥା ଶକ୍ତି କ୍ଷୟ କରିବା ପରିବର୍ତ୍ତେ ଆସ୍ଥାନ ଜମାଇଥିବା ଗ୍ରାମକୁ ତ୍ୟାଗ କରି, ଅନ୍ୟଏକ ସୁରକ୍ଷିତ ସ୍ଥାନରେ ଆସ୍ଥାନ ଜମାଇ, ପରବର୍ତ୍ତୀ ଆକ୍ରମଣ ସୁଯୋଗକୁ ଅପେକ୍ଷା କରି ରହିଲେ ।

'ଅବଧ'ରୁ ବିଦ୍ରୋହୀମାନଙ୍କୁ ସମ୍ପୂର୍ଣ୍ଣ ଭାବରେ ବିତାଡ଼ିତ କରିବା ପାଇଁ ଇଂରାଜି ସେନା 'ବାରି'ଠାରୁ 'ବିଟାଓଲି' ପର୍ଯ୍ୟନ୍ତ ଆଗେଇଆସିଥିଲେ । ଏପ୍ରିଲ ପନ୍ଦରତାରିଖ ଦିନ ଲକ୍ଷ୍ନୌଠାରୁ ଏକାବନ ମାଇଲ ଦୂରରେ ଥିବା, 'ରୁଇୟା' ଦୁର୍ଗରେ ଇଂରାଜିମାନଙ୍କର, ଦୁର୍ଗରେ ଥିବା ବିଦ୍ରୋହୀ ସେନା ସହିତ ପ୍ରବଳ ଯୁଦ୍ଧ ହେଲା । ଇଂରାଜିମାନେ 'ଅବଧ'ରୁ ବିଦ୍ରୋହୀ ବାହିନୀକୁ ସମ୍ପୂର୍ଣ୍ଣ ଭାବରେ ବିତାଡ଼ିତ କରିବା ପାଇଁ ଦୃଢ଼ ପ୍ରତିଜ୍ଞ ହେଲେ । ସେମାନେ ବିଭିନ୍ନ ଦିଗରୁ ବିଭିନ୍ନ ଇଂରାଜି ବାହିନୀକୁ ଭିନ୍ନ ଭିନ୍ନ ପଥଦେଇ ଅବଧ ଭିତର ଆଡ଼କୁ ମାଡ଼ିଯାଇ ବିଦ୍ରୋହୀମାନଙ୍କୁ ଅବଧର ଉତ୍ତର ଦିଗକୁ ଘଉଡ଼ାଇ ନେବା

ଯୋଜନାରେ ପ୍ରେରଣ କଲେ । ୧୮୫୮ ମସିହା ଏପ୍ରିଲମାସରେ ଭାରତବର୍ଷରେ ଥିବା ସମସ୍ତ ଇଂରାଜି ବାହିନୀରେ ଛୟାନବେ ହଜାର ଇଂରାଜି ସୈନ୍ୟଙ୍କ ବ୍ୟତୀତ ଶିଖ୍, ପଠାଣ, ପରିହା ଆଦି ବାହିନୀ ଓ ନବନିଯୁକ୍ତ ସୈନ୍ୟମାନେ ଥିଲେ । ଏତଦ୍ ବ୍ୟତୀତ କିଛି ଇଂରାଜି ଭକ୍ତ ରାଜା, ଯୁବରାଜ ମାନଙ୍କର ସୈନ୍ୟବାହିନୀ ମଧ୍ୟ ଇଂରାଜି ବାହିନୀରେ ସାମିଲ ହୋଇଥିଲେ । ବିହାର ଆଡୁ 'ଲୁଗାର୍ଡ଼' ଓ 'ଡ଼ଗଲାସ୍' ନିଜର ବାହିନୀ ସହ ମାଡ଼ିଆସୁଥିଲେ । 'ହୋପଗ୍ରାଣ୍ଟ' 'ବାରି' ଓ 'ବିଟାଓଲି' ଆଡୁ ଆଗେଇ ଆସୁଥିଲେ । 'ଓ୍ୱାଲପୋଲ' ନିଜର ସେନା ସହ ଗଙ୍ଗା ତୀରରୁ ଆଗେଇ ଆସୁଥିଲେ । ଏହି ସବୁ ବାହିନୀ ସହିତ ମୁଖ୍ୟସେନାପତି ମଧ୍ୟ ସମନ୍ୱୟ ରକ୍ଷା କରି ନିଜର ବାହିନୀ ସହ ଆଗେଇ ଆସୁଥିଲେ ।

ଏପ୍ରିଲ ପନ୍ଦର ତାରିଖ ଦିନ 'ଓ୍ୱାଲପୋଲ' 'ରୁଇୟା' ଦୁର୍ଗ ଆକ୍ରମଣ କଲେ । 'ରୁଇୟା' ଦୁର୍ଗ ନରପତ୍ ସିଂହଙ୍କ ଅଧିନରେ ଥିଲା । ସେ ଜଣେ ଦୁର୍ଦ୍ଧର୍ଷ ଦେଶପ୍ରେମୀ ଓ ଯୋଦ୍ଧା ଥିଲେ । ସେ କମାଣ ଓ ଉଚ୍ଚମାନର ଅସ୍ତ୍ରଶସ୍ତ୍ରରେ ପୂର୍ଣ୍ଣ ଏହି ବିଶାଳ ଇଂରାଜି ବାହିନୀକୁ ଦେଖି ହତୋତ୍ସାହ ନହୋଇ ଅପରପକ୍ଷରେ ଦୁର୍ଗରେ ନିଜର ଆସ୍ଥାନକୁ ସର୍ବତୋପରି ସୁରକ୍ଷିତ ଓ ସୁଦୃଢ଼ କରି ଇଂରାଜିମାନଙ୍କର ଆକ୍ରମଣର ଜବାବ ଦେଲେ । ତାଙ୍କ ପାଖରେ ଅଢ଼େଇଶହ ସୈନ୍ୟମଧ୍ୟ ନଥିଲେ ଏଣୁ ପ୍ରଥମେ ଇଂରାଜିମାନେ ସେ ଦୁର୍ଗ ତ୍ୟାଗ କରି ପଳାଇଥିବା ମନେ କରିଥିଲେ । କିନ୍ତୁ ସକାଳୁ 'ନରପତ୍‌ସିଂହ'ଙ୍କର ଜଣେ ବନ୍ଦୀ ମୁକ୍ତ ହୋଇ ଇଂରାଜିମାନଙ୍କ ନିକଟକୁ ତାଙ୍କର ଏକ ସମ୍ବାଦ ନେଇ ଆସିଥିଲା । ନରପତ୍‌ସିଂହ ଜଣାଇଥିଲେ ଯେ, ସେ ଦୁର୍ଗଟିକୁ ଛାଡ଼ିଦେବାକୁ ରାଜି ଅଛନ୍ତି କିନ୍ତୁ ଇଂରାଜିମାନଙ୍କ ସହ ଯୁଦ୍ଧ କରି ଉପଯୁକ୍ତ ପ୍ରତିଶୋଧ ନେବା ପରେ ହିଁ କେବଳ ସେ ଦୁର୍ଗ ତ୍ୟାଗ କରିବେ । 'ଓ୍ୱାଲ୍‌ପୋଲ୍' ଏଥିରେ କ୍ରୋଧାନ୍ୱିତ ହୋଇ ନିଜର ବାହିନୀକୁ ଯଥାଶୀଘ୍ର ଦୁର୍ଗ ଆକ୍ରମଣ କରିବାକୁ ଆଦେଶ ଦେଲେ । ଇଂରାଜିମାନେ ବିଦ୍ରୋହୀ ସୈନ୍ୟମାନଙ୍କର ସଂଖ୍ୟା ଆପତତଃ ଦେଢ଼ହଜାର ହେବ ବୋଲି ଅନୁମାନ କରିଥିଲେ । କିନ୍ତୁ 'ନରପତ୍' ସିଂହଙ୍କ ଠାରୁ ମୁକ୍ତ ହୋଇଥିବା ଇଂରାଜି ଜଣକ ପ୍ରାୟ ଅଢ଼େଇଶହ ଜଣ ସୈନ୍ୟ ଦୁର୍ଗରକ୍ଷା କରୁଥିବା ଜଣାଇଥିଲା । ଏହି କାରଣରୁ ଇଂରାଜି ବାହିନୀ ବେପରବାୟ ଭାବରେ ଦୁର୍ଗର ଦୁର୍ବଳ ସ୍ଥାନକୁ ଆକ୍ରମଣ ନକରି ଦୃଢ଼ଭାବରେ ସୁରକ୍ଷିତ ସିଧାସଳଖ ଭାବେ ମୁଖ୍ୟ ଦ୍ୱାରକୁ ଆକ୍ରମଣ କଲେ । ଦୁର୍ଗ ଆଡୁ ବିଦ୍ରୋହୀମାନେ ଇଂରାଜି ବାହିନୀର ଅଗ୍ରଗତିକୁ ପ୍ରତିହତ କରିବା ପାଇଁ ନିରବିଚ୍ଛିନ୍ନଭାବରେ ଗୁଳି ବର୍ଷଣ କଲେ । ଇଂରାଜି ସୈନ୍ୟମାନେ ଦୁର୍ଗ ସମ୍ମୁଖରେ ଥିବା ବୃକ୍ଷମାନଙ୍କର ଆଢୁଆଳରେ ରହି ଆକ୍ରମଣ

ଚାଲୁରଖିଲେ । ଦୁର୍ଗ ମଧ୍ୟରୁ ଏପରି ପ୍ରବଳ ଭାବରେ ଗୁଳି ବର୍ଷଣ କରାଗଲା ଯାହାଫଳରେ ଇଂରାଜିମାନେ ନିକଟରେ ସାମାନ୍ୟ ସୁରକ୍ଷିତ ଥିବା ଏକ ଖାଲୁଆ ଅଞ୍ଚଳରେ ଆଶ୍ରୟ ନେଲେ । ପ୍ରଥମ ପର୍ଯ୍ୟାୟରେ ଯେଉଁ ଦେଢ଼ଶହ ଜଣ ଇଂରାଜି ସୈନ୍ୟ ଦୁର୍ଗ ଦିଗକୁ ଆଗେଇ ଯାଇଥିଲେ ସେମାନଙ୍କ ମଧ୍ୟରୁ ଛୟାଳିଶ ଜଣ ସେହି ସ୍ଥାନରେ ପ୍ରାଣ ହରାଇଲେ । ଏହି ଅବସ୍ଥା ଦେଖି ଚତୁର 'ୱାଲ୍‌ପୋଲ୍' କମାଣ ବାହିନୀକୁ ଦୁର୍ଗର ଦୁର୍ବଳଥିବା ଅଂଶ ଦିଗକୁ ଆଗେଇନେଇ ଗୋଳା ବର୍ଷଣ କଲେ । ମାତ୍ର ଗୋଳାମାନ ଦୁର୍ଗ ଅତିକ୍ରମ କରି ଅପର ଦିଗରେ ଥିବା ଇଂରାଜି ସେନା ଉପରେ ପଡ଼ିଲା । ହଠାତ୍ 'ହୋପଗ୍ରାଣ୍ଟ' ନିଜର ବାହିନୀ ସହ ପହଞ୍ଚିଲେ । କିନ୍ତୁ ବିଦ୍ରୋହୀମାନଙ୍କର ପ୍ରବଳ ଗୁଳି ବର୍ଷଣର ଶିକାର ହୋଇ ସେ ମୃତ୍ୟୁ ବରଣ କଲେ । ହୋପଗ୍ରାଣ୍ଟ ଇଂରାଜି ବାହିନୀର ଜଣେ ପ୍ରଖ୍ୟାତ ସେନାପତି ଥିଲେ ଓ ତାଙ୍କର ମୃତ୍ୟୁରେ ଇଂରାଜିମାନେ ମ୍ରିୟମାଣ ହୋଇପଡ଼ିଲେ । ଭଗ୍ନ ହୃଦୟରେ ସେମାନେ ରଣକ୍ଷେତ୍ର ତ୍ୟାଗ କରି ପ୍ରତ୍ୟାବର୍ତ୍ତନ କଲେ ।

ବିଦ୍ରୋହୀମାନଙ୍କୁ ଘଉଡ଼ାଇ ନେବା ପାଇଁ ବିଭିନ୍ନ ଦିଗରୁ ଆସୁଥିବା ଇଂରାଜି ସୈନ୍ୟ ବାହିନୀର ଡ଼ିଭିଜନ ଗୁଡ଼ିକ 'ଅବଧ'ର ଉତ୍ତର ଭାଗ ଦେଇ 'ରୋହିଲା' ଖଣ୍ଡରେ, ମୁଖ୍ୟ ସେନାଧ୍ୟକ୍ଷ 'କଲିନ୍'ଙ୍କ ନେତୃତ୍ୱରେ, ଏକତ୍ରିତ ହେଲେ । 'ନାନାସାହେବ' ଓ 'ଅହମଦ୍‌ଶାହ' ମଧ୍ୟ 'ଶାହାଜାହାନପୁର'ରେ ନିଜର ବାହିନୀ ସହ ଏକତ୍ରିତ ହୋଇଥିଲେ । 'ସାର୍ କଲିନ୍' ଏହିସମ୍ବାଦ ପ୍ରାପ୍ତ ହୋଇ 'ଶାହାଜାହାନପୁର'କୁ ଚତୁର୍ଦ୍ଦିଗରୁ ଘେରାଉ କରିବା ପାଇଁ ମନସ୍ଥ କଲେ । ସେ ଚତୁର୍ଦ୍ଦିଗରୁ ସତର୍କତାର ସହ 'ଶାହାଜାହାନପୁର'କୁ ଆଗେଇ ଯିବା ପାଇଁ ନିଜର ସେନାକୁ ନିର୍ଦ୍ଦେଶ ଦେଲେ । କିନ୍ତୁ, ଯେଉଁ ଦିଗରୁ 'କଲିନ୍' ନିଜେ ସେନା ପରିଚାଳନା କରି ଦୁର୍ଗନିକଟକୁ ଆଗେଇଯାଉଥିଲେ, ସେହି ଦିଗରେ ହିଁ 'ନାନା' ତଥା 'ଅହମଦଶାହ' ସେମାନଙ୍କର ବାହିନୀ ସହ ସମସ୍ତଙ୍କ ଆଖିରେ ଧୂଳି ଦେଇ ଖସି ପଳାଇ ଗଲେ । ଇଂରାଜି ସେନା, ଦୁର୍ଗରେ ପହଞ୍ଚିଲା ବେଳକୁ ଦୁର୍ଗ ଖାଲିଥିଲା । ଅକୃତକାର୍ଯ୍ୟ ହୋଇ 'ସାର୍‌କଲିନ୍' 'ଶାହାଜାହାନପୁର'ରେ ଏକ ଡ଼ିଭିଜନ ସୈନ୍ୟ ସହ ଚାରିଟି କମାଣ ରଖି, 'ବରେଲୀ' ଅଭିମୁଖେ ଯାତ୍ରା କଲେ ।

ସେ ମେ ଚଉଦ ତାରିଖ ଦିନ 'ବରେଲୀ' ପହଞ୍ଚିଲେ । 'ଖାଁ ବାହାଦୂର ଖାଁ' 'ବରେଲୀ'ର ରକ୍ଷା କରିବା ଦାୟିତ୍ୱରେ ଥିଲେ । ଏହି ସହରକୁ 'ଫିରୋଜଶାହ,' 'ନାନାସାହେବ,' 'ଅହମଦଶାହ' ଓ 'ବେଗମ ହଜରତ୍ ମହଲ' ଆଦି ବିଦ୍ରୋହର ନେତୃବୃନ୍ଦ, ବିଭିନ୍ନ ସମୟରେ ଆସିପଦାର୍ପଣ କରି ଆଶ୍ରୟ ନେଉଥିଲେ । କାରଣ, ଏହା ସେତେବେଳ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ସ୍ୱାଧୀନ ଥିଲା । ଏଣୁ 'କଲିନ୍'ଙ୍କର ସମସ୍ତ କ୍ରୋଧ

'ବରେଲୀ' ଉପରେ ପଡ଼ିଲା । ବିଦ୍ରୋହୀମାନେ, ସମ୍ମୁଖ ଯୁଦ୍ଧ ତ୍ୟାଗ କରି ଗରିଲା କୌଶଳ ଅବଲମ୍ବନ କରୁଥିବାରୁ, ସେମାନେ 'ବରେଲୀ' ତ୍ୟାଗ କରିବା ଯୋଜନାରେ ଲାଗିଗଲେ । କିନ୍ତୁ ରୋହିଲାମାନେ ବିନା ଯୁଦ୍ଧରେ ସେ ସ୍ଥାନ ତ୍ୟାଗ କରିବା ପାଇଁ ସମ୍ମତ ହେଲେ ନାହିଁ । ତେଣୁ କେବଳ ସେହିମାନେ ହିଁ ସମ୍ମୁଖ ଯୁଦ୍ଧକୁ ପ୍ରସ୍ତୁତ ହୋଇରହିଲେ । ବିଶାଳ ଓ ସୁଦକ୍ଷ ଇଂରାଜି ସେନା 'ବରେଲୀ'କୁ ଚତୁର୍ଦ୍ଦିଗରୁ ଘେରିଗଲେ । ଆକ୍ରମଣ ପ୍ରତ୍ୟାକ୍ରମଣର ପର୍ବ ଚାଲୁ ରହିଲା । ମେ ପାଞ୍ଚ ତାରିଖ ଦିନ ବିଦ୍ରୋହୀ ମାନଙ୍କର କମାଣ ନୀରବ ହୋଇଗଲା ଓ ସେମାନେ ତଲବାର ହସ୍ତରେ ଇଂରାଜି ସେନା ଉପରକୁ ଝାମ୍ପି ପଡ଼ିଲେ । ଇଂରାଜିମାନେ ସଂଖ୍ୟା ଗରିଷ୍ଠ ଥିଲେ ମଧ ବିଦ୍ରୋହୀମାନଙ୍କର ଏହି ନିର୍ଭୀକ ଓ ଅପ୍ରତ୍ୟାଶିତ ଆକ୍ରମଣରେ ପ୍ରଥମେ ହତଚକିତ ହୋଇଗଲେ । ଭୟରେ ଅନ୍ୟ ଇଂରାଜି ବାହିନୀ ପଛଘୁଞ୍ଚା ଦେବା ସମୟରେ କେବଳ ୪୨ତମ ଇଂରାଜି ବାହିନୀ ସେମାନଙ୍କୁ ପ୍ରତିହତ କରିବାକୁ ଚେଷ୍ଟା କଲେ । ତାହା ସତ୍ତ୍ୱେ 'ଘାଜୀ'ମାନେ ଆଗେଇଯାଇ ଇଂରାଜିବାହିନୀର ପଶ୍ଚାତ ଭାଗରେ ପହଞ୍ଚିଲେ ମଧ ସେମାନଙ୍କ ମଧ୍ୟରୁ କେହି ଫେରିଆସିପାରିଲେ ନାହିଁ । ଏହି 'ଘାଜି'ମାନଙ୍କର ମୃତ ଦେହ ପଡ଼ିଥିବା ବେଳେ ସେ ଦିଗକୁ 'ସାର୍ କଲିନ୍' ପରିଦର୍ଶନ ପାଇଁ ଆସିଥିଲେ । ହଠାତ୍ ମୃତ ପରି ପଡ଼ିରହିଥିବା ଜଣେ 'ଘାଜି' 'ପ୍ରଚଣ୍ଡ' ବେଗରେ ଉଠିଆସି 'କଲିନ୍'ଙ୍କୁ ଆକ୍ରମଣ କରିବା ସମୟରେ, ନିକଟରେ ଠିଆ ହୋଇଥିବା ଏକ ଶିଖ୍‌ସୈନ୍ୟର ତଲବାରର ଆଘାତରେ ମୃତ୍ୟୁ ବରଣ କଲେ ।

ପରଦିନ ୧୮୫୮ମସିହା ମେ ସାତତାରିଖରେ ବିଦ୍ରୋହୀ ବାହିନୀ 'ଖାଁ ବାହାଦୂର ଖାଁ'ଙ୍କ ନେତୃତ୍ୱରେ 'ବରେଲୀ' ତ୍ୟାଗକଲେ ଓ ଇଂରାଜିମାନେ 'ରୋହିଲା ଖଣ୍ଡର' ରାଜଧାନୀକୁ ନିଜର ଅଧିକାର ଭୁକ୍ତ କଲେ । 'ଶାହାଜାହାନପୁର ଛାଡ଼ିବା ଆଗରୁ 'ନାନାସାହେବ'ଙ୍କର ଆଦେଶରେ, ସେଠାରେ ସମସ୍ତ ସରକାରୀ ପ୍ରାସାଦ ଗୁଡ଼ିକୁ ମାଟିରେ ମିଶାଇଦିଆଯାଇଥିଲା । ପୂର୍ବରୁ 'ନାନାସାହେବ', 'ଶାହାଜାହାନପୁର'ରେ ଇଂରାଜିମାନେ କିଛି ସୈନ୍ୟ ଛାଡ଼ି ଦେଇ 'ବରେଲୀ' ଆଡ଼କୁ ଆଗେଇଯିବା ବିଷୟ, ଅନୁମାନ କରିଥିଲେ । ଏଣୁ 'ନାନା', 'ଅହମଦଶାହା'ଙ୍କୁ ବର୍ତ୍ତମାନର ପରିସ୍ଥିତିରେ 'ଶାହାଜାହାନପୁର'ର ଚତୁର୍ଦ୍ଦିଗରେ ଘୂରି ଘୂରି ଆକ୍ରମଣ କରିବା ପାଇଁ ପରାମର୍ଶ ଦେଲେ । ଶାହାଜାହାନପୁରରେ ଇଂରାଜିମାନେ ହଠାତ୍ ଆକ୍ରମଣର ଆଶଙ୍କା କରିନଥିଲେ । ତେଣୁ ସେମାନେ ନିଶ୍ଚିନ୍ତରେ ଏକ ଖୋଲା ପଡ଼ିଆରେ ନିଜର ଛାଉଣୀ ପକାଇ ରହିଥିଲେ ।

ମେ ବାଇଶ ତାରିଖ ଦିନ 'ଅହମଦଶାହ', 'ଶାହାଜାହାନପୁର' ଅଭିମୁଖେ ଦ୍ରୁତଗତିରେ ଯାତ୍ରା କଲେ । କିନ୍ତୁ ପଥମଧ୍ୟରେ, ଅର୍ଦ୍ଧରାତ୍ରି ସମୟରେ, ସହରଠାରୁ ଚାରିମାଇଲ ଦୂରରେ ରହି ସାମାନ୍ୟ ବିଶ୍ରାମ କଲେ । ଏହି ସମୟ ମଧ୍ୟରେ ସ୍ଥାନୀୟ ଗୁପ୍ତଚରମାନେ ଏମାନଙ୍କର ଆଗମନର ବାର୍ତ୍ତା ଇଂରାଜି ଛାଉଣୀର ଅଧ୍ୟକ୍ଷ 'କର୍ଣ୍ଣେଲ ହେଲ'ଙ୍କୁ (Colonel Hale) ଜଣାଇଦେଲେ । ଏଖବର ପାଇବା ମାତ୍ରେ କର୍ଣ୍ଣେଲ ଇଂରାଜି ସେନାଙ୍କୁ ଖୋଲା ପଡ଼ିଆରୁ ଉଠାଇନେଇ ସୁରକ୍ଷିତ ସ୍ଥାନମାନଙ୍କରେ ଅବସ୍ଥାପିତ କରି ବିଦ୍ରୋହୀ ସେନାର ଆଗମନକୁ ଅପେକ୍ଷା କରିରହିଲେ ।

ଏସମସ୍ତ ସତ୍ତ୍ୱେ 'ଅହମଦଶାହ' ଦୁର୍ଗକୁ ଆକ୍ରମଣ କରି ଦଖଲ କଲେ ଓ ଶାସନ କାର୍ଯ୍ୟ ନିଜ ହାତକୁ ନେଇ ଖଜଣା ଧାର୍ଯ୍ୟ କରି ତାହା ଆଦାୟ କରିବାକୁ ଲାଗିଲେ । ତତ୍‌ସହିତ ସେ ଦୁର୍ଗର ସୁରକ୍ଷା ପାଇଁ ଆଠୋଟି କମାଣ ମଗାଇ ଆଣିଲେ ଓ ଅନ୍ୟ ସମସ୍ତ ଆନୁସଙ୍ଗିକ ବ୍ୟବସ୍ଥାମାନ ମଧ୍ୟ କଲେ ।

ମେ ସାତତାରିଖ ଦିନ, 'ବରେଲୀ'ରେ ଥିବା 'କଲିନ୍' ଏ ସମ୍ବାଦ ପ୍ରାପ୍ତ ହେଲେ । ସେ ନିରୁତ୍ସାହିତ ହେବା ପରିବର୍ତ୍ତେ 'ଅହମଦଶାହ'ଙ୍କୁ ବନ୍ଦୀ କରିବାର ଏକ ସୁଯୋଗ ପାଇଥିବାରୁ ଆନନ୍ଦିତ ହେଲେ । ଏଣୁ, ସମସ୍ତ ପ୍ରକାର ସତର୍କତା ଅବଲମ୍ବନ କରି ସେ 'ଅହମଦଶାହ'ଙ୍କୁ ଘେରିଯାଇ ବନ୍ଦୀ କରିବା ଯୋଜନାରେ 'ଶାହାଜାହାନପୁର' ଅଭିମୁଖେ ଯାତ୍ରା କଲେ । ଖସି ନଯାଇ ପାରିବା ପାଇଁ ସେ ସତର୍କତା ଅବଲମ୍ବନ ପୂର୍ବକ ସମସ୍ତ ପଥ ଅବରୁଦ୍ଧ କଲେ । ମେ ଏଗାର ତାରିଖଠାରୁ ଆରମ୍ଭ ହୋଇ ନିରବିଚ୍ଛିନ୍ନ ଭାବରେ ତିନି ଦିନ ଧରି ଆକ୍ରମଣ ଓ ପ୍ରତ୍ୟାକ୍ରମଣ ଚାଲିଲା । 'ଅହମଦଶାହ' ଶତ୍ରୁ ଜାଲରେ ପଡ଼ିଯିବା ଦେଖି ଅନ୍ୟାନ୍ୟ ବିଦ୍ରୋହୀ ନେତୃ ବୃନ୍ଦ ବିଭିନ୍ନ ଦିଗରୁ ସେମାନଙ୍କର ବାହିନୀ ସହ ମାଡ଼ିଆସିଲେ । ମେ ମାସ ପନ୍ଦରତାରିଖ ପୂର୍ବରୁ 'ଅଯୋଧ୍ୟାର ବେଗମ', 'ମାୟାନ୍ ସାହେବ', 'ରାଜା ମହମଦୀ', 'ଶାହାଜାଦା ଫିରୋଜ ଶାହ', ନାନାସାହେବ ଆଦି ନିଜ ନିଜର ବାହିନୀ ସହ ମାଡ଼ି ଆସିଥିଲେ । ଏହି ସୁଯୋଗରେ ଅହମଦଶାହ ଶତ୍ରୁ ଆକ୍ରମଣର ମୁକାବିଲା କରି ଦୁର୍ଗ ମଧ୍ୟରୁ ବାହାରି ଆସି ଖସି ପଳାଇଗଲେ ।

'ଅହମଦଶାହ' ଏହାପରେ 'ଅବଧ'ରେ ପ୍ରବେଶ କଲେ । 'ଅବଧ'ରେ ପ୍ରବେଶ କରି ସେ, ସେଠାରୁ ଇଂରାଜିମାନଙ୍କୁ ବିତାଡ଼ିତ କରିବାର ଯୋଜନା କଲେ । ନିଜର ସୈନ୍ୟବାହିନୀକୁ ପୁନର୍ବାର ସୁସଂଗଠିତ କରିବାର ଆବଶ୍ୟକତା ପଡ଼ିବା ଦୃଷ୍ଟିରୁ ସେ, 'ପୋୱେନ୍'ର ରାଜାଙ୍କୁ ସୈନ୍ୟ ସାହାଯ୍ୟ ପାଇଁ ଅନୁରୋଧ କଲେ । ଏହି କ୍ଷୁଦ୍ରରାଜା

ଜଣକ ଇଂରାଜି ଭକ୍ତ ଥିଲେ । ରାଜା, ମୌଲବୀଙ୍କୁ ସାକ୍ଷାତପାଇଁ ଡ଼କାଇଲେ । ମୌଲବୀ ରାଜାଙ୍କୁ ବିଶ୍ୱାସ କରି ତାଙ୍କର ଦୁର୍ଗ ଆଡ଼କୁ ସାକ୍ଷାତ ପାଇଁ ଏକ ହାତୀ ଉପରେ ବସିଗଲେ । ସେ ପହଞ୍ଚି ଦେଖିଲେ ଯେ ଦୁର୍ଗର ସମସ୍ତ ପ୍ରବେଶ ଦ୍ୱାର ରୁଦ୍ଧ କରିଦିଆ ହୋଇଛି । ଏବଂ ତାହା ସଶସ୍ତ୍ର ସୈନ୍ୟମାନଙ୍କ ଦ୍ୱାରା ସୁରକ୍ଷିତ ଅଛି । ସୈନ୍ୟମାନଙ୍କ ମଧ୍ୟରେ ରାଜା ଜଗନ୍ନାଥ ସିଂହ ନିଜର ଭାଇଙ୍କ ସହିତ ଛିଡ଼ା ହୋଇଥିବା ସେ ଦେଖିବାକୁ ପାଇଲେ । 'ଅହମଦଶାହ'ଙ୍କ ଆଗରେ, ରାଜାଙ୍କର ଉଦ୍ଦେଶ୍ୟ ସ୍ପଷ୍ଟ ହୋଇଗଲା । ତଥାପି ସେ ଫାଟକ ଖୋଲା ହେବା ନଦେଖି, ନିଜେ ବସିଥିବା ହାତୀର ମାହୁନ୍ତକୁ ଫାଟକ ଭାଙ୍ଗି ଦୁର୍ଗ ମଧ୍ୟରେ ପ୍ରବେଶ କରିବାକୁ ଆଦେଶ ଦେଲେ । ଏହା ଦେଖି ରାଜାଙ୍କର ଭାଇ, 'ଅହମଦଶାହ'ଙ୍କୁ ଲକ୍ଷ୍ୟ କରି ଗୁଳି ଚଳାଇଲେ ଓ ତାଙ୍କର ତତ୍‌କ୍ଷଣାତ୍ ମୃତ୍ୟୁ ହେଲା । ଏହାପରେ ରାଜା ତାଙ୍କର ଭାଇଙ୍କ ସହ ଆସି ତଲବାରରେ 'ଅହମଦଶାହା'ଙ୍କର ମୁଣ୍ଡ କାଟିଦେଇ ତାହା ଏକ କନାରେ ଘୋଡ଼ାଇ ନିକଟସ୍ଥ ଇଂରାଜି ପୁଲିସ୍ ଥାନାରେ ଭେଟି ଦେବାପାଇଁ ଗଲେ । ଏହି ଥାନା ସେଠାରୁ ତେରମାଇଲ ଦୂରରେ 'ଶାହାଜାହାନପୁର' ଆଡ଼କୁ ଥିଲା । ଏହିଠାରେ ଇଂରାଜି ଅଫିସରମାନେ ରାତ୍ରି ଭୋଜନ କରୁଥିବା ସମୟରେ ସେ କନାରେ ଗୁଡ଼ାଇ ରଖିଥିବା 'ଅହମଦଶାହା'ଙ୍କର ମୁଣ୍ଡଟିକୁ ସେମାନଙ୍କର ପାଦ ତଳେ ଗଡ଼ାଇ ଦେଲେ । ଏହି ରାଜା ସ୍ୱଦେଶ ସହିତ ବିଶ୍ୱାସଘାତକତା କରିଥିବା ହେତୁ ଇଂରାଜିଙ୍କ ପକ୍ଷରୁ ତା'ଙ୍କୁ ପଚାଶହଜାର ଟଙ୍କା ପୁରସ୍କାର ଦିଆଗଲା । ଏହିପରି ବିଶ୍ୱାସଘାତକତାର ଶୀକାର ହୋଇ ଜଣେ ଉଗ୍ରଦେଶପ୍ରେମୀ, ମହାସେନାନାୟକଙ୍କର ଅବସାନ ଘଟିଲା ।



# ନାନାସାହେବଙ୍କର ଶେଷ ଜୀବନ

'ନାନାସାହେବ,' ତାଙ୍କର ଶେଷଜୀବନ କିପରି ଅତିବାହିତ କରିଥିଲେ, ତାହା ଅଦ୍ୟାବଧି ପ୍ରହେଳିକାମୟ ହୋଇ ରହିଛି । ଇତିହାସରୁ ଏ ବିଷୟରେ କୌଣସି ନିର୍ଦ୍ଦିଷ୍ଟ ଓ ସଠିକ୍ ବିବରଣୀ ମିଳୁନାହିଁ । କିନ୍ତୁ 'ନାନାସାହେବ' 'ନେପାଳ' ପଳାଇଥିବା କଥା ନିର୍ଦ୍ଦିଷ୍ଟ ଭାବରେ ଜଣାଯାଇଛି । 'ନେପାଳ'ରେ ତାଙ୍କର କାର୍ଯ୍ୟାବଳୀ ଓ ଶେଷ ଜୀବନ ବିଷୟରେ ଅନୁସନ୍ଧାନ କରି ବିଦ୍ରୋହ ପ୍ରଶମିତ ହେବା ପରେ ପରେ 'ପର୍‌ସିଭାଲ୍ ଲାଣ୍ଡନ୍' (Perceval Landon) ନାମକ ଜଣେ ଇଂରାଜି ଲେଖକ, ସରକାରୀ ରେକର୍ଡ଼ ତଥା ଯୁଦ୍ଧରେ ଭାଗନେଇଥିବା ସେନାପତି ଓ ଅନ୍ୟମାନଙ୍କର ଚିଠି ପଢ଼ି ଓ ମୁଖରୁ ଶୁଣି 'ନାନାସାହେବଙ୍କର' 'ନେପାଳର' କାର୍ଯ୍ୟକଳାପ ଉପରେ 'ଅଣ୍ଡର ଦି ସନ୍' (Under the Sun)ନାମକ ପୁସ୍ତକରେ ପ୍ରକାଶ କରିଥିଲେ । ବହିଟିରେ ବହୁବିଷୟ ସ୍ଥାନପାଇ ନଥିବାରୁ ଦୀର୍ଘ କୋଡ଼ିଏ ବର୍ଷ ପରେ ସେ ଆହୁରି ବହୁ ମୂଲ୍ୟବାନ୍ ତଥ୍ୟ ସଂଗ୍ରହ କରି 'ନେପାଳ' ନାମକ ଏକ ପୁସ୍ତକ ରଚ଼ନା କରିଥିଲେ । ତାହା ଗବେଷଣା ପ୍ରସୂତ ଓ ତଥ୍ୟମୂଳକ ହୋଇଥିବାରୁ ଆମ ବିଚାରରେ ସେଥିରୁ ଗ୍ରହଣ ଯୋଗ୍ୟ କିଛି ଅଂଶକୁ ସ୍ୱୀକାର କରିବାରେ ବାଧା ନାହିଁ । ୧୮୫୯ ମସିହା ଜାନୁଆରୀ ମାସରେ 'ନାନାସାହେବ' 'ନେପାଳ'ରେ ପ୍ରବେଶ କଲେ । ଏହାପରେ ନାନାସାହେବଙ୍କ ଉପରେ ଜାଣିବାକୁ ଗଲେ ଅନ୍ୟ ବଳିଷ୍ଠ ତଥ୍ୟର ଅଭାବରେ ଆମକୁ ଲାଣ୍ଡନଙ୍କ ଉପରେ ହିଁ ନିର୍ଭର କରିବାକୁ ପଡ଼ିବ । ଲାଣ୍ଡନଙ୍କ ମତରେ, ଏହା ପରେ 'ନାନାସାହେବ'ଙ୍କର ଇତିହାସ ଘନକୁହୁଡ଼ିଭରା ଅଜ୍ଞାତ ଇଲାକାରେ ହିଁ ଆତ୍ମଗୋପନ କରିଅଛି । ତଥାପି 'ଲାଣ୍ଡନ' ବହୁ ତଥ୍ୟକୁ ଏକ ସୂତ୍ରରେ, ଶୃଙ୍ଖଳିତ ଭାବରେ ଗ୍ରଥିତ କରି ଯେଉଁ, ସତ୍ୟ ଦର୍ଶନ କରିଛନ୍ତି, ତାହାକୁ ହିଁ ଅବତାରଣା କରିଛନ୍ତି ।

'ନାନାସାହେବ', 'ନେପାଳ'ରେ ପ୍ରବେଶ କରିବା ପରେ 'ନେପାଳ' ସରକାରଙ୍କ ତରଫରୁ ଏକ ସାମରିକ ଅଫିସର, ତ୍ରିବେଣୀ ଘାଟ ଉପରେ ଥିବା ଏକ ଗ୍ରାମକୁ ତାହାଙ୍କୁ ପାଛୋଟି ନେଲେ ଓ ସେଠାରେ ସେ 'ନାନାସାହେବ'ଙ୍କୁ ରାଜା ଜଙ୍ଗବାହାଦୂର, ଦେଇଥିବା ସର୍ତ୍ତାବଳୀ ବିଷୟରେ ଅବଗତ କରାଇଲେ । ନାନାଙ୍କର 'କାଶୀ ବାଈ' ନାମକ ଏକ ସ୍ତ୍ରୀ ଓ ମହିଳାମାନଙ୍କୁ ପ୍ରଧାନମନ୍ତ୍ରୀଙ୍କର ହେପାଜତରେ ରଖାଯିବାର ପ୍ରତିଶ୍ରୁତି ଦିଆଯାଇଥିଲା । ତତ୍‌ସଙ୍ଗେ ସଙ୍ଗେ 'ନାନାସାହେବ'ଙ୍କୁ 'ଜଙ୍ଗବାହାଦୂର', କୌଣସି ପ୍ରକାର ଆଶ୍ରୟ ଦେବାକୁ ନିଜର ଅକ୍ଷମତା ଜଣାଇବା ସଙ୍ଗେ

ସଙ୍ଗେ ତାଙ୍କର ସମ୍ମୁଖକୁ ନଆସି ତୁରନ୍ତ ନେପାଳ ତ୍ୟାଗ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଏପରିକି 'ଜଙ୍ଗବାହାଦୂର,' 'ନାନା' ତାଙ୍କ ସମ୍ମୁଖକୁ ଆସିଲେ ସେ ତୁରନ୍ତ ତାହାଙ୍କୁ ବନ୍ଦୀ କରି, ଇଂରାଜିଙ୍କ ହାତରେ ସମର୍ପଣ କରିଦେବାର ଧମକ ମଧ ଦେଇଥିଲେ । ଅନ୍ୟପକ୍ଷରେ ସେ 'ନେପାଳ' ତ୍ୟାଗ କଲେ, ସେ ଦିଗରେ ପ୍ରଧାନ ମନ୍ତ୍ରୀ ତାହାଙ୍କୁ ସବୁ ପ୍ରକାରେ ସାହାଯ୍ୟ ଦେବାର ପ୍ରତିଶ୍ରୁତି ମଧ ଦିଆଯାଇଥିଲା । ଅବଶ୍ୟ 'ନାନାସାହେବ'ଙ୍କ ପକ୍ଷରେ ଏହି ସର୍ତ୍ତା ବଳୀ ଗୁଡ଼ିକ ଅତ୍ୟନ୍ତ ଅପମାନଜନକ ଥିଲା । ତେଣୁ ସେ, ହଠାତ୍ କିଛି ଉତ୍ତର ଦେଲେ ନାହିଁ । ଏପ୍ରିଲ ୨୩ତାରିଖ ଦିନ ସେ ଏକ ଦୂତ ହାତରେ ରାଣୀ ଭିକ୍ଟୋରିଆଙ୍କ ନାମରେ ଏକ ପତ୍ର, ମେଜର ରିଚାର୍ଡ଼ସନ (Major Richardson)ଙ୍କୁ ପଠାଇଲେ । ଏହା ସହିତ ସେ ଇଷ୍ଟଇଣ୍ଡିଆକମ୍ପାନୀର କୋର୍ଟ ଅଫ ଡ଼ିରେକ୍ଟରସ୍ (Court of Directors), 'ଗଭର୍ଣ୍ଣର ଜେନେରାଲ', 'ଲେଫଟନାଣ୍ଟ ଜେନେରାଲ,' ସମସ୍ତ ସାମରିକ ଅଫିସର ଏପରିକି ଇଂରାଜି ପାର୍ଲାମେଣ୍ଟକୁ ମଧ ପତ୍ରମାନ ମଧ ପଠାଇଥିଲେ ।

ଏଥିରେ 'ନାନାସାହେବ' ସିପାହୀମାନଙ୍କର ପ୍ରବଳଚାପ ଫଳରେ ସେ ବାଧ ହୋଇ ଇଂରାଜିମାନଙ୍କ ବିରୁଦ୍ଧରେ ଯାଇଥିଲେ ଓ କାନପୁରରେ ସେ ଇଂରାଜି ସ୍ତ୍ରୀ ପିଲା ଓ ବୃଦ୍ଧମାନଙ୍କୁ ନିଜ ପ୍ରାସାଦରେ ସୁରକ୍ଷିତ ରଖି ସେଠାରୁ ସ୍ଥାନାନ୍ତରିତ କରୁଥିବା ବେଳେ ସିପାହୀମାନେ ତାଙ୍କର ଅବାଧ ହୋଇ ସେମାନଙ୍କୁ ହତ୍ୟା କରିଥିଲେ, ଆଦି ନିଜ ତରଫରୁ ବହୁତ ସଫେଇ ଦେଇଥିଲେ । ପତ୍ରର ଦ୍ୱିତୀୟ ଭାଗରେ ସେ ତାଙ୍କର ଅବସ୍ଥା ବର୍ଣ୍ଣନା କରି ବାହିନୀ ବିହୀନ ଓ ଏକାନ୍ତ ହୋଇଯାଇଥିବା ବିଷୟ କହିଥିଲେ । କିନ୍ତୁ ତଥାପି ଯଦି ପ୍ରବଳ ପରାକ୍ରମୀ ଇଂରାଜିମାନେ ତାହାଙ୍କୁ ଏହି ଅବସ୍ଥାରେ ମଧ ଜଣେ ଶତ୍ରୁ ବୋଲି ମନେ କରୁଥାଆନ୍ତି, ତେବେ ସେଥିରେ ସେ ଗର୍ବିତ ଏବଂ ସେ ଏହି ଗର୍ବିତ ହୃଦୟ ନେଇ ଯେ କୌଣସି ମୁହୂର୍ତ୍ତରେ ମୃତ୍ୟୁକୁ ସମ୍ମୁଖୀନ ହେବା ପାଇଁ ପ୍ରସ୍ତୁତ ଅଛନ୍ତି । ଏହାର ଉତ୍ତରରେ 'ମେଜର ରିଚାର୍ଡ଼ସନ୍' ଏପ୍ରିଲ କୋଡ଼ିଏ ତାରିଖ ଦିନ ଏକପତ୍ରରେ ଜଣାଇଲେ ଯେ ଇଂଲାଣ୍ଡର ରାଣୀଙ୍କୁ ଆତ୍ମ ସମର୍ପଣ ପାଇଁ ଇଚ୍ଛୁକ ଥିବା ବିଦ୍ରୋହୀମାନଙ୍କୁ ଲାଗୁହୋଇଥିବା ସର୍ତ୍ତାବଳୀ ସମସ୍ତଙ୍କ ପାଇଁ ଉନ୍ମୁକ୍ତ ରହିଛି, ଏଣୁ 'ବାନ୍ଦା' ଓ 'ଫରକ୍କାବାଦର' ନବାବ ମାନେ, 'ବାନ୍ଦା' ଓ 'ଅବଧର' ସେନାପତିମାନେ, ଯେପରି ପଦ୍ଧତିରେ ଆତ୍ମସମର୍ପଣ କରିଛନ୍ତି, 'ନାନାସାହେବ' ସେହିପରି ଆତ୍ମସମର୍ପଣ କରିପାରିବେ । କିନ୍ତୁ ଏହି ଉତ୍ତରରେ 'ନାନାସାହେବ' ଖୁବ୍ ଅପମାନିତ ବୋଧ କଲେ । 'ନାନାସାହେବ'ଙ୍କର ସର୍ତ୍ତ ଥିଲା ଯେ ଇଂଲଣ୍ଡର ରାଣୀଙ୍କର ଲିଖିତ ପତ୍ର ରାଣୀଙ୍କର

ମୋହର ଥାଇ, ଫ୍ରାନ୍ସର କମାଣ୍ଡିଂ ଅଫିସରଙ୍କ ହସ୍ତରେ ତାଙ୍କ ପାଖକୁ ପଠାଯିବ ତେବେ ସେ ଆତ୍ମସମର୍ପଣ କରିବେ । ସେ ରାଣୀଙ୍କର ସମସ୍ତ ସର୍ତ୍ତାବଳୀ ସ୍ୱୀକାର କଲେ ମଧ୍ୟ ଅସମ୍ମାନିତ ଓ ଅମର୍ଯ୍ୟାଦାପୂର୍ଣ୍ଣ ଭାବରେ ଅନ୍ୟମାନଙ୍କ ପରି ଆତ୍ମସମର୍ପଣ କରିବାକୁ ପ୍ରସ୍ତୁତ ନଥିଲେ । 'ନାନାସାହେବ'ଙ୍କର ଭ୍ରାତା 'ବାଳାସାହେବ' ମଧ୍ୟ ଏକ ଅନୁରୂପ ପତ୍ର ଇଂରାଜିମାନଙ୍କୁ ଲେଖି ଜଣାଇଥିଲେ ଯେ ସେ ଧର୍ମତଃ ନିଜର ଜ୍ୟେଷ୍ଠ ଭ୍ରାତାଙ୍କ ଅଧିନରେ ଥିବାରୁ ତାଙ୍କରି ଆଦେଶ ହିଁ ପାଳନ କରିଆସିଛନ୍ତି ।(Foreign Department Political Proceeding May 1859)

ଏହି ପତ୍ର ଦ୍ୱାରା କିଛି ଲାଭ ହେଲା ନାହିଁ । ଇଂରାଜିଙ୍କ ତରଫରୁ ନାନାସାହେବଙ୍କୁ ଇଂଲାଣ୍ଡର ରାଣୀଙ୍କର ଘୋଷଣାନାମା ପଠାଇଦିଆଗଲା ଏବଂ କୌଣସି ପରିସ୍ଥିତିରେ ରାଣୀଙ୍କର ଘୋଷିତ ସର୍ତ୍ତାବଳୀର ଲଙ୍ଘନ କରାଯାଇପାରିବ ନାହିଁ ବୋଲି ଜଣାଇଦିଆଗଲା । ଏହି ମର୍ମରେ 'ବାଳାରାଓ'ଙ୍କୁ ମଧ୍ୟ ଜଣାଇ ଦିଆଗଲା । ଏହାପରେ ଇଂରାଜିମାନେ 'ନାନାସାହେବ' କିମ୍ବା ତାଙ୍କର ଭାଇଙ୍କ ଠାରୁ କୌଣସି ଖବର ପାଇଲେ ନାହିଁ । ଏଣୁ ମେ ତେରତାରିଖରେ ଉତ୍ତର ପଶ୍ଚିମ ଅଞ୍ଚଳର ଇଂରାଜି ଭଗର୍ଣ୍ଣରଙ୍କୁ ନିର୍ଦ୍ଦେଶ ଦିଆଗଲା ଯେ ନାନାସାହେବ ଓ ତାଙ୍କର ଭ୍ରାତା, ରାଣୀଙ୍କର ଦେଇଥିବା ସର୍ତ୍ତାବଳୀ ଗ୍ରହଣ କରୁନଥିବାରୁ, ଏହି ଘୋଷଣା ନାମା ଓ ସର୍ତ୍ତାବଳୀ ସେମାନଙ୍କ ପ୍ରତି ଲାଗୁ ହେବ ନାହିଁ ଓ ସେମାନେ ଏହାର ସୁବିଧା ଓ ସୁଯୋଗ ଭବିଷ୍ୟତରେ ନେଇପାରିବେ ନାହିଁ । ଏଣୁ, ସେ ଆତ୍ମସମର୍ପଣ ପାଇଁ ଆସିଲେ ମଧ୍ୟ ତାହାଙ୍କୁ ବନ୍ଦୀ କରି ତାଙ୍କର ବିଚାର ହୋଇ ଦଣ୍ଡ ଦିଆଯିବ । (Foreign Department Political Proceeding 1854 May)

ଏହି ପ୍ରକାର ପରିସ୍ଥିତିରେ 'ନାନାସାହେବ' ଅନନ୍ୟୋପାୟ ହୋଇ 'ଜଙ୍ଗବାହାଦୂର'ଙ୍କର ସର୍ତ୍ତାବଳୀ ମାନି ନେଲେ । 'ନାନାସାହେବ'ଙ୍କ ପାଖରେ 'ନୌଲଖ' ନାମକ, କେବଳ ପେଶୱାଙ୍କ ଦ୍ୱାରା ପରମ୍ପରା କ୍ରମେ ବ୍ୟବହୃତ ହେଉଥିବା, ଦୁର୍ଲଭ ମଣି, ମୁକ୍ତା, ହୀରା ଆଦି ଖଚିତ ଏକ ସୁଦୀର୍ଘ, ହାରଥିଲା ଓ ତାହା ଅତ୍ୟନ୍ତ ଦୁଷ୍ପ୍ରାପ୍ୟ ଓ ମୂଲ୍ୟବାନ ଥିଲା । ପୂର୍ବରୁ 'ଜଙ୍ଗବାହାଦୂର'ଙ୍କର ଆଖି ଏହି ହାର ଉପରେ ପଡ଼ିଥିଲା । ଏଣୁ ସେ ପରିସ୍ଥିତିରେ ଫାଇଦା ନେବା ପାଇଁ ପଛାଇଲେ ନାହିଁ । ଏହି ଦୁର୍ଲଭ ଅଳଙ୍କାରଟିକୁ 'ଜଙ୍ଗବାହାଦୂର', ତେୟାନବେ ହଜାର ଟଙ୍କାରେ କିଣିବାକୁ ଚାହିଁଲେ । ବହୁ ମୂଲ ଚାଲ ପରେ ପରେ, ଏହାର ବିନିମୟରେ ଜଙ୍ଗବାହାଦୂର 'ନାନାସାହେବ'ଙ୍କର କନିଷ୍ଠା ପତ୍ନୀ କାଶୀବାଈଙ୍କୁ ଦୁଇଟି ଗ୍ରାମର ସତ୍ୱ ପ୍ରଦାନ କଲେ । ଏହି ଗ୍ରାମ ଦୁଇଟିରୁ ରାଜାଙ୍କୁ ଖଜଣା ଦେବା ପରେ ଛଅ, ସାତ ହଜାର ଟଙ୍କା ଆୟ ହେଉଥିଲା । 'କାଶୀବାଈ' କାଠମାଣ୍ଡୁରେ

ରହୁଥିଲେ । ଜଙ୍ଗ୍‌ବାହାଦୂର ସର୍ତ୍ତ ମୁତାବକ ତାଙ୍କ ରହିବା ପାଇଁ ଏକ ଘର ଓ ଚଳିବା ପାଇଁ ମାସକୁ ଚାରିଶହ ଟଙ୍କା ଖଞ୍ଜି ଦେଇଥିଲେ । 'ନାନାସାହେବ'ଙ୍କର ମୃତ୍ୟୁ ସମ୍ବାଦ ପ୍ରଚାରିତ ହେବାର ସାତ ବର୍ଷପରେ, ଥରେ 'କାଶୀବାଈ'ଙ୍କର ପିତା ତାଙ୍କର କନ୍ୟାକୁ ଦର୍ଶନ ପାଇଁ କାଠମାଣ୍ଡୁ ଆସିଥିଲେ । ସେଠାରେ ସେ ନିଜର କନ୍ୟାକୁ ସଧବା ବେଶ ପରିଧାନ କରିବା ଦେଖି ଜିଜ୍ଞାସା କରନ୍ତେ ସେ ଉତ୍ତରରେ କହିଥିଲେ ଯେ 'ନାନାସାହେବ' ଜିବୀତ ଅଛନ୍ତି ଓ ପ୍ରତି ବର୍ଷ ଶିବରାତ୍ରି ଦିନ ସେ ଯେପରି ହେଉ ଦେଖା କରି ସାଥିରେ କିଛି ସମୟ ଗପସପ କରି ଚାଲିଥାନ୍ତି । (Foreign Department Political Proceed-ing)

'ଜଙ୍ଗବାହାଦୂର'ଙ୍କ ସହିତ ସମ୍ପର୍କ ଛିନ୍ନ ହେବା ପରେ 'ନାନାସାହେବ' ତାଙ୍କର ଅନୁଚର ବର୍ଗଙ୍କ ସହ ବଟ୍‌ଓ୍ୱାଲ ଜିଲ୍ଲାରେ ପ୍ରବେଶ କଲେ । ୧୮୫୯ ମସିହା ଅକ୍ଟୋବର ମାସରେ 'ଜଙ୍ଗ ବାହାଦୂର', 'କାଠମାଣ୍ଡୁ'ରେ ଥିବା ଇଂରାଜି ରେସିଡେ଼ନ୍ସ 'ରାମସେ' (Ramsay)ଙ୍କୁ, 'ନାନାସାହେବ' ସେପ୍ଟେମ୍ବର ଚ଼ବିଶ ତାରିଖ ଦିନ ମୃତ୍ୟୁ ବରଣ କରିଥିବା କଥା ଜଣାଇଥିଲେ । ପୁନଶ୍ଚ 'ନାନାସାହେବ' 'ଡ଼ାଙ୍ଗ୍' ଜିଲ୍ଲାରେ ଜ୍ୱରାକ୍ରାନ୍ତ ଅବସ୍ଥାରେ ମୃତ୍ୟୁ ବରଣ କରିଥିବା କଥା ମଧ୍ୟ ଜଣାଇଥିଲେ । (Foreign Department Political Consultation 4th Nov 1859) ଜୁନ୍‌ମାସ ଶେଷ ଭାଗରେ 'ନାନାସାହେବ', 'ବଟଓ୍ୱାଲରେ' ଥିବା ଜେନେରାଲ ବଦ୍ରି ନରସିଂହଙ୍କୁ 'ବାଳାସାହେବ' ଦୁଇମାସ ହେବ ଭୀଷଣ ରୋଗାକ୍ରାନ୍ତ ଥିବା ବିଷୟ ଜଣାଥିଲେ । ଭଲ ଡ଼ାକ୍ତରଙ୍କୁ ଖବର ଦେବା ପାଇଁ ମଧ୍ୟ ଉକ୍ତ ଚି଼ଠିରେ ଅନୁରୋଧ କରାଯାଇଥିଲା । (Foreign Dept. Political Proceding 5th Aug 1859)

ଜୁଲାଇ ପଚି଼ଶ ତାରିଖ ଦିନ ଜେନେରାଲ 'ସିଦ୍ଧିମାନ ସିଂହ' ଏକ ଚି଼ଠିରେ ନାନାସାହେବଙ୍କ ଛାଉଣୀରେ, ନାନାଙ୍କ ସହ ବହୁ ବ୍ୟକ୍ତି ମ୍ୟାଲେରିଆ ରୋଗାକ୍ରାନ୍ତ ହୋଇଥିବା କଥା ଜଣାଇଥିଲେ । (Foreign Dept. Pol. Consultation 1859 (159)

'ନାନାସାହେବ' ସେପ୍ଟେମ୍ବର ଚ଼ବିଶ ତାରିଖରେ ଦେହ ତ୍ୟାଗ କରିବା କଥାମଧ 'ସିଦ୍ଧିମାନ ସିଂହ' ଅକ୍ଟୋବର ୭ତାରିଖରେ ଖବର ପାଇଥିଲେ । ଏହି ଖବର 'କର୍ଣ୍ଣେଲ ରାମସେ'ଙ୍କ ମାଧ୍ୟମରେ ଗଭର୍ଣ୍ଣର ଜେନେରାଲଙ୍କୁ ମଧ ଜଣାଇ ଦିଆଯାଇଥିଲା । ଏତଦ୍‌ବ୍ୟତୀତ ଗଭର୍ଣ୍ଣର ଜେନେରାଲ ଭାରତରେ ଥିବା ଅନ୍ୟାନ୍ୟ ଇଂରାଜି ଅଫିସରମାନଙ୍କୁ ଠାରୁ 'ନାନାସାହେବ'ଙ୍କର ମୃତ୍ୟୁ ସମ୍ବାଦ ଶୁଣିବା ପରେ ଏବିଷୟରେ ସେ ସେକ୍ରେଟାରୀ ଅଫ ଷ୍ଟେଟ ସାର୍ ଚାର୍ଲସଉଡ୍ (Sir Charles Wood)ଙ୍କୁ ଜଣାଇଥିଲେ । କିନ୍ତୁ 'ଚାଲର୍ସଉଡ଼' ଏହା ବିଶ୍ୱାସ ନକରି ଅନୁସନ୍ଧାନ ଜାରି ରଖିବାକୁ

ନିର୍ଦ୍ଦେଶ ଦେଇଥିଲେ । 'ନାନାସାହେବ'ଙ୍କର ମୃତ୍ୟୁ ଖବର ପ୍ରଚାରିତ ହେବା ପରେ, 'ବାଳାରାଓ'ଙ୍କର ବିଧବା ସ୍ତ୍ରୀ, ଏକ ଖଣ୍ଡ ହାଡ଼ 'ସିଦ୍ଧିମାନ ସିଂହ'ଙ୍କୁ ନେଇ ତାହାଗଙ୍ଗାରେ ବିସର୍ଜନ କରିବାକୁ ଅନୁରୋଧ କରିଥିଲେ । ଏହି ଅସ୍ଥିଟି 'ନାନାସାହେବ'ଙ୍କର ବୋଲି ବିଶ୍ୱାସ କରାଯାଉଥିଲା । ଗୋଣ୍ଡା ଜିଲ୍ଲାରେ ଥିବା ବଳରାମପୁର ରାଜାଙ୍କ ଅଧିନରେ, 'ବଦ୍ରୀନାରାୟଣ ତିୱାରୀ' ନାମକ ଜଣେ ସିପାହୀ ରାଜାଙ୍କର ଆଦେଶ କ୍ରମେ 'ନାନାସାହେବ'ଙ୍କର ଗତିବିଧି ଲକ୍ଷ କରିବାକୁ ଯାଇଥିଲେ । ସେ ୧୮୫୯ ମସିହା ମେ ମାସରେ 'ଦେଓକର' ଉପତ୍ୟକାକୁ ଯାଇଥିଲେ ଓ ସେଠାରେ 'ନାନାସାହେବ' ଓ 'ବାଳାସାହେବ' 'ନାରାୟଣପୁର' ଗ୍ରାମରେ ଛାଉଣୀ ପକାଇ ରହିଥିବା ଦେଖିଥିଲେ । ତାହାପରେ ସେ ସେମାନଙ୍କୁ ଅନୁସରଣ କରି 'ଡ଼ାଙ୍ଗ୍' ଉପତ୍ୟକାକୁ ଯାଇଥିଲେ । ନିକଟସ୍ଥ ଏକ ଗ୍ରାମରେ ରହିଥିଲେ । ସେଠାରେ 'ବାଳାରାଓ' ଭୀଷଣ ଅସୁସ୍ଥଥିବା ସେ ବିଷୟ ଶୁଣିଥିଲେ । ପରେ ବହୁ ବ୍ରାହ୍ମଣ ମଧ୍ୟ ଶୁଦ୍ଧି କ୍ରିୟାରେ ଯୋଗ ଦେବା କଥା ଦେଖିଥିଲେ । ଏହି ସମୟରେ ସେ ନାନାସାହେବଙ୍କର ମୃତ୍ୟୁ ଖବର ପାଇଥିଲେ । (For., Dept., part A Sept. 1861 (562-3) ଗୁର୍ଖା ଅଫିସରଙ୍କ ଭୃତ୍ୟ ଥିବା 'ବଳରାମପୁର'ର ଅନ୍ୟ ଏକ ସିପାହୀ ରାମ ତିୱାରୀ ମଧ୍ୟ 'ବଟୱାଲ'ରେ ଥିବା ଛାଉଣୀକୁ 'ନାନା'ଙ୍କ ବିଷୟରେ ଖବର ସଂଗ୍ରହ କରିବାକୁ ଯାଇ ଅନୁରୂପ ମତ ପ୍ରଦାନ କରିଥିଲେ । 'ବାଳାସାହେବ' ତାଙ୍କ ସମ୍ମୁଖରେ ମୃତ୍ୟୁ ବରଣ କରିଥିଲେ ମଧ୍ୟ ତାହାର କୋଡ଼ିଏ ଦିନ ପରେ ସେ ନାନାସାହେବଙ୍କର ମୃତ୍ୟୁ ସମ୍ବାଦ ପାଇଥିଲେ । କିନ୍ତୁ ତାହା ସେ ସ୍ୱଚକ୍ଷୁରେ ଦେଖିନଥିଲେ । (For., pol., pro., Jan 1862/88) ୧୭ତମ ପଦାତିକ ବାହିନୀର ଜଣେ ଇଉରେସିୟ ଡ୍ରମ୍‌ବାଦକ ନାନାଙ୍କର ଛାଉଣୀରେ ଘାସକଟାଳୀ ରୂପେ ନିଯୁକ୍ତ ଥିଲେ । ସେ ମଧ୍ୟ ନାନାଙ୍କର ମୃତ୍ୟୁ ହୋଇଥିବା ପ୍ରକାଶ କରିଥିଲେ । ୬୦ତମ ପଦାତିକ ବାହିନୀର ଜଣେ ସିପାହୀ ମଧ୍ୟ ନାନାଙ୍କର ମୃତ୍ୟୁ ସ୍ୱଚକ୍ଷୁରେ ଦେଖିଥିବା ବିଷୟ ପ୍ରକାଶ କରିଥିଲେ । ଏହି ମୃତ୍ୟୁ ଜ୍ୱର ଜନିତ ବୋଲି ମଧ୍ୟ ସେ ପ୍ରକାଶ କରିଥିଲେ । (For., Pol., Por., 30Dec 1859(530)

ଏହିପରି ଭାବରେ 'ନାନାଙ୍କର' ମୃତ୍ୟୁକୁ ଏକପ୍ରକାର ସ୍ୱୀକାର କରି ନିଆହୋଇ ଥିଲା । 'Freind India' ନାମକ ପତ୍ରିକାରେ ୧୮୬୦ ମସିହା ନଭେମ୍ବର ମାସ ବାଇଶତାରିଖରେ 'ନାନାସାହେବ'ଙ୍କ ଉପରେ ଏକ ଚାଞ୍ଚଲ୍ୟକର ତଥ୍ୟ ପ୍ରକାଶ ପାଇଲା । ବ୍ରିଜ୍‌ମ୍ୟାନଙ୍କର (Mr. Bridgeman) 'ଗୋରଖପୁର'ରେ ଥିବା କୃଷି ଉଦ୍ୟାନରେ ନିଯୁକ୍ତ ଏକ ଭୃତ୍ୟକୁ ହରଣଚାଳ କରି ନିଆଯାଇଥିଲା । ସେ ଅଗଷ୍ଟ ମାସ ୧୮ତାରିଖରେ ହାଜର ହୋଇ କିଛି ଦିନ ପରେ ରୋଗାକ୍ରାନ୍ତ ହୋଇ ମୃତ୍ୟୁ ବରଣ କରିଥିଲା । ମୃତ୍ୟୁ ପୂର୍ବରୁ ସେ 'ନାନାସାହେବ'ଙ୍କ ସିପାହୀ ମାନଙ୍କ ଦ୍ୱାରା ହରଣଚାଳ ହୋଇ ସେମାନଙ୍କ

ସହ ପନ୍ଦର ଦିନ ପାର୍ବତ୍ୟ ଅଞ୍ଚଳରେ ବୁଲିଥିବା ବିଷୟ ପ୍ରକାଶ କରିଥିଲା । ତାହାର ବର୍ଣ୍ଣନାରୁ ଅନୁମାନ କରାଗଲା ଯେ 'ନାନାସାହେବ' ତିବ୍ବତରେ ଅଛନ୍ତି ।

ଏହା ପରେ 'କର୍ଣ୍ଣେଲ ରାମସେ' 'ନାନା'ଙ୍କ ସମ୍ବନ୍ଧରେ ବହୁ ଅନୁସନ୍ଧାନ କରିଥିଲେ । ଜଣେ ସାଧୁ ତାଙ୍କୁ ନାନାସାହେବ 'ବଦ୍ରିନାଥ', 'କେଦାରନାଥ' ଭ୍ରମଣ କରି ମୁକ୍ତିନାଥ ଦିଗରେ ଯିବା ବିଷୟରେ ଜଣାଇଥିଲେ । 'ନାନା' ଏକ ହାତୀରେ ବସି ବ୍ରାହ୍ମଣ ଅଭ୍ୟାଗତମାନଙ୍କୁ ଦାନ ଦେଇଯାଉଥିବାର ମଧ ସେ ଜଣାଇଲେ । ଏ ମଧ୍ୟରେ ବହୁ ବ୍ୟକ୍ତିଙ୍କୁ 'ନାନାସାହେବ' ବୋଲି ସନ୍ଦେହ କରି ଗିରଫ କରାଗଲା । ଏପରିକି ସିନ୍ଧିଆ ମଧ ଜଣକୁ 'ନାନାସାହେବ' ବୋଲି ସନ୍ଦେହ କରି ଇଂରାଜିମାନଙ୍କୁ ହସ୍ତାନ୍ତର କରିଥିଲେ । କିନ୍ତୁ ଏହି ଗିରଫ ହୋଇଥିବା ବ୍ୟକ୍ତିମାନେ ନିର୍ଦ୍ଦିଷ୍ଟ ଭାବରେ ଚିହ୍ନଟ ହୋଇନପାରିବାରୁ ସେମାନଙ୍କୁ ଖଲାସ କରିଦିଆଯାଇଥିଲା । 'ନାନାସାହେବ' 'ମେୱାର' ଆଦି ଅଞ୍ଚଳ ବୁଲି ସେଠାରେ ରାଜପୁତମାନଙ୍କୁ ସଂଗଠିତ କରିବାର ସମ୍ବାଦ ମିଳିଲା । ତାହା ମଧ ମିଥ୍ୟା ପ୍ରମାଣିତ ହେଲା । (Times, 5th August extract quoted from Times of India)

କୌଣସି ନିର୍ଦ୍ଦିଷ୍ଟ ତଥ୍ୟ ନପାଇ ଇଂରାଜିମାନେ ଆଉ ନାନାଙ୍କ ସମ୍ବନ୍ଧରେ ଆଗ୍ରହ ପ୍ରକାଶ କଲେ ନାହିଁ । କିନ୍ତୁ 'ନାନାସାହେବ'ଙ୍କ ବିଷୟରେ ବହୁ ବିଦେଶୀ ପତ୍ରିକା ବହୁଖବର ଛାପିବାକୁ ଲାଗିଲେ । ସେହି ସମୟରେ 'ଡ଼େଲିମେଲ୍' (daily Mail) ପତ୍ରିକାର 'କନଷ୍ଟାଣ୍ଟିନୋପଲ'ରେ ରହୁଥିବା ପ୍ରତିନିଧି ଜଣାଇଥିଲେ ଯେ 'ନାନାସାହେବ', ରାଣୀ ମହଲରେ ଜଣେ ଇଂରାଜି କ୍ୟାପ୍‌ଟେନ୍‌ଙ୍କର କନ୍ୟା ଆଲିସ କ୍ଲେଟନ୍ (Alice Clayton)ନାମକ ଏକ ସୁନ୍ଦରୀ ତରୁଣୀଙ୍କୁ ରଖିଥିଲେ । ତାଙ୍କ ସହିତ 'ନାନାସାହେବ' କୋଡ଼ିଏ ବର୍ଷ ବିଭିନ୍ନ ଦିଗରେ ଭ୍ରମଣ କରିବା ପରେ ମକ୍କାରେ ଆସି ଦୁଇ ବର୍ଷ ରହିଥିଲେ । ତାହାପରେ ସେମାନେ 'କନଷ୍ଟାଣ୍ଟିନୋପଲ'ରେ ଦଶ ବର୍ଷ ଥିଲେ । (Extraspecial Correspondance by Price, p.45)

୧୮୭୮ ମସିହାରେ 'ଇସ୍ତାନବୁଲ'ରେ ଥିବା ସମସ୍ତ ଭାରତୀୟ, 'ନାନାସାହେବ' 'ମକ୍କା'ରେ ରହୁଥିବା ବିଶ୍ୱାସ କରୁଥିଲେ । ଏପରିକି ସେମାନଙ୍କ ମଧ୍ୟରୁ ଜଣେ ୧୮୭୮ମସିହା ଫେବୃଆରୀ ମାସରେ 'ନାନାସାହେବ'ଙ୍କୁ ମକ୍କାରେ ଦେଖିଥିବା କଥା ମଧ ଜଣାଇଥିଲେ । ନାନାଙ୍କର ଶେଷ ଜୀବନ ଉପରେ ଗବେଷଣା କରିଥିବା 'ଲାଣ୍ଡନ'ମଧ 'ନାନାସାହେବ' ୧୮୯୫ ମସିହାରେ 'ରାଜକୋଟ'ରେ ଥିବା ବିଶ୍ୱାସ କରନ୍ତି । କିନ୍ତୁ ଯାହାହେଉନା କାହିଁକି 'ନାନା'ଙ୍କର ଶେଷଜୀବନ ଉପରେ କୌଣସି ନିର୍ଦ୍ଦିଷ୍ଟ ଓ ସନ୍ଦେହମୁକ୍ତ ତଥ୍ୟର ପ୍ରମାଣ ସରକାରୀ ରେକର୍ଡ଼ ତଥା ଇତିହାସରୁ ମିଳୁନଥିବା ବେଳେ, ତାହା ଏକ ରହସ୍ୟମୟ ପ୍ରହେଳିକା ହୋଇ ଚିରଦିନ ପାଇଁ ରହିଗଲା ।



# ଲକ୍ଷ୍ମୀବାଈ

୧୮୫୮ମସିହାରେ, ଇଂରାଜିମାନେ, ହିମାଳୟ ଠାରୁ ବିନ୍ଧ୍ୟ ପର୍ବତ ମଧ୍ୟରେ ଥିବା ସମସ୍ତ ସ୍ଥାନ ଅଧିକାର କରିବାକୁ ଯୋଜନା କରିଥିଲେ । ବିଦ୍ରୋହ ଫଳରେ ଏହି ସମସ୍ତ ସ୍ଥାନ ଗୁଡ଼ିକ ସେତେବେଳକୁ ବିଦ୍ରୋହୀମାନଙ୍କ କବଳରେ ଥିଲା । ଯୋଜନା ଅନୁସାରେ ସମୁଦାୟ ଇଲାକାକୁ ଦୁଇଟି ଭାଗରେ ବିଭକ୍ତ କରାଗଲା । 'ସାର୍ କଲିନ୍' ଏହି ଯୋଜନା ଅନୁସାରେ 'ଏଲ୍ହାବାଦ' ଠାରୁ 'ଗଙ୍ଗା' ଓ 'ଯମୁନା'ର ଉତ୍ତର ଦିଗକୁ ମାଡ଼ିଯାଇ 'ଦୋବ', 'ଲକ୍ଷ୍ନୌ', 'କାନପୁର', 'ବିହାର', 'ବନାରସ', 'ଅବଧ,' ରୋହିଲାଖଣ୍ଡ ଆଦି ଅଞ୍ଚଳ ପୁନର୍ବାର ଅଧିକାର ଭୁକ୍ତ କରିବା ବିଷୟ ପୂର୍ବରୁ ବର୍ଣ୍ଣନା କରାଯାଇଛି । ସାର୍ କଲିନ୍, ଯମୁନାର ଉତ୍ତର ଭାଗରୁ ହିମାଳୟ ଦିଗକୁ ଆଗେଇ ଯାଉଥିବା ବେଳେ, ସାର୍ ହ୍ୟୁଗ୍ ରୋଜ୍, (Sir Hugh Rose) ଯମୁନା ଓ ବିନ୍ଧ୍ୟ ପର୍ବତର ଦକ୍ଷିଣରେ ଥିବା ଅଞ୍ଚଳମାନଙ୍କୁ ଅଧିକାର ଭୁକ୍ତ କରିବାକୁ ଲାଗିଲେ । ହ୍ୟୁଗ୍ ରୋଜଙ୍କୁ 'ହାଇଦ୍ରାବାଦ', 'ଭୋପାଳ' ଏବଂ ଅନ୍ୟାନ୍ୟ ଇଂରାଜିଭକ୍ତ ରାଜାମାନେ ସହାୟତା କରୁଥିଲେ । ଏତଦ୍‌ବ୍ୟତୀତ ମାଦ୍ରାସ, ବମ୍ବେ ଓ ହାଇଦ୍ରାବାଦର ସୈନ୍ୟ ବାହିନୀ ତାଙ୍କ ସହିତ ଯୋଗଦାନ କରିଥିଲେ । ଦକ୍ଷିଣଭାଗ ଅଧିକାର କରିବାକୁ ଯାଉଥିବା ଏହି ବାହିନୀକୁ ଦୁଇ ଭାଗରେ ବିଭକ୍ତ କରାହୋଇଥିଲା । 'ବ୍ରିଗେଡ଼ିୟର ହ୍ୱିଟ୍‌ଲକ୍' (Brigadier Whitlock)ଙ୍କ ଅଧିନରେ ଏକ ବାହିନୀ 'ଜବଲପୁର'ଠାରୁ ଅଭିଯାନ ଆରମ୍ଭ କରିଥିଲା । 'ହ୍ୟୁଗ୍ ରୋଜ'ଙ୍କ ବାହିନୀ, 'ମହୌ'ରୁ ୧୮୫୮ ମସିହା ଜାନୁଆରୀ ଛଅତାରିଖରୁ ଅଭିଯାନ ଆରମ୍ଭ କରି ରାୟଗଡ଼ ଦୁର୍ଗ ଦଖଲ କରିଥିଲା । ତାହାପରେ ସେ 'ସାଗର' ଦିଗକୁ ଆଗେଇଗଲେ ଓ ତାହା ଅଧିକାର କରି ଦକ୍ଷିଣ ଦିଗକୁ ଆଗେଇଯାଇ, ମାର୍ଚ୍ଚ ୧୦ତାରିଖ ଦିନ 'ବନପୁର' ଦଖଲ କଲେ । ଏହାପରେ ସେ 'ଚ୍ନ୍ଦେରୀ' ଦୁର୍ଗକୁ ନିଜର ଅଧିକାର ଭୁକ୍ତ କରି ମାର୍ଚ୍ଚ କୋଡ଼ିଏ ତାରିଖରେ, ଝାନ୍‌ସୀଠାରୁ ଚଉଦମାଇଲ ଦୂରରେ ଛାଉଣୀ ପକାଇ ଅବସ୍ଥାନ କଲେ । ସେତେବେଳେ ବିଭିନ୍ନ ସ୍ଥାନରେ ପରାଜୟ ବରଣ କରିଥିବା ବିଦ୍ରୋହୀ ସୈନ୍ୟମାନେ କ୍ରମେ 'ଝାନ୍‌ସୀ'ରେ ଏକତ୍ରିତ ହେଉଥିଲେ । ସେ ସମୟରେ ଝାନ୍‌ସୀ, ବିଦ୍ରୋହୀମାନଙ୍କର ଏକ ଆଡ୍ଡାସ୍ଥଳୀରେ ପରିଣତ ହୋଇଥିଲା । ଏଣୁ, 'ହ୍ୟୁଗ୍ ରୋଜ'ଙ୍କୁ ଚାର୍ଖରିର ରାଜାଙ୍କୁ ବିଦ୍ରୋହୀଙ୍କ କବଳରୁ ମୁକ୍ତ କରିବାକୁ ସାର୍ କଲିନ୍‌ଙ୍କର ଆଦେଶ ଥିଲେ ମଧ୍ୟ ପରିସ୍ଥିତି ଦୃଷ୍ଟିରୁ ସେ ଝାନ୍‌ସୀ ଆକ୍ରମଣର କରିବା ପାଇଁ ମନସ୍ଥ କରି ସେ ଦିଗରେ ଆଗେଇଚାଲିଲେ । ରାଣୀଙ୍କର

ଆଦେଶରେ ସୈନ୍ୟମାନେ 'ଝାନ୍‌ସୀ' ଦୁର୍ଗର ଚତୁର୍ଦ୍ଦିଗରେ ଥିବା ଜମି ଗୁଡ଼ିକରୁ ଗଛଲତା, ଏପରିକି ଘାସମାନ ମଧ୍ୟ ନିର୍ମୂଳ କରିଦେଇ ତାହାକୁ ବାସସ୍ଥାନର ଅନୁପଯୋଗୀ କରିଦେଇଥିଲେ । ସେଠାରେ ଆଶ୍ରୟ ନେବାପାଇ ଏକ ବୃକ୍ଷ ମଧ୍ୟ ନଥିଲା । ଏହି ପରିସ୍ଥିତିରେ ଇଂରାଜି ଛାଉଣୀକୁ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ ତଥା ଅସ୍ତ୍ରଶସ୍ତ୍ରାଦି ଯୋଗାଣ କରିବା ସମ୍ଭବ ନଥିଲା । କୌଣସି ପ୍ରକାରେ 'ଟେହରୀର' ରାଜା ଓ ସିନ୍ଧିଆଙ୍କ ଦ୍ୱାରା ସୈନ୍ୟମାନଙ୍କୁ କାଠ, ଘାସ ଓ ପରିବା ଆଦି ଯୋଗାଇ ଦିଆଯାଉଥିଲା ।

'ଝାନ୍‌ସୀ'ର ରାଣୀଙ୍କ ପାଖରେ 'ବନପୁର'ର ରାଜା, 'ଶାହାଗଡ଼ର ରାଜା' ଓ 'ବୁନ୍ଦେଲଖଣ୍ଡର ସର୍ଦ୍ଦାର' ଗଣ ତଥା ସାହସୀ ଓ ଦୁର୍ଦ୍ଧର୍ଷ ଠାକୁରମାନେ ଏକତ୍ରିତ ହୋଇଥିଲେ । ଦେୱାନ ଲକ୍ଷ୍ମଣରାଓ ଓ ମୋରୋପନ୍ତ ତାମ୍ବେ ମଧ୍ୟ ରାଣୀଙ୍କର ପରାମର୍ଶଦାତାରୂପେ କାର୍ଯ୍ୟ କରୁଥିଲେ । ଇଂରାଜିମାନଙ୍କର ଆକ୍ରମଣର ଜବାବ ଦେବାପାଇ ଝାନ୍‌ସୀ ଦୁର୍ଗରେ ସମସ୍ତ ପ୍ରକାର ଆୟୋଜନ କରାଗଲା । ଏହାର ନେତୃତ୍ୱ, ସ୍ୱୟଂ ରାଣୀ ଲକ୍ଷ୍ମୀବାଈ ନେଲେ । ତାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ, ଦୁର୍ଗର ସମସ୍ତ ଫାଟକ ମରାମତି କରାଯାଇ ସୁଦୃଢ଼ କରାଗଲା । କମାଣ ଗୁଡ଼ିକ ଯଥାସ୍ଥାନରେ ସନ୍ନିବେଶ କରାଗଲା । ବିଶିଷ୍ଟ ଗୋଲନ୍ଦାଜମାନଙ୍କୁ ବାଛି ବାଛି ସେ ସ୍ୱୟଂ କମାଣ ବାହିନୀରେ ନିଯୁକ୍ତ କଲେ । ବ୍ରାହ୍ମଣମାନେ ମନ୍ଦିରରେ ଯୁଦ୍ଧ ଜୟ ପାଇଁ ପ୍ରାର୍ଥନା କରୁଥିଲେ । ଝାନ୍‌ସୀର ସମସ୍ତ ସୈନ୍ୟ ତଥା ନାଗରିକମାନେ ମଧ୍ୟ ନିଜର ଅସ୍ତ୍ରଶସ୍ତ୍ର ସହ ପ୍ରସ୍ତୁତ ହୋଇ ରହିଲେ । ସେମାନଙ୍କୁ ଗୋଳାବାରୁଦ ତଥା ଖାଦ୍ୟଦ୍ରବ୍ୟାଦି ଯୋଗାଇବା ପାଇଁ ରାଣୀଙ୍କ ନେତୃତ୍ୱରେ ଥିବା ନାରୀସୈନ୍ୟମାନେ ଆଗେଇଆସିଲେ । ଏହିପରି ଲକ୍ଷ୍ମୀବାଈଙ୍କର ଅସାଧାରଣ ନେତୃତ୍ୱରେ ସମସ୍ତେ ପ୍ରଭାବିତ ହୋଇ ଯୁଦ୍ଧମୁଖୀ ହୋଇ ରହିଲେ ।

ତେଇଶି ତାରିଖ ରାତ୍ରିକାଳରେ ଦୁର୍ଗ ମଧ୍ୟରେ ଯୁଦ୍ଧର ଭେରୀତୁରୀ ବାଜିଉଠିଲା, ମଶାଲମାନ ଜଳାଗଲା । କିଛି ଗୁଳି ମଧ୍ୟ ଫୁଟାଗଲା । ଚବିଶତାରିଖ ଦିନଟି ଅପେକ୍ଷମାଣ ମୁହୂର୍ତ୍ତ ମଧ୍ୟରେ ବିତିଗଲା । ପଚିଶ ତାରିଖ ଦିନ ଇଂରାଜିସେନାଙ୍କ ଆଡୁ ଆକ୍ରମଣ ଆରମ୍ଭ କରାଗଲା । ଦୁର୍ଗ ମଧ୍ୟକୁ ପ୍ରବଳ ଗୁଳି ବର୍ଷଣ କରାଯିବା ସଙ୍ଗେ ସଙ୍ଗେ ଅନବରତ କମାଣରୁ ଗୋଳା ନିକ୍ଷେପ କରାଗଲା । ଦୁର୍ଗମଧ୍ୟରୁ ମଧ୍ୟ ଏହାର ଜବାବ ଦିଆଗଲା । ଛବିଶ ତାରିଖ ଦିନ ମଧ୍ୟାହ୍ନରେ ଇଂରାଜିମାନେ ଦୁର୍ଗର ଦକ୍ଷିଣ ଦିଗର ଫାଟକରୁ ବିଦ୍ରୋହୀମାନେ କରୁଥିବା ଗୋଳାବର୍ଷଣକୁ ନୀରବ କରିଦେଲେ । ଏହା ଦେଖି ପଶ୍ଚିମ ଦିଗ ଫାଟକର ଗୋଲନ୍ଦାଜମାନେ ନିଜର କମାଣ ବୁଲାଇ ନେଇ ସେ ଦିଗକୁ ଗୋଳାବର୍ଷଣ କରିବାକୁ ଲାଗିଲେ । ଏହି ଭୟଙ୍କର ଗୋଳାବର୍ଷଣ ଇଂରାଜି କମାଣକୁ ନୀରବ

କରିଦେଲା । ଏହା 'ଗୋଲାମ ଘୋଷଖାଁ' ନାମକ ଏକ ବିଶିଷ୍ଟ ଗୋଲନ୍ଦାଜଙ୍କର ନିର୍ଭୁଲ କମାଣ ଚାଳନାର ଫଳଥିଲା । ତାଙ୍କ ସହିତ 'ନାଥେଖାଁ' ନାମକ ଆଉଜଣେ ଗୋଲନ୍ଦାଜ ମଧ୍ୟ ଅଂଶ ଗ୍ରହଣ କରିଥିଲେ । ଏମାନଙ୍କୁ ରାଣୀ ରୂପାସାଙ୍ଗୁ ଦେଇ ସମ୍ମାନିତ କଲେ ।

ଚତୁର୍ଥ ଓ ପଞ୍ଚମ ଦିନ ଘୋର ଆକ୍ରମଣ ଓ ପ୍ରତ୍ୟାକ୍ରମଣ ଲାଗିରହିଲା । ବିଦ୍ରୋହୀମାନଙ୍କର କମାଣ ଚାରି ପାଞ୍ଚ ଘଣ୍ଟା ଧରି ଅନବରତ ଗୋଳାବର୍ଷଣ କରିବା ଫଳରେ ଇଂରାଜି କମାଣ ଗୁଡ଼ିକ ନୀରବ ହୋଇଗଲା ଏବଂ ଇଂରାଜି ସେନାର ବହୁ କ୍ଷୟକ୍ଷତି ଘଟିଲା । ଏହା ପରେ ପରେ ଇଂରାଜିମାନଙ୍କ ଆଡୁ ପ୍ରବଳ ଗୋଳାବର୍ଷଣ କରାଗଲା ଯାହାକି ବିଦ୍ରୋହୀମାନଙ୍କର କମାଣକୁ ନୀରବ କରିଦେଲା । ସପ୍ତମ ଦିବସର ସାୟାହ୍ନରେ, ବିଦ୍ରୋହୀମାନଙ୍କର ବାମଭାଗରେ ଥିବା କମାଣ ଗୁଡ଼ିକ ଅକାମୀ ହୋଇଗଲା । ଦୃଢ଼ଭାବରେ ଧରିରଖିବା ପାଇଁ ସେଥିରେ ସଂଯୁକ୍ତ ହୋଇଥିବା ପଥରବନ୍ଧନୀ ଗୁଡ଼ିକ ଭାଙ୍ଗିଗଲା । ଏହା ସଙ୍ଗେ ସଙ୍ଗେ ଦୁର୍ଗଉପରେ ଶତ୍ରୁର କମାଣ ଓ ଗୁଳିରୁ ରକ୍ଷାପାଇବା ପାଇଁ ସାମୟିକ ଭାବରେ ତିଆରି ହୋଇଥିବା ଅବରୋଧ ପ୍ରାଚୀର ଗୁଡ଼ିକ ଇଂରାଜିମାନଙ୍କର ଗୁଳି ଗୋଳା ମାଡ଼ରେ ଧ୍ୱଂସ ହୋଇଗଲା । ଏହା ସତ୍ତ୍ୱେ ରାଣୀଙ୍କର ନେତୃତ୍ୱରେ ରାତାରାତି ଏଗାରଟି ଅବରୋଧ ନିର୍ମାଣ ହେବା ସଙ୍ଗେ ସଙ୍ଗେ କମାଣ ଖଞ୍ଜାଥିବା ପଥର ବନ୍ଧନୀ ଗୁଡ଼ିକ ମଧ୍ୟ ମରାମତି କରାଗଲା । ଶତ୍ରୁ ପକ୍ଷର କ୍ଷୟ କ୍ଷତି ଦେଖି ଇଂରାଜିମାନେ ନିଜର ଛାଉଣୀରେ ନିଶ୍ଚିନ୍ତରେ ନିଦ୍ରା ଯାଇଥିଲେ । ସକାଳୁ ବିଦ୍ରୋହୀମାନଙ୍କର ପ୍ରସ୍ତୁତି ଦେଖି ସେମାନେ ଆଶ୍ଚର୍ଯ୍ୟ ହୋଇଗଲେ ।

ଅଷ୍ଟମ ଦିବସରେ ଇଂରାଜିମାନେ 'ଶଙ୍କର କିଲ୍ଲା' ଦିଗକୁ ଆଗେଇଚାଲିଲେ । ସେମାନେ, କ୍ଷମତାଶାଳୀ ଦୂରବୀକ୍ଷଣ ଯନ୍ତ୍ର ଦ୍ୱାରା ନିରୀକ୍ଷଣ କରି, କିଲ୍ଲାମଧ୍ୟସ୍ଥ ସରୋବରକୁ ଗୋଳାବର୍ଷଣ କଲେ । ଫଳରେ କେହି ସେହି ସରୋବରର ବ୍ୟବହାର କରିପାରିଲେ ନାହିଁ । ନିତ୍ୟକର୍ମରେ ବ୍ୟାଘାତ ଦେଖାଗଲା । ଚାରିଜଣ ଜଳ ସଂଗ୍ରହ କରିବାକୁ ଯାଇ ଗୋଳାମାଡ଼ରେ ମୃତ୍ୟୁ ବରଣ କଲେ । ଏହା ଦେଖି ବିଦ୍ରୋହୀମାନେ ପଶ୍ଚିମ ଓ ଦକ୍ଷିଣ ଫାଟକରେ ଥିବା କମାଣକୁ ନୀରବ କରିଦେବା ଫଳରେ ସରୋବରରୁ ଜଳ ବ୍ୟବହାର କରିବା ସମ୍ଭବ ହୋଇଥିଲା । ଦୁର୍ଗ ମଧ୍ୟରେ ଥିବା ଏକ ତେନ୍ତୁଳି ବଗିଚାରେ, ବିଦ୍ରୋହୀମାନଙ୍କର ବାରୁଦ ତିଆରି କାରଖାନା ଥିଲା । ଏହା ଉପରେ ଶତ୍ରୁ ପକ୍ଷର ଗୋଳାପଡ଼ିବା ଫଳରେ ତିରିଶ ଜଣ ପୁରୁଷ ଓ ଆଠ ଜଣ ମହିଳା ପ୍ରାଣ ହରାଇଲେ । ଗୁଳିଗୋଳାର ପ୍ରବଳ ଗର୍ଜନ ଓ ସୈନ୍ୟମାନଙ୍କର ଚିତ୍କାରରେ ଭରପୂର ହୋଇ ଯୁଦ୍ଧ ଅତ୍ୟନ୍ତ ଭୟଙ୍କର ରୂପ ନେଲା । କିଛି ଗୋଳନ୍ଦାଜ ଓ ବହୁସଂଖ୍ୟକ ବିଦ୍ରୋହୀ ସୈନ୍ୟ

ମୃତାହତ ହେଲେ । ସେମାନଙ୍କ ସ୍ଥାନରେ ତୁରନ୍ତ ଅନ୍ୟମାନଙ୍କୁ ନିଯୁକ୍ତି ଦିଆଗଲା । ଲକ୍ଷ୍ମୀବାଈ, ଅତୁଳ ପରାକ୍ରମ ଓ କଠୋର ପରିଶ୍ରମ ସହ ସମସ୍ତ ବିଷୟ ସ୍ୱୟଂ ବୁଝାଶୁଣା କରୁଥିଲେ । ଉପଯୁକ୍ତ ନିର୍ଦ୍ଦେଶ ଓ ପରାମର୍ଶ ମଧ୍ୟ ଦେଉଥିଲେ । ଏଥିରେ ସୈନ୍ୟମାନେ ଅତ୍ୟନ୍ତ ଉତ୍ସାହିତ ହୋଇ ପ୍ରବଳ ପରାକ୍ରମରେ ଯୁଦ୍ଧ ଚାଲୁରଖିଥିଲେ । ମାର୍ଚ୍ଚ ୩୧ ତାରିଖ ସୁଦ୍ଧା ଇଂରାଜିମାନେ, ବିଦ୍ରୋହୀମାନଙ୍କର ଦୃଢ଼ ଅବରୋଧ ଫଳରେ ଦୁର୍ଗ ମଧ୍ୟକୁ ପ୍ରବେଶ କରିବାର ସକ୍ଷମ ହେଲେ ନାହିଁ ।

ଏହିପରି ସମୟରେ 'ତାନ୍ତ୍ୟାଟୋପେ' ରାଣୀଙ୍କଠାରୁ ଚିଠିପାଇ ତାଙ୍କୁ ସାହାଯ୍ୟ କରିବା ପାଇଁ, ନିଜର ବାହିନୀ ସହ 'ବେଟଓ୍ୱା' ନିକଟରେ ପହଞ୍ଚିଲେ । 'ତାନ୍ତ୍ୟାଙ୍କର' ବାଇଶହଜାର ସୈନ୍ୟ ବିଶିଷ୍ଟ ଏକ ବିଶାଳସେନା ଥିଲା । ଯୋଜନା ଥିଲା ଯେ 'ତାନ୍ତ୍ୟା', ଇଂରାଜିମାନଙ୍କର ସମ୍ମୁଖ ଭାଗ ଓ ରାଣୀ ପଶ୍ଚାତ ଭାଗ ଏକ ସମୟରେ ଆକ୍ରମଣ କରି ଇଂରାଜିସେନାକୁ ଛିନ୍‌ଛତ୍ର କରିବେ ।

କିନ୍ତୁ ଇଂରାଜମାନେ ଏ ଯୋଜନା ବୁଝିପାରି ଏପ୍ରିଲ ପହିଲା ଦିନ, ଏକ ସମୟରେ 'ତାନ୍ତ୍ୟା, ଓ 'ରାଣୀ'ଙ୍କର ବାହିନୀକୁ ଆକ୍ରମଣ କଲେ । ଫଳରେ ଏ ଯୋଜନା ପଣ୍ଡ ହେଲା । ବିଦ୍ରୋହୀ ସୈନ୍ୟମାନେ ମଧ୍ୟ ଏହି ଯୁଦ୍ଧରେ ବିଶେଷ ପଟୁତା ପ୍ରଦର୍ଶନ ନ କରିବା ଫଳରେ ଏକପକ୍ଷରେ ବିଦ୍ରୋହୀମାନଙ୍କର ସମସ୍ତ ସାମରିକ ଯୋଗାଣ ଇଂରାଜମାନଙ୍କ ହାତରେ ପଡ଼ିବା ସହ 'ତାନ୍ତ୍ୟା'ଙ୍କର ବାହିନୀର କମାଣ ଗୁଡ଼ିକ ମଧ୍ୟ ସେମାନେ ଦଖଲ କରିଗଲେ । ଏହି ଯୁଦ୍ଧରେ ପନ୍ଦର ଶହ ବିଦ୍ରୋହୀ ସୈନ୍ୟ ପ୍ରାଣ ହରାଇଲେ । କିନ୍ତୁ ରାଣୀ 'ଲକ୍ଷ୍ମୀବାଈ' ଏଥିରେ ହତୋତ୍ସାହ ନହୋଇ ଜୀବନ ମରଣ ସଂଗ୍ରାମ ଅବ୍ୟାହତ ରଖିଲେ ।

ଏପ୍ରିଲ ତିନି ତାରିଖ ଦିନ ଇଂରାଜସେନା, ଦୁର୍ଗକୁ ସବୁ ଦିଗରୁ ମାଡ଼ି ଆସିଲେ । ରାଣୀ ମଧ୍ୟ ଅତୁଳ ପରାକ୍ରମରେ ବିଦ୍ୟୁତ୍ ପରି ଯୁଦ୍ଧ କ୍ଷେତ୍ରରେ ଘୂରିବୁଲି ଶତ୍ରୁକ୍ଷୟ କରିବା ସଙ୍ଗେ ସଙ୍ଗେ ନିଜର ସୈନ୍ୟମାନଙ୍କୁ ଆକ୍ରମଣ ପାଇଁ ଉତ୍ସାହିତ କରିଥିଲେ । 'ଗୁଲାମ ଘୋଷ ଖାଁ', 'କୁଆର ଖୁଦାବକ୍ସ' ଆଦି ବିଶିଷ୍ଟ ଗୋଲନ୍ଦାଜମାନେ ପ୍ରାଣ ହରାଇଲେ । ଇଂରାଜମାନେ ଦୁର୍ଗର ମୁଖ୍ୟଦ୍ୱାରକୁ ପ୍ରବଳ ଆକ୍ରମଣ କରିବା ସଙ୍ଗେ ସଙ୍ଗେ ଆଠୋଟି ଭିନ୍ନ ଭିନ୍ନ ସ୍ଥାନରେ ନିଶୁଣୀ ପକାଇ ଦୁର୍ଗ ମଧ୍ୟକୁ ପ୍ରବେଶ କରିବା ପାଇଁ ଯୋଜନା କଲେ । 'ଲେଫଟ୍‌ନାଣ୍ଟ ମେଇକ୍ଲଜନ୍', 'ଡ଼ିକ୍', 'ଫକ୍ସ', 'ବୋନ୍‌ସ୍' (Leiutenant Meikle John,Dick, Fox, Bones), ଆଦି ସେନାପତିମାନେ ସୈନ୍ୟମାନଙ୍କୁ ଉତ୍ସାହିତ

କରି ନିଶୁଣୀରେ ଚଢିବାକୁ ଯାଇ ମୃତ୍ୟୁ ବରଣ କଲେ । ମୁଖ୍ୟ ଦ୍ୱାରକୁ ସବୁ ପ୍ରକାରେ ରକ୍ଷା କରାଗଲା । କିନ୍ତୁ ଦୁର୍ଭାଗ୍ୟକୁ ଦକ୍ଷିଣ ଦ୍ୱାରର ପତନ ହେବା ଫଳରେ ଇଂରାଜମାନେ ଦୁର୍ଗ ମଧ୍ୟକୁ କିଛିବାଟ ମାଡ଼ି ଆସି ପ୍ରବଳ ହତ୍ୟା, ଲୁଟ୍ ତରାଜ, ଆଦି ଧ୍ୱଂସ ଲୀଳା ସଂଘଟିତ କଲେ । ରାଣୀ ଯୁଦ୍ଧର ଅବସ୍ଥା ନିରୀକ୍ଷଣ କରୁଥିଲେ । ଦକ୍ଷିଣ ଦ୍ୱାର ମଧ୍ୟରେ ଶତ୍ରୁର ପ୍ରବେଶ ଖବର ଶୁଣି ସେ ତୁରନ୍ତ ପନ୍ଦରଶହ ସୈନ୍ୟଙ୍କ ସହ ଯୁଦ୍ଧ ପ୍ରାନ୍ତରରେ ଅବତୀର୍ଣ୍ଣ ହେଲେ । ସେ ଦକ୍ଷିଣ ଦ୍ୱାର ଆଡକୁ ମାଡ଼ିଯାଇ ପ୍ରବଳ ପରାକ୍ରମରେ ଶତ୍ରୁକୁ ଅବରୋଧ କରିବାକୁ ଲାଗିଲେ । ଏଥିରେ ବହୁ ଇଂରାଜ ମୃତାହତ ହେଲେ । ଅନ୍ୟମାନେ ସହର ମଧ୍ୟକୁ ପଳାୟନ କରି ଲୁଚିଛପି ଗୁଳି ବର୍ଷଣ କରିବାକୁ ଲାଗିଲେ । ସହରର ଗଳିକନ୍ଦିରେ ଯୁଦ୍ଧ ଅବ୍ୟାହତ ରହି ରକ୍ତର ସୁଅ ଛୁଟିବାକୁ ଲାଗିଲା । ଇଂରାଜମାନେ ସମଗ୍ର ସହରକୁ ଖେଦିଯାଇଥିଲେ ଓ ସେମାନେ ସେଥିରେ ଅଗ୍ନିସଂଯୋଗ କରିବା ଫଳରେ ସହରଟି ହୁତ୍‌ହୁତ୍ ହୋଇ ଜଳିଉଠିଲା । 'ରାଣୀ' ଦୁର୍ଗର ପ୍ରାଚୀର ଉପରେ ଛିଡ଼ା ହୋଇ ସମସ୍ତ ଦୃଶ୍ୟ ନିରୀକ୍ଷଣ କରୁଥିଲେ । ସହର ଜଳିଉଠିବା ଦେଖି ନିଜ ପ୍ରିୟ ପ୍ରଜାମାନଙ୍କ କଥାଭାବି ତାଙ୍କର ନୟନରୁ ଅବିରାମ ଅଶ୍ରୁ ପ୍ରବାହିତ ହେବାକୁ ଲାଗିଲା । ସେ ମଧ୍ୟ ଦେଖିଲେ ଯେ 'ଝାନ୍‌ସୀ'ର ଦୁର୍ଗରେ ଇଂରାଜି ପତାକା ଉଡୁଅଛି । ସର୍ଦ୍ଦାରମାନେ ଏହି ଅବସ୍ଥାରେ ରାଣୀଙ୍କୁ ଦୁର୍ଗତ୍ୟାଗ କରିବାକୁ ପରାମର୍ଶ ଦେଲେ, କିନ୍ତୁ 'ରାଣୀ' ଇଂରାଜିଙ୍କ ହାତରେ ବନ୍ଦୀ ହେବା ଅପେକ୍ଷା ଯୁଦ୍ଧରେ ମରିବାକୁ ପସନ୍ଦ କରୁଥିଲେ । ତଥାପି ପରିସ୍ଥିତି ଦୃଷ୍ଟିରୁ ସେ କିଛି ବଛା ବଛା ଘୋଡ଼ାସବାରଙ୍କୁ ସାଥିରେ ନେଇ ଏକ ହାତୀ ପିଠିରେ ବସି ଅର୍ଦ୍ଧରାତ୍ରିରେ 'ଦାମୋଦର'ଙ୍କୁ ନିଜର ପିଠିରେ ଏକ ଧୋତି ସହାଯ୍ୟରେ ବାନ୍ଧି ଦେଇ ଦୁର୍ଗର ଉତ୍ତର ଦିଗଆଡ଼କୁ ଯାତ୍ରା କଲେ । ତାହା 'ତେହରା' ରାଜାଙ୍କର ସୈନ୍ୟ ମାନଙ୍କ ଦ୍ୱାରା ସୁରକ୍ଷିତ ଥିଲା । ସେଠାରେ ପ୍ରହରୀମାନେ ପଚାରନ୍ତେ ରାଣୀଙ୍କ ବାହିନୀର ସୈନ୍ୟମାନେ ନିଜକୁ ତେହରା ରାଜାଙ୍କ ସୈନ୍ୟ ବୋଲି ପରିଚୟ ଦେଇ ସେମାନେ ଇଂରାଜି ସହାୟତା ପାଇଁ ଆସିଥିବା କଥା କହିଲେ । ଏଥିରେ ବିଶ୍ୱାସ କରି ପ୍ରହରୀ ସେମାନଙ୍କୁ ବିନା ବାଧାରେ ଛାଡ଼ିଦେଲେ । ଜଣେ ପରିଚାରିକା ଓ ଦଶବାର ଜଣ ଘୋଡ଼ସବାର ମାତ୍ର ରାଣୀଙ୍କ ସାଙ୍ଗରେ ଥିଲେ । ସେମାନେ ଦୁର୍ଗ ଦ୍ୱାର ଅତିକ୍ରମ କରି ଇଂରାଜି ଛାଉଣୀ ମଧ୍ୟରେ ଆଗେଇଗଲେ । ରାଣୀ ପୁରୁଷ ପୋଷାକରେ ଯୁଦ୍ଧୋପଯୋଗୀ ବର୍ମରେ ଶରୀର ଆବୃତ କରିଥିଲେ । ରାଣୀଙ୍କୁ କେହି ସନ୍ଦେହ ନକଲେ ମଧ୍ୟ ଅନ୍ୟ ଘୋଡ଼ସବାର ମାନଙ୍କୁ ସନ୍ଦେହ କଲେ । ଫଳରେ ଘୋଡ଼ସବାର ବାହିନୀମାନେ ସେମାନଙ୍କ ସହ ଯୁଦ୍ଧ କରି କୌଶଳ କ୍ରମେ ବାହାରି ଆସିଲେ । ଏହି ଯୁଦ୍ଧରେ 'ମୋରେପନ୍ତ

ତାନେ' ଆହତ ହୋଇ 'ଦାତିଆ' ନାମକ ସ୍ଥାନକୁ ପଳାଇଆସିଲେ କିନ୍ତୁ ସେଠାରେ ବିଶ୍ୱାସଘାତକ ଇଂରାଜି ଭକ୍ତ ଦେୱାନ ତାଙ୍କୁ ଚିହ୍ନିପାରି ଇଂରାଜିମାନଙ୍କ ହାତରେ ସମର୍ପଣ କଲେ ।

'ଲକ୍ଷ୍ମୀବାଈ', ନିଜର ଘୋଡ଼ସବାରମାନଙ୍କ ସହିତ ଆଗେଇଚାଲିଲେ । 'ଲେଫଟନାଣ୍ଟ ବୋକର୍' (Lautenant Borker) ତାଙ୍କ ପଛରେ ଅନୁସରଣ କଲେ । ରାଣୀ ସାରା ରାତ୍ରି ଘୋଡ଼ାଚଳାଇ ପ୍ରଭାତ ବେଳକୁ 'ଭାନ୍ଦିଏର' ନାମକ ଏକ ଗ୍ରାମରେ ପହଞ୍ଚିଲେ । ସେଠାରେ ନିଜର ସନ୍ତାନ ସହ ସେ କିଛି ଜଳଯୋଗ କହିଲେ । ଜଳଯୋଗ ସମାପନ ପରେ ପରେ ସେ 'କାଲ୍‌ପୀ' ଆଡ଼କୁ ମୁହାଁଇଲେ । 'ବୋକର' ତାଙ୍କୁ ପଶ୍ଚାତ୍ ଦିଗରୁ ଅନୁସରଣ କରୁଥିଲେ । କିନ୍ତୁ 'ରାଣୀ'ଙ୍କର ତଲବାର ଚୋଟରେ ସେ ଭୀଷଣ ଭାବରେ ଆହତ ହୋଇ ଘୋଡ଼ାରୁ ଛିଟ୍‌କି ପଡ଼ିବା ଫଳରେ ଆଉ ଅନୁସରଣ ନକରି ପ୍ରତ୍ୟାବର୍ତ୍ତନ କଲେ । ପ୍ରଭାତଯାଇ ମଧ୍ୟାହ୍ନ ହେଲା କିନ୍ତୁ 'ରାଣୀ' କୌଣସି ସ୍ଥାନରେ ବିଶ୍ରାମ ନନେଇ ଅବିଶ୍ରାନ୍ତ ଭାବରେ ଘୋଡ଼ା ଚଳାଇ ଆଗେଇଗଲେ । ଏହିପରି ସେ ନିରବିଚ୍ଛିନ୍ନ ଭାବରେ ଗତିକରି ଅର୍ଦ୍ଧରାତ୍ରିରେ 'କାଲ୍‌ପୀ'ରେ ପହଞ୍ଚିଲେ । ସେ ଏମଧ୍ୟରେ ଶହେଏକ ମାଇଲ ପଥ ଅତିକ୍ରମ କରିଥିଲେ । ତାଙ୍କୁ ବହନ କରି ଆସିଥିବା ତାଙ୍କର ପ୍ରିୟ ଅଶ୍ୱଟି ତତ୍‌କ୍ଷଣାତ୍ ପ୍ରାଣ ତ୍ୟାଗ କଲା । ରାଣୀ ପ୍ରଭାତ ପର୍ଯ୍ୟନ୍ତ ନିଦ୍ରାଗଲେ । ସକାଳେ 'ରାଣୀ' ଓ 'ରାଓ ସାହେବ' ପେଶବାଙ୍କ ମଧ୍ୟରେ ଆଲୋଚନା ହେଲା । ଏବଂ 'ତାନ୍ତ୍ୟାଟୋପେ'ଙ୍କ ସହିତ ମିଳିତ ଭାବରେ ପୁନରାକ୍ରମଣ ପାଇ ପ୍ରସ୍ତୁତି ଚାଲିଲା ।

'ବ୍ରିଗେଡ଼ିୟର ହ୍ୱିଟ୍‌ଲକ୍', ଫେବୃଆରୀ ସତର ତାରିଖ ଦିନ, ଏକ ଇଂରାଜି ରେଜିମେଣ୍ଟ, ଏକ ମାଡ୍ରାସ ରେଜିମେଣ୍ଟ, ଇଂରାଜି ଘୋଡ଼ସବାର ବାହିନୀ ଓ ଗୋଲନ୍ଦାଜ ବାହିନୀ ସହ ଜବଲପୁରରୁ ନିଜର ଅଭିଯାନ ଆରମ୍ଭ କରିଥିଲେ । ସେ 'ସାଗର'ରେ ପ୍ରବେଶ କଲେ । ସେଠାରେ 'ଉର୍ଚ୍ଚା'ର ରାଜା ତାଙ୍କ ସହିତ ଯୋଗଦାନ କଲେ । ଏହାପରେ ତାଙ୍କର ବାହିନୀ ସେ ଅଞ୍ଚଳର ବିଦ୍ରୋହୀ ନେତା ତଥା 'ବାନ୍ଦା'ର ନବାବଙ୍କୁ ଆକ୍ରମଣ କରିବା ପାଇଁ ଆଗେଇଗଲେ । ନବାବ, ନିଜର ସୈନ୍ୟ ଓ ପ୍ରଜାମାନଙ୍କ ସହ ଯୁଦ୍ଧ କରିବା ପାଇ ଆଗେଇ ଗଲେ । ଘମାଘୋଟ ଲଢ଼ାଇ ହେଲା । ପରିଶେଷରେ ପରାଜୟ ବରଣ କରି ନବାବ ନିଜର ବାହିନୀ ସହ 'କାଲ୍‌ପୀ' ଦିଗକୁ ପଳାୟନ କଲେ ।

ଏପ୍ରିଲ ୧୯ତାରିଖ ଦିନ ହ୍ୱିଟ୍‌ଲକ୍ 'ବାନ୍ଦା'ରେ ପ୍ରବେଶ କରି ତାହା ଅଧିକାର କଲେ । ଏହାପରେ ସେ 'କିର୍‌ୱିର୍' ଆଡ଼କୁ ଆଗେଇ ଚାଲିଲେ । ସେଠାରେ 'ରାଜା ମାଧବରାଓ' ଏକ ଦଶ ବର୍ଷର ବାଳକ ଥିଲେ । ସେ 'ବାଜିରାଓ ପେଶବା'ଙ୍କର ନିକଟ

ସମ୍ପର୍କୀୟ ଥିଲେ । ୧୮୨୭ ମସିହାରେ ତତ୍କାଳୀନ ଶାସକ ବନାରସର ବିଶ୍ୱନାଥ ମନ୍ଦିର ମରାମତି ପାଇଁ ଇଂରାଜିଙ୍କ ନିକଟରେ ବହୁ ଅର୍ଥ ଗଚ୍ଛିତ ରଖିଥିଲେ । ତାଙ୍କର ମୃତ୍ୟୁ ପରେ ଇଂରାଜିମାନେ ସେ ସମସ୍ତ ଅର୍ଥ ଆତ୍ମସାତ କରିଥିଲେ । ତାଙ୍କର ପୁତ୍ର ବିନାୟକ ରାଓ ମଧ୍ୟ ଇଂରାଜିଙ୍କ ପାଖରେ କିଛି ଲକ୍ଷ ଟଙ୍କା ଜମା କରିଥିଲେ ଓ ତାଙ୍କର ମୃତ୍ୟୁପରେ ସେ ଅର୍ଥ ମଧ୍ୟ ଇଂରାଜିମାନେ ଆତ୍ମସାତ କରିଥିଲେ । 'ମାଧବରାଓ' 'ବିନାୟକ'ଙ୍କର ପୋଷ୍ୟପୁତ୍ର ଥିଲେ ଓ ସେ ନାବାଳକ ଥିବା ହେତୁ ତାଙ୍କର ଅଭିଭାବକ ହିସାବରେ ଇଂରାଜିଙ୍କ ହାତରେ ଦେଖାଶୁଣା କରିବା ଭାର ଥିଲା । ଇଂରାଜିଙ୍କ ତରଫରୁ 'ରାମଚନ୍ଦ୍ର ରାଓ'ଙ୍କୁ ମୁଖ୍ୟ ନିରୀକ୍ଷକ ହିଂସାବରେ ନିଯୁକ୍ତ କରାଯାଇଥିଲା । କିନ୍ତୁ ଏ ସମସ୍ତ ସତ୍ତ୍ୱେ, 'କିରୱିରର ଜମିଦାର, ବ୍ରାହ୍ମଣ, ବ୍ୟବସାୟୀ ଓ ଜନସାଧାରଣ ଇଂରାଜିବିରୋଧୀ ଓ ସ୍ୱାଧୀନତା ପ୍ରେମୀଥିଲେ । ଦିଲ୍ଲୀ, ଲକ୍ଷ୍ନୌ ଓ ଝାନ୍ସୀରେ ସ୍ୱାଧିନତା ସମ୍ବାଦପ୍ରାପ୍ତ ହୋଇ ସେମାନେ ମଧ୍ୟ ସ୍ୱାଧିନତା ଘୋଷଣା କରିଥିଲେ । କିନ୍ତୁ ଅପ୍ରାପ୍ତ ବୟସ୍କ 'ରାଓ ସାହେବ'ଙ୍କର ଏଥି ସହିତ କୌଣସି ସମ୍ପର୍କ ନଥିଲା । ସେ ଇଂରାଜିମାନଙ୍କୁ ଦୁର୍ଗଭିତରକୁ ନିମନ୍ତ୍ରଣ କଲେ । ଏହି ନିମନ୍ତ୍ରଣ ପ୍ରାପ୍ତ ହୋଇ ଇଂରାଜିମାନେ ବିନାବାଧାରେ ଓ ନୀରବରେ ଦୁର୍ଗମଧ୍ୟକୁ ପ୍ରବେଶ କଲେ । କିନ୍ତୁ ପ୍ରବେଶ କରିବା ପରେ ପରେ ସେମାନେ 'ରାଓ ସାହେବ'ଙ୍କୁ ବନ୍ଦୀ କଲେ ଏବଂ ରାଜପ୍ରାସାଦକୁ ଧ୍ୱଂସ କରି ସାରା ସହରରେ ଲୁଟ୍ ତରାଜ, ଅଗ୍ନିଦାହ ଓ ହତ୍ୟା ଚଳାଇଲେ । ଏହାକୁ ଇଂରାଜି ସାମ୍ରାଜ୍ୟ ସହିତ ମିଶାଇ ଦିଆଗଲା । ହ୍ୱିଟ୍‌ଲକ୍ ସେଠାରୁ ଯାଇ 'ମାହୋବା'ରେ ଛାଉଣୀ ପକାଇଲେ ଏବଂ ଝାନ୍ସୀର ରାଣୀ 'କାଲ୍‌ପି'ରେ ଥିବା ଜାଣି ତାଙ୍କୁ ଅନୁସରଣ କରି ଆଗେଇଗଲେ ।

ରାଣୀ, 'କାଲ୍‌ପୀ'ରେ ପୁନଃ ପ୍ରସ୍ତୁତି ପରେ ସେଠାରୁ ବୟାଳିଶ ମାଇଲ ଦୂରରେ ଥିବା 'କଞ୍ଚଗାଓଁ' ନାମକ ସ୍ଥାନରେ ପେଶବାଙ୍କର ସୈନ୍ୟ ବାହିନୀ ସହ ଛାଉଣୀ ପକାଇଥିଲେ । ସେଠାରେ 'ବାନ୍ଦାର ନବାବ', 'ଶାହାଗଡ଼ର ରାଜା', ବନପୁରର ରାଜା ଆଦି ନିଜର ବାହିନୀ ସହ ଉପସ୍ଥିତ ଥିଲେ । ରାଓ ସାହେବ ଓ ତାନ୍ତ୍ୟାଟୋପେ, ଶତ ଚେଷ୍ଟା ସତ୍ତ୍ୱେ ମଧ୍ୟ ସମ୍ପୂର୍ଣ୍ଣ ଭାବେ ଯୁଦ୍ଧ ସାମଗ୍ରୀ ଓ ଦ୍ରବ୍ୟୋପକରଣାଦି ଆୟୋଜନ କରିପାରିନଥିଲେ । ପୁନଶ୍ଚ ବହୁ ବାହିନୀର ଏକତ୍ର ସମାବେଶ ଫଳରେ ହଠାତ୍ ସେମାନଙ୍କ ମଧ୍ୟରେ ଶୃଙ୍ଖଳା ରକ୍ଷା କରିବା ସମ୍ଭବ ନଥିଲା ।

'ହ୍ୟୁଗ୍‌ରୋଜ' 'ଝାନ୍‌ସୀ'ରୁ ଆସି 'କଞ୍ଚଗାଓଁ'ଠାରେ ଏହି ବିଦ୍ରୋହୀ ବାହିନୀର ମୁଖାମୁଖୀ ହେଲେ । ମଧ୍ୟାହ୍ନର ରୌଦ୍ରତାପ ଇଂରାଜିମାନଙ୍କ ପକ୍ଷରେ ଅସହ୍ୟ ହେଉଥିବା ଜାଣି ରାଣୀ ଦିନ ଦଶଟା ପରେ ଆକ୍ରମଣ ପାଇଁ ଆଦେଶ ଦେଲେ । ଇଂରାଜିମାନଙ୍କର

ବହୁ କ୍ଷୟକ୍ଷତି ହେବା ସତ୍ତ୍ୱେ ସେମାନେ ବିଜୟ ଲାଭ କଲେ ଓ ବିଦ୍ରୋହୀ ସେନା 'କାଲ୍‌ପୀ' ଅଭିମୁଖେ ପଳାୟନ କଲେ। ସେଠାରେ ପହଞ୍ଚି ପରାଜୟ ପାଇଁ ପରସ୍ପରକୁ ଦୋଷାରୋପ କଲେ । କିନ୍ତୁ 'ତାନ୍ତ୍ୟାଟୋପେ' ଏ ମଧ୍ୟରେ ନଥିଲେ । 'ଜଲୱାନ୍'ଠାରେ ସେ 'ଚ଼ର୍କୀ ନାମକ ଗ୍ରାମକୁ ତାଙ୍କର ପିତାଙ୍କୁ ଦର୍ଶନ କରିବାକୁ ଯାଇଥିଲେ । କିନ୍ତୁ ପ୍ରକୃତ ପକ୍ଷେ ସେ କେଉଁଆଡ଼େ ଯାଇଥିଲେ ତାହା କେହି ଜାଣି ନଥିଲେ ।

ଅପରପକ୍ଷରେ 'କାଲ୍‌ପୀ'ରେ ଥିବା ସମ୍ମିଳିତ ବାହିନୀ, ରାଣୀଙ୍କ ଦ୍ୱାରା ଉଦ୍‌ବୋଧିତ ହୋଇ ଯମୁନାର ଜଳଛୁଇଁ ଇଂରାଜିମାନଙ୍କୁ ବିତାଡ଼ିତ କରିବା ପାଇଁ ଆଗ୍ନେୟ ଶପଥ ନେଲେ । 'ରାଓ ସାହେବ' ବାହିନୀର ନେତୃତ୍ୱ ନେଲେ । ବିଦ୍ରୋହୀ ବାହିନୀର ସମ୍ମୁଖ ଦିଗକୁ ପ୍ରଥମେ ଆକ୍ରମଣ ହେବା ଫଳରେ ସେମାନେ ପଛଘୁଞ୍ଚା ଦେଉଥିଲେ । 'ରାଣୀ' ସେମାନଙ୍କୁ ରକ୍ଷା କରିବା ପାଇଁ ଆଗେଇଗଲେ । ଏହି ଅପ୍ରତ୍ୟାଶିତ ଆକ୍ରମଣ ଫଳରେ, ଇଂରାଜି ସେନାର ଦକ୍ଷିଣ ଭାଗ ମୃତପ୍ରାୟ ହୋଇଗଲା । ସେମାନେ ପ୍ରାଣ ଭୟରେ ପଳାୟନ କଲେ । ଏକୋଇଶ ବର୍ଷ ବୟସ୍କା ରାଣୀ, ଉଦ୍ଭାସିତ ତେଜରେ ବହୁ ଇଂରାଜି ସୈନ୍ୟଙ୍କୁ ନିଜର ତଲବାର ଚୋଟରେ ଭୂଲୁଣ୍ଠିତ କରିପକାଇଲେ । ତାଙ୍କର ପରାକ୍ରମର ସନ୍ଦର୍ଶନରେ ବିଦ୍ରୋହୀବାହିନୀର ସୈନ୍ୟମାନେ ପ୍ରବଳ ପରାକ୍ରମରେ ଯୁଦ୍ଧ କରିବାକୁ ଲାଗିଲେ । ଇଂରାଜିମାନଙ୍କର ହାଲୁକା କମାଣର ଗୋଲନ୍ଦାଜ ମାନେ ଗୋଟିଏ ପରେ ଗୋଟିଏ ମୃତ୍ୟୁ ବରଣ କଲେ । ରାଣୀ ତାଙ୍କର ସୈନ୍ୟ ସହ ଇଂରାଜି ସେନାର ଦକ୍ଷିଣ ଭାଗକୁ ଯାଇ ସିଧାସଳଖ ଗୋଲନ୍ଦାଜ ବାହିନୀ ଉପରେ ଆକ୍ରମଣ କଲେ । ଗୋଲନ୍ଦାଜମାନେ କମାଣ ଛାଡ଼ି ଦେଇ ପଳାଇଲେ । ଇଂରାଜିଙ୍କର ମାନଙ୍କର ଘୋଡ଼ସବାର ବାହିନୀ ଆଗେଇ ଚାଲିଲେ । ଏହି ଅବସ୍ଥା ଦେଖି ହ୍ୟୁର୍ ରୋଜ ନିଜର ଓଟବାହିନୀକୁ ଶତ୍ରୁଙ୍କ ଦିଗକୁ ଆଗେଇ ନେଲେ । ୧୫୦ଟି ଓଟରେ ସଜ୍ଜିତ ହୋଇ ସୈନ୍ୟମାନେ ବିଦ୍ରୋହୀଙ୍କ ଉପରକୁ ଆକ୍ରମଣ ଚ଼ଳାଇଲେ । ମେ ବାଇଶ ତାରିଖ ଦିନ ଏହି ଓଟ ବାହିନୀ ବିଦ୍ରୋହୀମାନଙ୍କୁ କାଲ୍‌ପୀ ଦିଗକୁ ତଡ଼ିନେଲେ । ଏହାପରେ ହ୍ୟୁର୍‌ଙ୍କର ବାହିନୀ ପେଶବାଙ୍କର ସୈନ୍ୟମାନଙ୍କୁ ସମ୍ପୂର୍ଣ୍ଣ ଭାବରେ ପରାସ୍ତ କଲେ । 'ସାର୍ ହ୍ୟୁର୍‌ରୋଜ' ଚ଼ବିଶ ତାରିଖ ଦିନ 'କାଲ୍‌ପୀ'ରେ ପ୍ରବେଶ କଲେ। 'କାଲ୍‌ପୀ'ରେ ପହଞ୍ଚି ଇଂରାଜିମାନେ ବିଦ୍ରୋହୀମାନଙ୍କର ସାମରିକ ଭଣ୍ଡାର ଦଖଲ କଲେ । ଏହି ଭଣ୍ଡାରରୁ ସେମାନେ ଛଅହଜାରପାଉଣ୍ଡର ବାରୁଦ ଜବତ୍ କଲେ। ଏହାଛଡ଼ା ନୂତନ ବନ୍ଧୁକ, କମାଣ, ଗୁଳିଗୋଳା ଓ ଅନ୍ୟାନ୍ୟ ଯୁଦ୍ଧ ସାମଗ୍ରୀ ତଥା ଖାଦ୍ୟ ଦ୍ରବ୍ୟାଦି ଜବତ୍ କଲେ । ଏହି ସବୁ 'ତାନ୍ତ୍ୟାଟୋପେ' ତଥା 'ରାଓସାହେବ' ବହୁ କଷ୍ଟରେ ଏକ ବ଼ର୍ଷ ଲାଗି ସଂଗ୍ରହ କରିଥିଲେ ।

ଏକ ସପ୍ତାହ ମଧ୍ୟରେ ଇଂରାଜି ସେନା 'କାଲ୍‌ପୀ'କୁ ସମ୍ପୂର୍ଣ୍ଣ ଭାବରେ ନିଜର ଅଧିକାର ଭୁକ୍ତ କଲେ । ରାଓ ସାହେବ, 'ବାନ୍ଦାର ନବାବ' ଓ 'ଝାନ୍‌ସୀର ରାଣୀ' କେଉଁଆଡ଼େ ପଳାୟନ କଲେ ତାହାର କେହି ପତ୍ତା ପାଇଲେ ନାହିଁ ।

'କାଲ୍‌ପୀ' ତ୍ୟାଗ କରି ସେମାନେ 'ଗୋପାଳପୁର'କୁ ଯାଇ ସେଠାରେ ଭବିଷ୍ୟତର ଯୋଜନା କରୁଥିଲେ । ଏହି ସମୟରେ 'ତାନ୍ତ୍ୟାଟୋପେ' ପିତୃଦର୍ଶନ ସାରି ଗୋପାଳପୁରକୁ ଫେରିଆସିଲେ । ସେ କିନ୍ତୁ ପ୍ରକୃତପକ୍ଷେ ପିତୃଦର୍ଶନକୁ ଯାଇନଥିଲେ । ତାହା ଏକ ବାହାନା ଥିଲା । ହଠାତ୍ ଯୁଦ୍ଧ ଭୂମିରୁ ଯାଇ ପିତାଙ୍କୁ ଦର୍ଶନ କରିବାର କୌଣସି କାରଣ ମଧ୍ୟ ନଥିଲା । ପ୍ରକୃତ ପକ୍ଷେ ସେ 'ଚର୍କୀ'ଗ୍ରାମରେ ପିତାଙ୍କୁ ଦର୍ଶନ କରିବା ପରେ 'ଗୋଆଲିଅର'ରେ ପହଞ୍ଚି ସେଠାର ସମସ୍ତ ସେନାଧକ୍ଷ ମାନଙ୍କୁ କରଗତ କଲେ ଏବଂ ଗୋପନରେ ଦରବାରୀମାନଙ୍କୁ ମଧ୍ୟ ପ୍ରଭାବିତ କରି ନିଜ ଦଳରେ ମିଶାଇ ଦେଲେ । ସେମାନେ ତାହାଙ୍କୁ ସମସ୍ତ ପ୍ରକାର ସାହାଯ୍ୟ ଓ ସହଯୋଗ ଦେବା ପାଇଁ ପ୍ରତିଶ୍ରୁତି ଦେଲେ । ଏମାନଙ୍କୁ ଗୋପନରେ ସଂଗଠିତ କରି ସେ ଗୋପାଳପୁର ଫେରିଆସିଥିଲେ ।

ଝାନ୍‌ସୀର ରାଣୀ 'ତାନ୍ତ୍ୟା'ଙ୍କ ଠାରୁ ସମସ୍ତ ଘଟଣା ଶୁଣି ଆନନ୍ଦିତ ହେଲେ ଓ 'ରାଓସାହେବ'ଙ୍କୁ 'ଗୋଆଲିୟର' ଦିଗରେ ଆଗେଇ ଯିବା ପାଇଁ ଆଦେଶ ଦେଲେ । ବିଦ୍ରୋହୀ ସେନା 'ଗୋଆଲିୟର' ଅଭିମୁଖେ ସିଧାସଳଖ ମାଡ଼ିଚାଲିଲେ । ୨୮ ତାରିଖ ଦିନ ସେନା 'ଅମୀନ୍‌ମହଲ'ରେ ପହଞ୍ଚିଲା । ସେଠାର ମହଲକାର, ସେମାନଙ୍କର ପଥରୋଧ କରିବାକୁ ଚେଷ୍ଟା କଲା, କିନ୍ତୁ ସେମାନେ ନିଜକୁ ପେଶବାଙ୍କର ସୈନ୍ୟ ବୋଲି ପରିଚୟ ଦେଇ ସଗର୍ବରେ ମାଡ଼ିଚାଲିଲେ । ସେମାନଙ୍କ ସହ କ୍ରମେ ସେଠାଥିବା ସ୍ୱଦେଶୀ ପ୍ରେମୀ ସୈନ୍ୟ, ସେନାପତି ତଥା ଜନସାଧାରଣ ବହୁ ସଂଖ୍ୟାରେ ଯୋଗଦାନ କଲେ । ଏହିପରି ଭାବରେ 'ପେଶବା'ଙ୍କର ସୈନ୍ୟମାନେ ଗୋଆଲିୟର ଦୁର୍ଗର ପ୍ରାଚୀରକୁ ମାଡ଼ିଆସିଲେ । ସେମାନେ ସିନ୍ଧିଆଙ୍କୁ ବନ୍ଧୁ ରୂପେ ସମ୍ବୋଧନ କରି ଓ ତାଙ୍କ ପରିବାର ସହ ପୂର୍ବ ପୁରୁଷର ସମ୍ପର୍କ ସ୍ମରଣ କରାଇ ତାଙ୍କଠାରୁ ଦକ୍ଷିଣ ଦିଗକୁ ଯାତ୍ରା ନିମିତ୍ତ ସାହାଯ୍ୟ କରିବା ପାଇଁ ଅନୁରୋଧ କଲେ । କିନ୍ତୁ ଏ ସମସ୍ତ ସତ୍ତ୍ୱେ ଇଂରାଜି ଭକ୍ତ ସିନ୍ଧିଆ, ଜୁନ୍ ୧ ତାରିଖ ଦିନ ନିଜର ବାହିନୀ ସହ ପେଶବାଙ୍କର ବାହିନୀ ଦିଗକୁ ଅଗ୍ରସର ହେଲେ ।

ପେଶବା ପ୍ରଥମେ ମନେ କରିଥିଲେ ଯେ ସିନ୍ଧିଆ ଅନୁତପ୍ତ ହୋଇ ତାଙ୍କ ନିକଟକୁ ବନ୍ଧୁଭାବରେ ଆସୁଛନ୍ତି । କିନ୍ତୁ ସେଠାରେ ଉପସ୍ଥିତ ଥିବା ରାଣୀ ଲକ୍ଷ୍ମୀବାଈ ଏହାକୁ ଯୁଦ୍ଧର ଆହ୍ୱାନ ବୋଲି ତତ୍‌କ୍ଷଣାତ୍ ବୁଝିପାରି ତିନିଶହ ଘୋଡ଼ସବାର ବାହିନୀ ସହ ଦକ୍ଷିଣ ଦିଗରେ ଥିବା ସିନ୍ଧିଆଙ୍କର କମାଣ ଗୁଡ଼ିକ ଦିଗରେ ସିଧାସଳଖ ଆଗେଇଗଲେ ।

ସେଠାରେ ସେ, ସିନ୍ଧିଆ ଓ ତାଙ୍କର ଦୁର୍ଦ୍ଧର୍ଷ ରକ୍ଷୀ ବାହିନୀର ସମ୍ମୁଖୀନ ହେଲେ । ରାଣୀ ନିଜର ବାହିନୀ ସହ ପ୍ରବଳ ବେଗରେ ରକ୍ଷୀ ବାହିନୀ ଝାମ୍ପି ଉପରକୁ ପଡ଼ିଲେ । ରକ୍ଷୀ ବାହିନୀ ନିର୍ମୂଳ ହୋଇଗଲେ । ସିନ୍ଧିଆ ନିରାଶ ମନରେ ନିଜର ବାହିନୀ ଓ କମାଣ ଦିଗକୁ ଦୃଷ୍ଟି ଦେଲେ । ଏହି ସମୟରେ 'ତାନ୍ତ୍ୟାଟୋପେ' ସେମାନଙ୍କର ସମ୍ମୁଖଭାଗକୁ ଆସିଯିବା ଫଳରେ ତାଙ୍କୁ ଦେଖି 'ସିନ୍ଧିଆ'ଙ୍କର ସୈନ୍ୟମାନେ 'ତାନ୍ତ୍ୟା'ଙ୍କ ନିକଟରେ ପୂର୍ବରୁ କରିଥିବା ସ୍ୱଦେଶୀ ସଂଗ୍ରାମର ଗୁପ୍ତ ଶପଥ ସ୍ମରଣ କଲେ। ଫଳରେ 'ସିନ୍ଧିଆ'ଙ୍କର ସମସ୍ତ ବାହିନୀ ପେଶବାଙ୍କୁ ସମ୍ମାନ ଜଣାଇ ତାଙ୍କ ସହ ମିଶିଗଲେ । ସିନ୍ଧିଆ ଓ ତାଙ୍କର ମନ୍ତ୍ରୀ 'ଦିନକର ରାଓ' ପ୍ରାଣ ଭୟରେ ଆଗ୍ରାକୁ ପଳାୟନ କଲେ । ଏହାପରେ 'ରାଣୀ ଲକ୍ଷ୍ମୀବାଈ', 'ନାନାସାହେବ'ଙ୍କୁ ପେଶବା ରୂପେ ଘୋଷଣା କରି ଗାଦିନସୀନ କଲେ ଓ ତାଙ୍କର ସମ୍ମାନାର୍ଥେ ତୋପଧ୍ୱନି କରାଗଲା । ଅର୍ଥ ମନ୍ତ୍ରୀ ଅମୀରଚାନ୍ଦ ଭାଟିଆ, ରାଜକୋଷର ସମସ୍ତ ଅର୍ଥ 'ପେଶବା'ଙ୍କୁ ସମର୍ପଣ କଲେ । ବନ୍ଦୀ ବିଦ୍ରୋହୀମାନଙ୍କୁ ମୁକ୍ତ କରାଗଲା । ଜନସାଧାରଣ ଆନନ୍ଦ ଉଲ୍ଲାସ ଧ୍ୱନିକଲେ ।

ଜୁନ୍ ତିନି ତାରିଖ ଦିନ ଫୁଲବାଗରେ ଏକ ଦରବାର ବସିଲା । ନାନାଙ୍କର ବାହିନୀର ପଦସ୍ଥ ଅଫିସର ମାନେ ନିଜ ନିଜର ପଦବୀ ଅନୁସାରେ ସ୍ଥାନ ଗ୍ରହଣ କଲେ । ସେହି ଦରବାରରେ 'ରାମାରାଓ ଗୋବିନ୍ଦ'ଙ୍କୁ ମୁଖ୍ୟମନ୍ତ୍ରୀ ଓ 'ତାନ୍ତ୍ୟାଟୋପେ'ଙ୍କୁ ମୁଖ୍ୟ ସେନାଧକ୍ଷ ରୂପେ ନିଯୁକ୍ତି ଦିଆଗଲା । 'ତାନ୍ତ୍ୟାଟୋପେ'ଙ୍କୁ ଏକ ବହୁ ମୂଲ୍ୟ ରତ୍ନାଦି ଖଚିତ ତରବାରୀ ତାଙ୍କର ସମ୍ମାନରେ ଦିଆଗଲା । ଆଠଜଣ ମନ୍ତ୍ରୀଙ୍କୁ ନିର୍ବାଚିତ କରାଗଲା । ବାହିନୀର ସୈନ୍ୟମାନଙ୍କୁ କୋଡ଼ିଏ ଲକ୍ଷ ଟଙ୍କା ବିତରଣ କରାଗଲା । ଦରବାରରେ ତୋପଧ୍ୱନି କରାଯାଇ 'ପେଶବା'ଙ୍କୁ ସମ୍ମାନ ପ୍ରଦର୍ଶନ କରାଗଲା । 'ରାଓ ସାହେବ ପେଶବା' 'ନାନାସାହେବ'ଙ୍କର ପ୍ରତିନିଧି ରୂପେ ସେଠାରେ ପେଶବା ହୋଇ ରହିଲେ ।

'ତାନ୍ତ୍ୟାଟୋପେ' ଇଂରାଜି ବାହିନୀକୁ ବିଭିନ୍ନ ଦିଗରୁ ବିଭିନ୍ନ ସମୟରେ ଏପରି ଅପ୍ରତ୍ୟାଶିତ ଆକ୍ରମଣ କରି ପକାଉଥିଲେ ଯେ 'ସାର୍ ହ୍ୟୁଗ୍‌ରୋଜ' ବିଶ୍ରାମ କରିବାକୁ ମଧ୍ୟ ସମୟ ପାଇଲେ ନାହିଁ । ଏହି ପରିଭାବରେ ଶତ୍ରୁକୁ କ୍ଳାନ୍ତ, ବିରକ୍ତ ଓ ଯୁଦ୍ଧ ବିମୁଖ କରିଦେବା ହିଁ ତାଙ୍କର ଅପୂର୍ବ ରଣ କୌଶଳ ଥିଲା । 'ହ୍ୟୁଗ୍‌ରୋଜ' ନିଜର ବାହିନୀ ସହ ତୀବ୍ର ଗତିରେ ଗୋୱାଲିୟର ଅଭିମୁଖେ ଚାଲିଲେ । ସେ ସିନ୍ଧିଆଙ୍କର ବନ୍ଧୁ ହିସାବରେ ତାଙ୍କୁ ଗୋୱାଲିୟର ରାଜଗାଦିରେ ବସାଇବା ପାଇଁ ଆସିଛନ୍ତି ବୋଲି ଏକ ଘୋଷଣାନାମା ପ୍ରଜାଙ୍କ ମଧ୍ୟରେ ପ୍ରଚାର କରାଇଲେ । ଏହି ଘୋଷଣାନାମା 'ଗୋୱାଲିୟର' ଜନସାଧାରଣଙ୍କର ସିନ୍ଧିଆ ଭକ୍ତିର ସୁଯୋଗ ନେଇ, ସେମାନଙ୍କର ସାହାଯ୍ୟ ସମର୍ଥନ

ଲାଭ କରିବା ପାଇଁ ଏକ ଚାଲିଥିଲା । କିଛି ରାଜଭକ୍ତ ପ୍ରଜା ଏହି ପ୍ରତାରଣାର ଶିକାର ହୋଇ ଇଂରାଜି ବିଦ୍ରୋହରୁ ନିବୃତ୍ତ ରହିଲେ । କିନ୍ତୁ ତାନ୍ତ୍ୟାଟୋପେ ପ୍ରବଳ ପରାକ୍ରମରେ ନିଜର ବାହିନୀ ସହ ଇଂରାଜିଙ୍କ ସମ୍ମୁଖୀନ ହେବା ପାଇଁ ଆଗକୁ ମାଡ଼ିଚାଲିଲେ । ଏହା ପୂର୍ବରୁ ଆସିବା ପଥରେ, ଇଂରାଜିମାନେ 'ମୋରାର'ରେ ଅବସ୍ଥିତ ଏକ ବିଦ୍ରୋହୀ ବାହିନୀକୁ ପରାସ୍ତ କରିଥିଲେ । 'ରାଓସାହେବ' ଓ 'ବାନ୍ଦାର ନବାବ' ଏହି ପରିସ୍ଥିତିରେ ବିବ୍ରତ ହୋଇପଡ଼ିଥିଲେ । କେବଳ ଏକମାତ୍ର 'ରାଣୀ ଲକ୍ଷ୍ମୀବାଈ' ଧୀରସ୍ଥିର ଚିତ୍ତରେ ସମସ୍ତ ଘଟଣା ଅବଗତ ହୋଇ ସୂକ୍ଷ୍ମ କୌଶଳରେ ସାମରିକ କଳନା କରୁଥିଲେ । ସେ ଦୃଢ଼ ପ୍ରତିଜ୍ଞ ଓ ନିର୍ଭୟା ଥିଲେ । ମୃତ୍ୟୁ ପାଇଁ ସେ ସର୍ବଦା ପ୍ରସ୍ତୁତ ଥିଲେ । ସେ ସାମରିକ ପୋଷାକ ପରିହିତା ହୋଇ କମରପଟୀରେ ରତ୍ନଖଚିତ ତରବାରୀ ଖୋସି ଅଶ୍ୱାରୂଢ଼ା ହୋଇ ନିଜର ସେନାକୁ ଆଗକୁ ମାଡ଼ିଯିବା ପାଇଁ ଆଦେଶ ଦେଲେ । 'କୋଟାକି ସରାଇ' ନିକଟରେ ସେ ନିଜର ସୈନ୍ୟମାନଙ୍କୁ ସଜାଗ ଓ ସତର୍କ କରି ରଖିଲେ । ଇଂରାଜିମାନେ ରାଣୀଙ୍କର ବାହିନୀକୁ ବାରମ୍ବାର ଆକ୍ରମଣ କଲେ । ଏହି ଆକ୍ରମଣରେ 'ଜେନେରାଲ ସ୍ମିଥ୍' ନେତୃତ୍ୱ ନେଇଥିଲେ । ବିଦ୍ରୋହୀ ବାହିନୀ ମଧ୍ୟ ଏହି ଆକ୍ରମଣର ଉପଯୁକ୍ତ ମୁକାବିଲା କଲେ । 'ରାଣୀ' ସାରାଦିନ ନିରବିଚ୍ଛିନ୍ନ ଭାବରେ ଘୋଡ଼ାରେ ବସି ଯୁଦ୍ଧଭୂମିରେ ବିଜୁଳି ବେଗରେ ଘୂରିବୁଲି ଶତ୍ରୁ ସୈନ୍ୟ କ୍ଷୟ କରିବା ସଙ୍ଗେ ସଙ୍ଗେ ନିଜର ସୈନ୍ୟମାନଙ୍କୁ ଉତ୍ସାହିତ କରିବାକୁ ଲାଗିଲେ । ଫଳରେ ସେଦିନ ଇଂରାଜିମାନଙ୍କର ଶତଚେଷ୍ଟା ସତ୍ତ୍ୱେ ବିଦ୍ରୋହୀ ସେନା ନିଜ ନିଜ ଆସ୍ଥାନରେ ସୁଦୃଢ଼ ରହି ମଝିରେ ମଝିରେ ଆଗକୁ ମାଡ଼ିଯାଇ ଇଂରାଜିସେନାର ବହୁ କ୍ଷୟ କ୍ଷତି ଘଟାଇ ନିଜର ଆସ୍ଥାନକୁ ଫେରି ଆସୁଥିଲେ । ରାଣୀ ସେଦିନ ଯୁଦ୍ଧରେ ଅତୁଳନୀୟ ପରାକ୍ରମ ପ୍ରଦର୍ଶନ କରିଥିଲେ । 'ମନ୍ଦର' ଓ 'କାଶୀ' 'ନାମ୍ନୀ' ତାଙ୍କର ଦୁଇଜଣ ପାର୍ଶ୍ୱସହଚରୀ, ତାଙ୍କ ପାର୍ଶ୍ୱରେ ରହି ବହୁ ଦକ୍ଷତାର ସହ ଯୁଦ୍ଧ କରିଥିଲେ । ଏହିପରି ଭାବରେ ସନ୍ଧ୍ୟା ସମୟକୁ ସେ ଦିନର ଲଢ଼ାଇ ଶେଷ ହେଲା । ତାପର ଦିନ ୧୮ ତାରିଖରେ ଇଂରାଜିସେନା ଦୃଢ଼ ପ୍ରତିଜ୍ଞ ହୋଇ ଦୁର୍ଗକୁ ସବୁ ଦିଗରୁ ଆକ୍ରମଣ କଲେ । ହଠାତ୍ କିଛି ସହାୟକ ସେନା ଆସି ପହଞ୍ଚି ସେମାନଙ୍କ ସହ ଯୋଗଦାନ କଲେ । 'ଜେନେରାଲ ସ୍ମିଥ୍' ନିଜର ବାହିନୀ ସହ ଆକ୍ରମଣ ଜାରି ରଖିଲେ । 'ଜେନେରାଲ ସ୍ମିଥ୍' ସେ ଦିନ ବ୍ୟକ୍ତିଗତ ଭାବରେ ଯୁଦ୍ଧଭୂମିରେ ଉପସ୍ଥିତ ଥିଲେ । 'ରାଣୀ' ଏହି ଆକ୍ରମଣ ପୂର୍ବରୁ ଅନୁମାନ କରି ନିଜର ସେନା ସହ ପ୍ରସ୍ତୁତ ହୋଇ ରହିଥିଲେ । ସେ, ଦିନ ସେ ଖୁବ୍ ତେଜୀୟାନ୍ ଦେଖାଯାଉଥିଲେ । ସେ, ଏକ କାରୁକାର୍ଯ୍ୟ ପୂର୍ଣ୍ଣ ଚନ୍ଦେରୀ ପଗଡ଼ି ମୁଣ୍ଡରେ ପରିଧାନ କରିଥିଲେ । ତାଙ୍କର ଗଳାରେ ଗୋଟିଏ ବହୁ ମୂଲ୍ୟ ମୁକ୍ତାର ମାଳାଟିଏ ଥିଲା । ସେ ଏକ ନୂତନ ଅଶ୍ୱ ଆରୋହଣ କରିଥିଲେ ଓ ଯୁଦ୍ଧକୁ ଯିବା ପାଇଁ ପ୍ରସ୍ତୁତ

ହୋଇରହିଥିଲେ । ତାଙ୍କ ନିକଟରେ ତାଙ୍କର ଦୁଇଜଣ ପାର୍ଶ୍ୱସହଚରୀ ମଧ୍ୟ ଯୁଦ୍ଧ ପୋଷାକ ପରିବୃତା ହୋଇ ଯୁଦ୍ଧକୁ ଯିବା ଆଗରୁ ସରବତ୍ ପାନ କରୁଥିଲେ । ହଠାତ୍ ଖବର ଆସିଲା ଯେ ଇଂରାଜି ସେନା ଆଗେଇଆସୁଛନ୍ତି । 'ରାଣୀ ଲକ୍ଷ୍ମୀବାଈ' ସଙ୍ଗେ ସଙ୍ଗେ ନିଜର ତମ୍ବୁରୁ ବାହାରି ଆସି ଅଶ୍ୱାରୂଢ଼ା ହୋଇ ମୁକ୍ତକୋଷ ତରବାରୀରେ ନିଜର ବାହିନୀ ସହ ଶତ୍ରୁ ସେନା ଉପରକୁ ଝାମ୍ପି ପଡ଼ିଲେ । ସେ ବାରମ୍ବାର ଶତ୍ରୁ ଉପରକୁ ପ୍ରବଳ ଆକ୍ରମଣ କରିବାକୁ ଲାଗିଲେ । କିନ୍ତୁ ତାଙ୍କର ସୈନ୍ୟ ସଂଖ୍ୟା କ୍ରମେ କ୍ଷୀଣରୁ କ୍ଷୀଣତର ହେବାକୁ ଲାଗିଲା । ଏହା ସତ୍ତ୍ୱେ 'ରାଣୀ,' ନିଜ ସେନାର ଅଗ୍ରଭାଗରେ ରହି ଯୁଦ୍ଧ କରିବା ସହ ବିକ୍ଷିପ୍ତ ସୈନ୍ୟମାନଙ୍କୁ ପୁନଃ ସଂଗଠିତ କରି ଆକ୍ରମଣୋନ୍ମୁଖୀ କରାଉଥିଲେ । କିନ୍ତୁ ରାଣୀଙ୍କର ସମସ୍ତ ପ୍ରଚେଷ୍ଟା ବିଫଳ ହେଲା । ତାଙ୍କର ସୈନ୍ୟ କ୍ଷୟ ହେବା ସହ 'ହ୍ୟୁଗରୋଜ'ଙ୍କ ଦ୍ୱାରା ଓଟବାହିନୀ ଶେଷ ଧାଡ଼ିର ସୈନ୍ୟମାନଙ୍କୁ ସମ୍ପୂର୍ଣ୍ଣ ନିପାତ କରିବା ଫଳରେ, 'ରାଣୀ'ଙ୍କର ପାର୍ଶ୍ୱ ଦିଗରେ ସୈନ୍ୟମାନେ ଯୁଦ୍ଧ ଜାରି ରଖିଥିଲେ ମଧ୍ୟ, ପଶ୍ଚାତ ଭାଗରୁ ଇଂରାଜିମାନେ ମାଡ଼ିଆସିଲେ । କ୍ରମେ ଇଂରାଜି ସୈନ୍ୟ 'ରାଣୀ'ଙ୍କୁ ଚତୁର୍ଦ୍ଦିଗରୁ ଘେରାଉ କରି ନିକଟରୁ ନିକଟତର ହେବାକୁ ଲାଗିଲେ । 'ରାଣୀ'ଙ୍କର କମାଣ ସବୁ ମଧ୍ୟ ନୀରବ ହୋଇଯାଇଥିଲା । ମାତ୍ର ଦଶ ପନ୍ଦରଜଣ ଘୋଡ଼ସବାର ଓ ନିଜର ଦୁଇ ପାର୍ଶ୍ୱସହଚରୀଙ୍କ ସହ 'ରାଣୀ' ଶତ୍ରୁ ସେନାକୁ ଭେଦ କରି ଅପର ଦିଗରେ ଥିବା ବିଦ୍ରୋହୀ ସେନା ସହ ମିଳିତ ହେବାକୁ ଯାଉଥିଲେ । ଏହି ସମୟରେ 'ହୁସାରର' ଘୋଡ଼ସବାର ବାହିନୀ, ରାଣୀଙ୍କୁ ଅନୁସରଣ କରି ବାରମ୍ବାର ଗୁଳି ବର୍ଷଣ କରିବାକୁ ଲାଗିଲେ । ରାଣୀ କିନ୍ତୁ ଏହି ଗୁଳିବର୍ଷଣ ମଧ୍ୟରେ ଅତ୍ୟନ୍ତ ଦକ୍ଷତାର ସହ ତରବାରୀରେ ନିଜ ଯିବା ରାସ୍ତା କରି ଆଗେଇ ଯାଉଥିଲେ । ହଠାତ୍ ଏକ କରୁଣ ଶବ୍ଦ ଶୁଣି ସେ ସାମାନ୍ୟ ଅଟକିଗଲେ । ସେହି କରୁଣ ଚିତ୍କାର ରାଣୀଙ୍କର ପାର୍ଶ୍ୱସହଚରୀ 'ମନ୍ଦରର' ଥିଲା । ଏକ ଇଂରାଜି ସୈନ୍ୟର ଗୁଳିରେ ସେ ଶିକାର ହୋଇଥିଲା ଓ ତତ୍କ୍ଷଣାତ୍ ମୃତ୍ୟୁ ବରଣ କଲା । 'ରାଣୀ' ଆଗେଇ ଚାଲିଲେ । ପଥରେ ଏକ ନାଳ ପଡ଼ିଲା । ଏହି ନାଳ ଡେ଼ଇଁ ଯାଇଥିଲେ ସେ ବହିର୍ଗତ ହୋଇ ଇଂରାଜି ସେନାର କବଳରୁ ମୁକ୍ତ ହୋଇପାରି ଥାଆନ୍ତେ । କିନ୍ତୁ ଦୁର୍ଭାଗ୍ୟର କଥା ଯେ ଅଶ୍ୱଟି ଅତ୍ୟନ୍ତ କ୍ଳାନ୍ତ ହେଇଥିବାରୁ ନାଳଟି ଡେ଼ଇଁ ନପାରି ଘୂରି ବୁଲିଲା । ପଶ୍ଚାତ୍ ଦିଗରୁ କ୍ରମେ ଇଂରାଜି ଘୋଡ଼ସବାର ବାହିନୀ ମାଡ଼ିଆସୁଥିଲେ । କ୍ରମେ ସେମାନେ ପାଖେଇ ଆସିଲେ । ରାଣୀ ଏକାକିନୀ ବୀରତ୍ୱର ସହ ବହୁ ତଲବାରର ସମ୍ମୁଖୀନ ହେଲେ । ହଠାତ୍ ପଶ୍ଚାତ୍ ଭାଗରୁ ତାଙ୍କର ମସ୍ତିଷ୍କ ଉପରେ ତରବାରୀର ଆଘାତ ହେବା ଫଳରେ, ତାଙ୍କ ମସ୍ତିଷ୍କର ଦକ୍ଷିଣ ଭାଗ ଓ ଦକ୍ଷିଣ ଚକ୍ଷୁ ବାହାରି ଆସିଲା । ତା ପରେ ପରେ ଅନ୍ୟ ଏକ ତଲବାରର ଚୋଟ ତାଙ୍କର ବକ୍ଷ ଦେଶରେ ପଡ଼ିଲା । ଏହିପରି ଭୟଙ୍କର ଆହତ

ଅବସ୍ଥାରେ ମଧ୍ୟ ସେ, ତାଙ୍କୁ ଆକ୍ରମଣ କରୁଥିବା ଇଂରାଜି ସୈନ୍ୟମାନଙ୍କୁ କ୍ଷୟ କରିବାରେ ଲାଗିଲେ ।

ରାଣୀ, ଜୀବନ ମରଣର ସନ୍ଧିକ୍ଷଣରେ ଥିଲେ । ତାଙ୍କର, 'ରାମଚନ୍ଦ୍ର ରାଓ ଦେଶମୁଖ' ନାମକ ଜଣେ ବିଶ୍ୱସ୍ତ ଭୃତ୍ୟ ନିକଟରେ ଥିଲା । ସେ ମୁମୂର୍ଷୁ ଅବସ୍ଥାରେ ଥିବା 'ରାଣୀ ଲକ୍ଷ୍ମୀବାଈ'ଙ୍କୁ ନିକଟରେ ଥିବା ଏକ କୁଟୀରକୁ ନେଇଗଲା । ସେଠାରେ 'ଗଙ୍ଗା ଦାସ ବାଓ୍ୱା' ନାମକ ଏକ ବ୍ୟକ୍ତି ରାଣୀ ତୃଷାର୍ତ୍ତ ହୋଇଥିବାରୁ ଜଳପାନ କରିବାକୁ ଦେଲେ ଓ ତାଙ୍କର ବିଶ୍ରାମ କରିବା ପାଇଁ ଶଯ୍ୟା ପ୍ରସ୍ତୁତ କରି ସେଥିରେ ରାଣୀଙ୍କୁ ବିଶ୍ରାମ କରିବାକୁ ଦେଲେ । ବିଶ୍ରାମ କରିବା ଅବସ୍ଥାରେ ତାଙ୍କର ମହାନ୍ ଆତ୍ମା ହଠାତ୍ ନଶ୍ୱର ଶରୀର ତ୍ୟାଗ କରି ଉର୍ଦ୍ଧ୍ୱଗାମୀ ହେଲା । ମୃତ୍ୟୁ ପୂର୍ବରୁ ସେ 'ରାମଚନ୍ଦ୍ର ରାଓ'ଙ୍କୁ ମୃତ୍ୟୁ ପରେ ତାଙ୍କର ଶରୀରକୁ ଶୁଖିଲା ଘାସ ସଂଗ୍ରହ କରି ସେଥିରେ ତୁରନ୍ତ ଦାହ କରିବା ପାଇଁ କହିଥିଲେ । କାରଣ, କୌଣସି ପ୍ରକାରେ ତାଙ୍କର ଶରୀର ଇଂରାଜିସ୍ପୃଶ୍ୟା ହେବା ସେ ଚାହୁଁନଥିଲେ । ସେ ସ୍ୱାଧୀନ ହୃଦୟରେ ମୃତ୍ୟୁ ବରଣ କରିବାକୁ ଶ୍ରେୟ ମନେ କରୁଥିଲେ । 'ରାମଚନ୍ଦ୍ର ରାଓ', ରାଣୀଙ୍କୁ ତାଙ୍କ କହିବା ପ୍ରକାରେ ଦାହ କଲେ ଓ ସମାଧି ଦେଲେ । ବୀରାଙ୍ଗନା 'ଲକ୍ଷ୍ମୀବାଈ' ସ୍ୱଧର୍ମ ଓ ସ୍ୱରାଜ୍ୟ ପ୍ରାପ୍ତି ନିମିତ୍ତ ଲଢ଼ିବା ଅବସ୍ଥାରେ ଯୁଦ୍ଧ ଭୂମିରେ ପ୍ରାଣତ୍ୟାଗ କରି ସ୍ୱଦେଶ ବାସୀଙ୍କର ହୃଦୟରେ ସବୁଦିନ ପାଇଁ ଅମର ହୋଇ ରହିଲେ ।



# ତାନ୍ତ୍ୟାଟୋପେଙ୍କର ଶେଷ ସଂଗ୍ରାମ

ଜୁନ୍ କୋଡ଼ିଏ ତାରିଖ ଦିନ, 'ରାଣୀ ଲକ୍ଷ୍ମୀବାଈ'ଙ୍କର ଯୁଦ୍ଧକ୍ଷେତ୍ରରେ ଜୀବନଦୀପ ନିର୍ବାପିତ ହୋଇଥିଲା । 'ତାନ୍ତ୍ୟାଟୋପେ', ରାଣୀଙ୍କର ମୃତ୍ୟୁ ସମ୍ବାଦ ପାଇବା ମାତ୍ରେ, ସେହିଦିନ 'ଗୋଓ୍ୱାଲିୟର୍'ରୁ ଉଭାନ ହୋଇଗଲେ । ଦୁଇଦିନ ପରେ ଅର୍ଥାତ୍ ଜୁନ୍ ବାଇଶ ତାରିଖରେ, ସେ 'ଦଉରାଆଲିପୁର' ନାମକ ସ୍ଥାନରେ ଉପସ୍ଥିତ ଥିଲେ । ଏହାପରେ ସେ ମଧ୍ୟଭାରତର ଜଙ୍ଗଲ ମଧ୍ୟକୁ ପ୍ରବେଶ କଲେ । 'ରାଓ ସାହେବ' ପେଶବାଙ୍କ ସହ ଅବଶିଷ୍ଟ ସୈନ୍ୟମାନଙ୍କୁ ନେଇ ସେ 'ସରମଥୁରା' ନାମକ ଏକ ସ୍ଥାନରେ ପହଞ୍ଚିଲେ । ସେହି ସ୍ଥାନରେ ଭବିଷ୍ୟତର ଯୁଦ୍ଧ ନୀତି ନିର୍ଦ୍ଧାରଣ କରାଗଲା । ପ୍ରଥମତଃ, ଇଂରାଜିମାନଙ୍କ ବିରୁଦ୍ଧରେ ନିତାନ୍ତ ଆବଶ୍ୟକ ନପଡ଼ିଲେ ଯୁଦ୍ଧକୁ ସର୍ବଦା ଏଡ଼ାଇ ଦିଆଯିବ । ସୁରକ୍ଷିତ ନଥିବା ପ୍ରଦେଶ ଗୁଡ଼ିକରେ ଇଂରାଜିଙ୍କ ବିରୁଦ୍ଧରେ ଗରିଲା କୌଶଳ ଅବଲମ୍ବନ କରାଯିବ ଏବଂ ଉତ୍ତର ଓ ମଧ୍ୟ ଭାରତରେ ଥିବା ରାଜା, ଜମିଦାର ଓ ବ୍ୟବସାୟୀ ମାନଙ୍କ ଠାରୁ ବାହିନୀ ପାଇଁ ଅସ୍ତ୍ରଶସ୍ତ୍ର ଖାଦ୍ୟଦ୍ରବ୍ୟାଦି ଓ ଅନ୍ୟାନ୍ୟ ଯୁଦ୍ଧ ସାମଗ୍ରୀ ସଂଗ୍ରହ କରାଯିବ । କେହି ଏହା ଅମାନ୍ୟ କଲେ ବଳ ପ୍ରୟୋଗ କରାଯିବ । ଏହି ନୀତି ଉପରେ ଭବିଷ୍ୟତରେ ରଣକୌଶଳ ପର୍ଯ୍ୟବେସିତ ହେଲା । 'ତାନ୍ତ୍ୟାଟୋପେ'ଙ୍କର ନର୍ମଦା ନଦୀ ଅତିକ୍ରମ କରି ମହାରାଷ୍ଟ୍ରରେ ପ୍ରବେଶ କରିବାର ଯୋଜନାଥିଲା । ଇଂରାଜିମାନେ ଏହା ପ୍ରତିହତ କରିବାର ଚେଷ୍ଟାରେ ଥିଲେ ।

ସର୍ବପ୍ରଥମେ 'ତାନ୍ତ୍ୟା'ଙ୍କର ଦୃଷ୍ଟି 'ଭରତପୁର' ଉପରେ ପଡ଼ିଲା । ସେଠାରେ ଏକ ଇଂରାଜି ବାହିନୀ ଆସି ରହିଥିବାର ଖବର ପାଇ ସେ ତୁରନ୍ତ 'ଜୟପୁର' ଅଭିମୁଖେ ଯାତ୍ରା କଲେ । ଜୟପୁରର ଦରବାରରେ 'ତାନ୍ତ୍ୟା'ଙ୍କର ଯଥେଷ୍ଟ ସମର୍ଥକ ଥିଲେ । ସେମାନଙ୍କୁ ପ୍ରସ୍ତୁତ ରହିବାକୁ ତାନ୍ତ୍ୟା ନିଜର ଦୂତ ହାତରେ ଖବର ପଠାଇଲେ । ଇଂରାଜି ବାହିନୀ ଏହା ଜାଣି ପାରି ନସୀରାବାଦରୁ 'ଜୟପୁର'କୁ ଆସିଗଲେ । ତାନ୍ତ୍ୟା ଅସଫଳ ହୋଇ ଦକ୍ଷିଣଦିଗକୁ ଯାତ୍ରା କଲେ । ଏଠାରେ ମଧ୍ୟ 'କର୍ଣ୍ଣେଲ ହୋମସ୍' (Cornel Holmes) ତାଙ୍କର ବାହିନୀ ସହ 'ତାନ୍ତ୍ୟା'ଙ୍କର ଅନୁଧାବନ କଲେ । ଏଣୁ ତାନ୍ତ୍ୟା ହଠାତ୍ ନିଜର ଯାତ୍ରାର ଦିଗ ପରିବର୍ତ୍ତନ କରି 'ଟୋଙ୍କ' ନାମକ ପ୍ରଦେଶରେ ପ୍ରବେଶ କଲେ । ସେଠାର ନବାବ ଦୁର୍ଗର ଫାଟକ ବନ୍ଦ କରିଦେଲେ ଓ ନିଜର ସୈନ୍ୟବାହିନୀକୁ ଚାରିଗୋଟି କମାଣ ସହ 'ତାନ୍ତ୍ୟା'ଙ୍କ ସହିତ ମୁକାବିଲା ପାଇଁ ପଠାଇଲେ । କିନ୍ତୁ ଯୁଦ୍ଧକ୍ଷେତ୍ରକୁ ଆସି

ସିପାହୀମାନେ ଯୁଦ୍ଧ କରିବା ପରିବର୍ତ୍ତେ 'ତାନ୍ତ୍ୟା'ଙ୍କର ବାହିନୀର ସୈନ୍ୟମାନଙ୍କୁ ସ୍ନେହସମ୍ଭାଷଣ ଜଣାଇ ସେମାନଙ୍କ ସହିତ ମିଶିଗଲେ । ଚାରିଗୋଟି କମାଣ ମଧ୍ୟ ତାନ୍ତ୍ୟାଙ୍କର ହସ୍ତଗତ ହେଲା । ଏହାପରେ ଏହି ବାହିନୀକୁ ଧରି 'ତାନ୍ତ୍ୟା' ଦକ୍ଷିଣ ଦିଗକୁ ଯାତ୍ରା ଆରମ୍ଭ କଲେ । ତାନ୍ତ୍ୟା, ଇନ୍ଦ୍ରଗଡ଼କୁ ଆସି ସେଠାରେ କିଛି କ୍ଷଣ ରହି ବିଶ୍ରାମ କଲେ । ତାଙ୍କର ପଶ୍ଚାତ୍ ଦିଗରୁ 'ହୋମସ୍' ଓ ରାଜପୁତାନା ଆଡୁ ରବର୍ଟ ନିଜ ନିଜର ବାହିନୀ ସହ ମାଡ଼ିଆସୁଥିଲେ । ସେତେବେଳେ ଖୁବ୍ ବର୍ଷା ହେଉଥିଲା । 'ତାନ୍ତ୍ୟା'ଙ୍କର ସମ୍ମୁଖରେ ଦୁର୍ଗମ୍ୟ ଚମ୍ବଲ ଉପତ୍ୟକା ଥିଲା ଓ ପଶ୍ଚାତ୍ ଦିଗରେ ଶତ୍ରୁମାନେ ଥିଲେ । ତେଣୁ 'ତାନ୍ତ୍ୟା' ଦିଗ ବଦଳାଇ ଉତ୍ତର ପୂର୍ବ ଦିଗରେ ଥିବା 'ବୁନ୍ଦି' ନାମକ ସ୍ଥାନକୁ ଗଲେ ଏବଂ ସେଠାରୁ ଯାଇ ନିମୁଚ-ନସିରାବାଦରେ ପହଞ୍ଚିଲେ । ସେଠାରେ ସ୍ୱରାଜ୍ୟ ଓ ସ୍ୱଧର୍ମର ଜାଗରଣ ଦେଖାଦେଇ ସମସ୍ତେ ଇଂରାଜି ବିରୋଧରେ ବିଦ୍ରୋହୀ ହୋଇ ଉଠିଥିଲେ । ତାନ୍ତ୍ୟା 'ଭିଲ୍‌ୱାଡ଼ା' ନାମକ ଗ୍ରାମରେ ନିଜର ଛାଉଣୀ ପକାଇଲେ । ଏହି ଖବର ପାଇ ରବର୍ଟ 'ସର୍‌ୱାରଗାଓଁ'ରୁ ଆସି ୧୮୫୮ ମସିହା ଅଗଷ୍ଟ ସାତ ତାରିଖ ଦିନ 'ତାନ୍ତ୍ୟା'ଙ୍କୁ ଆକ୍ରମଣ କଲେ । ସାରାଦିନ ମୁକାବିଲା କରି ରାତ୍ରି କାଳରେ 'ତାନ୍ତ୍ୟା' ନିଜର ବାହିନୀ ସହ ନିରାପଦରେ ଉଦୟପୁର ଇଲାକା ଅନ୍ତର୍ଗତ 'କୋଦ୍ରା' ନାମକ ସ୍ଥାନରେ ପହଞ୍ଚିଲେ । ସେଠାରେ ରାତ୍ରିକାଳରେ ତାଙ୍କର ଛାଉଣୀରେ ସୈନ୍ୟମାନେ ବିଶ୍ରାମ କରିବା ଅବସ୍ଥାରେ ସେ 'ନାଥବାଡ଼ା' ମନ୍ଦିରରେ ଶ୍ରୀ କୃଷ୍ଣଙ୍କୁ ଦର୍ଶନ ପାଇଁ ଯାଇଥିଲେ । ଫେରିଆସି ସେ ଶୁଣିଲେ ଯେ ଇଂରାଜି ବାହିନୀ ଆକ୍ରମଣ କରିବା ପାଇଁ ନିକଟତର ହୋଇଆସୁଅଛି । ତାନ୍ତ୍ୟା ତୁରନ୍ତ ଛାଉଣୀ ଭଙ୍ଗ କରି ପଳାଇ ଯିବାକୁ ସୈନ୍ୟମାନଙ୍କୁ ଆଦେଶ ଦେଲେ । କିନ୍ତୁ ସୈନ୍ୟମାନେ ଅତ୍ୟନ୍ତ କ୍ଳାନ୍ତ ହୋଇଥିବାରୁ ଅକ୍ଷମତା ପ୍ରକାଶ କରି ସେହିଠାରେ ରାତ୍ରିରେ ବିଶ୍ରାମ ନେଲେ । ଫଳରେ ବାଧ ହୋଇ ସମ୍ମୁଖ ଯୁଦ୍ଧ ପାଇଁ ପ୍ରାତଃ କାଳରୁ ତାନ୍ତ୍ୟା ନିଜର ବାହିନୀକୁ ସଂଗଠିତ କଲେ । ଅଗଷ୍ଟ ଚଉଦ ତାରିଖ ଦିନ କିଛି ସମୟ ଯୁଦ୍ଧ ଚାଲିବା ପରେ ତାନ୍ତ୍ୟାଙ୍କର ସୈନ୍ୟମାନେ ପଛଘୁଞ୍ଚା ଦେଇ ୧୫ମାଇଲ ପଛକୁ ପଳାଇଆସିଲେ ଓ ଯୁଦ୍ଧକ୍ଷେତ୍ରରେ ସମସ୍ତ କମାଣ ଛାଡ଼ିଆସିବା ଫଳରେ ତାହା ଶତ୍ରୁର ହସ୍ତଗତ ହେଲା । ତାନ୍ତ୍ୟା ପୁନର୍ବାର ଚମ୍ବଲ ଅଭିମୁଖେ ଯାତ୍ରା କଲେ । ଇଂରାଜିମାନେ କେବଳ ତାଙ୍କର ପଶ୍ଚାତ୍‌ଦିଗରୁ ଅନୁସରଣ କଲେ ନାହିଁ, କିନ୍ତୁ ପାର୍ଶ୍ୱ ଦିଗ ଓ ସମ୍ମୁଖରେ ମଧ୍ୟ ଘେରି ରହିଲେ । ଉପଯୁକ୍ତ ଅସ୍ତ୍ରଶସ୍ତ୍ର, କମାଣ ଓ ଖାଦ୍ୟଦ୍ରବ୍ୟାଦିରୁ ବଞ୍ଚିତ ହୋଇ 'ତାନ୍ତ୍ୟା' ବହୁ କଷ୍ଟ ବରଣ କରି ଅବଶେଷରେ 'ଝାଲର୍‌ପଟନ' ନାମକ ସ୍ଥାନରେ ପହଞ୍ଚିଲେ ।

ସେହି ଅଞ୍ଚଳର ରାଜା ତାଙ୍କର ବାହିନୀକୁ 'ତାନ୍ତ୍ୟା'ଙ୍କ ଉପରେ ଆକ୍ରମଣ ପାଇଁ ଆଦେଶ ଦେଲେ । କିନ୍ତୁ, ସମୁଦାୟ ବାହିନୀ ଆଦେଶ ଅମାନ୍ୟ କରି 'ତାନ୍ତ୍ୟା'ଙ୍କ ସହ ଯୋଗଦାନ କଲେ ।ଏହିଠାରେ 'ତାନ୍ତ୍ୟା' ଘୋଡ଼ସବାର ବାହିନୀ, ପଦାତିକ ବାହିନୀ, ବତିଶି ଟି କମାଣ ଓ ଅନ୍ୟାନ୍ୟ ଯୁଦ୍ଧୋପଯୋଗୀ ସାମଗ୍ରୀ ତଥା ଖାଦ୍ୟଦ୍ରବ୍ୟାଦି ପାଇଲେ । 'ରାଓସାହେବ' ପେଶବା ଉକ୍ତ ରାଜାଙ୍କୁ ପଚିଶ ଲକ୍ଷଟଙ୍କା ଜୋରିମାନା ଦେବାକୁ କହିଲେ । ରାଜା ବହୁ ଅନୁନୟ ବିନୟ ହୋଇ ପରିଶେଷରେ ପନ୍ଦର ଲକ୍ଷ ଟଙ୍କା ଦେଲେ । 'ତାନ୍ତ୍ୟା' ସେହିସ୍ଥାନରେ ପାଞ୍ଚଦିନ ଅବସ୍ଥାନ କଲେ । 'ତାନ୍ତ୍ୟା' ପ୍ରତି ଘୋଡ଼ସବାର ସୈନ୍ୟକୁ ମାସିକ ତିରିଶି ଟଙ୍କା ଓ ପ୍ରତିପଦାତିକ ସୈନ୍ୟକୁ ମାସିକ ବାରଟଙ୍କା ହିସାବରେ ବେତନ ପ୍ରଦାନ କଲେ । ପରେ ପରେ ରାଓ ସାହେବ, ବାନ୍ଦାର ନବାବ ଓ ତାନ୍ତ୍ୟାଟୋପେ ଦକ୍ଷିଣ ଦିଗ ଅଭିଯାନ ସମ୍ବନ୍ଧରେ ଆପୋଷ ଆଲୋଚନା ପରାମର୍ଶ କରିବାକୁ ଲାଗିଲେ । ନର୍ମଦ ନଦୀ ଅତିକ୍ରମ କରି ଡ଼େକାନ ଅଞ୍ଚଳରେ ପ୍ରବେଶ କରିବା ସେମାନଙ୍କ ଲକ୍ଷ୍ୟ ଥିଲା । ଏହି ଗତି ପ୍ରତିହତ କରିବା ପାଇଁ ଇଂରାଜିମାନେ ଜାଲ ବିସ୍ତାର କରୁଥିଲେ । କିନ୍ତୁ 'ତାନ୍ତ୍ୟା' ବର୍ତ୍ତମାନ ଦୁର୍ବଳ ନଥିଲେ । ସେ ବାହିନୀ ସହ ଇନ୍ଦୋର ଦିଗରେ ଯାତ୍ରା କଲେ । ଇନ୍ଦୋରର ବାହିନୀ ଓ ଦରବାରୀ 'ତାନ୍ତ୍ୟା'ଙ୍କର ସମର୍ଥକ ଥିଲେ । ଇନ୍ଦୋର ଦରବାରରୁ ତାଙ୍କ ପାଖକୁ ଗୁପ୍ତ ନିମନ୍ତ୍ରଣ ମଧ୍ୟ ଆସିଥିଲା । ସେ 'ପରନ'ଠାରୁ ଦକ୍ଷିଣ ଦିଗକୁ ଯାତ୍ରା କରି 'ମାଲ୍‌ଓ୍ୱା' ମଧ୍ୟରେ ପ୍ରବେଶ କରି ଅବଶେଷରେ 'ରାୟଗଡ଼'ରେ ପହଞ୍ଚିଲେ । ବିଭିନ୍ନ ଦିଗରୁ 'ରବର୍ଟ', 'ହୋମସ୍,' 'ପାର୍କେ,' 'ମିଚେ଼ଲ', 'ହୋପ', 'ଲକହାର୍ଟ' (Robert, Holmes, Parke, Mitchell, Hope, Lockhart) ଆଦି ସେନାପତି ମାନେ ନିଜର ବାହିନୀ ସହ 'ତାନ୍ତ୍ୟା'ଙ୍କର ଅନୁସରଣ କରୁଥିଲେ । 'ତାନ୍ତ୍ୟା' ଇନ୍ଦୋର ଦିଗରେ ଯାଉଥିବାର ଖବର ପାଇ ଜଣେ 'ମହୋ'ରୁ ଆଗେଇ ଆସୁଥିଲେ । ଅନ୍ୟ ଜଣେ 'ନଜମେରା'କୁ ଯାଇଥିଲେ ଓ ଅନ୍ୟଜଣେ ରାୟଗଡ଼ ଯିବେ କିମ୍ବା ନାହିଁ ଏହି ପ୍ରକାର ବିଚାର କରୁଥିଲେ । ଜେନେରାଲ ମିଚେ଼ଲ ବହୁ କଷ୍ଟରେ ଏକ ପାହାଡ଼ ଉପରେ ଚଢ଼ି, 'ତାନ୍ତ୍ୟା' ପାହାଡ଼ର ଅପରପାର୍ଶ୍ୱରେ ଅବତରଣ କରି ଚାଲିଯାଉଥିବା ଦେଖିବାକୁ ପାଇଲେ । ଇଂରାଜିବାହିନୀ ଅତ୍ୟନ୍ତ କ୍ଲାନ୍ତ ହୋଇଥିବାରୁ ତାନ୍ତ୍ୟାଙ୍କର ଅନୁଧାବନ କରିବାରୁ ବିରତ ରହିଲେ । ଅପରପକ୍ଷରେ ତାନ୍ତ୍ୟା ନିଜର ଗତି ଅବ୍ୟାହତ ରଖିଥିଲେ । ପରଦିନ 'ମିଚେ଼ଲ' 'ତାନ୍ତ୍ୟା'ଙ୍କର ଅନୁଧାବନ କରି ତା'ଙ୍କର ନିକଟତର ହେଲେ । ବିଦ୍ରୋହୀମାନେ ଅତ୍ୟନ୍ତ କ୍ଲାନ୍ତ ହୋଇପଡ଼ିଥିବାରୁ ପଳାଇନଯାଇ ସମ୍ମୁଖ ଯୁଦ୍ଧ ପାଇଁ ପ୍ରସ୍ତୁତ ରହିଲେ । ସେମାନେ ସଂଖ୍ୟାରେ ପାଞ୍ଚହଜାର ହେଲେ ମଧ୍ୟ ଏକ ହଜାର ସଂଖ୍ୟା ବିଶିଷ୍ଟ ଇଂରାଜି

ସେନାକୁ ମୁକାବିଲା କରି ପଛଘୁଞ୍ଚା ଦେବାକୁ ଲାଗିଲେ । ରାୟଗଡ଼ର ଯୁଦ୍ଧ ଭୂମି ତ୍ୟାଗ କରି ତାନ୍ତ୍ୟାଙ୍କର ବାହିନୀ ବେଟଓ୍ୱା ନଦୀର ତୀରବର୍ତ୍ତୀ ଜଙ୍ଗଲ ଅଞ୍ଚଳରେ ପ୍ରବେଶ କରି ଅନ୍ୟପାର୍ଶ୍ୱରେ ଥିବା 'ସିରଞ୍ଜ' ନାମକ ସ୍ଥାନରେ ପହଞ୍ଚିଲେ । ପ୍ରବଳ ବର୍ଷା ହେବା ଫଳରେ ଇଂରାଜି ବାହିନୀର ଅଗ୍ରଗିତ ବାଧା ପ୍ରାପ୍ତ ହେଲା । ଏହି ସୁଯୋଗରେ 'ତାନ୍ତ୍ୟା' ନିଜର ବାହିନୀକୁ କିଛି ସମୟ ବିଶ୍ରାମ କରିବାକୁ ଦେଲେ । ସେଠାରେ ତାଙ୍କର ବାହିନୀ ଏକ ସପ୍ତାହ ବିଶ୍ରାମ କଲେ । ସପ୍ତାହାନ୍ତେ ସେ ଉତ୍ତର ଦିଗକୁ ଯାତ୍ରା କରି 'ଇଶାଗଡ଼' ନାମକ ଏକ ସହରରେ ପହଞ୍ଚିଲେ । ତାହା ସିନ୍ଧିଆଙ୍କର ଇଲାକା ଅନ୍ତର୍ଭୁକ୍ତ ଥିଲା । ତାନ୍ତ୍ୟା ଏହିସ୍ଥାନରେ ଜବରଦସ୍ତି ଆଠୋଟି କମାଣ ଛଡ଼ାଇ ନେଲେ ।

ଏହା ପରେ ବିଦ୍ରୋହୀ ବାହିନୀକୁ ଦୁଇ ଭାଗରେ ବିଭକ୍ତ କରାଯାଇ ଏକ ଭାଗ 'ରାଓ ସାହେବ' ଏବଂ ଅନ୍ୟଭାଗ ତାନ୍ତ୍ୟାଙ୍କର ନେତୃତ୍ୱରେ ଭିନ୍ନ ଭିନ୍ନ ପଥରେ ଯାତ୍ରା କଲେ । ପଥ ମଧ୍ୟରେ 'ମାଙ୍ଗ୍ରୋଲି' ଓ 'ସିନ୍ଧହାଓ୍ୱା' ନାମକ ସ୍ଥାନରେ ସେମାନଙ୍କର ଇଂରାଜି ସେନା ସହିତ ଖଣ୍ଡ ଯୁଦ୍ଧ ହୋଇଥିଲା ଓ ଇଂରାଜିମାନେ ସେମାନଙ୍କୁ ଅନୁସରଣ କରୁଥିଲେ କିନ୍ତୁ ସେମାନେ କୌଶଳ କ୍ରମେ ଭିନ୍ନ ଭିନ୍ନ ଦିଗରେ ଆସି 'ଲଳିତପୁର'ରେ ମିଳିତ ହେଲେ । କିନ୍ତୁ 'ତାନ୍ତ୍ୟା'ଙ୍କୁ ଚତୁର୍ଦ୍ଦିଗରୁ ଇଂରାଜିସେନା ଘେରିଯାଇଥିଲେ । ଦକ୍ଷିଣ ଦିଗ ମିଚେଲ, ପୂର୍ବ ଓ ଉତ୍ତର ଦିଗରେ 'କର୍ଣ୍ଣେଲ ଲିଡ଼େଲ' ଓ 'ମିଡ଼େ' (Colonel Liddell & Meade), ପଶ୍ଚିମ ଦିଗରେ ପାର୍କେ, ଚମ୍ବଲ ଦିଗରେ, 'ରବର୍ଟ' ତାଙ୍କୁ ଘେରି ରହିଥିଲେ । ଧୀରେ ଧୀରେ ବୃତ୍ତାକାରରେ ସେମାନେ 'ତାନ୍ତ୍ୟା'ଙ୍କ ଦିଗକୁ ମାଡ଼ିଆସୁଥିଲେ । ଏହି ଅବସ୍ଥା ଦେଖି 'ରାଓ ସାହେବ' ଓ 'ତାନ୍ତ୍ୟା' ପରସ୍ପର ପରାମର୍ଶ କରି ହଠାତ୍ 'କାଜୁରୀ' ନାମକ ସ୍ଥାନକୁ ପଳାଇଗଲେ । କିନ୍ତୁ ସେଠାରେ ମଧ୍ୟ ସେମାନେ ଏକ ଇଂରାଜି ସେନା ଦେଖିବାକୁ ପାଇଲେ । ଫଳରେ ସେମାନେ ଉତ୍ତର ଦିଗରେ ଥିବା ଜଙ୍ଗଲ ମଧ୍ୟରେ ପ୍ରବେଶ କରି 'ତଲବାହାଟ୍' ନାମକ ସ୍ଥାନ୍‌ରେ ପହଞ୍ଚିଲେ । ଫଳରେ ଇଂରାଜିମାନେ 'ତାନ୍ତ୍ୟା' ଦକ୍ଷିଣ ଦିଗ ଯାତ୍ରାରୁ ନିବୃତ୍ତ ରହିଲେ ବୋଲି ଭାବିନେଲେ । କିନ୍ତୁ 'ତାନ୍ତ୍ୟା' ଓ 'ରାଓସାହେବ' ହଠାତ୍ ଦିଗ ପରିବର୍ତ୍ତନ କରି 'ବେଟଓ୍ୱା' ନଦୀ ଅତିକ୍ରମ କରି 'କାଜୋରୀ' ଓ 'ରାୟଗଡ଼'ରେ ଇଂରାଜିଙ୍କ ସହ ଖଣ୍ଡଯୁଦ୍ଧ ଦେଇ ଦକ୍ଷିଣ ଦିଗକୁ ଆଗେଇ ଚାଲିଲେ । ଇଂରାଜିମାନେ ବିଭ୍ରାନ୍ତ ହୋଇଗଲେ । ସେମାନେ ସବୁ ଦିଗକୁ 'ତାନ୍ତ୍ୟା'ଙ୍କର ଗତି ପ୍ରତିହତ କରିବା ପାଇଁ ଚାଲିଲେ । 'ପାର୍କେ' ପାର୍ଶ୍ୱରୁ ମିଚେଲ ପଶ୍ଚାତ୍‌ଭାଗରୁ ଓ 'ବେଚେର୍' (Becher) ସମ୍ମୁଖ ଦିଗରୁ ତାନ୍ତ୍ୟାଙ୍କୁ ଅନୁସରଣ କରୁଥିଲେ ମଧ୍ୟ ଅତ୍ୟନ୍ତ କୌଶଳରେ 'ତାନ୍ତ୍ୟା' ନିଜର ବାହିନୀକୁ ଦକ୍ଷିଣ ଦିଗକୁ ଆଗେଇ ନେଲେ ।

କ୍ରମେ ସେ ନର୍ମଦା ନଦୀର ତୀରରେ ପହଞ୍ଚିଗଲେ ଓ 'ହୋସଙ୍ଗାବାଦ'ଠାରେ ତାହା ଅତିକ୍ରମ କଲେ । 'ତାନ୍ତ୍ୟା' ଅବଶେଷରେ ଡ଼େକାନ ଅଞ୍ଚଳରେ ନିଜର ବାହିନୀ ସହ ପ୍ରବେଶ କରି ନାଗପୁରରେ ପହଞ୍ଚିଲେ । ତାଙ୍କ ସମ୍ମୁଖ ଭାଗରେ ନିଜାମଙ୍କର ଇଲାକା ଥିଲା । ସେଠାରେ ଦରବାରରେ ତାଙ୍କର ବହୁ ସମର୍ଥକ ଥିଲେ । ଏପରିକି 'ପୁନା', 'ବମ୍ବେ' ଓ 'ମରହଟ୍ଟା' ବାଡ଼ାରେ ତାଙ୍କର ସମର୍ଥକ ମାନଙ୍କର ଅଭାବ ନଥିଲା । 'ତାନ୍ତ୍ୟା'ଙ୍କର ଅପ୍ରତିହତ ଗତି ଇଂରାଜିମାନଙ୍କ ମଧ୍ୟରେ ଭୟ ସଞ୍ଚାର କଲା । କାରଣ ନାନାଙ୍କର ନେତୃତ୍ୱରେ ସମଗ୍ର ମରହଟ୍ଟାବାଡ଼ା ଏକା ସାଙ୍ଗେ ବିଦ୍ରୋହ କରିଉଠିଲେ । ତାହାକୁ ଦମନ କରିବା ଇଂରାଜିଙ୍କ ପକ୍ଷରେ ଅସମ୍ଭବ ହୋଇପଡ଼ିବ । କିନ୍ତୁ ନାଗପୁରରେ ପହଞ୍ଚି 'ତାନ୍ତ୍ୟା' ଆବଶ୍ୟକ ଦ୍ରବ୍ୟାଦି ସଂଗ୍ରହରେ ଯେଉ ସହଯୋଗ ଆଶା କରୁଥିଲେ ତାହା ପାଇଲେ ନାହିଁ ।

ଅପ୍ରତ୍ୟାଶିତ ଭାବରେ ଇଂରାଜି ସେନା ଚତୁର୍ଦ୍ଦିଗରୁ ମାଡ଼ିଆସିଲେ । 'ମେଇଘାଟ' ଓ 'ଅସୀରଗଡ଼'ରେ ଥିବା ଇଂରାଜି ସେନା ଦକ୍ଷିଣ ଦିଗରୁ ଓ ଉତ୍ତର ଦିଗରୁ 'ଖନ୍ଦେଶ' ଓ 'ନାଗପୁର' ଆଡୁ ମାଡ଼ିଆସୁଥିଲେ । 'ତାନ୍ତ୍ୟା'ଙ୍କୁ ଅନୁସରଣ କରୁଥିବା ଇଂରାଜି ବାହିନୀ ମଧ୍ୟ ନର୍ମଦା ଅତିକ୍ରମ କରି ତାଙ୍କର ନିକଟବର୍ତ୍ତୀ ହେଲେ । ଏ ପରିସ୍ଥିତିରେ ମଧ୍ୟ 'ତାନ୍ତ୍ୟା' ହତୋସାହିତ ନହୋଇ ଇଂରାଜିଙ୍କ ମେଲଡ଼ାକକୁ ଲୁଟ୍ କରି ଟେଲିଗ୍ରାଫ ଅଫିସମାନ ଧ୍ୱଂସ କରି ବିଭିନ୍ନ ସ୍ଥାନରେ ଇଂରାଜି ଚୌକିକୁ ଆକ୍ରମଣ କରି କ୍ରମେ ନର୍ମଦା ନଦୀର ଉପରିସ୍ଥଳକୁ ଯାତ୍ରା କଲେ । କାରଣ ନର୍ମଦା କୂଳରେ ଥିବା ସମସ୍ତ ଦୁର୍ଗ ଉପରେ ଇଂରାଜିମାନେ ଦୃଷ୍ଟି ରଖିଥିବାରୁ 'ତାନ୍ତ୍ୟା' ବରୋଦାକୁ ଯିବାର ମନସ୍ଥ କରିଥିଲେ । 'ତାନ୍ତ୍ୟା' ନଦୀ ଅତିକ୍ରମ କରିବାକୁ 'କରଗୁନ୍' ନାମକ ସ୍ଥାନରେ ପହଞ୍ଚିଲେ । ସେଠାରେ ସେ 'ମେଜର ସଣ୍ଡରଲ୍ୟାଣ୍ଡ' (Major Sunderland)ଙ୍କୁ ଭେଟିଲେ । ଉଭୟ ପକ୍ଷରୁ ପ୍ରବଳ ଯୁଦ୍ଧ ହେଲା । 'ତାନ୍ତ୍ୟା' ପରିଶେଷରେ ନିଜର ବାହିନୀକୁ କମାଣ ଗୁଡ଼ିକ ତ୍ୟାଗ କରି ନର୍ମଦା ନଦୀ ଅତିକ୍ରମ କରିବାକୁ ଆଦେଶ ଦେଲେ । ସେମାନେ ନର୍ମଦାର ଅପରପାର୍ଶ୍ୱରେ ପ୍ରବେଶ କଲେ । ତାନ୍ତ୍ୟା ନିଜର ବାହିନୀ ସହ ବରୋଦାକୁ ନିରବିଚ୍ଛିନ୍ନ ଭାବରେ ଯାତ୍ରା କଲେ । 'ବରୋଦାରେ' ଦରବାର ଓ ସୈନ୍ୟବାହିନୀ 'ନାନା'ଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇଥିବାରୁ ତାନ୍ତ୍ୟାଟୋପେଙ୍କର ପୂର୍ଣ୍ଣ ସମର୍ଥକ ଥିଲେ । 'ତାନ୍ତ୍ୟା' 'ରାଜପୁରା'ରେ ପହଞ୍ଚିଲେ । ସେଠାରେ ମୁଖ୍ୟ ଅଧିକାରୀଙ୍କ ଠାରୁ ସେ ଅର୍ଥ ଓ ଘୋଡ଼ା ସଂଗ୍ରହ କଲେ । ପରଦିନ ସେ 'ଛୋଟଉଦୟପୁର' ଇଲାକାରେ ଛାଉଣୀ ପକାଇଲେ । ବରୋଦା ମାତ୍ର ପଚାଶମାଇଲ ଦୂରରେ ଥିଲା । ଛୋଟଉଦୟପୁରରେ

'ପାର୍କେ' 'ତାନ୍ତ୍ୟା'ଙ୍କୁ ଆକ୍ରମଣ କରିବାକୁ ଆସିବା ଫଳରେ ସେ ବରୋଦା ଯିବା ଯୋଜନା ତ୍ୟାଗ କରି ପଶ୍ଚିମ ଦିଗରୁ ଉତ୍ତର ଦିଗକୁ ଯାତ୍ରା କରି 'ବସବାରା' ନାମକ ଏକ ଜଙ୍ଗଲରେ ପ୍ରବେଶ କଲେ ।

'ବାନ୍ଦାର ନବାବ' ଆଉ ସହିନପାରି ଇଂଲାଣ୍ଡର ରାଣୀଙ୍କର ଘୋଷଣାନାମା ପ୍ରକାରେ ଇଂରାଜିଙ୍କୁ ଅସ୍ତ୍ରତ୍ୟାଗ କରି ଆତ୍ମ ସମର୍ପଣ କଲେ । କେବଳ 'ତାନ୍ତ୍ୟାଟୋପେ' ଓ 'ରାଓ ସାହେବ' ଇଂରାଜି ମାନଙ୍କର ଜାଲଭିତରେ ରହିଲେ । ସେମାନଙ୍କର ଦକ୍ଷିଣ ଦିଗରେ ନର୍ମଦା ନଦୀଥିଲା, ପଶ୍ଚିମ ଦିଗରେ 'ରବର୍ଟ' ତାଙ୍କର ବାହିନୀ ସହ ଥିଲେ । ଉତ୍ତର ଓ ପୂର୍ବ ଦିଗରେ ତୀଖ୍ଣ ଓ ଦୁର୍ଭେଦ ପର୍ବତମାନଥିଲା । ଏହି ପରିସ୍ଥିତିରେ ମଧ୍ୟ 'ତାନ୍ତ୍ୟା' ଆତ୍ମସମର୍ପଣର କଥା କଳ୍ପନା ମଧ୍ୟ କଲେ ନାହିଁ । ଡ଼ିସେମ୍ବର ୧୧ତାରିଖ ଦିନ ସେ ଜଙ୍ଗଲରୁ ବାହାରି ଆସି ଏକ କିଲ୍ଲାଦାର ଠାରୁ ଆବଶ୍ୟକ ଦ୍ରବ୍ୟାଦି ସଂଗ୍ରହ କରି 'ଉଦୟପୁର'କୁ ଯାତ୍ରା କଲେ । କିନ୍ତୁ ହଠାତ୍ କିଛି ଇଂରାଜି ସେନା ତାଙ୍କୁ ଆକ୍ରମଣ କରିବା ଫଳରେ ସେ ପୁନର୍ବାର ଜଙ୍ଗଲ ମଧ୍ୟରେ ପ୍ରବେଶ କଲେ । 'ରାଓ ସାହେବ' ଓ 'ତାନ୍ତ୍ୟା' ପରସ୍ପର ପରାମର୍ଶ କରି ପ୍ରତାପଗଡ଼ ଅଭିମୁଖେ ଯାତ୍ରା କରିବା ପାଇ ସ୍ଥିର କରି ଯାତ୍ରା ଆରମ୍ଭ କଲେ । କିନ୍ତୁ ଅପରାହ୍ନ ସମୟରେ 'ତାନ୍ତ୍ୟା'ଙ୍କର ବାହିନୀ ଜଙ୍ଗଲରୁ ବାହାରି ଆସି ସମୟରେ 'ମେଜର ରକ୍' (Major Rocke) ତାଙ୍କର ପଥ ଅବରୁଦ୍ଧ କଲେ । ଏକ ଖଣ୍ଡ ଯୁଦ୍ଧ ପରେ ବହୁ ଇଂରାଜି ସୈନ୍ୟଙ୍କୁ ମୃତାହତ କରି 'ତାନ୍ତ୍ୟା' ନିଜର ବାହିନୀ ସହ ସେହି ଆବର୍ତ୍ତରୁ ଖସିଗଲେ ।

୧୮୫୮ ମସିହା ଡ଼ିସେମ୍ବର ୨୫ତାରିଖରେ 'ତାନ୍ତ୍ୟା' 'ବାସବାରା' ଜଙ୍ଗଲ ତ୍ୟାଗ କଲେ । ଏହି ସମୟରେ ଶାହାଜାଦା ଫିରୋଜଶାହ ନିଜର ବାହିନୀ ସହ 'ତାନ୍ତ୍ୟା'ଙ୍କୁ ଭେଟିବାକୁ ଆସୁଥିଲେ । ସିନ୍ଧିଆର ଜଣେ ପୂର୍ବତନ 'ସର୍ଦ୍ଦାର ମାନସିଂହ' ଓ 'ରାଓ ସାହେବ'ଙ୍କ ସହ ଗତିକରି ପଥ ମଧ୍ୟରେ ଇଂରାଜଙ୍କ ସହ ସାମାନ୍ୟ ଖଣ୍ଡ ଯୁଦ୍ଧ ପରେ 'ତାନ୍ତ୍ୟା' ୧୮୫୯ ମସିହା ଜାନୁଆରୀ ମାସ ୧୩ତାରିଖ ଦିନ'ଫିରୋଜଶାହା'ଙ୍କୁ ଭେଟିଲେ । ସେଠାରେ ସେମାନେ କିଛି ଦିନ ଅବସ୍ଥାନ କଲେ । ଏ ମଧ୍ୟରେ 'ତାନ୍ତ୍ୟା' ଇଂରାଜିମାନଙ୍କର ଅଗ୍ରଗତିର ଟିକିନିଖି ଖବର ରଖୁଥିଲେ । ଇଂରାଜି ସେନା ଚତୁର୍ଦ୍ଦିଗରୁ ଘେରି ଆସୁଥିବା ଖବର ପାଇ ସେ ତୁରନ୍ତ 'ଦିଓ୍ୱାସା'କୁ ଯାତ୍ରା କଲେ ।

କ୍ରମେ 'ତାନ୍ତ୍ୟା'ଙ୍କର ଚତୁର୍ଦ୍ଦିଗରେ ସମସ୍ତ ପଥ ଅବରୁଦ୍ଧ ହୋଇଗଲା । 'ନାପିଏର୍' (Napier) ଉତ୍ତର ଦିଗରୁ, 'ସାଓ୍ୱରସ୍'(Showers) ଉତ୍ତର ପଶ୍ଚିମ ଦିଗରୁ, 'ସମରସେଟ୍' (Sumerset) ପୂର୍ବ ଦିଗରୁ, 'ସ୍ମିଥ୍' (Smith) ଦକ୍ଷିଣ ପୂର୍ବ ଦିଗରୁ

'ମିଚେଲ' ଓ 'ବେନସନ' (Benson) ଦକ୍ଷିଣ ଦିଗରୁ ଓ 'ବନର୍' (Bonner) ଦକ୍ଷିଣ ପଶ୍ଚିମ ଓ ପଶ୍ଚିମ ଦିଗରୁ ତାହାଙ୍କୁ ଘେରିଗଲେ । କୌଣସିପ୍ରକାରେ 'ତାନ୍ତ୍ୟା' 'ଦିଓ୍ୱାସା'ରେ ପହଞ୍ଚିଗଲେ । ୧୮୫୯ ମସିହା ଜାନୁଆରୀ ୧୬ତାରିଖ ସକାଳେ 'ତାନ୍ତ୍ୟାଟୋପେ', 'ରାଓ ସାହେବ' ଓ 'ଫିରୋଜଶାହ' ଏକ ଯୁଦ୍ଧ ମନ୍ତ୍ରଣା ସଭାରେ ବସିଥିବା ବେଳେ ହଠାତ୍ ନିରାଶ ବ୍ୟଞ୍ଜକ ଧ୍ୱନି ଶୁଣିବାକୁ ପାଇଲେ । 'ତାନ୍ତ୍ୟା' ତାଙ୍କ ପିଠିରେ କାହାର ହାତ ସ୍ପର୍ଶ ଅନୁଭବ କରି ଚାହିଁଲା ବେଳକୁ ଜଣେ ଇଂରାଜି ତାଙ୍କୁ ଧରିବାକୁ ଚେଷ୍ଟା କରୁଥିବା ଦେଖିବାକୁ ପାଇଲେ ଓ ଅନ୍ୟ ଇଂରାଜି ସୈନ୍ୟ ମାନେ ତାଙ୍କର ଛାଉଣୀମଧ୍ୟରେ ପ୍ରବେଶ କରିବା କଥା ମଧ୍ୟ ସେ ଜାଣି ଗଲେ । 'ତାନ୍ତ୍ୟା' ଧରାପଡ଼ିଯିବାର ଆନନ୍ଦରେ ଇଂରାଜିମାନେ ଉଲ୍ଲାସ ଧ୍ୱନି କରୁଥିବା ସମୟରେ 'ତାନ୍ତ୍ୟା' ହଠାତ୍ କେଉଁଆଡ଼େ ଉଭାନ୍ ହୋଇଗଲେ କେହି ତାହା ଜାଣି ପାରିଲେ ନାହିଁ ।

'ତାନ୍ତ୍ୟା' ପୁନର୍ବାର 'ଅଲଓ୍ୱାର' ନିକଟରେ ଥିବା 'ଶିଖାର୍' ନାମକ ସ୍ଥାନରେ ରାଓ ସାହେବ ଓ ଫିରୋଜଶାହାଙ୍କ ସହ ମିଳିତ ହେଲେ । ଜାନୁଆରୀ ୨୧ତାରିଖ ଦିନ ଇଂରାଜିମାନେ ପାଗଳ ପରି ହୋଇ ଚତୁର୍ଦ୍ଦିଗକୁ 'ତାନ୍ତ୍ୟା'ଙ୍କର ଅନୁସନ୍ଧାନରେ ଚାଲିଲେ । 'ହୋମ୍ସ୍'ଙ୍କର ବିଦ୍ରୋହୀମାନଙ୍କ ସହ ଏକ ଖଣ୍ଡ ଯୁଦ୍ଧ ହୋଇ ବିଦ୍ରୋହୀମାନେ ପରାଜୟ ବରଣ କଲେ । 'ତାନ୍ତ୍ୟା' ଏହି ଅବସ୍ଥାରେ 'ରାଓ ସାହେବ'ଙ୍କ ଠାରୁ ବିଦାୟ ନେଇ ଦୁଇଟି ଘୋଡ଼ା, ଏକ ଘୋଡ଼ା ଛୁଆ, ଦୁଇଜଣ ବ୍ରାହ୍ମଣ ପାଚକ ଓ ଜଣେ ଭୃତ୍ୟକୁ ସଙ୍ଗରେ ନେଇ 'ଗାରନ୍' ଜଙ୍ଗଲରେ ଲୁଚିଥିବା 'ମାନସିଂହ'ଙ୍କ ପାଖକୁ ଗଲେ ।

ଇଂରାଜିମାନେ ସବୁ ଦିଗରୁ 'ତାନ୍ତ୍ୟା'ଙ୍କୁ ବନ୍ଦୀ କରିବାରେ ଅସଫଳହୋଇ ଅବଶେଷରେ ଭେଦନୀତିର ଆଶ୍ରୟ ନେଲେ । ସେମାନେ 'ମାନସିଂହ'ଙ୍କୁ ରାଜକ୍ଷମା ଦେବାର ପ୍ରତିଶ୍ରୁତି ଦେଇ ଓ 'ନରଓ୍ୱାର' ରାଜ୍ୟ ପ୍ରଦାନ କରିବାର ପ୍ରତିଶ୍ରୁତି ଦେଇ 'ତାନ୍ତ୍ୟାଟୋପେ'ଙ୍କୁ ଧରାଇଦେବା ପାଇଁ ପ୍ରବର୍ତ୍ତାଇଲେ । 'ମାନସିଂହ' ଦୁର୍ବଳତା ଅନୁଭବ କରି ତାହା ସ୍ୱୀକାର କଲେ । ସେ ତାନ୍ତ୍ୟାଙ୍କୁ ଇଂରାଜିଙ୍କ ପାଖରେ ଆତ୍ମସମର୍ପଣ ପାଇଁ ଯାଉଥିବା କଥା ମଧ୍ୟ କହିଲେ । ଏସବୁ ସତ୍ତ୍ୱେ 'ତାନ୍ତ୍ୟା'ଙ୍କର 'ମାନସିଂହ'ଙ୍କ ଉପରେ ଯଥେଷ୍ଟ ବିଶ୍ୱାସ ଥିଲା ଓ ସେ ତାଙ୍କୁ ଇଂରାଜିଙ୍କ ହାତରେ ଧରାଇଦେବାର କଥା ସେ କଳ୍ପନା ମଧ୍ୟ କରିନଥିଲେ ।

'ଫିରୋଜଶାହ' ଏକ ପତ୍ରରେ 'ତାନ୍ତ୍ୟା'ଙ୍କୁ ନିଜ ପାଖକୁ ଡ଼କାଇଥିଲେ । ତାନ୍ତ୍ୟା, ସେ ପତ୍ରଟି ମାନସିଂହଙ୍କୁ ଦେଖାଇ କରି କହିଲେ ଏହି ପରିସ୍ଥିତିରେ ତୁମେ ଯାହା ପରାମର୍ଶ ଦେବ ମୁଁ ସ୍ୱୀକାର କରିବି । ବିଶ୍ୱାସଘାତକ 'ମାନସିଂହ', 'ତାଂନ୍ତ୍ୟା'ଙ୍କୁ କିଛି ସମୟ ଅପେକ୍ଷା କରିବାକୁ କହିଲେ ଓ ତାଙ୍କର ମତାମତ ପରେ ଜଣାଇବାକୁ କହିଲେ ।

'ମାନସିଂହ' 'ତାନ୍ତ୍ୟା'ଙ୍କୁ ପରାମର୍ଶ ଦେଲେ ଯେ ମୋର ଅନୁଚର ଆପଣଙ୍କୁ ଯେଉଁଠାକୁ ନେବ ଆପଣ ସେଠାରେ ନିଶ୍ଚିନ୍ତରେ ଯାଇ ମୁଁ ଫେରିବା ପର୍ଯ୍ୟନ୍ତ ଅବସ୍ଥାନ କରୁଥାଆନ୍ତୁ । ମାନସିଂହଙ୍କ ଅନୁଚର ଦେଖାଇଥିବା ସ୍ଥାନରେ 'ତାନ୍ତ୍ୟାଟୋପେ' ପରମ ବିଶ୍ୱାସରେ ତିନି ଦିନ କାଳ ଅବସ୍ଥାନ କଲେ । ତୃତୀୟ ଦିନ ଅର୍ଦ୍ଧରାତ୍ରିରେ ତାନ୍ତ୍ୟାଟୋପେ ନିଶ୍ଚିନ୍ତରେ ନିଦ୍ରା ଯାଇଥିବା ବେଳେ 'ମାନସିଂହ'ଙ୍କ ସହିତ ଆସିଥିବା ସୈନ୍ୟମାନେ ତାହାଙ୍କୁ ବନ୍ଦୀ କଲେ । ତାନ୍ତ୍ୟାଙ୍କୁ ନିଜର ଅନୁଚର ସହ ନିର୍ଦ୍ଦିଷ୍ଟ ସ୍ଥାନକୁ ପ୍ରେରଣ କରି ମାନସିଂହ ଇଂରାଜିଙ୍କ ପାଖକୁ ଯାଇଥିଲେ । ଇଂରାଜିମାନେ ମାନସିଂହଙ୍କ ସହ ବମ୍ବେରୁ କିଛି ଦେଶୀ ସୈନ୍ୟ ପଠାଇଥିଲେ । ସେ ସମୟରେ 'ନାନା'ଙ୍କର ଭାରତୀୟ ମାନଙ୍କମଧ୍ୟରେ ଜନପ୍ରିୟତା ହେତୁ ସିପାହୀ ମାନଙ୍କୁ 'ତାନ୍ତ୍ୟା'ଙ୍କୁ ବନ୍ଦୀ କରିବାକୁ ଆଦେଶ ଦିଆନଯାଇ କେବଳ ମାନସିଂହଙ୍କ ଆଦେଶ ପାଳନ ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । ପରିଶେଷରେ ୧୮୫୯ ମସିହା ଏପ୍ରିଲ ସାତତାରିଖ ଦିନ 'ତାନ୍ତ୍ୟା' ବିଶ୍ୱାସଘାତକତାର ଶିକାର ହୋଇ ବନ୍ଦୀ ହେଲେ । ତାପର ଦିନ ସକାଳୁ ତାଙ୍କୁ 'ସିପ୍ରି'ରେ ଥିବା ଜେନେରାଲ ମିଡ଼େ (Meade)ଙ୍କର ଛଉଣୀକୁ ନିଆଗଲା । 'ତାନ୍ତ୍ୟା'ଙ୍କ ନାମରେ ଇଂରାଜିଙ୍କ ବିରୁଦ୍ଧରେ ଯୁଦ୍ଧ ଓ ଶତ୍ରୁତା କରିଥିବା ଅଭିଯୋଗ ଅଣାଗଲା । 'ତାନ୍ତ୍ୟା' ତାର ଉତ୍ତରରେ କହିଲେ ଯେ ସେ ପୂର୍ବରୁ 'ନାନା'ଙ୍କର ଅଧିନରେ ଥିଲେ ଓ ପରେ 'ଝାନ୍‌ସୀର ରାଣୀ'ଙ୍କ ଅଧିନରେ ଥିଲେ । ସେମାନଙ୍କର ଆଦେଶ ପାଳନ କରିବା ତାଙ୍କର କର୍ତ୍ତବ୍ୟ ଥିଲା । ଏଣୁ, ସେ କୌଣସି ଅପରାଧ କରିନାହାନ୍ତି, ପରନ୍ତୁ, ସୁଚାରୁ ରୂପେ ତାଙ୍କର କର୍ତ୍ତବ୍ୟ ହିଁ କେବଳ ସମ୍ପାଦନ କରିଛନ୍ତି । ଇଂରାଜିମାନଙ୍କ ବିଶେଷ ଅନୁରୋଧରେ ସେ ତାଙ୍କର ଯୁଦ୍ଧ ଅନୁଭୂତି ବର୍ଣ୍ଣନା କଲେ ଓ ତାହା ଅନ୍ୟମାନଙ୍କ ଦ୍ୱାରା ଲିଖିତ ହେବା ପରେ ସେଥିରେ ସେ ଇଂରାଜି ଭାଷାରେ ନିଜର ନାମ ଦସ୍ତଖତ କଲେ । ସେ ଇଂରାଜି ଜାଣିଥିଲେ ମଧ୍ୟ କେହି ତାଙ୍କୁ କିଛି ପଚ଼ାରିଲେ କେବଳ ହିନ୍ଦୁସ୍ଥାନୀ ଭାଷାରେ ଉତ୍ତର ଦେଉଥିଲେ । ବନ୍ଦୀ ଅବସ୍ଥାରେ ମଧ୍ୟ 'ତାନ୍ତ୍ୟା'ଙ୍କର ତେଜସ୍ୱୀତା, ସିଧାସଳଖ ଉତ୍ତର ଦେବା, ବ୍ୟକ୍ତିତ୍ୱ ଓ ଆଭିଜାତ୍ୟ ଦେଖି ଇଂରାଜିମାନେ ମଧ୍ୟ ଅନ୍ତରରେ ପ୍ରଶଂସା କରିବାକୁ ଲାଗିଲେ ।

ଏପ୍ରିଲ ଅଠର ତାରିଖ ଦିନ ବିଚାରର ଅଭିନୟ ହେଲା । 'ତାନ୍ତ୍ୟା'ଙ୍କୁ ଫାଶୀ ହୁକୁମ୍ ହେଲା । ସେହିଦିନ ଅପରାହ୍ନରେ ତାଙ୍କୁ ଫାଶୀ ଖୁଣ୍ଟକୁ ନିଆଗଲା । ସେ ନିର୍ଭୟରେ ଫାଶୀଖୁଣ୍ଟ ଉପରେ ଚଢ଼ିଗଲେ । କେବଳ ରଶିରେ ବେକ ଗଳାଇବା ଆଗରୁ ସେ ଇଂରାଜି ସରକାରଙ୍କୁ ତାଙ୍କର ମୃତ୍ୟୁ ପରେ ତାଙ୍କର ପିତା ବା ପରିବାର ବର୍ଗଙ୍କ ଉପରେ ଅତ୍ୟାଚାର ନକରିବାକୁ ଅନୁରୋଧ କଲେ । କାରଣ, ସେମାନଙ୍କର ବିଦ୍ରୋହ ସହିତ କୌଣସି ପ୍ରକାରେ ସମ୍ପର୍କ ନଥିଲା ।

ଏକ ପ୍ରଚଣ୍ଡ ସାମରିକ ପ୍ରତିଭା ସମ୍ପନ୍ନ ଉଗ୍ରଦେଶପ୍ରେମୀଙ୍କର ଏହିପରିଭାବରେ ମୃତ୍ୟୁ ହେଲା । ସେ ଇଂରାଜିଙ୍କ ବିରୁଦ୍ଧରେ ଲଢ଼ାଇକରୁଥିଲେ ମଧ୍ୟ ନିଜର ବିଚକ୍ଷଣ ସାମରିକ ପ୍ରତିଭା ଓ କର୍ମ କୁଶଳତା ପାଇଁ ଇଂରାଜିମାନଙ୍କର ପ୍ରଶଂସାର ପାତ୍ର ହୋଇଥିଲେ । ୧୮୫୯ ମସିହା ଜାନୁଆରୀ ମାସ ୧୭ତାରିଖରେ ଲଣ୍ଡନରୁ ବାହାରୁଥିବା ଟାଇମସ୍ ପତ୍ରିକାରେ 'ତାନ୍ତ୍ୟା'ଙ୍କ ବିଷୟରେ ପ୍ରକାଶିତ ସମ୍ବାଦ ହେଲା:-

"Our very remarkable friend Tantia Tope is too troublesome and clever enemy to be admired. Since last june he has kept Central India as a fervour. He has sacked stations, plundered treasuries, emptied arsenal collected armies, lost them; faught battles lost them; taken guns from native princes, lost them; taken more lost them; his motions were like forked lighting; and for weeks, he has marched thirty to forty miles a day. He has crossed Narmada to & fro; he has marched between our columns, behind them, before them mountains, over rivers, through ravines and valleys, a mid swamps, on he goes, backwards and forward and side ways and zig zag ways, " (17th Jan 1859, The Times)

''ଆମର ବନ୍ଧୁ ତାନ୍ତ୍ୟାଟୋପେ ଜଣେ ବହୁ ଗଣ୍ଡଗୋଳିଆ ଓ ଚତୁରବ୍ୟକ୍ତି ଯେ କି ପ୍ରଶଂସାର ଯୋଗ୍ୟ ଅଟନ୍ତି । ଜୁନ୍‌ମାସର ଶେଷଭାଗ ପର୍ଯ୍ୟନ୍ତ ସେ ମଧ୍ୟଭାରତରେ ଉଷ୍ଣତା ବଜାୟ ରଖିଥିଲେ । ସେ ଷ୍ଟେସନ ଗୁଡ଼ିକୁ ଧ୍ୱଂସ କରୁଥିଲେ, ଖଜଣାଖାନା ଲୁଟ୍ କରୁଥିଲେ, ଶସ୍ତ୍ରାଗାର ଖାଲି କରୁଥିଲେ । ସୈନ୍ୟ ସଂଗ୍ରହ କରୁଥିଲେ ଓ ହରାଉଥିଲେ । ଯୁଦ୍ଧ ଲଢୁଥିଲେ ଓ ହାରୁଥିଲେ । ସ୍ଥାନୀୟ ରାଜାମାନଙ୍କଠାରୁ ବନ୍ଧୁକ ନେଉଥିଲେ ଓ ହରାଉଥିଲେ । ପୁଣି ଅଧିକ ନେଉଥିଲେ ଓ ହରାଉଥିଲେ । ତାଙ୍କର ଗତି ବିଦ୍ୟୁତ୍ ସ୍ଫୁରଣର ଶାଖା ପ୍ରଶାଖା ପରି ଥିଲା । ସପ୍ତାହେଧରି ସେ ପ୍ରତିଦିନ ତିରିଶ ଚାଳିଶ ମାଇଲ ପଥ ଅତିକ୍ରମ କରୁଥିଲେ । ସେ ବାରମ୍ବାର ନର୍ମଦା ନଦୀ ଏପଟରୁ ସେପଟକୁ ପାରି ହେଉଥିଲେ । ଦୁଇଟି ବାହିନୀ ମଧ୍ୟରେ ପଛରେ ଓ ସମ୍ମୁଖରେ ଅଗ୍ରସର ହେଉଥିଲେ । ପାହାଡ଼ ଉପରେ ନଦୀ ମଧ୍ୟରେ, କାଦୁଅ ପଙ୍କ ମଧ୍ୟରେ, ସେ ଆଗ, ପଛ, ପାର୍ଶ୍ୱ ଓ ଅଙ୍କାବଙ୍କା ଭାବରେ ଗତି କରୁଥିଲେ ।''



# ଭାରତବର୍ଷର ଅନ୍ୟାନ୍ୟ ସ୍ଥାନରେ
# ବିଦ୍ରୋହର ଦାବାନଳ

ପ୍ରକୃତ ପକ୍ଷରେ କହିବାକୁ ଗଲେ ୧୮୫୭ର ବିଦ୍ରୋହ କେବଳ ଏକ ସିପାହୀ ବିଦ୍ରୋହ ନଥିଲା । ଏହା ଏକ ଗଣ ବିଦ୍ରୋହ ଥିଲା ଓ ଏହି ଗଣ ବିଦ୍ରୋହରେ ସିପାହୀମାନେ ପୂର୍ଣ୍ଣ ପ୍ରାଣରେ ସହଯୋଗ କରିଥିଲେ । ଚପାତି ଓ ରକ୍ତ ପଦ୍ମର ବିଦ୍ରୋହ ବାର୍ତ୍ତା ସାରା ଦେଶରେ ବ୍ୟାପି ଯାଇଥିଲା । ଯୋଜନା ଅନୁସାରେ ଉତ୍ତରଭାରତରେ ପୂର୍ବ ନିର୍ଦ୍ଧାରିତ ସମୟରେ ବିଦ୍ରୋହର ଆରମ୍ଭ ହେଲେ, ତତ୍ ସହିତ ଦକ୍ଷିଣ ଭାରତ ଜାଗିଉଠି ବିଦ୍ରୋହରେ ଯୋଗଦାନ କରିବାର ଥିଲା । ଫଳରେ ସାରା ଦେଶରେ ଏକତ୍ର ଇଂରାଜି ବିରୁଦ୍ଧରେ ବିଦ୍ରୋହ କରାଗଲେ ଇଂରାଜିମାନଙ୍କର ପରାଜୟ ସୁନିଶ୍ଚିତ ହେବ । କିନ୍ତୁ ନିର୍ଦ୍ଧାରିତ ସମୟ ପୂର୍ବରୁ ଉତ୍ତର ଭାରତରେ ବିଦ୍ରୋହର ଆରମ୍ଭ ହେବାରୁ, ଦକ୍ଷିଣ ଭାରତର ବିଦ୍ରୋହୀମାନେ ଦ୍ୱିଧାରେ ପଡ଼ିଲେ । ସେମାନେ କେବଳ ଉତ୍ତରଭାରତରେ ଯୁଦ୍ଧର ପରିସ୍ଥିତି ଅନୁସାରେ କାର୍ଯ୍ୟ କରିବାର ବିଚାରରେ ରହିଲେ । ଏଣୁ ସେମାନଙ୍କ ମଧ୍ୟରେ ବିଦ୍ରୋହ କରିବାର ସମୟ ନେଇ ବୁଝାମଣା ଓ ଯୋଗାଯୋଗ ବିଶେଷ ଭାବରେ ରହିଲା ନାହିଁ । କିନ୍ତୁ ସାଧାରଣ ଜନତା ଓ ସିପାହୀଗଣ ତଥା ବହୁରାଜା, ନବାବ, ଜମିଦାର ଓ ଇଲାକାଦାର ଆଦିଙ୍କର ପ୍ରାଣରେ ବହୁ ପୂର୍ବରୁ 'ନାନାସାହେବ,' ଓ 'ତାନ୍ତ୍ୟାଟୋପେ', ହଜରତ୍‌ମହଲ ଆଦି ବିଦ୍ରୋହୀନେତାମାନେ, ଦୂତ ଓ ବାର୍ତ୍ତା ମାଧ୍ୟମରେ ସ୍ୱଧର୍ମ ଓ ସ୍ୱରାଜ୍ୟ ପ୍ରାପ୍ତି ନିମିତ୍ତ ବିଦ୍ରୋହର ଅଗ୍ନି ଜଳାଇଥିଲେ । ବର୍ତ୍ତମାନ ଉତ୍ତର ଭାରତରେ 'ଦିଲ୍ଲୀ' 'ଲକ୍ଷ୍ନୌ' ତଥା କାନପୁର ଓ ଅନ୍ୟାନ୍ୟ ରାଜ୍ୟମାନଙ୍କରେ ବିଦ୍ରୋହୀଙ୍କର ବିଜୟ ବାର୍ତ୍ତା ପାଇ ତାହା ବାଡ଼ବାଗ୍ନି ହୋଇ ଜଳିଉଠିଲା ।

ଦକ୍ଷିଣଭାରତରେ ସେତେବେଳେ ତିନିଗୋଟି ଗୁରୁତ୍ୱପୂର୍ଣ୍ଣ ରେଜିମେଣ୍ଟ ଅବସ୍ଥାପିତ ହୋଇଥିଲା । ୨୭ତମଟି 'କୋହ୍ଲାପୁର'ରେ, ୨୯ତମଟି 'ବେଲଗାଓଁ'ରେ ଏବଂ ୨୮ତମଟି 'ଧରୱାର'ରେ ଅବସ୍ଥାପିତ ହୋଇଥିଲା । ଦକ୍ଷିଣଭାରତରେ ବିଦ୍ରୋହୀମାନେ ପରସ୍ପର ମଧ୍ୟରେ ଯୋଗସୂତ୍ର ରକ୍ଷା କରି ଅଗଷ୍ଟ ୧୦ତାରିଖରେ ବିଦ୍ରୋହ ଆରମ୍ଭ କରିବାକୁ ସ୍ଥିର କରିଥିଲେ ।

ଏମଧ୍ୟରେ ଏକ ଇଂରାଜି ବାହିନୀକୁ, କୋହ୍ଲାପୁରରେ ତାଙ୍କ ଅଧିନରେ ଅବସ୍ଥାପିତ ଦେଶୀ ରେଜିମେଣ୍ଟକୁ ବିଦ୍ରୋହ ଆଶଙ୍କାରେ ଜବତ୍ କରିବାକୁ ପଠାଗଲା ।

ଏ ସମ୍ବାଦ କୋହ୍ଲାପୁରରେ ଥିବା ଇଂରାଜି ବାହିନୀର ଦେଶୀ ସିପାହୀ ମାନେ ଜଣେ ଟେଲିଗ୍ରାଫ ଅଫିସରଙ୍କ ଦ୍ୱାରା ପାଇଯିବା ଫଳରେ ସେମାନେ ହଠାତ୍ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ସେଠାରେ ଥିବା ଇଂରାଜି ଅଫିସର ମାନଙ୍କୁ ହତ୍ୟାକଲେ ଓ ଖଜଣାଖାନା ଲୁଟ୍ କଲେ। ଏହି ସମୟରେ ବିଦ୍ରୋହୀମାନଙ୍କୁ ଜବତ୍‌କରିବା ପାଇଁ ଇଂରାଜି ବାହିନୀ ପହଞ୍ଚିବା ଫଳରେ ସେମାନେ 'ସାମନ୍ତବାଦୀ'ର ରାମଜୀ ଶିଷାଳଙ୍କ ନେତୃତ୍ୱରେ ଆକ୍ରମଣ କରି ଇଂରାଜି ସେନାକୁ କାଦି ଜଙ୍ଗଲ ଆଡ଼କୁ ତଡ଼ିନେଲେ । କିଛିମାସ ପରେ ଇଂରାଜିମାନେ ଗୋଆରେ ଥିବା ପର୍ତ୍ତୁଗୀଜ ସୈନ୍ୟମାନଙ୍କ ସାହାଯ୍ୟରେ ସେମାନଙ୍କୁ ଘଉଡ଼ାଇ ଦେବା ଫଳରେ କିଛି ଛତ୍ରଭଙ୍ଗ ଦେଇ ପଳାଇଗଲେ ଓ ନୂତନ ହୋଇ ଆସିଥିବା ଇଂରାଜି ଅଫିସର 'ଜାକବ୍' ଅବଶିଷ୍ଟ ସିପାହୀମାନଙ୍କୁ ନିଶସ୍ତ୍ର କରି ସେମାନଙ୍କର ନେତାମାନଙ୍କୁ ଗୁଳିରେ ଉଡ଼ାଇ ଦେବାକୁ ଆଦେଶ ଦେଲେ । ଏ ମଧ୍ୟରେ ନାନାସାହେବଙ୍କର ଜଣେ ଦୂତ ଆସି କୋହ୍ଲାପୁରର ଯୁବକ ରାଜାଙ୍କୁ ଏହି ଜାତୀୟ ବିଦ୍ରୋହରେ ଯୋଗଦାନ କରିବାକୁ ପ୍ରବର୍ତ୍ତାଇଥିଲେ । 'କୋହ୍ଲାପୁରର' ଯୁବକରାଜାଙ୍କୁ ଦରବାରରୁ ଏକ ତଲବାର ମଧ୍ୟ ଉପହାର ଦିଆଗଲା । ଏହିପ୍ରକାରେ ସାଙ୍ଗ୍‌ଲି, ଜାମଖିନ୍ଦି ଓ ଅନ୍ୟାନ୍ୟ ଦକ୍ଷିଣ ରାଜ୍ୟ ଗୁଡ଼ିକ ସହିତ ଯୋଗ ସୂତ୍ର ରକ୍ଷା କରାଗଲା । 'କୋହ୍ଲାପୁରର' ରାଜାଙ୍କର ସାନଭାଇ ଚିମ୍ନାସାହେବ ଜଣେ ଉଗ୍ରଦେଶପ୍ରେମୀ ଓ ବୀରସ୍ୱଭାବର ଥିଲେ । ସେ ଗୋପନରେ କୋହ୍ଲାପୁରର ସାମୟିକ ବାହିନୀ ଓ ସ୍ୱେଚ୍ଛାସେବୀମାନଙ୍କୁ ପ୍ରସ୍ତୁତ କରାଇ ଏକ ସେନା ସଂଗଠିତ କରୁଥିଲେ । ଡ଼ିସେମ୍ବର ପନ୍ଦର ତାରିଖରେ 'କୋହ୍ଲାପୁର'ରେ ପୁନର୍ବାର ବିଦ୍ରୋହର ବାଡ଼ବାଗ୍ନି ଜଳିଉଠିଲା । ନଗରୀର ପ୍ରବେଶଦ୍ୱାରମାନ ଅବରୁଦ୍ଧ କରାଗଲା । କମାଣଗୁଡ଼ିକ ପ୍ରସ୍ତୁତ ରଖି ଉପଯୁକ୍ତ ସ୍ଥାନରେ ଖଞ୍ଜିଦିଆଗଲା । କୋହ୍ଲାପୁରର ରାଜଦାଣ୍ଡରେ ବିଦ୍ରୋହର ରଣବାଦ୍ୟ ବାଜିଉଠିଲା । 'ଜାକବ' ଏହି ଖବର ପାଇ ନିଜର ବାହିନୀକୁ ସଜାଗ ଓ ପ୍ରସ୍ତୁତ କରାଇ ଏକ କଚ୍ଚା ଫାଟକ ଦିଗରୁ ଆକ୍ରମଣ କରି ପ୍ରବେଶକଲେ ଓ ରାଜପ୍ରାସାଦକୁ ଅଧିକାର କଲେ । ରାଜାଙ୍କୁ ବନ୍ଦୀ କରାଗଲା । ତାଙ୍କୁ ବହୁତ ଜେରାକଲାପରେ ମଧ୍ୟ ଜାକବ ତାଙ୍କଠାରୁ କୌଣସି ବିଦ୍ରୋହୀ ନେତାଙ୍କର ନାମ ଜାଣିବାକୁ ପାଇଲେ ନାହିଁ । ପରିଶେଷରେ ତାହାଙ୍କୁ କମାଣ ମୁହଁରେ ଉଡ଼ାଇଦିଆଗଲା । ଅନ୍ୟ ବିଦ୍ରୋହୀ ବନ୍ଦୀମାନେ ମଧ୍ୟ ସମଦଶା ପ୍ରାପ୍ତହେଲେ ।

ପୂର୍ବ ନିର୍ଦ୍ଧାରିତ ଯୋଜନା ଅନୁସାରେ 'ବେଲଗାଓଁ'ରେ ଥିବା ସିପାହୀମାନେ ଅଗଷ୍ଟ ଦଶତାରିଖ ଦିନ ବିଦ୍ରୋହ କରିବାକୁ ଚେଷ୍ଟା କରିଥିଲେ । କିନ୍ତୁ ଇଂରାଜିମାନେ ପୂର୍ବରୁ ଖବର ପାଇଯିବା ଫଳରେ ଶେଷ ମୁହୂର୍ତ୍ତରେ ସିପାହୀମାନଙ୍କର ନେତା 'ଠାକୁର

ସିଂହ' ଓ ଜଣେ ଟାଣୁଆ ମୁନ୍‌ସୀଙ୍କୁ ବନ୍ଦୀ କରାଗଲା ଏବଂ ନୂତନ ଇଂରାଜି ବାହିନୀ ଆସିଯିବା ଫଳରେ 'ବେଲଗାଓଁ' ଓ 'ଧରୱାର'ରେ ବିଦ୍ରୋହ ଶାନ୍ତ ପଡ଼ିଗଲା ।

'ସତାରା'ରେ 'ରଙ୍ଗାରାଓ ବାପୁଜୀ'ଙ୍କର କାର୍ଯ୍ୟ କଳାପକୁ ଇଂରାଜିମାନେ ସନ୍ଦେହ ଦୃଷ୍ଟିରେ ଦେଖୁଥିଲେ । ତାଙ୍କର ପୁତ୍ରକୁ 'କୋହ୍ଲାପୁର'ରେ ବିଦ୍ରୋହୀମାନଙ୍କୁ ଉତ୍ତେଜିତ କରୁଥିବା ଦୋଷରେ ଫାଶୀ ଦିଆ ହୋଇଥିଲା । ସତାରା ରାଜପରିବାରର ଦୁଇଜଣ ଯୁବରାଜଙ୍କୁ ନିର୍ବାସନ ଦଣ୍ଡ ଦିଆଗଲା । ଏହାପରେ 'ରଙ୍ଗାରାଓ', ସତାରାରୁ କେଉଁଆଡ଼େ ଉଭାନ୍ ହୋଇଗଲେ ଆଜିପର୍ଯ୍ୟନ୍ତ ତାହା ଜଣାଯାଇ ନାହିଁ ।

ଏହି ସମୟରେ 'ଲର୍ଡ଼ ଏଲ୍‌ଫିନ୍‌ଷ୍ଟୋନ୍' (Lord Elphinshone) ବମ୍ବେର ଗଭର୍ଣ୍ଣର ରୂପେ ନିଯୁକ୍ତ ହେଲେ । ସେ ନିଜର ଇଲାକାକୁ କଡ଼ାପ୍ରହରାମଧ୍ୟରେ ରଖିବା ସଙ୍ଗେ ସଙ୍ଗେ ରାଜସ୍ଥାନରେ ବିଦ୍ରୋହର ଆଶଙ୍କା କରି ସେଠାକୁ ମଧ୍ୟ ସେନା ବାହିନୀ ପଠାଇବାକୁ ଲାଗିଲେ । ତେବେ ଏ ସମସ୍ତ ସତ୍ତ୍ୱେ ବମ୍ବେଠାରେ ସିପାହୀମାନଙ୍କର ସଂଗଠନର ଗୁପ୍ତ ମନ୍ତ୍ରଣା ସଭା ଅନୁଷ୍ଠିତ ହେଉଥିଲା । ସେଠାରେ ଆସନ୍ତା ଦୀପାବଳି ଦିନ ବିଦ୍ରୋହ ଆରମ୍ଭ କରାଯିବା ସ୍ଥିର ହୋଇଥିଲା । କିନ୍ତୁ ସେତେବେଳର ବମ୍ବେରେ ନିଯୁକ୍ତ ପୁଲିସ କମିଶନର 'ଫରେଷ୍ଟର' (Forester)ଙ୍କର ପୂର୍ବରୁ ସତର୍କତା ମୂଳକ ପଦକ୍ଷେପ ହେତୁ ବିଦ୍ରୋହକୁ ସମ୍ପୂର୍ଣ୍ଣ ଭାବରେ ପଣ୍ଡ କରିଦିଆଗଲା । ପ୍ରଥମେ 'ଫରେଷ୍ଟର', ସିପାହୀମାନଙ୍କର ଗୁପ୍ତ ମନ୍ତ୍ରଣା ସଭାର ଖବର ପାଇ ତାହା ବିଷୟରେ ତଥ୍ୟ ସଂଗ୍ରହ କରିବା ପାଇଁ ଗୁପ୍ତଚର ନିଯୁକ୍ତ କରିଥିଲେ । କିନ୍ତୁ ବିଦ୍ରୋହୀମାନେ ଅତ୍ୟନ୍ତ ସତର୍କ ଥିବାରୁ ଗୁପ୍ତଚରମାନେ ତାଙ୍କର ଷଡ଼ଯନ୍ତ୍ର ଚକ୍ର ମଧ୍ୟରେ ପ୍ରବେଶ କରିପାରିନଥିଲେ । ଏଣୁ ନିଜେ 'ଫରେଷ୍ଟ' ବେଳେ ବେଳେ ବ୍ରାହ୍ମଣ ବା ଅନ୍ୟାନ୍ୟ ଗୁପ୍ତ ବେଶରେ ଯାଇ ବିଦ୍ରୋହୀମାନଙ୍କ ସହିତ ମିଳାମିଶା କରି, ଏପରିକି ସେମାନଙ୍କର ସାମାଜିକ ଉତ୍ସବ ଆଦିରେ ଯୋଗଦାନ କରି ସେମାନଙ୍କ ସହିତ ଅନ୍ତରଙ୍ଗ ହୋଇ କ୍ରମେ ଗଙ୍ଗାପ୍ରସାଦ ନାମକ ଏକ ବ୍ୟକ୍ତିର ଗୃହରେ ବିଦ୍ରୋହୀମାନଙ୍କର ଗୁପ୍ତ ମନ୍ତ୍ରଣା ସଭା ଅନୁଷ୍ଠିତ ହେଉଥିବାର ଜାଣି ପାରିଥିଲେ । ସେ ଠିକଣା ସମୟରେ ଗଙ୍ଗାପ୍ରସାଦଙ୍କ ଗୃହରେ ପହଞ୍ଚି ତାଙ୍କୁ ବନ୍ଦୀ କରିବାର ଧମକ ଦେଖାଇ ନୀରବ କରାଇଥିଲେ ଓ ନିଜେ ଏକ ଛିଦ୍ର ମଧ୍ୟ ଦେଇ ସିପାହୀମାନଙ୍କର ଗୁପ୍ତ ମନ୍ତ୍ରଣା ସଭା ସ୍ୱଚକ୍ଷୁରେ ଦେଖିଲେ । ସେ ଏହାପରେ କିଛି ଇଂରାଜି ରେଜିମେଣ୍ଟର ଅଫିସରମାନଙ୍କୁ ଗୋପନରେ ଆଣି ତାହା ଦେଖାଇଥିଲେ । ବିଦ୍ରୋହୀମାନଙ୍କର ଯୋଜନା ଥିଲା ଯେ ସେମାନେ ପ୍ରଥମେ ବମ୍ବେରେ ବିଦ୍ରୋହ କରି ତାପରେ ପୁନା ଆଡୁ ଅଧିକାର ଭୁକ୍ତ କରିବେ ଓ ସେଠାରେ ନାନାସାହେବ ପେଶବା

ରୂପେ ଘୋଷଣା କରି ମରହଟ୍ଟା ପେଶବାଙ୍କର ପତାକା ଉଡ଼ାଇଦେବେ । କିନ୍ତୁ ଏହି ଯୋଜନା କାର୍ଯ୍ୟକାରୀ ହେବା ଆଗରୁ କମିଶନର ଫରେଷ୍ଟ ତାହା ପଣ୍ଡ କରିଦେଲେ । ଏହା ସହିତ ସେ ଦୁଇଜଣ ମୁଖ୍ୟ ନେତାଙ୍କୁ ଫାଶୀ ଦଣ୍ଡ ଦେଲେ ଅନ୍ୟ ଛଅଜଣ ସିପାହୀଙ୍କର ସେନାପତିମାନଙ୍କୁ ନିର୍ବାସନ ଦଣ୍ଡ ଦେଲେ । ଏହିପରି ବମ୍ବେରେ ବିଦ୍ରୋହ ନିଆଁ ଜଳି ଉଠିବା ଆଗରୁ ତାହାକୁ ପ୍ରଶମିତ କରାଗଲା ।

ସେହିପରି 'ନାଗପୁର' ଓ 'ଜବଲପୁର'ରେ ମଧ୍ୟ ବିଦ୍ରୋହ କରାଯିବା ଯୋଜନା ହୋଇଥିଲା । 'ନାଗପୁର' ପାଖରେ ଥିବା ସିପାହୀମାନେ ୧୮୫୭ ମସିହା ଜୁନ ୧୩ ତାରିଖ ଦିନ ବିଦ୍ରୋହ ଆରମ୍ଭ କରିବା ସ୍ଥିର କରିଥିଲେ । ଏଥିପ୍ରତି ଜନସାଧାରଣଙ୍କର ମଧ୍ୟ ଅକୁଣ୍ଠ ସମର୍ଥନ ଥିଲା । ଇଂରାଜି ବାହିନୀ ଅନ୍ୟାନ୍ୟ କ୍ଷେତ୍ରରେ ଯୁଦ୍ଧବ୍ୟସ୍ତ ରହିଥିବାରୁ ଏ ଅଞ୍ଚଳକୁ ସାହାଯ୍ୟ ପାଇଁ ହଠାତ୍ ଆସିଯିବାର ସମ୍ଭାବନା ନଥିଲା । ବିଦ୍ରୋହୀମାନେ ଏହାର ସୁଯୋଗ ନେବାକୁ ଚେଷ୍ଟା କଲେ । ଇଂରାଜିମାନେ ଏହା ଜାଣିପାରି ସେମାନଙ୍କର ଅନୁଗତ ମାଦ୍ରାସବାହିନୀକୁ ମାଦ୍ରାସରୁ ଆଣେଇନେବା ଫଳରେ ଏହି ବିଦ୍ରୋହ ଶାନ୍ତ ପଡ଼ିଯାଇଥିଲା । କିନ୍ତୁ 'ଜବଲପୁର'ର ଗଣ୍ଡରାଜା 'ଶଙ୍କର ସିଂହ' ଓ ତାଙ୍କର ପୁତ୍ର ବିଦ୍ରୋହର ଅଗ୍ନିପ୍ରଜ୍ଜ୍ୱଳନ କରିବା ପାଇଁ ଅଶେଷ ଚେଷ୍ଟା କରିଥିଲେ । ସେମାନଙ୍କୁ ବନ୍ଦୀ କରାଗଲା ଓ ସେମାନଙ୍କର ପ୍ରାସାଦର ତଲାସୀ ନିଆଗଲା । ରାଜପ୍ରାସାଦ ମଧ୍ୟରେ ସିଲ୍କ କପଡାରେ ଗୁଡ଼ାହୋଇଥିବା ଏକ କାଗଜରେ ରାଜାଙ୍କର ପ୍ରାତଃକାଳୀନ ପ୍ରାର୍ଥନା ଲେଖାହୋଇଥିଲା । ସେଥିରେ ଥିଲା:-

''ମା ଶତ୍ରୁ ସଂହାରିକେ ଚଣ୍ଡିକେ, ଗୁଜବ ପ୍ରଚାରକାରୀଙ୍କର ମୁଖ ବନ୍ଧନ କର । ପାପୀମାନଙ୍କୁ ଧ୍ୱଂସକର । ତୁମର ଦାସାନୁଦାସଙ୍କର ଧର୍ମ ରକ୍ଷାକର ଏବଂ ଇଂରାଜିମାନଙ୍କୁ ସ୍ୱଦେଶରୁ ବିତାଡ଼ିତ କର ।''

'ରାଜାଶଙ୍କର ସିଂହ' ଓ ତାଙ୍କର ପୁତ୍ର ୫୨ତମ ବାହିନୀକୁ ବିଦ୍ରୋହୀମାନଙ୍କର ଦଳଭୁକ୍ତ କରିବାପାଇଁ ଅଶେଷ ଚେଷ୍ଟା ଚଳାଇଥିଲେ । ପିତା ଓ ପୁତ୍ରଙ୍କୁ ଇଂରାଜିମାନେ ସେପ୍ଟେମ୍ବର ୧୮ତାରିଖ ଦିନ କମାଣ ମୁହଁରେ ଉଡ଼ାଇଦେଲେ । ଏହି ସମ୍ବାଦ ପାଇ ୫୨ତମ ବାହିନୀର ସୈନ୍ୟମାନେ ଶାନ୍ତ ହେବା ପରିବର୍ତ୍ତେ ହଠାତ୍ ବିଦ୍ରୋହ କରି ଉଠିଲେ ଏବଂ 'ମାକ୍ ଗ୍ରୀଗୋର' (Mac Gregor)ନାମକ ଜଣେ ଅଫିସରଙ୍କୁ ହତ୍ୟା କରି ବିଦ୍ରୋହୀମାନଙ୍କ ସହିତ ଯୋଗଦାନ କରିବା ପାଇଁ ଆଗେଇଆସିଲେ ।

ଏତଦ୍ ବ୍ୟତୀତ 'ଧର' ପ୍ରଦେଶର 'ମହିଦ୍‌ପୁର,' 'ଗୋରିଆ' ଓ ଅନ୍ୟାନ୍ୟସ୍ଥାନରେ 'ଶାହାଜାଦା ଫିରୋଜଶାହଙ୍କ' ନେତୃତ୍ୱରେ ବିଦ୍ରୋହର ଅଗ୍ନି ଜଳିଉଠିଥିଲା ।

କିନ୍ତୁ ଦକ୍ଷିଣ ଭାରତରେ ଏହିସବୁ ଛୋଟକୋଟରେ ବିଦ୍ରୋହ ସତ୍ତ୍ୱେ, ହାଇଦ୍ରାବାଦର ନିଜାମ ଇଂରାଜିମାନଙ୍କର ଭାଗ୍ୟ ନିୟନ୍ତ୍ରକ ଥିଲେ । କାରଣ ନିଜାମ, ବିଦ୍ରୋହୀମାନଙ୍କ ସହିତ ଯୋଗଦାନ କରିଥିଲେ ସମୁଦାୟ ଦକ୍ଷିଣ ଭାରତ ବିଦ୍ରୋହରେ ଏକ ସ୍ୱର ହୋଇଯୋଗଦାନର ସମ୍ପୂର୍ଣ୍ଣ ସମ୍ଭାବନା ଥିଲା । ଏହି ପ୍ରକାରେ ବିଦ୍ରୋହ ହୋଇଥିଲେ ତାହା ଇଂରାଜିମାନଙ୍କର ଆୟତ୍ତରୁ ବାହାରକୁ ଚାଲିଯାଇଥାଆନ୍ତା । ନୂତନ ନିଜାମ ଅଫଜୁଲ ଉଦ୍ଦୌଲା ୧୮୫୭ମେ ମାସରେ ଗାଦିନସୀନ ହୋଇଥିଲେ । 'ସାଲାର୍‌ଜଙ୍ଗ' ତାଙ୍କର ପ୍ରଧାନମନ୍ତ୍ରୀ ଥିଲେ । ସମୁଦାୟ 'ଡେକାନ' ଅଞ୍ଚଳ 'ନିଜାମ'ଙ୍କର ଆଦେଶକୁ ଅପେକ୍ଷା କରି ରହିଥିଲେ । 'ସାଲାର୍‌ଜଙ୍ଗ' ଜଣେ ସ୍ୱଧର୍ମୀ ଓ ଦେଶପ୍ରେମୀ ଥିଲେ ମଧ୍ୟ ଜନତାଙ୍କର ସମସ୍ତ ଚାପ ସତ୍ତ୍ୱେ ସେ ପରିସ୍ଥିତି ଦୃଷ୍ଟିରୁ ନୀରବ ରହିଥିଲେ । ୧୮୫୭ ମସିହା ଜୁନ୍ ବାରତାରିଖରେ 'ହାଇଦ୍ରାବାଦ'ର ପରିସ୍ଥିତି ସାଙ୍ଘାତିକ ହୋଇଉଠିଥିଲା । ସେଦିନ ମୌଲବୀ ମାନଙ୍କ ଦ୍ୱାରା ଲିଖିତ ବିଦ୍ରୋହର ଘୋଷଣା ପତ୍ର, ସବୁ ସ୍ଥାନରେ କାନ୍ଥ ବାଡ଼ରେ ମରାହୋଇଥିଲା । ମସ୍‌ଜିଦମାନଙ୍କରେ ସଭାରେ ବହୁ ଜନଗହଳି ହୋଇଥିଲା । ମୌଲବୀମାନେ ଅଗ୍ନିଗର୍ଭକ ଭାଷଣମାନ ଦେଉଥିଲେ । ତଥାପି 'ସାଲାରଜଙ୍ଗ' ନୀରବ ରହିଲେ ଓ କିଛି ବିଦ୍ରୋହୀ ନେତାଙ୍କୁ ଇଂରାଜିଙ୍କ ହସ୍ତରେ ସମର୍ପଣ କଲେ । ଫଳରେ ଜୁଲାଇ ସତର ତାରିଖରେ ହାଇଦ୍ରାବାଦ ସହର ଜାଗିଉଠିଥିଲା । ଦିନ୍, ଦିନ୍ ଶବ୍ଦରେ ଚତୁର୍ଦ୍ଦିଗ ମୁଖରିତ ହୋଇପଡ଼ିଲା । 'ନିଜାମ'ଙ୍କର 'ରୋହିଲାଖଣ୍ଡ' ବାହିନୀ ସହିତ ସହରର ପାଞ୍ଚଶହ ଜନସାଧାରଣ ଯୋଗଦେଇଥିଲେ । ସମସ୍ତେ ମନେ କରିଥିଲେ ଯେ ସାଲାର୍‌ଜଙ୍ଗଙ୍କର ବିଦ୍ରୋହ ପ୍ରତି ଆନ୍ତରିକ ସମର୍ଥନ ଥିବା ହେତୁ ସେ ନୀରବ ରହିବେ ଏବଂ ଇଂରାଜିମାନଙ୍କ ସହିତ ଯୋଗଦାନ କରିବେ ନାହିଁ । 'ସାଲାର୍‌ଜ'ଙ୍ଗ ନୀରବ ରହିବା ପରିବର୍ତ୍ତେ ଇଂରାଜିମାନଙ୍କ ସହିତ ଯୋଗଦାନ କରି ନିଜର ସୈନ୍ୟମାନଙ୍କୁ ହତ୍ୟାକରିବାରେ ସାହାଯ୍ୟ କଲେ । ଖଣ୍ଡ ଯୁଦ୍ଧରେ ବିଦ୍ରୋହୀମାନଙ୍କର ନେତା 'ତୋରବାଜଖାଁ' ମୃତ ହେଲେ ଓ ମୌଲବୀ 'ଆଲ୍ଲାଦିନ୍' ଇଂରାଜିମାନଙ୍କ ହାତରେ ବନ୍ଦୀ ହେଲେ । ତା'ଙ୍କୁ ଆଣ୍ଡାମାନ ଦ୍ୱୀପକୁ ନିର୍ବାସିତ କରାଗଲା ।

'ନିଜାମ' ବିଦ୍ରୋହକୁ ନିଜରାଜ୍ୟରେ ନିର୍ମୂଳ କରିଦେଲେ ମଧ୍ୟ ତାଙ୍କର ଇଲାକାକୁ ଲାଗି ରହିଥିବା 'ଜୋରାପୁର' ରାଜ୍ୟର ଯୁବକ ରାଜା ସ୍ୱଧର୍ମ ଓ ସ୍ୱରାଜ୍ୟ ପାଇଁ ବିଦ୍ରୋହ କରିବାକୁ ଦୃଢ଼ସଂକଳ୍ପ ହେଲେ । ସେ 'ଆରବ', 'ରୋହିଲା' ଓ 'ପଠାଣ'ମାନଙ୍କୁ ନେଇ ଏକ ବାହିନୀ ଗଠନ କଲେ । 'ନାନା'ଙ୍କର ଦୂତଆସି ତା'ଙ୍କୁ ପେଶବାଙ୍କର ପତାକା ତଳେ ଯୁଦ୍ଧ କରିବାକୁ ପ୍ରସ୍ତୁତ କରାଇଦେଲେ । 'ରାଇଚୁର' ଓ 'ଆରକୋଟ'ର ବ୍ରାହ୍ମଣ ଓ ମୌଲବୀ ମାନେ ମଧ୍ୟ ତାହାଙ୍କୁ ଉତ୍ସାହିତ କଲେ । ରାଜା, ପେଶବାଙ୍କ ନାମରେ ବିଦ୍ରୋହ ଆରମ୍ଭ କଲେ । ନିଜାମ ଓ ଇଂରାଜିଙ୍କର ବାହିନୀ ଏକ ସାଥିରେ ତାଙ୍କ ବିରୁଦ୍ଧରେ ଯୁଦ୍ଧ ଯାତ୍ରା କଲେ । ଏହି ବିଶାଳ ବାହିନୀ ଦେଖି ଯୁଦ୍ଧରେ ସେମାନଙ୍କର ସମ୍ମୁଖୀନ ହୋଇନପାରି ରାଜା ୧୮୫୮ ମସିହା ଫେବୃଆରୀ ମାସରେ ହାଇଦ୍ରାବାଦ ପଳାଇଗଲେ । ସେଠାରେ ସେ ବଜାର ମଧ୍ୟରେ ବୁଲୁଥିବା ଅବସ୍ଥାରେ 'ସାଲାରଜଙ୍ଗ'ଙ୍କର ଆଦେଶରେ ବନ୍ଦୀ ହେଲେ ଓ ତାଙ୍କୁ ଇଂରାଜିମାନଙ୍କୁ ହସ୍ତାନ୍ତରିତ କରାଗଲା । ରାଜା ବାଲ୍ୟ କାଳରୁ 'ମିଡ଼ୋଟେଲର' (Meadow Taylor) ନାମକ ଜଣେ ଇଂରାଜିଙ୍କ ସହ ଘନିଷ୍ଠ ସମ୍ପର୍କ ରଖିଥିଲେ ଓ ତାହାଙ୍କୁ 'ଆପ୍ପା' ନାମରେ ସମ୍ବୋଧନ କରିଥିଲେ । ଇଂରାଜିମାନେ କୌଶଳ କରି 'ମିଡ଼ୋ'ଙ୍କୁ ବନ୍ଦୀଶାଳାକୁ ପଠାଇ ରାଜାଙ୍କ ଠାରୁ ବିଦ୍ରୋହର ତଥ୍ୟ ତଥା ଅନ୍ୟାନ୍ୟ ବିଦ୍ରୋହୀମାନଙ୍କର ନାମ ଜାଣିବାକୁ ଚେଷ୍ଟା କଲେ । ବନ୍ଦୀଶାଳା ମଧ୍ୟରେ ରାଜା 'ମିଡ଼ୋ'ଙ୍କୁ ଦେଖି ଅତ୍ୟନ୍ତ ଖୁସି ହୋଇଗଲେ ଓ ତାହାଙ୍କୁ ଆପ୍ପା ବୋଲି ସମ୍ବୋଧନ କରି ସ୍ନେହରେ ଆଲିଙ୍ଗନ କଲେ । 'ମିଡ଼ୋ' ତାଙ୍କ ସହ ଅନ୍ତରଙ୍ଗ ହୋଇ ସିପାହୀମାନଙ୍କର ଗୁପ୍ତ ସଂଗଠନ ସମ୍ବନ୍ଧରେ ଜାଣିବାକୁ ଚାହିଁବାରୁ, ସେ ଉତ୍ତର ଦେଲେ ଯେ ସେ ନିଜ କାର୍ଯ୍ୟକଳାପ ବିଷୟରେ ସବୁ କିଛି କହିବାକୁ ପ୍ରସ୍ତୁତ ଅଛନ୍ତି କିନ୍ତୁ ଅନ୍ୟ ବିଦ୍ରୋହୀ ବା ଗୁପ୍ତ ସଂଗଠନ ବିଷୟରେ କିଛି ପ୍ରକାଶ କରିବାକୁ ପ୍ରସ୍ତୁତ ନୁହନ୍ତି । ତାଙ୍କୁ ରାଜ କ୍ଷମା, ପୁରସ୍କାର, ଜାଗୀର ଆଦି ସମସ୍ତ ପ୍ରକାର ପ୍ରଲୋଭନ ଦେଖାଗଲେ ମଧ୍ୟ ସେ କିଛି ପ୍ରକାଶ କଲେ ନାହିଁ । ଏହାର ବିନିମୟରେ ସେ ମୃତ୍ୟୁ ପାଇଁ ପ୍ରସ୍ତୁତ ଅଛନ୍ତି ବୋଲି ଜଣାଇଲେ । ତାଙ୍କର ଏକମାତ୍ର ପ୍ରାର୍ଥନା ଥିଲା ଯେ ତାହାଙ୍କୁ ଚୋରଙ୍କ ପରି ଫାଶୀ ଦିଆନଯାଇ ବୀରଙ୍କ ପରି କମାଣ ମୁହଁରେ ଉଡ଼ାଇଦିଆଯାଉ । 'ମିଡ଼ୋଟେଲର'ଙ୍କର ବ୍ୟକ୍ତିଗତ ପ୍ରଭାବ ଓ ଚାପ ଫଳରେ ଇଂରାଜି ସରକାର ତାଙ୍କ ମୃତ୍ୟୁ ଦଣ୍ଡକୁ କୋହଳ କରି କିଛି ବର୍ଷ ପାଇଁ ଆଣ୍ଡାମାନ ଦ୍ୱୀପକୁ ନିର୍ବାସିତ କଲେ । ନିର୍ବାସନର ସମୟ ସରିଆସିବା ବେଳକୁ ସେ ଦିନେ ଏକ ପିସ୍ତଲରେ ନିଜ ମୁଣ୍ଡକୁ ଗୁଳି କରି ଆତ୍ମହତ୍ୟା କଲେ । କାରଣ ନିର୍ବାସନ ଦଣ୍ଡକୁ ସେ ଅପମାନିତ ବୋଧ କରି ଆତ୍ମହତ୍ୟା କରିଥିଲେ ।

'ଝୋରାପୁର'ରେ ରାଜାଙ୍କ ସହ 'ନାରଗୁଣ୍ଡ'ର ମୁଖ୍ୟ ଅଧିକାରୀ 'ଭାସ୍କରରାଓ ବାବାସାହେବ'ଙ୍କର ଘନିଷ୍ଠ ସମ୍ପର୍କ ଓ ଯୋଗା ଯୋଗ ଥିଲା । 'ଝୋରାପୁର'ରେ ବିଦ୍ରୋହ ଦେଖା ଯିବା ସଙ୍ଗେ ସଙ୍ଗେ 'ଭାସ୍କରରାଓ' ହଠାତ୍ କିଛି କରିବାକୁ ଦ୍ୱିଧା ବୋଧ କରି ପରିସ୍ଥିତି ଅନୁଧ୍ୟାନ କରୁଥିଲେ । କିନ୍ତୁ 'ଝୋରାପୁର'ରେ ବିଦ୍ରୋହ ବିଫଳ ହେବା ପରେ ପରେ ସେ ବିଦ୍ରୋହ ଆରମ୍ଭ କଲେ । 'ଭାସ୍କରରାଓ' ଜଣେ ସୁସଂସ୍କୃତ ତଥା ବିଦ୍ୱାନ୍ ବ୍ୟକ୍ତି ଥିଲେ । ତାଙ୍କର ଏକ ବିରାଟ ଗ୍ରନ୍ଥାଗାର ଥିଲା । ତାଙ୍କର ଯୁବତୀ ପତ୍ନୀ ମଧ୍ୟ ଅତ୍ୟନ୍ତ ଇଂରାଜି ବିରୋଧି, ତେଜସ୍ୱିନୀ ସୁନ୍ଦରୀ ମହିଳା ଥିଲେ । ସେ ଇଂରାଜିଙ୍କର ପୋଷ୍ୟପୁତ୍ର ସଂକ୍ରାନ୍ତ ନୀତି ପ୍ରଚଳନ ପରେ ପରେ ହିଁ ଭୀଷଣଭାବେ ଇଂରାଜିବିଦ୍ରୋହୀ ହୋଇଯାଇଥିଲେ । ତାଙ୍କରି ଉତ୍ସାହ ଓ ପ୍ରେରଣାରେ 'ଭାସ୍କରରାଓ' ୧୮୫୮ମସିହା ମେ ୨୫ ତାରିଖ ଦିନ ବିଦ୍ରୋହ କରିଉଠିଲେ ଓ ନିଜର ଇଲାକାକୁ ସମ୍ପୂର୍ଣ୍ଣ ଭାବରେ ସ୍ୱାଧିନ ଘୋଷଣା କଲେ । ଏହି ସମୟରେ ସେ ସମ୍ବାଦ ପାଇଲେ ଯେ 'ମନ୍‌ସନ୍' (Monson) ନାମକ ଜଣେ ଇଂରାଜି ଅଫିସର ନିଜ ବାହିନୀ ସହ ତାଙ୍କୁ ଦମନ କରିବା ପାଇଁ ଆଗେଇଆସୁଛନ୍ତି । ଏହା ଶୁଣି 'ବାବାସାହେବ' ନିଜ ସହିତ କିଛି ବଛା ବଛା ସୈନ୍ୟ ନେଇ 'ନାରଗୁଣ୍ଡ' ନିକଟସ୍ଥ ଜଙ୍ଗଲରେ ଛାଉଣୀ ପକାଇ ରହିଥିବା ମନ୍‌ସନ୍‌ଙ୍କ ସହିତ ଏକ ଖଣ୍ଡ ଯୁଦ୍ଧ କରି ତାଙ୍କର କଟାମୁଣ୍ଡ ଧରି ବାହୁଡ଼ି ଆସିଲେ ଓ ସେହି କଟାମୁଣ୍ଡ ନାରଗୁଣ୍ଡର ପ୍ରାଚୀରରେ ଝୁଲାଇଦିଆଗଲା । 'ବାବାସାହେବ'ଙ୍କର ବିମାତା ପୁଅ ଭାଇ ବିଦ୍ରୋହୀମାନଙ୍କ ସହିତ ଯୋଗଦାନ କରିବାକୁ ମନାକରି ଇଂରାଜିମାନଙ୍କ ସହିତ ଯୋଗଦାନ କରିଥିଲେ । ପରେ ଇଂରାଜି ବାହିନୀ 'ନାରଗୁଣ୍ଡ'କୁ ମାଡ଼ିଯାଇ 'ବାବାସାହେବ'ଙ୍କର ସେନାକୁ ପରାସ୍ତ କଲେ । କିନ୍ତୁ 'ବାବାସାହେବ' ଖସି ପଳାଇଲେ । କିଛି ଦିନ ପରେ ସେ ଛଦ୍ମବେଶରେ ବୁଲୁଥିବା ଅବସ୍ଥାରେ ଧରାପଡ଼ିଲେ ଓ ଜୁନ୍ ୧୨ତାରିଖ ଦିନ ତାହାଙ୍କୁ ଫାଶୀ ଦିଆଗଲା । ତାଙ୍କର ସୁନ୍ଦରୀ ସ୍ତ୍ରୀ ଇଂରାଜିଙ୍କ ପାଖରେ ଆତ୍ମସମର୍ପଣ ନକରି ନିଜର ଶାଶୁଙ୍କ ସହିତ ନଦୀ ଗର୍ଭରେ ଆତ୍ମାହୁତି ଦେଲେ ।

ଏତଦ୍ ବ୍ୟତୀତ 'କୋମଳଦ୍ରଗ୍'ର 'ଭୀମାରାଓ' ଏବଂ 'ଖନ୍ଦେଶ'ର ଭୀଲ୍‌ମାନେ ନିଜ ସ୍ତ୍ରୀ ମାନଙ୍କ ସହ ଧନୁଶର ଧରି ଇଂରାଜିମାନଙ୍କୁ ଆକ୍ରମଣ କରିଥିଲେ । କିନ୍ତୁ ଯୋଗାଯୋଗ ଓ ବୁଝାମଣାର ଅଭାବ ଓ ଅକୁଶଳୀ ଯୋଜନା ହେତୁ ଉପଯୁକ୍ତ ସମୟ ଆସିବା ଆଗରୁ ସେମାନେ ଆକ୍ରମଣ ଆରମ୍ଭ କରିଦେଲେ । ଏହି ଆକ୍ରମଣ ସୁନିର୍ଦ୍ଧିତ ନହୋଇ ବିକ୍ଷିପ୍ତ ଥିଲା । ଅନ୍ୟ କୌଣସି ଦିଗରୁ ଏମାନେ ସାହାଯ୍ୟ ନପାଇବା ଫଳରେ ଇଂରାଜିମାନେ ସେମାନଙ୍କୁ ଅକ୍ଳେଶରେ ପରାଜିତ କରିପାରିଥିଲେ ।

# ଆଧୁନିକ ଭାରତର ପ୍ରଥମ ଜାତୀୟ ସଂଗ୍ରାମ

୧୮୫୭ ମସିହାର ବିଦ୍ରୋହ, କେବଳ ସିପାହୀ ମାନଙ୍କର ବିଦ୍ରୋହ ବା ଏହା ଏକ ଗଣବିପ୍ଳବ ଥିଲା, ଏହି ସମ୍ବନ୍ଧରେ ଭିନ୍ନମତ ସର୍ବପ୍ରଥମେ ଇଂରାଜିମାନଙ୍କ ଠାରୁ ସୃଷ୍ଟି ହୋଇଥିଲା । ସେ ସମୟରେ ଇଂଲାଣ୍ଡରେ ଇଷ୍ଟଇଣ୍ଡିଆ କମ୍ପାନୀର ବ୍ୟବସାୟିକ ପ୍ରତିଦ୍ୱନ୍ଦୀ ଥିଲେ, ଶିଳ୍ପବିପ୍ଳବ ଫଳରେ ମୁଣ୍ଡ ଟେକୁଥିବା ଶିଳ୍ପପତିମାନେ । ବିଦ୍ରୋହର ସମାଚାରମାନ ସେତେବେଳେ ଇଂଲାଣ୍ଡ ତଥା ଅନ୍ୟାନ୍ୟ ବିଦେଶୀ ପତ୍ରିକାମାନଙ୍କରେ ଛପାହେବା ଫଳରେ, ଇଷ୍ଟଇଣ୍ଡିଆ କମ୍ପାନୀର ଭାରତରେ କ୍ରିୟାକଳାପର, ଏହି ଶିଳ୍ପପତିମାନେ ଓ ଇଂରାଜି ପାର୍ଲାମେଣ୍ଟ ମଧ୍ୟରେ ଥିବା ଏକ ଗୋଷ୍ଠୀ ତୀବ୍ର ସମାଲୋଚନା କଲେ । ସେମାନଙ୍କ ମତରେ ଏହା ଏକ ଗଣବିଦ୍ରୋହ ଥିଲା । ଏଥିରେ ସମାଜର ସବୁ ଶ୍ରେଣୀର ବ୍ୟକ୍ତିମାନେ ଅଂଶଗ୍ରହଣ କରିଥିଲେ । ଏହା କମ୍ପାନୀର କୁଶାସନର ଫଳସ୍ୱରୂପ ଥିଲା । ଏଣୁ ଭାରତର ଶାସନକୁ ଇଂଲାଣ୍ଡର ସ୍ୱାର୍ଥ, ପ୍ରଭାବ ଓ ସମ୍ମାନ ଦୃଷ୍ଟିରୁ ସ୍ୱୟଂ ଇଂଲାଣ୍ଡର ରାଣୀ ଗ୍ରହଣ ନକଲେ, କମ୍ପାନୀର କୁଶାସନ ଫଳରେ ପ୍ରଜାମାନେ ପୁନର୍ବାର ବିଦ୍ରୋହ କରି ଇଂରାଜିମାନଙ୍କୁ ସମ୍ପୂର୍ଣ୍ଣ ଭାବରେ ବିତାଡ଼ିତ କରିବାର ସମ୍ଭାବନା ରହିଥିବାରୁ ସେମାନେ, ରାଣୀଙ୍କ ଉପରେ କ୍ଷମତା ଗ୍ରହଣ ପାଇଁ ଚାପପ୍ରୟୋଗ କରିଥିଲେ । ଏହିମାନଙ୍କ ଚାପରେ ପଡ଼ି ଇଂଲାଣ୍ଡର ରାଣୀ, ୧୮୫୮ ମସିହାରେ କମ୍ପାନୀ ହାତରୁ କ୍ଷମତା ଗ୍ରହଣ କରିବା ପରେ ଏକ ଘୋଷଣାନାମା ପ୍ରକାଶ କରିଥିଲେ । ସେ ସମ୍ବନ୍ଧରେ ଶେଷ ଅଧ୍ୟାୟରେ ଆଲୋଚନା କରାଯିବ । ଅପରପକ୍ଷରେ ଅନ୍ୟ ଏକ ଗୋଷ୍ଠୀ କମ୍ପାନୀର କାର୍ଯ୍ୟକୁ ସମର୍ଥନ କରି ଏହି ବିଦ୍ରୋହକୁ ଅସନ୍ତୁଷ୍ଟ ସାମନ୍ତ ଗୋଷ୍ଠୀଙ୍କର ବିଦ୍ରୋହ ବୋଲି କହୁଥିଲେ ।

ଏହି ଦୁଇଟି ଭିନ୍ନମତ ଭାରତୀୟ ଐତିହାସିକ ମାନଙ୍କୁ ମଧ୍ୟ ପ୍ରଭାବିତ କରିଛି । ଆର.ସି.ମଜୁମଦାର, ଡ଼ଃ ସେନ୍ ଓ ପଣ୍ଡିତ ନେହେରୁ ଆଦି ଐତିହାସିକମାନଙ୍କ ମତରେ ଏହା କେତେକ ସ୍ଥାନୀୟ ରାଜା ନବାବ୍ ତଥା ଜମିଦାରମାନଙ୍କର ବ୍ୟକ୍ତିଗତ ସ୍ୱାର୍ଥସାଧନ ପାଇଁ ଏକ ସମ୍ମିଳିତ ବିଦ୍ରୋହ ଥିଲା ଯାହାକି ପରେ ଜନସାଧାରଣଙ୍କର ସମର୍ଥନ ଅଭାବରୁ ଦମିତ ହୋଇଥିଲା ।

ପଣ୍ଡିତ ନେହେରୁଙ୍କ ମତରେ:-

"Essentially it was a feudal outburst, headed by the feudal chiefs and there followers and aided by the widespread anti British sentiment" (Discovory of India. p. 279)

"ମୂଳତଃ ଏହା ରାଜନ୍ୟବର୍ଗ ଓ ସେମାନଙ୍କର ନେତୃତ୍ୱରେ ପରିଚାଳିତ ଓ ପରିବ୍ୟାପ୍ତ ବ୍ରିଟିଶ ବିରୋଧି ଭାବପ୍ରବଣତାରେ ପରିପୁଷ୍ଟ ହୋଇ, ରାଜନ୍ୟ ମଣ୍ଡଳୀଙ୍କର ବିସ୍ଫୁରିତ ବିଦ୍ରୋହ ଥିଲା ।"

"ଡ଼ଃ ମଜୁମଦାର ତାଙ୍କର ଐତିହାସିକ ସିଦ୍ଧାନ୍ତରେ କହିଛନ୍ତି ଯେ:-

"The miseries and bloodshed of 1857-58 were not birthpangs of a Freedom Movement in India, but the dying groans of an obsolete aristrocacy and centrifugal feudalism of the medieval Age." (Sepoy Mutinity & Refolt in 1857 p.241)

"୧୮୫୭-୫୮ରେ ହୋଇ ଥିବା ଦୈନ୍ୟ ଓ ରକ୍ତପାତରେ ଏକ ସ୍ୱାଧିନତା ଆନ୍ଦୋଳନ ଜନ୍ମଲାଭ କରିନଥିଲା, ପରନ୍ତୁ ଏହାଥିଲା କେନ୍ଦ୍ରବିମୁଖ ପୁରାତନ ମଧ୍ୟଯୁଗୀୟ ସାମନ୍ତବାଦର ଏକ ମରଣକାଳୀନ ଆର୍ତ୍ତନାଦ ।"

"ପଣ୍ଡିତ ନେହେରୁଙ୍କ ସହିତ ସ୍ୱର ମିଳାଇ ଡ଼ଃ ଏସ୍.ଏନ୍.ସେନ ସେହିପରି ମଧ କହିଛନ୍ତି:-

"The English Government had impercptibly effected a social revolution. They had removed some of the disabilities of women, they tried to establish the equality of men in the eye of law, they had attempted to improve the lot of pesant and the serf. The Mutiny leaders would have set the clock back, they would have done away with the new reforms, with the new order, and gone back to the good old days when a commoner oould not expect equal justice with the noble, when the tenants were at the mercy of the talukdars, and when theft was punished with mutilation. In short, they wanted a counter-revolution." (S.N. Sen, 1857, p-412-413)

"ଇଂରାଜି ସରକାର ଅନନୁଭବନୀୟ ଭାବରେ ସାମାଜିକ ସଂସ୍କାରକୁ କାର୍ଯ୍ୟକାରୀ କରୁଥିଲେ । ସେମାନେ ଯେ କେବଳ ନାରୀସମାଜର କିଛି ଅକ୍ଷମତା ଦୂର

କରିଥିଲେ ସେତିକି ନୁହେଁ, ସେମାନେ ମଧ୍ୟ ସମାଜମଧ୍ୟରେ ଆଇନଗତ ସାମ୍ୟ ଆଣିବାକୁ ଚେଷ୍ଟାକରୁଥିଲେ । ସେମାନେ କୃଷକ ଓ ଭୂମିଦାସ ମାନଙ୍କର ଉନ୍ନତି କରିବାକୁ ଉଦ୍ୟମ କରୁଥିଲେ । ବିଦ୍ରୋହର ନେତାମାନେ ଏହି ପ୍ରଗତିକୁ ବିପରୀତ ଅଭିମୁଖୀ କରିଥାଆନ୍ତେ । ଏବଂ ସେହି ପୁରାତନ ଦିନକୁ ଫେରିଯାଇଥାଆନ୍ତେ, ଯେତେବେଳେ ଜନସାଧାରଣ ସାମନ୍ତଙ୍କ ସହିତ ସମାନ ନ୍ୟାୟ ଆଶା କରୁନଥିଲେ, ଯେତେବେଳେ କୃଷକମାନେ ତାଲୁକଦାର ମାନଙ୍କର ଦୟାଉପରେ ନିର୍ଭର କରୁଥିଲେ, ଯେତେବେଳେ ଚୋରର ହାତକାଟ ହେଉଥିଲା । ସେମାନଙ୍କର ଏହି ଅଭିଯାନ ଏକ ବିପ୍ଳବ ନଥିଲା । ଏହା ଥିଲା ବସ୍ତୁତଃ ଏକ ପ୍ରତିବିପ୍ଳବ ।''

ଉପରୋକ୍ତ ଐତିହାସିକମାନେ ବସ୍ତୁତଃ କେତେଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ବାସ୍ତବ ଦିଗପ୍ରତି ଉପେକ୍ଷା କରିଥିବା ମନେହୁଏ । କାରଣ ଗଭୀର ଅନୁଶୀଳନ କଲେ ଜଣାଯାଏ ଯେ ୧୮୫୭ ବିଦ୍ରୋହର ପୃଷ୍ଠଭୂମି କେତେଗୁଡ଼ିଏ ଐତିହାସିକ ବାସ୍ତବତା ଉପରେ ଆଧାରିତ ଥିଲା । ଏହି ବାସ୍ତବ ଦିଗ ଗୁଡ଼ିକ ବିଚାର କଲେ, ଇଂରାଜି ଶାସନରେ ସମାଜର ସବୁଶ୍ରେଣୀର ବ୍ୟକ୍ତିମାନଙ୍କର ସ୍ୱାର୍ଥହାନୀ ଘଟିଥିବା କଥା ଜଣାପଡ଼େ ।

ଅନ୍ୟପକ୍ଷରେ ବିଦ୍ରୋହର ଗତି ଅନୁଧାନ କଲେ ଜଣାଯାଏ ଯେ ଯଦିଚ୍ ବିଦ୍ରୋହରେ ରାଜନ୍ୟବର୍ଗ ନେତୃତ୍ୱ ନେଇଥିଲେ, ପରନ୍ତୁ ପ୍ରତିକ୍ଷେତ୍ରରେ, ସେମାନେ ସର୍ବେସର୍ବା ବା ଭାଗ୍ୟ ନିୟନ୍ତା ନଥିଲେ । ବହୁ ସ୍ଥାନରେ ରାଜନ୍ୟ ବର୍ଗ, ଜନସାଧାରଣଙ୍କର ଚାପରେ ବିଦ୍ରୋହ କରିଥିବା ଜଣାପଡ଼େ । ଇଂରାଜିମାନେ, ଭାରତୀୟମାନଙ୍କର ରାଜନୈତିକ ତଥା ଅର୍ଥନୈତିକ କ୍ଷମତାକୁ ନିଜର ଅଧିକାର ଭୁକ୍ତ କରିବା ଫଳରେ ସାମାଜିକ ବିପର୍ଯ୍ୟୟ ଘଟିଥିଲା । ଏ ବିଷୟରେ ପୂର୍ବାଭାସରେ ଆଲୋଚନା କରାଯାଇଛି । କେବଳ ଏତିକି ନୁହେଁ, ଇଂରାଜି ସରକାରଙ୍କର ନୂତନ ଜମିଜମା ଆଇନ ଫଳରେ ରାଜା, ନବାବ, ଜମିଦାର ଏପରିକି ସାଧାରଣ ପ୍ରଜାମଧ୍ୟ ଇଂରାଜିମାନଙ୍କ ଦ୍ୱାରା ନିର୍ଦ୍ଧାରିତ ଅତ୍ୟଧିକ ହାରରେ ଖଜଣା ଦେଇନପାରି ନିଜର ମାଲିକାନା ହସ୍ତାନ୍ତର କରିବାକୁ ବାଧ୍ୟ ହେଉଥିଲେ । ଫଳରେ ଶହଶହ ବର୍ଷଧରି ରହିଆସିଥିବା ରାଜା, ନବାବ ଓ ଜମିଦାରମାନଙ୍କ ସ୍ଥାନରେ, ଇଂରାଜିସୃଷ୍ଟ ଓ ଅନୁଗତ ଏକ ନୂତନ ଶ୍ରେଣୀର ଲୋକମାନେ ସେମାନଙ୍କର ସ୍ଥାନ ପୂରଣ କରୁଥିଲେ । ପ୍ରଜାମାନେ ଶହଶହ ବର୍ଷ ଧରି ନିଜର ପାରମ୍ପରିକ ନେତା ବୋଲି ମାନି ଆସିଥିବା ରାଜା ଓ ଜମିଦାର ମାନଙ୍କ ସ୍ଥାନରେ ନୂତନ ଇଂରାଜି ଭକ୍ତମାନଙ୍କୁ ଦେଖିବା ଫଳରେ, ସେମାନଙ୍କ ମନରେ ଗଭୀର ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା । ଯୁଗ ଯୁଗ ଧରି ରହିଆସିଥିବା ସାମାଜିକ ଶ୍ରେଣୀରେ ବିପର୍ଯ୍ୟୟ ସୃଷ୍ଟି ହେବା ଫଳରେ

ଏହା ଇଂରାଜି ଶାସନ ପ୍ରତି ଅବିଶ୍ୱାସ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ସମାଜର ସବୁ ଶ୍ରେଣୀର ଲୋକମାନେ ନିଜକୁ ସୁରକ୍ଷିତ ମନେ କରୁ ନଥିଲେ ।

ପୁନଶ୍ଚ ଇଂରାଜିମାନଙ୍କର ନୂତନ ବାଣିଜ୍ୟ ନୀତି ଫଳରେ ଦେଶର ପାରମ୍ପରିକ ଅର୍ଥନୀତି ଧ୍ୱଂସ ହେବାରୁ ଭାରତୀୟ ଜନସାଧାରଣ ଦରିଦ୍ରରୁ ଦରିଦ୍ରତର ହେଲେ । ନ୍ୟାୟାଳୟ ତଥା ସରକାରୀ ଅଫିସମାନଙ୍କର କାର୍ଯ୍ୟକଳାପରେ ଜନସାଧାରଣ ଅନ୍ୟାୟ, ଓ ଶୋଷଣର ଶିକାର ହେଲେ । ଏହି ଦୃଷ୍ଟିରୁ ଗ୍ରାମ୍ୟ ଜନସାଧାରଣ, ଇଂରାଜି ପ୍ରବର୍ତ୍ତିତ ନୂତନ ଆଇନ ଓ ସରକାରୀ କଳ ବିରୁଦ୍ଧରେ ପ୍ରତିକ୍ରିୟା ପ୍ରକାଶ କରିଥିଲେ । ପ୍ରଥମତଃ, ଏମାନେ ଇଂରାଜି ପ୍ରବର୍ତ୍ତିତ ଜମିଜମା ସଂକ୍ରାନ୍ତ ଆଇନ ବିରୁଦ୍ଧରେ ପ୍ରତିକ୍ରିୟା ପ୍ରକାଶ କରିଥିଲେ । କାରଣ ଏହା ସେମାନଙ୍କର ସ୍ୱାର୍ଥର ପ୍ରତିକୂଳ ଥିଲା । ଦ୍ୱିତୀୟତଃ, ଇଂରାଜି ସୃଷ୍ଟ ରାଜା ଓ ଜମିଦାରଙ୍କୁ ଉଚ୍ଛେଦ କରି ସେମାନଙ୍କ ସ୍ଥାନରେ ପୂର୍ବତନ ରାଜା ଓ ଜମିଦାର ମାନଙ୍କୁ ଅବସ୍ଥାପିତ କରିବା, ଇଂରାଜି ସୃଷ୍ଟ ନୂତନ ରାଜା ଜମିଦାରବର୍ଗଙ୍କର ସମ୍ବନ୍ଧୀୟ ସମସ୍ତ ସରକାରୀ ରେକର୍ଡ଼ପତ୍ରକୁ ଧ୍ୱଂସ କରିବା, ସେମାନଙ୍କର ଲକ୍ଷ୍ୟ ଥିଲା । ତୃତୀୟତଃ, ଏଥି ନିମିତ୍ତ ରାଜ୍ୟ ଓ ଜମି ହାରିଥିବା ରାଜା, ନବାବ ଜମିଦାର ଆଦିମାନଙ୍କୁ ସେମାନେ ନେତୃତ୍ୱ ପ୍ରଦାନ କରିଥିଲେ ।ବିଦ୍ରୋହ ସମୟରେ ଜନସାଧାରଣଙ୍କ ଦ୍ୱାରା ଥାନା, କଚେରୀ ଓ ସରକାରୀ ନଥିପତ୍ର ଆଦି ଧ୍ୱଂସ କରାହେବା ହିଁ ଏହାର ପ୍ରମାଣ । କାରଣ ଏହି ରାଜା, ନବାବ ଓ ଜମିଦାର ଶ୍ରେଣୀର ଲୋକମାନଙ୍କୁ ସେମାନେ ପାରମ୍ପରିକ ନେତା ହିସାବରେ ବର୍ଷ ବର୍ଷ ଧରି ସ୍ୱୀକାର କରିଆସିଥିଲେ । ଏଣୁ ବିଦ୍ରୋହ ସମୟରେ ଜନସାଧାରଣ ଇଂରାଜି ଅନୁଗତ ନୂତନ ଶ୍ରେଣୀର ରାଜା, ଜମିଦାର ଆଦିଙ୍କୁ ଲୁଟ୍ କରି, ହତ୍ୟା କରି, ସେମାନଙ୍କର ସ୍ୱାର୍ଥହାନୀ କରୁଥିବା ଇଂରାଜି ରାଜତ୍ୱ ଅନ୍ତ କରି ନିଜ ଦେଶର ପୁରାତନ ଶାସନ ବ୍ୟବସ୍ଥାକୁ ଫେରାଇ ଆଣିବା ପାଇଁ ନିଜର ପାରମ୍ପରିକ ନେତାମାନଙ୍କର ନେତୃତ୍ୱ ଗ୍ରହଣ କରିନେଲେ । ପୁନଶ୍ଚ, ଯେତେବେଳେ ସିପାହୀମାନେ ମୁଖ୍ୟତଃ ଗ୍ରାମ୍ୟ ଜନସାଧାରଣଙ୍କ ମଧ୍ୟରୁ ଆସୁଥିବାରୁ ସେମାନଙ୍କର ସ୍ୱାର୍ଥ ସହିତ ଘନିଷ୍ଠ ଭାବରେ ଜଡ଼ିତ ଥିଲେ । ଏଣୁ ଜନସାଧାରଣଙ୍କର ସ୍ୱାର୍ଥହାନୀ ଓ ଇଂରାଜିକୃତ ଦାରିଦ୍ର୍ୟ ଓ ଅପମାନରେ ସିପାହୀମାନେ ପ୍ରତିକ୍ରିୟା ପ୍ରକାଶ କରିବା ସ୍ୱାଭାବିକ । ଏପରି ମଧ୍ୟ ଦେଖାଯାଇଛି ଯେ ବହୁ କ୍ଷେତ୍ରରେ ସିପାହୀମାନେ ଜନସାଧାରଣଙ୍କର ଚାପକୁ ଉପେକ୍ଷା ନକରିପାରି ବିଦ୍ରୋହରେ ଯୋଗଦାନ କରିଛନ୍ତି ।

ଜଣେ ବିଶିଷ୍ଟ ଐତିହାସିକ କେୟି (Kaye) କହିଛନ୍ତି:- Canning asked himself whether it could be only a military mutiny that he was combat-

ing. It did not seem to be found only in the unaided instinct of soldiery........
He soon ceased to speak of mutiny and called it a rebellion- a 'revolt'.
(History of the Sepoy War vol.I)

''କ୍ୟାନିଂ ଆତ୍ମସମୀକ୍ଷା କରି କହିଥିଲେ ଯେ ପ୍ରକୃତରେ ଏହା ଏକ ସିପାହୀ ବିଦ୍ରୋହ ନୁହେଁ କାରଣ ଏହା କେବଳ ସହାୟହୀନ ସୈନିକମାନଙ୍କର ସ୍ୱଭାବ ସିଦ୍ଧ ପ୍ରବୃତ୍ତି ଉପରେ ପର୍ଯ୍ୟବସିତ ହେଲାପରି ଜଣାଯାଉନାହିଁ ।''

କାର୍ଲମାର୍କ୍ସ, ନିଉୟର୍କ ଡ଼େଲି ଟ୍ରିବ୍ୟୁନ୍ (Newyork Daily Tribune) ପତ୍ରିକାରେ ୧୮୫୭ ମସିହା ଜୁଲାଇ ୨୭ ତାରିଖରେ ତତ୍‌କାଳୀନ ଆମେରିକାର ବ୍ୟବସ୍ଥାସଭାରେ ବିରୋଧି ଦଳର ନେତା ଡ଼ିସ୍ରାଏଲି (Disraeli)ଙ୍କ ମତ ଉଦ୍ଧାର କରି କହିଛନ୍ତି:-

Mr. Disraeli——arrives at the conclusion that the present Indian disturbances is not a military mutiny but a national revolt, of which the sepoys are the active instrument only. He ends his harangue advising the Government to turn their attention to the internal improvement of India, Instead of pursuing its present course of oppression. (Unsigned article "The Indian Question" Newyork Daily Tribune August 14, 1857 Quoted by P.C. Joshi)

''ମିଃ ଡ଼ିସ୍ରାଏଲି.............. ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ ବର୍ତ୍ତମାନ ଭାରତରେ ଲାଗିଥିବା ସଂଘର୍ଷ ଏକ ସିପାହୀ ବିଦ୍ରୋହ ନୁହେଁ, ପରନ୍ତୁ ଏହା ଏକ ଜାତୀୟ ଆନ୍ଦୋଳନ ଯେଉଁଥିରେ କି ସିପାହୀମାନେ କେବଳ କ୍ରିୟାଶୀଳ ଉପକରଣ ଅଟନ୍ତି । ଏହି ଉପଲବ୍ଧିପରେ ବକ୍ତବ୍ୟର ଶେଷରେ ସେ ସରକାରଙ୍କୁ ପରାମର୍ଶ ଦେଇ କହିଲେ ଯେ ସରକାର ବର୍ତ୍ତମାନର ଦମନମୂଳକ ନୀତି ତ୍ୟାଗକରି ଆଭ୍ୟନ୍ତରୀଣ ଉନ୍ନତି ଦିଗରେ ଧ୍ୟାନ ଦେବା ଦରକାର ।''

ବିଦ୍ରୋହ ସମୟର ଐତିହାସିକମାନେ ମଧ୍ୟ ଏହାକୁ ଗଣବିଦ୍ରୋହ ବୋଲି ମତବ୍ୟକ୍ତ କରିଛନ୍ତି । 'ଜଷ୍ଟିନ୍ ମାକାର୍ଥୀ' (Justin MacCarthy)ଙ୍କ ମତରେ:-

"It was not the Sepoy alone who rose in revolt- it was not by any means a merely military unity. It was a combination of military grievance, national hatred, and religious fanaticism against the English occupation of India". (Quoted by V.D. Sarvarkar- Indian War of Independance, p.12)

''କେବଳ ସିପାହୀମାନେ ବିଦ୍ରୋହ କରିନଥିଲେ- କେବଳ ଏହା ଏକ ସାମରିକ ଏକତା ନଥିଲା, ଏହା ଥିଲା ଇଂରାଜିଙ୍କର ଭାରତ ଅଧିକାର ବିରୁଦ୍ଧରେ ଏକ ସାମରିକ ଅଭିଯୋଗ, ଏକ ଜାତୀୟ ଘୃଣା ଏବଂ ଧର୍ମାନ୍ଧତା ପ୍ରକୃତିର ଏକ ସମ୍ମିଶ୍ରଣ ।''

ଚାର୍ଲସ ବଲ୍ (Charles Ball) ମଧ୍ୟ ଅନୁରୂପ ମତ ପ୍ରକାଶ କରି କହିଛନ୍ତି:-

"It became the rebellion of a whole people incited to outrage by resentment for imaginary wrongs and sustained in their delusions by hatred and fanaticism." (Indian Mutiny vol.I, p-642)

''ଜାତୀୟ ମାନସିକତାରେ ଅନ୍ତର୍ନିହିତ ଥିବା ସାମୂହିକ ଘୃଣା, ଧର୍ମାନ୍ଧତା ରୂପନେଲା ଏକ ଭ୍ରମାତ୍ମକ ପ୍ରକାଶରେ । ତାହା ଥିଲା ଏକ ଆବେଗମୟ କ୍ରୋଧ ଓ ଆହତ ଆକ୍ରୋଶ ।''

'କର୍ଣ୍ଣେଲ ମାଲେସନ୍' (Colonel Malleson)ବିଦ୍ରୋହର ଇତିହାସ ଲେଖିବାକୁ ଯାଇ ପ୍ରଥମେ ଏହାକୁ 'ସିପାହୀ ବିଦ୍ରୋହ' ବୋଲି ବର୍ଣ୍ଣନା କରିଥିଲେ । ବିଦ୍ରୋହ ପ୍ରଶମିତ ହେବାର ଆଠବର୍ଷ ପରେ ସେ ପୁନର୍ବାର ଭାରତକୁ ଆସି ଏ ସମ୍ବନ୍ଧରେ ଅନୁସନ୍ଧାନ କରିବା ଫଳରେ ତା'ଙ୍କର ଏ ଧାରଣା ଦୂରୀଭୂତ ହୋଇଥିଲା । ଏଣୁ ସେ ପରବର୍ତ୍ତୀ କାଳରେ ୧୮୯୧ ମସିହାରେ. The Indian Mutiny of 1857' ନାମକ ପୁସ୍ତକରେ ଅଭିମତ ପ୍ରକାଶ କରି କହିଥିଲେ:-

"Circumstances had proved to me that extraneous causes were at work to promote an ill feeling, a hatred not personal but national, in the minds of men who for a century had been our truest and most loyal servants." (Col. G.B. Malleson, Indian Mutiny of 1857, preface. p. VIII)

''ପରିସ୍ଥିତିରୁ ମୁଁ ପ୍ରମାଣ ପାଇଛି ଯେ ବାହ୍ୟକାରଣରୁ ସୃଷ୍ଟ ହୋଇ ଲୋକମାନଙ୍କର ମାନସିକତାରେ ପ୍ରକାଶ ପାଇଥିବା ଘୃଣା ଓ ଦ୍ୱେଷ ରୂପନେଲା ବ୍ୟକ୍ତିଠାରେ ନୁହେଁ, ଜାତିଠାରେ । ଏହି ଲୋକମାନେ ଶତାବ୍ଦୀ ଧରି ଆମର ପ୍ରକୃତ ବିଶ୍ୱସ୍ତ ସେବକ ଥିଲେ ।''

ସେହିପରି ଅବଧର ବିଦ୍ରୋହ ବିଷୟରେ ସେ ସମୟରେ ମତାମତ ଦେବାକୁ ଯାଇ ଇଂରାଜି ଐତିହାସିକ 'ମାକ୍‌ଲିଓଡ୍' (Mcleod)କହିଛନ୍ତି:-

"At least the struggle of the Oudhians must be characterised as a war of independence." (Quoted by Sevarkar, p.357)

''ଅତ୍ୟନ୍ତ ଅବଧ ଲୋକମାନଙ୍କର ସଂଘର୍ଷକୁ ନିଶ୍ଚିତ ଭାବରେ ଏକ ଜାତୀୟ ସଂଗ୍ରାମ ବୋଲି କୁହାଯାଇପାରିବ ।''

ଅନ୍ୟ ଏକ ଦିଗରୁ ମଧ ଆଲୋଚନା କରାଯାଇପାରେ । ପରୀକ୍ଷା କରି ଦେଖିଲେ ଜଣାଯାଏ ଯେ ଇଂରାଜିଙ୍କ ଦ୍ୱାରା ଅନୁଗୃହୀତ ବହୁ ବ୍ୟକ୍ତିମାନଙ୍କ ମଧ୍ୟରେ ଜାତୀୟ ଚେତନା ଦେଖିବାକୁ ମିଳେ । ଏହି ଚେତନାରେ ଉଦ୍‌ବୁଦ୍ଧ ହୋଇ ସେମାନେ କେତେ ବେଳେ ଗୋପନରେ, କେତେବେଳେ ବା ପ୍ରକାଶ୍ୟରେ ବିଦ୍ରୋହୀମାନଙ୍କର ସହାୟତା କରୁଥିଲେ । ଏହା ସେ ସମୟର ଜିଲ୍ଲା ମୁଖ୍ୟମାନେ ଗଭର୍ଣ୍ଣର ଜେନେରାଲଙ୍କ ପାଖକୁ ପଠାଇଥିବା ତାଙ୍କ ଅଞ୍ଚଳରେ ବିଦ୍ରୋହର ସମୀକ୍ଷାରୁ ଜଣାପଡ଼େ ।

କାନପୁରର ଜିଲ୍ଲା ମାଜିଷ୍ଟ୍ରେଟ ଜେ.ଡ଼ବ୍ଲ୍ୟୁ.ଶେରର୍ (J.W.Sherer) ୧୮୫୯ ମସିହା ଜାନୁଆରୀ ତିନି ତାରିଖରେ ତାଙ୍କର ରିପୋର୍ଟରେ ଜଣାଇଥିଲେ :-

"The infidelity also of the Omlah (Indian Officials) doubtless, had a very bad influence in the district. To a man almost, with the Deputy Collector at their head, they quietly changed sides and acquiesced in the new administration. Ramlal, the Deputy Collector, took a very active part in attempting to organise the Nana's Government. This marked treachery, a treachery which ruined the whole body of officials, I punished with death on my first arrival." (Narrative of Events, Kanpur in 1857-58 No. 268)

''ଅମଲା (ଭାରତୀୟ ଅଫିସର) ମାନଙ୍କର ଅବିଶ୍ୱସ୍ତତା ମଧ ନିଃସନ୍ଦେହ ଭାବରେ ଜିଲ୍ଲାରେ ଖୁବ୍ ଖରାପ ପ୍ରଭାବ ପକାଉଛି । ଡେପୁଟି କଲେକ୍ଟରଙ୍କ ଅଧିନସ୍ଥ ଲୋକମାନେ ନୀରବରେ ପକ୍ଷ ପରିବର୍ତ୍ତନ କରି ନୂତନ ଶାସନକୁ ସମ୍ମତି ଦେଇଥିଲେ । ରାମଲାଲ ନାମକ ଜଣେ ଡେପୁଟି କଲେକ୍ଟର ନାନାଙ୍କର ସରକାରକୁ ସଂଗଠିତ କରିବାରେ ଉଦ୍ୟମ ସକ୍ରିୟ କରିଥିଲେ । ଏହି ପ୍ରକାର ଦୃଷ୍ଟିଆକର୍ଷଣ କାରୀ ବିଶ୍ୱାସଘାତକତା ଅଫିସର ମାନଙ୍କୁ ନଷ୍ଟ କରି ଦେଉଥିଲା । ମୁଁ ପ୍ରଥମେ ଆସିବା ମାତ୍ରେ ମୃତ୍ୟୁଦଣ୍ଡର ବ୍ୟବସ୍ଥା କଲି ।''

'ଶାହାରନପୁର' ସମ୍ବନ୍ଧରେ କମିଶନର F.Williams, ଉତ୍ତର ପଶ୍ଚିମ ପ୍ରଦେଶର ଗଭର୍ଣ୍ଣରଙ୍କର ସେକ୍ରେଟାରୀଙ୍କୁ ୧୮୫୮, ନଭେମ୍ବର ୧୫ ତାରିଖରେ ଜଣାଇଛନ୍ତି:-

"The utter supineness of the police, who throughout literally did nothing. They appear to have come to an understanding with the people that neither should interfere with the other, that if the villagers permitted the police to remain quietly at their stations and draw their pay, the villagers may commit what crimes they pleased, without any attempt at prevention on their part." (Ibid-Meerut)

''ଊର୍ଦ୍ଧ୍ୱମୁଖ ଶାୟିତ ପୁଲିସ, ସମସ୍ତ ସମୟ କହିବାକୁ ଗଲେ କିଛି କରି ନଥିଲେ । ଏମାନେ ଲୋକମାନଙ୍କ ସହ ଏକ ବୁଝାମଣାକୁ ଆସିଥିବା ପରି ଜଣାଯାଉଛି ଯେ କେହି କାହା ଉପରେ ହସ୍ତକ୍ଷେପ କରିବେ ନାହିଁ । ଗ୍ରାମବାସୀ ମାନେ ପୁଲିସମାନଙ୍କୁ ସେମାନଙ୍କ ଥାନାରେ ନୀରବ ରହି ଦରମା ନେବାକୁ ସମ୍ମତି ଦେଇଥିଲେ, ଗ୍ରାମବାସୀମାନେ ଯେକୌଣସି ଅପରାଧ କଲେ ମଧ୍ୟ ସେମାନେ ତାହାର ନିରାକାରଣ କରିବା ପାଇଁ କୌଣସି ଉଦ୍ୟମ କରୁନଥିଲେ ।''

ସେହିପରି ଝାନ୍‌ସୀର କମିଶନର 'J.W. Pinkrey' ୧୮୫୮ ମସିହା ନଭେମ୍ବର ୨୦ତାରିଖରେ ଜଣାଇଛନ୍ତି:-

The comment of the Omlah and subordinate native officials was generally either bad or neutral. (Ibid-Jhansi)

''ଅମଲା ଓ ସେମାନଙ୍କର ଅଧିନସ୍ଥ ଦେଶୀ ଅଫିସର ମାନଙ୍କର ଆଚରଣ ସାଧରଣତଃ ଖରାପ ବା ନିରପେକ୍ଷ ଥିଲା ।''

ଅପରପକ୍ଷରେ ଇଂରାଜିଙ୍କ ପ୍ରତି ସମ୍ପୂର୍ଣ୍ଣ ଭାବରେ ଅନୁରକ୍ତଥିବା ବ୍ୟକ୍ତିମାନଙ୍କୁ ସାମାଜିକ ବାଛନ୍ଦ କରାଯାଇଥିଲା । 'ରେଭରେଣ୍ଡ କେନେଡ଼ି' ଲେଖିଛନ୍ତି:-

"It is wellknown that the few sepoys who have remained in our services are deemed outcastes, not only by their comrades but by their caste people in general. These even say they cannot venture to go to their homes; for not only would they be reproached and denied brotherly offices but their very lives would be in danger." (Quoted by Savarkar, p.281)

''ଏହା ଜଣାଶୁଣା ଯେ, ଯେଉଁ ଅଳ୍ପକିଛି ସିପାହୀ ଆମର ଚାକିରୀରେ ରହିଛନ୍ତି ସେମାନେ କେବଳ ତାଙ୍କର ବନ୍ଧୁମାନଙ୍କ ଦ୍ୱାରା ନୁହେଁ ପରନ୍ତୁ ସେମାନଙ୍କର

ଜାତିଭାଇମାନଙ୍କ ଆଗରେ ସାମାଜିକ ବାଛନ୍ଦ ରୂପେ ବିବେଚିତ ହେଉଛନ୍ତି । ସେମାନେ କହନ୍ତି ଯେ ସେମାନେ ତାଙ୍କର ଘରକୁ ଯିବାକୁ ସାହସ କରିପାରୁ ନାହାନ୍ତି । କାରଣ ସେମାନେ ଭ୍ରାତୃତ୍ୱ ସମ୍ବନ୍ଧରୁ ବଞ୍ଚିତହେବା ସଂଗେ ସଂଗେ କେବଳ ତଡା ଖାଇବେ ନାହିଁ ପରନ୍ତୁ ସେମାନଙ୍କର ଜୀବନ ବିପଦାପନ୍ନ ରହିବ ।''

ସିପାହୀ ଓ ଅନ୍ୟାନ୍ୟ ସମ୍ପୂର୍ଣ୍ଣ ଇଂରାଜିଅନୁରକ୍ତବ୍ୟକ୍ତିମାନଙ୍କୁ ଯଦି ସଫଳତା ସହକାରେ ସାମାଜିକବାଛନ୍ଦ କରାଯାଇପାରିଲା ତେବେ ବିଦ୍ରୋହ ପଛରେ ଏକ ପରିବ୍ୟାପ୍ତ ଜାତୀୟ ଚେତନା ଥିଲା ବୋଲି କୁହାନଯିବ କିପରି?

ରାଜା, ଜମିଦାର, ନବାବ ବା ତାଲୁକଦାରମାନେ ନିଜ ନିଜର ଜାଗିରୀ, ରାଜ୍ୟ, ପାଇବା ପାଇଁ ବିଦ୍ରୋହରେ ଯୋଗ ଦେଇଥିଲେ ବୋଲି କୁହାଯାଏ । ଏଥିରେ ସେମାନଙ୍କର ବ୍ୟକ୍ତିଗତ ସ୍ୱାର୍ଥ ସାଧନର ଉଦ୍ଦେଶ୍ୟ ଥିଲେ ମଧ୍ୟ ତାହାର ପୃଷ୍ଠଭୂମିରେ ଇଂରାଜିଙ୍କ ପ୍ରତି ସାର୍ବଜନୀନ ଘୃଣା ଓ ଏକ ପ୍ରଚ୍ଛନ୍ନ ଜାତୀୟ ଚେତନା ବୀଜ ରୂପରେ ଥିଲା । ଏକଥା ସେ ସମୟରେ ଲର୍ଡ଼କ୍ୟାନିଂ ଉପଲବ୍ଧି କରିପାରି ଆଉଟ୍ରାମଙ୍କ ପାଖକୁ ଏକ ପତ୍ରରେ ଲେଖିଥିଲେ:-

You seem to think that the rajas and zamindars of Oudh have risen because they have personally suffered by our land-revenue assessment. But in the opinion of Governor-General, this requires some more thought. More thoroughgoing hatred could hardly have been shown by any feudatories than was shown by the Rajas of Chanda, Bhinja and Gonda."

"By the change of rulers, no one had gained more than the youthful raja of Noupara. As soon as the English Government came in, we gave him one thousand villagers, and, setting aside all other Claimants, we appointed his mother as his guardian. But from the first her army has been fighting us at Lucknow. The Raja of Dhura, too, gained enormously by the changes. But his own men attacked Captain Hursey, Captured his wife, and sent her to prison at Lucknow."

"Ashraf Baksh khan, the Talukdar persecuted by his late master, was made at once sole owner of all his properly. But from the beginning, his hatred of us has been most keen. These and other similar examples go to show very clearly that not mere personal loss, due to

our rule, has been responsible for the rising of Zamindars & Rajas against us." (Quoted by Savarkar p.401-402)

''ତୁମେ ବୋଧହୁଏ ଭାବୁଛ ଯେ ଆମର ଜମିଜମା ଖଜଣା ନିର୍ଦ୍ଧାରଣରେଅବଧର ରାଜା ଓ ଜମିଦାର ମାନେ ବ୍ୟକ୍ତିଗତ କ୍ଷତିର ସମ୍ମୁଖୀନ ହୋଇ ବିଦ୍ରୋହ କରିଉଠିଛନ୍ତି । କିନ୍ତୁ ଗଭର୍ଣ୍ଣର ଜେନେରାଲଙ୍କର ମତାମତ ଅନୁସାରେ ଏହା ଅଧିକ ଚିନ୍ତାସାପେକ୍ଷ । ଚନ୍ଦା, ଭିଞ୍ଜା ଓ ଗୋଣ୍ଡାର ରାଜାମାନେ ଏତେ ଗଭୀର ଭାବରେ ଘୃଣା ପ୍ରକଟ କରିଛନ୍ତି ଯେ ଏହା ଅନ୍ୟରାଜାମାନଙ୍କଠାରୁ କ୍ୱଚିତ ମିଳିବ............''

''ଶାସକର ପରିବର୍ତ୍ତନରେ 'ନାଓପଡା'ର ଯୁବକ ରାଜାଙ୍କଠାରୁ ଅଧିକ କେହି ଲାଭବାନ୍ ହୋଇନଥିବେ । ଇଂରାଜି ସରକାର ଆସିବା ମାତ୍ରକେ ଆମେ ତାଙ୍କୁ ହଜାରେ ଗ୍ରାମ ଦେଲୁ, ଅନ୍ୟ ଦାବୀଦାରମାନଙ୍କୁ ଆଗ୍ରାହ୍ୟ କରି ତାଙ୍କର ମାତାଙ୍କୁ ତାଙ୍କର ଅଭିଭାବକ ହିସାବରେ ନିଯୁକ୍ତି ଦେଲୁ । କିନ୍ତୁ, ଆରମ୍ଭରୁ ହିଁ ତାଙ୍କର ସୈନ୍ୟବାହିନୀ ଆମ ବିରୁଦ୍ଧରେ ଲକ୍ଷ୍ନୌରେ ଲଢ଼ାଇ କରିଛନ୍ତି । 'ଧୂରା'ର ରାଜାମଧ ପରିବର୍ତ୍ତନରେ ବହୁ ଲାଭବାନ୍ ହୋଇଛନ୍ତି । କିନ୍ତୁ ତାଙ୍କର ନିଜ ଲୋକମାନେ କ୍ୟାପ୍‌ଟେନ୍ ହର୍ସେଙ୍କୁ ଆକ୍ରମଣ କରିଛନ୍ତି, ତାଙ୍କର ସ୍ତ୍ରୀକୁ ବନ୍ଦୀ କରିଛନ୍ତି ଓ ଲକ୍ଷ୍ନୌର ବନ୍ଦୀଶାଳାକୁ ପଠାଇ ଦେଇଛନ୍ତି ।''

'ଅସରଫ ଖାଁ ନାମକ ତାଲୁକଦାର ତାଙ୍କର ଅଧୁନାମୃତ ମାଲିକଙ୍କ ଦ୍ୱାରା ନିର୍ଯ୍ୟାତିତ ହେଉଥିଲେ, ତାଙ୍କୁ ସମସ୍ତ ସମ୍ପତ୍ତିର ଏକମାତ୍ର ମାଲିକ କରିଦିଆଗଲା । କିନ୍ତୁ ମୂଳଠାରୁ ତାଙ୍କର ଆମପ୍ରତି ଘୃଣା ଅତ୍ୟନ୍ତତୀବ୍ର ଥିଲା । ଏହିପରି ଅନ୍ୟାନ୍ୟ ସମଉଦାହରଣ ରୁ ସ୍ପଷ୍ଟ ଭାବରେ ଜଣାପଡେ ଯେ ରାଜା ଓ ଜମିଦାର ମାନଙ୍କର ବିଦ୍ରୋହ କେବଳ ଆମର ଶାସନରୁ ଉପୁଜିଥିବା ବ୍ୟକ୍ତିଗତ କ୍ଷତି ହେତୁ ହୋଇନଥିଲା ।''

(ସବରକ୍‌ର ଙ୍କର ଦ୍ୱାରା ଉଦ୍ଧୃତ )

ପୂର୍ବରୁ ଆଲୋଚିତ ହୋଇଥିବା, ଦିଲ୍ଲୀ ଓ ଲକ୍ଷ୍ନୌର ପତନ ପରେ ଅବଧ ଓ ଦୋଦ ଅଞ୍ଚଳକୁ ୱାଲପୋଲଙ୍କ ଅଧିନରେ ଯାଇଥିବା ସୈନ୍ୟଙ୍କର ଅଗ୍ରଗତି, 'ଇଟାୱା'ରେ ମାତ୍ର ଅଳ୍ପ କିଛି ସଂଖ୍ୟକ ବିଦ୍ରୋହୀ ସୈନ୍ୟଙ୍କ ଦ୍ୱାରା ପ୍ରତିହତ ହୋଇଥିଲା । ଉନ୍ନତମାନର ଅସ୍ତ୍ରଶସ୍ତ୍ର ନଥାଇ, କୌଣସି ପ୍ରବୀଣ ସେନାପତି ନଥାଇ, କିଛି ମାତ୍ର ସୈନ୍ୟ, ଜୀବନକୁ ଭୟ ନକରି ବିଶାଳ ଇଂରାଜି ବାହିନୀର ଗତିପଥ ପ୍ରତିରୋଧ କରିବାରେ ନିଶ୍ଚିତ ଭାବରେ କୌଣସି ବ୍ୟକ୍ତିଗତ ସ୍ୱାର୍ଥସାଧନ ନଥିଲା, ପରନ୍ତୁ ସେମାନେ ଏକ ମହାଜାତୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇ ସଂଗ୍ରାମ କରିଥିଲେ ।

ସେହିପରି ୧୮୫୮ ମସିହା ଫେବୃଆରୀ ୨୫ତାରିଖ ଦିନ ନେପାଳୀ ଓ ଇଂରାଜିଙ୍କର ବିଶାଳ ମିଳିତ ବାହିନୀର ଗତିମଧ, ଅମରପୁର ପଥରେ ଥିବା ଜଙ୍ଗଲ ମଧ୍ୟସ୍ଥ ଏକ ଦୁର୍ଗରେ ମାତ୍ର ଚଉତିରିଶ ଜଣ ବିଦ୍ରୋହୀଙ୍କ ଦ୍ୱାରା ପ୍ରତିହତ ହୋଇଥିଲା । ସେମାନଙ୍କ ମଧ୍ୟରୁ ଜଣେ ମାତ୍ର ବଞ୍ଚିଥିବା ପର୍ଯ୍ୟନ୍ତ ସମ୍ମିଳିତ ବାହିନୀ ପାଦେ ମାତ୍ର ଆଗେଇ ପାରିନଥିଲା । କେବଳ ଚଉତିରିଶ ତମ ବିଦ୍ରୋହୀର ମୃତ୍ୟୁପରେ ହିଁ ସେନା ଆଗେଇ ପାରିଥିଲା । ଏହା ପଛରେ କୌଣସି ଅର୍ଥ, କ୍ଷମତା ବା ସୈନ୍ୟ ବାହିନୀର ଶକ୍ତି ନଥିଲା । ଏଣୁ ପ୍ରଶ୍ନ ହୁଏ କେଉଁ ଶକ୍ତି ବଳରେ ଏହି ବିଦ୍ରୋହୀମାନେ ଏହି ପ୍ରାଣାନ୍ତକ ଲଢ଼ାଇ କରି ଏକ ବିଶାଳ ବାହିନୀକୁ ରୋକିପାରିଥିଲେ । ଏହାପଛରେ କେବଳ ଆଧୁନିକ ଭାରତରେ ନୂତନ କରି ଜନ୍ମଲାଭ କରୁଥିବା ଏକ ଉଦ୍‌ବୁଦ୍ଧ ଜାତୀୟ ଚେତନା ଥିଲା । ବିଦେଶୀ ଐତିହାସିକ ମାନେ ମଧ୍ୟ ବିଦ୍ରୋହର ପୃଷ୍ଠଭୂମିରେ ଥିବା ଏହି ଦେଶପ୍ରେମ ଓ ଜାତୀୟ ଚେତନାକୁ ସ୍ୱୀକାର କରିଛନ୍ତି । 'ମାଲେସନ' ଫୈଜାବାଦର 'ଅହମଦଶାହ'ଙ୍କୁ ସମ୍ମାନ ଦେବାକୁ ଯାଇ ଲେଖିଛନ୍ତି:-

"He had not stained his sword by assassination; he had connived at no murders; he had fought manfully, honourably and stubbornly in the field against the strangers who had seized his country; and his memory is entitled to the respect of the brave and true-hearted of all nations." (Malleson, Indian Mutiny vol IV p.381)

''ସେଗୁପ୍ତ ହତ୍ୟା କରି ନିଜର ଲେବାରକୁ ରଞ୍ଜିତ କରୁନଥିଲେ ସେ କୌଣସି ହତ୍ୟାକୁ ଉପେକ୍ଷା କରୁନଥିଲେ; ସେ ପୌରୁଷ ସହ ସମ୍ମାନିତ ଓ ଦୃଢ଼ଭାବରେ ତାଙ୍କର ଦେଶକୁ ଅଧିକାର କରିଥିବା ଦଳେ ଅଜଣା ଆଗନ୍ତୁକଙ୍କ ସହ ଭୂମିଉପରେ ଲଢୁଥିଲେ, ଏବଂ ତାଙ୍କର ସ୍ମୃତି ସବୁଦେଶରେ ସାହସୀ ଓ ସତ୍ୟନିଷ୍ଠ ହୃଦୟ ଭାବରେ ସମ୍ମାନର ଯୋଗ୍ୟ ଅଟେ ।''

(ମାଲେସନ୍, ପୃ ୮୧)

ଇଂରାଜି ଐତିହାସିକମାନେ ମଧ୍ୟ ଏହି ଦେଶପ୍ରେମର ସମ୍ମାନ ଝାନ୍‌ସୀ ରାଣୀ, ତାନ୍ତ୍ୟା ଟୋପେ, କୁନ୍‌ୱାର ସିଂହ ଆଦିମାନଙ୍କୁ ଜଣାଇଛନ୍ତି ।

ଏହି ପରିପ୍ରେକ୍ଷୀରେ ସେ ସମୟ ଘଟଣାବଳୀର ଜଣେ ବଳିଷ୍ଠ ସମାଲୋଚକ ମାର୍କ୍ସ ମଧ୍ୟ ନିଜର ମତାମତ ଜଣାଇ Newyork Daily Tribune ପତ୍ରିକାରେ ୧୮୫୭ ମସିହା ଜୁଲାଇ ୩୧ ତାରିଖରେ ଲେଖିଥିଲେ:-

"By and by there will Oozeout other facts able to convince even John Bull Himself that what he considers military unity is in truth a national revolt." (Marx unsigned article...... Aug, 14, 1857)

''ଅନ୍ୟାନ୍ୟ ଘଟଣା ପବାହରୁ ଏପରିକି ଜନ୍‌ବୁଲ ମଧ୍ୟ, ଯାହାକୁ ସିପାହୀ ବିଦ୍ରୋହ ବୋଲି ବିଚାର କରୁଥିଲେ ତାହା ବାସ୍ତବରେ ଏକ ଜାତୀୟ ଆନ୍ଦୋଳନ ବୋଲି ଦୃଢ଼ନିଶ୍ଚିତ ହୋଇଛନ୍ତି ।'' (ମାର୍କ୍ସଙ୍କର ପତ୍ର)

ଏହି ପ୍ରସଙ୍ଗରେ ବିଦ୍ରୋହର ନେତୃତ୍ୱ ନେଉଥିବା ରାଜା, ଜମିଦାର,ନବାବ ଆଦି ମାନଙ୍କର ଭୂମିକାର ଅନୁଶୀଳନ କରିବା ଆବଶ୍ୟକ । ପୂର୍ବାଭାସରେ ଆମେ ଆଲୋଚନା କରିଅଛୁ ଯେ ରାଜନୈତିକ, ସାମାଜିକ, ଅର୍ଥନୈତିକ ତଥା ଧାର୍ମିକ କାରଣରୁ ଜନସାଧାରଣଙ୍କମନରେ ଇଂରାଜି ଶାସନ ପ୍ରତି ଅସନ୍ତୋଷର ବହ୍ନି ଜଳୁଥିଲା ଓ ଏଥିରେ ସମାଜର ସବୁ ଶ୍ରେଣୀର ବ୍ୟକ୍ତିମାନଙ୍କର ସ୍ୱାର୍ଥ ହାନି ଘଟିଥିଲା । ଏହିପରି ଅବସ୍ଥାରେ ଦଳେ ରାଜା, ନବାବ ଓ ଜମିଦାରଙ୍କ ଦଳ ଇଂରାଜିଙ୍କର କୁଶାସନ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମ କରିଥିଲେ । ଏହି ସଂଗ୍ରାମର ସାଧାରଣ ଓ ମୁଖ୍ୟ ଲକ୍ଷ୍ୟଥିଲା, ବିଦେଶୀ ଇଂରାଜିମାନଙ୍କୁ ସ୍ୱଦେଶରୁ ବିତାଡ଼ିତ କରି ସ୍ୱଦେଶ ନୀତିକୁ ପୁନଃ ସଂସ୍ଥାପନ କରିବା । ଜମିଦାର, ନବାବ ତଥା ରାଜନ୍ୟବର୍ଗ, ଗଣଇଚ୍ଛାଶକ୍ତିରେ ପ୍ରଭାବିତ ହୋଇ ଉପରୋକ୍ତ ଲକ୍ଷ୍ୟ ନିର୍ଦ୍ଧାରଣ କରିଥିଲେ । ଏହି ଲକ୍ଷ୍ୟ ହିଁ ସେମାନଙ୍କ ମଧ୍ୟରେ ସୁଦୃଢ଼ ଐକ୍ୟ ଓ ସଂହତି ପ୍ରତିଷ୍ଠା କରିଥିଲା । ଏଣୁ ଏହାକୁ ସ୍ୱଦେଶ ପ୍ରେମ କହିବାରେ କୌଣସି ବାଧା ନାହିଁ । ପୁନଶ୍ଚ ଏହି ନେତୃମଣ୍ଡଳୀଙ୍କ ମଧ୍ୟରେ କୁନ୍‌ୱାର ସିଂହ, 'ତାନ୍ତ୍ୟା ଟୋପେ', 'ଅହମଦଶାହ, 'ଝାନ୍‌ସୀରାଣୀ' ଆଦି ନିଜର ସ୍ୱାର୍ଥକୁ ବଳି ଦେଇ କୌଣସି ପ୍ରକାରେ ଇଂରାଜିଙ୍କ ଆଗରେ ମୁଣ୍ଡ ନନୁଆଁଇ ଶେଷ ପର୍ଯ୍ୟନ୍ତ ଜାତୀୟତାର ସଂଗ୍ରାମ ଅବ୍ୟାହତ ରଖିଥିଲେ । ଏହା ସେମାନଙ୍କ ଉଗ୍ରଦେଶପ୍ରେମ ଓ ଗଭୀର ଜାତୀୟ ପ୍ରୀତିର ପରିଚୟ ଦିଏ । ସେମାନେ ଜାତୀୟ ସ୍ୱାର୍ଥ ପାଇଁ ସହିଥିବା ଦୁଃଖ କଷ୍ଟ, ସାହସ ଓ ବୀରତ୍ୱ ସେମାନଙ୍କର ଗୁଣାବଳୀର ପରିଚୟ ଦିଏ ।

ଅନ୍ୟ ପକ୍ଷରେ ବିଦ୍ରୋହର ନେତୃ ବର୍ଗ ଓ ସେମାନେ ପରିଚାଳିତ ହେଉଥିବା ସଭା ତଥା ସଭାସଦ୍ ମାନଙ୍କର ଦୋଷ ଦୁର୍ବଳତାର ବିଷୟ ବିଚାରକୁ ନିଆଯାଉ । ଅବଧ ଦରବାରର ଏକ ନିଖୁଣ ଚିତ୍ର 'ଆଲ୍ଲାମ ଫଜଲେ ହକ୍' ନାମକ ଜଣେ ପ୍ରତ୍ୟକ୍ଷଦର୍ଶୀ ଉଲେମାଙ୍କ ଲେଖାରୁ ଜାଣିବାକୁ ମିଳେ ।

''ନବାବ ସରକାରଙ୍କ ଅଧିନସ୍ଥ ସମସ୍ତ ଅଫିସର ତଥା ରାଜ୍ୟର ମନ୍ତ୍ରୀମାନେ ମୂଲ୍ୟହୀନ, ଭୟାଳୁ ଓ କାପୁରୁଷ ଥିଲେ । ସେମାନେ ବୋକା ଓ ଅସାଧୁ ପ୍ରକୃତିର ଥିଲେ । ସେମାନେ ବିଚାରବନ୍ତ ଓ ବିଶ୍ୱାସୀ ନଥିଲେ । ସେମାନଙ୍କ ମଧ୍ୟରେ ବହୁ ଅଶିକ୍ଷିତ, ଆରାମ ପ୍ରିୟ, ଚିତ୍କାର ପ୍ରିୟ, ଅଳସୁଆ, ଦୁର୍ବଳ, ସ୍ତାବକ, ଅନ୍ଧ ବିଶ୍ୱାସୀ ଥିଲେ । ସେମାନେ ବାରମ୍ବାର ନିଜର ପ୍ରତିଶ୍ରୁତି ଭଙ୍ଗ କରିବାରେ ଅଭ୍ୟସ୍ତ ଥିଲେ ।''

ବାହାଦୂର ଶାହଙ୍କର ଦରବାରର ବର୍ଣ୍ଣନା କରିବାକୁ ଯାଇ ସେ କହିଛନ୍ତି:-

''ବାହାଦୂରଶାହଙ୍କର ନିଜସ୍ୱ ଓ୍ୱାଜିର୍ ଓ କର୍ମଚାରୀମାନେ ଥିଲେ । ବାହାଦୂରଶାହ ଅତ୍ୟନ୍ତ ବୃଦ୍ଧ ଥିଲେ ଓ ତାଙ୍କର ବେଗମ (ଜୀନତମହଲ)ଓ ଓ୍ୱାଜିରଙ୍କ ଦ୍ୱାରା ସମ୍ପୂର୍ଣ୍ଣ ଭାବରେ ପରିଚାଳିତ ହେଉଥିଲେ । ଓ୍ୱାଜିର୍‌ଙ୍କର ଅଖଣ୍ଡ କ୍ଷମତା ଥିଲା, କିନ୍ତୁ ସେ ଖ୍ରୀଷ୍ଟିଆନ୍ ମାନଙ୍କର ବନ୍ଧୁଥିଲେ ଏବଂ ସେମାନଙ୍କ ପ୍ରତି ତାଙ୍କର ଅତ୍ୟଧିକ ପ୍ରୀତି ଥିଲା । ସମ୍ରାଟଙ୍କର ପରିବାରର ଲୋକମାନଙ୍କର ମଧ୍ୟ ଖ୍ରୀଷ୍ଟାନ୍‌ମାନଙ୍କ ସହିତ ସେହିପ୍ରକାର ସମ୍ପର୍କ ଥିଲା, ଅଥଚ୍ ଏ ସମସ୍ତେ ସମ୍ରାଟଙ୍କ ଚତୁର୍ଦ୍ଦିଗରେ ଥିଲେ ଓ ତାଙ୍କର ଅତ୍ୟନ୍ତ ବିଶ୍ୱସ୍ତ ଥିଲେ ।''

''ବାହାଦୂରଶାହ୍ଙ୍କ ନିଜର ସ୍ୱାଧିନ ମତ ଅନୁସାରେ କୌଣସି ଆଦେଶ ଦେଉନଥିଲେ । ସେ ଭଲ ଓ ଖରାପ କଣ ତାହା ବୁଝୁନଥିଲେ । କୌଣସି ବିଷୟ ସ୍ୱାଧିନ ଭାବରେ ବା ଗୋପନରେ ବିଚାର କରୁନଥିଲେ । ତାଙ୍କର କାହାର କ୍ଷତି ବା ଲାଭ କରିବାର କ୍ଷମତା ନଥିଲା ।''

''ବାହାଦୂର ଶାହ ତାଙ୍କ ସୈନ୍ୟ ବାହିନୀରେ ନିଜର ପୁତ୍ରମାନଙ୍କୁ ଓ ନାତିମାନଙ୍କୁ ଗୁରୁତ୍ୱପୂର୍ଣ୍ଣ ପଦବୀରେ ନିଯୁକ୍ତ କରିଥିଲେ । ସେମାନେ ବୋକା, ଅସାଧୁ ଓ କାପୁରୁଷ ପ୍ରକୃତିର ଥିଲେ । ସେମାନେ ସାଧୁ ଓ ପ୍ରାଜ୍ଞ ବ୍ୟକ୍ତିମାନଙ୍କୁ ଘୃଣା କରୁଥିଲେ । ସେମାନଙ୍କର ଯୁଦ୍ଧ ଉପରେ କୌଣସି ଅନୁଭୂତି ନଥିଲା ।''

''ଏହି ବାଦଶାଙ୍କର ଓ୍ୱାଜିର, ଇଂରାଜିଙ୍କ ପାଖକୁ ଏକ ଗୁପ୍ତ ପତ୍ର ପଠାଉଥିବା ସମୟରେ ତାହା ବିଦ୍ରୋହୀ ସିପାହୀମାନଙ୍କ ହାତରେ ପଡ଼ିଥିଲା । ଉକ୍ତ ପତ୍ରରେ ସେ, ସିପାହୀମାନଙ୍କୁ ଗାଳି ଦେଇ ଲେଖିଥିଲେ । ପୁନଶ୍ଚ ଇଂରାଜିମାନେ ଜୀନତ୍‌ମହଲଙ୍କର ପୁତ୍ର ମିର୍ଜାଯଓ୍ୱାନବକ୍ତଙ୍କୁ ସ୍ୱୀକାର କଲେ, ସେମାନଙ୍କୁ ଦିଲ୍ଲୀରେ ପ୍ରବେଶ କରିବା ପାଇଁ ସବୁ ପ୍ରକାର ସହାୟତା କରାଯିବା ପାଇଁ ଲେଖାଥିଲା ।''

'ଗ୍ରୀଥେଡ୍' ମଧ୍ୟ ଉତ୍ତର ପଶ୍ଚିମ ପ୍ରଦେଶର ଗଭର୍ଣ୍ଣରଙ୍କୁ 'ଜୀନତମହଲ' ଓ ଅନ୍ୟାନ୍ୟ ଶାହାଜାଦା ମାନଙ୍କ ଠାରୁ ସାହାଯ୍ୟମୂଳକ ପ୍ରତିଶ୍ରୁତି ପତ୍ରମାଧ୍ୟମରେ ପାଉଥିବା କଥା ଜଣାଇଥିଲେ । (Letters written during the Seige of Delhi, Greathed, p.217) କିନ୍ତୁ ଇଂରାଜିମାନଙ୍କର ସାମରିକ ଶକ୍ତି କ୍ରମେ ବୃଦ୍ଧି ପାଉଥିବାରୁ ସେମାନେ ଏ ଧରଣର ପତ୍ର ଉପରେ କୌଣସି ଗୁରୁତ୍ୱ ଦେଇନଥିଲେ ।

ରାଜନ୍ୟବର୍ଗଙ୍କର ଦରବାରୀମାନଙ୍କର, ବିଶ୍ୱାସଘାତକତା ଓ ସନ୍ଦେହଜନକ ଆଚରଣ, ବିଦ୍ରୋହୀ ସୈନ୍ୟମାନଙ୍କ ଉପରେ ଅତ୍ୟନ୍ତ କୁପ୍ରଭାବ ପକାଇଥିଲା । କାରଣ ଏହି ବ୍ୟକ୍ତିମାନଙ୍କର ଶାସନରେ ଅତ୍ୟନ୍ତ ଗୁରୁତ୍ୱ ପୂର୍ଣ୍ଣ ସ୍ଥାନ ଥିଲା । ରାଜା ବା ନବାବମାନେ ପ୍ରାୟତଃ ଏମାନଙ୍କ ଦ୍ୱାରା ପରିଚାଳିତ ହୋଇ ଆଦେଶ ପ୍ରଦାନ କରୁଥିଲେ । ଏହାହିଁ ବହୁ ସମୟରେ ବିଦ୍ରୋହୀ ସୈନ୍ୟମାନଙ୍କର ନୈତିକ ଶକ୍ତିକୁ ପ୍ରଚଣ୍ଡ ଆଘାତ କରୁଥିଲା । କିନ୍ତୁ ରାଜନ୍ୟମଣ୍ଡଳୀମାନଙ୍କର ଦରବାରରେ, ଅନ୍ୟ ଏକ ଗୋଷ୍ଠୀ ବିଦ୍ରୋହୀମାନଙ୍କୁ ପ୍ରବଳ ସମର୍ଥନ କରୁଥିଲେ । ଏହିପରି ପ୍ରାୟ ପ୍ରତ୍ୟେକ ଦରବାରମାନଙ୍କରେ ଦୁଇଟି ଗୋଷ୍ଠୀଥିଲେ । ଅନ୍ୟପକ୍ଷରେ ଅଧିକାଂଶ ରାଜନ୍ୟବର୍ଗ, ଦ୍ୱୈତ ଭୂମିକା ଗ୍ରହଣ କରିଥିଲେ । ଏମାନେ ଏକ ପକ୍ଷରେ ଇଂରାଜିମାନଙ୍କୁ ଆନୁଗତ୍ୟ ପ୍ରକାଶ କରୁଥିବା ବେଳେ ଅନ୍ୟପକ୍ଷରେ ବିଦ୍ରୋହରେ ସିଧାସଳଖ ଯୋଗ ନଦେଇ ପରିସ୍ଥିତି ଅନୁଧ୍ୟାନ କରୁଥିଲେ । ଇଂରାଜିମାନେ ମଧ୍ୟ ଏହି ଧରଣର ରାଜନ୍ୟମଣ୍ଡଳୀଙ୍କୁ ଅବିଶ୍ୱାସ କରି ସେମାନଙ୍କ କାର୍ଯ୍ୟକଳାପ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖୁଥିଲେ ଓ ଇଂରାଜି ନିଯୁକ୍ତ ପଲିଟିକାଲ ଏଜେଣ୍ଟମାନେ, ଏହି ରାଜନ୍ୟବର୍ଗଙ୍କୁ କୌଶଳରେ ନିଷ୍କ୍ରିୟ କରି ରଖୁଥିଲେ । ଏଣୁ ବିଦ୍ରୋହୀ ସୈନ୍ୟ ତଥା ନେତାମାନେ ଉପଯୁକ୍ତ ସମୟରେ ସେମାନଙ୍କର ସହାୟତା ପାଇପାରୁ ନଥିଲେ । ରାଜନ୍ୟବର୍ଗଙ୍କର ଏହି ବ୍ୟବହାରର କାରଣ ହେଲା, ସେମାନେ ଇଂରାଜି ଆଇନର ଶୀକାର ହୋଇ ନିଜର ସ୍ଥିତି ପ୍ରତି ସନ୍ଦିହାନ ହୋଇଯାଇଥିଲେ ଓ ସେମାନଙ୍କ ରାଜ୍ୟରେ ଇଂରାଜି ନିଯୁକ୍ତ ସୈନ୍ୟମାନେ ମୁତୟନ ହୋଇଥିଲେ । ପଲିଟିକାଲ ଏଜେଣ୍ଟ ମାନେ ବାସ୍ତବରେ ଶାସକର ଭୂମିକା ନେଇଥିଲେ ।

ଦକ୍ଷିଣ ଭାରତରେ ହାଇଦ୍ରାବାଦର ନିଜାମଙ୍କର ସ୍ଥାନ ଗୁରୁତ୍ୱପୂର୍ଣ୍ଣ ଥିଲା, କିନ୍ତୁ ସେ ନିଜର ସ୍ଥିତି ପାଇଁ ଇଂରାଜିଙ୍କର ସମର୍ଥନ ଓ ସହାୟତା ଉପରେ ଭରସା ରଖିଥିଲେ । ନର୍ଟନ ତାଙ୍କର ବିବରଣୀରେ ଲିପିବଦ୍ଧ କରିଛନ୍ତି:-

If Hyderabad had risen, we could not escape insurrection practically over the whole of Deccan and Southern India." (Topic for Indian Statesman. p.56)

''ହାଇଦ୍ରାବାଦରରେ ବିଦ୍ରୋହ ହୋଇଥିଲେ, ଆମେ ସମଗ୍ର ଡେକାନ ଓ ଦକ୍ଷିଣ ଭାରତରେ ଗଣ ବିକ୍ଷୋଭରୁ ରକ୍ଷା ପାରିନଥାନ୍ତୁ ।''

ରାଜପୁତାନାର ରାଜନ୍ୟବର୍ଗ ମଧ୍ୟ ନୀରବଦ୍ରଷ୍ଟା ସାଜି ରହିଥିଲେ । ମଧ୍ୟଭାରତରେ ଗୋଆଲିୟରର ରାଜପରିବାର ଇଂରାଜିଙ୍କର ପୂର୍ଣ୍ଣ ସମର୍ଥକ ଥିବା ବେଳେ ସେନାବାହିନୀ ବିଦ୍ରୋହରେ ଯୋଗଦାନ କରିଥିଲେ । ସେହିପରି ପଞ୍ଜାବର ପାତିଆଲା, ଜିନ୍ଦ୍ ଓ କର୍ଣ୍ଣଲ୍‌ର ରାଜନ୍ୟ ମଣ୍ଡଳୀ ଇଂରାଜିମାନଙ୍କୁ ପ୍ରତ୍ୟକ୍ଷ ଭାବରେ ସବୁ ପ୍ରକାରେ ସହାୟତା କରୁଥିଲେ ।

ଏହିପରି ପରିସ୍ଥିତି ମଧ୍ୟରେ ମହାଜାତୀୟ ଚେତନାର ବୀଜ ଧୀରେ ଧୀରେ ଅଂକୁରିତ ହେବାକୁ ଯାଇ ତାହା ଜନସାଧାରଣ ତଥା ସିପାହୀମାନଙ୍କୁ ଆଚ୍ଛନ୍ନ କରି ରଖିଥିଲା । ସେମାନଙ୍କର ମୂଳ ଲକ୍ଷ୍ୟ ଥିଲା ଇଂରାଜିମାନଙ୍କୁ ବିତାଡ଼ିତ କରି ସ୍ୱଧର୍ମ ଓ ସ୍ୱରାଜ୍ୟ ପ୍ରତିଷ୍ଠା କରିବା । ଏଣୁ ସେମାନେ ଏଥିପାଇଁ ନିଜର ପାରମ୍ପରିକ ନେତାମାନଙ୍କୁ ମଧ୍ୟ ଉପେକ୍ଷା କରିଥିଲେ । ବର୍ଷ ବର୍ଷ ଧରି ଆସ୍ଥା ରଖିଥିବା ରାଜନ୍ୟମଣ୍ଡଳୀ ଉପରୁ ଆସ୍ଥା ହରାଇ, ସେମାନେ ପ୍ରଥମ ଥର ପାଇଁ ନୂତନଭାବରେ ଅଂକୁରିତ ହେଉଥିବା ମହାଜାତୀୟଚେତନାର ପ୍ରବାହରେ ଅବଗାହିତ ହୋଇଥିଲେ । 'ଇନ୍ଦୋର'ର ସୈନ୍ୟବାହିନୀ ମହାରାଜାଙ୍କର ବିନା ଆଦେଶରେ ରାଜ୍ୟରୁ ଇଂରାଜିମାନଙ୍କୁ ବିତାଡ଼ିତ କରିଥିଲେ । 'ତାନ୍ତ୍ୟା ଟୋପେ' ଓ 'ଝାନ୍‌ସୀରାଣୀ'ଗୋଆଲିଅରରେ ପହଞ୍ଚିବା ମାତ୍ରେ ସିନ୍ଧିଆଙ୍କର ସୈନ୍ୟମାନେ ରାଜାଦେଶ ଅମାନ୍ୟ କରି ବିଦ୍ରୋହୀ ବାହିନୀରେ ଯୋଗ ଦେଇଥିଲେ ଓ ଜୀବନ ରକ୍ଷା ପାଇଁ ରାଜପରିବାର ଆଗ୍ରାକୁ ପଳାଇଥିଲେ । 'ଉଦୟପୁର'ର ମହାରାଣାଙ୍କର ସୈନ୍ୟମାନେ 'ଆଗ୍ରାରେ' ଇଂରାଜିମାନଙ୍କୁ ସହାୟତା କରିବାକୁ ଯାଇ ସେଠାରେ ସ୍ୱେଚ୍ଛାରେ ନିଷ୍କ୍ରିୟ ହୋଇଯାଇଥିଲେ ।

'ଜୟପୁର'ର ବାହିନୀ ମଧ୍ୟ ରାଜାଦେଶରେ ଇଂରାଜି ସହାୟତା ପାଇଁ 'ଗୁରୁଗାଓଁ' ଓ 'ମଥୁରା'କୁ ଯାଇଥିଲେ ଏବଂ ଅସହାୟ ଇଂରାଜିମାନଙ୍କୁ ସାହାଯ୍ୟ କରିବା ବ୍ୟତୀତ ସେମାନେ ବିଦ୍ରୋହୀଙ୍କ ସହିତ ଲଢ଼ିବା ପାଇଁ ସ୍ପଷ୍ଟ ଭାବରେ ମନା କରିଦେଇଥିଲେ । 'କୋଟା'ରୁ ଏକ ବାହିନୀ ଇଂରାଜି ସହାୟତା ପାଇଁ ଆଗ୍ରା ଯାଇଥିବା ବେଳେ ବିଦ୍ରୋହ କରିଥିଲେ । 'ଭରତପୁର'ର ଘୋଡ଼ାସବାର ବାହିନୀ ଇଂରାଜି ପକ୍ଷ ତ୍ୟାଗ କରିଥିଲେ । ଏହି ସମସ୍ତ ଘଟଣାବଳୀରୁ 'ମାଲେସନ' ସିଦ୍ଧାନ୍ତ ଗ୍ରହଣ କରନ୍ତି:-

It was plainly shown that when fanaticism of an oriental people is thoroughly roused, not even their Raja, their father, as all consider

him, their God as some delight to style him, can bend them against their convictions." (Kays vol. I p.617)

''ଏହା ସ୍ପଷ୍ଟ ଭାବରେ ଦେଖାଯାଇଛି ଯେ ଯେତେବେଳେ ପ୍ରାଚ୍ୟର ଅନ୍ଧବିଶ୍ୱାସ ସମ୍ପୂର୍ଣ୍ଣରୂପେ ଜାଗରିତ ହୁଏ, ଏପରିକି ତାଙ୍କର ରାଜା, ଯାହାକୁ ପିତା ତୁଲ୍ୟ ସ୍ଥାନ କରାଯାଏ ବା କେହି କେହି ତାଙ୍କର ଈଶ୍ୱର ବୋଲି କହିଥାଆନ୍ତି ସେ ମଧ୍ୟ ସେମାନଙ୍କର ଦୃଢ଼ବିଶ୍ୱାସକୁ ଭାଙ୍ଗିପାରନ୍ତି ନାହିଁ ।''

'ମାଲେସନ' ଯେହେତୁ ଜଣେ ଭାରତୀୟ ନଥିଲେ, ତେଣୁ ସେ ଭାରତୀୟମାନଙ୍କ ଜାତୀୟ ଭାବପ୍ରବଣତାକୁ ହୃଦୟଙ୍ଗମ କରି ନପାରି ତାହାକୁ 'Fanatic' ବା ଅନ୍ଧବିଶ୍ୱାସ ରୂପେ ଅଭିହିତ କରିଛନ୍ତି ।

ପୁନଶ୍ଚ, ନେହେରୁଙ୍କ ପରି ଐତିହାସିକମାନେ ଏହାକୁ ଜାତୀୟ ଜାଗରଣ ବୋଲି ଅସ୍ୱୀକାର କରିବା ସଙ୍ଗେ ସଙ୍ଗେ, ଏହା ଏକ କେତୋଟି ସ୍ଥାନୀୟ ଆନ୍ଦୋଳନର ସମଷ୍ଟି ବୋଲି ଅଭିହିତ କରିଥିଛନ୍ତି । ଏହି ବିଷୟକୁ ବିଚାରକୁ ନିଆଯାଉ ।

୧୮୫୭ର ବିଦ୍ରୋହରେ 'ଦିଲ୍ଲୀ' ଉତ୍ତର ପଶ୍ଚିମ ପ୍ରଦେଶ, 'ବୁନ୍ଦେଲଖଣ୍ଡ', 'ରୋହିଲାଖଣ୍ଡ,' 'ଅବଧ' ଓ 'ବିହାରର' ବହୁ ଅଞ୍ଚଳକୁ ବିଦ୍ରୋହର ମୁଖ୍ୟ ସ୍ଥାନ ରୂପେ ଧରାଯାଏ । ଏହା ବ୍ୟତୀତ 'ପଞ୍ଜାବ', 'ହାଇଦ୍ରାବାଦ', 'ମହାରାଷ୍ଟ୍ର,' 'ରାଜପୁତାନା' ଓ 'ବିହାର'ର ଆଦିବାସୀ ଅଧ୍ୟୁସିତ ଅଞ୍ଚଳ ଗୁଡ଼ିକରେ ସ୍ଥାନୀୟ ବିଦ୍ରୋହୀମାନଙ୍କ ଦ୍ୱାରା ବିଦ୍ରୋହ ଓ ଇଂରାଜିବିରୁଦ୍ଧରେ ମନ୍ତ୍ରଣା ଚାଲିଥିବା ଦେଖାଯାଏ । ଏହି ସମସ୍ତ କ୍ରିୟାକଳାପରେ ଜାତୀୟ ଗଣଚେତନା ହିଁ ପ୍ରତିଫଳିତ ହେବାର ଦେଖିବାକୁ ମିଳେ, ଏହି ସବୁ ଦୃଷ୍ଟିକୋଣରୁ ୧୮୫୭ ପୂର୍ବରୁ ହୋଇଥିବା ସମସ୍ତ ବିଦ୍ରୋହଠାରୁ ୧୮୫୭ର ବିଦ୍ରୋହ ପୃଥକ ଜଣାପଡ଼େ ।

ପ୍ରଥମତଃ ଏହି ବିଦ୍ରୋହର ବିଶାଳ ସୀମାରେଖା ଓ ଦ୍ୱିତୀୟତଃ ବିଦ୍ରୋହ ପଛରେ ଥିବା ଜନସହାନୁଭୂତିରେ ହିଁ ଜାତୀୟ ଗଣଚେତନାର ପ୍ରତିଫଳନ ଦେଖିବାକୁ ମିଳେ । ତୃତୀୟତଃ, ଗୁଣାତ୍ମକ ଦୃଷ୍ଟିରୁ ୧୮୫୭ର ବିଦ୍ରୋହ ସହିତ ପୂର୍ବବର୍ତ୍ତୀ ବିଦ୍ରୋହମାନଙ୍କର ତୁଳନା କରାଯାଉ । ପୂର୍ବରୁ ବିଦ୍ରୋହମାନଙ୍କରେ ନିର୍ଦ୍ଦିଷ୍ଟ ଏକ ରାଜ୍ୟର ବାହିନୀ, ଇଂରାଜିଙ୍କ ବିରୁଦ୍ଧରେ ଯୁଦ୍ଧ କରୁଥିଲେ । ଉଦାହରଣ ସ୍ୱରୂପ, ବଙ୍ଗୀୟମାନେ ପଲାସୀଯୁଦ୍ଧ ଲଢ଼ିଥିଲେ । କିନ୍ତୁ ୧୮୫୭ର ବିଦ୍ରୋହରେ ସମାଜର ସବୁ ଶ୍ରେଣୀ ଜାତି ତଥା ଧର୍ମର ବ୍ୟକ୍ତିମାନେ, ଭିନ୍ନ ଭିନ୍ନ ରାଜ୍ୟର ହେଲେ ମଧ୍ୟ, ଏକତ୍ରିତ ହୋଇ

ଇଂରାଜିମାନଙ୍କ ବିରୁଦ୍ଧରେ ଲଢ଼ିଥିଲେ । ମାର୍କ୍ସଙ୍କ ଭାଷାରେ:-

"It is the first time that sepoy regiment have murdered their European officers; the Musalmans and Hindus, renouncing their mutual antipathies have combined aganist the common masters.—" (Unsigned article Newyork Daily Tribune 15th July, 1857).

''ପ୍ରଥମ ଥର ପାଇଁ ସିପାହୀ ରେଜିମେଣ୍ଟ ତାଙ୍କର ଇଉରୋପୀୟ ଅଫିସରମାନଙ୍କୁ ହତ୍ୟା କରିଛନ୍ତି । ମୁସଲମାନ ଓ ହିନ୍ଦୁମାନେ ପାରସ୍ପରିକ ବିଦ୍ୱେଷ ଭୁଲି ସେମାନଙ୍କର ସାଧାରଣ ମାଲିକମାନଙ୍କ ବିରୁଦ୍ଧରେ ଏକଜୁଟ୍ ହୋଇଛନ୍ତି ।''

ଏ ସମସ୍ତ ଅନୁଧ୍ୟାନ କଲେ, ନେହେରୁ ଆଦି ଐତିହାସିକମାନଙ୍କର ମତ କେତେଦୂର ଯୁକ୍ତି ଯୁକ୍ତ ତାହା ପାଠକ ଓ ବିଦ୍ୱାନ୍‌ମାନେ ବିଚାର କରିବେ । କିନ୍ତୁ, ୧୮୫୭ର ବିଦ୍ରୋହକୁ ଆଧୁନିକ ଭାରତରେ ପ୍ରଥମ ଜାତୀୟତାର ଆନ୍ଦୋଳନ କହିବାରେ ଆମେ କିଛି ଅଯୌକ୍ତିକତା ଥିଲା ପରି ବୋଧ କରୁନାହୁଁ ।

ଏଠାରେ ସ୍ୱତଃ ପ୍ରଶ୍ନ ଉଠେ ଯେ ଯଦି ୧୮୫୭ ମସିହାର ବିଦ୍ରୋହ ଏକ ଜାତୀୟ ଜାଗରଣ ଥିଲା ତେବେ ତାହା ଅସଫଳ ହେବାର କାରଣ କଣ?

ଏହାର ଉତ୍ତରରେ କୁହାଯାଇପାରେ ଯେ ପ୍ରଥମତଃ, ଇଂରାଜିମାନଙ୍କର ଭେଦ ନୀତି ଫଳରେ, ପୂର୍ବରୁ ଏକ ରାଜ୍ୟର ଶାସକ, ବ୍ୟକ୍ତିଗତ ସ୍ୱାର୍ଥ ସାଧନ ଓ ନିରାପତ୍ତା ଉଦ୍ଦେଶ୍ୟରେ ଇଂରାଜିମାନଙ୍କ ସହାୟତା କରି, ଅନ୍ୟ ରାଜ୍ୟର ଶାସକଙ୍କ ବିରୁଦ୍ଧରେ ଲଢ଼ିଥିଲେ । ଏଣୁ ରାଜନ୍ୟ ବର୍ଗଙ୍କର ଐତିହାସିକ ସ୍ମୃତିପଟରୁ ପୂର୍ବର ଇଂରାଜି ସହ ପାରସ୍ପରିକ ଶତ୍ରୁତା ଲିଭିନଥିଲା । ସେମାନେ ନିଜର ସ୍ୱାର୍ଥରକ୍ଷା ପାଇଁ ବ୍ୟସ୍ତ ଥିଲେ ।

ଉଦାହରଣ ସ୍ୱରୂପ ଗୁର୍ଖା ଓ ଶିଖ୍‌ମାନେ ଇଂରାଜିଙ୍କ ସହିତ ଯୋଗଦାନ କରିଥିଲେ । କାରଣ ପୂର୍ବରୁ ମରହଟ୍ଟାମାନଙ୍କ ମଧ୍ୟରେ ଗୃହ ବିବାଦ ଥିବା ହେତୁ ସମସ୍ତ ମରହଟ୍ଟା ରାଜନ୍ୟବର୍ଗ ଏକତ୍ରିତ ହୋଇ 'ପେଶବା ନାନାସାହେବ'ଙ୍କୁ ସାହାଯ୍ୟ କରିପାରିନଥିଲେ । ଏ ସମ୍ବନ୍ଧରେ ଜଣେ ଇଂରାଜ ଲେଖକ ଫିଟ୍‌ଚ୍ରେଟ୍ (Fichett), ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି:-

"What a demonstration the whole story is, of the mperial genius of the British race ! " 'A nation' to quote Hudson - himself one of the most brilliant actor in the great drama- "which could conuer a great

country like the Punjab with a Hindustane Army, then turn the energies of the conquered sikhs to subdue the very army by which they were tamed, which could fight out a position like peshwar for years, in the very teeth of the Afgan tribes; and then, when suddenly deprived of the regiments which effected this, could unhesitatingly employ these very tribes to disarm and quell those regiments when in mutiny- a nation which could do this, is indeed, destined to rule the world!" (Fitchett, Quoted by p.c.Joshi)

''ସମଗ୍ର ଘଟଣାବଳୀରେ ବ୍ରିଟିଶ୍ ସାମ୍ରାଜ୍ୟବାଦୀ ପ୍ରତିଭାର କି ପ୍ରକାର ନିଦର୍ଶନ ! ଏହି ମହାନାଟକର ଏକ ପ୍ରତିଭାବାନ୍ ଅଭିନେତା ହଡସନ୍‌ଙ୍କ ମତ ଉଦ୍ଧାର କରିବାକୁ ଗଲେ- ଏକ ଜାତି ଯେ କି ପଞ୍ଜାବ ପରି ମହାନ୍ ଦେଶକୁ ହିନ୍ଦୁସ୍ଥାନୀ ସେନାଙ୍କ ଦ୍ୱାରା ଜୟ କରିପାରେ, ପୁନଶ୍ଚ ବିଜିତ ଶିଖ୍ ମାନଙ୍କ ଦ୍ୱାରା ସେମାନଙ୍କୁ ଜୟକରିଥିବା ବାହିନୀକୁ ପଦାନତ କରିପାରେ, ଯେ କି ପେଶୱାରପରି ସ୍ଥାନରେ ଆଫଗାନ ଉପଜାତିମାନଙ୍କର ମୁହାଁମୁହିଁ ହୋଇ ବର୍ଷ ବର୍ଷ ଧରି ଲଢ଼ିପାରେ, ଏବଂ ତାହାପରେ ଲଢ଼ାଇରେ ଜିଣାଇଥିବା ବାହିନୀ ଦ୍ୱାରା ପରିତ୍ୟକ୍ତ ହୋଇ, ଏହି ଉପଜାତି ମାନଙ୍କୁ ନିଯୁକ୍ତି ଦେଇ ଏହି ପରିତ୍ୟାଗ କରିଥିବା ବାହିନୀକୁ ବିଦ୍ରୋହ ସମୟରେ ଅସ୍ତ୍ରହୀନ ଓ ଶାନ୍ତ କରିଦେଇପାରେ– ଯେଉଁ ଜାତି ଏହା କରିପାରେ ସେ ପୃଥିବୀକୁ ଶାସନ କରିବା ବିଧି ନିର୍ଦ୍ଦିଷ୍ଟ ।''

ଇଂରାଜିଙ୍କର ଏହି ଭେଦନୀତିର ସଫଳତାର କାରଣ ପର୍ଯ୍ୟାଲୋଚନା କରାଯାଉ । ଆଧୁନିକ ଭାରତର ଜାତୀୟ ଓ ରାଜନୈତିକ ଚେତନାର ସେତେବେଳେ ସମ୍ପୂର୍ଣ୍ଣ ବିକାଶ ହୋଇନଥିଲା । କିନ୍ତୁ, ତାହା ବିକାଶର ଏକ ପର୍ଯ୍ୟାୟ ମାତ୍ର ଥିଲା । ସେତେବେଳେ ସାଧାରଣ ଜନତାଙ୍କ ମନରେସର୍ବତ୍ର ଇଂରାଜି ବିଦ୍ୱେଷ ଭରିରହିଥିଲା ଏହାସତ୍ୟ, କିନ୍ତୁ ସେମାନଙ୍କର ରାଜନୈତିକଚେତନା, ତାଙ୍କର ନିଜ ରାଜ୍ୟ ମଧ୍ୟରେ ସୀମାବଦ୍ଧ ଥିଲା । ସେତେବେଳେ ଏହି ରାଜ୍ୟମାନଙ୍କର ଶାସକଗୋଷ୍ଠୀ ହିଁ ପ୍ରଜାମାନଙ୍କର ରାଜନୈତିକଆଦର୍ଶର ନେତା ଥିଲେ । ସେମାନେ ଜନସାଧାରଣଙ୍କ ପରି ଅନ୍ତରରେ ଇଂରାଜ ବିଦ୍ୱେଷୀ ଥିଲେ ମଧ୍ୟ, ଅନ୍ୟ ରାଜନ୍ୟବର୍ଗଙ୍କ ସହିତ ଥିବା ପୂର୍ବତନ ଶତ୍ରୁତାକୁ ଭୟ କରୁଥିଲେ । ନିଜର ପଦ ତଥା ରାଜ୍ୟରକ୍ଷା ସେମାନଙ୍କର ମୁଖ୍ୟଧେୟ ଥିଲା । ଏକ ଅଖଣ୍ଡ ଓ ଐକ୍ୟବଦ୍ଧ ଭାରତର କଳ୍ପନା, ସେମାନଙ୍କ ମନରେ ସ୍ଥାନପାଇନଥିଲା । ସେତେବେଳେ ଜନସାଧାରଣଙ୍କର ଦେଶପ୍ରେମ, ନିଜ ରାଜ୍ୟ ତଥା ପାରମ୍ପରିକ ଶାସକ

ଓ ଶାସିତଙ୍କ ମଧ୍ୟରେ ସୀମାବଦ୍ଧ ଥିଲା । ଆଧୁନିକ ଐକ୍ୟବଦ୍ଧ ଭାରତର କଳ୍ପନା ସମସ୍ତଙ୍କର ଅଗୋଚରରେ ଧୀରେ ଧୀରେ ବିକାଶ ଲାଭ କରୁଥିଲା । କାରଣ, ୧୮୫୭ର ବିଦ୍ରୋହ ପରେ ପରେ ହିଁ ବିକାଶ ଲାଭ କରିଥିବା ଜାତୀୟ ଚେତନାର ଦ୍ୱିତୀୟ ପର୍ଯ୍ୟାୟରେ ଜନସାଧାରଣ, ଏକ ଐକ୍ୟବଦ୍ଧ ଓ ଅଖଣ୍ଡ ଭାରତବର୍ଷଙ୍କୁ, ନିଜର ଜନ୍ମଭୂମି ରୂପେ ଉପଲବ୍ଧି କରିଥିଲେ । ଲଣ୍ଡନ ଟାଇମସ୍ ପତ୍ରିକାର ମନ୍ତବ୍ୟ ଅନୁସାରେ:-

"One of the great results that have flowed from the rebellion of 1857-58 has been to make inhabitants of every part of India acquainted with each other. We have seen the tide of war rolling from Nepal to the boarders of Gujrat, from the deserts of Rajputane to the frontier of Nizam's territories, the same men overrunning the whole land of India and giving to their resistance, a national character."

''୧୮୫୭-୫୮ ବିଦ୍ରୋହରୁ ଏକ ମହତ୍ ଫଳ ଲାଭ ହେଲା ଯେ ଭାରତବର୍ଷର ପ୍ରତି ଅଞ୍ଚଳର ଅଧିବାସୀମାନେ ପରସ୍ପର ସହିତ ପରିଚିତ ହେଲେ । ଆମେ ଦେଖିଛୁ ଯେ ଯୁଦ୍ଧର ଜୁଆର ନେପାଳଠାରୁ ଗୁଜୁରାଟର ସୀମାନ୍ତ, ରାଜସ୍ଥାନ ମରୁଭୂମିରୁ ନିଜାମଙ୍କ ରାଜ୍ୟର ସୀମାନ୍ତ ପର୍ଯ୍ୟନ୍ତ ପ୍ରବାହିତ ହୋଇଛି, ସେହି ଲୋକମାନେ ସାରାଭାରତ ବୁଲି ବୁଲି ପ୍ରତିରୋଧ କରିବା ଫଳରେ ଏକ ଜାତୀୟଚରିତ୍ରର ସୃଷ୍ଟି ହୋଇଛି ।''

ଏହି ପରିସ୍ଥିତି ମଧ୍ୟରେ ସାରାଭାରତର ନେତୃତ୍ୱ ନେବା ଭଳି ବ୍ୟକ୍ତିତ୍ୱ ଓ ନେତୃତ୍ୱର ଅଭାବ ଥିଲା । ଦ୍ୱିତୀୟତଃ, ବିଦ୍ରୋହ ପୂର୍ବରୁ ଇଂରାଜିମାନେ ବ୍ୟସ୍ତ ରହିଥିବା କ୍ରିମିଆ ଯୁଦ୍ଧ ଓ ପାରସ୍ୟ ଯୁଦ୍ଧର, ବିଦ୍ରୋହ ଆରମ୍ଭ ସମୟରେ ହିଁ ପରିସମାପ୍ତି ଘଟିଥିଲା । ଏଣୁ, ଇଂରାଜିମାନେ ସେହି ଯୁଦ୍ଧମାନଙ୍କରେ ଅଭିଜ୍ଞତା ଲାଭ କରିଥିବା ଶ୍ରେଷ୍ଠ ଓ ପ୍ରବୀଣ ସେନାପତିମାନଙ୍କୁ, ବିଦ୍ରୋହ ଦମନରେ ନିୟୋଜିତ କରିପାରିଥିଲେ । ସେ ସମୟରେ ପଶ୍ଚିମଦିଗରେ ଇଂରାଜିମାନେ, ଆଫଗାନଙ୍କ ସହ ସନ୍ଧି ସ୍ଥାପନ କରିଥିଲେ ଓ ଯୁଦ୍ଧ ସମାପ୍ତି ହେତୁ, ସେମାନଙ୍କର ତତ୍କାଳୀନ ଶତ୍ରୁ ଋଷିଆର ଖାଇବର ପଥ ଦେଇ ଆକ୍ରମଣ କରିବାର ସମ୍ଭାବନା ନଥିଲା ।

ତୃତୀୟତଃ, ଚୀନା ସହ ଇଂରାଜିମାନଙ୍କର ଭବିଷ୍ୟତରେ ଯୁଦ୍ଧର ସମ୍ଭାବନା ଥିବା ଦୃଷ୍ଟିରୁ ସେମାନେ ଭାରତୀୟ ମହାସାଗର ମଧ୍ୟ ଦେଇ ଚୀନାକୁ ନିଜର ସେନା ପଠାଉଥିଲେ ଏବଂ ବିଦ୍ରୋହ ଦମନ ପାଇଁ ସେହି ସେନାମାନଙ୍କୁ ଭାରତକୁ ଅଣାଇ ନିୟୋଜିତ କରାଯାଇଥିଲା ।

ଚତୁର୍ଥତଃ, ବିଦ୍ରୋହୀମାନଙ୍କର ଯଥେଷ୍ଟ ଅର୍ଥ ବଳ ନଥିଲା ଓ ସେମାନେ ବ୍ୟବହାର କରୁଥିବା ଅସ୍ତ୍ରଶସ୍ତ୍ର ପାରମ୍ପରିକ ଓ ଇଂରାଜିମାନେ ବ୍ୟବହାର କରୁଥିବା ଅସ୍ତ୍ରଶସ୍ତ୍ର ଠାରୁ ଯଥେଷ୍ଟ ନିମ୍ନମାନର ଥିଲା । ଛୁରା ବନ୍ଧୁକ ଓ ତଲବାର ନେଇ ସେମାନେ ଯୁଦ୍ଧ କ୍ଷେତ୍ରରେ ଇଂରାଜିଙ୍କର ଆଧୁନିକ ଢାଞ୍ଚାରେ ନିର୍ମିତ ଏନ୍‌ଫିଲ୍‌ଡ଼ ରାଇଫଲ ଓ ଅନ୍ୟାନ୍ୟ ଉନ୍ନତମାନର ଆଧୁନିକ ଅସ୍ତ୍ରଶସ୍ତ୍ରର ମୁକାବିଲା କରୁଥିଲେ ।

ପଞ୍ଚମତଃ, ଇଂରାଜିମାନେ ଭାରତରେ ପ୍ରଥମଥର ପାଇଁ ଟେଲିଗ୍ରାଫ ଓ ରେଳର ପ୍ରଚଳନ କରିଥିବାରୁ ସେମାନଙ୍କର ଯୋଗାଯୋଗ ଓ ଗମନା ଗମନ ବ୍ୟବସ୍ଥା ବିଦ୍ରୋହୀମାନଙ୍କଠାରୁ ଯଥେଷ୍ଟ ଉନ୍ନତ ଧରଣର ଥିଲା ।

ଷଷ୍ଠତଃ, ବିଦ୍ରୋହୀମାନଙ୍କର ନେତାମାନେ ରାଜ୍ୟହରା ହୋଇଥିଲେ । ବହୁ ନେତାଙ୍କର ବହୁ ଇଚ୍ଛା ଓ ଦେଶ ସ୍ୱାଧୀନତା ଉପରେ ଭିନ୍ନ ଭିନ୍ନ ମତଥିବାରୁ ପୂର୍ଣ୍ଣ ଜାତୀୟ ଐକ୍ୟ ସମ୍ଭବ ହୋଇନଥିଲା ।

କିନ୍ତୁ ଏ ସମସ୍ତ ସତ୍ତ୍ୱେ, ଆମକୁ ସ୍ୱୀକାର କରିବାକୁ ପଡ଼ିବ ଯେ ୧୮୫୭ର ବିଦ୍ରୋହ ଅସଫଳ ହେଲେ ମଧ୍ୟ, ସେଥିରେ ଯେଉଁ ମହାଭାରତୀୟ ଜାତୀୟ ଚେତନାର ବୀଜ ବପିତ ହୋଇ ଅଙ୍କୁରିତ ହୋଇଥିଲା, ତାହାହିଁ ପରବର୍ତ୍ତୀ କାଳରେ ମହୀରୂହରେ ପରିଣତ ହୋଇ ସାରା ଦେଶକୁ ଆଚ୍ଛନ୍ନ କରିଦେଲା । ସେହି ଅଙ୍କୁରିତ ଚେତନାର କ୍ରମବିକାଶ ଫଳରେ ହିଁ, ଆମେମାନେ ବିଦ୍ରୋହର ନବେବର୍ଷ ପରେ ୧୯୪୭ ମସିହାରେ ଇଂରାଜିମାନଙ୍କୁ ସ୍ୱଦେଶରୁ ବିତାଡ଼ିତ କରିବାରେ ସକ୍ଷମ ହୋଇପାରିଲୁ ।



# ବିଦେଶରେ ବିଦ୍ରୋହର ପ୍ରତିକ୍ରିୟା

୧୮୫୭ ମସିହାର ବିଦ୍ରୋହ, କେବଳ ଭାରତବାସୀମାନଙ୍କ ମଧ୍ୟରେ ନୁହେଁ ପରନ୍ତୁ ସମଗ୍ର ଏସିଆଭୂଖଣ୍ଡରେ, ପାଶ୍ଚାତ୍ୟ ଜଗତର ଉପନିବେଶବାଦ ଓ ଶୋଷଣ ବିରୁଦ୍ଧରେ ଏକ ଜାଗରଣ ସୃଷ୍ଟି କରିଥିଲା । ଏ ସମ୍ବନ୍ଧରେ ଆମେ ପରବର୍ତ୍ତୀ ଅଧ୍ୟାୟରେ କିଞ୍ଚିତ ଆଲୋକପାତ କରିବା । କିନ୍ତୁ ୧୮୫୭ର ବିଦ୍ରୋହରେ ଭାରତୀୟମାନଙ୍କର ସଂଗ୍ରାମର ସପକ୍ଷ ଓ ବିପକ୍ଷରେ ବିଦେଶ ପତ୍ରିକା ତଥା ପୁସ୍ତକ ଓ ପ୍ରବନ୍ଧ ମାନଙ୍କରେ ସେ ସମୟରେ ବହୁ ମତାମତ ପ୍ରକାଶ ପାଇଥିଲା । ଉକ୍ତ ମତାମତମାନଙ୍କରୁ ପ୍ରାୟ ବିଦେଶର ସାଧାରଣଜନତାଙ୍କର, ଭାରତୀୟଙ୍କ ପ୍ରତି ସମ୍ପୂର୍ଣ୍ଣ ସହାନୁଭୂତି ଥିବାର ଜଣାପଡ଼େ ।

## ଇଂଲାଣ୍ଡରେ ପ୍ରତିକ୍ରିୟା

୧୮୫୭ର ବିଦ୍ରୋହ ଇଂଲାଣ୍ଡରେ ବିଭିନ୍ନ ଶ୍ରେଣୀର ବ୍ୟକ୍ତି ମାନଙ୍କ ମନ ମଧ୍ୟରେ ଗଭୀର ରେଖାପାତ କରିଥିଲା । ଏହାର ପ୍ରତିକ୍ରିୟା ମଧ୍ୟ ଇଂଲାଣ୍ଡର ତତ୍କାଳୀନ ପତ୍ରପତ୍ରିକା ପୁସ୍ତକ ତଥା ବିଭିନ୍ନ ସଭା ଓ ପାର୍ଲାମେଣ୍ଟର ଆଲୋଚନାରେ ପ୍ରକାଶ ପାଇଥିଲା । ଇଂଲାଣ୍ଡରେ ବିଭିନ୍ନ ଶ୍ରେଣୀର ବ୍ୟକ୍ତିମାନଙ୍କ ମଧ୍ୟରେ, ଭାରତରେ କମ୍ପାନୀ ଅନୁସୃତ ନୀତିକୁ ନେଇ ଦ୍ୱିମତ ପ୍ରକାଶ ପାଇଥିଲା । ଏହି ଦ୍ୱିମତ ମୁଖ୍ୟତଃ କେତୋଟି ବିଷୟବସ୍ତୁ ଉପରେ ଆଧାରିତ ଥିଲା । ପ୍ରଥମତଃ ଭାରତର ସମସ୍ତ ବ୍ୟକ୍ତିଙ୍କୁ ଖ୍ରୀଷ୍ଟାନ୍ କରାଯାଇ ଇଂରାଜି ଅଧିନରେ ଏକ ଖ୍ରୀଷ୍ଟାନ୍ ସାମ୍ରାଜ୍ୟ ଗଠିତ ହେବ ବା ଭାରତୀୟ ମାନଙ୍କର ଧର୍ମନୈତିକ ସ୍ୱାଧୀନତା ଉପରେ ହସ୍ତକ୍ଷେପ ନକରି ସେମାନଙ୍କୁ ନିଜର ଅଧିକାର ମଧ୍ୟରେ ରଖାହେବ । ଦ୍ୱିତୀୟତଃ ଭାରତରେ କମ୍ପାନୀର ଶାସନ ନୀତିକୁ ଦଳେ ସମର୍ଥନ କରୁଥିବା ବେଳେ ଦଳେ ଏହାର ତୀବ୍ର ବିରୋଧ କରୁଥିଲେ । ସେମାନେ କମ୍ପାନୀ, ବିଭିନ୍ନ ଉପାୟରେ ଭାରତୀୟଙ୍କୁ ଶୋଷଣ ଓ ଅତ୍ୟାଚାର କରିବାର ତୀବ୍ର ସମାଲୋଚନା ମଧ୍ୟ କରୁଥିଲେ । ସେତେବେଳେ ଶ୍ରମିକ ଶ୍ରେଣୀର ମଧ୍ୟ ପାର୍ଲାମେଣ୍ଟରେ ପ୍ରତିନିଧିତ୍ୱ ଥିଲା । ସେମାନେ ଭାରତୀୟଙ୍କର ସ୍ୱାଧିନତା ସଂଗ୍ରାମ ପ୍ରତି ସମ୍ପୂର୍ଣ୍ଣ ସହାନୁଭୂତିଶୀଳ ଥିଲେ । ସେମାନଙ୍କ ସହିତ ନୂତନକରି ମୁଣ୍ଡ ଟେକୁଥିବା ଶିଳ୍ପପତି ଗୋଷ୍ଠୀ ମଧ୍ୟ ଥିଲେ ।

କାରଣ କମ୍ପାନୀର ତୁଳା ଆମଦାନୀରେ ଏକଚାଟିଆ କାରବାର, ସେମାନଙ୍କର ବ୍ୟବସାୟରେ ଅସୁବିଧା ସୃଷ୍ଟି କରୁଥିଲା । ସେମାନେ ସୁଦୂର ଆମେରିକାରୁ ତୁଳା ଆମଦାନୀ କରୁଥିଲେ । ତୁଳାର ଚାହିଦା ବୃଦ୍ଧିପାଇବା ଫଳରେ ସେମାନେ ଭାରତରେ କମ୍ପାନୀର ଏକଚାଟିଆ କାରବାର ବନ୍ଦ କରିଦେବା ପାଇଁ ରାଣୀଙ୍କ ଉପରେ ଚାପ ପ୍ରୟୋଗ କରୁଥିଲେ ।

'ଦିଟାଇମ୍‌ସ' ପତ୍ରିକା ପ୍ରକାଶ କରିଥିଲା:-

"The object for which we ought to consider ourselves to hold India is the future Christianity and civilisation of the people."

''ଭାରତକୁ କବଳୀକୃତ କରିବାର ଉଦ୍ଦେଶ୍ୟ ଆମର ବିଚାର କରିବା ଉଚିତ ଯେ ଏହା ଭବିଷ୍ୟତର ଖ୍ରୀଷ୍ଟାନଧର୍ମ ଓ ଲୋକଙ୍କର ସଭ୍ୟତା ପାଇଁ କରାଯାଉଛି ।''

କିନ୍ତୁ ଗ୍ଲାଡ୍‌ଷ୍ଟୋନ (Gladstone) ୧୮୫୭ ମସିହା ଅକ୍ଟୋବର ୧୨ ତାରିଖରେ ଏହି ସଂକ୍ରାନ୍ତୀୟ ଏକ ଆଲୋଚନାଚକ୍ରରେ (Society of Foreign mission) ଭାଷଣ ଦେଇ କହିଥିଲେ

I am bound to admit that for the last 25 years I have observed grievious instances of policy in respect of our Indian Empire, measures undertaken without a shade of justice; and a perfect scandal to English history." (People's paper 17th Oct. 1857)

''ମୁଁ ସ୍ୱୀକାର କରିବାକୁ ବାଧ ହେଉଛି ଯେ ଗତ ପଚିଶ ବର୍ଷ ହେଲା ଭାରତ ଶାସନ ସମ୍ବନ୍ଧୀୟ ସାଂଘାତିକ ନୀତି ଦେଖୁଛି, ନ୍ୟାୟବିହୀନ ପଦକ୍ଷେପ ନିଆଯାଇଛି ଓ ଇଂରାଜ ଇତିହାସକୁ ସ୍ପଷ୍ଟ ଭାବରେ କଳଙ୍କିତ କରାଯାଇଛି ।''

ସମାଜବାଦୀ ଖ୍ରୀଷ୍ଟାନ୍‌ମାନେ ମଧ୍ୟ ଭାରତୀୟମାନଙ୍କର ଧର୍ମ ନୈତିକ ସ୍ୱାଧିନତାର ସପକ୍ଷରେ ଯୁକ୍ତି କରି ଇଂରାଜିମାନେ ଭାରତୀୟଙ୍କ ସହ ଶାନ୍ତିପୂର୍ଣ୍ଣ ସହାବସ୍ଥାନର ସପକ୍ଷରେ ମତ ପ୍ରଦାନ କରୁଥିଲେ । ସେମାନଙ୍କ ମତରେ ଭାରତୀୟମାନଙ୍କ ପରି ଯୋଦ୍ଧାମାନେ ଇଂରାଜିମାନଙ୍କୁ ବନ୍ଧୁ ରୂପେ ଗ୍ରହଣ କରି ସେମାନଙ୍କର ଅନୁଗତ ହୋଇ ରହିଲେ ଇଂରାଜି ସାମ୍ରାଜ୍ୟ ଅଶେଷ ଶକ୍ତଶାଳୀ ହେବ ।

ଏତଦ୍‌ବ୍ୟତୀତ ରିଚାର୍ଡ଼ କବଡ଼େନ (Richard Cobden)ଙ୍କ ପରି ଚ଼ରମ ପନ୍ଥୀମାନେ ଓ ସମାଜବାଦୀ ଖ୍ରୀଷ୍ଟିଆନ୍‌ମାନେ ମଧ୍ୟ ସେ ସମୟର ୧୮୫୭ର ବିଦ୍ରୋହ ଉପରେ ନିଜର ପ୍ରତିକ୍ରିୟା ପ୍ରକାଶ କରିଥିଲେ । କବଡ଼େନ ଏକ ବ୍ୟକ୍ତିଗତ ପତ୍ରରେ ଲେଖିଛନ୍ତି:-

The religious people who now tell us that we must hold India to convert it ought, I think, to be convinced by what has passed that sending red coats to Christianise a people is not the most likely way to insure the blessing of God in our missionary effort." (Letter to Ashwarth, Quoted by John Morley in "Life of Cobdon" vol. II, p.205)

''ଯେଉଁ ଧାର୍ମିକ ବ୍ୟକ୍ତିମାନେ ବର୍ତ୍ତମାନ କହୁଛନ୍ତି ଆମେ ଭାରତକୁ ଧର୍ମାନ୍ତରୀତ କରିବା ପାଇଁ କବଳୀକୃତ କରିବା ଉଚ଼ିତ, ମୁଁ ଭାବୁଛି, ସେମାନେ ଦୃଢ ନିଶ୍ଚିତ ହେବା ଉଚ଼ିତ ଯେ ଖ୍ରୀଷ୍ଟାନ୍‌ଧର୍ମକୁ ଧର୍ମାନ୍ତରୀତ କରିବା ପାଇଁ ଗୋଟିଏ ଜାତିକୁ ନାଲିକୋଟ୍ ପଠାଇବା, ଆମର ଧର୍ମପ୍ରଚାର ମାର୍ଗରେ ଈଶ୍ୱରଙ୍କର ନିଶ୍ଚିତ ଆଶୀର୍ବାଦ ପାଇବା ପାଇଁ ଏକ ଉପଯୁକ୍ତ ପଥ ନୁହେଁ ।''

ଭାରତ ବର୍ଷ ତଥା ଏସିଆ ମହାଦେଶରେ ଇଷ୍ଟଇଣ୍ଡିଆକମ୍ପାନୀର କ୍ରିୟା କଳାପର କବଡ଼େନ ଜଣେ ତୀବ୍ର ସମାଲୋଚ଼କ ଥିଲେ । କମ୍ପାନୀର ଶୋଷଣ ନୀତି ବିରୁଦ୍ଧରେ ସେ ଲେଖିଛନ୍ତି:-

"The motive which took the East India Company to Asia- monopoly, not merely towards foreigners but against the rest of their own countrymen." (Life of Cobden)

''ଯେଉଁ ଉଦ୍ଦେଶ୍ୟ ଇଷ୍ଟଇଣ୍ଡିଆ କମ୍ପାନୀକୁ ଏସିଆକୁ ନେଇ ଆସିଲା ତାହା, କେବଳ ବିଦେଶୀ ମାନଙ୍କ ବିରୁଦ୍ଧରେ ନୁହେଁ ପରନ୍ତୁ ନିଜ ଦେଶ ଲୋକମାନଙ୍କ ବିରୁଦ୍ଧରେ ମଧ୍ୟ ଏକ ଚାଟିଆ ବାଣିଜ୍ୟ କାରବାର ।''

ଇଣ୍ଡିଆନ୍ ରିଫର୍ମ ସୋସାଇଟି ନାମକ ଏକ ଅନୁଷ୍ଠାନ ଦ୍ୱାରା ଅନୁଷ୍ଠିତ ଆଲୋଚ଼ନା ସଭାରେ ବିଭିନ୍ନ ବ୍ୟକ୍ତିଙ୍କର ବିଭିନ୍ନ ମତାମତ ଓ ପ୍ରତିକ୍ରିୟା ମାନ ପ୍ରକାଶ ପାଇଥିଲା । ତନ୍ମଧ୍ୟରୁ ଅର୍‌ନେଷ୍ଟ ଜୋନ୍‌ସ (Earnest Johens), ଜଣେ ପ୍ରଭାବଶାଳୀ ସମାଲୋଚ଼କ ଥିଲେ । ସେ ମାଞ୍ଚେଷ୍ଟାର ଶିଳ୍ପପତିମାନଙ୍କୁ ସମର୍ଥନ କରି ଭାରତ ବର୍ଷରୁ

କମ୍ପାନୀ ଶାସନର ବିଲୋପୀକରଣ ସପକ୍ଷରେ ସଦାବେଳେ ଯୁକ୍ତି ଉପସ୍ଥାପନ କରୁଥିଲେ । ସେହିପରି ସେ ସମୟରେ ପ୍ରକାଶିତ ହେଉଥିବା ''ଉଇକ୍ଲି ଡେସ୍‌ପାଚ୍'' ''ଡେଲି ଟେଲିଗ୍ରାଫ୍'', ''ଷ୍ଟାଣ୍ଡାର୍ଡ଼'' ଆଦି ପତ୍ରିକାମାନେ ମଧ୍ୟ ଭାରତରେ କମ୍ପାନୀର କୁଶାସନକୁ ବହୁଳ ଭାବରେ ସମାଲୋଚନା କରିଥିଲେ ।

ଅପର ପକ୍ଷରେ ଧନୀକ ଗୋଷ୍ଠୀମାନଙ୍କ ମଧ୍ୟରେ ଶିଳ୍ପପତି ପ୍ରଭୃତି, କମ୍ପାନୀର ଶୋଷଣ ଓ ଅତ୍ୟାଚାର ବିରୁଦ୍ଧରେ ମତପୋଷଣ କରୁଥିବାବେଳେ ସମ୍ଭ୍ରାନ୍ତ ସାମନ୍ତମାନେ, କମ୍ପାନୀର ଦମନଲୀଳାକୁ ସମର୍ଥନ କରୁଥିଲେ । ବିଦ୍ରୋହୀମାନେ କରିଥିବା ନିର୍ମମ ଇଂରାଜିହତ୍ୟାର ଏହା ଉପଯୁକ୍ତ ଜବାବ ବୋଲି ସେମାନେ ଯୁକ୍ତି ଦର୍ଶାଇଥିଲେ ।

''ମର୍ଣ୍ଣିଙ୍ଗ ଷ୍ଟାର'' ନାମକ ଏକ ପତ୍ରିକା ମଧ୍ୟ କ୍ୟାନିଂଙ୍କର ବିଦ୍ରୋହ ପୂର୍ବର ଅନୁସୃତ ନୀତି ଏବଂ ବିଦ୍ରୋହ ପରେ ଦିଲ୍ଲୀରେ ତିନିଦିନ ଧରି ସଂଘଟିତ, ଧ୍ୱଂସଲୀଳାର ଦୃଢ଼ ସମାଲୋଚନା କରିଥିଲେ । କିନ୍ତୁ ଅପରପକ୍ଷରେ ଡେଲି ଟେଲିଗ୍ରାଫ ଏହାକୁ ସମର୍ଥନ କରି ମତାମତ ପ୍ରଦାନ କରିଥିଲା । ସାର୍ ଜେମ୍‌ସ ଗ୍ରାହାମ୍ (Sir James Grahams), ଲର୍ଡ଼ ଗ୍ରେ (Lord Gray)ଙ୍କର ରିଫର୍ମ କ୍ୟାବିନେଟ୍ (Reform Cabinet)ରେ ମନ୍ତ୍ରୀ ଭାବରେ ଅନ୍ତର୍ଭୁକ୍ତ ହୋଇସାରିବା ପରେ ୧୮୫୭ର ବିଦ୍ରୋହ ଉପରେ ମତାମତ ଦେବାକୁ ଯାଇ କହିଥିଲେ:-

"The loss of empire would be commencement of our downfall the maintaince of it will prove that we have not degenerated."

''ସାମ୍ରାଜ୍ୟ ହରାଇଲେ ଆମର ପତନର ଆରମ୍ଭ ହେବ । ରକ୍ଷଣାବେକ୍ଷଣ କଲେ, ଆମେ ଯେ ଅଧଃପତିତ ନୁହେଁ ତାହା ପ୍ରମାଣିତ ହେବ ।''

ଡ଼ିସ୍ରାଏଲି ତାଙ୍କର ସମସ୍ତ ବକ୍ତୃତାରେ କମ୍ପାନୀ ହାତରୁ ରାଣୀ ସ୍ୱହସ୍ତକୁ କ୍ଷମତା ନେବାର ସପକ୍ଷରେ ଦୃଢ଼ ଯୁକ୍ତି ଉପସ୍ଥାପନା କରିଥିଲେ । ରାଣୀ ଭିକ୍ଟୋରିଆ ୧୮୫୭ ମସିହା ସେପ୍ଟେମ୍ବର ମାସ ଦୁଇ ତାରିଖରେ ରାଜା ଲିଓପୋଲ୍ଡ (King Leopold)ଙ୍କୁ ତାଙ୍କର ପ୍ରତିକ୍ରିୟା ପ୍ରକାଶ କରି ଲେଖିଥିଲେ:-

"The whole is so much more distressing than the Crimea- where there was glory and honourable warfare and where the poor women and children were safe."

"The Empire has nearly doubled itself, within the last twenty years and the Queens troups have been kept at old establishment."

''କ୍ରିମିଆ ଯୁଦ୍ଧରେ ମହତ୍ୱ ଥିଲା ଓ ସମ୍ମାନିତ ଭାବରେ ଯୁଦ୍ଧ ଚାଲୁଥିଲା ଏବଂ ସ୍ତ୍ରୀ ଓ ପିଲାମାନେ ନିରାପଦ ଥିଲେ କିନ୍ତୁ ଏ ସମସ୍ତ ତାହାଠାରୁ ଅତ୍ୟନ୍ତ କ୍ଳେଶପୂର୍ଣ୍ଣ ଅଟେ ।''

''ବିଗତ କୋଡ଼ିଏ ବର୍ଷ ଭିତରେ ସାମ୍ରାଜ୍ୟ ଦ୍ୱିଗୁଣିତ ହୋଇପାରିଛି । ରାଣୀଙ୍କର ସୈନ୍ୟମାନେ ପୁରାତନ ବ୍ୟବସ୍ଥା ମଧ୍ୟରେ ରହିଛନ୍ତି ।''

କ୍ୟାନିଂଙ୍କ ରାଣୀଙ୍କୁ ଏହାର ଉତ୍ତରରେ ଲେଖିଥିଲେ:-

"The reputation of England's power, too, has had a rude shake, and nothing but a long continued manifestation of her might before the eyes of the whole Indian Empire, evinced by the presence of such an English force, as shall make the thought of opposition hopeless, will reestablish her strength."

''ଇଂଲାଣ୍ଡର ସୁନାମକୁ ଏକ ଶକ୍ତ ଆଘାତ ହୋଇଛି । କେବଳ ସମଗ୍ର ଭାରତ ସାମ୍ରାଜ୍ୟ ଆଗରେ ଇଂରାଜ ବାହିନୀକୁ ରଖି ନିଜର ଦୀର୍ଘ ଓ ନିରବଚ୍ଛିନ୍ନ ଶକ୍ତି ପ୍ରଦର୍ଶନ କରିବାରେ ହିଁ ବିରୋଧିମାନଙ୍କୁ ନିରାଶ କରିହେବ ଓ ନିଜର ଶକ୍ତିକୁ ପୁନଃ ପ୍ରତିଷ୍ଠିତ କରାଯାଇପାରିବ ।''

ଉପରୋକ୍ତ ମତାମତମାନଙ୍କରୁ ଇଂଲାଣ୍ଡରେ ୧୮୫୭ ବିଦ୍ରୋହ ସମ୍ବନ୍ଧରେ ଧନୀକ ଗୋଷ୍ଠୀମଧ୍ୟରେ ଭିନ୍ନ ଭିନ୍ନ ମତଥିବାର ଆମେମାନେ ଦେଖିବାକୁ ପାଉ ।

ସେ ସମୟର ଇଂଲାଣ୍ଡରେ ଶ୍ରମିକ ଶ୍ରେଣୀ ମଧ୍ୟରେ ୧୮୫୭ର ବିଦ୍ରୋହ ପ୍ରତି ସହାନୁଭୂତି ପ୍ରକାଶ ପାଇଥିବା ଜଣାପଡ଼େ । ରେନଲ୍ଡସ୍ ନିଉଜ୍‌ପେପର୍ (Reynolds Newspaper) ସେତେବେଳେ ଅଣସମାଜବାଦୀ ଶ୍ରମିକ ମାନଙ୍କର ମୁଖପତ୍ର ଥିଲା । ଏଥିରେ ବିଦ୍ରୋହୀମାନଙ୍କ ପ୍ରତି ପୂର୍ଣ୍ଣ ସମର୍ଥନ ଓ ସହାନୁଭୂତି ପ୍ରକାଶ ପାଇଥିଲା । ୧୮୫୭ ମସିହା ଜୁଲାଇ ୫ତାରିଖରେ ଏଥିରେ ପ୍ରକାଶିତ ହୋଇଥିଲା:-

"The commencement of that tremendous retribution, which, if there be justice in the world, the gigantic and unparalleled crimes of the British Government and East India Company are certain to evoke."

"Our sympathies as they always have been are with the weak against the strong- with the oppressed struggling with their tyrants- with the tortured, plundered, enslaved and insulted natives of India, in striving to free themselves of the iron yoke of their cruel, remorseless, rapacious and hypocritical masters...... Our sympathies are with the insurrectionists.....

''ପୃଥିବୀରେ ଯଦି ନ୍ୟାୟ ଥାଏ ତାହାହେଲେ ବ୍ରିଟିଶ୍ ସରକାର ଓ ଇଷ୍ଟଇଣ୍ଡିଆ କମ୍ପାନୀ ପ୍ରତିଶୋଧପରାୟଣ ହୋଇ କରିଥିବା ବୃହତ୍‌ଧରଣର ଅତୁଳନୀୟ ଅପରାଧ, ତାହାପାଇଁ ଏକ ଆହ୍ୱାନ ।''

''........ଆମର ସହାନୁଭୂତି ସଦାବେଳେ ରହିବ, ସବଳ ବିରୁଦ୍ଧରେ ଦୁର୍ବଳପ୍ରତି ଅତ୍ୟାଚାରୀ ବିରୁଦ୍ଧରେ ଲଢୁଥିବା ଅତ୍ୟାଚାରିତ ମାନଙ୍କପ୍ରତି, ନିଷ୍ଠୁର, ଅନୁଶୋଚନା ବିହୀନ, ଲୁଣ୍ଠନପ୍ରିୟ ଓ ପ୍ରବଞ୍ଚକ ଶାସକ ବିରୁଦ୍ଧରେ ଲୌହ ଶୃଙ୍ଖଳରୁ ମୁକ୍ତି ପାଇଁ ସଂଗ୍ରାମ କରୁଥିବା ଯନ୍ତ୍ରଣାଗ୍ରସ୍ତ, ଲୁଣ୍ଠିତ, ଦାସତ୍ୱରେ ଆବଦ୍ଧ ଓ ଅପମାନିତ ହୋଇଥିବା ଭାରତର ଅଧିବାସୀମାନଙ୍କପ୍ରତି ଆମର ସହାନୁଭୂତି ସଦାବେଳେ ବିଦ୍ରୋହୀମାନଙ୍କ ପ୍ରତି ରହିଅଛି ।''

ରେନଲ୍ଡସ୍ ନିଉଜପେପର ସହାନୁଭୂତି ପ୍ରକଟ କଲେ ମଧ୍ୟ ସାମ୍ରାଜ୍ୟବାଦୀ ଚିନ୍ତାଧାରାରେ ପ୍ରଭାବିତ ହୋଇ ସେ ଭାରତରେ ସ୍ୱାଧୀନତା ସପକ୍ଷରେ ନକହି, ସେଠାରେ ଇଂରାଜି ଶାସନରେ ସଂସ୍କାର ଆଣିବା ସପକ୍ଷରେ ଯୁକ୍ତି ବାଢ଼ିଥିଲା । ଅରନେଷ୍ଟ ଜୋନ୍‌ସ ଶ୍ରମିକମାନଙ୍କର ପ୍ରତିନିଧିତ୍ୱ କରି people's paperରେ କ୍ରମାଗତ ଭାବରେ ଭାରତୀୟଙ୍କର ସ୍ୱାଧୀନତାକୁ ସମର୍ଥନ କରି ଲେଖାମାନ ଲେଖୁଥିଲେ । ଏତଦ୍‌ବ୍ୟତୀତ ସେ ସାଧାରଣ ସଭାମାନଙ୍କରେ ମଧ୍ୟ ଭାରତର ସ୍ୱାଧୀନତା ସଂଗ୍ରାମ ସପକ୍ଷରେ ଯୁକ୍ତି ଉପସ୍ଥାପନ କରୁଥିଲେ ।

## ଫ୍ରାନସ୍‌ରେ ପ୍ରତିକ୍ରିୟା

୧୮୫୭ର ବିଦ୍ରୋହ ଉପରେ ଫ୍ରାନ୍ସର ପ୍ରତିକ୍ରିୟା ବୁଝିବାକୁ ଗଲେ ଆମକୁ ସେ ସମୟର ପରିସ୍ଥିତି ଅନୁଧ୍ୟାନ କରିବାକୁ ପଡ଼ିବ । ସେତେବେଳେ ଫ୍ରାନ୍ସରେ ତୃତୀୟ ନେପୋଲିୟନ ଶାସନ କରୁଥିଲେ । ରାଜତନ୍ତ୍ରର ପ୍ରତିଷ୍ଠା ହେତୁ ସାଧାରଣରେ ସଭା ସମିତି ଆଦି ଉପରେ ନିଷେଧାଦେଶ ଥିଲା । ଦ୍ୱିତୀୟତଃ, ଭାରତର ସମ୍ବାଦ ଫ୍ରାନ୍ସରେ

ଇଂରାଜି ସମ୍ବାଦ ମାଧ୍ୟମରେ ଓ ଭାରତରେ ଥିବା ଫ୍ରାନ୍ସର ଉପନିବେଶର ଶାସକଙ୍କଠାରୁ ସରକାରୀ ସୂତ୍ରରେ ମିଳୁଥିଲା । ସେତେବେଳେ ଫ୍ରାନ୍ସରେ କିଛି ସମ୍ବାଦ ପତ୍ର ମଧ୍ୟ ଥିଲା । ସେଗୁଡ଼ିକରୁ କିଛି ରାଜତନ୍ତ୍ର ଓ କିଛି ଗଣତନ୍ତ୍ରର ସମର୍ଥକ ଥିଲେ । ସେ ଦୃଷ୍ଟିରୁ ସେମାନେ ୧୮୫୭ ବିଦ୍ରୋହ ଉପରେ ଭିନ୍ନ ଭିନ୍ନ ପ୍ରତିକ୍ରିୟା ପ୍ରକାଶ କରିଥିଲେ । କିନ୍ତୁ ମତର ସମସ୍ତ ଭିନ୍ନତା ସତ୍ତ୍ୱେ ଇଂରାଜିମାନଙ୍କର ଅନ୍ୟାୟ, ଅତ୍ୟାଚାର ଓ ଦମନଲୀଳା ସମ୍ବନ୍ଧରେ ସମସ୍ତେ ଏକମତ ହୋଇଥିଲେ । ଏପରିକି ଇଂରାଜି ସମର୍ଥକ ପତ୍ରିକା 'ଲାସିଏକ୍ଲ' (La Siecle) ମଧ୍ୟ ଇଂରାଜିମାନଙ୍କର ଦିଲ୍ଲୀ ଅଧିକାର ସମୟରେ କରିଥିବା ଅତ୍ୟାଚାରର ବର୍ଣ୍ଣନା କରି ତାହାକୁ ବର୍ବରୋଚିତ କାର୍ଯ୍ୟ ରୂପେ ଅଭିହିତ କରିଥିଲା । 'ଲ' ଏଷ୍ଟାଫେଟେ' (L' Estaffette) ନାମକ ଏକ ରିପବ୍ଲିକାନ୍ ପତ୍ରିକା ୧୮୫୭ ଅଗଷ୍ଟ ୨୯ତାରିଖ ଦିନ ନିଜର ପ୍ରତିକ୍ରିୟା ପ୍ରକାଶ କରି କହିଥିଲା ଯେ ଇଂରାଜିମାନେ ବୃହତ୍ ଶକ୍ତି ହିସାବରେ ଭାରତରେ ଜନସାଧାରଣଙ୍କୁ ଅମାନୁଷିକ ଭାବରେ ହତ୍ୟା କରିଚାଲିଲେ ଅନ୍ୟ ଏକ ବୃହତ୍ ଶକ୍ତି ଭାବରେ ଫ୍ରାନ୍ସ ମଧ୍ୟ ତାହାର ନିରାକରଣ ପାଇଁ ସେଥିରେ ହସ୍ତକ୍ଷେପ କରିବାକୁ ବାଧ୍ୟ ହେବ । 'ରେଭିଉଡ଼େସ ଡ଼ିଅକ୍ସ ମୋଣ୍ଡେସ' (Reveu des Deux Mondes) ନାମକ ପତ୍ରିକାରେ ଇଷ୍ଟଇଣ୍ଡିଆକମ୍ପାନୀର ଭାରତରେ ଦଶବର୍ଷର କ୍ରିୟାକଳାପର ବର୍ଣ୍ଣନା କରାଯାଇ କୁହାଯାଇଥିଲା ଯେ ଦଶବର୍ଷ ଧରି କମ୍ପାନୀ, କେବଳ ଭାରତରେ ଲୋକମାନଙ୍କର ସମ୍ପତ୍ତିକୁ ନିଲାମ, ବାଜ୍ୟାପ୍ତି ବେଦଖଲ ଓ ନିଜର ଅଧିକାର ଭୁକ୍ତ କରିଚାଲିଛି । 'ଫନଭିଲେ' (Fonville) ମଧ୍ୟ ଭାରତରେ ବଳପୂର୍ବକ ଖ୍ରୀଷ୍ଟିଆନ୍ ଧର୍ମ ପ୍ରଚାରର ପ୍ରବଳ ସମାଲୋଚନା କରିଥିଲେ ।

ଏ ସମସ୍ତ ପ୍ରତିକୂଳମନ୍ତବ୍ୟ ସତ୍ତ୍ୱେ ଫ୍ରାନ୍ସର ଧନୀକଗୋଷ୍ଠୀମାନେ ଇଂରାଜିମାନଙ୍କ ସପକ୍ଷରେ ମତଦେଇ କହିଥିଲେ ଯେ ଭାରତୀୟଙ୍କର ମଙ୍ଗଳ ଓ ଉନ୍ନତି ପାଇଁ ଇଂରାଜିମାନଙ୍କର ଉପନିବେଶ ଭାରତରେ ରହିବା ଉଚିତ୍ କାରଣ ଭାରତୀୟମାନେ ନିଜକୁ ନିଜେ ଶାସନ କରିପାରିବେ ନାହିଁ । ୧୮୫୭ ଅକ୍ଟୋବର ନଅ ତାରିଖରେ 'Journal des Debats' ନାମକ ଏକ ପତ୍ରିକା ମତ ଦେଇ ପରିଶେଷରେ ଇଂରାଜିମାନେ ବିଜୟୀ ହେବେ ବୋଲି ଭବିଷ୍ୟତ ବାଣୀ କରିଥିଲେ ।

ସରକାରୀସ୍ତରରେ ଫ୍ରାନ୍ସର ଇଂରାଜିମାନଙ୍କ ସହିତ ବନ୍ଧୁତା ଥିଲା । ଏଣୁ ସରକାରୀମହଲରେ ସେହି ବନ୍ଧୁତାର ଭିତ୍ତିରେ ବିଦ୍ରୋହ ବିରୁଦ୍ଧରେ ମତ ପ୍ରକାଶ ପାଇଥିଲା । ୧୮୫୭ ନଭେମ୍ବର ୯ତାରିଖରେ 'Journal Des Debats' ଇଂରାଜିମାନଙ୍କୁ

ବନ୍ଧୁ ରୂପେ ଅଭିହିତ କରି ଏ ବିପଦ ସମୟରେ ବନ୍ଧୁତା ଭଙ୍ଗ କରି ଇଂରାଜିମାନଙ୍କୁ ବିରୋଧ କରିବା ଉଚିତ୍ ହେବ ନାହିଁ ବୋଲି ମତ ବ୍ୟକ୍ତ କରିଥିଲା । କିନ୍ତୁ ନରମପନ୍ଥୀ ପତ୍ରିକା ଗୁଡ଼ିକ ଭାରତୀୟମାନଙ୍କୁ ମାନବିକ ଭ୍ରାତୃଭାବରେ ଗ୍ରହଣ କରିବା ସପକ୍ଷରେ ଯୁକ୍ତି କରିଥିଲେ ।

ଫ୍ରାନ୍ସରେ ସେ ସମୟର ଗଣତନ୍ତ୍ର ପନ୍ଥୀମାନେ ୧୮୫୭ର ବିଦ୍ରୋହକୁ ପୂର୍ଣ୍ଣ ସମର୍ଥନ କରି ଇଂରାଜିମାନଙ୍କର ବିଦ୍ରୋହ ପୂର୍ବ ଓ ପରର ଅମାନୁଷିକ ଅତ୍ୟାଚାର ଓ ଦମନ ଲୀଳାର ତୀବ୍ର ସମାଲୋଚନା କରିଥିଲେ । 'ଲେସିଏକ୍ଲ' (Le Cicle) ପତ୍ରିକାର ମତ ଥିଲା, ଇଂରାଜିମାନେ ଭାରତ ତ୍ୟାଗ କଲେ ସେଠାରେ ଦେଶୀୟ ଶାସକମାନେ ପରସ୍ପର ବିରୁଦ୍ଧରେ ଯୁଦ୍ଧ କରିବେ । କିନ୍ତୁ ଏହାକୁ ଖଣ୍ଡନ କରି 'L'Estaffete' ପତ୍ରିକାରେ ପ୍ରକାଶ ପାଇଲା ଯେ, ଭାରତୀୟ ମାନେ କଣ କରିବେ ତାହା ଭାରତୀୟମାନଙ୍କର ବିଚାରର ବସ୍ତୁ, କିନ୍ତୁ ଗଣତନ୍ତ୍ର ପନ୍ଥୀ ପତ୍ରିକା ମାନେ କେବେ ହେଲେ ଏକ ସ୍ୱାଧୀନ ଦେଶରେ ବିଦେଶୀ କର୍ତ୍ତୃତ୍ୱକୁ ସମର୍ଥନ କରିପାରିବେ ନାହିଁ ।

ଦେଖିବାକୁ ଗଲେ ସେ ସମୟରେ ଫ୍ରାନ୍ସରେ ଥିବା ଗଣତନ୍ତ୍ର ପନ୍ଥୀମାନେ ୧୮୫୭ର ବିଦ୍ରୋହ ଉପରେ ସବିଶେଷ ବିବରଣୀ ସଂଗ୍ରହ କରି ତହିଁର ସ୍ପଷ୍ଟ ଚିତ୍ର ଓ ତତ୍‌ସମ୍ବନ୍ଧୀୟ ମତମାନ ପ୍ରକାଶ କରିଥିଲେ ।

'Jouquiere Antonelle' ନାମକ ତତ୍କାଳୀନ ଗଣତନ୍ତ୍ର ପନ୍ଥୀ ପ୍ରଭାବଶାଳୀ ଲେଖକ ତଥା ସମାଲୋଚକଙ୍କ ମତରେ, ୧୮୫୭ର ବିଦ୍ରୋହରେ ଗଣତନ୍ତ୍ରର ଚେତନା ଥିଲା । ତାହା ଭାରତୀୟ ମାନଙ୍କ ମନରେ ପଞ୍ଚାୟତ ଓ ପୌରସଂସ୍ଥାର ଶାସନ ବ୍ୟବସ୍ଥାର କଳ୍ପନାରେ ନିହିତ ଥିଲା । L'Estaffette ପତ୍ରିକାକୁ ଏକ ପତ୍ରରେ ଉପରୋକ୍ତ ସମାଲୋଚକ ଲେଖିଥିଲେ ଯେ ୧୮୫୭ର ବିଦ୍ରୋହରେ ଏକ ଆଧୁନିକଶିଶୁଭାରତ ଦୃଶ୍ୟମାନ ହେଉଛି । ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀର ଇଉରୋପୀୟ ଆଧୁନିକ ଗଣତାନ୍ତ୍ରିକ ଚିନ୍ତାଧାରା ଏହି ବିଦ୍ରୋହରେ ପ୍ରତିଫଳିତ ହେଉଛି । ୧୮୫୭ର ବିଦ୍ରୋହ ସମ୍ବନ୍ଧରେ କହିବାକୁ ଯାଇ 'L'Estaffette' ପତ୍ରିକାରେ ନାନାସାହେବଙ୍କୁ ଜଣେ ଦେଶପ୍ରେମୀ, କୁଶଳୀଯୋଦ୍ଧା, ବିଦ୍ରୋହର ନେତା ତଥା ଧର୍ମପ୍ରାଣ ଓ ଭଦ୍ର ବୋଲି ପ୍ରଶଂସା କରାଯାଇଥିଲା ।

ଉପରୋକ୍ତ ପତ୍ରିକାରେ ୧୮୫୭ ଅଗଷ୍ଟ ୩୧ ଓ ସେପ୍ଟେମ୍ବର ୨୦ ତାରିଖରେ ବିଦ୍ରୋହୀମାନଙ୍କ ଉପରେ ଇଂରାଜିମାନଙ୍କର ଅମାନୁଷିକ ଅତ୍ୟାଚାର ଓ ଦମନଲୀଳାର ତୀବ୍ର ସମାଲୋଚନା କରାଯାଇଥିଲା ।

ବିଦ୍ରୋହୀମାନଙ୍କୁ ଦମନ କରିବାକୁ ଇଂରାଜିମାନଙ୍କୁ ସାହାଯ୍ୟ କରି ଫ୍ରାନ୍ସ ସୈନ୍ୟ ପଠାଇବା ଉଚିତ୍ ବୋଲି ଏକଗୋଷ୍ଠୀ ମତ ଦେଉଥିଲେ । ଉପରୋକ୍ତ ପତ୍ରିକା ଏହି ମତକୁ ଖଣ୍ଡନ କରି ପ୍ରକାଶ କରିଥିଲା ଯେ ଇଂରାଜିମାନଙ୍କୁ ଏ କ୍ଷେତ୍ରରେ ସାହାଯ୍ୟ କରିବା ଦ୍ୱାରା ଭବିଷ୍ୟତରେ ଫ୍ରାନ୍ସ ଉପକୃତ ହେଲେ ମଧ୍ୟ ଭାରତୀୟମାନେ ଜାତୀୟତାର ସଂଗ୍ରାମ କରୁଥିବାରୁ ସେମାନଙ୍କ ବିରୁଦ୍ଧରେ ଯିବା ଉଚିତ୍ ନୁହେଁ ।

ପାଠକମାନେ ମଧ୍ୟ ଉପରୋକ୍ତ ପତ୍ରିକା ମାଧ୍ୟମରେ ସେମାନଙ୍କର ପ୍ରତିକ୍ରିୟା ପ୍ରକାଶ କରିଥିଲେ । ଜଣେ ପାଠକ ଫ୍ରାନ୍ସ, ଋଷିଆ ଓ ଏସିଆର ସମ୍ମିଳିତ ବାହିନୀ ତଥା ନୌବାହିନୀ ସହିତ ଇଂରାଜିମାନଙ୍କୁ ଭାରତରୁ ହଟାଇ ଭାରତୀୟ ମାନଙ୍କର ସ୍ୱାଧିନତା ରକ୍ଷା କରିବା ଉଚିତ୍ ହେବ ବୋଲି ମତପ୍ରକାଶ କରିଥିଲେ ।

ଅନ୍ୟଜଣେ ପାଠକ ମଧ୍ୟ ଭାରତୀୟଜାତୀୟସଂଗ୍ରାମରେ ଫ୍ରାନ୍ସ, ଭାରତୀୟମାନଙ୍କୁ ଇଂରାଜିମାନଙ୍କ ବିରୁଦ୍ଧରେ ସାହାଯ୍ୟ କରିବା ସମକ୍ଷରେ ମତ ପ୍ରକାଶ କରିଥିଲେ । ଜନ୍‌କ୍ୱେରେ ଆଣ୍ଟୋନେଲେ (Jonquiere Antonelle) ମଧ୍ୟ ଉପରୋକ୍ତ ପତ୍ରିକାକୁ ନିଜର ମତ ଦେଇ ଭାରତରେ ସ୍ୱାଧିନତା ସଂଗ୍ରାମ ପ୍ରତି ତାଙ୍କର ପୂର୍ଣ୍ଣ ସହାନୁଭୂତି ଓ ସମର୍ଥନ ଜଣାଇଥିଲେ । କାରଣ ଦେଶପ୍ରେମ ଓ ଜାତୀୟତାକୁ ସେ ପୂର୍ଣ୍ଣ ସମ୍ମାନ ପ୍ରଦାନ କରନ୍ତି । ଗଣତନ୍ତ୍ରପନ୍ଥୀଙ୍କ ସମେତ ଉଣା ଅଧିକେ ଫ୍ରାନ୍ସରେ ସର୍ବସାଧାରଣଙ୍କର ସମର୍ଥନ ୧୮୫୭ର ବିଦ୍ରୋହ ପଛରେ ଥିଲା ବୋଲି କୁହାଯାଇପାରେ । ମୋଟ ଉପରେ କହିବାକୁ ଗଲେ ଫ୍ରାନ୍ସରେ ଧନୀକ ଓ ସରକାରୀ ଗୋଷ୍ଠୀର ମତ ଇଂରାଜିମାନଙ୍କ ସପକ୍ଷରେ ଥିଲାବେଳେ ସର୍ବସାଧାରଣ ତଥା ଗଣତନ୍ତ୍ରପନ୍ଥୀ ମାନଙ୍କର ଭାରତୀୟମାନଙ୍କର ସ୍ୱାଧିନତା ପ୍ରତି ସମ୍ପୂର୍ଣ୍ଣ ସହାନୁଭୂତି ଓ ସମର୍ଥନ ଥିଲା ।

## 'ଇଟାଲୀ'ରେ ପ୍ରତିକ୍ରିୟା

୧୮୫୭ ମସିହାରେ, ଇଟାଲୀ ରାଜନୀତି ଏକ ଘଡ଼ିସନ୍ଧିର ମୁହୂର୍ତ୍ତରେ ଥିଲା । ସେତେବେଳେ 'ଇଟାଲୀ'ର ଏକତ୍ରୀକରଣ ହୋଇ ନଥିଲା ଓ ତାହା ଛୋଟ ଛୋଟ ରାଜ୍ୟରେ ବିଭକ୍ତ ଥିଲା । ଏଣୁ 'ଇଟାଲୀ'ର ଏକତ୍ରୀକରଣ ଓ ସ୍ୱାଧୀନତା ପାଇଁ ଦୁଇଟି ଗୋଷ୍ଠୀ ଅତ୍ୟନ୍ତ ତତ୍ପର ଥିଲେ । ତନ୍ମଧ୍ୟରୁ ଏକ ଗୋଷ୍ଠୀ ଥିଲେ ସମ୍ଭ୍ରାନ୍ତ ଆଭିଜାତ୍ୟ ସମ୍ପନ୍ନ ଧନୀକଗୋଷ୍ଠୀ । ସେମାନେ 'ଇଟାଲୀ'ର ଏକତ୍ରୀକରଣ ଓ ସ୍ୱାଧୀନତା ପାଇଁ ସମସ୍ତ ପ୍ରକାର ଉଦ୍ୟମ ଚଳାଇଥିଲେ ମଧ୍ୟ, ଜନସାଧାରଣଙ୍କ ସହିତ ଆନ୍ଦୋଳନରେ

ସାମିଲ ହେବାକୁ ପସନ୍ଦ କରୁ ନଥିଲେ । କାରଣ, ଗଣ ଆନ୍ଦୋଳନରେ ଜନତାଙ୍କ ମଧ୍ୟରୁ ସାଧାରଣବ୍ୟକ୍ତିମାନେ ନେତୃତ୍ୱ ନେଲେ, ସମ୍ଭ୍ରାନ୍ତ ଧନୀକଗୋଷ୍ଠୀର ପ୍ରଭାବ କ୍ଷୁର୍ଣ୍ଣ ହୋଇଯିବାର ସେମାନେ ଆଶଙ୍କା କରୁଥିଲେ । ଫଳରେ ଏହି ଧନୀକଗୋଷ୍ଠୀ, ସେତେବେଳେ 'ଇଟାଲୀ' ରାଜ୍ୟଗୋଷ୍ଠୀରେ ଥିବା, 'ପିଏଡ଼ମଣ୍ଡ' ରାଜତନ୍ତ୍ରର ନେତୃତ୍ୱକୁ ସ୍ୱୀକାର ଓ ସମର୍ଥନ ଦେଉଥିଲେ । ସେମାନେ ଗଣ ଆନ୍ଦୋଳନର ପନ୍ଥା ଅନୁସରଣ ନକରି କୂଟନୈତିକ କୌଶଳ ପ୍ରୟୋଗ କରି 'ଫ୍ରାନ୍ସ' ଓ 'ଅଷ୍ଟ୍ରିଆ' ମଧ୍ୟରେ ଶତ୍ରୁତାକୁ ଉତ୍ସାହିତ କରୁଥିଲେ । କାରଣ 'ଅଷ୍ଟ୍ରିଆ'ର ପରାଜୟରେ ହିଁ 'ଇଟାଲୀ'ର ଏକତ୍ରୀକରଣର ପୂର୍ଣ୍ଣ ସମ୍ଭାବନା ଥିଲା । ଅପରପକ୍ଷରେ ଇଂରାଜୀମାନେ, ଭୂମଧ୍ୟ ସାଗରରେ ନିଜର ପ୍ରଭାବ ବିସ୍ତାର କରିବା ପାଇଁ, ଇଟାଲୀର ବନ୍ଧୁତା କାମନା କରୁଥିଲେ । ଇଂରାଜୀମାନେ, ଋଷିଆ ଓ ଅଷ୍ଟ୍ରିଆ ବିରୋଧି ହୋଇଥିବାରୁ, ଇଟାଲୀୟମାନେ ଏକତ୍ରୀକରଣ ଆନ୍ଦୋଳନରେ ସେମାନଙ୍କଠାରୁ ସାହାଯ୍ୟ ଓ ସହାନୁଭୂତି ଆଶା କରୁଥିଲେ । ଏଣୁ, ଏହି ଧନୀକ ଓ ସମ୍ଭ୍ରାନ୍ତ ଗୋଷ୍ଠୀ, ଇଂରାଜି ସପକ୍ଷବାଦୀ ହୋଇଥିବା ଦୃଷ୍ଟିରୁ ୧୮୫୭ ବିଦ୍ରୋହରେ ଇଂରାଜି ପକ୍ଷକୁ ସମର୍ଥନ ଓ ସହାନୁଭୂତି ପ୍ରକାଶ କରି ବରାବର ମତମାନ ପ୍ରକାଶ କରୁଥିଲେ । ଜୋସେଫମାସାରି (Joseph Massari) 'ରିଭିସ୍ତା କଣ୍ଟେପୋରାନିଆ' (Rivista Contemporanea) ରେ ୧୮୫୭ ବିଦ୍ରୋହକୁ 'ବ୍ରାହ୍ମଣମାନଙ୍କର ଧର୍ମାନ୍ଧତାରେ ପ୍ରଭାବିତ ହୋଇଥିବା ସିପାହୀ ମାନଙ୍କର ବିଦ୍ରୋହ' ରୂପେ ଅଭିହିତ କରିଥିଲେ । ବହୁ ଜାତି, ଶ୍ରେଣୀ, ଧର୍ମ ଓ ବିଭିନ୍ନ ଭୌଗୋଳିକ ଅବସ୍ଥିତିରେ ରହୁଥିବା ବ୍ୟକ୍ତିମାନଙ୍କର ଏହି ବିଦ୍ରୋହକୁ ସ୍ୱାଧୀନତା ଆନ୍ଦୋଳନ ବୋଲି ଅଭିହିତ କରିବା କେବଳ ବାସ୍ତବଜ୍ଞାନର ଅଭାବ ଓ ଭ୍ରାନ୍ତଧାରଣା ବୋଲି ସେ ଅଭିହିତ କରିଥିଲେ । ତାଙ୍କ ମତରେ ଏହି ଆନ୍ଦୋଳନ ସହିତ ସ୍ୱାଧିନତାର କିଛି ସମ୍ପର୍କ ନଥିଲା ।

ଆଶ୍ଚର୍ଯ୍ୟର କଥା ଯେ ଇଂଲଣ୍ଡର ପ୍ରୋଟେଷ୍ଟାଣ୍ଟମାନଙ୍କର ପାରମ୍ପରିକ ଶତ୍ରୁରୂପେ ପରିଚିତ ଇଟାଲୀର କାଥଲିକ୍‌ମାନେ, ୧୮୫୭ ବିଦ୍ରୋହରେ ଇଂରାଜିମାନଙ୍କର ଦମନଲୀଳାକୁ ପୂର୍ଣ୍ଣପ୍ରାଣରେ ସମର୍ଥନ କରିଥିଲେ । ସେମାନଙ୍କର ସଂଗଠନର ମୁଖପତ୍ର ସିଭିଲିଟା କାଟୋଲିକା (Civilita Cattolica) ୧୮୫୭ ଜୁନ୍ ୨୭ ତାରିଖରେ ପ୍ରକାଶ କରିଥିଲା ଯେ ଇଂରାଜିମାନଙ୍କର ଭାରତ, ଅଧିକୃତ ଦେଶ ହୋଇଥିବାରୁ ସେମାନଙ୍କର ଭାରତୀୟମାନଙ୍କୁ ଦମନ କରିବାର ଅଧିକାର ଅଛି ।

ଅପରପକ୍ଷରେ ଅନ୍ୟ ଏକ ଗୋଷ୍ଠୀଥିଲେ ଗଣତନ୍ତ୍ରବାଦୀ । ସେମାନେ ଗଣ ଆନ୍ଦୋଳନ ମାଧ୍ୟମରେ ଇଟାଲୀର ଏକତ୍ରୀକରଣ ପାଇଁ ଉଦ୍ୟମ କରୁଥିଲେ । ଏହି

ଚିନ୍ତାଧାରାର ମୁଖ୍ୟ ପ୍ରବକ୍ତା ଥିଲେ 'ଜୋସେଫ୍ ମାଜିନି' (Joseph Mazzini) । ଏହି ଗୋଷ୍ଠୀ ଲୋକକ୍ଷମତା ଓ ଲୋକ ଶାସନ ରେ ବିଶ୍ୱାସ କରୁଥିବାରୁ 'ପିଏଡ଼ମଣ୍ଟ' ରାଜତନ୍ତ୍ର ଶାସନର ବିରୋଧି ଥିଲେ । ସେମାନଙ୍କ ମତରେ କେବଳ ବୈପ୍ଳବିକ ଜାତୀୟ ଜାଗରଣରେ ହିଁ ଇଟାଲୀର ଏକତ୍ରୀକରଣ ଓ ସ୍ୱାଧୀନତା ସମ୍ଭବ । ୧୮୫୭ ମସିହାରେ ଏହି ଗଣତନ୍ତ୍ର ପନ୍ଥୀମାନେ କ୍ଷମତା ଦଖଲ ପାଇଁ ପ୍ରବଳ ଚେଷ୍ଟା କରିଥିଲେ । ସେହିବର୍ଷ 'କାର୍ଲୋ ପିସାକେନ' (Carlo Pisacane) ନାମକ ଜଣେ ଗଣତନ୍ତ୍ର ପନ୍ଥୀ ନେତା 'ମାଜିନି'ଙ୍କର ସହାୟତାରେ 'ସାପ୍ରି ଅଭିଯାନ' ନାମରେ ଏକ ବିପ୍ଳବ ଇଟାଲୀର ଦକ୍ଷିଣ ଭାଗରେ ଆରମ୍ଭ କଲେ । ସେ ଏହି ବିପ୍ଳବ ସାରା ଇଟାଲୀରେ ପ୍ରସାର କରି ତାହାର ଏକତ୍ରୀକରଣ ଓ ସ୍ୱାଧୀନ ଲୋକତନ୍ତ୍ର ଶାସନର ପରିକଳ୍ପନା କରିଥିଲେ । କିନ୍ତୁ ଇଟାଲୀର ଦକ୍ଷିଣରେ ଥିବା ପ୍ରତିକ୍ରିୟାଶୀଳ 'ବର୍ବୋନ୍ ସରକାର' ବିରୁଦ୍ଧରେ ତାଙ୍କର ନେତୃତ୍ୱରେ ଗଣ ଆନ୍ଦୋଳନ, ବିଫଳତାରେ ପର୍ଯ୍ୟବସିତ ହେଲା ।

ଏହି ଗଣଆନ୍ଦୋଳନର ବିଫଳତା ସମ୍ଭ୍ରାନ୍ତ ଓ ଧନୀକଗୋଷ୍ଠୀ ମାନେ ପ୍ରଭାବଶାଳୀ ହୋଇଗଲେ । ସେମାନେ କୂଟନୈତିକ ପ୍ରକ୍ରିୟାରେ ଫ୍ରାନ୍ସର 'ତୃତୀୟ ନେପୋଲିୟନ'ଙ୍କୁ 'ପିଏଡ଼ମଣ୍ଟ ରାଜତନ୍ତ୍ର'କୁ ଯୁଦ୍ଧରେ ସମର୍ଥନ ଦେବା ପାଇଁ ପ୍ରବର୍ତ୍ତାଇ ପାରିଥିଲେ । ଫଳରେ 'ପିଏଡ଼ମଣ୍ଟ' ରାଜତନ୍ତ୍ର 'ତୃତୀୟନେପୋଲିୟନ'ଙ୍କର ସହାୟତାରେ 'ଅଷ୍ଟ୍ରିଆ'କୁ ପରାଜିତ କଲା । ଏକତ୍ରୀକରଣ ପ୍ରକ୍ରିୟାର ଆୟମାରମ୍ଭ ହେଲା । ପରବର୍ତ୍ତୀ କାଳରେ ୧୮୬୦ ମସିହାରେ 'ଗାରିବାଲ୍‌ଡ଼ି', ଇଟାଲୀର ସମ୍ପୂର୍ଣ୍ଣ ଏକତ୍ରୀକରଣ ଓ ସ୍ୱାଧୀନତା ସମ୍ଭବ କରିଥିଲେ । ଏହି ଗଣତନ୍ତ୍ର ପନ୍ଥୀମାନେ ଜାତୀୟତା, ସ୍ୱାଧୀନତା, ମାନବର ମୌଳିକ ଅଧିକାର, ଲୋକଶାସନ ଆଦିରେ ବିଶ୍ୱାସ କରୁଥିବାରୁ ସ୍ୱାଭାବିକ ଭାବରେ ସେମାନେ ୧୮୫୭ ମସିହା ବିଦ୍ରୋହରେ ଭାରତୀୟମାନଙ୍କ ପ୍ରତି ସମ୍ପୂର୍ଣ୍ଣ ସମର୍ଥନ ଓ ସହାନୁଭୂତି ପ୍ରକାଶ କରିବା ସଙ୍ଗେ ସଙ୍ଗେ ଇଂରାଜୀମାନଙ୍କର ଶାସନ ଓ ଅତ୍ୟାଚାରର ପ୍ରବଳ ନିନ୍ଦା କରିଥିଲେ ।

(L' India Antica Moderna (India, Ancient & modern) 'ପ୍ରାଚୀନ ଓ ଆଧୁନିକ ଭାରତ', ପୁସ୍ତକର ଲେଖକ 'କାର୍ଲୋ କାଟାନିଓ' (Carlo Cattaneo), ଭାରତରେ ଇଷ୍ଟ ଇଣ୍ଡିଆ କମ୍ପାନୀର ଶୋଷଣ ନୀତିର ତୀବ୍ର ସମାଲୋଚନା କରି, ଘଟଣା ପ୍ରବାହ ପ୍ରବଳ ବେଗରେ କମ୍ପାନୀର ଇଚ୍ଛା ଓ ସ୍ୱାର୍ଥ ବିରୁଦ୍ଧରେ ଗତି କରୁଥିବା ବେଳେ, ଏଥିରୁ ମହାଜାତୀୟ ଚେତନାର ଉଦ୍ଭବ ହୋଇ ଭବିଷ୍ୟତରେ ଭାରତ ସ୍ୱାଧିନତା ଲାଭ

କରିବାର ଭବିଷ୍ୟତ ବାଣୀ କରିଥିଲେ । ଭାରତରେ ୧୮୫୭ର ବିଦ୍ରୋହରେ ପ୍ରତିକ୍ରିୟା ପ୍ରକାଶ କରି 'ଫେଲିକ୍ସ ଓରିସିନି' (Felix Orisini) ନାମକ ଜଣେ ଗଣତନ୍ତ୍ର ପନ୍ଥୀ ଜାତୀୟବାଦୀ ନେତା ତାଙ୍କର ବନ୍ଧୁ 'ନିକୋଲା ଫାବ୍ରିଜି' (Nicola Fabrizi) ଙ୍କୁ ଏକ ପତ୍ରରେ ଜଣାଇଥିଲେ ଯେ ଇଂରାଜିମାନଙ୍କର ଗଣଅଧିକାର, ସ୍ୱାଧିନତା ଓ ପାର୍ଲାମେଣ୍ଟ ଶାସନ ବ୍ୟବସ୍ଥାର ପ୍ରଶଂସକମାନେ ଅତ୍ୟନ୍ତ ଭ୍ରାନ୍ତଧାରଣାର ବଶବର୍ତ୍ତୀ ଥଟନ୍ତି । ଇଂରାଜିମାନଙ୍କର ସ୍ୱାର୍ଥଥିବା ପର୍ଯ୍ୟନ୍ତ ସହାନୁଭୂତି ଥାଏ ଏବଂ ସ୍ୱାର୍ଥ ନଥିଲେ ସହାନୁଭୂତି ଉଭେଇଯାଏ । ସେମାନଙ୍କର ଉପନିବେଶରେ ଜାତୀୟତା ଓ ସ୍ୱାଧିନତାର ଆନ୍ଦୋଳନକୁ ସେମାନେ ଦମନ କରିବାକୁ ପଛାଇ ନଥାନ୍ତି ।

ଗଣତନ୍ତ୍ରପନ୍ଥୀ ପତ୍ରିକା ଗୁଡ଼ିକ ମଧ୍ୟ ୧୮୫୭ର ବିଦ୍ରୋହକୁ ମୁକ୍ତ ସମର୍ଥନ କରିଥିଲେ । 'ଜେନୋଆ'ରୁ ପ୍ରକାଶିତ ହେଉଥିବା (Italia del people) 'ଲୋକଙ୍କର ଇଟାଲୀ' ନାମକ ପତ୍ରିକା ୧୮୫୭ ଜୁଲାଇ ଆଠ ତାରିଖରେ ଲେଖିଥିଲା ଯେ ଇଂରାଜିମାନଙ୍କର ନୀତି ହେଲା ସ୍ୱଦେଶର ସ୍ୱାଧିନତା ଓ ବିଦେଶର ପରାଧିନତା, ଏହି ଭୁଲ ନୀତି ଲାଗି ସେମାନଙ୍କୁ ଆମେରିକା ଉପନିବେଶର ସର୍ବୋତ୍କୃଷ୍ଟ ରାଜ୍ୟଗୁଡ଼ିକ ହରାଇବାକୁ ପଡ଼ିଲା । ଭାରତରେ ବିଦ୍ରୋହକୁ ଉକ୍ତ ପତ୍ରିକା ଏହି ଦୃଷ୍ଟିରୁ ସହାନୁଭୂତି ଓ ସମର୍ଥନ ଜଣାଇଥିଲା । ପରେ ଅଗଷ୍ଟ ୧୭ତାରିଖ ଦିନ ଉପରୋକ୍ତ ପତ୍ରିକା ଭାରତରେ କମ୍ପାନୀର ଦମନ ଓ ଶୋଷଣ ନୀତିର ବର୍ଣ୍ଣନା କରି ତାହାର ପ୍ରବଳ ସମାଲୋଚନା କରିଥିଲା । ପୁନଶ୍ଚ ସେପ୍ଟେମ୍ବର ୧୫ ତାରିଖରେ, ଭାରତର ୧୮୫୭ ମସିହା ବିଦ୍ରୋହର ଜାତୀୟ ଚରିତ୍ରର ବର୍ଣ୍ଣନା କରାଯାଇଥିଲା । ଏହି ବିଦ୍ରୋହକୁ ସିପାହୀ ବିଦ୍ରୋହ ରୂପେ ଅଭିହିତ କରୁଥିବା ବ୍ୟକ୍ତିମାନଙ୍କର ମତ ଖଣ୍ଡନ କରି, ୧୮୫୭ର ବିଦ୍ରୋହକୁ ଏକ ଜାତୀୟ ବିଦ୍ରୋହ ରୂପେ ସ୍ୱୀକାର କରି, ଉକ୍ତ ପତ୍ରିକାରେ ଯୁକ୍ତି ଉପସ୍ଥାପିତ କରାଯାଇଥିଲା ।

ପୁନଶ୍ଚ, ଭାରତ ଓ ଚୀନାରେ ଦେଖାଦେଇଥିବା ତତ୍କାଳୀନ ଇଂରାଜିବିରୋଧ ବିଦ୍ରୋହ ମଧ୍ୟରେ ସ୍ୱାଧିନତାର ବୀଜ ଅନ୍ତର୍ନିହିତ ଥିବାକଥା, ଉକ୍ତ ପତ୍ରିକା ମତବ୍ୟକ୍ତ କରିଥିଲା । 'ଅଉସୋନିଓ ଫ୍ରାଞ୍ଚି' (Ausonio Franchi)ଙ୍କ ଦ୍ୱାରା ସମ୍ପାଦିତ ହେଉଥିବା (La Rajigone) 'ବିଚାର' ନାମକ ଏକ ପତ୍ରିକାରେ, ଅଗଷ୍ଟ ୧୫ତାରିଖରେ ରାଜନୈତିକ ସମୀକ୍ଷା ଶୀର୍ଷକରେ ସେ ପ୍ରକାଶ କରିଥିଲେ ଯେ, ଇଂରାଜି ଅତ୍ୟାଚାରିତ ଭାରତୀୟମାନେ, ଶୋଷଣ ମୁକ୍ତ ହୋଇ ସ୍ୱାଧିନତା ଲାଭକଲେ ତାହାକୁ ସେ ସାନନ୍ଦ ଅଭିନନ୍ଦନ ଜଣାଇବେ । 'ଇଷ୍ଟ ଇଣ୍ଡିଆ କମ୍ପାନୀ'ର ରାଜନୈତିକ ଲୁଣ୍ଠନ ଓ ଅର୍ଥନୈତିକ

ଶୋଷଣର ତୀବ୍ର ନିନ୍ଦା କରିବା ସଙ୍ଗେ ସଙ୍ଗେ, ଶୋଷିତ ଜନସାଧାରଣ, ଦାସତ୍ୱ ଶୃଙ୍ଖଳାରୁ ମୁକ୍ତ ହେବାପାଇଁ ବିଦ୍ରୋହ କରିବାରେ କିଛି ଅସ୍ୱାଭାବିକତା ନାହିଁ ବରଂ ଏହା ସମର୍ଥନ ଯୋଗ୍ୟ ବୋଲି ସେ ପ୍ରକାଶ କରିଥିଲେ । ସେ ଭାରତୀୟମାନଙ୍କର ସ୍ୱାଧିନତା ଓ ମୌଳିକ ଅଧିକାର ସପକ୍ଷରେ ବଳିଷ୍ଠ ଯୁକ୍ତି ଉପସ୍ଥାପିତ କରିଥିଲେ ।

ଏତଦ୍‌ବ୍ୟତୀତ ସେ ସମୟରେ 'ଇଟାଲୀ'ରେ 'ଭାରତ' ସମ୍ବନ୍ଧରେ, ବହୁ ପ୍ରବନ୍ଧ ତଥା ପୁସ୍ତକମାନ ଛପାହୋଇଥିଲା । ଏହି ସମସ୍ତ ଅନୁଧ୍ୟାନ କଲେ ଜଣାଯାଏ ଯେ, ଭାରତରେ ୧୮୫୭ର ବିଦ୍ରୋହ ପ୍ରତି, ଇଟାଲୀର ରାଜନୈତିକ ଗୋଷ୍ଠୀ ପୂର୍ଣ୍ଣ ସଚେତନ ଥିଲେ ଓ ବିଦ୍ରୋହର ଗଭୀର ଅନୁଧ୍ୟାନ କରୁଥିଲେ ।

## ଋଷିଆରେ ପ୍ରତିକ୍ରିୟା

୧୮୫୭ ବିଦ୍ରୋହର ଖବର ସର୍ବପ୍ରଥମେ ଇଂଲଣ୍ଡରେ ନିଯୁକ୍ତ ଥିବା ଋଷିଆର ରାଷ୍ଟ୍ରଦୂତ 'ଖ୍ରେପ୍ଟୋଭିଚ୍' (Khreptorich), 'ସେଣ୍ଟ ପିଟରସ୍‌ବର୍ଗ'କୁ ଟେଲିଗ୍ରାଫ ଯୋଗେ ଜଣାଇଥିଲେ । ଏଥିରେ 'ମିରଟ୍'ରେ ବିଦ୍ରୋହ ଓ ବିଦ୍ରୋହୀମାନଙ୍କର 'ଦିଲ୍ଲୀ' ଅଧିକାରର ସମ୍ବାଦ ଥିଲା । ସେହିଦିନ 'ଖ୍ରେପ୍ଟୋଭିଚ୍', ଋଷିଆର ତତ୍କାଳୀନ ବୈଦେଶିକ ବିଭାଗମନ୍ତ୍ରୀ 'ଯୁବରାଜ ଗୋର୍ଚାକୋଭ' (Gorchakov)ଙ୍କୁ, ଭାରତରେ ବିଦ୍ରୋହ ସମ୍ବନ୍ଧରେ ଲଣ୍ଡନ ସମ୍ବାଦର ଉଦ୍ଧୃତାଂଶ ପଠାଇଥିଲେ । ଏତଦ୍‌ବ୍ୟତୀତ, ବିଦ୍ରୋହର ସବିଶେଷ ବିବରଣୀ 'କର୍ଣ୍ଣେଲ ଇଗ୍ନାଟିଏଭ' (Ignatiev) ଓ ଲଣ୍ଡନରେ ଥିବା ଋଷିଆର ସାମରିକ ବିଶେଷଜ୍ଞ ମଧ୍ୟ, ବୈଦେଶିକ ମନ୍ତ୍ରୀଙ୍କ ପାଖକୁ ପଠାଇଥିଲେ । 'ଇଗ୍ନାଟିଏଭ' ଏହି ବିଦ୍ରୋହକୁ କମ୍ପାନୀର କୁଶାସନର ଫଳ ବୋଲି କହି ପରିଶେଷରେ ଏହା ବିଦେଶୀ କବଳରୁ ମୁକ୍ତ ହେବାପାଇଁ ଭାରତୀୟମାନଙ୍କର ସ୍ୱାଧିନତା ସଂଗ୍ରାମ ବୋଲି ଅଭିହିତ କରିଥିଲେ ।

ଋଷିଆର ପ୍ରେସମାନଙ୍କରେ, ଭାରତରେ ୧୮୫୭ର ବିଦ୍ରୋହର ସମ୍ବାଦ ପ୍ରକାଶିତ ହେବା ମାତ୍ରେ, ତାହା ଗଣଦୃଷ୍ଟି ଆକର୍ଷଣ କରିବା ସଙ୍ଗେ ସଙ୍ଗେ ଋଷିଆର ଗଣମତ, ଭାରତପ୍ରତି ସହାନୁଭୂତିଶୀଳ ହେଲା । ସେ ସମୟରେ ଭାରତରେ ବିଦ୍ରୋହର ସମ୍ବାଦ, ଋଷିଆର ବିଭିନ୍ନ ପତ୍ରିକାମାନଙ୍କରେ ଏକ ମୁଖ୍ୟ ସମ୍ବାଦ ରୂପେ ଗୃହୀତ ହୋଇଥିଲା ଓ ସେତେବେଳେ ଋଷିଆବାସୀ, ଭାରତରେ ବିଦ୍ରୋହର ବିବରଣୀ ପାଇବାପାଇଁ ଉତ୍କଣ୍ଠାର ସହ ଅପେକ୍ଷା କରୁଥିଲେ । କିନ୍ତୁ, ଭାରତ ସମ୍ବନ୍ଧରେ ଅଧିକାଂଶ

ଖବର ଇଂରାଜସମ୍ବାଦ ପତ୍ରର ଛାୟାରେ ଲିଖିତ ହେବା ଫଳରେ, ଜନସାଧାରଣଙ୍କର ବିଦ୍ରୋହର କାରଣ ବା ଅନ୍ୟାନ୍ୟ ଦିଗ ବୋଧଗମ୍ୟ ନ ହେଲେ ମଧ୍ୟ ଇଂରାଜିମାନେ, କ୍ରିମିଆଯୁଦ୍ଧରେ ଋଷିଆକୁ ଦେଇଥିବା ଜାତୀୟ ଅପମାନ, ଜନସାଧାରଣଙ୍କ ମାନସ ପଟରୁ ଲିଭିନଥିବା ହେତୁ, ସେମାନଙ୍କର ଭାରତୀୟମାନଙ୍କୁ ସହାନୁଭୂତିର ସହ ସମର୍ଥନ କରିବା ସ୍ୱାଭାବିକ ଥିଲା ।

ସେହି ସମୟରେ, ଋଷିଆରେ ଦଳେ ଗଣତନ୍ତ୍ରପନ୍ଥୀ ମୁଣ୍ଡଟେକୁଥିଲେ । ସେହିମାନେହିଁ ୧୮୫୭ର ବିଦ୍ରୋହ ବିଷୟରେ ପୁଙ୍ଖାନୁପୁଙ୍ଖ ଭାବରେ ଖବର ରଖୁଥିଲେ ଏବଂ ଏହି ଦୃଷ୍ଟିରୁ ସେମାନେ ସେ ସମୟରେ ନିଜର ସୁଚିନ୍ତିତ ମତ ପ୍ରଦାନ କରିଥିଲେ । ଏହି ମତ ଆମେ ତତ୍କାଳର ଏନ୍,ଏ, ଡ଼ୋବ୍ରୋଲ୍ୟୁବୋଭ୍ (N.A. Dobrolyulov)ଙ୍କର ୧୮୫୭ ସେପ୍ଟେମ୍ବର ମାସରେ ଶୋଭ୍ରେମେନ୍ନିକ୍ (Sovremennik)ପତ୍ରିକାରେ ପ୍ରକାଶିତ 'An opinion of the History and contemporary state of East India Company' ନାମକ ପ୍ରବନ୍ଧରେ, ଦେଖିବାକୁ ପାଉ । ଉକ୍ତ ପ୍ରବନ୍ଧଟିର ବିଷୟବସ୍ତୁ ଓ ମତାମତକୁ ସେ ସମୟର ଗଣତନ୍ତ୍ରପନ୍ଥୀ ନେତା (N.G.Chernyshevsky) "ଏନ୍,ଜି, ଚେର୍‌ନିଶେଭସ୍କି' ସମ୍ପୂର୍ଣ୍ଣ ସମର୍ଥନ କରିଥିଲେ । 'ଡ଼ୋବ୍ରୋଲ୍ୟୁବୋଭ୍', ଏହି ବିଦ୍ରୋହକୁ ଅସନ୍ତୋଷର କାରଣ ନକହି ଏହା ଏକ ଐତିହାସିକ ଆବଶ୍ୟକତାରୁ ଉତ୍ପନ୍ନ ବୋଲି ମତବ୍ୟକ୍ତ କରିଥିଲେ । 'ଡ଼ୋବ୍ରୋଲ୍ୟୁବୋଭ୍', ଭାରତରେ କମ୍ପାନୀ ଶାସନର ଇତିହାସର ଏବଂ କମ୍ପାନୀର ଭାରତରେ ପ୍ରତ୍ୟକ୍ଷ ଶାସନର ଧାରା ଓ ଶୋଷଣ ଅତ୍ୟାଚାର ଆଦିକୁ ଗଭୀର ଭାବରେ ବିଶ୍ଳେଷଣ କରି, ତାହାଉପରେ ନିଜର ମତ ଆଧାରିତ କରିଥିଲେ । ଭାରତରେ ଇଂରାଜ ଶାସନ, ଉନ୍ନତ ସଭ୍ୟତାର ପ୍ରସାର ନିମନ୍ତେ ଉଦ୍ଦିଷ୍ଟ, ଆଦି ମତକୁ ସେ ସମ୍ପୂର୍ଣ୍ଣ ଭାବରେ ଖଣ୍ଡନ କରିଥିଲେ । ଅପରପକ୍ଷରେ ସେ ସ୍ପଷ୍ଟ ଭାବରେ କହିଥିଲେ, ଇଂରାଜିମାନଙ୍କର ସଭ୍ୟତାର ପ୍ରସାର ଉଦ୍ଦେଶ୍ୟ ନୁହଁ ବରଂ ସେମାନଙ୍କର ବ୍ୟକ୍ତିଗତ ଲାଭ ଓ ସମ୍ରାଜ୍ୟବାଦ ହିଁ ମୂଳ ଉଦ୍ଦେଶ୍ୟ ଥିଲା । ସେ ଭାରତରେ ୧୮୫୭ର ବିଦ୍ରୋହକୁ ଧର୍ମନୈତିକ ବା ସିପାହୀ ବିଦ୍ରୋହ ବୋଲି ନକହି, ଇଂରାଜି କୁଶାସନ ବିରୁଦ୍ଧରେ ସ୍ୱାଧିନତା ପାଇଁ ଏକ 'ଜାତୀୟ ବିଦ୍ରୋହ' ରୂପେ ଅଭିହିତ କରିଥିଲେ ।

ସେ ସମୟରେ (Russky Invalid) 'ଋସ୍କିଇନ୍‌ଭାଲିଡ୍' ନାମକ ଏକ ପତ୍ରିକାରେ ବିଦ୍ରୋହ ସମ୍ବନ୍ଧରେ ସରକାରୀ ମତାମତ ନିୟମିତ ଭାବରେ ପ୍ରକାଶ

ପାଉଥିଲା । ୧୮୫୭ ଅକ୍ଟୋବର ତେର ତାରିଖ ଦିନ 'ସର୍ଜବର୍ଗ' (Sergeberg)ଙ୍କ ଦ୍ୱାରା ଏକ ବଡ଼ ପ୍ରବନ୍ଧରେ, 'ଇଷ୍ଟଇଣ୍ଡିଆ କମ୍ପାନୀ'ର ଭାରତରେ ଅମାନୁଷିକ କ୍ରିୟାକଳାପର ସମାଲୋଚନା କରାଯାଇ, କମ୍ପାନୀର ଖଜଣା ଆଦାୟରେ ନିଷ୍ଠୁରତା ଓ ମାନବିକ ଅଧିକାର ଉଲଘଂନ ହିଁ ବିଦ୍ରୋହର କାରଣ ବୋଲି ମତ ବ୍ୟକ୍ତ କରାଯାଇଥିଲା ।

ସେତେବେଳେ 'ୱେଷ୍ଟରନର୍' (Westerner) ନାମକ ଏକ ରାଜନୈତିକ ଗୋଷ୍ଠୀର ଜଣେ ସଭ୍ୟ ଏ.ଏ.କ୍ରାଏସ୍କି ପିଟରବର୍ଗସ୍କି (A. A. Kraesky), (Peterburgskie Vedomosky) ଭୋଡ଼ୋମୋସ୍କି' ନାମକ ଏକ ଜନପ୍ରିୟ ପତ୍ରିକା ସମ୍ପାଦନା କରୁଥିଲେ । ଉକ୍ତ ପତ୍ରିକାରେ ୧୮୫୭ ଜୁଲାଇ ତିରିଶ ତାରିଖରେ, ସେ ଭାରତୀୟ ବିଦ୍ରୋହ ସମ୍ବନ୍ଧରେ ବର୍ଣ୍ଣନା କରି, ଇଂରାଜି ସମ୍ବାଦ ପତ୍ରରେ ପରିବେଶିତ ସମ୍ବାଦ ଗୁଡ଼ିକୁ କେହି ବିଶ୍ୱାସ ନକରିବାପାଇଁ ସତର୍କ କରାଇ ଦେଇଥିଲେ । ସେ ମନ୍ତବ୍ୟଦେଇ କହିଥିଲେ ଯେ, ଇଂରାଜିମାନେ ମିଥ୍ୟା କହି ନିଜର ଦୁର୍ବଳତାକୁ ଘୋଡ଼ାଇବା କଳାରେ ପାରଙ୍ଗମ ହୋଇଥିବାରୁ, ସେମାନଙ୍କର ସମ୍ବାଦ ଗୁଡ଼ିକ ଗ୍ରହଣ ଯୋଗ୍ୟ ନୁହେଁ । ପୁନଶ୍ଚ, ସେ ସ୍ପଷ୍ଟ ଭାବରେ ପ୍ରକାଶ କରିଥିଲେ ଯେ, ଇଂରାଜିମାନେ ଭାରତରେ ସଭ୍ୟତାର ବିସ୍ତାର ପାଇଁ ସାମ୍ରାଜ୍ୟ ଅଧିକାର କରିନାହାନ୍ତି ପରନ୍ତୁ ଭାରତକୁ ସମ୍ପୂର୍ଣ୍ଣ ଭାବରେ ଗ୍ରାସ କରିବା ହିଁ ସେମାନଙ୍କର ମୂଳ ଉଦ୍ଦେଶ୍ୟ ।

କିନ୍ତୁ ଋଷିଆରେ ଦଳେ 'ଯିଶୁବାଦୀ' ଥିଲେ ସେମାନେ (Russky Vestnik) 'ରସ୍କି ଭେଷ୍ଟିନିକ୍' ପତ୍ରିକାରେ ଇଂରାଜି ବୈଦେଶିକ ନୀତିକୁ ବହୁକ୍ଷେତ୍ରରେ ସମାଲୋଚନା କଲେ ମଧ୍ୟ ଏସିଆରେ ସଭ୍ୟତା ଓ ଖ୍ରୀଷ୍ଟିଆନ୍ ଧର୍ମର ବିସ୍ତାର ନିମନ୍ତେ ଭାରତରେ ଇଂରାଜି ଉପନିବେଶବାଦକୁ ସମର୍ଥନ କରୁଥିଲେ । କିନ୍ତୁ, ଏମାନଙ୍କର ମତ ତତ୍କାଳରେ ଜନତାଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହୋଇଥିଲା ।

ଏତଦ୍‌ବ୍ୟତୀତ, ଋଷିଆର ଦଳେ ଐତିହାସିକ ବିଦ୍ୱାନ, ୧୮୫୭ରୁ ୧୮୫୯ ପର୍ଯ୍ୟନ୍ତ ଭାରତର ବିଦ୍ରୋହର ଐତିହାସିକ ବାସ୍ତବତାକୁ ଗଭୀର ଭାବରେ ବିଶ୍ଳେଷଣ କରି ସମାଜର ଗତି ନିର୍ଦ୍ଦେଶ କରୁଥିଲେ । ସେମାନଙ୍କ ମତରେ ଏ ବିଦ୍ରୋହ କେବଳ ଭାରତରେ ନୁହେଁ ପରନ୍ତୁ ଅନ୍ୟାନ୍ୟ ଦେଶରେ ମଧ୍ୟ ଉପନିବେଶବାଦ ବିରୁଦ୍ଧରେ କରାଯାଇଥିଲା । ଏହି ବିଦ୍ରୋହ ହିଁ ଦିନେ ଜାତୀୟ ରୂପ ନେଇ ଉପନିବେଶବାଦ ଧ୍ୱଂସ କରିବାର ଭବିଷ୍ୟତ ବାଣୀ ସେମାନେ ବ୍ୟକ୍ତ କରିଥିଲେ ।

ବି:ଦ୍ର:- ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଏସିଆର ବିଭିନ୍ନ ଦେଶରେ ଜାତୀୟ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ସେହି ସମୟରେ ଏସିଆ ମହାଦେଶର ଦେଶ ପରେ ଦେଶରେ ଜାତୀୟତାର ବହ୍ନି ଜଳିଉଠିଲା । ଚୀନରେ ତାଇପେଙ୍ଗ ବିଦ୍ରୋହ, ୧୮୫୭ରେ ଭାରତରେ ବିଦ୍ରୋହ, ଇରାନ୍‌ରେ ବାବିଷ୍ଟ ମାନଙ୍କର ଆନ୍ଦୋଳନ, ପାରସ୍ୟ ଇଂରାଜ ଯୁଦ୍ଧ, ସିରିଆରେ କୃଷକ ଆନ୍ଦୋଳନ, ଲେବାନନ୍ ଓ ବୋର୍ଣ୍ଣିଓ ତଥା ଇଣ୍ଡୋନେସିଆରେ ବିଦ୍ରୋହ ମାନ ଏସିଆରେ ଦେଖାଦେଇଥିବା ପାଶ୍ଚାତ୍ୟଜଗତର ଉପନିବେଶବାଦ ତଥା ଅର୍ଥନୈତିକ ଓ ରାଜନୈତିକ ଶୋଷଣର କ୍ରମ ପରିଣାମର ପ୍ରତିକ୍ରିୟା ଥିଲା । ଏହି ସମସ୍ତ ଆନ୍ଦୋଳନ ମଧ୍ୟରୁ ଚୀନ ଓ ଭାରତର ବିଦ୍ରୋହ ଅତ୍ୟନ୍ତ ବ୍ୟାପକ ଥିଲା ।



# ୧୮୫୭ରେ ଚୀନ ଓ ଭାରତ

୧୮୫୬ଠାରୁ ୧୮୬୦ ମସିହା ମଧ୍ୟରେ ଫ୍ରାନ୍ସ ଓ ଇଂଲାଣ୍ଡ ମିଳିତଭାବରେ, ଚୀନା ବିରୁଦ୍ଧରେ 'ଅଫିମ ଯୁଦ୍ଧ' (Opium War) ଆରମ୍ଭ କରିଥିଲେ । ସେହି ଯୁଦ୍ଧରେ, ଚୀନାବାସୀଙ୍କୁ ଲୁଣ୍ଠନ କରାଯାଇ ବହୁ ସଂଖ୍ୟାରେ ନିର୍ମମଭାବରେ ହତ୍ୟା କରାଯାଇଥିଲା । ଏହାପୂର୍ବରୁ 'ପ୍ରଥମ ଅଫିମଯୁଦ୍ଧ'ରେ ମଧ୍ୟ, ଚୀନାମାନେ ବିଦେଶୀ ଶକ୍ତି ବିରୁଦ୍ଧରେ ଲଢ଼ାଇ କରିଥିଲେ । କିନ୍ତୁ ସେଥିରେ କୌଣସି ବାହ୍ୟଶକ୍ତି ଠାରୁ, ସେମାନେ ସାହାଯ୍ୟ ସହାନୁଭୂତି ପାଇନଥିଲେ । କିନ୍ତୁ 'ଦ୍ୱିତୀୟ ଅଫିମଯୁଦ୍ଧ'ରେ ଚୀନାମାନେ, ଭାରତୀୟ ମାନଙ୍କଠାରୁ ପୂର୍ଣ୍ଣ ସହାନୁଭୂତି ତଥା ସାହାଯ୍ୟ ଓ ସମର୍ଥନ ପାଇଥିଲେ । କାରଣ, ଉଭୟ ଦେଶ, ଉପନିବେଶବାଦ ବିରୁଦ୍ଧରେ ସଂଗ୍ରାମ କରୁଥିଲେ । ଉଭୟଙ୍କର, ଏହି ସଂଗ୍ରାମରେ ସ୍ୱାଭିମାନ ଓ ଜାତୀୟତାର ପ୍ରଶ୍ନ ନିହିତ ଥିଲା ।

ଇଂରାଜୀମାନେ, ସଭ୍ୟତାର ପ୍ରସାର ନାମରେ, ଜଳଦସ୍ୟୁ ପରି ଚୀନାର ଉପକୂଳ ଅଞ୍ଚଳ ଗୁଡ଼ିକରେ ନିଜର ନୌବନ୍ଦର ସ୍ଥାପନ କରି, ଲୁଣ୍ଠନ, ଲୁଟ୍ ତରାଜ ଓ ହତ୍ୟା ଚଳାଇଥିଲେ । ଏହିପରି ଏକ ଘଟଣାରେ, 'କାଣ୍ଟନ ସହର' ଉପରେ ପ୍ରବଳ ଗୋଳାବର୍ଷଣ କରି, ସେଥିରେ ଥିବା ନିରୀହ ନାଗରିକମାନଙ୍କୁ, ସେମାନେ ନିର୍ବିଚାର ଓ ନିର୍ମମ ଭାବରେ ଧର୍ଷଣ , ହତ୍ୟା ଓ ଲୁଣ୍ଠନ କରିଥିଲେ । ଏହି ଗଣହତ୍ୟାରୁ ହିଁ 'ଦ୍ୱିତୀୟ ଅଫିମ ଯୁଦ୍ଧ'ର ଆରମ୍ଭ ହୁଏ । ଚୀନା ଜନସାଧାରଣ ଏଥିରେ ଦବି ନଯାଇ ତାହାର ଉପଯୁକ୍ତ ଜବାବ୍ ଦେଇଥିଲେ । ଇଂରାଜି ନୌବାହିନୀର ଜଳତରୀ ଗୁଡ଼ିକ, ମୁକ୍ତାନଦୀ (Pearl river)ରେ ପ୍ରବେଶ କରି, ଚୀନାମାନଙ୍କର ପ୍ରବଳ ଆକ୍ରମଣର ସମ୍ମୁଖୀନ ହୋଇ ନପାରି 'କାଣ୍ଟନ'ର ନିକଟବର୍ତ୍ତୀ ସ୍ଥାନକୁ, ଆତ୍ମରକ୍ଷା ପାଇଁ ପଳାୟନ କରିଥିଲେ ।

ଚୀନାମାନଙ୍କର ସମ୍ମୁଖୀନ ହେବାପାଇଁ ଚୀନ ସଂକ୍ରାନ୍ତୀୟ ଇଂରାଜୀ ମନ୍ତ୍ରୀ 'ଜେ.ବାଉରିଙ୍ଗ' (J. Bowring), ହଂକଂରୁ ଭାରତର ତତ୍କାଳୀନ ଗଭର୍ଣ୍ଣର ଜେନେରାଲ 'ଲର୍ଡ଼ କ୍ୟାନିଂ'ଙ୍କ ପାଖକୁ ଅନୁରୋଧ କରି ଲେଖିଥିଲେ:-

"If possible, troops of Her Majesty to the amount of five thousand men accompanied by a limited body of artillery, may be dispatched without delay from India to this colony, for service In China. (The second China War 1856-60 edited by D. Bonner Smith and E.Lumby P.162)

''ଯଦି ସମ୍ଭବ ହୁଏ, ମହାରାଣୀଙ୍କର ବାହିନୀରୁ, ସୀମିତ ଦଳର ଗୋଲନ୍ଦାଜ ବାହିନୀ ସହିତ ପାଞ୍ଚ ହଜାର ସୈନ୍ୟ ଭାରତରୁ ଚୀନାରେ କାର୍ଯ୍ୟକରିବା ପାଇଁ ଏହି ଉପନିବେଶକୁ ଅବିଳମ୍ୱେ ପଠାଯାଉ ।''

ଏହା ସହିତ ପୂର୍ବାଞ୍ଚଳରେ ଥିବା ଇଂରାଜି ନୌବାହିନୀର ଅଧ୍ୟକ୍ଷ ଏମ୍. ସେମୋର (M.Seymour) ମଧ୍ୟ ଅନୁରୂପ ଅନୁରୋଧ 'କ୍ୟାନିଂ'ଙ୍କୁ ଜଣାଇଥିଲେ । ଠିକ୍ ସେହି ସମୟରେ ଭାରତରେ ଇଂରାଜବିରୋଧି ବିଦ୍ରୋହ ଦେଖାଯାଇଥିବାରୁ କ୍ୟାନିଂ, ସାହାଯ୍ୟ ଦେବାପାଇଁ ନିଜର ଅକ୍ଷମତା ପ୍ରକାଶ କରିଥିଲେ ।

୧୮୫୭ ମସିହା ମାର୍ଚ୍ଚ ମାସରେ ଇଂରାଜି ସରକାର, ଇଂଲାଣ୍ଡରୁ ଓ ମରିସସ୍‌ରେ ଥିବା ବାହିନୀକୁ, ଚୀନା ବିଦ୍ରୋହ ଦମନ ନିମନ୍ତେ ପଠାଇବାକୁ ସ୍ଥିର କଲେ । 'ଉପନିବେଶ-ରାଜନୀତି'ରେ ପ୍ରବୀଣ 'ଲର୍ଡ଼ ଏଲ୍‌ଗିନ୍' (Lord Elgin)ଙ୍କୁ ଚୀନାକୁ ସ୍ୱତନ୍ତ୍ର ଦୂତରୂପେ ନିଯୁକ୍ତି ନେଇ ପଠାଗଲା । ମେ ଦଶତାରିଖରେ ଇଂରାଜି ବାହିନୀ, ପୂର୍ବ ଦିଗ ଆଡ଼କୁ ଅଭିଯାନ ଆରମ୍ଭ କଲେ । ଏହି ସମୟରେ ହିଁ ଭାରତରେ ବିଦ୍ରୋହ ସଂଘଟିତ ହୋଇଥିଲା, ଏବଂ ମିରଟ୍ ପରେ ପରେ, ଯଥାଶୀଘ୍ର ବିଦ୍ରୋହୀମାନେ ଦିଲ୍ଲୀ ଅଧିକାର କରି ସ୍ୱାଧିନତା ଘୋଷଣା କରିଥିଲେ । ଏହି ପରିସ୍ଥିତିରେ 'ଲର୍ଡ଼ କ୍ୟାନିଂ', 'ଲର୍ଡ଼ଏଲଗିନ୍'ଙ୍କୁ ଉପରୋକ୍ତ ବାହିନୀକୁ ଚୀନା ପରିବର୍ତ୍ତେ ଭାରତକୁ ପଠାଇବା ପାଇଁ ଅନୁରୋଧ ଜଣାଇଥିଲେ । ଏକ ପତ୍ରରେ ଭାରତରେ ବିଦ୍ରୋହର ପରିସ୍ଥିତିର ଭୟାବହତା ବୁଝାଇବାକୁ ଯାଇ ସେ ଲେଖିଥିଲେ:-

In the valley of the Ganges, between Calcutta and Agra, for a length of 750 miles, there are barely 1000 European soldiers; Whilst there are several towns and stations of importance, containing forts, magazines, treasuries, and large Civil communities of Europeans, which are held by native troops alone. If mutinious rebellion raises its head at any of these spots, the Government of India is literally without any force wherewith to put it down. The mutineers would carry everything before them, and we now know how they use the opportunity. The flame would spread like wild fire, and would rage uncontrolled. Everyday during which Delhi remains in the hands of the rebels, in an encouragement to a rising elsewhere. The state of thing is full of dangers."

(Blue book; Correspondence Relative to the Earl Lord Elgin's Special Missions to China & Japan 1857-59.)

''କଲିକତାଠାରୁ ଆଗ୍ରା ପର୍ଯ୍ୟନ୍ତ ଥିବା ଗାଙ୍ଗେୟ ଉପତ୍ୟକାର ସାତଶହପଚାଶ ମାଇଲ ଧରି ମାତ୍ର ହଜାରେ ଇଂରାଜି ସୈନ୍ୟ ଅଛନ୍ତି । ଯଦିଚ୍ ଦୁର୍ଗ, ଗୁଳିଗୋଳାଭଣ୍ଡାର, ଖଜଣାଖାନା, ବେସାମରିକ ଇଂରାଜିମାନଙ୍କର ବୃହତ୍ ବସତି ମାନଥିବା ବହୁ ସହର ଓ ଗୁରୁତ୍ୱପୂର୍ଣ୍ଣ ଷ୍ଟେସନମାନ ଅଛି, ପରନ୍ତୁ, ସେଗୁଡ଼ିକ କେବଳ ଦେଶୀସୈନ୍ୟମାନଙ୍କ ଦ୍ୱାରା ରକ୍ଷିତ ହୋଇଛି । ଯଦି ଏହି ସମସ୍ତସ୍ଥାନମଧ୍ୟରୁ କେଉଁଠାରେ ବିଦ୍ରୋହ ହୁଏ ତେବେ କହିବାକୁ ଗଲେ ଭାରତସରକାରଙ୍କର ତାହା ଦମନ କରିବାକୁ କୌଣସି ଶକ୍ତି ରହିବ ନାହିଁ । ବିଦ୍ରୋହୀମାନେ ନିଜ ସମ୍ମୁଖରେ ଥିବା ସମସ୍ତ ଦ୍ରବ୍ୟ ନେଇଯିବେ, ଏବଂ ଆମେ ଜାଣିଛୁ, ସେମାନେ ସୁଯୋଗର କିପରି ସଦ୍‌ବ୍ୟବହାର କରନ୍ତି । ଏହି ଶିଖା, ବାଡ଼ବାଗ୍ନି ପରି ବ୍ୟାପିଯିବ ଏବଂ ଅଣାୟତ୍ତ ହୋଇଯିବ । ଦିଲ୍ଲୀ, ବିଦ୍ରୋହୀମାନଙ୍କ ହାତରେ ରହିବା ସମୟମଧ୍ୟରେ, ପ୍ରତିଦିନ କୌଣସି କୌଣସି ସ୍ଥାନରେ ବିଦ୍ରୋହ କରିବା ପାଇଁ ଉତ୍ସାହ ସୃଷ୍ଟି କରୁଥିବ । ଅବସ୍ଥା ଅତ୍ୟନ୍ତ ସଂକଟାପନ୍ନ ଅଟେ ।''

'ଏଲ୍‌ଗିନ୍' ଚୀନା ଅଭିଯାନର ସଫଳତାପାଇଁ ଅଧୈର୍ଯ୍ୟ ଓ ବ୍ୟସ୍ତଥିବା ସତ୍ତ୍ୱେ, 'କ୍ୟାନିଂ'ଙ୍କର ଅନୁରୋଧକୁ ପରିସ୍ଥିତି ଦୃଷ୍ଟିରୁ ସମ୍ପୂର୍ଣ୍ଣ ଭାବେ ଏଡ଼ାଇ ପାରି ନଥିଲେ । ୧୮୫୭ ମସିହା ଏପ୍ରିଲ ୨୦ତାରିଖ ଦିନ ଇଂଲଣ୍ଡର ବୈଦେଶିକ ବିଭାଗର ସଚିବ 'କ୍ଲାରେଣ୍ଡନ୍' (Clarendon), 'ଏଲ୍‌ଗିନ୍'ଙ୍କୁ ବାହିନୀ ସହ ଚୀନାରେ ପହଞ୍ଚି, ଉତ୍ତର ଦିଗକୁ ଯାଇ ମାଞ୍ଚୁ ସରକାରଙ୍କୁ ଭୟ ପ୍ରଦର୍ଶନ କରି, ଇଂରାଜିସ୍ୱାର୍ଥ ଜଡ଼ିତ କିଛି ଚୁକ୍ତି ନାମାରେ ସ୍ୱାକ୍ଷର କରାଇବା ପାଇଁ ନିର୍ଦ୍ଦେଶ ଦେଇଥିଲେ । କିନ୍ତୁ, ଭାରତରେ ବିଦ୍ରୋହର ଦାବାନଳ ଦେଖି, ଇଂରାଜିମାନେ ଭୟଭୀତ ହୋଇ ଚୀନାକୁ ଯାଉଥିବା ବାହିନୀକୁ ଅଧାରାସ୍ତାରୁ କଲିକତାକୁ ପଠାଇଦେଇଥିଲେ । ଏବଂ 'ଏଲଗିନ୍'ଙ୍କର ଉପର ବର୍ଣ୍ଣିତ 'ମାଞ୍ଚୁ ଅଭିଯାନ', ଏହି କାରଣରୁ ଅତ୍ୟନ୍ତ ପକ୍ଷେ ଏକବର୍ଷ ପର୍ଯ୍ୟନ୍ତ ସ୍ଥଗିତ ରହିଲା । ଏହା ଚୀନାମାନଙ୍କର ଇଂରାଜିବିଦ୍ରୋହ ସପକ୍ଷରେ ସହାୟକ ରୂପେ କାର୍ଯ୍ୟ କରିଥିଲା ।

ଅପରପକ୍ଷରେ ଚୀନା ବିଦ୍ରୋହୀମାନେ, ଇଂରାଜିଙ୍କର ପଦାତିକ ସେନା ତଥା ନୌବହରକୁ ଆକ୍ରମଣ କରିବା ଫଳରେ 'ଏଲ୍‌ଗିନ୍' ବାହିନୀର ଏକ ଅଂଶ ଭାରତ ପଠାଇଦେଇ ଅନ୍ୟ ଏକ ଅଂଶ ଚୀନାରେ ଇଂରାଜି ସ୍ୱାର୍ଥ ରକ୍ଷାପାଇଁ ମୁତୟନ କଲେ ।

୧୮୫୭ ମସିହା ଜୁନ୍ ମାସରେ ଭାରତରେ ବିଦ୍ରୋହର ଦାବାନଳ ମିରଟ୍, ଦିଲ୍ଲୀରୁ ଗାଙ୍ଗେୟ ଉପତ୍ୟକା ଦେଇ ଉଣାଅଧିକେ ସବୁ ଆଡ଼େ ଜଳିଉଠିଲା । ଏପରିକି କ୍ରମେ ସେ ସମୟରେ ଭାରତର ଇଂରାଜି ପ୍ରତିଷ୍ଠିତ ରାଜଧାନୀ କଲିକତାରେ ମଧ୍ୟ,

ଗଣ୍ଡଗୋଳର ଆଭାସ ସାମାନ୍ୟ ଅନୁଭୂତ ହେବା ଫଳରେ 'ଲର୍ଡ଼କ୍ୟାନିଂ', ଭୟଭୀତ ଓ ଉଦ୍‌ବିଘ୍ନ ହୋଇ 'ଲର୍ଡ଼ ଏଲ୍‌ଗିନ୍'ଙ୍କୁ ପୁନର୍ବାର ସାମରିକ ସହାୟତା ପାଇଁ ଅନୁରୋଧ ଜଣାଇଲେ । କିନ୍ତୁ ଏଲ୍‌ଗିନ୍ ଏଥର ସାମରିକ ସାହାଯ୍ୟ ପଠାଇବାକୁ ନିଜର ଅକ୍ଷମତା ପ୍ରକାଶ କରି ସେହି ମର୍ମରେ ଜୁଲାଇ ୨୯ ତାରିଖରେ 'କ୍ଲାରେଣ୍ଡନ'ଙ୍କୁ ତାଙ୍କର ରିପୋର୍ଟରେ ଜଣାଇଦେଲେ:-

On examining the resources at my disposal, with a view of responding, to the utmost of my ability, to Lord Cannings appeal, I came to the conclusion that, on the one hand, it would be idle to attempt to send to India, any portion of the feeble garrisom stationed at Hongkong; that, on the other, there would be considerable risk in materially diminishing our Naval force, as on it we depend for the protection of our countrymen established at the different Treaty Ports, and for the maintenance of our communication with Canton." (Blue Book)

''ଲର୍ଡ଼କ୍ୟାନିଂଙ୍କର ଅନୁରୋଧ ରକ୍ଷାକରିବା ଉଦ୍ଦେଶ୍ୟରେ ମୁଁ ମୋ ପାଖରେ ଥିବା ଉପାଦାନ ସାମଗ୍ରୀ ଆଦି ପରୀକ୍ଷାକରି ଏହି ସିଦ୍ଧାନ୍ତରେ ଉପନୀତ ହେଲି ଯେ ଏକ ପକ୍ଷରେ ହଂକଂରେ ଅବସ୍ଥାପିତ ଦୁର୍ବଳ ସୈନ୍ୟଦଳର ଏକ ଅଂଶକୁ ଭାରତ ପଠାଇବା ଏକ ନିଷ୍ଫଳ ଉଦ୍ୟମ ହେବ ।

ଅନ୍ୟପକ୍ଷରେ ନୌଶକ୍ତି କମିଯିବା ଫଳରେ ଏହା ଆମ ପକ୍ଷରେ ଗୁରୁତର ସମସ୍ୟା ସୃଷ୍ଟି କରିବ, କାରଣ ବିଭିନ୍ନ ସନ୍ଧିଚୁକ୍ତି ଅନ୍ତର୍ଗତ ବନ୍ଦରମାନଙ୍କରେ ଆମ ଦେଶ ଲୋକଙ୍କୁ ରକ୍ଷାକରିବା ପାଇଁ ଓ କାଣ୍ଟନ୍ ସହିତ ସମ୍ପର୍କ ସ୍ଥାପନ କରିବାପାଇଁ ଆମେ ଏହା ଉପରେ ନିର୍ଭର କରୁଅଛୁ ।''

'ଏଲ୍‌ଗିନ୍', 'କ୍ୟାନିଂ'ଙ୍କୁ ସାମରିକ ସାହାଯ୍ୟ ନଦେଇପାରିଲେ ମଧ୍ୟ କଲିକତାରେ ଅବସ୍ଥାପିତ ଇଂରାଜି ବାହିନୀର ମନୋବଳ ବଢ଼ାଇବା ପାଇଁ, ନିଜେ ବ୍ୟକ୍ତିଗତ ଭାବରେ କଲିକତା ଯାଇ, 'କ୍ୟାନିଂ'ଙ୍କୁ ସାକ୍ଷାତ କରିଥିଲେ । ଏତଦ୍ୱାରା ଚୀନାରୁ ସାହାଯ୍ୟକାରୀ ଇଂରାଜୀବାହିନୀ ଆସୁଛି ବୋଲି ଭାବି, ଏ ଦୁର୍ଦ୍ଦିନରେ ଅବସ୍ଥାପିତ ବାହିନୀ ମଧ୍ୟରେ ଆଶା ଓ ଉତ୍ସାହ ଜାଗିଉଠିଥିଲା ।

ଚୀନରେ, ଭାରତୀୟଙ୍କର ଇଂରାଜି ବିଦ୍ରୋହ ପ୍ରତି ପୂର୍ଣ୍ଣ ସହାନୁଭୂତି ଥିଲା । ବିଦ୍ରୋହୀମାନଙ୍କର ବିଜୟବାର୍ତ୍ତା ଶୁଣିବା ମାତ୍ରେ ସେମାନେ ଉତ୍‌ଫୁଲ୍ଲିତ ହୋଇଉଠୁଥିଲେ ।

କିନ୍ତୁ ଚୀନରେ ସେତେବେଳେ କୌଣସି ଖବରକାଗଜ ନଥିବାରୁ ଗଣମତର ପ୍ରକାଶନ ସମ୍ଭବ ନଥିଲା । ତଥାପି ସେତେବେଳେ ଚୀନ ସରକାରଙ୍କର ଦଲିଲରୁ ହିଁ ଚୀନ ଜନସାଧାରଣଙ୍କର, ଭାରତରେ ବିଦ୍ରୋହ ପ୍ରତି ମନୋଭାବ ଜଣାପଡ଼େ । 'Notes on the Capture of Yeh-thing-shen by the British of Canton' ନାମକ ଏକ ପ୍ରବନ୍ଧରେ ଜଣେ ବିଶିଷ୍ଟ କୂଟନୀତିଜ୍ଞ ସୁଏ-ଫୁ-ଚେଙ୍ଗ୍ (Hsueh Fu-cheng) ଲେଖିଥିଲେ ଯେ କାଣ୍ଟନର ନାଗରିକମାନେ ଇଂରାଜିମାନଙ୍କୁ ଘୃଣା କରନ୍ତି । ଶୁଣାଯାଉଛି ଯେ, ଭାରତରେ ଇଂରାଜି ବିରୁଦ୍ଧରେ ବିଦ୍ରୋହ ସଂଘଟିତ ହୋଇଛି । ଇଂରାଜିମାନେ ପରାସ୍ତ ହୋଇଛନ୍ତି, ଏବଂ ଯୁଦ୍ଧରେ ବହୁ ଇଂରାଜି ସେନାପତି ମୃତ୍ୟୁବରଣ କରିଛନ୍ତି । ଏଥିରୁ ଜଣାପଡ଼େ ଯେ, 'କ୍ୱାଙ୍ଗଟଙ୍ଗ' (Kwangtung) ପ୍ରଦେଶରେ ଜନସାଧାରଣ ଭାରତର ବିଦ୍ରୋହ ବିଷୟରେ ଆଗ୍ରହୀ ହୋଇ ସବିଶେଷ ଖବର ରଖୁଥିଲେ । 'ନହ୍ଲାଇ କାଉଣ୍ଟି'ର 'ହୁଆ-ସିଙ୍ଗ୍-ଚେନ୍' (Huating-chen) ତତ୍କାଳୀନ ଜଣେ ମାଜିଷ୍ଟ୍ରେଟ୍ 'An Account of contact with Foreigners' ନାମକ ପୁସ୍ତକରେ ତାଙ୍କର ବ୍ୟକ୍ତିଗତ ଅନୁଭୂତି ବର୍ଣ୍ଣନା କରି 'କ୍ୱାଙ୍ଗଟଙ୍ଗ' ଅଧିବାସୀମାନେ, ଭାରତୀୟ ବିଦ୍ରୋହକୁ ଅଭିନନ୍ଦନ ଜଣାଉଥିଲେ ବୋଲି ପ୍ରକାଶ କରିଛନ୍ତି । ପୁନଶ୍ଚ ସେ ଲେଖିଛନ୍ତି ଯେ, ସେ ସମୟରେ ବିଦ୍ରୋହହେତୁ ଇଂରାଜିମାନଙ୍କର ଆର୍ଥିକ ସ୍ଥିତି ଦୁର୍ବଳ ହୋଇଯିବାଫଳରେ, ସୈନିକ ମାନଙ୍କୁ ନିୟମିତ ଦରମା ଦିଆଯାଇପାରୁନଥିଲା । ଅନ୍ୟ କେତେକ କହୁଥିଲେ ଯେ, ଇଂରାଜିମାନଙ୍କୁ ଭାରତରେ ବିଦ୍ରୋହୀମାନେ ପରାଜିତ କରିଛନ୍ତି । ପୁନର୍ବାର ମାସେ ଦିମାସ ପରେ ପ୍ରଚାରିତ ହେଲା ଯେ ଇଂରାଜି ବାହିନୀକୁ ଭାରତରେ ବିଦ୍ରୋହୀମାନେ ସମ୍ପୂର୍ଣ୍ଣ ପରାଜିତ କରିବା ଫଳରେ ସେମାନେ ଆତ୍ମଗୋପନ କରିଅଛନ୍ତି । ବହୁ ଇଂରାଜି ସେନାପତି ମଧ ମୃତ୍ୟୁ ବରଣ କରିଛନ୍ତି । ଏହି ପ୍ରକାର ସେତେବେଳେ କ୍ୱାଙ୍ଗଟଙ୍ଗ ଅଧିବାସୀମାନଙ୍କ ମଧରେ ପ୍ରଚାରିତ ହେଉଥିଲା । 'କ୍ୱାଙ୍ଗଟଙ୍ଗ' ପ୍ରଦେଶ, 'ହଂକଂ'ର ପାର୍ଶ୍ୱବର୍ତ୍ତୀ ଓ ଭାରତର ନିକଟବର୍ତ୍ତୀ ହୋଇଥିବାରୁ ବିଶେଷ ଭାବରେ ବାଣିଜ୍ୟ ଜାହାଜ ଗୁଡ଼ିକ ସେଠାକୁ ଭାରତ ବିଦ୍ରୋହର ଖବରାଖବର ଆଣୁଥିଲେ ଓ 'କ୍ୱାଙ୍ଗଟଙ୍ଗ' ଅଧିବାସୀମାନେ ଏହା ଆଗ୍ରହର ସହ ସଂଗ୍ରହ କରୁଥିଲେ ଓ କ୍ରମେ ତାହା ଚୀନ୍‌ରେ ପ୍ରଚାରିତ ହେଉଥିଲା ।

କେବଳ ଚୈନିକ ଜନସାଧାରଣ ଯେ ୧୮୫୭ ବିଦ୍ରୋହର ଖବର ରଖୁଥିଲେ ତାହା ନୁହେଁ, ପରନ୍ତୁ 'କ୍ୱାଙ୍ଗ୍‌ଟଙ୍ଗ୍' ଓ 'କ୍ୱାଙ୍ଗସି' (Kwangsi)ପ୍ରଦେଶର ଗଭର୍ଣ୍ଣର ଜେନେରାଲ ଓ 'କ୍ୱାଙ୍ଗଟଙ୍ଗ'ରେ ଇଂରାଜି ଆକ୍ରମଣ ବିରୁଦ୍ଧରେ ସେନାଧକ୍ଷ ୟେ-ମିଙ୍ଗ-ସେନ୍ (Yeh Ming-shen) ଭାରତରେ ହେଉଥିବା ବିଦ୍ରୋହ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ ।

୧୮୫୯ ମସିହାର ଶେଷାର୍ଦ୍ଧରେ, 'ସିଙ୍ଗକିୟାଙ୍ଗ'ରେ ଥିବା ଋଷିଆର ପ୍ରତିନିଧିଙ୍କର ପ୍ରରୋଚନାରେ 'ଚାଲାଫେଣ୍ଟା' (Chalafenta) ନାମକ ଜଣେ ତାତାର ଜେନେରାଲ ଓ 'ଫାଃଫୁଲି' (Fahfooli) ନାମକ ଜଣେ 'ମାନ୍ଦାରିନ୍' ଇଂରାଜିଙ୍କ ବିରୁଦ୍ଧରେ ଏକ ସ୍ୱତନ୍ତ୍ର ବାହିନୀ ଭାରତୀୟଙ୍କୁ ସାହାଯ୍ୟ ପାଇଁ ପଠାଇବାକୁ ଯୋଜନା କରିଥିଲେ । ସେମାନେ, ସମ୍ରାଟଙ୍କୁ ଏଦିଗରେ ପ୍ରଭାବିତ କରିବାକୁ ମଧ ଚେଷ୍ଟା କରିଥିଲେ । କିନ୍ତୁ ପରିଶେଷରେ ସମୟର ଅଭାବକୁ ବିଚାର କରି ସମ୍ରାଟ ଏଥିପାଇଁ ଅନୁମତି ଦେଇନଥିଲେ । ଏହା କାର୍ଯ୍ୟକାରୀ ନ ହୋଇପାରିଲେ ମଧ, ଚୀନାରେ ଭାରତୀୟଙ୍କର ଇଂରାଜି ବିରୋଧ ପ୍ରତି କେତେ ଗଭୀର ଭାବରେ ସହାନୁଭୂତି ଓ ସମର୍ଥନ ଥିଲା ତାହା ଅନୁମାନ କରାଯାଇପାରେ ।

ଭାରତରେ ବିଦ୍ରୋହ ପ୍ରଶମିତ ହେବାପରେ ଓ 'ଦ୍ୱିତୀୟ ଅଫିମଯୁଦ୍ଧ'ର ଶେଷ ପର୍ଯ୍ୟାୟରେ ଇଂରାଜିମାନେ, ଚୀନାମାନଙ୍କର ବିଦ୍ରୋହ ଦମନ ନିମିତ୍ତ, ଭାରତରୁ ଦେଶୀ ସିପାହୀ ବାହିନୀକୁ ପଠାଇଥିଲେ । ଏସୀୟ ରାଷ୍ଟ୍ରମାନଙ୍କୁ ବିଭିନ୍ନ ଉପାୟରେ ପରସ୍ପର ବିରୋଧରେ ନିୟୋଜିତ କରି ତହିଁରୁ ସୁବିଧା ହାସଲ କରିବା ହିଁ ଇଂରାଜିମାନଙ୍କର ସେ ସମୟରେ ନୀତିଥିଲା । ଏଣୁ ବିଦ୍ରୋହ ପରେ ପରେ, ଅବଶିଷ୍ଟ ଇଂରାଜି ବାହିନୀରେ ଥିବା ବହୁ ଦେଶୀ ସିପାହୀମାନଙ୍କୁ, ଭାରତରେ ରଖିବା ନିରାପଦ ମନେ ନକରି ଚୀନାକୁ ବିଦ୍ରୋହ ଦମନ ପାଇଁ ପଠାଯାଇଥିଲା । ଭାରତରେ ବିଦ୍ରୋହ ପ୍ରଶମିତ ହେବା ପରେ ପରେ ପୂର୍ବ ଯୋଜନା ଅନୁସାରେ, ଇଂରାଜିମାନଙ୍କର ଦୃଷ୍ଟି 'ମାଞ୍ଚୁ'ଉପରେ ନିବଦ୍ଧ ହେଲା । ସେଠାର ଶାସକଙ୍କୁ ଚୀନା ବିଦ୍ରୋହୀ ମାନଙ୍କୁ ଦମନ କରିବାରେ ସାହାଯ୍ୟ କରିବାପାଇଁ ଇଂରାଜିମାନେ, ଭାରତରୁ ଦେଶୀ ସିପାହୀମାନଙ୍କୁ ବହୁ ସଂଖ୍ୟାରେ ମୁତୟନ କଲେ । କିନ୍ତୁ ଏ କ୍ଷେତ୍ରରେ ଇଂରାଜିମାନଙ୍କର ଏସୀୟମାନଙ୍କୁ ଏସୀୟଙ୍କ ବିରୁଦ୍ଧରେ ନିୟୋଜିତ କରିବାର ନୀତି କାଟୁ କଲା ନାହିଁ । ଯେତେବେଳେ ଭାରତୀୟ ସୈନ୍ୟମାନଙ୍କୁ ତାଇପେଙ୍ଗ୍ ବିରୁଦ୍ଧରେ ଯୁଦ୍ଧ କ୍ଷେତ୍ରକୁ ପଠାଗଲା ସେମାନଙ୍କ ମଧ୍ୟରୁ କେତେକ ଚୀନା ବିଦ୍ରୋହୀ ସୈନ୍ୟମାନଙ୍କ ସହ ଯୁଦ୍ଧ ନକରି ଓଲଟି ଇଂରାଜିମାନଙ୍କୁ ଆକ୍ରମଣ କରୁଥିଲେ, କେତେକ ସମ୍ମୁଖରେ ଅସ୍ତ୍ର ତଳେ ରଖିଦେଇ ବିଦ୍ରୋହୀ ବାହିନୀରେ ଯୋଗଦାନ କରୁଥିଲେ ଓ ଆଉକେତେକ ବନ୍ଦୀହୋଇ ପରେ ଚୀନାଙ୍କର ବିଦ୍ରୋହୀ ବାହିନୀରେ ଯୋଗ ଦେଉଥିଲେ । ପାରସ୍ପରିକ ସମସ୍ୟାରେ ଐକ୍ୟଥିବା ହେତୁ ଓ ସଭ୍ୟତା ସଂସ୍କୃତି ଚାଲିଚଳଣ ଆଦି ନିକଟରେ ହୋଇଥିବାରୁ ପାରସ୍ପରିକ ସହାନୁଭୂତି ରହିବା ସ୍ୱାଭାବିକ । ସାର୍ବୋପରି

ଏସୀୟର ସ୍ୱାଭିମାନ ଓ ସ୍ୱାଧିନତା ଉଭୟଙ୍କ ମଧ୍ୟରେ ଅନ୍ତର୍ନିହିତ ଥିଲା । ଟାଇପେଙ୍ଗ ବିଦ୍ରୋହୀଙ୍କର ଚିରଶତ୍ରୁ 'ସେଙ୍ଗ୍-ନୋ-ଫାନ୍' (Tseng kno-fan), 'ହୁ-ଲିନ୍-ଲି'(Hu Lin-Li) ନାମକ ଏକ ଜେନେରାଲଙ୍କ ପାଖକୁ ସର୍ବପ୍ରଥମେ ୟୁସାନ୍ (Yushan) ନାମକ କାଉଣ୍ଟି ସହରକୁ ଅବରୋଧ କରି ରଖିଥିବା ବିଦ୍ରୋହୀ ଯୁବରାଜ 'ଲି-ସିଉ-ଚେଙ୍ଗ୍' (Li Hsiu-cheng)ଙ୍କର ବାହିନୀରେ ବହୁ କୃଷ୍ଣଧର୍ମ ଯୁକ୍ତ ସୈନ୍ୟ ଥିବାକଥା ଜଣାଇ ଥିଲେ । ମାଞ୍ଚୁରେ ସେ ସମୟରେ କୃଷ୍ଣଚର୍ମଯୁକ୍ତ ମନୁଷ୍ୟ କହିଲେ କେବଳ ଭାରତୀୟମାନଙ୍କୁ ହିଁ ବୁଝାଉଥିଲା । ଏଥିରୁ ଅନୁମାନ କରାଯାଇପାରେ ଯେ ଚୀନା ବିଦ୍ରୋହୀ ବାହିନୀରେ ବହୁ ଭାରତୀୟ ସୈନ୍ୟ ଯୋଗଦାନ କରିଥିଲେ । ଅବଶ୍ୟ ପରେ ବହୁ ସୈନ୍ୟଙ୍କୁ ଭାରତରୁ ଅଣାଯାଇ ଟାଇପେଙ୍ଗ ବିଦ୍ରୋହ ଦମନରେ ନିଯୁକ୍ତ କରାଯାଇଥିଲା । କିନ୍ତୁ ଜଣାଯାଏ ଯେ ୧୮୬୨-୬୩ ମସିହାରେ ଚୀନ ବିଦ୍ରୋହର ଘଡ଼ିସନ୍ଧି ମୁହୂର୍ତ୍ତରେ ବହୁ ଭାରତୀୟ ସୈନ୍ୟ ଇଂରାଜି ବାହିନୀ ତ୍ୟାଗକରି ଚୀନ ବିଦ୍ରୋହୀ ବାହିନୀରେ ଯୋଗଦେଇଥିଲେ । ଏପରିକି କିଆଙ୍ଗସୁ(Kiangsu) ଓ ଚେକିଆଙ୍ଗ(Chekiang) ପ୍ରଦେଶରେ ଏହି ଭାରତୀୟ ସୈନ୍ୟମାନେ ଚୀନା ବିଦ୍ରୋହୀଙ୍କ ସହ ମିଳିତ ଭାବରେ ଇଂରାଜିମାନଙ୍କପର ବିରୁଦ୍ଧରେ ଘମାଘୋଟ ଲଢ଼ାଇ କରିଥିଲେ ।

୧୮୬୩ ମସିହା ଫେବୃଆରୀ ୧୯ତାରିଖରେ ଚେକିଆଙ୍ଗ ପ୍ରଦେଶର ସାଓଃସିଙ୍ଗ୍ (Shaohsing) ଠାରେ ଟାଇପେଙ୍ଗ ବିଦ୍ରୋହୀ ବାହିନୀରେ ନିଯୁକ୍ତ ଭାରତୀୟ ସୈନ୍ୟମାନଙ୍କ ସହାୟତାରେ ମାଞ୍ଚୁ ବାହିନୀର ସହାୟକ ଫ୍ରାନ୍ସ ଅଫିସର 'ଟାରଡ଼ିଫ୍‌ଦା ମୋଇଡ୍ରେ' (Tardif de Moidrey)ଙ୍କୁ ହତ୍ୟା କରାଯାଇଥିଲା । ମାଞ୍ଚୁ ସରକାରଙ୍କ ଦଲିଲରୁ ଜଣାପଡ଼େ ଯେ ମାଞ୍ଚୁ ଓ ବିଦେଶୀ ମାନଙ୍କର ମିଳିତ ସେନା ଶାଓଃସିଙ୍ଗ୍ ଉପରେ ବହିର୍ଭାଗରେ ଥିବା 'ସିକୁଓ' (Hsi kuo) ଫାଟକରୁ ପ୍ରବଳ ଗୋଳା ବର୍ଷଣ କରିଥିଲେ । ଏହାଦ୍ୱାରା ନଗରୀର ପ୍ରାଚୀରର କିଛି ଅଂଶ ଭଗ୍ନ ହୋଇଥିଲା ଓ ବହୁ ବିଦ୍ରୋହୀ ମୃତାହତ ହୋଇଥିଲେ । ବିଦ୍ରୋହୀମାନେ ପଥର ଦେଇ ଭଗ୍ନପ୍ରାଚୀରକୁ ମରାମତି କରୁଥିଲେ । ଟାରଡ଼ିଫ୍, ନିକଟରେ ଏକ ପୋଲ ଉପରେ ଏକାକୀ ରହି ନିଜର ସେନାମାନଙ୍କୁ ପ୍ରାଚୀର ଉପରକୁ ଚଢ଼ିଯିବା ପାଇଁ ଉତ୍ସାହିତ କରୁଥିଲେ । ଏହି ସମୟରେ ପ୍ରାୟ ଚାଳିଶ ଷାଠିଏ ଜଣ ଭାରତୀୟ ସୈନ୍ୟ ତାଙ୍କୁ ଗୁଳି କଲେ । ଗୁଳି ତା'ଙ୍କର ମୁଣ୍ଡରେ ବାଜିବା ଫଳରେ ସେ ତତ୍‌କ୍ଷଣାତ୍ ମୃତ୍ୟୁ ବରଣ କଲେ ।

ପୁନଶ୍ଚ ଅନ୍ୟ ଏକ ମାଞ୍ଚୁସରକାରଙ୍କର ଦଲିଲରୁ ଜଣାଯାଏ ଯେ ସେହିବର୍ଷ ମେ ୨ତାରିଖରେ କିଆଙ୍ଗସୁ ପ୍ରଦେଶର ଟାଇଟସାଙ୍ଗ୍ (Taitsang) କାଉଣ୍ଟିରେ ପ୍ରବଳ

ଯୁଦ୍ଧ କରି ତାଇପେଙ୍ଗ ବିଦ୍ରୋହୀ ବାହିନୀରେ ଥିବା ଭାରତୀୟ ସୈନ୍ୟମାନେ ମୃତ୍ୟୁ ବରଣ କରିଥିଲେ । ଏମାନେ ପୂର୍ବରୁ ଇଂରାଜିଙ୍କର ୫ମ ବମ୍ବେ ପଦାତିକ ବାହିନୀରେ ଥିଲେ ।

ସେହିବର୍ଷ ଅକ୍ଟୋବର ୭ତାରିଖରେ 'ଚେକିଆଙ୍ଗ୍' ପ୍ରଦେଶର 'ସିହ୍ଲିଚାଙ୍ଗଚେକ୍' (Shilihi chang check) ନାମକ ସ୍ଥାନରେ ତାଇପେଙ୍ଗ ବିଦ୍ରୋହୀଙ୍କ ସହିତ ମିଳିତ ଭାବରେ ଲଢୁଥିବା ବହୁ ଭାରତୀୟ ସୈନ୍ୟ 'ମାଞ୍ଚୁ' ଓ 'ଫ୍ରାନ୍ସ'ର ମିଳିତ ସେନାର ସହ ଯୁଦ୍ଧରେ ପ୍ରାଣ ହରାଇଥିଲେ । ଏହିପରି 'ତାଇପେଙ୍ଗ' ବିଦ୍ରୋହୀ ମାନଙ୍କ ମଧ୍ୟରେ ଥିବା ବହୁ ଭାରତୀୟ ସୈନ୍ୟମାନଙ୍କର କାର୍ଯ୍ୟ କଳାପର ବିବରଣୀ 'ମାଞ୍ଚୁ' ସରକାରଙ୍କର ନଥିପତ୍ରରେ ରହିଛି । (Hsiao Tsang Sang Chi, Notes on Shifting scenes by Yu Yao-chi)

ସେହିପରି ୧୮୬୨ ମସିହା ସେପ୍ଟେମ୍ବର ୧୭ ତାରିଖରେ ସାଂଘାଇରେ ଥିବା ଇଂରାଜି ପ୍ରତିନିଧି ଏକ ପତ୍ରରେ ଲେଖିଥିଲେ:-

"A Belgian adventurer came in a day or two ago from Soochow.... He also says that he saw two European in the city who spoke of having done a paying business in arms and ammunation, and they told him too that four of the Sepoys who were made prisioners at the capture of the field piece in May last, are now alive and at Soochow."
(S.U. 228/224 letter of Medhurst to F. Bruce, September, 17, 1862)

"ଦିନେ ଦୁଇଦିନ ପୂର୍ବରୁ ଜଣେ ଦୁଃସାହସିକ ବେଲ୍‌ଜିୟମବାସୀ ଭ୍ରମଣକାରୀ ସୁଚୌରୁ ଆସିଥିଲେ....ସେ ଉକ୍ତ ସହରରେ ଦୁଇଜଣ ଇଉରୋପୀୟଙ୍କୁ ଦେଖିଥିବା କଥା କହୁଥିଲେ । ସେମାନେ ସେଠାରେ ଲାଭଜନକ ଅସ୍ତ୍ରଶସ୍ତ୍ର ବ୍ୟବସାୟ କରିଥିବା କଥା କହୁଥିଲେ, ଏବଂ ସେମାନେ ଯୁଦ୍ଧକ୍ଷେତ୍ରରୁ ବନ୍ଦୀ ହୋଇ ଚାରିଜଣ ସିପାହୀ ମେ ଶେଷ ଭାଗରେ ଆସି ବର୍ତ୍ତମାନ ସୁଚୌରେ ଜୀବିତଥିବା କଥା କହୁଥିଲେ ।"

ସେଠାରେ ଇଂରାଜି ନିଯୁକ୍ତ ଅନ୍ୟ ଭାରତୀୟ ସୈନ୍ୟମାନେ ମଧ୍ୟ ବନ୍ଦୀ ହୋଇଥିବା ଓ ପରେ ସେମାନେ 'ତାଇପେଙ୍ଗ' ବିଦ୍ରୋହୀ ବାହିନୀରେ ଯୋଗଦେଇଥିବା ସମ୍ଭାବନାକୁ ସମ୍ପୂର୍ଣ୍ଣ ଅସ୍ୱୀକାର କରାଯାଇ ନପାରେ । କାରଣ ବନ୍ଦୀ ଅବସ୍ଥାରେ ଏମାନେ 'ତାଇପେଙ୍ଗ' ବିଦ୍ରୋହର ତାତ୍ପର୍ଯ୍ୟ ବୁଝି ତତ୍‌ସହିତ ନିଜର ଦେଶର ଦାସତ୍ୱ କଳ୍ପନା କରି ସହାନୁଭୂତିଶୀଳ ହୋଇ 'ତାଇପେଙ୍ଗ' ବିଦ୍ରୋହୀଙ୍କ ସହିତ ଯୋଗଦାନ କରିଥିବା ସ୍ୱାଭାବିକ । ଲିଣ୍ଡଲେ

ତାଙ୍କର (History of Tipeng Revolution) (p476-77) 'ତାଇପେଙ୍ଗ ବିଦ୍ରୋହର ଇତିହାସ' ନାମକ ପୁସ୍ତକରେ ଲେଖିଛନ୍ତି:-

"The true reason why those engaged in assisting the Taipings preferred that course, with all its troubles and dangers, is that, having once met the revolutionists, the immense superiority of the latter to the Manchus had enlisted their Sympathies and active support. (pp. 476-77)

''ସମସ୍ତ ବିପଦ ଓ ବିଘ୍ନ ସତ୍ତ୍ୱେ ତାଇପେଙ୍ଗ ବିଦ୍ରୋହୀମାନଙ୍କୁ ସହାୟତା କରିବାର ପ୍ରକୃତ କାରଣ ହେଲା, ମାଞ୍ଚୁମାନଙ୍କଠାରୁ ବିଦ୍ରୋହୀମାନଙ୍କର ପ୍ରଚଣ୍ଡ ଶକ୍ତିଥିଲା ଓ ତାହାହିଁ ସେମାନଙ୍କୁ ସହାନୁଭୂତି ଓ ସକ୍ରିୟ ସହଯୋଗ ଆଣି ଦେଉଥିଲା ।''

ଏହି ଯୁଦ୍ଧରେ ଇଂରାଜି ବିଦ୍ୱେଷ ଓ ସ୍ୱଦେଶ ସ୍ୱାଧିନତା କାରଣରୁ ଭାରତୀୟ ସୈନ୍ୟମାନେ ଚୀନାମାଟିରେ ସେଠାର ସ୍ୱଦେଶୀ ବିଦ୍ରୋହୀ ମାନଙ୍କ ସହିତ କାନ୍ଧ ମିଳାଇ ସେମାନଙ୍କର ସ୍ୱାଧିନତା ପାଇଁ ସଂଗ୍ରାମ କରିଥିଲେ ।



# ଉପସଂହାର

ଇଷ୍ଟଇଣ୍ଡିଆ କମ୍ପାନୀ ଭାରତ ଶାସନରେ ଅନୁସୃତ ନୀତି ଓ ତାହାର ଫଳାଫଳ ସ୍ୱରୂପ ୧୮୫୭ର ଗଣବିଦ୍ରୋହ ବିଷୟରେ ପୂର୍ବ ଅଧ୍ୟାୟମାନଙ୍କରେ ସୁବିସ୍ତୃତ ଆଲୋଚନା କରାଯାଇଛି । ବର୍ତ୍ତମାନ ବିଦ୍ରୋହ ପ୍ରଶମନ ପରେ ଏହାର ପ୍ରଭାବ କିଭଳି ଶାସକ ଓ ଶାସିତଙ୍କ ଉପରେ ପଡ଼ିଥିଲା ତାହା ଆମର ଆଲୋଚ୍ୟ ବିଷୟ ।

ଯଦିଚ ଦୁଇବର୍ଷ ମଧ୍ୟରେ ବିଦ୍ରୋହ ସମ୍ପୂର୍ଣ୍ଣ ଭାବରେ ଦମିତ ହେଲା ତଥାପି ଏହା ସୁଦୂରପ୍ରଭାବବିସ୍ତାରୀ ହେଲା । ୧୮୫୮ ମସିହାରେ ଇଂଲଣ୍ଡର ରାଣୀ ଭିକ୍ଟୋରିଆ, କମ୍ପାନୀ ହାତରୁ ଶାସନ ଭାର ଗ୍ରହଣ କଲେ । ରାଣୀ ତାଙ୍କର ଘୋଷଣାନାମାରେ ପ୍ରକାଶ କଲେ:-

"We hereby announce to the native princess of India that all treaties and engagements made with them by or under authority of the Hounourable East India company are by us accepted and will be scrupulously maintained and we look for by observance on their part........ We shall respect the rights, dignity and honour of native princes as our own...."

''ଆମ୍ଭେ ଏତଦ୍ୱାରା ଭାରତର ରାଜନ୍ୟବର୍ଗଙ୍କୁ ଘୋଷଣା କରୁଅଛୁ ଯେ ଇଷ୍ଟଇଣ୍ଡିଆ କମ୍ପାନୀର ସେମାନଙ୍କ ସହିତ ହୋଇଥିବା ବା କମ୍ପାନୀର ଅଧିକାର ପ୍ରାପ୍ତ ପ୍ରତିନିଧିଙ୍କ ଦ୍ୱାରା ହୋଇଥିବା ସମସ୍ତ ଚୁକ୍ତିନାମା ଓ ପ୍ରତିଶ୍ରୁତି ଆମ୍ଭ ଦ୍ୱାରା ଗୃହୀତ ହେଲା ଏବଂ ତାହା ସତର୍କତାର ସହିତ ରକ୍ଷା କରାଯିବ ଏବଂ ଆମ୍ଭେ ତାହାର ପାଳନ ଦିଗରେ ଦୃଷ୍ଟି ଦେଉଅଛୁ । ଆମ୍ଭେ ଦେଶୀୟ ରାଜନ୍ୟବର୍ଗଙ୍କର ଅଧିକାର, ମର୍ଯ୍ୟାଦା ଓ ସମ୍ମାନକୁ ଆମ୍ଭ ନିଜର ବୋଲି ମନେ କରିବୁ ।''

୧୮୫୭ର ବିଦ୍ରୋହ ଏକ ସମନ୍ୱିତ-ଶ୍ରେଣୀ ବିଦ୍ରୋହ ଥିଲା । ବିଦ୍ରୋହ ପରେ ଇଂରାଜିମାନେ ଅନୁଭବ କଲେ ଯେ ଭାରତୀୟ ସମାଜର ଉଚ୍ଚବର୍ଗୀୟ ଓ ନେତୃ ସ୍ଥାନୀୟ ବ୍ୟକ୍ତିମାନେ ସେମାନଙ୍କଠାରୁ ଅଲଗା ରହିଲେ ଭାରତକୁ ଶାସନ କରିବା ଭବିଷ୍ୟତରେ ଅସମ୍ଭବ ହୋଇ ଉଠିବାର ପୂର୍ଣ୍ଣ ସମ୍ଭାବନା ରହିଛି । ଏଣୁ ସେମାନେ ରାଜା, ଜମିଦାର

ଆଦିମାନଙ୍କର ଜାଗିରି, ପଦବୀ ସମ୍ମାନ ଆଦିକୁ ସ୍ୱୀକୃତି ଦେବା ସଙ୍ଗେ ସଙ୍ଗେ ଧର୍ମ ଓ ପରମ୍ପରା ଆଦିରେ ପୂର୍ଣ୍ଣ ସ୍ୱାଧିନତାକୁ ସ୍ୱୀକୃତି ଦେଲେ । ଘୋଷଣାନାମା ଅନୁସାରେ:-

"We know and respect, the feeling of attachment with which the natives of India regard the lands inherited by them from their ancestors, and we desire to protect them in all rights connected therewith......and in framing and administering the law, due regard (will) be paid to the ancient rights, usages and customs of India."

"ଆମ୍ଭେ, ଦେଶୀୟ ରାଜନ୍ୟବର୍ଗଙ୍କର, ପ୍ରାଚୀନପିତୃପୁରୁଷ ପରମ୍ପରାରେ ପ୍ରାପ୍ତ ଭୂଖଣ୍ଡ ପ୍ରତି କିପରି ଅନୁରକ୍ତି ଅଛି ତାହା ଜାଣୁ ଓ ସମ୍ମାନ କରୁ, ଏବଂ ଆମେ ତାହା ଓ ତତସଂଲଗ୍ନ ସମସ୍ତ ଅଧିକାରକୁ ରକ୍ଷା କରିବାକୁ ଇଚ୍ଛାକରୁ.... ଏବଂ ଆଇନର ଗଠନ ଓ ପ୍ରୟୋଗରେ ଭାରତବର୍ଷର ପ୍ରାଚୀନ ଅଧିକାର, ଦେଶାଚାର ଓ ପ୍ରଚଳିତ ରୀତି ନୀତିକୁ ବିଶେଷ ଗୁରୁତ୍ୱ ଦିଆଯିବ ।"

ରାଜା, ଜମିଦାର ଗୋଷ୍ଠୀଙ୍କର ସ୍ୱାର୍ଥରକ୍ଷାକରି ସେମାନଙ୍କୁ ଅନୁଗତ କରିବା ସଙ୍ଗେ ସଙ୍ଗେ ସର୍ବୋପରି ଭାରତୀୟ ଧର୍ମ, ପରମ୍ପରା, ପ୍ରଥା, ଚଳଣି ଆଦିର ସ୍ୱାଧୀନତାରେ ହସ୍ତକ୍ଷେପ ନକରି ଅପରପକ୍ଷରେ ତହିଁର ସୁରକ୍ଷାର ପ୍ରିତଶ୍ରୁତି ଦେଇ ସାଧାରଣ ଜନତାଙ୍କର ସନ୍ତୁଷ୍ଟିକରଣ କରାଗଲା । ଅପ୍ରେଲ ୩୦ତାରିଖରେ କ୍ୟାନିଂ ଲେଖିଥିଲେ:-

"The safety of our rule is increased and not dimimished by the maintenance of native chiefs well affected to us."

"ଆମ୍ଭ ସହିତ ସମ୍ବନ୍ଧିତ ଦେଶୀୟ ରାଜନ୍ୟବର୍ଗଙ୍କର ରକ୍ଷଣାବେକ୍ଷଣ ଦ୍ୱାରା ଆମ୍ଭର ଶାସନର ନିରାପତ୍ତା କମିଯିବା ପରିବର୍ତ୍ତେ ବୃଦ୍ଧି ପାଇଲା ।"

ଏହି ନୀତି ଅନୁସରଣ କରି ଅବଧରେ ଦୁଇ ତୃତୀୟାଂଶ ତାଲୁକ୍‌ଦାରଙ୍କୁ ସେମାନଙ୍କର ଜାଗିର ଫେରାଇଦିଆଗଲା । ଅନ୍ୟାନ୍ୟ ସ୍ଥାନ ମାନଙ୍କରେ ମଧ କ୍ରମେ ସେହି ନୀତି ଅନୁସୃତ ହେଲା । ଉପରୋକ୍ତ ଘୋଷଣାନାମା ଗୁଡ଼ିକ ଇଂରାଜିମାନଙ୍କର ସମାଜ ବିଭେଦକ ନୀତିର ପରିଚୟ ଦିଏ । ସମାଜରେ ଐକ୍ୟ ପ୍ରତିଷ୍ଠିତ ହେଲେ ଇଂରାଜିଙ୍କର ଶାସନ କରିବା ଅସମ୍ଭବ ଜାଣି ଏହି ନୀତି ପ୍ରୟୋଗ କରାଯାଇଥିଲା ।

ଉପରୋକ୍ତ ଘୋଷଣାନାମା କାର୍ଯ୍ୟକାରୀ ହେବା ଫଳରେ ରାଜା, ଜମିଦାର, ତାଲୁକଦାର ଆଦିମାନଙ୍କୁ ଇଂରାଜି ଅନୁଗତ କରି ପ୍ରଜାମାନଙ୍କର ଭାଗ୍ୟ ସମ୍ପୂର୍ଣ୍ଣ ଭାବରେ ସେମାନଙ୍କ ଉପରେ ଛାଡ଼ିଦିଆଗଲା । ଏହାର ପ୍ରଭାବ ଗ୍ରାମାଞ୍ଚଳମାନଙ୍କରେ ବିଶେଷ ଭାବରେ ଅନୁଭୂତ ହେଲା ।

ପୂର୍ବରୁ ଗ୍ରାମବାସୀମାନେ ଜମିଦାରଙ୍କୁ ତାଙ୍କର ପାରମ୍ପାରିକ ନେତା ରୂପେ ମାନିଆସୁଥିଲେ । ଗ୍ରାମର ସାର୍ବଜନୀନ ସ୍ୱାର୍ଥ ପାଇଁ ତାଙ୍କ ନେତୃତ୍ୱରେ ଗ୍ରାମବାସୀମାନେ ଐକ୍ୟବଦ୍ଧ ହୋଇ ରହିଆସିଥିଲେ । କମ୍ପାନୀ ରାଜତ୍ୱରେ ଶହ ଶହ ଜମିଦାର ମାନଙ୍କର ବିଲୋପକରଣ, ଏକ ନୂତନ ଜମିଦାର ଗୋଷ୍ଠୀ ଗଠନ କରିଥିଲା । ଅପରପକ୍ଷରେ ଏହି ଜମିଦାର ଗୋଷ୍ଠୀର ବହୁଳାଂଶ ବିଦ୍ରୋହ ସମୟରେ ପ୍ରଜାମାନଙ୍କ ସହିତ ବିଶ୍ୱାସଘାତକତା କରି ଇଂରାଜିମାନଙ୍କର ଅନୁଗତ ହୋଇଥିଲେ । ସେହିମାନେ ବର୍ତ୍ତମାନ ସମ୍ପୂର୍ଣ୍ଣ ଇଂରାଜି ଅନୁଗତ ହେବା ଫଳରେ ପ୍ରଜାମାନଙ୍କୁ ସନ୍ଦେହ ଚକ୍ଷୁରେ ଦେଖିବାକୁ ଲାଗିଲେ । ଇଂରାଜି ତୁଷ୍ଟିକରଣ ପାଇଁ ଅତ୍ୟାଚାର ମଧ କରିବାକୁ ଲାଗିଲେ । ଶୋଷିତ, ଲାଞ୍ଛିତ, ଦାରିଦ୍ର୍ୟପୀଡ଼ିତ, ମୁମୂର୍ଷୁ ସାଧାରଣ ଗ୍ରାମବାସୀମାନଙ୍କ ପାଇଁ କୌଣସି ଆଇନ ନଥିଲା ବା ରକ୍ଷାକର୍ତ୍ତା ନଥିଲେ । କ୍ରମାଗତ ଦୁର୍ଭିକ୍ଷ ଫଳରେ ଇଂରାଜିଧାର୍ଯ୍ୟ ଟଙ୍କା ଆକାରରେ କର ଦେଇ ନପାରି, ସାଧାରଣ ପ୍ରଜା ଭୂମି ହରାଇ କଙ୍କାଳସାର ହୋଇ ଏଣେ ତେଣେ ଘୁରି ବୁଲି ଅକାଳରେ ପ୍ରାଣ ହରାଇଲେ ମଧ କେହି ଦେଖିବାକୁ ନଥିଲେ ସ୍ୱଦେଶରେ ସେମାନେ ପଶୁତୁଲ୍ୟ ବଞ୍ଚି ରହିଥିଲେ । ଫଳରେ ସମାଜରେ ଶ୍ରେଣୀ ସଂଘର୍ଷ ଜାତ ହେଲା ।

ଶହ ଶହ ବର୍ଷ ଧରି ରହିଆସିଥିବା ସୁଦୃଢ଼ ସାମାଜିକ ସଂଗଠନ, ଏହି ଶ୍ରେଣୀ ସଂଘର୍ଷରେ ଖଣ୍ଡ ବିଖଣ୍ଡିତ ହୋଇଗଲା ।ଅବଶ୍ୟ ପରେ କୃଷକ ଆନ୍ଦୋଳନ ଫଳରେ ଚାଷୀମାନଙ୍କୁ କିଛି ଅଧିକାର ପ୍ରଦାନ କରାଯାଇଥିଲା । ଏହାର ପରବର୍ତ୍ତୀ କାଳରେ ସ୍ୱାଧିନତା ସଂଗ୍ରାମର ବିଭିନ୍ନ ପର୍ଯ୍ୟାୟରେ କୃଷକର ଅଧିକାର ଉପରେ ବହୁ ଗୁରୁତ୍ୱ ପ୍ରଦାନ କରାଯାଇଥିଲା । ପରବର୍ତ୍ତୀ ସ୍ୱାଧିନତା ସଂଗ୍ରାମର ବିଭିନ୍ନ ପର୍ଯ୍ୟାୟରେ କୃଷକମାନେ ବହୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । କିନ୍ତୁ ସେ ଯାହା ହେଉନା କାହିଁକି ନିଜର ସ୍ୱାର୍ଥ ସିଦ୍ଧିପାଇଁ ଓ ଭାରତରେ ନିଜର ଶାସନ ଦୃଢ଼ ରଖିବା ପାଇଁ ଇଂରାଜି ସାମ୍ରାଜ୍ୟବାଦୀ ମାନେ ବିଦ୍ରୋହପରେ ପରେ, ଜମିଦାର, ରାଜା ଆଦି ଶ୍ରେଣୀ ଲୋକଙ୍କ ସହ ବୁଝାମଣା ରଖିଲେ । ଫଳରେ ରାଜା ଜମିଦାର ମାନେ ପ୍ରଜା ମାନଙ୍କ ଠାରୁ ଅଲଗା

ହୋଇଯାଇ ଇଂରାଜି ମାନଙ୍କର କ୍ରୀଡ଼ନକରେ ପରିଣତ ହେଲେ । ଏହା ଇଂରାଜି ମାନଙ୍କର ସମାଜ ବିଭେଦକ ନୀତି ଥିଲା ।

ବିଦ୍ରୋହରେ ପ୍ରତ୍ୟକ୍ଷ ସଂଗ୍ରାମରେ ଭାରତୀୟ ସିପାହୀମାନେ ଭାଗ ନେଇଥିଲେ । ଇଂରାଜି ସରକାର ଏମାନଙ୍କ ଉପରୁ ଆସ୍ଥା ହରାଇଥିଲେ ଏବଂ ଏମାନଙ୍କୁ ଭାରତରେ ରଖିବାକୁ ନିରାପଦ ଅନୁଭବ କରୁ ନଥିଲେ । ଅପରପକ୍ଷରେ ଭାରତୀୟ ସିପାହୀଙ୍କର ବୀରତ୍ୱ, ତ୍ୟାଗ ହିଁ ସେମାନଙ୍କୁ ଅତୀତରେ କ୍ରିମିଆ ପରି ଯୁଦ୍ଧମାନଙ୍କରେ ବିଜୟୀ କରିଥିଲା । ଏଣୁ ସେମାନେ ସିପାହୀମାନଙ୍କର ଏହି ଶୌର୍ଯ୍ୟ, ବୀର୍ଯ୍ୟ ଓ ପରାକ୍ରମକୁ ନିଜର ସ୍ୱାର୍ଥସିଦ୍ଧି ନିମନ୍ତେ ନିୟୋଜିତ କରିବାକୁ ଚାହୁଁଥିଲେ । ୧୮୫୮ ମସିହାରେ ବସିଥିବା 'ପିଲ୍' କମିଶନ (Peal commission) ଦୁଇଲକ୍ଷ ସିପାହୀଙ୍କୁ ଛଟେଇ କରିବା ପାଇଁ ପରାମର୍ଶ ଦେଲେ । ୨୧ବର୍ଷ ପରେ ଅନ୍ୟ ଏକ ସାମରିକ କମିଶନ ଭାରତରେ ଇଂରାଜି ବାହିନୀଙ୍କର ସଂଖ୍ୟା ବୃଦ୍ଧି କରି କମାଣ ବାହିନୀକୁ ଭାରତୀୟଙ୍କ ହାତରୁ ଛଡ଼ାଇନେଇ ଇଂରାଜିମାନଙ୍କର ପୂର୍ଣ୍ଣ ଅକ୍ତିଆରରେ ରଖିବା ପାଇଁ ପରାମର୍ଶ ଦେଇଥିଲେ । ସେହିପରି କ୍ୟାନିଂଙ୍କ ନିର୍ଦ୍ଦେଶରେ ଶସ୍ତ୍ର ଗୋଳାବାରୁଦ ଭଣ୍ଡାର ଓ କାରଖାନା, ସାମରିକ ଗୁରୁତ୍ୱପୂର୍ଣ୍ଣ ଘାଟୀ, ଗୁରୁତ୍ୱପୂର୍ଣ୍ଣ ଦୁର୍ଗ ଆଦିକୁ ରକ୍ଷା କରିବା ପାଇଁ ଦେଶୀ ସୈନ୍ୟଙ୍କ ବଦଳରେ କେବଳ ଇଂରାଜି ସୈନ୍ୟଙ୍କୁ ମୁତୟନ କରାଗଲା ।

ଭାରତରେ ଇଂରାଜିସୈନ୍ୟଙ୍କ ସଂଖ୍ୟା ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଭାରତୀୟ ସିପାହୀମାନଙ୍କୁ ବିଦେଶରେ ଇଂରାଜିମାନଙ୍କ ତରଫରୁ ଲଢ଼ିବା ପାଇଁ ତାଲିମ ଦିଆଯାଇ ସେମାନଙ୍କୁ ଏସିଆ ଓ ଆଫ୍ରିକାର ଇଂରାଜି ଉପନିବେଶରେ ଚାଲିଥିବା ଯୁଦ୍ଧ ଗୁଡ଼ିକରେ ନିଯୁକ୍ତି ଦିଆଗଲା । ସାମରିକ ବିଭାଗରେ ଉଚ୍ଚପଦବୀ ଗୁଡ଼ିକରେ ଭାରତୀୟ ମାନଙ୍କର ନିଯୁକ୍ତି ବନ୍ଦ କରାଗଲା । ସେମାନଙ୍କର ନିଯୁକ୍ତି କେବଳ ସାମରିକ ବିଭାଗର କିରାଣୀ ପଦବୀ ମଧ୍ୟରେ ସୀମାବଦ୍ଧ ରହିଲା । କିନ୍ତୁ ଏସମସ୍ତ ପ୍ରତିରୋଧ ମୂଳକ ବ୍ୟବସ୍ଥା ସତ୍ତ୍ୱେ ଭାରତୀୟ ସିପାହୀମାନଙ୍କ ମଧ୍ୟରେ ୧୮୫୭ର ସ୍ଫୁତି ସମ୍ପୂର୍ଣ୍ଣ ଭାବରେ ଅନ୍ତର୍ହିତ ହୋଇ ନଥିଲା । ସମୟ ସମୟରେ ଏହାର ସ୍ଫୁଲିଙ୍ଗ ପ୍ରକାଶିତ ହେଉଥିଲା ।

ଉଦାହରଣ ସ୍ୱରୂପ ୧୯୩୦ ମସିହାରେ ସ୍ୱାଧୀନତା ସଂଗ୍ରାମ ଚାଲିଥିବା ବେଳେ ଗଡ଼୍ୱାଲ ସୈନ୍ୟ ବାହିନୀ ପେଶୱାରର ଅନ୍ଦୋଳନକାରୀମାନଙ୍କୁ ଗୁଳିକରିବାକୁ

ମନା କରିଦେଇଥିଲେ । ସେହିପରି ୧୯୪୬ ମସିହା ଫେବୃଆରୀ ୧୮ତାରିଖ ଦିନ ଇଂରାଜି ଅଧିନସ୍ଥ ଭାରତୀୟ ନୌସେନା ବିଦ୍ରୋହ କରିଥିଲେ । ଫଳରେ ତତ୍‌ପରଦିନ ଇଂଲାଣ୍ଡର ପ୍ରଧାନମନ୍ତ୍ରୀ ଭାରତର ସ୍ୱାଧୀନତା ପାଇଁ ବୁଝାମଣା କରିବାକୁ ଭାରତକୁ ଏକ କ୍ୟାବିନେଟ୍ ମିଶନ୍ ପଠାଇଥିଲେ ।

ବିଦ୍ରୋହ ପରେ ରାଣୀଙ୍କର ଘୋଷଣାନାମା ଫଳରେ ଇଂରାଜିମାନେ ଭାରତରେ ସାମ୍ରାଜ୍ୟ ଅଭିବୃଦ୍ଧିର ମନୋବୃତ୍ତି ତ୍ୟାଗକରି ବିଶେଷ ଭାବରେ ବାଣିଜ୍ୟିକ କାରବାର ଦିଗରେ ଧ୍ୟାନ ଦେଲେ । ଦେଖିବାକୁ ଗଲେ ସେମାନେ ସମଗ୍ର ଭାରତକୁ ନିଜର ଅଧିକାରଭୁକ୍ତ କରି ସାରିଥିଲେ । ଏଣୁ ବିଦ୍ରୋହ ପରର ସମୟରେ ବାଣିଜ୍ୟର ଦୃଢ଼ ଅଭିବୃଦ୍ଧି ଘଟିଥିଲା । ସାର୍‌ଜନ୍ ସିଲି (Sir John Seely) ତାଙ୍କର .ଦି ଏକ୍ସପାନ୍‌ସନ୍ ଅଫ ଇଂଲାଣ୍ଡ. (The expansion of England)ନାମକ ପୁସ୍ତକରେ (Sthed 1912, p.313) ଯଥାର୍ଥରେ ଲେଖିଥିଲେ:-

"About the time of the Mutiny, annexation almost ceased and yet the quarter of the century in which no conquest have been made has been the period of rapid growth in trade."

''ବିଦ୍ରୋହ ସମୟକୁ ରାଜ୍ୟ ମିଶ୍ରଣ ପ୍ରାୟ ବନ୍ଦ ହୋଇଯାଇଥିଲା ଏବଂ ଏହାସତ୍ତ୍ୱେ ଶତାବ୍ଦୀର ଏହି ଏକ ଚତୁର୍ଥାଂଶ ଭାଗରେ କୌଣସି ରାଜ୍ୟଜୟ ନ ହୋଇଥିବା ସ୍ଥଳେ ତାହା ବାଣିଜ୍ୟର ଦ୍ରୁତବିକାଶର ସମୟ ଥିଲା ।''

ରେଳପଥର କ୍ରମବିକାଶ ହେତୁ ଦେଶର ଆଭ୍ୟନ୍ତରୀଣ ସ୍ଥାନମାନଙ୍କରେ ମଧ୍ୟ ଇଂରାଜିମାନେ ବାଣିଜ୍ୟିକ ସଂଯୋଗ ସ୍ଥାପନ କରିବାକୁ ସକ୍ଷମ ହେବା ଫଳରେ ସେମାନଙ୍କର ବଜାରର ଯଥେଷ୍ଟ ଅଭିବୃଦ୍ଧି ଘଟିଲା । ଏତଦ୍‌ବ୍ୟତୀତ ରେଳ, ଜାହାଜ, କେନାଲ ଆଦି ସାହାଯ୍ୟରେ ଦେଶରୁ ପ୍ରଚୁର କଞ୍ଚାମାଲ ଇଂଲଣ୍ଡକୁ ରପ୍ତାନୀ କରାଗଲା । ଭାରତର ଅର୍ଥନୀତି ଇଷ୍ଟଇଣ୍ଡିଆ କମ୍ପାନୀ ହାତରୁ ଯାଇ ଇଂଲଣ୍ଡର ଶିଳ୍ପପତି ଗୋଷ୍ଠୀଙ୍କ ହାତରେ ପଡ଼ିଲା । ସେମାନେ ଭାରତରୁ ଶସ୍ତାରେ କଞ୍ଚାମାଲ କିଣି ନେଇ ସେଥିରୁ ଆବଶ୍ୟକୀୟ ସାମଗ୍ରୀମାନ ପ୍ରସ୍ତୁତ କରି ତାହା ଭାରତୀୟ ବଜାରରେ ଚଢ଼ା ଦରରେ ବିକିଲେ । ଏହାଦ୍ୱାରା ସାରାଦେଶର ଜନତାଙ୍କୁ ସିଧାସଳଖ ଭାବରେ ଅର୍ଥନୈତିକ ଶୋଷଣ

କରାଗଲା । ଭାରତୀୟ ବଜାର ଇଂଲଣ୍ଡର ଶିଳ୍ପପତି ମାନଙ୍କର କବଳିତ ହେଲା । ଏତଦ୍ୱାରା ପାରମ୍ପରିକ ଭାରତୀୟ ହସ୍ତଶିଳ୍ପ ଓ କୁଟୀରଶିଳ୍ପ ଭୀଷଣଭାବରେ କ୍ଷତିଗ୍ରସ୍ତ ହେଲା । ଇଂରାଜିମାନେ ଉଦ୍ଦେଶ୍ୟମୂଳକ ଭାବରେ ଏହାକୁ ଧ୍ୱଂସକରି କ୍ଷୟମାଣ ଅବସ୍ଥାକୁ ନେଇଆସିଲେ । ଦେଶରେ ଇଂରାଜିମାନେ ଆଧୁନିକ କଳକାରଖାନାମାନ ସ୍ଥାପନ କଲେ । ସେଥିରେ ବହୁ କୁଶଳୀ ଓ ଅଣକୁଶଳୀ ଶ୍ରମିକ ଭାବରେ ଭାରତୀୟମାନେ ନିଯୁକ୍ତ ହେଲେ । ଏତଦ୍ୱାରା ହଜାର ହଜାର ବର୍ଷ ଧରି ରହିଆସିଥିବା ଜାତିଭିତ୍ତିକ ବୃତ୍ତିରେ ଭାରସାମ୍ୟ ବ୍ୟାହତହେବା ସଙ୍ଗେ ସଙ୍ଗେ ନୂତନ ଶ୍ରେଣୀର ଉଦ୍ଭବ ହେଲା । କିନ୍ତୁ ଭାରତର କିଛି ଧନୀକ ଗୋଷ୍ଠୀ ମଧ କଳକାରଖାନା ବସାଇବାକୁ ଆରମ୍ଭ କଲେ ।

ଏହି ନୂତନ ଭାରତୀୟ ଶିଳ୍ପପତି ଗୋଷ୍ଠୀ ଇଂରାଜିଙ୍କ ବିରୁଦ୍ଧରେ ଏକପ୍ରକାର ଅର୍ଥନୈତିକ ସଂଗ୍ରାମ ଆରମ୍ଭ କଲେ । ଏକ ପକ୍ଷରେ ଅନ୍ୟାୟ, ଅତ୍ୟାଚାର ଓ ଦାରିଦ୍ର୍ୟ ପୀଡ଼ିତ ଗ୍ରାମାଞ୍ଚଳରେ ଜନତା ଅପରପକ୍ଷରେ ଅର୍ଥନୈତିକ ଓ ବାଣିଜ୍ୟିକ ସ୍ୱାଧିନତା ପାଇଁ ସଂଗ୍ରାମ କରୁଥିବା ଭାରତୀୟ ଶିଳ୍ପପତି ଗୋଷ୍ଠୀ, ଏହିପରି ଭାବରେ ଦୁଇଟି ଇଂରାଜି ବିରୋଧ ସଂଗ୍ରାମୀ ଶକ୍ତିର ଉଦ୍ଭବ ହୋଇ ପରବର୍ତ୍ତୀ ସ୍ୱାଧିନତା ଆନ୍ଦୋଳନ କାଳରେ ବିକଶିତ ହେଇଥିଲା । ଇଂରାଜି ସରକାର ନିଜେ ଭାରତକୁ ଶାସନ କରୁଥିବା ଦୃଷ୍ଟିରୁ ସମଗ୍ରଦେଶରେ ଥିବା ବିରାଟ ଶାସନକଳରେ ବହୁ ଭାରତୀୟଙ୍କର ନିଯୁକ୍ତିର ଆବଶ୍ୟକତା ପଡ଼ିଲା । ପୂର୍ବରୁ ଇଂରାଜି ଶିକ୍ଷାର ପ୍ରଚ଼ଳନ ଆରମ୍ଭ ହୋଇଥିଲା । ସେଥିର ଅଭିବୃଦ୍ଧି ଓ ପ୍ରସାର କରାଇ ବିଦ୍ୟାଳୟ, ମହାବିଦ୍ୟାଳୟମାନ ସ୍ଥାପନ କରି ସେଗୁଡ଼ିକୁ ପାଶ୍ଚାତୀକରଣର କଳ ରୂପେ ଗଠନ କରାଗଲା । ପାଶ୍ଚାତ୍ୟ ଶିକ୍ଷାରେ ନିଯୁକ୍ତିର ସୁବନ୍ଦୋବସ୍ତ ଥିବାରୁ ଭାରତର ବିଶେଷଭାବରେ ମଧ୍ୟ ବିତ୍ତ ଶ୍ରେଣୀର ଲୋକମାନେ ଏହିଶିକ୍ଷା ଗ୍ରହଣ କରିବାକୁ ଆଗେଇ ଆସିଲେ । କୌଶଳ କ୍ରମେ ଏହି ଶିକ୍ଷା ମାଧମରେ ଭାରତରେ ସଂସ୍କୃତି, ଦର୍ଶନ, ପାରମ୍ପରା ଆଦିକୁ କୁସଂସ୍କାର ଓ ଅନ୍ଧ ବିଶ୍ୱାସ ରୂପେ ଅଭିହିତ କରାଯାଇ ପାଶ୍ଚାତ୍ୟ ଚ଼ିନ୍ତାଧାରା ତଥା ଚାଲିଚ଼ଳନର ଯଥାର୍ଥତା ଓ ମହନୀୟତା ସମ୍ବନ୍ଧରେ ମଧ ଶିକ୍ଷାମାନ ଦିଆଗଲା । ଇଂରାଜିମାନଙ୍କର ବିଦ୍ରୋହ ପୂର୍ବର ଶିକ୍ଷାରେ ପାଶ୍ଚାତୀକରଣ ସହିତ ଖ୍ରୀଷ୍ଟିଆନ ଧର୍ମରେ ଧର୍ମାନ୍ତରିତ କରି ସମଗ୍ର ଭାରତକୁ ଅଗଷ୍ଟାଇନ୍‌ଙ୍କର କଳ୍ପନା ଅନୁସାରେ ଖ୍ରୀଷ୍ଟିଆନ ରାଷ୍ଟ୍ରରେ ପରିଣତ କରିବା ଉଦ୍ଦେଶ୍ୟ ନିହିତ ଥିଲା ।

କିନ୍ତୁ ୧୮୫୭ର ବିଦ୍ରୋହ ସେମାନଙ୍କର ଏହି ଆଶା ଓ ଉଦ୍ଦେଶ୍ୟକୁ ଧୂଳିସାତ୍ କଲା । ମିଶନାରୀମାନେ ପୂର୍ବପରି ଚର୍ଚ୍ଚ ସ୍ଥାପନ ଓ ଧର୍ମାନ୍ତରୀ କରଣ କରିଚାଲିଲେ ମଧ୍ୟ ଶିକ୍ଷାନୁଷ୍ଠାନମାନଙ୍କରେ ଶିକ୍ଷାଦାନ ପ୍ରଣାଳୀରେ ଖ୍ରୀଷ୍ଟିଆନକରଣ ନୀତି ପରିବର୍ତ୍ତେ ସ୍ୱଦେଶ ସଂସ୍କୃତି ପ୍ରତି ସନ୍ଦେହ ଅବିଶ୍ୱାସ ଓ ଅଶ୍ରଦ୍ଧା ସୃଷ୍ଟିକରି ପାଶ୍ଚାତ୍ୟ ଚିନ୍ତା ରୀତିନୀତି ପ୍ରତି ଶ୍ରଦ୍ଧା ଓ ରୁଚି ଜାଗ୍ରତ କରାଗଲା । ବିଦ୍ରୋହ ପରେ ପରେ ଆବଶ୍ୟକତା ଦୃଷ୍ଟିରୁ ଏହି ଧରଣର ଶିକ୍ଷାର ଯଥେଷ୍ଟ ଅଭିବୃଦ୍ଧି କରାଯାଇ ଏହି ଇଂରାଜି ଶିକ୍ଷାସୃଷ୍ଟ, ଅନୁଗତ, ମଧ୍ୟବିତ୍ତ ଗୋଷ୍ଠୀକୁ ସରକାରୀ କଳରେ ତଥା ବିଭିନ୍ନ କମ୍ପାନୀ, ଫାର୍ମ ଆଦିରେ ନିଯୁକ୍ତି ଦିଆଗଲା । ଇଂରାଜିମାନେ ବିଶେଷତଃ ମୁସଲମାନବିଦ୍ୱେଷୀ ଥିଲେ । କାରଣ ବିଦ୍ରୋହ ସମୟରେ ମୁସଲମାନ ମାନଙ୍କର ନିର୍ଦ୍ଦୟତା ତଥା ପାରସ୍ୟ, ତୁର୍କୀ ଆଦି ବିଭିନ୍ନ ମୁସଲମାନ ରାଷ୍ଟ୍ର ସହିତ ପୂର୍ବ ଶତ୍ରୁତା ହିଁ ଇଂରାଜିମାନଙ୍କୁ ମୁସଲମାନ ବିଦ୍ୱେଷୀ କରିଦେଇଥିଲା । ଏଣୁ ସେମାନେ ହିନ୍ଦୁଙ୍କ ଅପେକ୍ଷା ମୁସଲମାନ ମାନଙ୍କୁ ବିଶେଷ ଭାବରେ ସନ୍ଦେହ ଚକ୍ଷୁରେ ଦେଖୁଥିଲେ । ଏହି ହେତୁ ମୁସଲମାନମାନଙ୍କୁ ଶାସନ କଳ ତଥା କମ୍ପାନୀମାନଙ୍କରେ କମ୍ ସଂଖ୍ୟାରେ ନିଯୁକ୍ତି ଦିଆଗଲା । ଅପରପକ୍ଷରେ ସେମାନେ ହିନ୍ଦୁମାନଙ୍କୁ ବହୁ ସଂଖ୍ୟାରେ ନିଯୁକ୍ତି ଦେଲେ । ଏହା ପଛରେ ସେମାନେ ହିନ୍ଦୁ ଓ ମୁସଲମାନ ସମାଜରେ ରହିଆସିଥିବା ଅର୍ଥନୈତିକ ଭାରସାମ୍ୟ ବ୍ୟାହତ କରି ମୁସଲମାନମାନଙ୍କୁ ଏକ ଅର୍ଥନୈତିକ ଦୁର୍ବଳ ଗୋଷ୍ଠୀକରି ରଖିଲେ । ଦେଖିବାକୁଗଲେ ସେତେବେଳେ ସରକାରୀ କଳରେ ଭାରତୀୟମାନଙ୍କ ମଧ୍ୟରେ ୧/୨୩ ଅଂଶ ମାତ୍ର ମୁସଲମାନ ନିଯୁକ୍ତି ପାଇଥିଲେ । ଇଂରାଜିମାନେ ମୁସଲମାନମାନଙ୍କୁ ଏକ ଦୁର୍ବଳ ଦରିଦ୍ର ଗୋଷ୍ଠୀରେ ପରିଣତ କରି କ୍ରମେ କୌଶଳରେ ସେମାନଙ୍କ ମନରେ ହିନ୍ଦୁମାନଙ୍କ ପ୍ରତି ସନ୍ଦେହ ଓ ଅବିଶ୍ୱାସର ସୃଷ୍ଟି କରାଉଥିଲେ । ଏହିପରି ଭାବରେ ମହାଭାରତୀୟ ମହାସମାଜକୁ ସେମାନେ ବିଭିନ୍ନ ପ୍ରକାରେ ଭେଦ ନୀତି ପ୍ରୟୋଗ କରି-ଖଣ୍ଡ ବିଖଣ୍ଡିତ କରି ଶାସନ କରିବାକୁ ଲାଗିଲେ । କହିବାକୁ ଗଲେ ବିଦ୍ରୋହ ପରେ ଇଂରାଜିମାନେ ଭାରତୀୟ ସମାଜର ପ୍ରତ୍ୟେକ ସ୍ତରକୁ ନିଜର ସ୍ୱାର୍ଥସିଦ୍ଧିପାଇଁ ନିୟୋଜିତ କଲେ । ପ୍ରଥମତଃ ଦେଶୀୟରାଜା ଜମିଦାର ମାନେ ସେମାନଙ୍କର ସମ୍ପୂର୍ଣ୍ଣ ଅନୁଗତ ହୋଇ ଆଭ୍ୟନ୍ତରୀଣ ଶାସନରେ ସହାୟତା କଲେ । ଦ୍ୱିତୀୟତଃ ଭାରତୀୟ ସୈନ୍ୟମାନେ ଇଂରାଜିମାନଙ୍କ ପାଇଁ ବିଦେଶ ଭୂମିରେ ଲଢ଼ାଇ କରି ନିଜ ଶୌର୍ଯ୍ୟ, ବୀର୍ଯ୍ୟ ଓ ପରାକ୍ରମରେ ଇଂରାଜିମାନଙ୍କୁ ଏସିଆ, ଆଫ୍ରିକା ପରି ମହାଦେଶମାନଙ୍କରେ ଅଜେୟ ଶକ୍ତି କରି ରଖିପାରିଥିଲେ । ତୃତୀୟତଃ ଭାରତୀୟ

ଶ୍ରମିକମାନଙ୍କୁ କଳକାରଖାନା ଫାର୍ମ ଆଦିରେ ନିଯୁକ୍ତି ଦେଇ ଶ୍ରମ ଶୋଷଣ କରି ଇଂରାଜିମାନେ ନିଜର ଅର୍ଥନୈତିକ ଅଭିବୃଦ୍ଧି କରିବାକୁ ଲାଗିଲେ ।

କିନ୍ତୁ ଇଂରାଜିମାନଙ୍କର ଏ ସମସ୍ତ ନୀତି ସତ୍ତ୍ୱେ ଭାରତୀୟମାନଙ୍କ ଅବଚେତନ ମନରେ ଜାତୀୟତାର ବହ୍ନି କୁହୁଳୁଥିଲା । ରାଣୀଙ୍କର ଘୋଷଣାନାମା ପରେ ପରେ ପାଶ୍ଚାତ୍ୟ ଶିକ୍ଷିତ ଭାରତୀୟ ଗୋଷ୍ଠୀ ଏଥିରେ ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ । ଏହାକୁ ସେମାନେ ଭାରତୀୟମାନଙ୍କ ପାଇଁ 'ମାଗ୍ନାକାର୍ଟା' ବୋଲି ଅଭିମତ ପ୍ରଦାନ କରୁଥିଲେ । କିନ୍ତୁ ରାଣୀଙ୍କର ଘୋଷଣାନାମାରେ ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ନିଯୁକ୍ତି ଦିଆଯିବା ବିଷୟ ଥିଲେ ମଧ ବାସ୍ତବ କ୍ଷେତ୍ରରେ ଶାସନ କଳରେ ଇଂରାଜିମାନେ ଜାତି, ଧର୍ମ, ବର୍ଣ୍ଣକୁ ଗୁରୁତ୍ୱ ଦେଲେ । ନିଯୁକ୍ତି ସମୟରେ ଏହା ବିଚାରକୁ ନିଆଯାଇ ସାଧାରଣତଃ ଉଚ୍ଚବର୍ଣ୍ଣର ହିନ୍ଦୁମାନଙ୍କୁ ନିଯୁକ୍ତି ଦିଆଯାଉଥିଲା । କିନ୍ତୁ ଏମାନଙ୍କୁ କୌଣସି ଉଚ୍ଚପଦବୀକୁ ପଦୋନ୍ନତି ଦିଆଯାଉନଥିଲା । ଏମାନେ ଶାସନ କଳର ସର୍ବନିମ୍ନ ସ୍ତରରେ ଥିଲେ ଏବଂ ଏମାନଙ୍କ ଉପରେ ପୂର୍ଣ୍ଣ ଆସ୍ଥା ରଖାଯାଉନଥିଲା । ପୁନଶ୍ଚ ଇଂରାଜି ଶାସନ କଳ ଦ୍ୱାରା ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ ବିଭିନ୍ନ ନୀତି ପ୍ରୟୋଗ କରି ସନ୍ଦେହ ଓ ଅବିଶ୍ୱାସ ସୃଷ୍ଟି କରାଗଲା ।

ଏହି ଶିକ୍ଷିତ ଗୋଷ୍ଠୀ ମାଗ୍ନାକାର୍ଟ ରୂପେ ମାନୁଥିବା ରାଣୀଙ୍କର ଘୋଷଣାନାମାର କାର୍ଯ୍ୟକାରିତା ଓ ତହିଁର ବିପରୀତ ପ୍ରଭାବ ଦେଖି ଘୋଷଣାନାମାର ଉଦ୍ଦେଶ୍ୟକୁ ସନ୍ଦେହ କରିବାକୁ ଲାଗିଲେ । ଅପରପକ୍ଷରେ ଗ୍ରାମାଞ୍ଚଳରେ ଦରିଦ୍ର କୃଷକ ମାନଙ୍କର ଶୋଷଣ, ଦାରିଦ୍ର୍ୟ ଓ ଦୂରବସ୍ଥା ମଧ ସେମାନେ ଉପଲବ୍ଧି କଲେ । ସେ ସମୟରେ ୧୬ଶ ଶତାବ୍ଦୀରୁ ବିକାଶ ଲାଭ କରିଥିବା ଗଣତାନ୍ତ୍ରିକ ଚିନ୍ତାଧାରା, ସମଗ୍ର ଇଉରୋପରେ ବିକଶିତ ହୋଇ ଉଠିଥିଲା । ପାଶ୍ଚାତ୍ୟ ଶିକ୍ଷିତ ଭାରତୀୟ ମାନେ ସେହି ଚେତନାରେ ପ୍ରଭାବିତ ହୋଇ ସ୍ୱଦେଶ ଅବସ୍ଥା ହୃଦୟଙ୍ଗମ କଲେ । ଉନବିଂଶ ଶତାବ୍ଦୀରେ ଇଉରୋପୀୟ ଚେତନାର ପ୍ରସାର ଫଳରେ ବହୁ ଇଉରୋପୀୟ ବିଦ୍ୱାନମାନେ ଭାରତ ଆସି ଏହି ଦେଶର ମହାନ୍ ପ୍ରାଚୀନ ଶାସ୍ତ୍ରମାନ ଉଦ୍ଧାର କରି ଅଧ୍ୟୟନ କରିବାକୁ ଲାଗିଲେ । ସେଥିରୁ ସେମାନେ ଯେଉଁ ମହାନ୍ ଜ୍ଞାନର ଆଲୋକ ଦର୍ଶନ କଲେ ତାହାକୁ ସେମାନଙ୍କ ଭାଷାରେ ବିଶ୍ୱବାସୀଙ୍କ ସମ୍ମୁଖରେ ଟେକି ଧରିଲେ । ଏଥିରେ ପାଶ୍ଚାତ୍ୟ ଶିକ୍ଷିତ ଭାରତୀୟ ଗୋଷ୍ଠୀ ବିଶେଷ ଭାବରେ ପ୍ରଭାବିତ ହେଲେ । ସେମାନେ ଯୁଗଯୁଗର ମହାଜାତୀୟ ଆତ୍ମବିସ୍ମୃତିରେ ସ୍ମୃତିର ସ୍ପନ୍ଦନ ଅନୁଭବ କଲେ । ଭାରତର ମାନସ ପୁରୁଷ ଜାଗିଉଠିଲା । କେବଳ

ଏତିକି ନୁହେଁ । ଏହି ଶିକ୍ଷିତ ଗୋଷ୍ଠୀ ମଧ୍ୟରୁ ଦଳେ ସଂସ୍କାର ବଶତଃ ଶାସ୍ତ୍ର ନିର୍ଦ୍ଦେଶିତ ସନାତନ ସତ୍ୟ ଦର୍ଶନ ପାଇଁ ସାଧନା ସିଦ୍ଧ ହେଲେ । ଭାରତୀୟ ପ୍ରଜ୍ଞା ପୁରୁଷ ଜନ୍ମଲାଭ ନେଲା । ଏସମସ୍ତ ଚେତନା ମିଶି ୧୮୫୭ରୁ କୁହୁଳୁଥିବା ଅଶାନ୍ତ ମହାଭାରତୀୟ ଚେତନାକୁ ଉଦ୍ଦୀପିତ କରି ଉଠିଲା । ଏହାର କ୍ରମ ବିକାଶର ନେତୃତ୍ୱ ନେଲେ ଏହି ପାଶ୍ଚାତ୍ୟ ଶିକ୍ଷିତ ଭାରତୀୟ ଗୋଷ୍ଠୀ । ଏମାନଙ୍କ ପଛରେ ଛିଡ଼ାହେଲେ, ଶୋଷିତ କୃଷକ, ଶ୍ରମିକ ତଥା ସାଧାରଣ ଜନତା, ଏମାନଙ୍କୁ ଅର୍ଥ ସାହାଯ୍ୟ ପାଇଁ ଆଗେଇ ଆସିଲେ ଭାରତୀୟ ଶିଳ୍ପପତି ଦଳ । ଆନ୍ଦୋଳନର କ୍ରମ ବିକାଶ ହେଲା । କିନ୍ତୁ ଏହି ଶିକ୍ଷିତ ନେତୃବର୍ଗ ପାଶ୍ଚାତ୍ୟ ଜଗତର ରାଜନୈତିକ ଚିନ୍ତାଧାରାରେ ପ୍ରଭାବିତ ହୋଇଥିଲେ । ଆନ୍ଦୋଳନ ବିଭିନ୍ନ ରୂପ ନେଲା । ହିଂସ୍ର, ଅହିଂସ, ସମ୍ମୁଖ, ପଶ୍ଚାତ୍ ଆଦି ବିଭିନ୍ନ ଧରଣର ସଂଗ୍ରାମରେ ପରିଶେଷରେ ଇଂରାଜିମାନେ ବ୍ୟତିବ୍ୟସ୍ତ ଓ ଭୟତ୍ରସ୍ତ ହୋଇ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ସ୍ୱାଧୀନତା ଘୋଷଣା କଲେ । କିନ୍ତୁ ଭାରତ ଦ୍ୱିଖଣ୍ଡିତ ହେଲା ଓ ଆମ ସଂସ୍କୃତି ଶତଧା ବିଭକ୍ତ ହେଲା ।

ସ୍ୱାଧିନ ଭାରତର ନୂତନ ସମ୍ବିଧାନ ଭାରତୀୟ ନେତାମାନଙ୍କ ଦ୍ୱାରା ରଚିତ ହେଲା । କିନ୍ତୁ ସଂଗ୍ରାମରେ ବ୍ୟସ୍ତ ରହି ସେ ନେତୃବୃନ୍ଦଙ୍କର ଭାରତପରି ଦେଶକୁ ଶାସନ କରିବାର କୌଣସି ନିର୍ଦ୍ଦିଷ୍ଟ ଯୋଜନା ନଥିଲା । ଏଣୁ ପୂର୍ବପରି ସେମାନେ ନିର୍ଦ୍ଦେଶ ପାଇଁ ପାଶ୍ଚାତ୍ୟ ଜଗତକୁ ଚାହିଁ ରହିଲେ । ସେମାନଙ୍କ ମଗଜରେ ବେନ୍‌ଥାମ୍, ଲକ୍, ମାର୍କ୍ସ ଆଦି ପାଶ୍ଚାତ୍ୟ ଦାର୍ଶନିକ ଗଣ ବସା ବାନ୍ଧି ରହିଥିଲେ । ଏମାନେ ପ୍ରାଚୀନ ଭାରତୀୟ ଗଣତନ୍ତ୍ରର ପରମ୍ପରା ବିସ୍ମୃତ ହୋଇଯାଇଥିଲେ । ଏଣୁ ସ୍ୱାଧୀନତା ପରେ ପରେ ଭାରତରେ ଯାହାଦୃଶ୍ୟ ହେଲା ତାହାକୁ ପାଶ୍ଚାତ୍ୟ ସଭ୍ୟତାର ଭାରତୀୟ ସଂସ୍କରଣ ବୋଲି କୁହାଯାଇପାରେ ।

ସମ୍ବିଧାନ ନିର୍ଦ୍ଦେଶ ପାଇଁ କନ୍‌ଷ୍ଟିଚ୍ୟୁଏଣ୍ଟ୍ ଆସେମ୍ବ୍ଲିର ସେକ୍ରେଟାରୀ ବାବୁରାଓଙ୍କୁ ପଠାଯାଇ ବିଦେଶର ବିଭିନ୍ନ ସମ୍ବିଧାନର ଢ଼ାଞ୍ଚା ଅଣାଗଲା । ବିଭିନ୍ନ ଦେଶର ସମ୍ବିଧାନ କୁଶଳୀମାନଙ୍କର ପରାମର୍ଶ ନିଆଗଲା ଏବଂ ଏହିପରି ଭାବରେ ନୂତନ ଭାରତୀୟ ସମ୍ବିଧାନର ଆୟମାରମ୍ଭ ହେଲା । ବିଦେଶୀୟ ସମ୍ବିଧାନ ସେହି ଦେଶର ସଭ୍ୟତା, ସଂସ୍କୃତି ଓ ଇତିହାସରେ ପରିପୁଷ୍ଟ ଓ ପରିବର୍ଦ୍ଧିତ ହୋଇଥିବା ଦୃଷ୍ଟିରୁ ସେହି ସେହି ଦେଶପାଇଁ ଉପଯୁକ୍ତ ଥିଲା । କିନ୍ତୁ ଭାରତମାଟିରେ ତାହା ଭାରତୀୟ ସଂସ୍କୃତି, ପରମ୍ପରା, ଇତିହାସ ଓ ଜୀବନଧାରା ସହିତ ଖାପ ଖାଇଲାନାହିଁ । ଏଣୁ ସ୍ଥଳବିଶେଷରେ ତାହାର ଅସଂଗତି

ପରିଦୃଷ୍ଟ ହେଲା । ଏଥିପାଇଁ ବାରମ୍ବାର ସମ୍ବିଧାନ ସଂଶୋଧିତ ହେବା ଫଳରେ ତାହା ଏକ ଅଦ୍ଭୁତ ନବଗୁଞ୍ଜର ରୂପ ନେଲା । ଏହି ସମ୍ବିଧାନ ଗଠନ ଓ ସଂଶୋଧନରେ ମାତିଥିବା ବ୍ୟକ୍ତିମାନେ ହେଲେ ଇଂରାଜି ପଢୁଆ ଗୋଷ୍ଠୀ । ଏଣୁ ଏହି ଅସଂଗତି ଦୂର କରିବାପାଇଁ ପାଶ୍ଚାତ୍ୟ ଚିନ୍ତାର ଆଶ୍ରୟ ନିଆଗଲା । ପୁନଶ୍ଚ ଏହି ସଂଶୋଧନରେ ବାଦ ବିସମ୍ବାଦ ଦେଖାଗଲା । ତାକୁ ନେଇ କମିଶନ ବସିଲା । କମିଶନର ମତାମତରୁ କ୍ରିୟା ପ୍ରତିକ୍ରିୟା ସୃଷ୍ଟିହୋଇ ହିଂସାକାଣ୍ଡମାନ ସଂଘଟିତ ହେଲା । ସମାଧାନ କରିବାକୁ ଯାଇ ନିରବିଚ୍ଛିନ୍ନ ସମସ୍ୟାର ସୃଷ୍ଟି କରାଗଲା । ପୁନଶ୍ଚ ସ୍ୱାଧୀନତା ପରେ ଭାରତ କମନୱେଲଥରେ ସଭ୍ୟ ହେବାଫଳରେ ଆମେମାନେ ପୂର୍ବପରି ଇଉରୋପୀୟଙ୍କ ନିକଟରେ ଅର୍ଥନୈତିକ ଦାସତ୍ୱ ସ୍ୱୀକାର କଲୁ । ପାଶ୍ଚାତ୍ୟ ସଭ୍ୟତାର **ଭାରତୀୟ ସଂସ୍କରଣ** ଭିତରେ ଆମେ ଇଂରାଜି ଭାଷାର ପାଶ୍ଚାତ୍ୟ ଗ୍ରନ୍ଥମାନ ପଢ଼ି ନିଜେ ନିଜକୁ ବିପରୀତ ବୁଝିଲୁ, ନିଜେ ନିଜକୁ ବିଦ୍ରୂପ କଲୁ । ଆମେ ବୁଝିଲୁ ଆମେ ଦରିଦ୍ର, ଆମର ଧର୍ମ ଆଦିମ, ଆମର ସଭ୍ୟତା ନଗଣ୍ୟ, ଆମର ଆଚାର କୁସଂସ୍କାର, ଆମର ସମାଜ ବର୍ବର ପାଶ୍ଚାତ୍ୟ ସଭ୍ୟତା ଆମକୁ ଅଭିଭୂତ କରିପକାଇଲା । କ୍ରମେ ରାଜନୈତିକ ଜୀବନ ପ୍ରବୁଦ୍ଧ ସାଂସ୍କୃତିକ ଚେତନାରୁ ପୃଥକ୍ ହୋଇଗଲା । ଯେଉଁ ମହାନ୍ ସଂସ୍କୃତିକୁ ଶହ ଶହ ବର୍ଷର ବିଦେଶୀ ଶାସନରେ ଆମର ପୂର୍ବ ପୁରୁଷମାନେ ସଯତ୍ନେ ରକ୍ଷା କରିଆସିଥିଲେ ତାହା ବିସ୍ମୃତ ହୋଇ ଆମେ ପାଶ୍ଚାତ୍ୟ ବିଜ୍ଞାନରେ ଗନ୍ଧର୍ବନଗରୀ ରଚନା କଲୁ । ଆମେ ପ୍ରକୃତିଉପରେ ଅତ୍ୟାଚାର କଲୁ । ଜଙ୍ଗଲ କାଟି କଂକ୍ରିଟର ସହର ତିଆରି କଲୁ । ତହିଁରେ କଳକାରଖାନା ବସାଇଲୁ । ଯନ୍ତ୍ର ଓ ଯାନର କୋଳାହଳ ଓ କଳକାରଖାନାର ବିଷାକ୍ତ ଧୂଆଁ ଓ ନିଷ୍କାଷିତ ଆବର୍ଜନାରେ ଜଳସ୍ଥଳ ଆକାଶ ଦୂଷିତ ହେଲା । ପାଶ୍ଚାତ୍ୟ ଦେଶରେ ଆଧୁନିକ ଗଣତନ୍ତ୍ରର ଅନ୍ତରାଳରେ ସାମ୍ରାଜ୍ୟବାଦୀ ପାଶ୍ଚାତ୍ୟ ଦାନବ ଧୀରେ ଧୀରେ ଜାଗିଉଠି ସଂଗୋପନରେ ଅଣୁ ଅସ୍ତ୍ରର ପରୀକ୍ଷାଗାରରେ ପ୍ରବେଶ କଲା । ପରସ୍ପରକୁ ଧ୍ୱଂସ କରିବାର ସଂନ୍ତ୍ରାସ ମଧ୍ୟରେ ମାନବ ସମାଜ ରହିଗଲା । ଆମ ଭିତରେ ପାଶ୍ଚାତ୍ୟ ଦାନବ ପ୍ରବେଶ କଲା । ରାଜନୈତିକ ଅପରାଧୀକରଣ ହେଲା । ଅପରାଧିମାନେ ସିଧାସଳଖ ଶାସନକୁ ଆସି କ୍ଷମତା ଜାହିର କଲେ । ମୂଲ୍ୟବୋଧରେ ବିଭ୍ରାନ୍ତି ଆସିଲା । ପୁନଶ୍ଚ ସାମାଜିକ ସଂଗଠନକୁ ଦୃଷ୍ଟିରେ ନରଖି ତତ୍‌ସମ୍ବନ୍ଧୀୟ ଆଇନରେ ପରିବର୍ତ୍ତନ କରାଯିବା ଫଳରେ ଏହା ସାମାଜିକ ସଂଗଠନର ମୂଳ ଭିତ୍ତି ସ୍ୱରୂପ ପରିବାରକୁ ହିଁ ଖଣ୍ଡ ବିଖଣ୍ଡିତ କରିବାକୁ ଲାଗିଲା । ଯୌଥ ପରିବାର ସଂଗଠନ ବହୁଧା ବିଭକ୍ତ ହେବା ଫଳରେ ସାମାଜିକ ଅର୍ଥନୀତି କ୍ରମେ ଦୁର୍ବଳ ହୋଇଗଲା । ସାଧାରଣ ଜୀବନ କ୍ରମେ ଭ୍ରାନ୍ତ ଓ ଅଶାନ୍ତ ହେଲା ।

ପାଶ୍ଚାତ୍ୟୀକରଣ ଚିନ୍ତାଧାରା ଆମକୁ ପ୍ରେୟ ମାର୍ଗର ନିର୍ଦ୍ଦେଶ ଦେଲା । ପ୍ରେୟରେ କାମନା ଚରିତାର୍ଥ ହୁଏ କିନ୍ତୁ ତାହାର ନିର୍ବାଣ ନଥାଏ । କେବଳ ପ୍ରେୟରେ ବ୍ୟକ୍ତି ନିଜ ନିଜର ଶୃଙ୍ଖଳ ରଚେ ନିଜେ ନିଜର ଶତ୍ରୁହୁଏ । ପ୍ରେୟର ଅନ୍ତ ହୁଏ ମୃତ୍ୟୁର ବ୍ୟର୍ଥତାରେ । ଭାରତୀୟ ସଂସ୍କୃତିରେ ମୃତ୍ୟୁର ବ୍ୟର୍ଥତା ନାହିଁ କିନ୍ତୁ ପରିପୂର୍ଣ୍ଣ ଜୀବନର ସାର୍ଥକତା ରହିଛି । ଏଣୁ ଭାରତୀୟ ସଂସ୍କାର ପ୍ରେୟ ମଧ୍ୟରେ ଶ୍ରେୟକୁ ନିର୍ଦ୍ଦେଶ କରେ । ଉଦାତ୍ତ କଣ୍ଠରେ ଏଠି ଋଷିମାନେ ଗାନକରନ୍ତି:-

ଓଁ ଅସତୋ ମା ସଦ୍‌ଗମୟ

ତମସୋ ମା ଜ୍ୟୋତିର୍ଗମୟ

ମୃତ୍ୟୋ ର୍ମା ଅମୃତଂ ଗମୟ

୧୮୫୭ର ସ୍ୱରାଜ୍ୟର ସ୍ତମିତ ଅଗ୍ନିଶିଖା ଆଜିମଧ୍ୟ ଭାରତୀୟ ଜନସାଧାରଣଙ୍କ ହୃଦୟରେ ସ୍ପନ୍ଦିତ ହେଉଅଛି । ଆଜିର ଗତାୟୁ ସମ୍ବିଧାନର ସ୍ଥବିରତା, ରାଜନୈତିକ ମତାନୈକ୍ୟ, ରାଜନୈତିକ ଅପରାଧିକରଣ ଓ ଗୋଷ୍ଠୀ ସଂଘର୍ଷର ଅସଂଯତ କୋଳାହଳ ମଧ୍ୟରେ ସ୍ୱାଧିନୋତ୍ତର ଜନସାଧାରଣ ପ୍ରକୃତ ଭାରତର ମୂଲ୍ୟବୋଧ ଓ ସ୍ୱରୂପ ଖୋଜି ବୁଲୁଛନ୍ତି । ବୋଧହୁଏ ୧୮୫୭ ସ୍ୱରାଜ୍ୟ ଆନ୍ଦୋଳନର ଆହୁରି ଏକ ପର୍ଯ୍ୟାୟ ବାକି ରହିଯାଇଛି । ଏହାର ଭବିଷ୍ୟତ ଭାରତର କର୍ଣ୍ଣଧାର ସ୍ୱୟଂ ପୁରୁଷୋତ୍ତମ ହିଁ ନିର୍ଣ୍ଣୟ କରିବେ ।

ଓଁ ବନ୍ଦେମାତରମ୍ ଜୟ ଜୟ ଭାରତବର୍ଷମ୍ ।

ଓଁ ଐକ୍ୟଂ ସତ୍ୟଂ ସ୍ୱରାଜ୍ୟଂ ।



# ପରିଶିଷ୍ଟ

## ଚନ୍ଦନ ହଜୁରୀ

ଉତ୍କଳୀୟମାନଙ୍କ ମଧ୍ୟରେ ୧୮୫୭ର ବିଦ୍ରୋହୀ ହିସାବରେ ଚନ୍ଦନ ହଜୁରୀ ବା ଚାଖିଖୁଣ୍ଟିଆଙ୍କର ନାମ ପ୍ରସିଦ୍ଧ ଅଟେ । ଚନ୍ଦନ ହଜୁରୀଙ୍କର ପିତା ହଜୁରୀ ଭୀମସେନ୍ ଖୁଣ୍ଟିଆ ଓରଫ ରଘୁନାଥ ଖୁଣ୍ଟିଆ ପରମ୍ପରା କ୍ରମେ କୌଳିକ ବୃତ୍ତିରେ ପୁରୀ ମନ୍ଦିରର ଜଗନ୍ନାଥଙ୍କର ସେବକ ଥିଲେ । ସେ ପାରମ୍ପରିକ ରୀତିରେ ଶରୀରଚର୍ଚ୍ଚା ସହ ପୁରାଣ ଶାସ୍ତ୍ରାଦି ରେ ମଧ୍ୟ ପାରଙ୍ଗମ ଥିଲେ । ସେ ଜଗନ୍ନାଥଙ୍କର ଭକ୍ତ ଥିଲେ ଏବଂ ଏକ ପୁତ୍ର ମନାସି ଥିଲେ । ୧୮୨୨ ମସିହା ଜାନୁୟାରୀ ୨୭ ତାରିଖ ଶାମ୍ବଦଶମୀ ଦିନ ଶ୍ରୀ ଜଗନ୍ନାଥଙ୍କର ଚନ୍ଦନ ଲାଗି ସମୟରେ ତାଙ୍କର ଏକ ପୁତ୍ର ଲାଭ ହେଲା । ଏଣୁ ସେ ତା'ର ନାମ ରଖିଲେ 'ଚନ୍ଦନ' ପୁତ୍ରଟି କ୍ରମେ ବଡ ହେବା ସଂଗେ ସଂଗେ ଅତ୍ୟନ୍ତ ଚପଳସ୍ୱଭବ ହୋଇଥିବାରୁ ପରିବାରର ଲୋକେ ତାଙ୍କୁ ଡାକିଲେ ଚାଖି । ଏହିପରି ପରକାଳରେ ସେ ହଜୁରୀ ଚନ୍ଦନ ହଜୁରୀ ଓରଫ ଚାଖି ଖୁଣ୍ଟିଆ ନାମରେ ପରିଚିତ ହୋଇଥିଲେ ।

ସେ ସମୟର ବନାରସର ମରହଟ୍ଟା ଶାସକ ଚିମାଜିଙ୍କର ଦେୱାନ ଥିଲେ ମୋରେପନ୍ତ ତାମ୍ବେ । ସେ ଅତ୍ୟନ୍ତ ଧାର୍ମିକ ଓ ଦେଶପ୍ରେମୀ ଥିଲେ । ସେ ସପରିବାରରେ ନିଜର ସ୍ତ୍ରୀ ଭାଗୀରଥୀ ବାଈ ଓ ଶିଶୁକନ୍ୟା ମନୁଙ୍କ ସହ ବନାରସରେ ବାସ କରୁଥିଲେ ।

ସେ ଜଗନ୍ନାଥଙ୍କର ପରମଭକ୍ତ ହୋଇଥିବାରୁ ଥରେ ଦର୍ଶନ ପାଇଁ ପୁରୀ ଆସିଥିଲେ । ପୁରୀରେ ସେ ହଜୁରୀ ଭୀମସେନ ଖୁଣ୍ଟିଆଙ୍କ ସଂସ୍ପର୍ଶରେ ଆସି ତାଙ୍କର ଦୃଢ଼ବ୍ୟକ୍ତିତ୍ୱ ଓ ଧର୍ମଭାବରେ ଅନୁପ୍ରାଣିତ ହୋଇ ତାଙ୍କଦ୍ୱାରା ଜଗନ୍ନାଥ ଦର୍ଶନ କରି ପୁରାଣାଦି ଶ୍ରବଣ କରିଥିଲେ । ଏଥିରେ ସେ ବହୁ ପ୍ରଭାବିତ ହୋଇ ଭୀମସେନଙ୍କ ସହିତ ଘନିଷ୍ଠତା ସୂତ୍ରରେ ଆବଦ୍ଧ ହେଲେ । ସେତେବେଳେ ତାଙ୍କର କନ୍ୟା ମନୁଙ୍କର ବୟସ ମାତ୍ର ଦୁଇବର୍ଷ ହୋଇଥିଲା । ପରେ ମୋରେପନ୍ତ ବନାରସ ତ୍ୟାଗ କରି ପେଶବା ବାଜିରାଓ୨ୟଙ୍କର ଦେୱାନ ହୋଇ ରହିଲେ । ବାଜିରାଓ, ମନୁଙ୍କୁ ପିଲାଦିନରୁ କନ୍ୟାପରି ପାଳନ କରିଥିଲେ ଓ ତାଙ୍କର ପୁତ୍ର

ନାନାଙ୍କ ସହିତ ମନୁ ବାଲ୍ୟକାଳରୁ ଅସ୍ତ୍ର ଶସ୍ତ୍ର, ଘୋଡାଚାଳନା ଓ ଯୁଦ୍ଧବିଦ୍ୟା ଆଦି ଶିକ୍ଷା କରିଥିଲେ । ବାଜିରାଓଙ୍କର ପ୍ରଚେଷ୍ଟାଫଳରେ ମନୁଙ୍କର ବିବାହ ୧୮୪୨ ମସିହାରେ ଝାନ୍ସୀର ମହାରାଜା ଗଙ୍ଗାଧର ରାଓ ସାହେବଙ୍କ ସହିତ ହେବାଫଳରେ ମନୁ, ରାଣୀ ଲକ୍ଷ୍ମୀବାଈ ନାମରେ ପରିଚିତା ହେଲେ ।

ଚନ୍ଦନ ହଜୁରୀ, ବାଲ୍ୟକାଳରୁ ପାରମ୍ପରିକ ଆବେଷ୍ଟନୀ ମଧ୍ୟରେ ଶରୀର ଚର୍ଚ୍ଚା ଓ ବିଭିନ୍ନ ସାମରିକ ବିଦ୍ୟା ଆଦି ଶିକ୍ଷା ସହିତ ଗୁରୁ ପଣ୍ଡିତ ହରିହର ବ୍ରହ୍ମାଙ୍କଠାରୁ ଶାସ୍ତ୍ରପୁରାଣାଦି ଅଧ୍ୟୟନ କରୁଥିଲେ । ନିଜର କୌଳିକ ବୃତ୍ତିର ଆବଶ୍ୟକତା ପାଇଁ ସେ ଗୁରୁ ରାମଦୟାଲ୍ ଠାକୁରଙ୍କଠାରୁ ହିନ୍ଦିଭାଷା ମଧ୍ୟ ଶିକ୍ଷାକରିଥିଲେ । କାଳକ୍ରମେ ପିତାଙ୍କ ଅନ୍ତେ ଚନ୍ଦନହଜୁରୀ ନିଜକୁ ପାରମ୍ପରିକ ରୀତିରେ କୌଳିକ ବୃତ୍ତିରେ ନିଯୋଗ କରିଥିଲେ । ସେ ଦୀର୍ଘକାୟ, ସବଳ ଓ ଅତ୍ୟନ୍ତ ଶକ୍ତିଶାଳୀ ଥିଲେ । କଥିତ ଅଛି ଯେ ଥରେ ପୁରୀ ବଡ଼ଦାଣ୍ଡରେ ରଥ ଗଡ଼ା ହେବା ସମୟରେ ଦୁଇଟି ରଥଚକକୁ ଏକାଠି ବୋହିନେବା ପାଇଁ ଆବଶ୍ୟକ ଲୋକ ନଥିଲେ । ଏହାଦେଖି ଜଗନ୍ନାଥଙ୍କୁ ସ୍ମରଣ କରି ଚନ୍ଦନ ହଜୁରୀ ଦୁଇଟି ଚକର ନାଭିରେ ଦୁଇଟି ହାତ ଗଳାଇ ତାହା ଟେକି ଟେକି ଆଣି ଅନାୟାସରେ ଯଥାସ୍ଥାନରେ ସନ୍ନିବେଶ କରିଥିଲେ । ତାଙ୍କର ଏହି ପ୍ରଚଣ୍ଡ ଶାରୀରିକ ଶକ୍ତିରେ ମୁଗ୍ଧହୋଇ ଗଜପତି ମହାରାଜ ହଜୁରୀଙ୍କର ମର୍ଯ୍ୟାଦା ସ୍ୱରୂପ ପ୍ରତି ରଥଯାତ୍ରା ଅନ୍ତେ ରଥର ଏକ ଚକ ହଜୁରୀଙ୍କର ପରିବାରକୁ ଦିଆଯିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଏହା ପରମ୍ପରାକ୍ରମେ ଦିଆହୋଇ ଆସୁଥିଲା । କିନ୍ତୁ ବର୍ତ୍ତମାନ ତାଙ୍କର ପରିବାର ଲୋକଙ୍କ ଠାରୁ ଖବର ନେବାରେ ଜଣାଯାଏ ଯେ ଏବେ କିଛି ବର୍ଷ ହେଲା ତାହା ବନ୍ଦ ହୋଇଯାଇଛି ।

ଏତଦ୍‌ବ୍ୟତୀତ ହଜୁରୀ, ପୁରାଣଶାସ୍ତ୍ରାଦିରେ ଧୂରିଣ ଥାଇ ଶ୍ରୀ ଜଗନ୍ନାଥଙ୍କର ପରମ ଭକ୍ତ ଥିଲେ । ଜଗନ୍ନାଥଙ୍କର ପହଣ୍ଡି ସମୟରେ ସେ ଜଣେ ବଳିଷ୍ଠ କାଠିଆ ରୂପେ ପରିଗଣିତ ହେଉଥିଲେ ।

ଶ୍ରୀ ଜଗନ୍ନାଥଙ୍କ ପ୍ରତି ଶୁଦ୍ଧ ଭକ୍ତି ହିଁ ତାହାଙ୍କୁ ସ୍ୱାଭିମାନୀ ଓ ସ୍ୱଦେଶ ପ୍ରେମୀ କରିଦେଇଥିଲା । ୧୮୧୭ ମସିହାରୁ ପୁରୀ ସହରରେ ଇଂରାଜ ମାନଙ୍କର

ଶାସନ ଦୃଢ଼ ହେବା ସଂଗେ ସଂଗେ ଖ୍ରୀଷ୍ଟାନ ମିସନାରୀ ମାନଙ୍କର ପ୍ରବଳ ଉପଦ୍ରବ ଦେଖାଗଲା । ସେ ସମୟରେ ପାଦ୍ରୀମାନେ ପୁରୀରେ ପ୍ରବେଶ କରି ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କରେ ଚାଳଘରମାନ ତୋଳି ସେଠାରେ ଏକ ଏକ ଖ୍ରୀଷ୍ଟାନ ଧର୍ମ ପ୍ରଚାର କେନ୍ଦ୍ର ସ୍ଥାପନ କଲେ । ସେମାନଙ୍କର ଧର୍ମପ୍ରଚାର ଅପେକ୍ଷା ଜଗନ୍ନାଥଙ୍କର କୁତ୍ସା ରଚନା କରିବା ମୁଖ୍ୟ କାର୍ଯ୍ୟଥିଲା । ଏହା ଯାତ୍ରୀ ତଥା ଜନସାଧାରଣ ଓ ଭକ୍ତମାନଙ୍କୁ ଅତ୍ୟନ୍ତ ଯନ୍ତ୍ରଣାଦାୟକ ହେଲେ ମଧ ଇଂରାଜି ଶାସନର ପ୍ରବଳ ପ୍ରତାପ ବିରୁଦ୍ଧରେ କେହି ମୁହଁ ଖୋଲିବାକୁ ସାହସ କରିପାରୁ ନଥିଲେ । ଅପରପକ୍ଷରେ ଇଂରାଜିମାନେ ଶାସନର ପ୍ରଥମ ଅବସ୍ଥାରେ ଖ୍ରୀଷ୍ଟାନ୍ ଧର୍ମର ପ୍ରସାରକୁ ଅଧିକ ଗୁରୁତ୍ୱ ଦେଉଥିଲେ । କାରଣ ସେମାନେ ଅଗଷ୍ଟାଇଙ୍କର କଳ୍ପନା ଅନୁସାରେ ସାରା ପୃଥିବୀକୁ ଖ୍ରୀଷ୍ଟାନ ରାଜ୍ୟରେ ପରିଣତ କରିବାର ଯୋଜନାରେ ଥିଲେ ।

ଯୁବକ ଚନ୍ଦନ ହଜୁରୀ ପୁରୀର ପାରମ୍ପରିକ ଯୋଗାଘରମାନଙ୍କରେ ଯୁବକ ମାନଙ୍କର ନେତୃତ୍ୱ ନେଉଥିଲେ । ତା'ଙ୍କର ଆଦର୍ଶରେ ସେ ସମୟରେ ବହୁ ଯୁବକ ଅନୁପ୍ରାଣିତ ହୋଇଥିଲେ । ସେ ଯୁବକ ମାନଙ୍କୁ ଶରୀରଚର୍ଚ୍ଚା ଓ ବିଭିନ୍ନ ସାମରିକବିଦ୍ୟାସହ ପୁରାଣାଦି ଶିକ୍ଷାଦେଇ ସେମାନଙ୍କୁ ସ୍ୱଦେଶ ପ୍ରେମୀ ଓ ସ୍ୱାଭିମାନୀ କରୁଥିଲେ ।

ମିସ୍‌ନାରୀମାନଙ୍କର ଉଦ୍ଦେଶ୍ୟମୂଳକ ଭାବରେ ଜଗନ୍ନାଥଙ୍କର କୁତ୍ସାରଚନା ଓ ଧର୍ମୀୟ ଭାବପ୍ରବଣତାରେ ଉଦ୍ଦେଶ୍ୟମୂଳକ ଆଘାତ ଦେବାରେ ସ୍ୱାଭିମାନୀ ଚନ୍ଦନ ହଜୁରୀ ଅତ୍ୟନ୍ତ ଅପମାନିତ ବୋଧକଲେ । ଯୁବକ ଚନ୍ଦନ ହଜୁରୀ, ନିଜର ଦଳବଳ ସହ ମିସ୍‌ନାରୀମାନଙ୍କର ସହରରେ ଥିବା ସମସ୍ତ ପ୍ରଚାରକେନ୍ଦ୍ର, ଧ୍ୱଂସ କରି ଦେଇ, ସେମାନଙ୍କ ଦ୍ୱାରା ପ୍ରଚାରିତ ହେବାକୁ ଥିବା ଜଗନ୍ନାଥ ପରୀକ୍ଷା ନାମକ ଜଗନ୍ନାଥଙ୍କ ନାମରେ ପାଦ୍ରୀମାନେ ଲେଖିଥିବା ଏକ କୁତ୍ସାମୂଳକ ପାଣ୍ଡୁଲିପିକୁ ପୋଡିଦେଇଥିଲେ । ଅବଶ୍ୟ ପରେ ଏହା ସେ ସମୟର ପ୍ରବଳ ପ୍ରତାପୀ ବ୍ରିଟିଶ୍ ସରକାରଙ୍କ ଦ୍ୱାରା ଦମିତ ହୋଇ ମିସ୍‌ନାରୀମାନଙ୍କର କାର୍ଯ୍ୟକଳାପ ଚାଲୁରହିଲା । ଏହାଦ୍ୱାରା ଚନ୍ଦନହଜୁରୀଙ୍କର ପ୍ରାଣରେ ଗଭୀର ଆଘାତ ଲାଗିଥିଲା । ତାଙ୍କ ମଧରେ କବିତ୍ୱ ଥିଲା । ଜଗନ୍ନାଥଙ୍କର ପରମ ଭକ୍ତ ହୋଇଥିବାରୁ ସେ ତାଙ୍କର ହୃଦୟର ସମସ୍ତ ଭାବ ଜଗନ୍ନାଥଙ୍କୁ ହିଁ ଜଣାଉଥିଲେ ।

ବେଳେ ବେଳେ ସ୍ୱତଃ ପ୍ରବୃତ୍ତ ଭାବରେ ତାହା ତାଙ୍କର ଲେଖନୀରୁ ଝରି ଆସୁଥିଲା । ସେ ସମ୍ପୂର୍ଣ୍ଣ ଦେଶପ୍ରେମୀ ଓ ଇଂରାଜ ବିରୋଧି ଥିଲେ । ତାଙ୍କର ପ୍ରବଳ ଦେଶାତ୍ମବୋଧ ଥିଲା । ତାଙ୍କର ଲିଖିତ 'ଟଙ୍କା ନୟନକୁ ପତିତ କହି' ଭଜନ ଦେଶାତ୍ମବୋଧରେ ପରିପୂର୍ଣ୍ଣ । ପାଠକଙ୍କର ଅବଗତି ନିମନ୍ତେ ଆମେ ତାଙ୍କର ଏକ କବିତାରୁ କିଛି ଉଦ୍ଧାର କରୁଅଛୁ :-

'ହେତାଖିଆ ଦଳ ହେଲେ ପ୍ରବଳ
କଥାରେ ବାଟୁଳି ନ ବାଜେ ଠୁଳ
ତବ ମହିମାକୁ ତୁଚ୍ଛ ବୋଲିଣ
ରଟନ୍ତି ବାଚାଳ ଜାଣ ଆପଣ
ଦିହ ନ ସହଇ ଶୁଣି ଏସନ
କାନମୁଣ୍ଡା ଫଟାଇ ଦ୍ୟନ୍ତି ପୁଣ ।''.... ଇତ୍ୟାଦି

ସ୍ୱାଧୀନତାହାନି ଓ ଧର୍ମରେ ଆଘାତ ଚନ୍ଦନ ହଜୁରୀଙ୍କୁ ସମ୍ପୂର୍ଣ୍ଣ ଭାବରେ ଇଂରାଜଦ୍ରୋହୀ କରିଦେଇଥିଲା

ଚନ୍ଦନ ହଜୁରୀଙ୍କର ପିତାଙ୍କର ମୋରେପନ୍ତ ତାମ୍ବେଙ୍କ ସହ ଘନିଷ୍ଠତା ଫଳରେ ସେ ବାଜିରାଓଙ୍କର ସଂସ୍ପର୍ଶରେ ଆସିଲେ । କ୍ରମେ ସେ ବାଜିରାଓଙ୍କର ମଧ୍ୟ ଶ୍ରଦ୍ଧା ଓ ଭକ୍ତିର ପାତ୍ରହେଲେ । ଲକ୍ଷ୍ମୀବାଈଙ୍କର ବାଲ୍ୟାବସ୍ଥାରୁ ଏହି କ୍ରମରେ ପୁରୀର ହଜୁରୀ ପରିବାର ସହିତ ଘନିଷ୍ଠ ଭାବରେ ପରିଚିତା ଥିଲେ । ଭୀମସେନଙ୍କ ପରେ ମୋରେପନ୍ତ ଚନ୍ଦନ ହଜୁରୀଙ୍କୁ ନିଜର ପଣ୍ଡାରୂପେ ଗ୍ରହଣ କରି ଶ୍ରଦ୍ଧା ଓ ସମ୍ମାନ କରିବାକୁ ଲାଗିଲେ । ଚନ୍ଦନହଜୁରୀ ମଧ୍ୟ ଜଗନ୍ନାଥ ଧର୍ମ ପ୍ରଚାର ପାଇଁ ବେଳେ ବେଳେ ପେଶବାଙ୍କ ଦରବାରରେ ହାଜର ହେଉଥିଲେ ଓ ମୋରେପନ୍ତଙ୍କ ଗୃହରେ ଅତିଥି ହୋଇରହୁଥିଲେ ।

ଲକ୍ଷ୍ମୀବାଈ ବାଲ୍ୟାବସ୍ଥାରୁ ହିଁ ଚନ୍ଦନ ହଜୁରୀଙ୍କ ସହ ପରିଚିତା ଥିଲେ । ସେ ତାଙ୍କର ଧର୍ମପ୍ରବଣତା, ସ୍ୱଦେଶ ପ୍ରେମ, ସ୍ୱାଭିମାନ ଓ ଯୋଦ୍ଧୃ ସ୍ୱଭାବରେ ଅତ୍ୟନ୍ତ ପ୍ରଭାବିତା ହୋଇଥିଲେ । ଲକ୍ଷ୍ମୀବାଈ ଶ୍ରୀ ଜଗନ୍ନାଥଙ୍କର ପରମ ଭକ୍ତ ଥିଲେ ଓ ଚନ୍ଦନ ହଜୁରୀଙ୍କୁ ପିତୃତୁଲ୍ୟ ଶ୍ରଦ୍ଧା ଓ ଭକ୍ତି କରୁଥିଲେ ଏବଂ ପରକାଳରେ ତାଙ୍କୁ ଅନ୍ୟତମ ବ୍ୟକ୍ତିଗତ ପରମର୍ଶଦାତା ରୂପେ ଗ୍ରହଣ କରିନେଇଥିଲେ ।

୧୮୫୦ ମସିହାରେ ଲକ୍ଷ୍ମୀବାଈଙ୍କର ଏକମାତ୍ର ନବଜାତ ସନ୍ତାନର ତିନିମାସରେ ମୃତ୍ୟୁହୋଇଥିଲା, ୧୮୫୩ ମସିହାରେ ରାଜା ଗଙ୍ଗାଧର ରାଓଙ୍କର ମୃତ୍ୟୁଫଳରେ ଲକ୍ଷ୍ମୀବାଈ ସନ୍ତାନହୀନା ବିଧବା ହେଲେ । ସେ ଦାମୋଦର ରାଓ ନାମକ ଏକ ଅଳ୍ପବୟସ୍କ ବାଳକକୁ ପୋଷ୍ୟ ପୁତ୍ର ରୂପେ ଗ୍ରହଣ କଲେ । ଡେଲହାଉସୀଙ୍କର ନୂତନ ନୀତି ଫଳରେ ଉକ୍ତ ପୋଷ୍ୟପୁତ୍ରକୁ ଅସ୍ୱୀକାର କରାଗଲା ଓ ରାଜ୍ୟ ଇଂରଜି ମାନଙ୍କର ହସ୍ତଗତ ହେଲା । ରାଣୀ ଏଥିରେ ଉତ୍‌କ୍ଷିପ୍ତା ହୋଇଉଠିଲେ । ନାନା ସାହେବଙ୍କର ଗୁପ୍ତ ଷଡଯନ୍ତ୍ର ଚକ୍ରରେ ସେ ସକ୍ରିୟା ହୋଇଉଠିଲେ, ଇଂରାଜି ବିଦ୍ରୋହର କଳ୍ପନାନୁସାରେ ଉପଯୁକ୍ତ ବ୍ୟକ୍ତିମାନଙ୍କୁ ଭାରତର ବିଭିନ୍ନ ପ୍ରାନ୍ତରେ ଠାବ କରାଯାଇ ଚିଠିପଠାଗଲା ।

ରାଣୀ ଲକ୍ଷ୍ମୀବାଈ ଚନ୍ଦନ ହଜୁରୀଙ୍କର ନିଷ୍ଠା, ସ୍ୱଦେଶ ପ୍ରେମ ଓ ଶାରୀରିକ ସାର୍ମଥ୍ୟ ସହିତ ପୂର୍ବରୁ ପରିଚିତା ଥିଲେ । ଏହି ଘଡିସନ୍ଧି ମୁହୂର୍ତ୍ତରେ ଚନ୍ଦନ ହଜୁରୀଙ୍କର ପରାମର୍ଶ, ସହଯୋଗ, ଲକ୍ଷ୍ମୀବାଈଙ୍କର ଅତ୍ୟନ୍ତ ଆବଶ୍ୟକ ହୋଇପଡିଲା । ଏଣୁ ସେ ପୁରୀକୁ ଚନ୍ଦନହଜୁରୀଙ୍କ ପାଖକୁ ସମସ୍ତ ବିଷୟ ଜଣାଇ ଚିଠି ପଠାଇଥିଲେ । ଇଂରାଜଦ୍ୱେଷୀ ଚନ୍ଦନ ହଜୁରୀ ଏହି ପତ୍ରପ୍ରାପ୍ତିପରେ ୧୮୫୬ ମସିହା ଜୁନ୍ ୪ଠର ତାରିଖଦିନ ପୁରୀରୁ ଝାନ୍‌ସୀ ଅଭିମୁଖେ ଯାତ୍ରାରମ୍ଭ କଲେ ।

ଯାତ୍ରା ପୂର୍ବରୁ ସେ ଜଗନ୍ନାଥଙ୍କୁ ସ୍ୱରଚିତ କବିତାରେ ନିଜର ଭାବାବେଗ ପ୍ରକାଶ କରି ଲେଖିଥିଲେ -

''ଧଣ୍ଡାମାଳବୁହା ଦୁର୍ଦ୍ଦଶାରାହୁ
ଚଣ୍ଡାଳ ଗ୍ରାସୁଅଛି ଚାହିଁ ଚାହିଁ
ଭଣ୍ଡାରେ ଖଣ୍ଡା ନାହିଁକି ମଣିମା
ଗଣ୍ଡାକର ଦିଶୁ ନାହିଁ ମହିମା
ହଣ୍ଡା ଯାଉଅଛି ଫାଟିହେ
ଥଣ୍ଡାକର କୃପାଜଳ ବୃଷ୍ଟି କରି
ମୋଚିର ଚାତକ ପାଟିହେ ।''

ଚନ୍ଦନ ହଜୁରୀ ପୁରୀରୁ ଯାଇ ମିରଟ୍‌ରେ ପହଞ୍ଚିଲେ । ଚିଠିର ନିର୍ଦ୍ଦେଶ

ଅନୁସାରେ ସେ ସିପାହୀ ଛାଉଣୀମାନଙ୍କରେ ଜଗନ୍ନାଥଙ୍କର ସେବକ ହିସାବରେ ପୁରାଣଶାସ୍ତ୍ର ଆଦି ଆଲୋଚନା କରିବା ସଂଗେ ସଂଗେ ସେମାନଙ୍କୁ ସ୍ୱଧର୍ମ ଓ ସ୍ୱରାଜ୍ୟ ଭାବରେ ଉଦ୍‌ବୁଦ୍ଧ କରୁଥିଲେ । ଏହିପରି ସେ ବିଭିନ୍ନ ସ୍ଥାନରେ ଛାଉଣୀରୁ ଛାଉଣୀକୁ ବୁଲି ପ୍ରଚାର କରିବାକୁ ଲାଗିଲେ । ଫଳରେ ସବୁସ୍ଥାନରେ ସେ ନିଜର ଦେଶାତ୍ମବୋଧ, ବ୍ୟକ୍ତିତ୍ୱ ଓ ଧର୍ମପ୍ରବଣତାରେ ସିପାହୀ ମାନଙ୍କର ଶ୍ରଦ୍ଧା ଓ ସମ୍ମାନ ଭାଜନ ହେବା ସଂଗେ ସଂଗେ ସେମାନଙ୍କୁ ଇଂରାଜି ବିଦ୍ରୋହୀ କରି ଦେଉଥିଲେ । ତାଙ୍କର କାର୍ଯ୍ୟାବଳୀ କେବଳ ସେନାଛାଉଣୀମାନଙ୍କରେ ସୀମିତ ନଥିଲା । ସେ ଜଗନ୍ନାଥଙ୍କର ସେବକ ହିସାବରେ ଧର୍ମପ୍ରାଣ ଜନସାଧାରଣଙ୍କ ସହିତ ମଧ୍ୟ ଘନିଷ୍ଠ ସମ୍ପର୍କରଖି ସେମାନଙ୍କୁ ସ୍ୱଦେଶ ପ୍ରେମରେ ଉଦ୍‌ବୁଦ୍ଧ କରିବା ସଂଗେ ସଂଗେ ଇଂରାଜ ବିଦ୍ୱେଷୀ କରିଦେଉଥିଲେ । ଏହିପରି ସେ ପ୍ରଥମ ସର୍ବଭାରତୀୟ ଜାତୀୟ ବିଦ୍ରୋହରେ ନିଃସ୍ୱାର୍ଥପର ଭାବରେ ହନୁମାନ୍ ଲଙ୍କାପୋଡି ଜଳାପରି ଚାରିଆଡେ ବିଦ୍ରୋହର ଦାବାନଳ ଜଳାଇ ଦେଇଥିଲେ । ସ୍ୱଦେଶ ପ୍ରେମ ଓ ଜାତୀୟ ବିଦ୍ରୋହର ବାର୍ତ୍ତାପ୍ରଚାର କରି କରି ସେ ୧୮୫୭ ମେ ଚବିଶ ତାରିଖରେ ଝାନ୍‌ସୀରେ ପହଞ୍ଚିଲେ । ସେଠାରେ ସେ ପ୍ରଜାମାନଙ୍କ ସହିତ ମିଶି ସେମାନଙ୍କ ମଧ୍ୟରେ ଇଂରାଜ ଦ୍ରୋହ ଏବଂ ସ୍ୱଧର୍ମ ଓ ସ୍ୱରାଜ୍ୟର ବାର୍ତ୍ତା ପ୍ରଚାର କଲେ । ଏହାର ପ୍ରଭାବରେ ସାରା ରାଜ୍ୟର ଜନତା ରାଣୀଙ୍କ ନିକଟରେ ଇଂରାଜ ବିଦ୍ରୋହ ଓ ସ୍ୱାଧିନତା ପାଇଁ ଦୃଢ଼ସଂକଳ୍ପ ହେଲେ ।

ଏହା ଏକ ସର୍ବଭାରତୀୟ ସଂଗଠିତ ବିଦ୍ରୋହ ଥିଲା । ଏଣୁ ବିଦ୍ରୋହର ବହୁ ପୂର୍ବରୁ ତାହାର ପ୍ରସ୍ତୁତିକରଣ ଚାଲିଥିଲା । ଏହି ପ୍ରକ୍ରିୟାରେ ଚନ୍ଦନ ହଜୁରୀ, ଲକ୍ଷ୍ମୀବାଈ ଓ ନାନା ସାହେବ ତଥା ଅନ୍ୟାନ୍ୟ ବିଦ୍ରୋହର ନେତୃବୃନ୍ଦଙ୍କ ମଧ୍ୟରେ ଯୋଗସୂତ୍ର ରକ୍ଷା କରୁଥିଲେ । ସେ ଅତ୍ୟନ୍ତ ବିଶ୍ୱସ୍ତ, ସ୍ୱଦେଶ ପ୍ରେମୀ ଓ ଶକ୍ତିଶାଳୀ ଥିବା ଦୃଷ୍ଟିରୁ ପ୍ରାୟ ସମସ୍ତ ବିଶ୍ୱସ୍ତ ଓ ଗୁରୁତ୍ୱ ପୂର୍ଣ୍ଣ କାର୍ଯ୍ୟରେ ତାଙ୍କ ଉପରେ ନିର୍ଭର କରାଯାଉଥିଲା । ବିଦ୍ରୋହ ସମୟରେ ମଧ୍ୟ ଇଂରାଜ ମାନଙ୍କର ଗୁଳିଗୁଳା କୁ ଭୟନ କରି ସେ ଛାଉଣୀରୁ ଛାଉଣୀକୁ ଓ ଦୁର୍ଗରୁ ଦୁର୍ଗକୁ ଗୁରୁତ୍ୱ ପୂର୍ଣ୍ଣ ସମ୍ବାଦମାନ ନବା ଆଣିବା କରୁଥିଲେ । ଏ ଏତଦ୍ ବ୍ୟତୀତ ସେ ଇଂରାଜ ଛାଉଣୀର ବହୁ ଗୁପ୍ତ ଖବର ମଧ୍ୟ ସେଠାରେ ଦେଶୀ ଭୃତ୍ୟମାନଙ୍କ ଠାରୁ ସଂଗ୍ରହ

କରି ବିଦ୍ରୋହୀ ମାନଙ୍କୁ ଜଣାଉଥିଲେ। ସେ ସେ ସମୟରେ ସିପାହୀ ମାନଙ୍କ ମଧ୍ୟରେ ଅତ୍ୟନ୍ତ ପ୍ରିୟ ହୋଇଯାଇଥିଲେ ଓ ସିପାହୀ ମାନେ ତାଙ୍କୁ ଗୁରୁତୁଲ୍ୟ ଜ୍ଞାନ କରୁଥିଲେ।

ସେ ଏତେ ବୁଦ୍ଧିମତା ସହ କାର୍ଯ୍ୟ କରୁଥିଲେ ଯେ ଇଂରାଜିମ ମାନେ ତାଙ୍କର କିଛି କରିପାରୁ ନଥିଲେ। ତାଙ୍କର ଜୀବନ ସେ ସମୟରେ ଅତ୍ୟନ୍ତ ରହସ୍ୟ ମୟ ଥିଲା। ତାଙ୍କର ସ୍ଥିତି ସମ୍ବନ୍ଧରେ ଜାଣିବା ଇଂରାଜିଙ୍କ ପକ୍ଷରେ ଦୁଃସାଧ୍ୟ ଥିଲା। ସେ ଅପୂର୍ବ ସାହସ ସହିତ ବିଦ୍ରୋହ ସମୟରେ ନିଃସ୍ୱାର୍ଥପର ଭାବରେ ବହୁ ଅସାଧ କାର୍ଯ୍ୟ ସାଧନ କରିଛନ୍ତି, କିନ୍ତୁ ତାଙ୍କର ବିଦ୍ରୋହ ସମୟର କାର୍ଯ୍ୟକ୍ଷେତ୍ର ଉତ୍ତର ପ୍ରଦେଶ ହୋଇଥିବାରୁ ଗବେଷଣା ଅଭାବରୁ ଅଦ୍ୟାବଧି ତାଙ୍କର ବହୁସ୍ମୃତି ସେଠାରେ ଅବହେଳିତ ହୋଇରହିଛି। ଉତ୍ତର ପ୍ରଦେଶର 'କାଲାକଙ୍କର' ନାମକ ଗ୍ରାମକୁ ଯିବାକୁ ରାସ୍ତାରେ ପଡୁଥିବା ଏକ ପୋଲର ନାମକୁ ଅଦ୍ୟାବଧି 'ହଜୁରୀ ପୋଲ' ବୋଲି କୁହାଯାଏ। କାରଣ, ଏହି ପୋଲତଳେ ଚନ୍ଦନ ହଜୁରୀ ଏକୋଇଶ ଦିନ କାଳ ଆତ୍ମଗୋପନ କରିଥିଲେ। ଏହା ପୂର୍ବତନ କେନ୍ଦ୍ର ମନ୍ତ୍ରୀଦିନେଶ ସିଂହଙ୍କର ଗ୍ରାମ ପାଖରେ ହୋଇଥିବାରୁ ସେ ପୁରୀ ଆସିଥିବା ଅବସରରେ ଏ ବିଷୟ ସ୍ୱୀକାର କରିଥିଲେ। ଉପଯୁକ୍ତ ଗବେଷଣା ହେଲେ ଉତ୍କଳର ଏକମାତ୍ର ୧୮୫୭ର ପ୍ରତ୍ୟକ୍ଷ ବିଦ୍ରୋହୀ ଚନ୍ଦନ ହଜୁରୀଙ୍କ ବିଷୟରେ ବହୁ ତଥ୍ୟ ଲୋକଲୋଚନକୁ ଆସିପାରିବ।

ସିପାହୀ ବିଦ୍ରୋହ ଦମିତ ହୋଇଯିବା ପରେ ପରେ ବିଦ୍ରୋହୀମାନଙ୍କୁ ନିର୍ବିଚାରରେ ଦଣ୍ଡଦିଆଗଲା। ଅଧିକାଂଶ ବିଦ୍ରୋହୀଙ୍କୁ ଫାଶୀଦଣ୍ଡରେ ଦଣ୍ଡିତ କରାଗଲା।

ଇଂରାଜି ସରକାରଙ୍କ ତରଫରୁ ଚନ୍ଦନ ହଜୁରୀଙ୍କର ବହୁତ ସନ୍ଧାନ ନିଆଗଲା କିନ୍ତୁ ତାଙ୍କର କୌଣସି ପତ୍ତା ମିଳିଲା ନାହିଁ। ଏହିପରି ଆଠବର୍ଷ ବିତିଗଲା। ଚନ୍ଦନ ହଜୁରୀଙ୍କର ପତ୍ନୀ ସୁନ୍ଦରମଣି ନିରାଶ ହୋଇ ପତିଙ୍କର ମୃତ୍ୟୁ ହୋଇଛିବୋଲି ଭାବି ବୈଧବ୍ୟ ଗ୍ରହଣ କଲେ। ପରିଶେଷରେ ୧୮୬୫ ମସିହା ଏପ୍ରିଲ ୨୩ ତାରିଖ ଦିନ ଚନ୍ଦନ ହଜୁରୀ ସଶରୀରରେ ନିଜ ଗୃହରେ ହାଜର ହେଲେ। ସୁନ୍ଦର ମଣି ପୁଣି ସଧବା ବେଶ ହେଲେ। ସେହି ଦିନୁ ପୁରୀରେ ଏକ ଢଗ ସୃଷ୍ଟି ହୋଇଛି :-

ଜଣରେ ବାଳିଆ ଚହଟିଲା

କଜଳ ସିନ୍ଦୂର ନାଆଁଲୋ ରାଣ୍ଡେ

ପୁଣି ଚାଖିଆ ଲେଉଟିଲା ।''

ଚନ୍ଦନ ହଜୁରୀ ଘରେ ପହଞ୍ଚିବା ପରେ ମଧ ତାଙ୍କୁ ନିସ୍ତାର ମିଳିଲା ନାହିଁ । ଇଂରେଜି ସରକାରଙ୍କର କ୍ରୂର ଦୃଷ୍ଟିର ସେ ଶିକାର ହେଲେ । ପ୍ରଥମେ ତାଙ୍କୁ ସବୁଦିନ ଥାନାରେ ହାଜର ହେବାପାଇଁ କୁହାଗଲା । ସେ ସ୍ପଷ୍ଟଭାବରେ କହିଲେ ଯେ ସେ ନିର୍ଦ୍ଦୋଷ । କିନ୍ତୁ ଆଇନକୁ ମାନ୍ୟତାଦେଇ ସେ ସବୁଦିନ ଥାନାରେ ହାଜର ହେଉଥିଲେ । ଇଂରାଜି କମିଶନରଙ୍କ ନିର୍ଦ୍ଦେଶରେ ପୁରୀର ମାଜିଷ୍ଟ୍ରେଟ ତାଙ୍କର ଗାଈବଳଦ ଓ ସ୍ଥାବର ଅସ୍ଥାବର ସମ୍ପତ୍ତି କୁ ବାଜ୍ୟାପ୍ତି କଲେ । କିନ୍ତୁ ଅପରପକ୍ଷରେ ଚନ୍ଦନହଜୁରୀ ସିପାହୀ ଓ ଜନସାଧାରଣଙ୍କ ମଧରେ ଏତେଦୂର ଜନପ୍ରିୟ ହୋଇଥିଲେ ଯେ ଇଂରେଜୀ ସରକାର ପରେ ଗଣ ଓ ସିପାହୀ ବିଦ୍ରୋହ ଆଶଙ୍କାରେ ପୁନର୍ବାର ହଜୁରୀଙ୍କର ବାଜ୍ୟାପ୍ତି ହୋଇଥିବା ସମ୍ପତ୍ତି ତାଙ୍କୁ ଫେରାଇ ନେଇଥିଲେ । ଏହା ପରେ ସେ ପୁରୀରେ ବହୁ ବର୍ଷ ଜୀବିତ ଥିଲେ । ଶେଷଜୀବନରେ ସେ ଲକ୍ଷ୍ମୀବାଈଙ୍କ ଉପରେ 'ମନୁବାଈ' ନାମକ ଏକ କାବ୍ୟ ରଚନା କରିଥିଲେ । ୧୮୮୫ ମସିହା ମେ ସତେଇଶ ତାରିଖରେ ଏହି ମହାନ୍ ହୃଦୟ ନିଃସ୍ୱାର୍ଥପର ଧର୍ମପ୍ରାଣ ଦେଶପ୍ରେମୀଙ୍କର ମହାପ୍ରୟାଣ ହୋଇଥିଲା ।



## ସୁରେନ୍ଦ୍ର ସାଏ

ସମ୍ବଲପୁରର ରାଜା ମହାରାଜା ସାଏଙ୍କର ୧୮୨୭ ଖ୍ରୀଷ୍ଟାବ୍ଦରେ ମୃତ୍ୟୁ ହେଲା । ଇଂରେଜମାନେ ଅନ୍ୟ କାହାରିକୁ ଗାଦୀରେ ନ ବସାଇ ରାଣୀ ମୋହନ କୁମାରୀଙ୍କ ନାମରେ ଶାସନ ପରିଚାଳନା କଲେ । ଏହିପରି ୧୮୩୩ ଖ୍ରୀଷ୍ଟାବ୍ଦରେ ପର୍ଯ୍ୟନ୍ତ ଶାସନ କାର୍ଯ୍ୟ ଚାଲିଲା, ପୂର୍ବରୁ ଲୋକଙ୍କର ଆର୍ଥିକ ସ୍ଥିତି ଉନ୍ନତ ଥିଲା ଓ ଜିନିଷର ଦରଦାମ ମଧ୍ୟ ବହୁତ୍ କମ୍ ଥିଲା, କିନ୍ତୁ ଇଂରେଜମାନଙ୍କ ନୀତି ଫଳରେ ଜିନିଷ ପତ୍ରର ଦର ବଢ଼ିବା ସଂଗେ ଅତ୍ୟଧିକ କର ମଧ୍ୟ ଆଦାୟ ହେବାକୁ ଲାଗିଲା । ପ୍ରଜାମାନଙ୍କୁ ପୂର୍ବରାଜସ୍ୱର ଚାରିଗୁଣ ଏକକାଳୀନ ଦେବାକୁ ପଡିଲା । ଏଥିରେ ସାଧାରଣ ଜନତାଙ୍କ ମଧ୍ୟରେ ଅଶାନ୍ତି ଦେଖାଗଲା ।

ସମ୍ବଲପୁର ୪ର୍ଥ ଚୌହାଣ ରାଜା ମଧୁକର ଦେବ ଙ୍କର ବଂଶଧର ମାନେ (ବଳରାମ, ସୁରେନ୍ଦ୍ର, ଉଦନ୍ତ, ଛବିଳ ଓ ଉଜ୍ଜଳ) ଗାଦୀରେ ଦାବିକାର ଥିଲେ ଓ ସମ୍ବଲପୁରର ସପ୍ତମ ରାଜା ଛାତ୍ରସାଏଙ୍କର ପଞ୍ଚମ ପୁତ୍ରଙ୍କର ବଂଶଧର ମାନେ ମଧ୍ୟ ଗାଦୀର ଦବିବାର (ନାରାୟଣ ସିଂହ ଓ ଗୋବିନ୍ଦ ସିଂହ)ଥିଲେ । ଇଂରାଜି ସରକାର ଏମାନଙ୍କର କୌଣସି ଦାବିକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲେ । ଅନ୍ୟଦାବୀଦାରମାନେ ଥାଉ ଥାଉ ଏକ ନାରୀ ହାତରେ ରାଜ୍ୟ ଶାସନ କରିବା ଚୌହାଣ ବଂଶ ପ୍ରତି ଅପମାନ ବୋଲି ସେମାନେ ମନେକଲେ । ଏଣୁ ଏହି ଉଭୟ ବଂଶ ପରସ୍ପରିକ ପ୍ରତିଦ୍ୱନ୍ଦ୍ୱୀତା ଭୁଲିଯାଇ ନିଜ ବଂଶ ତଥା ରାଜ୍ୟର ସ୍ୱାତ୍ମାଭିମାନ ଓ ସ୍ୱାଧିନତା ରକ୍ଷା କରିବାକୁ ତତ୍ପର ହୋଇ ଉଠିଲେ । ଏମାନଙ୍କର ମଧ୍ୟରେ ସୁରେନ୍ଦ୍ର ସାଏ ପ୍ରବଳ ପରକ୍ରମୀ ଓ ଜନପ୍ରିୟ ଥିଲେ । ସମସ୍ତ ସାମନ୍ତ ରାଜା, ଜମିଦାର ଓ ଗୌନ୍ତିଆ ମାନେ ସୁରେନ୍ଦ୍ର ସାଏଙ୍କର ଦୃଢ଼ ନେତୃତ୍ୱରେ ସଂଗଠିତ ହେଲେ । ଏମାନେ ନିଜର ଦାବି ହାସଲ କରିବା ନିମିତ୍ତ ଇଂରାଜଙ୍କ ସହିତ ପ୍ରତ୍ୟକ୍ଷ ଶତ୍ରୁତା ଆରମ୍ଭ କଲେ । ସମ୍ବଲପୁର ଜିଲ୍ଲା ଧମା ଥାନାର ବରଗାଁ ନାମକ ଗ୍ରାମରେ ମାତୁଳାଳୟରେ ୧୮୦୯ ଖ୍ରୀଷ୍ଟାବ୍ଦ ଜାନୁଆରୀ ୨୩ ତାରିଖରେ ସୁରେନ୍ଦ୍ର ସାଏ ଜନ୍ମ ଗ୍ରହଣ କରିଥିଲେ । ୧୮୨୭ ମସିହା ବେଳକୁ ତାଙ୍କୁ ମାତ୍ର ୧୯ ବର୍ଷ ହୋଇଥିଲା । ଅପରପକ୍ଷରେ ଇଂରାଜିମାନେ

ଅର୍ଥନୈତିକ ଦିଗରୁ ସମ୍ବଲପୁରକୁ ଲାଭଜନକ ବୋଲି ମନେ କରୁନଥିଲେ । କିନ୍ତୁ ଏହାର ଦକ୍ଷିଣରେ କଟକ, ପଶ୍ଚିମରେ ନାଗପୁର ଓ ଉତ୍ତର ଦିଗରେ ହଜାରିବାଗ ଥିବାରୁ ସେମାନେ କେନ୍ଦ୍ରସ୍ଥାନ ସମ୍ବଲପୁରକୁ ସାମରିକ ଦୃଷ୍ଟି କୋଣରୁ ଗୁରୁତ୍ୱ ଦେଉଥିଲେ ଓ ଏହାକୁ ପ୍ରତ୍ୟକ୍ଷ ଅଧିକାରରେ ରଖିବାକୁ ଚାହୁଁଥିଲେ ।

ସୁରେନ୍ଦ୍ର ସାଏ ଅତ୍ୟନ୍ତ ବୁଦ୍ଧିମାନ୍ ଥିବାରୁ ଇଂରେଜମାନଙ୍କର ଚକ୍ରାନ୍ତ ସେ ହୃଦୟଙ୍ଗମ କଲେ । ସ୍ୱଦେଶର ସ୍ୱାଧିନତା ହିଁ ତାଙ୍କର ମୁଖ୍ୟଧେୟ ହେଲା । ସେ ସର୍ବପ୍ରଥମେ ରାଜବଂଶୀୟ ଭାଇବିରାଦରଆଦିଙ୍କୁ ଅନାୟାସରେ ସଂଗଠିତ କଲେ । ଏହି ରାଜବଂଶୀୟମାନେ ଗ୍ରାମକୁ ଗ୍ରାମ ବୁଲି ସ୍ୱାଧିନତା ସଂଗ୍ରାମର ବାର୍ତ୍ତା ପ୍ରଚାର କରିବାକୁ ଲାଗିଲେ । କ୍ରମେ ସମସ୍ତ ରାଜା ଜମିଦାର, ଗୌନ୍ତିଆ ତଥା ଜନସାଧାରଣ ସୁରେନ୍ଦ୍ର ସାଏଙ୍କର ଆକର୍ଷଣୀୟ ଓ ବଳିଷ୍ଠ ବ୍ୟକ୍ତିତ୍ୱରେ ପ୍ରଭାବିତ ହୋଇ ସମସ୍ତ ପ୍ରକାରେ ସାହାଯ୍ୟ ଦେଲେ ଓ ସ୍ୱାଧିନତା ସଂଗ୍ରାମରେ ଝାସ ଦେଲେ । ୧୮୨୭ରୁ ୧୮୩୩ ପର୍ଯ୍ୟନ୍ତ ବିଦ୍ରୋହର ବହ୍ନି ସାରା ସମ୍ବଲପୁରକୁ ପ୍ରସାର ଲାଭକଲା । ସ୍ଥାନେ ସ୍ଥାନେ ବିଦ୍ରୋହ ଦେଖାଦେଲା । ଏହା ଦେଖି କାପ୍ଟେନ୍ ୱଇଲିକିନ୍‌ସନ ହଜାରିବାଗରୁ ଓ ରାମଗଡରୁ କ୍ୟାପ୍ଟେନ୍ ହିଗିନ୍‌ସ ସୈନ୍ୟ ବାହିନୀ ସହ ସମ୍ବଲପୁରରେ ପହଞ୍ଚି ବିପ୍ଲବ ଦମନ କରିବାକୁ ଚେଷ୍ଟାକଲେ । ସେମାନେ ଗୋବିନ୍ଦସିଂହଙ୍କୁ କୌଶଳରେ ବନ୍ଦୀ କଲେ ମଧ ବିପ୍ଳବ ଶାନ୍ତ ହେବା ପରିବର୍ତ୍ତେ ଉଦ୍ଦିପୀତ ହେବାକୁ ଲାଗିଲା। ୧୮୩୩ ରେ ରାଣୀ ମୋହନ କୁମାରୀଙ୍କୁ ବୃତ୍ତି ଦେଇ କଟକ ପଠାଇଦିଆଗଲା ଓ ବରପାଲି ବଂଶୀୟ ବୃଦ୍ଧ ଅକର୍ମଣ୍ୟ ରାଜା ନାରାୟଣ ସିଂହଙ୍କୁ ଗାଦୀରେ ବସାଗଲା । ଏଥିରେ ବିଦ୍ରୋହୀ ମାନେ ଅଧିକ ଉତ୍ତେଜିତ ହୋଇଉଠିଲେ ।

ସୁରେନ୍ଦ୍ର ସାଏ ଚତୁର୍ଦ୍ଦିଗରେ ବିପ୍ଳବର ବହ୍ନି ପ୍ରଜ୍ଜ୍ୱଳନ କଲେ । ସମଗ୍ର ଜନତା ତାଙ୍କର ପକ୍ଷ ସମର୍ଥନ କଲା । ଆଦିବାସୀ ସୈନ୍ୟ ସଂଗ୍ରହ କରି ସେମାନଙ୍କୁ ଗରିଲା ଯୁଦ୍ଧ ଓ ତୀରଚାଳନାରେ ତାଲିମ୍ ଦିଆଗଲା । ଗଭୀର ଅନୁଧାନ କଲେ ଜଣାପଡେ ଯେ ସୁରେନ୍ଦ୍ର ସାଏଙ୍କର ରଣ କୌଶଳ ଠିକ୍ ଛତ୍ରପତି ଶିବାଜି ଓ ବିହାରର ରାଣା କୁନ୍‌ୱାର ସିଂହଙ୍କ ପରିଥିଲା । ରାଜ୍ୟର ଚତୁର୍ଦ୍ଦିଗରେ ଘନ ଅରଣ୍ୟାନି, ପାର୍ବତ୍ୟ ଦୁର୍ଗ ଓ ଗିରିଶୃଙ୍ଗହିଁ ଏମାନଙ୍କର ଆଶ୍ରୟ

ସ୍ଥଳ ଥିଲା । ଏହି ଆଶ୍ରୟ ସ୍ଥଳ ମାନଙ୍କୁ ସେନା ବା ତୋପ ଚାଳନା କରିବା ଅତ୍ୟନ୍ତ ଦୁଃସାଧ ଥିଲା । ପୁନଶ୍ଚ ବିଦ୍ରୋହୀ ମାନେ ବଣ ପାହାଡ ସହିତ ଗଭୀର ଭାବରେ ପରିଚିତ ଥିବାରୁ ସେମାନେ ଇଂରେଜିମାନଙ୍କୁ ଅତର୍କିତ ଆକ୍ରମଣ କରି ବହୁ କ୍ଷୟ କ୍ଷତି ଘଟାଇ ଉଭାନ୍ ହୋଇ ଯାଉଥିଲେ ମଧ ଇଂରେଜିମାନେ ସେମାନଙ୍କର କିଛି କରିପାରୁ ନଥିଲେ ଓ କୌଣସି ସନ୍ଧାନ ପାଉନଥିଲେ । ଏହା ଇଂରେଜମାନଙ୍କୁ ଅତ୍ୟନ୍ତ ଆତଙ୍କିତ କରିପକାଇଲା । ଗିରିପଥ ଦେଇ ଇଂରେଜିମାନେ ଆଗେଇବା ସମୟରେ ବିଦ୍ରୋହୀ ମାନେ ଗିରିଶିଖରରୁ ପଥର ଗଡାଇ ବହୁ ଇଂରେଜ ସୈନ୍ୟ କ୍ଷୟ କରୁଥିଲେ । ବୃକ୍ଷସଂକୁଳ ଅରଣ୍ୟାନୀରେ ଇଂରେଜମାନଙ୍କର ତୋପ ଗୁଡିକ ଆକର୍ମଣ୍ୟ ଓ ମୂଲ୍ୟହୀନ ହୋଇଗଲା । ଇଂରେଜମାନେ ବହୁ କ୍ଷତିଗ୍ରସ୍ତ ହେଲେ୍ ମଧ ବିଦ୍ରୋହୀ ମାନଙ୍କ ପାଖରେ ପହଞ୍ଚି ପାରୁନଥିଲେ ।

୧୮୪୦ରେ ସୁରେନ୍ଦ୍ର ସାଏ, ତାଙ୍କର ଭଇମାନଙ୍କ ସହ ରାମପୁର ଗଡ ଆକ୍ରମଣ କଲେ ଓ ସେଠାରେ ଇଂରାଜ ସମର୍ଥକ ଦୁର୍ଜୟ ସିଂହ ଓ ତାଙ୍କର ପୁତ୍ରକୁ ହତ୍ୟାକାରି ରାମପୁରରେ ନିଆଁ ଲଗାଇ ଦେଲେ । ଏହାପରେ ଏମାନେ ସୈନ୍ୟ ସାମନ୍ତ ସଂଗ୍ରହ ପାଇଁ ପାଟଣା ଅଭିମୁଖେ ଯାତ୍ରାକଲେ । ସେ ସମୟରେ ସମ୍ବଲପୁରର ଆସିଷ୍ଟାଣ୍ଟ କମିଶନର ମେଜର ଓସଲେ ଏ ଖବର ପାଇ ସସୈନ୍ୟେ ସେମାନଙ୍କୁ ବୁଢ଼ାରଜା ନିକଟବର୍ତ୍ତୀ ଦେହେରିପାଲି ନାମକ ସ୍ଥାନରେ ବନ୍ଦୀ କଲେ । ସମ୍ବଲପୁରର ଜେଲ୍‌ଖାନା ମଧରେ ସେମାନଙ୍କର ବିଚାର ହୋଇ, ରାଜଦ୍ରୋହ ଓ ରାଜା ଦୁର୍ଜୟ ସିଂହଙ୍କୁ ହତ୍ୟାକରିଥିବା ଅପରାଧରେ ସେମ୍ୟାନଙ୍କର ଯାବଜ୍ଜୀବନ କାରାଦଣ୍ଡ ଆଦେଶ ହେଲା । ୧୮୪୦ ଖ୍ରୀଷ୍ଟାବ୍ଦରେ ସେମାନଙ୍କୁ ହଜାରିବାଗ ଜେଲ୍‌ରେ ଅବରୁଦ୍ଧ କରାଗଲା । ଏପରିକି ସୁରେନ୍ଦ୍ର ସାଏଙ୍କର ଶିଶୁପୁତ୍ର ମିତ୍ରଭାନୁ ସାଏଙ୍କୁ ମଧ ତାଙ୍କ ମାମୁଘର ଗଙ୍ଗାପୁର ଅନ୍ତର୍ଗତ ହାତୀବାରି ଜମିଦାରଙ୍କ ଘରୁ ବନ୍ଦୀକରି ହଜାରିବାଗ ଜେଲ୍‌କୁ ପଠାଇଦିଆଗଲା । ୧୮୪୯ ରେ ନାରାୟଣ ସିଂହଙ୍କର ମୃତ୍ୟୁ ହେଲା, ରାଣୀ ମୁଖ୍ୟପାନ ଦେବୀଙ୍କ ନାମରେ କିଛି କାଳ ଶାସନ ଚାଲିବା ପରେ ଇଂରେଜମାନେ ସେମାନଙ୍କର ପ୍ରତ୍ୟକ୍ଷ ଶାସନ ଘୋଷଣା କରି ରାଜସ୍ୱ ପାଞ୍ଚଗୁଣ ବଢ଼ାଇ ଦେଲେ ।

ସାଧାରଣ ଜନତା ଅତିଷ୍ଠ ହୋଇଉଠିଲା ଓ ଫଳରେ ପ୍ରବଳ ଗଣଅସନ୍ତୋଷ ଦେଖାଦେଲା ।

୧୮୫୭ ମସିହାରେ ସାରା ଭାରତରେ ବିପ୍ଳବର ବାତାଗ୍ନି ଜଳିଉଠିବା ବେଳେ ଦକ୍ଷିଣ ଭାରତର ବିଦ୍ରୋହୀ ସିପାହୀ ଦଳ ଦିଲ୍ଲୀ ଦିଗକୁ ଯାତ୍ରା କରୁଥିବା ସମୟରେ ହଜାରିବଗ ଆକ୍ରମଣ କରି ଜେଲଖାନା ଭାଙ୍ଗିଦେଲେ । ଫଳରେ ୧୮୫୭ ଜୁଲାଇ ତିରିଶ ତାରିଖରେ ସୁରେନ୍ଦ୍ର, ଉଦନ୍ତ, ଉଜ୍ଜଳ, ଛବିଳ ଓ ମିତ୍ରଭାନୁ ଜେଲ୍‌ଖାନାରୁ ମୁକ୍ତ ହେଲେ । ସିପାହୀ ମାନେ ସୁରେନ୍ଦ୍ରଙ୍କୁ ସେମାନଙ୍କର ନେତୃତ୍ୱ ନେଇ ଦିଲ୍ଲୀ ଯିବାର ପ୍ରସ୍ତାବ ଦେଲେ । କିନ୍ତୁ ସୁରେନ୍ଦ୍ର ସାଏଙ୍କର ବିଦ୍ରୋହ ୧୮୨୭ରୁ ହିଁ ଆରମ୍ଭ ହୋଇଥିଲା । ଏଣୁ ଏହି ଅବସ୍ଥାରେ ବିଦ୍ରୋହ ସଫଳ କରି ଗାଦୀ ଲାଭକରି ଦିଲ୍ଲୀରେ ସେ ସେମାନଙ୍କ ସହିତ ଯୋଗଦାନ କରିବାର ପ୍ରତିଶ୍ରୁତି ଦେଇ ଅଗଷ୍ଟ ମାସ ଶେଷ ଭାଗରେ ଉଦନ୍ତ, ଉଜ୍ଜଳ, ଛବିଳ ଓ ମିତ୍ରଭାନୁ ସହ ସମ୍ବଲପୁରର ପହଞ୍ଚିଲେ । ପୂର୍ବରୁ ବଳରାମ ଜେଲ୍‌ଖାନାରେ ହିଁ ପ୍ରାଣ ତ୍ୟାଗ କରିଥିଲେ ।

ସମ୍ବଲପୁରର ସମଗ୍ର ଜନତା ତାଙ୍କୁ ସମ୍ବର୍ଦ୍ଧନା ଜଣାଇଲା । ସୈନ୍ୟ ସଂଗ୍ରହ ଚାଲିଲା ଓ ପନ୍ଦର ହଜାର ସୈନ୍ୟ ନେଇ ସୁରେନ୍ଦ୍ର ସାଏ ସମ୍ବଲପୁର ଆକ୍ରମଣ କଲେ । ସେ ପୁରୁଣା ଜିଲ୍ଲା ଅଧିକାର କରି ସେଠାରେ ଛାଉଣୀ ପକାଇ ରହିଲେ । ସମ୍ବଲପୁରରେ ଥିବା ଇଂରେଜି ଅଧିନସ୍ଥ ସମସ୍ତ ସିପାହୀ ସୁରେନ୍ଦ୍ରଙ୍କ ଦଳରେ ଯୋଗଦେଲେ । ସମ୍ବଲପୁରରେ ଥିବା ସିନିୟର ଆସିଷ୍ଟାଣ୍ଟ କମିଶନର ଙ୍କର ସୈନ୍ୟ ସଂଖ୍ୟା ସୁରେନ୍ଦ୍ରଙ୍କ ତୁଳନାରେ ନଗଣ୍ୟ ଥିଲା ଓ ସୁରେନ୍ଦ୍ରଙ୍କର ବାହିନୀ ମଧ୍ୟ ବନ୍ଧୁକ ଆଦି ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ ଥିଲେ । ଏଣୁ ସେ ସୁବେଦାର ଛକଡି ମହାପାତ୍ର ହାତରେ ଧଳା ପତାକା ପଠାଇ ସୁରେନ୍ଦ୍ରଙ୍କ ପାଖକୁ ସନ୍ଧିର ବାର୍ତ୍ତା ପ୍ରେରଣ କଲେ । ସୁରେନ୍ଦ୍ର ସେଥିରେ ବିଶ୍ୱାସ କରି ଏକାକୀ ଘୋଡାରେ ବସି ଛକଡି ମହାପାତ୍ରଙ୍କ ସହିତ କ୍ୟାପ୍‌ଟେନ୍ ଲେ ଙ୍କ ପାଖକୁ ଗଲେ । କୁଚକ୍ରୀ ଲେ ତାହାଙ୍କୁ ତତ୍‌କ୍ଷଣାତ୍ ବନ୍ଦୀ କଲେ । ବନ୍ଦୀଶାଳାରେ ସୁରେନ୍ଦ୍ର ପ୍ରହରୀ ମାନଙ୍କୁ କବଳିତ କଲେ । ଛକଡି ମହାପାତ୍ର ମଧ୍ୟ ସାହାଯ୍ୟ ସହଯୋଗ ଦେଲେ । ଫଳରେ ସୁରେନ୍ଦ୍ର ରାତିରେ ଜେଲ୍‌ରୁ ଖସି ପଳାୟନ କଲେ, ଏହା ପରେ ସେ ରାତାରାତି

ଖଣ୍ଡା ପହଞ୍ଚି ଉଦନ୍ତଙ୍କ ସହିତ ମିଳିତ ହେଲେ । ଉଦନ୍ତ ପୂର୍ବରୁ ସୈନ୍ୟମାନଙ୍କୁ ସଂଗଠିତ କରି ରଖିଥିଲେ । ଖଣ୍ଡାର ଗୌନ୍ତିଆଙ୍କର ଘରକୁ ଏକ ଦୁର୍ଗରେ ପରିଣତ କରାଗଲା । ପ୍ରତି କାନ୍ଥରେ ଛିଦ୍ରକରି ବନ୍ଧୁକ ମାନ ଖଞ୍ଜିଦିଆଗଲା । ସୁରେନ୍ଦ୍ର ବଳପୂର୍ବକ ଆଶ୍ରୟ କରି ସୈନ୍ୟମାନଙ୍କୁ ବଡପାଟି, ଝରଘାଟି, ମଉଳା ଭଣଞ୍ଜା ଗିରିଶୃଙ୍ଗମାନଙ୍କରେ ଅବସ୍ଥାପିତ କରାଇଲେ । ସେ ଏହି ତିନି ଶୃଙ୍ଗରେ ବୁଲି ବୁଲି ସୈନ୍ୟମାନଙ୍କୁ ତାଲିମ୍ ଦେଉଥିଲେ । ଲକ୍ଷ୍ମଣ ପୁର୍, ନିକଟରେ ବାରପାହାଡର ଡେବିରିଗଡ ନାମକ ଏକ ଗିରଦୁର୍ଗଥିଲା । ସେଠାରେ ଥିବା ମୃତ ଜମିଦାର ବଳଭଦ୍ର ଦେବଙ୍କର ପୁତ୍ର ନିଳାମ୍ବର ସିଂହ, କମଳ ସିଂହ ଓ ଖଗେଶ୍ୱର ସିଂହ ସୁରେନ୍ଦ୍ର ସାଏଙ୍କର ଅନୁଗତ ଓ ପ୍ରବଳ ସମର୍ଥକ ଥିଲେ । ଏହି ଗିରିଦୁର୍ଗ ଅଭେଦ୍ୟ ଥିଲା ଓ ବିଦ୍ରୋହର କେନ୍ଦ୍ରବିନ୍ଦୁ ଥିଲା । ଏହି ଗିରିଶୃଙ୍ଗ ଗୁଡିକ ରାଜ୍ୟର ମଧ୍ୟଭାଗରେ ଅବସ୍ଥିତ ଥିଲା । ଆଶ୍ଚର୍ଯ୍ୟଜନକ ଭାବେ ସୁରେନ୍ଦ୍ର ସାଏ ଗୋଟିଏ ରାତିରେ ଏହି ସମସ୍ତ ଗିରିଶୃଙ୍ଗ ପରିଦର୍ଶନ କରିପାରୁଥିଲେ । ଏଗୁଡିକ ବହୁ ଉଚ୍ଚତା ବିଶିଷ୍ଟ ଓ ଘନ ଅରଣ୍ୟ ପରିବେଷ୍ଟିତ ହୋଇଥିବାରୁ ଇଂରାଜିମାନେ ସେଠାରେ ପହଞ୍ଚି ପାରୁ ନଥିଲେ ଓ ଚେଷ୍ଟାକରିବା ମାତ୍ରକେ ଗରିଲା କୌଶଳରେ ବିଦ୍ରୋହୀ ମାନଙ୍କ ଦ୍ୱାରା ଆକ୍ରମିତ ହୋଇ ବହୁ ସଂଖ୍ୟାରେ ମୃତାହତ ହେଉଥିଲେ ।

ବିଦ୍ରୋହୀମାନଙ୍କର କାର୍ଯ୍ୟକଳାପରେ ବିବ୍ରତ ବୋଧ କରି ତତ୍ କାଳୀନ କଟକର କମିଶନରେ କକ୍‌ବର୍ଣ୍ଣ, କ୍ୟାପ୍‌ଟେନ ନକର୍‌ଙ୍କ ଅଧିନରେ ଦୁଇଦଳ ସୈନ୍ୟ ସମ୍ବଲପୁରକୁ ପଠାଇଲେ । ସେମାନେ ଅକ୍ଟୋବର ଦଶ ତାରିଖ ଦିନ ସମ୍ବଲପୁରରେ ପହଞ୍ଚିଲେ । ମାଡ୍ରାସରୁ ଲେଫଟ୍‌ନାଣ୍ଟ ହେଡୋ କିଛି ହାଲୁକା ପାର୍ବତୀୟ ତୋପ ସହ ଆସି ମିଳିତ ହେଲେ । ଉଭୟେ ନଭେମ୍ବର ପାଞ୍ଚତାରିଖ ଦିନ କୋଲାବିରା ଆକ୍ରମଣ କଲେ । ସେଠାରେ ଜମିଦାରଙ୍କୁ ବନ୍ଦୀକରାଯାଇ ସମଗ୍ର ଗ୍ରାମକୁ ଜାଳିଦିଆଗଲା । ଏହାପରେ ସେମାନେ ଖଣ୍ଡାରେ ପହଞ୍ଚିଲେ । ଖଣ୍ଡା ଜନଶୂନ୍ୟ ଥିଲା । ଅନନ୍ୟୋପାୟ ହୋଇ ସେମାନେ ଗ୍ରାମଟିକୁ ସମ୍ପୂର୍ଣ୍ଣ ଭାବରେ ଜାଳି ଭସ୍ମୀଭୂତ କରିଦେଲେ । କ୍ରମେ ଯୁଦ୍ଧର ପରିସର ବ୍ୟାପକ ହେଲା । ବିଦ୍ରୋହୀମାନେ ସାରା ସମ୍ବଲପୁରରେ ଇଂରେଜି ମାରଣ ଯଜ୍ଞ ଆରମ୍ଭ କଲେ । ବିଦ୍ରୋହୀମାନେ ଗରିଲା କୌଶଳରେ ଇଂରେଜ ସେନା ଦେଖିବାମାତ୍ରେ ଧ୍ୱଂସ

କଲେ । ସରକାରୀ ଅନୁଷ୍ଠାନ, ପୋଲିସ ଥାନା, ଡାକଘର ଆଦି ପୋଡିଦିଆଗଲା । ଇଂରେଜ ସରକାର ଗୌନ୍ତିଆ ଜମିଦାର ଓ ଅଧିନସ୍ଥ ମାଫିଦାର, ବୃତ୍ତିଦାର, ଇନାମଦାର ମାନଙ୍କୁ ବିଦ୍ରୋହୀମାନଙ୍କୁ ସାହାଯ୍ୟ ନ କରିବା ପାଇଁ ସତର୍କ କରାଇଦେଲେ । କିନ୍ତୁ ସୁରେନ୍ଦ୍ର ସାଏ ତନ୍ମଧ୍ୟରୁ କିଛି ଇଂରେଜି ସମର୍ଥକଙ୍କୁ ଠାବକରି ରାତ୍ରିବେଳା ତାଙ୍କୁ ଆକ୍ରମଣ କରି ଅନୁଗତ କରୁଥିଲେ ଫଳରେ କେହି ଇଂରେଜିଙ୍କୁ ସାହାଯ୍ୟ କରିପାରୁ ନଥିଲେ । କ୍ରମେ ସମ୍ବଲପୁର ସହରରେ ପାଞ୍ଚମାଇଲ ଆକ୍ରାନ୍ତ ପରିଧିର ବାହାର ସମସ୍ତ ସ୍ଥାନ ବିଦ୍ରୋହୀ ମାନଙ୍କର କବଳିତ ହୋଇସାରିଥିଲା । ବିଦ୍ରୋହୀ ମାନେ ରାଜଧାନୀ ସମ୍ବଲପୁର ସହର ଦଖଲ ପାଇଁ ସହର ମଧ୍ୟକୁ ଗୁଳି ଗୋଳା ବର୍ଷଣ କଲେ । ଏହି ବିଦ୍ରୋହର ପ୍ରଭାବ ସମ୍ବଲପୁରର ଚତୁର୍ଦ୍ଦିଗରେ ଥିବା ବାମଣ୍ଡା, ଅନୁଗୁଳ, ପାଟଣା ଓ ଖଡିଆଳରେ ମଧ୍ୟ ପଡିଥିଲା । ଏଠାରେ ରାଜା ଓ ଜନତାଙ୍କର ବିଦ୍ରୋହୀମାନଙ୍କ ପ୍ରତି ପୂର୍ଣ୍ଣ ସମର୍ଥନ ଥିଲା । ଏହାର ପ୍ରଭାବରେ ବୌଦ କନ୍ଧମାଳରେ ମଧ୍ୟ ବିଦ୍ରୋହ ଦେଖାଦେଇଥିଲା । ସମ୍ବଲପୁରରେ ବହୁ ଇଂରେଜି ସୈନ୍ୟ ବିଦ୍ରୋହୀମାନଙ୍କ ଗୁଳିଗୋଳାରେ ଆହତ ହେଉଥିବା ଦୃଷ୍ଟିରୁ ସେମାନଙ୍କର ଚିକିତ୍ସାନିମନ୍ତେ ଗଞ୍ଜାମର କଲେକ୍ଟର କଟକ ବାଟେ ମୁର୍ ଓ ହେନସନ୍ ନାମକ ଦୁଇଜଣ ଡାକ୍ତରଙ୍କୁ ପଠାଇଥିଲେ । ସେମାନେ ରେଢ଼ାଖୋଲର ରାମପୁରରେ କୌଣସି ପ୍ରକାରେ ପହଞ୍ଚି ପାରିଲେ । ସମ୍ବଲପୁର ଆଉ ୪୦ ମାଇଲ ଥିଲା । କିନ୍ତୁ ଅବସ୍ଥାରେ ଭୟାବହତା ଦୃଷ୍ଟିରୁ ସେମାନେ ଆଉ ଆଗେଇ ନ ପାରି ସମ୍ବଲପୁରକୁ କିଛି ସୈନ୍ୟ ସାହାଯ୍ୟ ପାଇଁ ଖବର ପଠାଇ ଥିଲେ । କିନ୍ତୁ, ତାହାର କୌଣସି ଉତ୍ତର ନ ଆସିବାରୁ ସେମାନେ ସମ୍ବଲପୁର ଅବସ୍ଥାର ଭୟାବହତା ଅନୁମାନ କଲେ । କିନ୍ତୁ ସେଠାରେ ଚିକିତ୍ସାର ଆବଶ୍ୟକତା ଥିବା ଦୃଷ୍ଟିରୁ ସେମାନେ ଆଉ ଅପେକ୍ଷା ନ କରି ୧୬ ଜଣ ବୋଝିଆଙ୍କ ସହ ସମ୍ବଲପୁର ଅଭିମୁଖେ ଯାତ୍ରା ଆରମ୍ଭ କଲେ । ସେମାନେ ଅଳ୍ପ କିଛି ବାଟ ଅଗ୍ରସର ହେବା ପରେ ବଡପାଡି ନିକଟରେ ସୁରେନ୍ଦ୍ରଙ୍କର ସୈନ୍ୟମାନେ ସେମାନଙ୍କୁ ଘେରିଗଲେ ଓ ସେମାନଙ୍କର ନେତୃତ୍ୱ ନେଉଥିବା ମଧୁଗୌନ୍ତିଆ ଡାକ୍ତର ମୁରଙ୍କୁ ଫାର୍ସୀରେ ବଧ କଲେ । ହେନସନ୍ କୌଶଳରେ ଜଙ୍ଗଲ ଭିତରକୁ ଲୁଚିପଳାଇଗଲେ । କିଛିଦିନ ପରେ ଅନାହାରରେ ଜଙ୍ଗଲ ମଧ୍ୟରେ ବୁଲିବା ପରେ ତାଙ୍କୁ ଉଦ୍ଧାର କରାଯାଇ ରାମପୁର ଅଣାଗଲା । କ୍ୟାପ୍‌ଟେନ୍ ଲେ କୋଡିଏ ତାରିଖ ଦିନ କଟକରୁ ନିଜ

ସୈନ୍ୟବାହିନୀ ସହ ସମ୍ବଲପୁର ଦିଗରେ ରମାନା ହେଲେ । ପଥ ମଧ୍ୟରେ ବିଦ୍ରୋହୀ ମାନଙ୍କର ଗରିଲା କୌଶଳରେ ବାରମ୍ବାର ଆକ୍ରମିତ ହୋଇ ତାଙ୍କର ପ୍ରଭୂତ ସୈନ୍ୟ କ୍ଷୟ ହେଲା ଓ ଅଳ୍ପ କିଛି ସୈନ୍ୟ ସହ ସେ କୌଣସି ପ୍ରକାରେ ରାମପୁରରେ ପହଞ୍ଚିବାକୁ ସମର୍ଥ ହେଲେ । ସେ ବିଦ୍ରୋହୀମାନଙ୍କର ସ୍ଥିତି ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞଥିବାରୁ ବିଦ୍ରୋହୀ ମାନଙ୍କର କୌଣସି କ୍ଷତି କରି ପାରିନଥିଲେ । ଅବଶେଷରେ ସେ ହେନ୍‌ସନ୍‌ଙ୍କୁ ନେଇ ସମ୍ବଲପୁରରେ ପହଞ୍ଚିବାରେ ସକ୍ଷମ ହେଲେ । ଡ଼ିସେମ୍ବର ପାଞ୍ଚତାରିଖ ଦିନ କଟକର କମିଶନର କକ୍‌ବର୍ଣ୍ଣ ସମ୍ବଲପୁରର ପ୍ରତ୍ୟକ୍ଷ ଶାସନ ଭାର ନିଜ ହାତକୁ ନେଲେ । ଶାସନ ଭାର ନେବା ସଂଗେ ସଂଗେ କକ୍‌ବର୍ଣ୍ଣ ବିଦ୍ରୋହ ଦମନ କରିବା ପାଇଁ ବିଭିନ୍ନ ବ୍ୟବସ୍ଥା ମାନ କରିବାକୁ ଲାଗିଲେ, ନଈ ନାଳ ପାରିହେବା ପାଇଁ ଡଙ୍ଗା, ସ୍ଥଳ ଭାଗରେ ଅଗ୍ରଗତି ପାଇଁ ତିନିଶହ ଗୋରୁଗାଡି, ଦୁଇ ତିନି ଶହ ଭାରୁଆ ଏହା ବ୍ୟତୀତ ମାଲବାନ୍ଧି ନେବା ପାଇଁ ଶହ ଶହ ଥୋରିଆ ବଳଦ ବ୍ୟବସ୍ଥା କରାଗଲା । ଅନୁଗତ ରାଜାମାନେ ହାତୀ ଓ ଖାଦ୍ୟଦ୍ରବ୍ୟର ରସଦ୍ ଯୋଗାଇଦେଲେ ।

ଏହି ପରି ବନ୍ଦୋବସ୍ତ ଚାଲିଥିବା ସମୟରେ ଦିନେ ଦଳେ ବିଦ୍ରୋହୀ ସମ୍ବଲପୁର ସହର ଭିତରେ ପଶି ଦୁଇଜଣ ଇଂରେଜି ସୈନ୍ୟଙ୍କୁ ବଧକରି ଓ ଆ୦ ଜଣଙ୍କ ଘାଏଲ କରି ଉଭାନ୍ ହୋଇଗଲେ ।

କକ୍‌ବର୍ଣ୍ଣ ଆତଙ୍କିତ ହୋଇ ଓ ପରିସ୍ଥିତିର ଭୟାବହତା ଅନୁଭବ କରି ମେଜରବେଟ୍‌ସଙ୍କୁ ମାଡ୍ରାସ ବାହିନୀ ସହ କଟକରୁ ପଠାଇଲେ । ଉଇଣ୍ଡହାମ୍ ଓ ଏଲଓ୍ୱିନଙ୍କର ବାହିନୀ ସହ କକ୍‌ବର୍ଣ୍ଣ ଜାନୁଆରୀ ୨୦ ତାରିଖରେ ସମ୍ବଲପୁରରେ ପହଞ୍ଚିଲେ । କ୍ୟାପ୍‌ଟେନ୍ ଉଡ୍‌ମଧ ନାଗପୁରରୁ ଆସି ପହଞ୍ଚିଲେ । ବେଟ୍‌ସ ଏହି ସମ୍ମିଳିତ ସେନାର ଅଧିନାୟକତ୍ୱ ଗ୍ରହଣ କରି ସୁରେନ୍ଦ୍ରଙ୍କୁ ଖୋଜିବାକୁ ଲାଗିଲେ । ପରିଶେଷରେ କୁଦୋପାଲିରେ ସୁରେନ୍ଦ୍ରଙ୍କୁ ପାଇଲେ । ପ୍ରବଳଯୁଦ୍ଧ ହେଲା । କ୍ୟାପ୍‌ଟେନ ଉଡ୍ ତିନିଜଣଙ୍କୁ ହତ୍ୟା କଲେ ମଧ ନିଜେ ଶର ଦ୍ୱାରା ଆହତ ହେଲେ । ସୁରେନ୍ଦ୍ର ସାଏ ଶର ସରିଯିବାରୁ ସେ ଆତ୍ମ ଗୋପନ କରି ପଳାୟନ କଲେ । ତାଙ୍କର ଭାଇ ଛବିଳ ସାଏ ଗ୍ରାମର ମଧ ଭାଗଦେଇ ଯୋଡାରେ ଯାଉଥିବା ସମୟରେ କେତେକ ଇଂରେଜି ସୈନ୍ୟ ତାଙ୍କର ଅନୁଧାବନ କରି

ତାଙ୍କୁ ପଛପଟୁ ଗୁଳି କରିବା ଫଳରେ ତାଙ୍କର ମୃତ୍ୟୁ ହେଲା । ବେଟ୍‌ସ ଝରଘାଟିକୁ ଚତୁର୍ଦ୍ଦିଗରୁ ଆକ୍ରମଣ କଲେ ସେଥିରେ ଥିବା ୧୪୦୦ ବିଦ୍ରୋହୀ ସୈନ୍ୟ ତୀର, ତରବାରୀ ବର୍ଚ୍ଛା, ବନ୍ଧୁକ ଓ ଗୋଳାବାରୁଦରେ ତାହାର ଜବାବ ଦେଲେ । ହଜାରେ ବିଦ୍ରୋହୀ ନିହତ ହେଲେ ଓ ବେଟ୍‌ସ ସେମାନଙ୍କର ଗୋଳାବାରୁଦ ଓ ଅସ୍ତ୍ରଶସ୍ତ୍ର ହସ୍ତଗତ କଲେ ।

ବିଦ୍ରୋହୀମାନଙ୍କର ଶବ ଗଛମାନଙ୍କରେ ଝୁଲାଇ ଦିଆଗଲା । ବେଟ୍‌ସ ଏହା ପରେ କୋଲାବିରାକୁ ଯାଇ ତାହା ଜାଳିପୋଡି ଛାରଖାର କରିଦେଲେ, ସେଠାରେ ଗୌନ୍ତିଆ ଓ ଅନ୍ୟ ପ୍ରଭାବଶାଳୀ ଲୋକମାନେ ଆତ୍ମ ସମର୍ପଣ କଲେ ।

୧୮୫୮ ମସିହା ଫେବୃୟାରୀ ୧୨ ତାରିଖ ଦିନ କ୍ୟାପ୍‌ଟେନ ଉଡ୍‌ଓ ଉଡ୍‌ବ୍ରିଜ ପାହାଡଶ୍ରୀଖିଡ଼ା ଅଧିକାର କରିବାକୁ ଯାଉଥିବା ବେଳେ ପଥ ମଧ୍ୟରେ ବିଦ୍ରୋହୀମାନେ ସେମାନଙ୍କୁ ଗରିଲା କୌଶଳରେ ଆକ୍ରମଣ କରିଥିଲେ । ରାମଗଡ ବାଟାଲିୟନ ଓ ଗୋଲନ୍ଦାଜ ସେନା ଶ୍ରୀଗିଡାରେ ପହଞ୍ଚିବା ମାତ୍ରେ ଦୁର୍ଗର ଛିଦ୍ର ମଧ୍ୟରୁ ବିଦ୍ରୋହୀମାନଙ୍କର ଅବିଶ୍ରାନ୍ତ ଗୁଳିବର୍ଷଣର ସମ୍ମୁଖୀନ ହେଲେ । ଇଂରାଜି ସୈନ୍ୟମାନେ କୌଣସି ପ୍ରକାରେ ଚଢ଼ିବାକୁ ଚେଷ୍ଟା କରିବା ବେଳେ ଉପରୁ ପଡୁଥିବା ବଡ ବଡ ପଥର ଖଣ୍ଡର ସମ୍ମୁଖୀନ ହୋଇ ବହୁ ସଂଖ୍ୟାରେ ପ୍ରାଣ ହରାଇଲେ ଓ ସେମାନଙ୍କର ତୋପମାନ ଭାଙ୍ଗି ଗଲା । ତଥାପି ଉଡବ୍ରିଜ୍ ଉପରକୁ ଉଠିବାକୁ ଗଲେ । ବିଦ୍ରୋହୀ ମାନେ ତାଙ୍କ ଉପରକୁ ଝାମ୍ପଡିଲେ ଓ ତାଙ୍କର କଟାମୁଣ୍ଡ ଆଣି ଶୃଙ୍ଗ ଶିଖରସ୍ଥ ବୃକ୍ଷଶାଖାରେ ଝୁଲାଇ ଦେଲେ । ଇଂରାଜି ସୈନ୍ୟମାନଙ୍କ ମଧ୍ୟରୁ ମାତ୍ର ଦୁଇଜଣ ପ୍ରାଣ ନେଇ ଫେରିଯାଇଥିଲେ ।

ଏହା ପରେ କକ୍‌ବର୍ଣ୍ଣ ଓ୍ୱାର୍ଲୋକୁ ପଠାଇଲେ ଓ ଓ୍ୱାରଲେ ଫେବୃୟାରୀ ୧୪ ତାରିଖ ଦିନ ଶ୍ରୀ ଗିଡାରେ ପହଞ୍ଚି ତାହା ତିନିଦିଗରୁ ଘେରିଯାଇ ଦୁର୍ଗରେ ପହଞ୍ଚି ଉଡ୍‌ବ୍ରିଜଙ୍କ ଶବ ଛଡା ଆଉକିଛି ଦେଖିବାକୁ ପାଇଲେ ନାହିଁ । ବହୁ ପୂର୍ବରୁ ସୁରେନ୍ଦ୍ର ସାଏ ନିଜର ବାହିନୀ ସହ ଶ୍ରୀଗିଡା ତ୍ୟାଗକରି ୨୨୬୭ ଫୁଟ ଉଚ୍ଚତା ବିଶିଷ୍ଟ ବାରପାହାଡର ଡେବିରିଗଡରେ ଆଶ୍ରୟ ନେଇଥିଲେ । ଏହି

ଗିରିଶୃଙ୍ଗର ନିମ୍ନଦେଶରେ ବାରବଖରା କ୍ଷମକ ଥିଲା ବିପଦବେଳେ ଏକ ଉତ୍କୃଷ୍ଟ ଆଶ୍ରୟସ୍ଥଳଥିଲା, ବୋହିଯାଉଥିବା ଖଣ୍ଡଜୋର ନାମକ ଏକ ଝରଣା ଦୁର୍ଗର ପରିଖା ପରି ଥିଲା । ଏହି ଦୁର୍ଗ ପଥର ପାଚେରୀ ପରିବେଷ୍ଟିତ ଥିଲା ଓ ଏଥିରେ ଏକ ଗୁପ୍ତ ପଳାୟନ ପଥ ମଧ୍ୟ ଥିଲା । ଏହା ଅଭେଦ୍ୟ ଘଞ୍ଚ ଅରଣ୍ୟାନୀ ମଧ୍ୟରେ ଅବସ୍ଥିତ ଥିଲା । ଏହି ଦୁର୍ଗରୁ ବିଦ୍ରୋହୀମାନେ ରାତ୍ରିକାଳରେ ବହିର୍ଗତ ହୋଇ ଶତ୍ରୁ ଶିବିର ବିଭିନ୍ନ ଆସ୍ଥାନଉପରେ ଅତର୍କିତ ଆକ୍ରମଣ କରି ଦୁର୍ଗକୁ ଫେରି ଆସୁଥିଲେ ।

ବିଦ୍ରୋହୀମାନେ ସମ୍ବଲପୁର ରାଜ୍ୟର ଚତୁର୍ଦ୍ଦିଗରେ ବିକ୍ଷିପ୍ତ ହୋଇ ରହି ଇଂରେଜମାନଙ୍କୁ ବାରମ୍ବାର ଆତର୍କିତ ଆକ୍ରମଣ କରି ବ୍ୟସ୍ତବିବ୍ରତ ଓ କ୍ଷତିଗ୍ରସ୍ତ କରିବା ଫଳରେ ଓ ଇଂରେଜିମାନେ ବିଦ୍ରୋହୀ ସମର୍ଥକ ଗ୍ରାମମାନଠାବ କରି ତାହା ଲୁଟ୍‌କଲେ ଓ ଜଳାଇ ଧ୍ୱଂସ କଲେ । ଏହା ଫଳରେ ଗ୍ରାମ୍ୟ ଜନସାଧାରଣ ଅତ୍ୟାଚାରରେ ଅତିଷ୍ଠ ହୋଇ ସୁରେନ୍ଦ୍ରଙ୍କ ପ୍ରତି ଅଧିକ ସହାନୁଭୂତିଶୀଳ ହୋଇପଡିଲେ ।

ଫେବୃଆରୀ ମାସରେ କ୍ୟାପ୍‌ଟେନ୍ ସେକ୍ସପିୟର, ସିଂହୋଡା ଘାଟି ଆକ୍ରମଣ କଲେ । ଯୁଦ୍ଧରେ ଏକ ପଥର ଛିଟ୍‌କା ମାଡରେ ବିଦ୍ରୋହୀଙ୍କର ନେତୃତ୍ୱ ନେଉଥିବା ହଟେ ସିଂହ ଅଚେତ ହୋଇଗଲେ । ଗୋଳା ବୃଷ୍ଟି ଫଳରେ ଏଗାର ଜଣେ ମୃତ୍ୟୁ ବରଣ କଲେ । ସୈନ୍ୟମାନେ ହଟେସିଂହଙ୍କୁ ପଥର ତଳେ ଲୁଚାଇ ରଖିଥିଲେ । ଇଂରେଜ ମାନେ ତୋପଚାଳନା ବନ୍ଦ କରି ପାହାଡ ଉପରକୁ ଆସି ଅନୁସନ୍ଧାନ କଲାବେଳକୁ କେହି ନଥିଲେ । ସେମାନେ ଯିବାପରେ ସୈନ୍ୟମାନେ ହଟେସିଂହଙ୍କୁ ନିରାପଦ ଆଶ୍ରୟକୁ ନେଇଗଲେ । ପରେ ପରେ ସୁରେନ୍ଦ୍ର ସାଏ ସିଂହୋଡା ଓନିଶା ଘାଟି ଉଦ୍ଧାର କଲେ ।

ଏ ମଧ୍ୟରେ ୧୮୫୭ର ଜାତୀୟ ସଂଗ୍ରାମର ପରିସମାପ୍ତି ଘଟିଥିଲା । ଇଂରେଜିମାନେ ସୁରେନ୍ଦ୍ର ସାଏଙ୍କୁ ଦମନ କରିବାକୁ ନିଜର ସମସ୍ତ ଶକ୍ତି ସମ୍ବଲପୁରରେ ଠୁଳ କରିବାକୁ ଲାଗିଲେ । କଟକ, କଲିକତା ଓ ନାଗପୁର ଯାଇଥିବା ରାସ୍ତାର ସାମରିକ ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କରେ ସୈନ୍ୟବାହିନୀ ମାନଙ୍କୁ ଅବସ୍ଥାପିତ କରାଗଲା । ଏତଦ୍ ବ୍ୟତୀତ ଏଗାରୋଟି ଘାଟିମଧ୍ୟ ପ୍ରତିଷ୍ଠା କରାଗଲା । ବିଭିନ୍ନ ଯାଗାରେ

ଫାଣ୍ଡିମାନ ପ୍ରତିଷ୍ଠା କରାଗଲା । ତଥାପି ସେମାନେ ବିଦ୍ରୋହୀମାନଙ୍କ କିଛି କ୍ଷତି କରିପାରିଲେ ନାହିଁ । ସରକାର ସୁରେନ୍ଦ୍ରଙ୍କର ସମର୍ଥନ କାରୀ ମାନଙ୍କର ସମ୍ପତ୍ତି ବାଜ୍ୟାପ୍ତି ହେବାର ଘୋଷଣା କରି ଆତ୍ମ ସମର୍ପଣ କଲେ କ୍ଷମାଦିଆ ଯାଇ ବାଜାପ୍ତି ସମ୍ପତ୍ତି ଫେରାଇ ଦେବାର ପ୍ରତିଶ୍ରୁତି ଦେଲେ ମଧ୍ୟ କେହି ହେଲେ ଆତ୍ମ ସମର୍ପଣ କଲେ ନାହିଁ । ଇଂରେଜମାନେ ଅନନ୍ୟୋପାୟ ହୋଇ ସୁରେନ୍ଦ୍ରଙ୍କର ସଂଗଠନ କୁ ଖଣ୍ଡ ବିଖଣ୍ଡିତ କରିବା ପାଇଁ ତାଙ୍କର ସମର୍ଥନକାରୀ ଜମିଦାର ମାନଙ୍କୁ ହତ୍ୟାକରିବାକୁ ଲାଗିଲେ । ଏ ସମସ୍ତ ସତ୍ତ୍ୱେ ବିଦ୍ରୋହୀ ମାନଙ୍କ ସହିତ ସମଗ୍ର ଜନତା ସମ୍ମିଳିତ ହୋଇ ଆତ୍ମସମର୍ପଣ କରିବା ପରିବର୍ତ୍ତେ ସୁରେନ୍ଦ୍ରଙ୍କୁ ରାଜା କରାଯିବା ପାଇଁ ଦାବି ଉପସ୍ଥାପିତ କଲେ ।

୧୮୬୧ ମସିହାରେ ମେଜର ଇମ୍ପେ ସମ୍ବଲପୁରର ଡେପୁଟୀ କମିଶନର ରୂପେ ନିଯୁକ୍ତି ହେଲେ । ସେ ସୁରେନ୍ଦ୍ର ସାଏ ଆତ୍ମସମର୍ପଣ କଲେ ତାଙ୍କର ସମସ୍ତ ଦୋଷ କ୍ଷମା ଦିଆଯିବ ଓ ବିଦ୍ରୋହୀମାନେ ମଧ୍ୟ ଆତ୍ମ ସମର୍ପଣ କଲେ ସେମାନଙ୍କର ବାଜ୍ୟାପ୍ତି ସମ୍ପତ୍ତି ଫେରାଇ ଦିଆଯାଇ ସେମାନଙ୍କୁ କ୍ଷମା ଦିଆଯିବାର ପ୍ରତିଶ୍ରୁତି ଦେଲେ । ଏହି ଘୋଷଣାରେ କିଛି ବିରଣାଳୀ ଜମିଦାର ଓ ଗୌନ୍ତିଆ ଆତ୍ମସର୍ମପଣ କରି ବାଜ୍ୟାପ୍ତି ସମ୍ପତ୍ତି ଫେରିପାଇବା ସଂଗେ ସଂଗେ ଆର୍ଥିକ ପୁରସ୍କାର ମଧ୍ୟ ପାଇଲେ । ଏହା ଦେଖି ହଟେ ସିଂହ, କୁଞ୍ଜଳ ସିଂହ, କମଳ ସିଂହ, ଖଗେଶ୍ୱର ସିଂହ ଓ ନୀଳାମ୍ବର ସିଂହଙ୍କୁ ଛାଡି ପ୍ରାୟ ସମସ୍ତ ଗୌନ୍ତିଆ ଓ ଜମିଦାର ଆତ୍ମସମର୍ପଣ କରିଗଲେ ।

ଏ ସମସ୍ତ ସତ୍ତ୍ୱେ ସାଧାରଣ ଜନତାଙ୍କର ସୁରେନ୍ଦ୍ର ସାଏଙ୍କ ପ୍ରତି ପ୍ରବଳ ସମର୍ଥନ ଥିଲା ଓ ସୁରେନ୍ଦ୍ର ସାଏ ବିଦ୍ରୋହ ଚାଲୁରଖିଲେ । ବିଦ୍ରୋହ ଦମନର କୌଣସି ଉପାୟ ନଦେଖି ପରିଶେଷରେ ସମ୍ବଲପୁରକୁ ନାଗପୁରର ଅଧିନରେ ରଖାଯିବାର ବିଚାର କରାଗଲା । ଏ ମଧ୍ୟରେ ଇମ୍ପେ, ସୁରେନ୍ଦ୍ରଙ୍କୁ ବାରମ୍ବାର ଆତ୍ମସମର୍ପଣ ପାଇଁ ଅନୁରୋଧ ଜଣାଇଲେ ମଧ୍ୟ ସୁରେନ୍ଦ୍ର ଅଟଳ ରହିଲେ । ଉଜ୍ଜଳସାଏ ପାଟଣା ରାଜାଙ୍କ ଠାରୁ ସାହାଯ୍ୟ ପାଇଁ ଯାଇଥିଲା ବେଳେ ପାଟଣା ରାଜା ଇଂରାଜିମାନଙ୍କ ଭୟରେ ଉଜ୍ଜଳଙ୍କୁ ସେମାନଙ୍କ ହସ୍ତରେ ଅର୍ପଣ କରିଥିଲେ । ୧୮୬୩ ମସିହାରେ ସମ୍ବଲପୁରକୁ ମଧ୍ୟପ୍ରଦେଶର ଅଧିନକୁ ଅଣାଗଲା । ବିଦ୍ରୋହ

ଶାନ୍ତ ହେବା ପରିବର୍ତ୍ତେ ଗଣବିଦ୍ରୋହରେ ପରିବର୍ତ୍ତିତ ହେଲା । ଜନତା ଏକତ୍ରିତ ହୋଇ ସଭାସମିତିମାନକରି ସୁରେନ୍ଦ୍ର ସାଏଙ୍କୁ ରାଜା ବୋଲି ସ୍ୱୀକାର କରିବାକୁ ସ୍ମାରକ ପତ୍ର ମାନ ନେବାକୁ ଲାଗିଲେ ।

ନାଗପୁରର ଚିଫକମିଶନର ମେଜର ଇମ୍ପେ ଅବସ୍ଥା ନିରୀକ୍ଷଣ ପାଇଁ ସମ୍ବଲପୁର ଆସିଥିବା ଅବସ୍ଥାରେ ସମ୍ବଲପୁରର ଜନତା ଉପରୋକ୍ତ ଦାବିଜଣାଇ ସହସ୍ର ସ୍ୱାକ୍ଷର ସମ୍ବଳିତ ସ୍ମାରକପତ୍ର ପ୍ରଦାନ କରିଥିଲେ ।

ଏଥିରେ ଇମ୍ପେ ବିରକ୍ତ ହେଲେ ଓ ଇଂରେଜ ସୈନ୍ୟମାନେ ଗାଁଗଣ୍ଡା ଜାଳିପୋଡି ଲୁଟତରାଜକରି ଛାରଖାର କରିବାକୁ ଲାଗିଲେ । ତଥାପି ବିଦ୍ରୋହ ପ୍ରଶମନର କୌଣସି ଲକ୍ଷଣ ନଦେଖି ଇମ୍ପେ  ବିବ୍ରତ ଓ ନିରାଶ ହୋଇ ପଡିଲେ । ସେ ତୁଷ୍ଟିକରଣ ନୀତିରେ ବିଦ୍ରୋହୀମାନେ ଆତ୍ମସମର୍ପଣ କଲେ ସେମାନଙ୍କୁ ସମ୍ପତ୍ତି, ବୃତ୍ତି ଫେରାଇ ଦିଆଯିବା ସହ ଆଜୀବନ ଭରଣ ପୋଷଣ ଦିଆଯିବାର ଘୋଷଣା କଲେ । ପ୍ରଜାମାନେ ଇଂରାଜଙ୍କର ଦ୍ୱାରା ଅଯଥାରେ ବହୁ ନିର୍ମମ ଭାବରେ ଅତ୍ୟାଚାରିତ ହେଉଥିବା ଦୃଷ୍ଟିରୁ ଅଧିକାଂଶ  ବିଦ୍ରୋହୀ ଘୋଷଣା ପରେ ପରେ ଆତ୍ମସମର୍ପଣ କଲେ । ୧୮୬୨ ମସିହା ଜାନୁୟାରୀ ବାର ତାରିଖ ଦିନ ଉଦନ୍ତ ସାଏ ଓ ଧ୍ରୁବ ସାଏ ଆତ୍ମସମର୍ପଣ କଲେ ।

କିନ୍ତୁ ଏ ସମସ୍ତ ସତ୍ତ୍ୱେ ମାସ ପରେ ମାସ ବିତିଗଲେ ମଧ ସୁରେନ୍ଦ୍ର ସାଏ ଅଟଳ ରହିଲେ । ପରିଶେଷରେ ଅଧୈର୍ଯ୍ୟ ହୋଇ ଇମ୍ପେ, ଉଦନ୍ତ ସାଏଙ୍କୁ ହାତ କରି ସୁରେନ୍ଦ୍ରଙ୍କ ପାଖକୁ ଦୂତ ରୂପେ ପଠାଇ ଆତ୍ମସମର୍ପଣର ଅନୁରୋଧ ଜଣାଇଲେ । ସୁରେନ୍ଦ୍ର ପ୍ରଥମତଃ, ପ୍ରଜାମାନଙ୍କ ଉପରେ ଅତ୍ୟାଚାର ବନ୍ଦ କରିବା ଦ୍ୱିତୀୟତଃ, ସୁରେନ୍ଦ୍ରଙ୍କୁ ରାଜା ରୂପେ ସ୍ୱୀକାର କରିବା, ତୃତୀୟତଃ, ବିଦ୍ରୋହୀ ମାନଙ୍କର ଖାଦ୍ୟନିମିତ୍ତି କିଛି ଅର୍ଥ ପ୍ରେରଣ କରାଯିବା ସର୍ତ୍ତ ରକ୍ଷାକରାଗଲେ ସେ ଆତ୍ମସମର୍ପଣ କରିବେ ବୋଲି ଜଣାଇଦେଲେ ଏହି ପତ୍ର ୧୮୬୨ ମେ ଚାରି ତାରିଖ ଦିନ ଇମ୍ପେ ପ୍ରାପ୍ତ ହୋଇଥିଲେ ।

ମେଜର ଇମ୍ପେ ପାଞ୍ଚଶହ ଟଙ୍କା ପଠାଇଲେ ଓ ସୁରେନ୍ଦ୍ର ସାଏ ତାହା ବିଦ୍ରୋହୀମାନଙ୍କ ମଧ୍ୟରେ ବାଣ୍ଟି ଦେଲେ ।

ମେ ଚାରି ତାରିଖ ଦିନ ଇମ୍ପେ, ସୁରେନ୍ଦ୍ରଙ୍କୁ ସମ୍ବଲପୁର ଆସିବା ପାଇଁ, ଅନୁରୋଧ କରି ପତ୍ର ପଠାଇଲେ। ସେ ସମୟରେ ଭାରତ ବର୍ଷର ଅନ୍ୟାନ୍ୟ ସ୍ଥାନରେ ବିଦ୍ରୋହ ଶାନ୍ତ ପଡିଯାଇଥିଲା। ଏଣୁ ସମ୍ବଲପୁରର ନିରୀହ ପ୍ରଜାମାନଙ୍କୁ ଇଂରେଜମାନଙ୍କ ଅତ୍ୟାଚାରରୁ ବଞ୍ଚାଇବା ପାଇଁ ସେ ବାଧ ହୋଇ ୧୮୬୨ ମେ ମାସ ଶେଷ ଭାଗରେ ଆତ୍ମ ସମର୍ପଣ କଲେ ଓ ମେଜର ଇମ୍ପେ ତାହାଙ୍କୁ ସମ୍ମାନର ସହିତ ଗ୍ରହଣ କଲେ। ସେ ଉଦନ୍ତ ଓ ଧ୍ରୁବଙ୍କ ସହିତ ଖିଣ୍ଡାଗ୍ରାମରେ ବାସ କଲେ। ତାଙ୍କୁ ଖିଣ୍ଡାସହ ଦୁଇଟି ଗ୍ରାମ ଖୋରାକ ପୋଷକ ବାବଦକୁ ଦିଆଗଲା ଓ ବର୍ଷକୁ ହଜାରେ ଟଙ୍କା ପେନ୍‌ସନ ଦିଆଗଲା। ମିତ୍ରଭାନୁ ସାଏ ଦୁଇଖଣ୍ଡ ଗ୍ରାମର ଜାଗିରୀ ସହ ବର୍ଷକୁ ଟ ୪୨୦ପେନ୍‌ସନ ପାଇଲେ। ସୁରେନ୍ଦ୍ର ସାଏ ଆତ୍ମ ସମର୍ପଣ କଲେ ମଧ, ଜନମାନସରୁ ଇଂରାଜି ମାନଙ୍କର ଅତ୍ୟାଚାର ଲିଭିନଥିଲା। ସେମାନେ ଉତ୍ତେଜିତ ଥିଲେ ଓ ପୁନର୍ବାର ବିଦ୍ରୋହର ଆଶଙ୍କା ଥିଲା। ଅସନ୍ତୁଷ୍ଟ କମଳ ସିଂହ, ଖଗେଶ୍ୱର ସିଂହ ନୀଳାମ୍ବର ସିଂହ, ହଟେସିଂ, କୁଞ୍ଜଳ ସିଂଆଦି ସରଦାର ଗଣ ଆତ୍ମସମର୍ପଣ ନ କରି ବିଦ୍ରୋହ ଚାଲୁରଖିଥିଲେ। କିନ୍ତୁ ରଣକ୍ଳାନ୍ତ ସୁରେନ୍ଦ୍ର ସାଏ, ଖିଣ୍ଡାରେ ଶାନ୍ତିରେ ବାସ କରି କ୍ଳାନ୍ତି ଅପନୋଦନ କରୁଥିଲେ।

ଇଂରେଜ ସରକାର ଏହି ସବୁ ଦୃଷ୍ଟି କୋଣରୁ ବିପ୍ଳବକୁ ସମ୍ପୂର୍ଣ୍ଣ ରୂପେ ଦମନ କରିବା ପାଇଁ ଇମ୍ପେ ବିରୋଧ କରିବା ସତ୍ତ୍ୱେ ସୁରେନ୍ଦ୍ର ସାଏ ଓ ତାଙ୍କର ଭାଇ ଓ ପୁତ୍ରମାନଙ୍କୁ ବନ୍ଦୀ କରିବା ପାଇଁ ସ୍ଥିର କଲେ। ମଧ ପ୍ରଦେଶ ର ଚିଫ କମିଶନର ରିଚାର୍ଡ ଟେମ୍‌ପଲ୍ ମଧ ଏହି ମର୍ମରେ ଇମ୍ପେଙ୍କୁ ନିର୍ଦ୍ଦେଶ ଦେଲେ କିନ୍ତୁ ଇମ୍ପେ ତାହା କାର୍ଯ୍ୟକାରୀ କଲେ ନାହିଁ ଓ ୧୮୬୩ ମସିହାରେ ସେ ସମ୍ବଲପୁରରେ ପ୍ରାଣତ୍ୟାଗ କଲେ। କମ୍ବର୍ଲି ସମ୍ବଲପୁରର ଡେପୁଟି କମିଶନର ରୂପେ ନିଯୁକ୍ତି ପାଇବା ସଂଗେ ସଂଗେ ସୁରେନ୍ଦ୍ର ଓ ତାଙ୍କର ପରିବାର ଲୋକଙ୍କୁ ବନ୍ଦୀ କରିବା ସକାଶେ ଯୋଜନା କଲେ। ଇନ୍‌ସ୍‌ପେକ୍ଟର ମୋହନ ସିଂହକୁ ଏହି ଦାୟିତ୍ୱ ଦିଆଗଲା। ସେ ସମ୍ବଲପୁରବାସୀ ଦୟାନିଧି ମେହେର ନାମକ ଜଣେ ନିଶାଦ୍ରବ୍ୟ ବିକ୍ରୟ କରୁଥିବା ବ୍ୟବସାୟୀଙ୍କୁ ଗୁପ୍ତଚର ରୂପେ ନିଯୁକ୍ତ କଲେ। ଦୟାନିଧି, ସୁରେନ୍ଦ୍ରଙ୍କ ପରିବାରରେ ସମସ୍ତଙ୍କୁ ନିଶାଦ୍ରବ୍ୟ ଦେଲେ।

ଉକ୍ତ ନିଶାର ପ୍ରଭାବରେ ସୁରେନ୍ଦ୍ର ନିଜେ ପରିବାର ସହିତ ରାତି ଦଶଟା ପରେ ଅଚେତନ ଥିବା ଅବସ୍ଥାରେ ମୋହନ ସିଂହ ତାଙ୍କୁ ବନ୍ଦୀ କଲେ ।

ସେମାନଙ୍କର ବିଚାର ହୋଇ ଯାବଜ୍ଜୀବନ କାରାଦଣ୍ଡର ଆଦେଶ ଦିଆଗଲା ଓ ସେମାନଙ୍କୁ ଅସୁରଗଡକୁ ନିଆଗଲା । ବନ୍ଦୀଶାଳାରେ ସୁରେନ୍ଦ୍ର ସାଏଙ୍କୁ ଅନ୍ଧ କରିଦିଆ ଯାଇଥିଲା । ଏହି ମହାନ୍ ବିପ୍ଳବୀଙ୍କ ୧୮୮୪ ମସିହା ରେ ବନ୍ଦୀ ଅବସ୍ଥାରେ ମହପ୍ରୟାଣ ହୋଇଥିଲା ।

ସୁରେନ୍ଦ୍ର ସାଏ ଭାରତର ଅନ୍ୟାନ୍ୟ ନେତାଙ୍କ ଅପେକ୍ଷା ଦୀର୍ଘ ସମୟ ଧରି ଇଂରେଜିମାନଙ୍କୁ କାବୁ କରିରଖିଥିଲେ । ସେ ୧୮୦୯ ରେ ଜନ୍ମ ହୋଇ ୧୮୨୭ରେ ବିପ୍ଳବ ଆରମ୍ଭ କରିଥିଲେ- ଓ ୧୮୬୩ ପର୍ଯ୍ୟନ୍ତ ୩୬ ବର୍ଷକାଳ ଏହା ଚାଲୁରଖିଥିଲେ ।





ଡ଼ଙ୍ଗା ପୋଲ, ଦିଲ୍ଲୀ-୧୮୫୭


ଉତ୍ତର ପଶ୍ଚିମ ଭାରତ
୧୮୫୭
0 50 100
R. Ravi
R. Sutlej
Ferozepore
Ludhiana
Simla
Ambala
R. Jumna
Meerut
DELHI
Bikanir
Sikar
ALIGARH
Mathura
AGRA
GRAND TRUNK RD.
Jaipur
AJMERE
Jodhpur
R. Chambal
GWALIOR
Nainital
ROHILKHAND
R. Ramganga
Bareilly
R. Ganges
Fatehgarh
Etawah
Sheorajpur
Bithur
CAWNPORE
Fatehpur Chaurasi
R. Gogra
O U D H
Unao
Nawabganj
LUCKNOW
Bashiratganj
Mangalwar
Pandu Nadi
Aong
Fatehpur
R. Jumna
R. Ganges
NEPAL
Banki
R.
Nanpara
Balarampur
Gondah
R. Rapt
Fyzabad
R. Gogra
GORAKHPUR
R. Gumti
ALLAHABAD
BENARES
To Calcutta
A. Dutta



BRITISH CANTONMENTS
FLAGSTAFF TOWER
METCALFE'S HOUSE
OBSERVATORY
HINDU RAO'S HOUSE
LUDLOW CASTLE
SAMMY HOUSE
KUDSIA BAGH
SUBZI MUNDI
KASMIR GATE & BASTION
KABUL GATE
SKINNER HOUSE
TO MEERUT 40 MILES
BRIDGE OF BOATS
KISHENGUNGE SUBURB
LAHORE GATE
CHANDNI CHOUK
THE RED FORT
JUMMA MUSJID
FURUSH KHANA GATE
AJMERE GATE
TOORUKMAN GATE
N
JAIL


ଦିଲ୍ଲୀ-୧୮୫୭

# BIBLIOGRAPHY

1. Adye, J — The defence of cawnpore, London, 1858, Re-collection of a military life, London, 1898
2. Baden powell, B.H. — Land system of British India
3. Ball, Charles — The history of Indian mutiny.2 Vols. Newyork of London, N.D.
4. Baley, J.A. — The assault of Delhi, A pamplet,1876.
5. Benson, A. C. (Editor) — The letters of queen victoria 1837- 60. vol. III John Murray, 1907
6. Brock, W. — A bibliographical sketch of Sir Henery Havelock. London,1858
7. Browne, J. — Cawnpore and the Nana of Bithoor. Cawnpore, 1890
8. Campbell, G. — Memoirs of my Indian career, 2 Vols. London, 1893
9. Chattopadhyaya, H. — The Sepoy Mutiny, Calcutta, 1957
10. Cooper, L. — Havelock, London 1957
11. Dash, Sibaprasad — Sambalapura ra Itihas. Sambalpur, 1969
12. Forrest, G. W. — Selections from state papers preserved in the Military Department, 4 Vols. Calcutta 1893-1912
13. Grant, General. Sir Hope. — Incidents in Sepoy war in 1857-58. Edinburgh, 1873
14. Greathed, Hervey H. — Letters written during siege of Delhi. Longmans, 1857
15. Groom, W.T. — With Havelock from Allahabad to Lucknow. London, 1894
16. Gubbins, M. R. — An account of mutinies in Oudh and of the siege of Lucknow Residency. London, 1859
17. Gupta, P.C. — The last Peshwa and the English commissioner Calcutta, 1944. -Nana Sahib and the rising at cawnpore.
18. Innes, J. J. M. — Lucknow and Oude in the mutiny. London, 1895 -The Sepoy revolt. London, 1897

19. Intelligence Branch
Sir Hope. of Chief of
the staff,
Army H.Q. in India. The revolt in Central India 1857-59
20. Ireland, W. Willions. A History of the seige of Delhi Edinburgh,1861
21. Joshi, P.C. (edited by) Rebellion 1857, A symposiuam Delhi 1986
22. Joyce, Michael The ordeal at Lucknow.
23. Kaye, Sir J.W. A History of the Sepoy war in India 1857-58
London, 1870 in 3 Vols.
24. Keens Hindustan under free Lancer.
25. Khan, Sir S. Ahamad The causes records of the Indian revolt.
26. Landon, P. Under the Sun. London 1906 Nepal, 2 Vols. London 1928
27. Leasor, J. RedFort, the story of indian Mutiny of 1857, Newyork, 1957
28. Majumdar, R.C. The sepoy mutiny and the revolt of 1857. 1957, Calcutta
29. Malleson, G.B. The mutiny of the Bengal Army by one who served under Sir, Charles Napier (Red Pamphlet). London, 1857-58
30. Malleson, Col.J.B. Indian mutiny of 1857
31. Marx,K. (a)"The East India Company- Its History & result" - Newyork Daily Tribune - July II 1853
(b)"The British Rule in India"-June 25, 1853
(c) Unsigned Article -"The Indian Revolt".-Sept,10, 1857
(d)Unsigned Article - July 15th, 1857
(e)Unsigned Article -"The future results of British Rule in India Aug 8th 1853. Capital, Vol I.
32. Mead, H. The Sepoy revolt : Its causes and consequences. London, 1857
33. Metcalf, C.T. Two Native Narratives of the Mutiny in Delhi. 1974, Delhi (Indian edition)

34. Muir, Sir William (Collected by) and Gold stram William(edited by) Records of the Intelligence Dept of the Govt.of Nort West provinces of India during the mutiny of 1857. 2 Vols. Edinburgh, 1902

35. Nehru,J. Discovery of India.

36. Nigam, N.K. Delhi in 1857. S. chand & co, 1957.

37. Norgate and Phillott From Sepay to Subadar, Calcutta,1911

38. Norman, Major.H.W. A Narrative of the Campaign of the Delhi mutiny. W.H. Dalton,1858

39. Outram, General Sir James. Orders, despatches and correspoudance

40. Pal, Dharam. Tatya Tope. Delhi, 1957

41. Pearson Hasketh The Hero of Delhi, Nicholson 1957

42. Prasad, N. Paramountancy under Dalhousie. Ranjit Printers & Publications.

43. Roberts, L. Forty-one years in India Richard Bentley, 1897
-Letters written during Indian Mutiny. Edited by Countess Roberts, Macmillan 1924.

44. Russel, W.H. My diary in India. London. N.D.

45. Savarkar, V.D. The Indian war of Independence. ( 9th Ed. )Delhi, 1970

46. Sen, S.N. Eighteen Fifty - Seven. Delhi 1957

47. Shadwell, General Life of Colin Campbell, Lordclyde : 2 Vols. London 1881

48. Shehbai, I.U. East India Company and Baghi Ulema.

49. Smith, R.B. Life of Lord Lawrence. Smith Elder & Co, 1883

50. Smith, V. Oxferd History of India

51. Trevelyan, G.O. Cawnpore. Macmillam, 1865

52. Turnbull, Lt.Col. J.R. Letters written during the seige of Delhi. Torquay, 1876.

53. Willson Defence of Lucknow.

54. Young, Col. Keith. Delhi, 1857. W& R Chambers, 1902

55. Zaka Ullah Rise of the English powers.

## OTHER RECORDS

1. Foreign Department Secret Proceedings - 1839-51, 57, 58, 78
2. Foreing Department Secret Cousultation - 1858
3. Despatch to secret committee - 1858
4. Foreign Department Political proceeding-1851,1859A 1861, 1862A,1863A,1864.
5. Foreign Department political Consultation - 1851, 1853, 1859,1860
6. Foreign Department General - 1862,1863,1867
7. Foreign Department Political A -1861,1874
8. Foreign Department Political B - 1861
9. Political Despatch to Secretary of State - 1861
10. Political Despatch from Secrtary of State - 1860,61
11. Foreign Department Part A -1861
12. Copy of the original correspendance between Nana Sahib's Agent and the French (Original in Bibliotheque National,paris)
13. Abstract of the Proceedings of the Council of the Governor Gereral of India -Vol XVII
14. Parliamentary papers - 1850,1857-1860
15. Honse of Commons - 1857-58
16. The second China War - edited by D. Bonner Smith & E. Lumby.
17. Blue book : Correspondence Relative to Earl of Elgin's special mission to China & Japan (1857-59)
18. Data for Modern History - edt by Historical institute of chinese Acadimy of Sciences
19. A complete Account of the Transaction of Foreign Affairs, in the reign of Hsien Feng of Manchu dynasty.
20. Records of Delhi Residency and agency - 1807-57
21. Copies of All treaties : Engagements & correspondence etc.



ଲେଖକ ପ୍ରାଧ୍ୟାପକ ଦୀନବନ୍ଧୁ ମିଶ୍ର

ଉତ୍କଳ ବିଶ୍ୱବିଦ୍ୟାଳୟ ଅଧିନସ୍ଥ ଆଇନ୍ ମହାବିଦ୍ୟାଳୟର ପ୍ରତିଷ୍ଠିତ ପ୍ରାଧ୍ୟାପକ ଶ୍ରୀ ଦୀନବନ୍ଧୁ ମିଶ୍ର ଏକ ଅସାଧାରଣ ପ୍ରତିଭାସମ୍ପନ୍ନ ବ୍ୟକ୍ତି ଭାବରେ ନିଜକୁ ପରିଣତ କରାଇଥିଲେ ତାଙ୍କର ପ୍ରଥମ ସୃଷ୍ଟି ଶଙ୍କରାଚାର୍ଯ୍ୟ.... ମାଧ୍ୟମରେ । ତାତ୍ତ୍ୱିକ ଓ ବିଶ୍ଳେଷଣାତ୍ମକ ଚିନ୍ତାଧାରା ତାଙ୍କର ଏହି ପ୍ରଥମ ପୁସ୍ତକର ପ୍ରତ୍ୟେକ ଧାଡ଼ିରୁ ସୁସ୍ପଷ୍ଟ । ସ୍ୱତଃ ଧାରଣା ଆସେ ଯେ ଯେଉଁ ପରିବାରରୁ ସେ ଆସିଛନ୍ତି, ସେ ପରିବାରର ଯେ କେହି ପିଲା ଭବିଷ୍ୟତରେ ନିଶ୍ଚିତ ଭାବରେ ବିଜ୍ଞ ଓ ଜ୍ଞାନୀ ବ୍ୟକ୍ତି ଭାବରେ ଆଦୃତ ହେବ ଏଥିରେ ସନ୍ଦେହର ଲେଶ ମାତ୍ର ଅବକାଶ ନାହିଁ । ଉତ୍କଳମଣିଙ୍କ ନାତି, ଶ୍ରୀ ନାରାୟଣ ମିଶ୍ରଙ୍କ କନିଷ୍ଠ ପୁତ୍ର ଓ ମହାନ ଦାର୍ଶନିକ ଡ଼ଃ ସତ୍ୟବାଦୀ ମିଶ୍ରଙ୍କ କନିଷ୍ଠ ଭ୍ରାତା କିନ୍ତୁ ସ୍ୱପରିଚୟର ସ୍ୱାତନ୍ତ୍ର୍ୟ ବଜାୟ ରଖିଛନ୍ତି ତାଙ୍କର ଅସାଧାରଣ ପ୍ରଜ୍ଞା, ମୌଳିକ ଚିନ୍ତାଧାରା ଓ ଅନବଦ୍ୟ ଉପସ୍ଥାପନା ଶୈଳୀ ମାଧ୍ୟମରେ । ପ୍ରଭୁ ଜଗନ୍ନାଥଙ୍କ ଅପାର କରୁଣାରୁ ଶେଷରେ ସେ ଏପରି ଏକ ତତ୍ତ୍ୱ ଭିତ୍ତିକ ପୁସ୍ତକ ଲେଖିବାରେ ସମର୍ଥ ହେଲେ, ଯାହାକି ପାଞ୍ଚ ବର୍ଷର ଅଦମ୍ୟ ଚେଷ୍ଟା ଓ ଐତିହାସିକ ଗବେଷଣାର ଏକ ଅନବଦ୍ୟ ସୃଷ୍ଟି । ପୁସ୍ତକଟିର ମୂଳମନ୍ତ୍ର ମଧ୍ୟରେ ନିହିତ ଅଛି ପ୍ରଭୁ ଜଗନ୍ନାଥଙ୍କ ସେବକ ଚନ୍ଦନ ହଜୁରୀଙ୍କ ନିଃସ୍ୱାର୍ଥପର ଦେଶପ୍ରେମ । ଚନ୍ଦନ ହଜୁରୀଙ୍କ ଉପରେ ଏପରି ଏକ ଐତିହାସିକ ବ୍ୟାଖ୍ୟା ସର୍ବପ୍ରଥମ । ସେହିପରି ବ୍ରିଟିଶ ଐତିହାସିକ ଚିନ୍ତାଧାରା ବା ବ୍ରିଟିଶ ଭାବଧାର ଉଦ୍‌ବୁଦ୍ଧ ମୁଷ୍ଟିମେୟ ଭାରତୀୟ ନେତା ବା ସରକାରୀ ଐତିହାସିକବୃନ୍ଦ ସିପାହୀ ବିଦ୍ରୋହର ମୂଳତତ୍ତ୍ୱକୁ ବିକୃତ କରି ଏହାକୁ ଭାରତୀୟ ଦେଶାତ୍ମବୋଧକ ଜାତୀୟତାବାଦର ଉତ୍କୃଷ୍ଟ ନମୁନା ବା ପ୍ରାରମ୍ଭ ବିନ୍ଦୁ ରୂପେ ଗ୍ରହଣ କରିବାକୁ ନାରାଜ । ସେମାନଙ୍କ ତମସାଚ୍ଛନ୍ନ ଅଜ୍ଞତା ଦୂରକରିବା ଉଦ୍ଦେଶ୍ୟରେ ଦୀନବନ୍ଧୁଙ୍କ ଏହି ପୁସ୍ତକ ଉଦ୍ଦିଷ୍ଟ । କ୍ରିମିଆଁ ଓ ଓପିଅମ ଯୁଦ୍ଧର ଭିତ୍ତିଭୂମି ଉପରେ ଜାଗ୍ରତ ଏସିୟନ ଜାଗରଣର ଅନ୍ୟତମ ଅଂଶ ରୂପେ ଭାରତରେ ସିପାହୀ ବିଦ୍ରୋହ ସଂଗଠିତ ହୋଇଥିଲା ବୋଲି ଯୁକ୍ତି ଅଖଣ୍ଡନୀୟ ଯଦିବା କେହି ଏହାକୁ ହିଗେଲଙ୍କ ଦର୍ଶନତତ୍ତ୍ୱର ଆଧାରିତ ବୋଲି କହିପାରନ୍ତି । ସବୁ ଦୃଷ୍ଟିରୁ ବିଚାର କଲେ ଏହି ଗବେଷଣାତ୍ମକ ପୁସ୍ତକ ସବୁ ଶ୍ରେଣୀର ଲୋକଙ୍କ ପାଇଁ ଉଦ୍ଦିଷ୍ଟ ଓ ସମସ୍ତଙ୍କ ଦ୍ୱାରା ଆଦୃତ ହେବ ଏଥିରେ ସନ୍ଦେହ ନାହିଁ । ସ୍ୱାଧୀନତାର ପଚାଶ ବର୍ଷ ପୂର୍ତ୍ତି ଉପଲକ୍ଷେ ଭାରତର ବିଜ୍ଞ ଗୋଷ୍ଠୀ, ଛାତ୍ରସମାଜ ଓ ରାଜନୈତିକ ବ୍ୟକ୍ତି ବିଶେଷ ଏହି ପୁସ୍ତକରୁ ନୂତନ ଓ ଗଠନାତ୍ମକ ଦେଶାତ୍ମବୋଧର ସ୍ୱାଦ ପାଇ ପାରିବେ ଏବଂ ଐତିହାସିକମାନେ ଏହି ନୂତନ ଦିଗ୍‌ଦର୍ଶନରୁ ବିଶେଷ ଉପକୃତ ହେବେ ବୋଲି ଆଶା ।

ଡ଼ ହିମାଂଶୁ ଶେଖର ପଟ୍ଟନାୟକ, ଡି.ଲିଟ୍,
ବିଭାଗୀୟ ମୁଖ୍ୟ, ସ୍ନାତକୋତ୍ତର ଇତିହାସ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ